# ମୋ ଜୀବନର ସ୍ମୃତି ଓ ଅନୁଭୂତି

ପ୍ରଫେସର ପତିତପାବନ ମିଶ୍ର

ପ୍ରକାଶକ
ଶାନ୍ତିମାର୍ଗ ପ୍ରଡକ୍‌ସନ
୧୪୦, ବାପୁଜୀନଗର, ଭୁବନେଶ୍ୱର - ୯
ଫୋନ୍ – ୨୫୩୦୨୭୯

ମୋ ଜୀବନର ସ୍ମୃତି ଓ ଅନୁଭୂତି

ଲେଖକ:
ପ୍ରଫେସର ପତିତପାବନ ମିଶ୍ର

ପ୍ରକାଶକ
ଶାନ୍ତିମାର୍ଗ ପ୍ରଡକ୍ସନ, ୧୪୦, ବାପୁଜୀନଗର, ଭୁବନେଶ୍ୱର - ୯
ଫୋନ୍ - ୨୫୩୦୨୭୯

ପ୍ରଥମ ସଂସ୍କରଣ
ଶ୍ରୀରାମ ନବମୀ, ୧୪, ଅପ୍ରେଲ, ୨୦୦୮

ମୁଦ୍ରଣ:
ପେଜମେକର କମ୍ପ୍ୟୁଟର ସର୍ଭିସେସ୍,
୧୧୭, ବାପୁଜୀନଗର, ଭୁବନେଶ୍ୱର - ୯

ମୂଲ୍ୟ : ୧୮୦ ଟଙ୍କା ମାତ୍ର

---

**Mo Jibanar Smruti O Anubhuti**

**Written by**
**Prof – Patitapaban Misra**

**First Publication, 14 April, 2008**
**Published by**
**Santi Marga Productions,**
**140,Bapuji Nagar- Bhubaneswar – 751009**
**Ph- 0674 – 2530279**

**Printed at**
**Pagemaker Computer Services ,**
**117, Bapuji Nagar, BBSR**

**Price Rs- 180.00 only**

# ଉତ୍ସର୍ଗ

**ସମ୍ମାନାସ୍ପଦ ଅଧ୍ୟାପକ ଶ୍ରୀ ନାରାୟଣ ମିଶ୍ର ମହାଶୟ,**

ମୁଁ ଆଇ.ଏସ୍‌ସି ପଢ଼ିବା ବେଳେ ଗଙ୍ଗାଧର ମେହେର କଲେଜରେ ଆପଣଙ୍କୁ ଥରେ ଦେଖିଥିଲି । ଆପଣ ସେତେବେଳେ ଜଣେ ଉଚ୍ଚକୋଟୀର ଅଧ୍ୟାପକ ବୋଲି ମୋତେ ଜଣାପଡ଼ି ନଥିଲେ । ପ୍ରାୟ ତିନି ବର୍ଷ ପରେ ମୁଁ ରେଭେନ୍ସା କଲେଜର ପ୍ରାୟୋଗିକ କ୍ଲାସରେ ଆପଣଙ୍କୁ ଦେଖିଲି । ମୁଁ ଭାବୁଥିଲି 'ଆପଣ କଣ କ୍ଲାସରେ ସବୁ ପରୀକ୍ଷା ଗୁଡ଼ିକ କରାଇ ପାରିବେ ?' କିନ୍ତୁ କେତୋଟି କ୍ଲାସ ନେଲାପରେ ମୁଁ ଅନୁଭବ କଲି ଆପଣ ଜଣେ ଅସାଧାରଣ ଅଧ୍ୟାପକ । ଆପଣ ଯେପରି ଅଧ୍ୟାପନା କରନ୍ତି, ସେପରି ଖେଳାନ୍ତି ଓ ଛାତ୍ରମାନଙ୍କୁ ମଧ୍ୟ ସ୍ନେହ କରନ୍ତି ।

ଆପଣ ପ୍ରତ୍ୟେକ ପ୍ରାୟୋଗିକ କ୍ଲାସ୍‌କୁ ଯାଇ ପ୍ରତି ଛାତ୍ର କିପରି ପରୀକ୍ଷା କରୁଛନ୍ତି, ତାହା ବୁଲି ବୁଲି ଦେଖୁଥାଆନ୍ତି । ଶେଷରେ ଯେଉଁମାନେ ପରୀକ୍ଷା ସମ୍ପୂର୍ଣ୍ଣ ରୂପେ କରି ନ'ଥାଆନ୍ତି ସେମାନଙ୍କୁ କ୍ଲାସରେ ରଖି ଡେରି ହୋଇଗଲେ, ଭୋକ କରିବଣି ଭାବି ପିଅନ ହାତରେ ରସଗୋଲା ମଗାଇ ଖାଇବାକୁ ଦିଅନ୍ତି ।

ମୁଁ ଆପଣଙ୍କ କ୍ଲାସ୍‌ରେ ଅନୁପ୍ରାଣୀତ ହୋଇ ସବୁ ପରୀକ୍ଷା ଗୁଡ଼ିକ ଠିକ୍ ଭାବରେ କରି ଦେଖାଇ ଦେଲେ ଆପଣ ସନ୍ତୁଷ୍ଟ ହୁଅନ୍ତି ଏବଂ ଘରକୁ ଯିବାକୁ ଅନୁମତି ଦିଅନ୍ତି । ମୁଁ ସେହି ଦୁଇବର୍ଷ ଭିତରେ ଆପଣଙ୍କ କହିବା ଅନୁସାରେ ସମସ୍ତ ପରୀକ୍ଷା ଗୁଡ଼ିକ କରୁଥିଲି । ଏହିପରି ଭାବରେ ପରୀକ୍ଷା ଗୁଡ଼ିକ କରିବା ପରେ ମୋର ପ୍ରାୟୋଗିକ ପରୀକ୍ଷା ପ୍ରତି ଆସକ୍ତି ବଢ଼ି ଯାଇଥିଲା । ଛାତ୍ର ଜୀବନ ସରିଲା ପରେ ମୁଁ ପ୍ରାୟୋଗିକ ପରୀକ୍ଷା ସମ୍ବନ୍ଧୀୟ ଗବେଷଣା କରିବା ପାଇଁ ଅନୁପ୍ରାଣୀତ ହେଲି । ମୋର ଅଧ୍ୟାପନା ସମୟରେ ଆପଣଙ୍କ ଉପଦେଶ ଅନୁସାରେ ପ୍ରାୟୋଗିକ କ୍ଲାସ୍‌ରେ ଛାତ୍ରମାନେ ଠିକ୍ ଭାବରେ ପରୀକ୍ଷା କରୁଛନ୍ତି କି ନାହିଁ ଦେଖୁଥିଲି ।

ଅଧ୍ୟାପନା ଜୀବନ ସରିଲା ପରେ ନୂତନ ପରୀକ୍ଷା ଉଦ୍ଭାବନ କରି, ସେଗୁଡ଼ିକ ମଧ୍ୟ ଓଡ଼ିଆ ଓ ଇଂରାଜୀ ପୁସ୍ତକରେ ପ୍ରକାଶ କରିଛି । ଏହା ବ୍ୟତୀତ ପ୍ଲାଜମା ପଦାର୍ଥ ବିଜ୍ଞାନ ସମ୍ବନ୍ଧୀୟ କେତେ ଗୁଡ଼ିଏ ପରୀକ୍ଷା କରି କୋଲ୍‌କାତାର ବୋଷ୍ ଇନ୍‌ଷ୍ଟିଚ୍ୟୁଟ୍‌ର ନିମନ୍ତ୍ରଣ କ୍ରମେ ପରୀକ୍ଷା ଗୁଡ଼ିକୁ ପ୍ରଦର୍ଶନ କରିଥିଲି । ଦର୍ଶକମାନେ ଶସ୍ତା ଉପକରଣରେ ତିଆରି ପରୀକ୍ଷା ଗୁଡ଼ିକ ଦେଖି ଆଶ୍ଚର୍ଯ୍ୟ ହୋଇଥିଲେ । ବୋଷ୍ ଇନ୍‌ଷ୍ଟିଚ୍ୟୁଟ୍‌ରେ ପରୀକ୍ଷା ଗୁଡ଼ିକର ପ୍ରଦର୍ଶନ ପରେ ଆସାମରେ ଥିବା 'ସେଣ୍ଟର ଅଫ୍ ପ୍ଲାଜମା ଫିଜିକ୍ସ'ର ଡିରେକ୍ଟରଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ସେଠାରେ କିଛି ଦିନ ଗବେଷଣା କରି ନୂତନ ତଥ୍ୟ ଉଦ୍‌ଭାବନ କରିଥିଲି । ଏହା ବ୍ୟତୀତ ଭାରତର ଅନ୍ୟାନ୍ୟ ବିଶ୍ୱବିଦ୍ୟାଳୟକୁ ନିମନ୍ତ୍ରିତ ହୋଇ ନୂତନ ପରୀକ୍ଷାର ଉପକରଣ ମାନ ପ୍ରସ୍ତୁତ କରିଥିଲି ଏବଂ ଏଥିନିମନ୍ତେ ପ୍ରଶଂସିତ ଓ ସମ୍ମାନୀତ ହୋଇଥିଲି ।

ଏଥିପାଇଁ ମୋର ପୂଜ୍ୟ ଅଧ୍ୟାପକ ଶ୍ରୀ ନାରାୟଣ ମିଶ୍ରଙ୍କ ଠାରେ ମୁଁ ଚିରଋଣୀ ।

**ଆପଣଙ୍କର ଛାତ୍ର**

**ପତିତପାବନ**

# ପାଠକମାନଙ୍କୁ ପଦେ

ଦଶ ବର୍ଷ ତଳେ ମୋ ସ୍ତ୍ରୀଙ୍କର ଦେହାନ୍ତ ପରେ ମୁଁ ଦୁଃଖରେ ମ୍ରିୟମାଣ ହୋଇପଡିଥିଲି । ଏହି ସମୟରେ ଆମ ପରିବାରର ଜଣେ ପରମ ହିତୈଷୀ ତଥା ପ୍ରଜାତନ୍ତ୍ରର ମାନ୍ୟବରଜାତର ଜନ୍ମୁରୀ ଭାଇ ଶ୍ରୀ ନୃସିଂହ ଚରଣ ସାହୁ ଆମ ଘରକୁ ଆସି ମୋର ଦୁଃଖ ସମୟରେ ବାରମ୍ବାର ସାନ୍ତ୍ୱନା ଦେଇ ପ୍ରବର୍ତ୍ତାଇ ଥିଲେ, ଲେଖାଲେଖି କରିବାକୁ । ସେ କହିଥିଲେ, ପ୍ରଥମେ ଆପଣଙ୍କ ଆତ୍ମ ଜୀବନୀଟି ଲେଖିବା ପାଇଁ ଚେଷ୍ଟା କରନ୍ତୁ । ଲେଖାଲେଖିରେ ମନୋନିବେଶ କଲେ ଦୁଃଖରୁ ମୁକ୍ତି ମିଳିବ ।

୧୯୯୮ ମସିହାରେ ମୁଁ 'ମୋ ଜୀବନର ସ୍ମୃତି ଓ ଅନୁଭୂତି' ପୁସ୍ତକଟି ଲେଖିବାକୁ ଆରମ୍ଭ କରିଥିଲି । ୨୦୦୮ ମସିହା ରାମନବମୀ ପରେ ପୁସ୍ତକର ଆଗାମୀ ବିଷୟ ବସ୍ତୁ ଗୁଡ଼ିକ ଲେଖି ପାରିବି କି ନାହିଁ ତାହା ନିମାପଡାର ଆରାଧ୍ୟ ଦେବତା ପତିତପାବନ ଦେବଙ୍କ ଉପରେ ନିର୍ଭର କରେ ।

ଏହି ପୁସ୍ତକରେ ମୋର ଜନ୍ମ ସ୍ଥାନ ନିମାପଡା ଠାରୁ ଆରମ୍ଭ କରିଛି । ଏଥିରେ ମୋର ବାଲ୍ୟ ଜୀବନ, ହାଇସ୍କୁଲ୍ ଶିକ୍ଷା, ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜ ଓ ରେଭେନ୍‌ସା କଲେଜରେ ଶିକ୍ଷା ଶେଷ କରିଛି । ତାପରେ ରେଭେନ୍ସା କଲେଜରେ ଅଧ୍ୟାପକ ଜୀବନ ଆରମ୍ଭ, କରି ଖଲ୍ଲିକୋଟ କଲେଜର ଅଧ୍ୟକ୍ଷ ହୋଇଥିଲି । ଏହି ସମୟ ଭିତରେ ମୋ ଜୀବନର ଅନେକ ସ୍ମୃତି ଉପସ୍ଥାପନ କରିଛି । ବହିଟିର ଆରମ୍ଭରୁ ପାଠକ ମାନଙ୍କ ସୁବିଧା ପାଇଁ ସେହି ସ୍ମୃତିର ପ୍ରଧାନ ଘଟଣା ଗୁଡ଼ିକ ସୂଚୀ ଆକାରରେ ଲେଖି ଦେଇଛି । ଏଥିପାଇଁ ମୁଁ ବହିର ପ୍ରେରଣାଦାତା ଶ୍ରୀ ନୃସିଂହ ଚରଣ ସାହୁଙ୍କୁ ଆନ୍ତରିକ ଧନ୍ୟବାଦ ଅର୍ପଣ କରୁଛି ।

ଏହା ଭିତରେ ମୋର ନନା, ବୋଉ ଓ ମୋର ସହଧର୍ମିଣୀ ସମସ୍ତେ ମୋତେ ଛାଡି ଚାଲି ଗଲେଣି । କିନ୍ତୁ ମୁଁ ମୋର ନାତି, ନାତୁଣୀ, ପୁଅ, ବୋହୂ ଓ ଝିଅ ଜ୍ୱାଇଁମାନଙ୍କୁ ନେଇ ଜୀବନ ସହିତ ସଂଗ୍ରାମ କରି ମଧ୍ୟ ସୁଖରେ ଅଛି ।

ମୋର ସମ୍ମାନାସ୍ପଦ ଗୁରୁ ପ୍ରଫେସର ସର୍ବେଶ୍ୱର ଦାସ ବହୁ କଷ୍ଟ ସ୍ୱୀକାର କରି ପୁସ୍ତକର ପାଣ୍ଡୁଲିପିଟି ପଢି ପୂର୍ବାଭାସ ଲେଖିଥିବାରୁ ମୁଁ ତାଙ୍କ ନିକଟରେ ମୋର ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି ।

**ବିନୀତ ଲେଖକ**

# ପୂର୍ବାଭାସ

ଡକ୍ଟର ପତିତପାବନ ମିଶ୍ର ପ୍ରାୟ ଷାଠିଏ ବର୍ଷ ତଳେ ଅଳ୍ପ କିଛି କାଳ ପାଇଁ ପୁରୀ କଲେଜରେ ମୋର ଛାତ୍ର ଥିଲେ । ସେ ବିଜ୍ଞାନ ଛାତ୍ର ହୋଇଥିବାରୁ ମୁଁ ସେତେବେଳେ ତାଙ୍କ ସହିତ ଘନିଷ୍ଠ ସମ୍ପର୍କରେ ଆସି ନଥିଲି । ଅବଶ୍ୟ ସେ ମୋର କ୍ଲାସ ସ୍ମରଣ ରଖି ମୋର ନାମ ତାଙ୍କର ଆତ୍ମ ଜୀବନୀରେ ଲେଖିଅଛନ୍ତି । ପରେ ରେଭେନ୍ସା କଲେଜରେ ମୁଁ ଅଧ୍ୟାପକ ଥିବା ବେଳେ ସେ ଅଧ୍ୟାପକରୂପେ ଫିଜିକ୍ସ ବିଭାଗରେ ଯୋଗ ଦେଲେ । ଶାନ୍ତ, ସରଳ, ତରୁଣ ଅଧ୍ୟାପକ ପତିତପାବନ ଅଳ୍ପ କ କଥା କହନ୍ତି । ପରେ ଜାଣିଲି, ସେ ମୋର ସ୍କୁଲ ବେଳର ପୂର୍ବତନ ସହପାଠୀ ଚଣ୍ଡୀ (ଗଙ୍ଗାଧର)ମିଶ୍ରଙ୍କ ଜୋଇଁ, ବିଶିଷ୍ଟ ସଂସ୍କୃତ ଅଧ୍ୟାପକ ମୋର ପିତୃବନ୍ଧୁ ପଣ୍ଡିତ ଆନନ୍ଦ ମିଶ୍ରଙ୍କ ନାତୁଣୀ (ପୋଷ୍ୟ କନ୍ୟା) ଚିନ୍ମୟୀଙ୍କୁ ବିବାହ କରିଛନ୍ତି । ଚିନ୍ମୟୀ ଗଳ୍ପ, ଉପନ୍ୟାସ, କ୍ଷୁଦ୍ର ନାଟକ, କବିତା ଆଦି ଲେଖୁ ଅଛନ୍ତି ଜାଣି ମୋର ଲେଖିକା ପତ୍ନୀ ସର୍ଗୀୟା ବସନ୍ତ କୁମାରୀ ତାଙ୍କ ପ୍ରତି ଆକୃଷ୍ଟ ହେଲେ । ସେ ଚିନ୍ମୟୀଙ୍କ ପାଖକୁ ବେଳେବେଳେ ଯାଆନ୍ତି, ଚିନ୍ମୟୀ ମଧ୍ୟ ତାଙ୍କ ପାଖକୁ ଆସନ୍ତି ।

ମୋ ସ୍ତ୍ରୀ ୧୯୯୮ ମସିହା ମେ ମାସରେ ମୃତ୍ୟୁବରଣ କରିବାର ଅଳ୍ପ କେତେଦିନ ପରେ ଚିନ୍ମୟୀଙ୍କର ମଧ୍ୟ ଅକସ୍ମାତ୍ ବିୟୋଗ ହେଲା । ମୁଁ ସମଦୁଃଖୀ ପତିତପାବନଙ୍କ ପାଖକୁ ସମବେଦନା ଜଣାଇବାକୁ ଯାଇଥିଲି । ସେ ସେତେବେଳେ ମର୍ମାହତ ଥିଲେ । ଶରୀର ମଧ୍ୟ ତାଙ୍କର ବଡ ଅସୁସ୍ଥ ଥିଲା । ସେହିଦିନୁ ପତିତପାବନଙ୍କ ସହିତ କ୍ରମେ କ୍ରମେ ସମ୍ପର୍କ ବୃଦ୍ଧି ପାଇଲା । ତାଙ୍କର ପୁଅ ବୋହୂମାନଙ୍କ ସହିତ ସ୍ନେହ ସୌହାର୍ଦ୍ଦ୍ୟ ବଢିଲା । ମୋର ଆଉ ଜଣେ ପୂର୍ବତନ ଛାତ୍ର, ପ୍ରଜାତନ୍ତ୍ରର ଜହ୍ନୁରୀ ଭାଇ ରୂପେ ପରିଚିତ ନୃସିଂହଚରଣ ସାହୁଙ୍କ ଯୋଗୁଁ ପତିତପାବନଙ୍କ ପରିବାର ସହ ସମ୍ପର୍କ ଘନିଷ୍ଠତର ହେବାକୁ ଲାଗିଲା । ଚିନ୍ମୟୀଙ୍କ ଶ୍ରାଦ୍ଧୋତ୍ସବରେ, ସ୍ୱଲିଖିତ ପୁସ୍ତକମାନଙ୍କର ଉଦ୍‌ଘାଟନ ଉତ୍ସବରେ, ଏପରିକି ବିଜ୍ଞାନ ପ୍ରଚାର ସମିତିର ଅଧିବେଶନରେ ମତେ ପତିତପାବନ ଲୋଡନ୍ତି । ସେ ଲୋକଶିକ୍ଷାମୂଳକ ବିଜ୍ଞାନଭିତ୍ତିକ ତିନି ଚାରୋଟି ବହି ଲେଖିଥିଲେ । ସେଗୁଡିକ ଓ ଚିନ୍ମୟୀଙ୍କର କିଛି ଲେଖା ମତେ ଉପହାର ଦେଇଥିଲେ । ପତିତପାବନଙ୍କ ଗବେଷଣା କାର୍ଯ୍ୟ ବିଷୟରେ ଅଳ୍ପ କିଛି ବି ଜାଣିଲି ।

ଏବେ ତାଙ୍କ ଆତ୍ମଜୀବନୀ ପଢି ବିସ୍ମୟାଭିଭୂତ ହୋଇଗଲି । ଅତି ବାଲ୍ୟକାଳରୁ ଦାରିଦ୍ର୍ୟ, ଅନଟନ ସହିତ ସଂଘର୍ଷ କରି, ଅକାଳରେ ତାଙ୍କର ପରମ ସ୍ନେହୀ ପିତାଙ୍କ ମୃତ୍ୟୁରେ ଭାଙ୍ଗି ନ'ପଡି, ଧୈର୍ଯ୍ୟର ସହିତ ଅଧ୍ୟବସାୟ କରି ସେ ନିଜର ସାଧନା ପଥରେ ଅଗ୍ରଗତି କରିଅଛନ୍ତି । କେତେ ଧକ୍କା ଖାଇଛନ୍ତି । ମାଟ୍ରିକ୍ ପରୀକ୍ଷାରେ ଦ୍ୱିତୀୟ ଶ୍ରେଣୀ ହୋଇଗଲା ।

ଆଇ.ଏସ୍.ସି ପରୀକ୍ଷାରେ ଇଂରାଜୀରେ ଖରାପ କରି ଫେଲ୍ ହେଲେ । ବର୍ଷେ ହରାଇଲେ । କିନ୍ତୁ ତଥାପି ମନକୁ ଦୃଢ଼କରି ପଢିଲେ । ପରେ ପୁଣି ଆଇ.ଏସ୍.ସିରେ ସଫଳ ହେଲେ ।

ଫିଜିକ୍ସ ଅନର୍ସ ଶ୍ରେଣୀରେ ପଢିବା ପାଇଁ ନିର୍ବାଚିତ ହେଲେ । ସେହିଦିନୁ ତାଙ୍କର କଳ୍ପନାନୁଯାୟୀ ଜୀବନଧାରା ବଦଳିଗଲା । ଆତ୍ମବିଶ୍ୱାସ ଓ ଭଗବତ୍ ବିଶ୍ୱାସ ବଳରେ ସେ ଆଗେଇ ଚାଲିଲେ ସାଧନା ପଥରେ । ଏମ୍.ଏସ୍‌ସି. ପରୀକ୍ଷାରେ ଅଳ୍ପ କେତେ ମାର୍କ ପାଇଁ ଦ୍ୱିତୀୟ ଶ୍ରେଣୀ ହୋଇଗଲା । କିନ୍ତୁ ମୋର ବନ୍ଧୁ, ତାଙ୍କର ଶିକ୍ଷକ ସର୍ଗୀୟ ଡକ୍ଟର ହରିହର ମିଶ୍ରଙ୍କ ପ୍ରେରଣାରେ ଲାଗିପଡିଲେ ସେ ଗବେଷଣା କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିବାକୁ । ବଦ୍ଧପରିକର ହୋଇ ସେ ସାଫଲ୍ୟର ପ୍ରଥମ ସୋପାନରେ ପହଞ୍ଚିଲେ, ଡକ୍ଟର ତ୍ରିଲୋଚନ ପ୍ରଧାନଙ୍କ ନିର୍ଦ୍ଦେଶରେ ଗବେଷଣା କରି ପି.ଏଚ୍‌ଡି ଉପାଧିପାଇ, ସେଇଦିନୁଁ Plasma Physics ପ୍ରତି ଅଧିକ ଆକୃଷ୍ଟ ହେଲେ । ଓଡିଶାରେ Plasma Physicsର ଅଧ୍ୟୟନ, ଅଧ୍ୟାପନା ଓ ଗବେଷଣା କ୍ଷେତ୍ରରେ ଅଗ୍ରଦୂତ, ପଥପ୍ରଦର୍ଶକ ରୂପେ ପ୍ରତିଷ୍ଠା ଲାଭକଲେ, ଏବଂ କେବଳ ଓଡିଶାରେ କାହିଁକି, ସାରା ଭାରତରେ, ତାଙ୍କର Plasma Physics ଗବେଷଣା କ୍ଷେତ୍ରରେ ଅବଦାନ ପାଇଁ ସୁପ୍ରସିଦ୍ଧ ହେଲେ । କେତେ ଜାତୀୟ, ଆନ୍ତର୍ଜାତୀୟ ସେମିନାରମାନଙ୍କରେ ଗବେଷଣାତ୍ମକ ନିବନ୍ଧମାନ ପାଠକରି ପ୍ରଶଂସିତ ହେଲେ । ନିଜେ ମଧ୍ୟ କେତେ seminarର ନିର୍ଦ୍ଦେଶକ ତଥା Resource Person ରୂପେ ଦକ୍ଷତାର ସହିତ କାର୍ଯ୍ୟ କଲେ । ରେଭେନ୍ସା କଲେଜରେ Plasma Physicsକୁ ସତନ୍ତ୍ର ବିଷୟ ରୂପେ ପଢାଇଲେ । ସଳ୍ପବ୍ୟୟରେ Plasma chamber ପ୍ରତିଷ୍ଠା କଲେ । ଅନ୍ୟାନ୍ୟ ବହୁ ବିଶ୍ୱବିଦ୍ୟାଳୟରେ ଅନୁରୂପ Plasma chamber ପ୍ରତିଷ୍ଠା ପାଇଁ ଦିଗ୍‌ଦର୍ଶନ ଦେଲେ । Visiting Professor ରୂପେ କାର୍ଯ୍ୟକଲେ । U.G.Cରୁ Senior Fellowship ସହିତ ଅନୁଦାନ ପାଇଲେ ତାଙ୍କର ବୈଜ୍ଞାନିକ Plasma Physics ସମ୍ପର୍କିତ Research Project ମାନଙ୍କ ପାଇଁ ।

ମଧୁମେହ ଓ ପକ୍ଷାଘାତ ରୋଗ ତାଙ୍କୁ ଗବେଷଣା ଓ ଲେଖାଲେଖିରୁ ବିରତ କରିପାରି ନାହିଁ । ସ୍ତ୍ରୀଙ୍କର ଅକାଳ ବିୟୋଗ ତାଙ୍କୁ ସଳ୍ପକାଳ ପାଇଁ ନିସ୍ତବ୍ଧ କରିଦେଲା । କିନ୍ତୁ ତାଙ୍କରି ଇଚ୍ଛା ପୂରଣ କରିବା ପାଇଁ ସେ ଲାଗିପଡିଲେ ସ୍ନାତକୋତ୍ତର ଶ୍ରେଣୀ ଓ ଅନର୍ସ ଶ୍ରେଣୀ ପାଇଁ ଗୋଟିଏ ଗୋଟିଏ Laboratory Manual ଲେଖିବାରେ । ଘଣ୍ଟା ଘଣ୍ଟା ଧରି କମ୍ପ୍ୟୁଟର୍ର ପାଖରେ ବସି ସହକାରୀଙ୍କୁ ନିର୍ଦ୍ଦେଶ ଦେଇ ଗବେଷଣା କାର୍ଯ୍ୟ ଚଳାଇଛନ୍ତି, ବହି ଲେଖା ଚଳାଇଛନ୍ତି । ସାଧନାର ବିରତି ନାହିଁ ।

ଅଧ୍ୟାପକରୂପେ ନିଜର କର୍ତ୍ତବ୍ୟ ଯଥାର୍ଥ ଭାବରେ ତୁଲାଇବା ସହିତ ଖଲ୍ଲିକୋଟ କଲେଜର ଅଧ୍ୟକ୍ଷ ରୂପେ ବହୁ କଠିନ ପରିସ୍ଥିତିକୁ ସାହସର ସହିତ ସମ୍ମୁଖୀନ ହୋଇଛନ୍ତି, ଜଟିଳ ସମସ୍ୟାମାନ ସମାଧାନ କରିଛନ୍ତି ।

ଆତ୍ମଜୀବନୀଟି ପଢି ମନେହେଲା, ସେ ଜଣେ ଅନନ୍ୟ ନିଷ୍ଠାପର ଉଚ୍ଚକୋଟୀର ବୈଜ୍ଞାନିକ । ଯେତିକି ଅଭିନନ୍ଦନ, ପ୍ରତିଭା ପାଇଁ ଯେତିକି ସ୍ୱୀକୃତି ବିଜ୍ଞଜନଙ୍କ ମଣ୍ଡଳରେ ପାଇଛନ୍ତି ତା'ଠାରୁ ବହୁ ଅଧିକ ସମ୍ମାନ ସେ ପାଇବାର ଥିଲା । କିନ୍ତୁ ସେଥିଲାଗି ତାଙ୍କର ଶୋଚନା ନାହିଁ ।

ଅକୃତ୍ରିମ, ସରଳ, ସ୍ୱଚ୍ଛ ଭାଷାରେ ସେ ତାଙ୍କର ଜୀବନକାହାଣୀ, ତାଙ୍କର ପିଲାଦିନର, ଗ୍ରାମ୍ୟ ଜୀବନର ଅନୁଭୂତି, ନନାଙ୍କ ସହିତ ତୀର୍ଥଭ୍ରମଣ, ଗାନ୍ଧୀଜୀଙ୍କ ଦର୍ଶନ, ସ୍ୱାଧୀନତା ଆନ୍ଦୋଳନର ପ୍ରତ୍ୟକ୍ଷ ଅନୁଭୂତି, ଯାନିଯାତ୍ରା ଦର୍ଶନ, ନାଟକରେ ଅଭିନୟ କରିବାର ଅଭିଜ୍ଞତା ସବୁ ବର୍ଣ୍ଣନା କରିଛନ୍ତି । ବାଲ୍ୟ ଚପଳତା ବର୍ଣ୍ଣନ କରିବାକୁ କୁଣ୍ଠିତ ହୋଇନାହାନ୍ତି । ସାଙ୍ଗସାଥୀଙ୍କ ଚିତ୍ର ଦେଇଛନ୍ତି । ନିଜର ଅଭାବ ସତ୍ତ୍ୱେ ସର୍ବେଶ୍ୱର ଆଚାର୍ଯ୍ୟଙ୍କୁ ଯେପରି ଆର୍ଥିକ ସାହାଯ୍ୟ ଦେଇଥିଲେ ତାହା ତାଙ୍କର ଉଦାର ବନ୍ଧୁବତ୍ସଳତାର ପରିଚୟ ଦେଉଛି । ଭାବପ୍ରବଣ ନ ହୋଇ, ଧୈର୍ଯ୍ୟ ଧରି, ଦୃଢ଼ ରହି, ବାସ୍ତବବାଦୀ ହୋଇ, ବନ୍ଧୁତ୍ୱବୋଧ ସହିତ ତାଙ୍କର କର୍ତ୍ତବ୍ୟ ପାଳନ କରିଛନ୍ତି ମୂଳରୁ । ପରୀକ୍ଷା ନିରୀକ୍ଷା ପାଇଁ ତାଙ୍କର ଆଗ୍ରହ ଥିଲା ଛାତ୍ର ଜୀବନର ଆରମ୍ଭରୁ । ଅଧ୍ୟାପକ ମୁକୁନ୍ଦ ମିଶ୍ର ତଥା ଅଧ୍ୟାପକ ରାମଚନ୍ଦ୍ର ତ୍ରିପାଠୀଙ୍କ ଶ୍ରେଣୀରୁ ସେ ପ୍ରେରଣା ପାଇଲେ ପରୀକ୍ଷା (experiment)ପାଇଁ । ଅଦମ୍ୟ ଆଗ୍ରହ ତାଙ୍କର ସେଥିପାଇଁ । ଛୋଟ ଘଣ୍ଟାଟିଏ ଜଣ ଖରାପ ହୋଇଥିଲା, ତା'ପାଇଁ ପେଣ୍ଡୁଲମ୍ ଭଳି କିଛି କରି ତାକୁ ଚଳାଇବାର ଚେଷ୍ଟା କରିଥିଲେ ପିଲାଦିନେ । ବଡଦିନେ ଘରର ଦ୍ୱାର ପାଖକୁ ନଯାଇ କିପରି ତାକୁ ବାରମ୍ବାର ଖୋଲିହେବ, ପୁଣି ବନ୍ଦ କରିହେବ, ସେଥିପାଇଁ ଉପାୟ ବାହାର କରିଥିଲେ । ତାଙ୍କ ଉଦ୍ଭାବନୀ ଶକ୍ତି କେବଳ କଲେଜରେ ସୀମିତ ନ ଥିଲା । ଘରେ ଛୋଟ ଛୋଟ ଅସୁବିଧା ଦୂର କରୁଥିଲେ ନିଜର ଉଦ୍ଭାବନୀ ଶକ୍ତି ବଳରେ ।

ନନା ବୋଉଙ୍କ ପ୍ରତି ଥିଲା ପ୍ରଗାଢ ଶ୍ରଦ୍ଧା, ସ୍ନେହ । ଗୋପବନ୍ଧୁଙ୍କ ସମାଧି ପାଖରେ ବସି ସେ କାନ୍ଦୁଥିଲେ ନନାଙ୍କୁ ସ୍ମରଣ କରି । ବୋଉଙ୍କ ଦମ୍ଭ ପ୍ରତି ତାଙ୍କର ପ୍ରବଳ ଶ୍ରଦ୍ଧା ଥିଲା ଶେଷ ପର୍ଯ୍ୟନ୍ତ । ସ୍ତ୍ରୀ ବିଦୁଷୀ ଚିନ୍ମୟୀଙ୍କୁ ସେ ସମସ୍ତ ସୁଯୋଗ ଦେଇଥିଲେ ତାଙ୍କର ଅନ୍ତର୍ନିହିତ ସୃଜନୀ ପ୍ରତିଭା, ସାହିତ୍ୟିକ ପ୍ରତିଭା, ସଙ୍ଗୀତ ପ୍ରତିଭା ବିକଶିତ କରିବାକୁ । ଭବିଷ୍ୟତରେ ଉର୍ଜା (energy)ର ଅଭାବ ହେବାର ସମ୍ଭାବନା ଥିବାରୁ ବୈଜ୍ଞାନିକମାନେ ସେଥିରେ କିପରି

ସମ୍ମୁଖୀନ ହେବେ, ସେହି ବିଷୟରେ ଚିନ୍ମୟୀଙ୍କର ଗୋଟିଏ କବିତା ପତିତପାବନ ବିଜ୍ଞାନ ପ୍ରଚାର ସମିତିରେ ଗୋଟିଏ ଅଧିବେଶନରେ ପଢିଥିଲେ । ରାମକୃଷ୍ଣ ମିଶନରେ ଶାରଦା ଦେବୀଙ୍କ ଉପରେ ଭାଷଣ ଦେବାକୁ ତାଙ୍କୁ ଉତ୍ସାହିତ କରିଥିଲେ । ଆତ୍ମଜୀବନୀରେ ପତ୍ନୀପ୍ରେମୀ ପତିତପାବନ ଚିନ୍ମୟୀଙ୍କ କେତେକ କବିତା ଉଦ୍ଧାର କରିଛନ୍ତି । ପତିତପାବନଙ୍କର ନିଜର ଦେଶାତ୍ମବୋଧର ପରିଚୟ ମିଳେ ତାଙ୍କର ନିଜ କବିତାରୁ । ଗଳ୍ପଟିଏ ମଧ୍ୟ ଲେଖିଛନ୍ତି 'ଏମିତି ଲୋକ ବି ଅଛନ୍ତି' ବୋଲି ।

ବେଶ୍ ଖୋଲା ଖୋଲି ଭାବରେ ପତିତପାବନ ଲେଖିଛନ୍ତି ତାଙ୍କର ଜୀବନୀ । ନିଜର ଦୋଷ ଦୁର୍ବଳତା ଲୁଚାଇବାର ପ୍ରୟାସ ନାହିଁ କି ନିଜର ବୈଶିଷ୍ଟ୍ୟ ପ୍ରତିପାଦନ କରିବାର ଆଗ୍ରହ ନାହିଁ, ସେଥିପାଇଁ ଗର୍ବ ନାହିଁ ।

ଜୀବନୀର ପ୍ରଥମ ଭାଗଟି ଯେପରି ସ୍ୱଚ୍ଛନ୍ଦ, ଅକୃତ୍ରିମ, ସରଳ ଭାଷାରେ ଲିଖିତ ହୋଇଥିବାରୁ, ସ୍ୱାଭାବିକ ନିରାଡମ୍ବର ବର୍ଣ୍ଣନା ହେତୁ ପଢିବାକୁ ଭଲ ଲାଗୁଛି, ସେହିପରି ଭଲ ଲାଗୁଛି ତାଙ୍କର ଗବେଷଣା କାହାଣୀ, ଅଧ୍ୟାପକ ଜୀବନର, ଅଧ୍ୟକ୍ଷ ଜୀବନର ପୁଣି ଅବସର କାଳୀନ ଜୀବନୀର କାହାଣୀ ଓ ତା' ଭିତରେ ଏକାନ୍ତ ବ୍ୟକ୍ତିଗତ ନିଜର କାହାଣୀ, ଭ୍ରମଣ କାହାଣୀ । ନୃସିଂହ ମୋତେ କହିଲା ଭଳି ଜୀବନୀଟି ପଢିଲାବେଳେ ମନେ ହେଉଛି ଯେପରି ଝରଣାଟିଏ ବୋହି ଯାଉଛି ସ୍ୱାଭାବିକ ଭାବରେ, ସମସ୍ତଙ୍କୁ ଅଭିଭୂତ କରି ତା'ର କଳସ୍ୱନରେ, ମାଧୁରୀରେ ।

କେବଳ ବିସ୍ମୟାଭିଭୂତ ନୁହେଁ, ଅତି ଆନନ୍ଦିତ ହୋଇଛି ଆତ୍ମଜୀବନୀଟି ପଢି । ପତିତପାବନଙ୍କର ଗବେଷଣା ଲାଗିଥାଉ, ଲେଖନୀ ଚାଲିଥାଉ ଅପ୍ରତିହତ ଭାବରେ । ଭଗବାନ ତାଙ୍କୁ ନିରାମୟ ଦୀର୍ଘ ଜୀବନ ପ୍ରଦାନ କରନ୍ତୁ ।

ସର୍ବେଶ୍ୱର

# ସୂଚୀପତ୍ର

## ଆତ୍ମଜୀବନୀ କାହିଁକି ଲେଖିବାକୁ ମନବଳାଇଲି ?

୧୯୯୮ ମସିହାରେ ମୋର ବଡପୁଅ ଏବଂ ବୋହୂ ମୋ ପାଖରେ ନ'ଥିଲେ ଓ ସାନପୁଅ ବାଲେଶ୍ୱରରେ ଚାକିରି କରୁଥିଲା । ମୋ ସ୍ତ୍ରୀର ଦେହ ଖରାପ ହେବାରୁ ସେ ଭୁବନେଶ୍ୱର ଆସିଥିଲା । ଜୁନ୍‌ମାସ ୨୯ ତାରିଖ ଦିନ ମୋ ସ୍ତ୍ରୀଙ୍କର ଆକସ୍ମିକଭାବେ ଦେହାନ୍ତ ହୋଇଗଲା । ତେଣୁ ମୁଁ ଭାବୁଥାଏ, ବୃଦ୍ଧାଶ୍ରମ କିମ୍ବା ହରିଦ୍ୱାର ଯାଇ ସେଠାରେ କୌଣସି ଆଶ୍ରମରେ ରହି ଧର୍ମଚର୍ଚ୍ଚା କରି ଶେଷ ଜୀବନଟି କଟାଇ ଦେବି । କାରଣ ସାନପୁଅର ବିବାହପରେ ସେ ତାର ସ୍ତ୍ରୀକୁ ନେଇ ବାଲେଶ୍ୱର ଚାଲିଯିବ । ମୋତେ ଆଉ ପଚାରିବେ ନାହିଁ ? ବର୍ଷକପରେ ସାନପୁଅର ବୋହୂ ଆସିଲା । ତାଙ୍କର ବ୍ୟବହାର ଓ ଚାଲିଚଳନରେ ଖୁସି ହୋଇ ନିଜଘରେ ରହିବାକୁ ମନବଳାଇଲି । ତାହାର ପ୍ରାୟ ଦୁଇବର୍ଷପରେ ରେଭେନ୍‌ସା କଲେଜର ଜଣେ ଛାତ୍ର ଶ୍ରୀ ନୃସିଂହ ଚରଣ ସାହୁ ଆମ ଘରକୁ ଆସି ମୋର ନିମାପଡାରେ ପିଲାଦିନର କଥା ଓ କିପରି କଷ୍ଟ ସହି ମଣିଷ ହୋଇଥିଲି ଶୁଣିଲାପରେ ମୋର ମାନସିକ ଅବସ୍ଥା ଦୂର କରିବା ପାଇଁ ମୋତେ ମୋ ଜୀବନୀ ଲେଖିବାକୁ ପ୍ରବର୍ତ୍ତାଇଲେ । ମୁଁ କହିଲି "ଓଡିଆରେ ମୁଁ ନିଜେ କେବେ ଆଜି ପର୍ଯ୍ୟନ୍ତ ଲେଖିନାହିଁ । ନିହାତି ଦରକାର ପଡିଲେ ମୋ ପତ୍ନୀଙ୍କ ଦ୍ୱାରା ଓଡିଆରେ ଲେଖାଇ ନେଉଥିଲି । ମୋର ସହକର୍ମୀ ଅଧ୍ୟାପକ ଶ୍ରୀ କୁଳମଣି ସାମଲ କହିବାରୁ କଟକ ବିଜ୍ଞାନ ପ୍ରଚାର ସମିତିର ସଭ୍ୟଭୁକ୍ତ ହୋଇଥିଲି । ସେହି ବିଜ୍ଞାନ ପ୍ରଚାର ସମିତିରେ କୌଣସି ବିଜ୍ଞାନ ସମ୍ବନ୍ଧୀୟ ଲେଖା ପାଠ କରିବା ପାଇଁ ମୋ ପତ୍ନୀଙ୍କ ହାତରେ ଲେଖାଇ ନେଇ ପଢିଦେଉଥିଲି ।" ଏହିପରି ଭାବରେ ଚାଲିଥିଲା । ଏହା ଭିତରେ ମୋର ପତ୍ନୀ ବିଶେଷ ପଢାପଢି ନକରି ଦୁଇଟି ଉପନ୍ୟାସ ଓ ଅନେକ ଗୁଡିଏ କ୍ଷୁଦ୍ରଗଳ୍ପମାନ ସମ୍ବାଦ ପତ୍ରରେ ପ୍ରକାଶ କରିଥିଲେ ଏବଂ ଅନ୍ୟମାନଙ୍କର ବିଭାଘର ଓ ବ୍ରତଘର ଆଦିରେ ମଙ୍ଗଳଗୀତ ଲେଖି ଦେଉଥିଲେ । ଯଦିଓ ଏସବୁ ବିଷୟ ମୁଁ ଜାଣୁଥିଲି ତାଙ୍କର ଓଡିଆ ଲେଖାର ଶୈଳୀକୁ ମୁଁ ମର୍ଯ୍ୟାଦା ଦେଉନଥିଲି ।

- ନୃସିଂହ ବାବୁ କହିଲେ ଆପଣଙ୍କ ପିଲାଦିନର ଅନୁଭୂତିର ସାରମର୍ମ ଲେଖନ୍ତୁ । ମୁଁ ଉତ୍ତର ଦେଇ କହିଲି 'ଓଡିଆ ଭାଷାରେ ଜମା ଲେଖିପାରିବି ନାହିଁ ।' ସେ ପୁଣି କହିଲେ ଆପଣ ଚେଷ୍ଟାକରି ମାତ୍ର ଦଶ ପୃଷ୍ଠାଖଣ୍ଡେ ଲେଖନ୍ତୁ । ମୁଁ ଲେଖିବାକୁ ରାଜିହେଲା ପରେ ମୋର ମନେପଡି ଗଲା ମୁଁ ତ ହାତରେ ଲେଖିପାରିବି ନାହିଁ ? ସେ ପୁଣି କହିଲେ 'କୌଣସି ଛାତ୍ର କିମ୍ବା ଛାତ୍ରୀଙ୍କୁ ଆପଣ ଡାକି ଦିଅନ୍ତୁ ସେ ଲେଖିଦେବେ ।' ଏହିକଥା ମୋର ସାନପୁଅ ଶୁଣି କହିଲା ମୋ ଅଫିସ୍‌ରେ କାମ କରୁଥିବା ଚିନ୍ମୟୀ କାନୁନ୍‌ଗୋଙ୍କୁ ତୁମେ ଡାକିଦେବ ଏବଂ ସେ ଲେଖିଦେବେ । ଅନ୍ୟ ଉପାୟ ନ'ଦେଖି ମୁଁ ଡାକି ଦେବାକୁ ବାଧ୍ୟହେଲି । ସେହି ଦିନଠାରୁ ଆଜିପର୍ଯ୍ୟନ୍ତ ଲେଖିଆସୁଛି । ଏହା ସହିତ ଚାରୋଟି ବିଜ୍ଞାନ ସମ୍ବନ୍ଧୀୟ ଓଡିଆ ବହି ଲେଖି ପ୍ରକାଶ କରିସାରିଲିଣି । ବର୍ତ୍ତମାନ 'ତମେ ନିଜେ କରିପାରିବ' ନାମକ କେତେଖଣ୍ଡି ବହି ଲେଖା ଚାଲିଛି, ମୁଁ ସେଥିପାଇଁ ମୋ ଛାତ୍ର ନୃସିଂହ ଚରଣ ସାହୁଙ୍କୁ ଅଶେଷ ଧନ୍ୟବାଦ ଦେଉଛି ।

## ମୋ ଜୀବନର ସ୍ମୃତି ଓ ଅନୁଭୂତି

# ପିଲାଦିନ

ମୋର ହେତୁ ପାଇଲା ଦିନୁ ମୁଁ ଜାଣିଲି ମୋର ନନାଙ୍କ (ପିତା) ନାମ ଅଜୀବ ମିଶ୍ର। ମୋର ବୋଉର ନାଁ ଚନ୍ଦ୍ରମଣୀ ଦେବୀ । ମୋର ଦୁଇ ଜଣ ବଡ ଭଉଣୀ, ଜଣଙ୍କର ନାମ ଉତ୍କଳମଣି ଦେବୀ ଓ ଅନ୍ୟ ଜଣଙ୍କର ନାମ ନିଶାମଣି ଦେବୀ । ବଡ ନାନୀ ସେତେବେଳକୁ ବିବାହ କରି ସାରିଥିଲେ । ମୋର ସାନ ନାନୀ ବିଭାହୋଇ ନ'ଥିଲେ । ଆମେ ସମସ୍ତେ ନିମାପଡାର ପତିତପାବନଦେବଙ୍କ ପାଚେରୀ ନିକଟରେ ଥିବା ଗୋଟିଏ ଘରେ ରହୁଥିଲୁ।

ମୁଁ ନିମାପଡା ଲୋକଙ୍କ ଠାରୁ ଶୁଣିବାକୁ ପାଇଛି ନିମାପଡାର ନାମ ଆଗରୁ ନିମାଇଁପଡା ଥିଲା । କାରଣ ନିମାଇଁ ଗୋରାଙ୍ଗ ମହାପ୍ରଭୁ ନିମାପଡା ଆସିଥିଲେ । ତାଙ୍କ ନାମ ଅନୁସାରେ ନିମାଇଁପଡା କାଳକ୍ରମେ ନିମାପଡା ହୋଇ ଯାଇଥିଲା ।

ମୋର ଦଦେଇ(ବଡ ବାପା)ଙ୍କର ପୁତ୍ର ସନ୍ତାନ ନଥିଲା । ମୋର ନନାଙ୍କର ମଧ୍ୟ ବହୁଦିନ ପର୍ଯ୍ୟନ୍ତ ପୁତ୍ର ସନ୍ତାନଟିଏ ନ'ହେବାରୁ ସେ ପତିତପାବନ ଦେବଙ୍କର ପୂଜା ଅର୍ଚ୍ଚନା କରି ମୋତେ ପାଇଥିଲେ । ଏଣୁ ଦଦେଇ ଗୟାଶ୍ରାଦ୍ଧ କରି ଯାଇଥିଲେ । ସେଠାରେ ଥିବା ଏକ ବଟ ବୃକ୍ଷ ମୂଳରେ ତାଙ୍କ ସାନଭାଇର ଗୋଟିଏ ପୁତ୍ର ସନ୍ତାନ ପାଇଁ ମାନସିକ କରିଥିଲେ । ତେଣୁ ମୋର ଡାକ ନାମ ସେ ବଟୁ ରଖିଥିଲେ । ମୁଁ ଦେଠେଇ (ବଡବୋଉ)ଙ୍କୁ ଦେଖିନାହିଁ । ଦଦେଇ ସବୁବେଳେ ଆମ ଗ୍ରାମ ରାୟଚକ୍ରଧରପୁରରେ ରହୁଥିଲେ ।

ଆମ ଗ୍ରାମଟି ସାକ୍ଷୀଗୋପାଳ ଠାରୁ ଗବକୁଣ୍ଡ ଆଡକୁ ଗଲେ ତିନିମାଇଲି ଦୂରରେ ଭାର୍ଗବୀ ନଦୀ କୂଳରେ ଅବସ୍ଥିତ । ମୋ ଦଦେଇଙ୍କୁ ଗଞ୍ଜାପା ଖେଳିବାର ମୁଁ ବହୁବାର ଦେଖିଥିବାର ମନେଅଛି । ଗଞ୍ଜପା ତାସ ପରି ଗୋଟିଏ ଖେଳ । ଏଥିରେ ଚାରିଜଣ କିମ୍ବା ଛଅଜଣ ମିଶି ଖେଳି ପାରନ୍ତି । ସେଗୁଡିକ ତାସ ପରି ଚାରିକୋଣିଆ ନ ହୋଇ ଗୋଲ ଗୋଲ ହୋଇଥାଏ । ତାର ଏକ ପାଖରେ ବିଭିନ୍ନ ପ୍ରକାର ଚିତ୍ର ମଧ୍ୟ ଥାଏ । ଏବେ ସେ ଖେଳ କେଉଁଠି କେହି ଖେଳୁଥିବାର ମୁଁ ଦେଖୁନାହିଁ । ମୋର ଦଦେଇଙ୍କର ମୃତ୍ୟୁ ସମୟର ଘଟଣାଟି ଆଜି ପର୍ଯ୍ୟନ୍ତ ବି ମନେଅଛି ।

ମୋର ନନା, ନିମାପଡା ହାଟ ପାଖରେ ଥିବା ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ପ୍ରଧାନଶିକ୍ଷକ ଥିଲେ ଏବଂ ବାରଟଙ୍କା ଲେଖାଏଁ ମାସକୁ ଦରମା ପାଉଥିଲେ । ମୁଁ ସେତେବେଳେ ବୁଝିଥିଲି ନନା ଦାସବିଧାର ପୁରରେ ଥିବା ଏକ ସ୍କୁଲରେ ପ୍ରଥମେ ଚାକିରି କରି ମାସକୁ ଚାରିଟଙ୍କା ଲେଖାଏଁ ଦରମା ପାଉଥିଲେ । ଦାସବିଧାର ପୁରରୁ ଆସି ସେ ନିମାପଡାରେ ୩୫ ବର୍ଷକାଳ ଚାକିରି କରିଥିଲେ ଏବଂ ଶେଷ ପର୍ଯ୍ୟନ୍ତ ସେଇ ସ୍କୁଲରେ ପ୍ରଧାନ ଶିକ୍ଷକ ଭାବରେ କାମ କରୁଥିଲେ । ସେଇ ସ୍କୁଲରେ ଆଉ ଦୁଇଜଣ ଶିକ୍ଷକ ଥିଲେ । ଜଣଙ୍କର ନାମ ଶ୍ରୀ ଉଦୟନାଥ ଆଚାର୍ଯ୍ୟ ଓ ଅନ୍ୟ ଜଣଙ୍କର ନାମ ଶ୍ରୀ ନରସିଂହ ମିଶ୍ର । ଶିକ୍ଷକତା ବ୍ୟତୀତ ମୋର ନନା ଜଣେ ବିଶିଷ୍ଟ କବିରାଜ ଥିଲେ । ସେ ସବୁବେଳେ ଜଣେ ଦୁଇଜଣ ଲୋକଙ୍କୁ ପାଖରେ ରଖି ଔଷଧ ହାତରେ ତିଆରି କରୁଥିଲେ । ସଂଧ୍ୟାବେଳେ ଆଖ ପାଖ ଗାଁରୁ ବହୁତ ଲୋକ ଔଷଧ ନେବା ପାଇଁ ଆସୁଥିଲେ । ସେମାନେ ପଇସା ଦେବା କଥା ମୁଁ କେବେ ଜାଣିନାହିଁ । କିନ୍ତୁ ପରିବା ଓ ମାଛ ପ୍ରଭୃତି ଆଣିକରି ଘରେ ଦେଇ ଯାଉଥିଲେ । ଜଣେ ଦୁଇଜଣ ପିଲା, କବିରାଜି ମଧ୍ୟ ଶିଖୁଥିଲେ ।

ସେତେବେଳେ ତିନିଚାରି ଜଣ ପ୍ରାଇମେରୀ ସ୍କୁଲର ଛାତ୍ର, ଆମଘରେ ରହି ଖାଇ ପିଇ ପାଠ ମଧ୍ୟ ପଢୁଥିଲେ ଏବଂ ଘରର କାମଦାମ କରୁଥିଲେ । ମୋର ବୋଉ ସବୁଦିନ ସେଇ ତିନି ଚାରିଜଣ ପିଲାଙ୍କୁ ହାତରେ ରାନ୍ଧି ଖାଇବାକୁ ଦେଉଥିଲା । ଏହିପରି ଭାବରେ ସେମାନେ ପଢାପଢି ଶେଷକରି ଚାଲି ଯାଉଥିଲେ । ସେମାନଙ୍କ ମଧ୍ୟରୁ କେତେ ଜଣଙ୍କ ନାମ ଶ୍ରଦ୍ଧାରେ ଆଜି ଉଲ୍ଲେଖ କରିବାକୁ ଉଚିତ୍ ମନେ କରୁଛି । ଯଥା ରଟିଲୋ ଗ୍ରାମର ଶ୍ରୀ ଚିନ୍ତାମଣୀ ଆଚାର୍ଯ୍ୟ, ପାଟପୁରର ଶ୍ରୀ କୁଳମଣି ଦାଶ, ରେଣ୍ଟ ଶାସନର ଶ୍ରୀ ବାଂଛାନିଧି ଦାଶ ଓ ଭୁବନିପୁରର ଶ୍ରୀ ଦାମୋଦର ଦାଶ । ଏ ମାନଙ୍କ ମଧ୍ୟରୁ ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ ଉଚ୍ଚ ଶିକ୍ଷା ଲାଭକରି ହାଇସ୍କୁଲର ପ୍ରଧାନ ଶିକ୍ଷକ ହେଲେ । ସ୍ମାଉଟ୍ ଶିକ୍ଷକ ଭାବେ ନାମ କମାଇଥିଲେ । ଆମ ଘର ସହିତ ମଧ୍ୟ ସେମାନେ ଏପର୍ଯ୍ୟନ୍ତ ସମ୍ପର୍କ ରଖିଛନ୍ତି । ଶ୍ରୀ କୁଳମଣି ଦାଶ ନନାଙ୍କ ମୃତ୍ୟୁପରେ ଆମ ଔଷଧାଳୟ ନିଜେ ପରିଚାଳନା କରୁଥିଲେ । ପରବର୍ତ୍ତୀ କାଳରେ ମୋର ପାଠ ପଢିବା ପାଇଁ ପଇସା ଅଭାବ ପଡିବାରୁ ଔଷଧାଳୟଟି ତାଙ୍କୁ ବିକ୍ରି କରିଦେଇ ଥିଲି । ସେହି ଔଷଧାଳୟଟିର ନାମ ଥିଲା ପତିତପାବନ ଔଷଧାଳୟ ।

ଥରେ ମୋ ପାଇଁ ଖାଇବାକୁ ବାଢିଲା ବେଳେ ମୁଁ ଦେଖିଲି ତାର ଡାହାଣ ହାତଟିର ପାପୁଲିରେ ଗୋଟିଏ ବହୁଦିନର ବଡ ଦାଗ ରହିଛି । ମୁଁ ବୋଉକୁ ପଚାରିବାରୁ ସେ କହିଲା "ମୁଁ ନୂଆ ବିବାହ କରି ଆସିଥାଏ ଏବଂ ଗାଁରେ ଥାଏ । ଥରେ ଗାଁର ବାଡିପଟେଥିବା ଜୋଡକୁ ଖାଇବା ବାସନ ନେଇ ଧୋଇବାକୁ ଯାଇଥିଲି । ବାସନ ଧୋଇଲା ସମୟରେ ଏକ କୁମ୍ଭୀର ଛୁଆ ଆସି ମୋ ଡାହାଣ ହାତକୁ କାମୁଡି ଧରିଲା । ମୋତେ ଭୟଙ୍କର କଷ୍ଟ ହେଲା ଓ ମୁଁ ଚିତ୍କାର କରିବାରୁ କୁମ୍ଭୀର ଛାଡି ପଳାଇଗଲା । ମୋ ହାତରୁ ରକ୍ତ ବୋହିଯାଉ ଥାଏ ମୁଁ ଘରକୁ ଚାଲିଆସିଲି । କିଛିଦିନ ପରେ ସେହି ଘାଟି ଶୁଖିଗଲା ଓ ତାହାର ଦାଗଟି ଏପର୍ଯ୍ୟନ୍ତ ରହିଗଲା ।"

ଶ୍ରୀ ବାଂଛାନିଧି ଦାଶ ପ୍ରାଇମେରୀ ସ୍କୁଲରେ ଶିକ୍ଷକ ରୂପେ କାର୍ଯ୍ୟ କରୁଥିଲେ । ଶ୍ରୀ ଦାମୋଦର ଦାଶ ନିମାପଡା ହାଇସ୍କୁଲରେ ଶିକ୍ଷକ ଥିଲେ । ମୋର ପିଲା ଦିନର କେତୋଟି ଘଟଣା ପାଠକମାନଙ୍କୁ ଜଣାଉଛି । ସେଥିରୁ ପଞ୍ଚସ୍ତରି ବର୍ଷ ତଳର ସାମାଜିକ ଅବସ୍ଥା, ଗମନାଗମନ ବ୍ୟବସ୍ଥା, ଓ ପାରିପାର୍ଶ୍ୱିକ ଅବସ୍ଥା ବିଷୟରେ କିଛିଟା ଜାଣିହେବ । ନିମାପଡାରୁ ଆମ ଗାଁକୁ ଯିବାପାଇଁ ତିନି ଗୋଟି ବାଟ ଥିଲା । ଗୋଟିଏ ବାଟେ ରାମରଙ୍ଗ, ବାମନାଳ ଓ ଗବକୁଣ୍ଡ ଦେଇ ଆମଗାଁରେ ପହଞ୍ଚି ହୁଏ । କିନ୍ତୁ ରାସ୍ତା ବା ସଡକ ନ'ଥିଲା । ଧାନବିଲ ଭିତରେ ବାଟ ଚିହ୍ନି ଯିବାକୁ ପଡୁଥିଲା । ଏ ରାସ୍ତାରେ ପ୍ରାୟ ବାର କିମ୍ବା ପ୍ରାୟ ତେର ମାଇଲି (୨୦କି.ମି) ହେବ । ଅନ୍ୟ ଗୋଟିଏ ରାସ୍ତା ନିମାପଡାରୁ ବଳଙ୍ଗା ଦେଇ ପୁରୀ ଜଗନ୍ନାଥ ସଡକରେ ସାକ୍ଷୀଗୋପାଳ ଠାରୁ ଗବକୁଣ୍ଡ ଯିବା ରାସ୍ତାରେ ଯାଇ ଆମ ଗ୍ରାମରେ ପହଞ୍ଚ ହେଉଥିଲା । ଏହି ରାସ୍ତାର ଦୂରତା ପ୍ରାୟ ହେବ ଷୋହଳ ମାଇଲି (୨୫) କି.ମି. । ଏହି ବାଟରେ ବଳଙ୍ଗା ଠାରୁ ଭାର୍ଗବୀ ନଈ ବନ୍ଧରେ ଚାଲି ଗଲେ ଯାଇ ଗବକୁଣ୍ଡ ଠାରେ ନଈ ପାରି ହୋଇ ଆମ ଗ୍ରାମରେ ମଧ୍ୟ ପହଞ୍ଚ ହୁଏ । ଏହିବାଟେ ପ୍ରାୟ ୧୦ କି.ମି. କମ୍ ହେବ । ନିମାପଡା ଠାରୁ ବଳଙ୍ଗା ପର୍ଯ୍ୟନ୍ତ ମଝିରେ ମଝିରେ ରାସ୍ତା ଥିଲା ।

ଅନ୍ୟ ବାଟେ ନିମାପଡାରୁ ବାହାରି ଦହିଜଙ୍ଗ ଦେଇ ଧନୁଆ ଭାର୍ଗବୀ ନଦୀ ପାର

ହୋଇ ପିପିଲିରେ ପହଞ୍ଚିବ ଏବଂ ପିପିଲିରୁ ପୁରୀ ଜଗନ୍ନାଥ ସଡକ ଦେଇ ସାକ୍ଷୀଗୋପାଳରୁ ଗଡକୁଣ୍ଡ ଯାଇହେବ । ବର୍ଷାଦିନେ ନଈବଢିଥିଲା ବେଳେ ଶଗଡକୁ ମଧ୍ୟ ଡଙ୍ଗାରେ ପାର କରି ନେବାକୁ ପଡେ । ଏହି ରାସ୍ତାରେ ଆମ ଗ୍ରାମ, ନିମାପଡା ଠାରୁ ପ୍ରାୟ ୪୫ କିଲୋମିଟର ଦୂର ହେବ । ବାମନାଳ ରାସ୍ତାରେ ବର୍ଷାଦିନେ ଯାଇହେବ ନାହିଁ । କାରଣ ସବୁଆଡେ ପାଣିରେ ବୁଡିଥିବ । ବର୍ଷା ଦିନେ ବଳଙ୍ଗା ରାସ୍ତାରେ ଯିବା ବଡ କଷ୍ଟକର । ତଥାପି ଏହି ରାସ୍ତାରେ ବର୍ଷାଦିନେ ଯାଇହୁଏ । ମୁଁ ଦୁଇ ତିନି ଥର ରାମରଙ୍ଗ ବାଟେ ଗାଆଁକୁ ଚାଲିକରି ଯାଇଛି ।

- ଅନେକ ସମୟରେ ଆମ ମାନଙ୍କୁ ଗାଁକୁ କିମ୍ବା ପୁରୀ ଯିବାକୁ ପଡିଥାଏ । ସେଥିପାଇଁ ନନା ଗୋଟିଏ ଶଗଡିଆ ରଖିଥିଲେ । ତାକୁ ଖବର ଦେଇଦେଲେ ସେ ଆମକୁ ନେଇ ଗାଁରେ କିମ୍ବା ପୁରୀରେ ପହଁଚାଇ ଦିଏ । ଆମ କାମ ସରିବାପରେ ପୁଣି ଆମକୁ ନେଇ ଆସେ । ସେହି ଶଗଡ ମାଲିକର ନାମ ହେଉଛି ପରମୀ ସ୍ୱାଇଁ । ତାର ଘର ତରତାପଡା । ଥରେ ପରମୀ ସ୍ୱାଇଁର ଶଗଡରେ ବର୍ଷାଦିନେ ମୁଁ, ନନା ବୋଉ ଓ ଚିନ୍ତା ଭାଇନା ଗାଁକୁ ଯାଉଥିଲୁ, ସତ୍ୟବାଦୀରେ ମୋ ମାମୁଁଙ୍କ ଘର । ମୋ ମାମୁଁଙ୍କ ନାମ ଦୀନବନ୍ଧୁ ଦାଶ । ସେ ସେତେବେଳେ ସତ୍ୟବାଦୀ ହାଇସ୍କୁଲରେ ଶିକ୍ଷକ ଥିଲେ । ମାମୁଁଙ୍କ ଘରେ ସଂଧ୍ୟା ପୂର୍ବରୁ ପହଞ୍ଚି ପାରିଲୁ ନାହିଁ । ପଞ୍ଚନାୟିକିଆ ପାଖରେ ଆମକୁ ରାତି ନଅଟା କିମ୍ବା ଦଶଟା ହୋଇଗଲା । ଏହି ସମୟରେ ଦୁଇ ତିନି ଜଣ ଲୋକ ଆସି ଆମ ଗାଡିକୁ ଅଟକାଇଲେ ଏବଂ କହିଲେ ତୁମେ ଆଉ ଆଗକୁ ଯାଇପାରିବ ନାହିଁ, କାରଣ ବାଘ ମାଡିଛି । କାଲି ସକାଳ ହେଲେ ଯିବ । ଗାଡି ଭିତରୁ ନନା ପାଟି କରି କହିଲେ ଚିନ୍ତା। ବନ୍ଧୁକଟା କାଢିଲୁ । ବାଘ ମାଡିଛି ବୋଲି କହୁଛନ୍ତି । ମୁଁ ବନ୍ଧୁକଟା ଧରିଥାଏ । ବାଘ ଆସିଲେ ଦେଖାଯିବ । ସେମାନେ କହିଲେ ଆପଣଙ୍କର ତ ବନ୍ଧୁକ ଅଛି, ହଉ ଆପଣ ଯାଆନ୍ତୁ । ପ୍ରକୃତରେ ବନ୍ଧୁକ ନ'ଥିଲା, କେବଳ ଠେଙ୍ଗାଟିଏ ଥିଲା । ପରମୀ ସ୍ୱାଇଁ ଶଗଡ ଦଉଡାଇ ଦେଲା ଯେ ଆମେ ସତ୍ୟବାଦୀରେ ମାମୁଁ ଘରେ ଘଣ୍ଟାଏଁ ଭିତରେ ପହଞ୍ଚିଗଲୁ । ସେତେବେଳେ ପଞ୍ଚନାୟିକିଆ ପାଖରେ ଗୋଟିଏ ଜଙ୍ଗଲ ଥିଲା । ଆମେ ଏହିପରି ବୁଦ୍ଧିକରି ସେମାନଙ୍କଠାରୁ ଖସି ଚାଲି ଗଲୁ ।

- ନିମାପଡାରେ ଆମ ଘର ପାଖରେ ଜଣେ ପୋଲିସ୍ ଇନିସ୍‌ପେକ୍ଟର ସରକାରୀ ଘରେ ରହୁଥିଲେ । ତାଙ୍କର ନାମ ଶଚୀଶଚନ୍ଦ୍ର ବାନାର୍ଜୀ । ତାଙ୍କର ଗୋଟିଏ ଝିଅ, ନନାଙ୍କ ପ୍ରାଇମେରୀ ସ୍କୁଲରେ ପଢୁଥିଲା । ଥରେ ତାଙ୍କ ଝିଅଟି ସ୍କୁଲରେ ବଦମାସି କରିବାରୁ ନନା ଗୋଟାଏ ଚାପୁଡା ଦେଲେ । ସେ ସଙ୍ଗେ ସଙ୍ଗେ ଉତ୍ତର ଦେଇଥିଲା "ତୁମିକୋ ଜାନନା ଆମି ଇନିସ୍‌ପେକ୍ଟର କି ଛେଲେ" । ସେହିଦିନ ରାତିରେ ଆମେ ସବୁ ଘରେ ଥାଉ କିଏ ଜଣେ ଦୁଆରେ ପଣ୍ଡିତ ମହାଶୟ ବୋଲି ଡାକିଲେ । (ନନାଙ୍କୁ ପଣ୍ଡିତ ମହାଶୟ ବୋଲି ସମସ୍ତେ ଡାକନ୍ତି) ଦୁଆର ଖୋଲିବାରୁ ଜଣାଗଲା ସେ ହେଉଛନ୍ତି ପୋଲିସ୍ ଇନିସ୍‌ପେକ୍ଟର । ତାଙ୍କ ଝିଅକୁ ସାଙ୍ଗରେ ଧରି ଆସିଛନ୍ତି । ସେ ନନାଙ୍କୁ ଦେଖି ତାଙ୍କ ଝିଅକୁ କହିଲେ ପଣ୍ଡିତ ମହାଶୟଙ୍କ ଗୋଡ ଧରି କ୍ଷମା ମାଗିବାକୁ । ଝିଅଟି କ୍ଷମା ମାଗିଲା ଏବଂ ଇନିସ୍‌ପେକ୍ଟର ନିଜେ ମଧ୍ୟ ଝିଅର ଭୁଲ ପାଇଁ କ୍ଷମା ମାଗିଲେ । ଏହିଥିରୁ ଜଣା ପଡେ ସେତେବେଳେ ଶିକ୍ଷକମାନଙ୍କ ପ୍ରତି ଲୋକମାନଙ୍କର କିପରି ସମ୍ମାନବୋଧ ଥିଲା । ଇନିସ୍‌ପେକ୍ଟର ଶଚୀଶଚନ୍ଦ୍ର ବାନାର୍ଜୀଙ୍କ ଘରେ ତାଙ୍କର ଦୁଇ ପୁଅ ରହୁଥିଲେ । ବଡ ପୁଅଙ୍କର ନାମ

ସତ୍ୟବ୍ରତ ବାନାର୍ଜୀ, ସେ ନିମାପଡା ହାଇସ୍କୁଲରେ ପଢୁଥିଲେ । ତାଙ୍କ ବାପା ଶଚୀଶ ବାବୁ ତାଙ୍କ ପାଇ ଗୋଟିଏ ଗ୍ରୀନ୍ ମଡେଲ ରାଲେ ସାଇକେଲ ୮୦ ଟଙ୍କାରେ କିଣି ଦେଇଥିଲେ । ପରବର୍ତ୍ତୀ କାଳରେ ମୁଁ ଏମ୍.ଏସ୍‌ସି (M.Sc) ପଢିଲା ସମୟରେ ତାଙ୍କ ସହିତ ଦେଖା ହୋଇଥିଲା । ସେ ସେତେବେଳେ ମତେ ଚିହ୍ନି ପାରିଥିଲେ । ସେହି ସମୟରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ସେ ଚାକିରି କରୁଥିଲେ । ଇଉନିଭର୍ସିଟିରେ କୌଣସି କାମ ମୋର ଦରକାର ପଡୁଥିଲେ ସେ ମୋତେ ସାହାଯ୍ୟ କରୁଥିଲେ । ସେ ଅବସର ନେବାପରେ ମୁଁ ଆଉ ତାଙ୍କୁ ଦେଖି ନାହିଁ । ଶଚୀଶ ବାବୁଙ୍କର ଅନ୍ୟ ପୁଅଟିର ନାମ ହେଲା ମୃତ୍ୟୁଞ୍ଜୟ ବାନାର୍ଜୀ । ସେ ସେତେବେଳେ ବୋଧେ ହାଇସ୍କୁଲରେ ପଢୁଥିଲେ । ପରବର୍ତ୍ତୀ କାଳରେ ମୁଁ ପୁରୀ କଲେଜରେ ପଢୁଥିବା ସମୟରେ ପୁରୀ ସିଂହଦ୍ୱାର ନିକଟରେ ଥିବା ବାଟା ଦୋକାନକୁ ଗୋଟିଏ ଜୋତା କିଣିବା ପାଇଁ ଯାଇ ଦୋକାନରେ ଜୋତା କିଣୁଥିବା ସମୟରେ ସେ ମତେ ମୋ ନାଆଁ ଧରି ପଚାରିଲେ, ତମେ (ବଟୁଟି) ? ମୁଁ ହଁ କହିଲି । ସେ ଆମ ଘରର ସମସ୍ତଙ୍କ କଥା ପଚାରି ବୁଝିଥିଲେ । ମୁଁ ପୁରୀରୁ ଆସିଲା ପରେ ଅନେକ ଥର ସେହି ଦୋକାନରେ ତାଙ୍କୁ ଦେଖିଛି । କିନ୍ତୁ ଅବସର ନେବା ପରେ ତାଙ୍କୁ ଆଉ ଦେଖି ନାହିଁ ।

- ମୁଁ ଥରେ କେତୋଟି ସମବୟସ୍କ ପିଲାଙ୍କ ସାଙ୍ଗରେ ବର୍ଷା ଦିନେ ଆମଘର ପାଖ ବିଲ ମଝିରେ ଥିବା ଗୋଟିଏ କଦମ୍ବଗଛ ମୂଳକୁ ଫୁଲ ଆଣିବାକୁ ଯାଇଥିଲି । ମୁଁ ଆସିବା ପରେ ନନା ମୋତେ ବହୁତ ପିଟିଲେ । ମୁଁ କାନ୍ଦି କାନ୍ଦି ଶୋଇ ପଡିଲି । ନନା ଆଉ ରାତିରେ ଖାଇଲେନି । ମୁଁ ପରଦିନ ଶୁଣିବାକୁ ପାଇଲି, ନନା ବି କାନ୍ଦୁଥିଲେ । ପରଦିନ ସକାଳୁ ଉଠିଲା ବେଳକୁ ଦେଖିଲି ଆମ ଘରେ ଗୋଟିଏ କୁକୁର ଛୁଆ ନନା କେଉଁଠୁ ଆଣି ରଖିଛନ୍ତି । ମୁଁ ଆଗରୁ ଥରେ କୁକୁର ଛୁଆଟିଏ ଆଣି ଦେବାକୁ ତାଙ୍କୁ କହିଥିଲି । କିନ୍ତୁ ସେ ମୋତେ ମନା କରିଥିଲେ ଏବଂ କହିଥିଲେ କୁକୁର, ବ୍ରାହ୍ମଣ ଘରେ ରହେନି । ମୁଁ ମାଡ ଖାଇଲା ପରେ ନନାଙ୍କ ଉପରେ ଯେତିକି ରାଗିଥିଲି ତାପରେ ମୋ ପ୍ରତି ତାଙ୍କର ଥିବା ଅନାବିଳ ସ୍ନେହ ମନେ ପକାଇ ସେତିକି ଅନୁତାପ କରିଥିଲି । ମୁଁ ରାତିରେ ଶୋଇବା ବେଳେ ନନାଙ୍କ ପାଖେ ପ୍ରାୟ ଶୁଏ । ପ୍ରାୟ ସବୁଦିନ ସେ ମୋତେ କହନ୍ତି ଫୋଇପଡ ମୁଁ କହେ ଶୋଇପଡ ନନା । ଏବେ ତାଙ୍କର ସେହି କଥା ମୋର ମନେ ପଡିଗଲେ କେଜାଣି କାହିଁକି ମନରେ କୋହ ଆସିଯାଏ । -

- ଆମଘରେ ଥରେ ବହୁତ ଗୁଡିଏ ପାଣିକଖାରୁ କଟା ହେଲା ଏବଂ ଘିଅରେ ଭଜାହେଲା । ତାପରେ କେତେ ପ୍ରକାର ମସଲା ପଡି ଏକୋଇଶ ଦିନ ଓ ରାତି ସବୁ ସମୟରେ ଭଜା ହେଉଥାଏ । ପାଳି କରି ଜଣେ ଜଣେ ପିଲା ତାକୁ ଭାଜୁ ଥାଆନ୍ତି । ମୁଁ ପଚାରିଲି ଏ କଣ ହେଉଛି ? ନନା କହିଲେ, ଏ ଗୋଟିଏ ଔଷଧ ତିଆରି ହେଉଛି । ଏହାକୁ ଖାଇଲେ ଦୁର୍ବଳ ଲୋକମାନେ ମୋଟାସୋଟା ହୋଇଯାଆନ୍ତି । ଏହି ଔଷଧର ନାଆଁ ହେଉଛି 'କୁଷ୍ମାଣ୍ଡଖଣ୍ଡ ରସାୟନ ।' ଏହିପରି ଅନ୍ୟ କେତେକ ଔଷଧ ବହୁ ପ୍ରକାରେ ଓ ବହୁଦିନ ଧରି ତିଆରି ହେଉଥିଲା । ସେମାନଙ୍କ ମଧ୍ୟରୁ ଦୁଇ ତିନୋଟି ଔଷଧର ନାମ ମୋର ଏ ପର୍ଯ୍ୟନ୍ତ ମନେ ଅଛି । ଔଷଧର ନାଆଁ ଗୁଡିକ ହେଲା ସର୍ବଜ୍ୱରହର ଲୌହ, ଜୀର୍ଣ୍ଣଜିରକାଦି ମୋଦକ, ଛାଗଳାଦି ଘୃତ ଓ କୋଚିଲାଖାଇ ମୋଦକ ଇତ୍ୟାଦି ।

# ମୋ ଜୀବନର ସ୍ମୃତି ଓ ଅନୁଭୂତି

ମୋତେ ଦୁଇ ବର୍ଷ ହୋଇଥିଲା ବେଳେ ମୁଁ ନନା ଓ ବୋଉଙ୍କ ସାଙ୍ଗରେ ଗୋଦାବରୀ ନଦୀରେ ବୁଡ ପକାଇବା ପାଇଁ ଯାଇଥିଲି । ମୁଁ ବୋଉଙ୍କ ଠାରୁ ଶୁଣିଛି 'ମୁଁ କହୁଥିଲି ଅସଲ ପାଣି ଓ ଅସଲ ଭାତ ଖାଇବି' । ଅସଲ ପାଣି ମାନେ ସରବତ କିମ୍ବା ମିଶିରି ପଣା ଓ ଅସଲ ଭାତ ମାନେ ଖେଚଡି, ମିଠା ଭାତ । ମୁଁ ପିଲା ଥିବା ସମୟରେ ଜାଣିଛି ଆମ ଘରେ ସମସ୍ତେ ପ୍ରଚୁର ପରିମାଣରେ ମିଠା ଖାଉଥିଲେ । ଏପରିକି ପ୍ରାୟ ମାଟ୍ରିକ୍ ପାସ୍ କରିବା ପର୍ଯ୍ୟନ୍ତ ମୁଁ ପାନରେ ଚିନି ଖାଉଥିଲି । ନନା ସବୁଦିନ ସକାଳୁ ମିଶିରି ପାଣି ଏକ ଗ୍ଲାସ୍ ପିଉଥିଲେ । ଦିନେ ଦିନେ ରାତିରେ ଅନେକ ପ୍ରକାରର ମିଠା ଘରକୁ ଆଣନ୍ତି ବା କିଏ ଦେଇଯାଏ । ସେଦିନ ଆମେ ସମସ୍ତେ ଖାଲି ମିଠା ଖାଇ ରାତିରେ ଶୋଇପଡୁ । ପରବର୍ତ୍ତୀ କାଳରେ ନନାଙ୍କର ବହୁମୂତ୍ର ରୋଗରେ ମୃତ୍ୟୁ ହୋଇଥିଲା । ବୋଉକୁ ବହୁମୂତ୍ର ରୋଗ ହୋଇଥିଲା । ସାନନାନୀକୁ ଏବଂ ମୋତେ ମଧ୍ୟ ବହୁମୂତ୍ର ରୋଗ ଗ୍ରାସିଛି ।

ମୁଁ ପିଲାଦିନେ ନନାଙ୍କ ସାଙ୍ଗରେ କିମ୍ବା ଚିନ୍ତା ଭାଇନାଙ୍କ ସାଙ୍ଗରେ ଥାନା ପୋଖରୀକୁ ପ୍ରାୟ ସବୁଦିନ ଗାଧୋଇବାକୁ ଯାଉଥିଲି । ଥାନା ପୋଖରୀକୁ ଗାଧୋଇ ଯିବା ସମୟରେ ଥରେ ଗୋଟିଏ ଅମୃତଭଣ୍ଡା ଗଛ ପତ୍ରର ନଳୀକୁ ସାଙ୍ଗରେ ନେଇ ଥାନା ପୋଖରୀକୁ ଯାଇଥିଲି । ଗାଧୋଇବା ସମୟରେ ନଳୀଟିକୁ ହାତରେ ଧରି ପାଣି ଭିତରେ ହଲାଇବାରୁ ନଳୀର ଉପର ବାଟେ ପାଣି ବାହାରିଲା । ସେତେବେଳେ ମୋ ସାଙ୍ଗ ପିଲାମାନଙ୍କୁ କହୁଥିଲି ମୁଁ ମ୍ୟାଜିକ୍ ଦେଖାଉଛି ଦେଖ, କିପରି ପାଣି ଉପରେ ବାହାରୁଛି । ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଯାଉଥିଲେ । ପୋଖରୀଟି ଥାନା ଆଗରେ ଖୋଳା ହୋଇଥିଲା । ଏହା ବ୍ୟତୀତ ଦିନେ ଦିନେ ରେଣ୍ଟା ପୋଖରୀ କିମ୍ବା ନୂଆ ପୋଖରୀକୁ ଖରାଦିନେ ଗାଧୋଇବାକୁ ନନାଙ୍କ ସାଙ୍ଗରେ ଯାଉଥିଲି । କାରଣ ଥାନା ପୋଖରୀ ଖରାଦିନେ ପ୍ରାୟ ଶୁଖିଯାଏ । ଥାନା ପୋଖରୀର ପାଣି ବଡ ପରିଷ୍କାର । ସେଥିରେ ଛୋଟ ଛୋଟ ଜରାତି ମାଛ ନିର୍ଭୟରେ ଗାଧୋଇବା ବେଳେ ଗୋଡକୁ କାମୁଡନ୍ତି । କିନ୍ତୁ ସେ କାମୁଡିବା କାଟେନି, ଭଲ ଲାଗେ । ତାର କାରଣ ଥାନା ପୋଖରୀକୁ ବାହାର ଲୋକ କେହି ଗାଧୋଇବାକୁ କି ମାଛ ଧରିବାକୁ ଯାଆନ୍ତି ନାହିଁ । କାର୍ତ୍ତିକ ପୂର୍ଣ୍ଣମୀ ଦିନ ଆମେ ସମସ୍ତେ ନୂଆ ପୋଖରୀରେ ଡଙ୍ଗା ଭସାଇବା ପାଇଁ ଯାଉଥିଲୁ । ନୂଆ ପୋଖରୀଟି ବହୁ ଦିନ ପୂର୍ବେ ଖୋଳା ହୋଇଥିଲା । ଏହା ସାଧାରଣ ପୋଖରୀ ଠାରୁ ବହୁତ ବଡ । କିନ୍ତୁ ତାହାର ନାମ ସବୁଦିନ ନୂଆ ପୋଖରୀ ବୋଲି ଏବେ ମଧ୍ୟ ରହିଛି ।

ଆଶ୍ୱିନ ମାସ ପ୍ରଥମ ପନ୍ଦର ଦିନ, ନନା ସବୁଦିନ ବସୁଦେବ କରନ୍ତି ଓ ସେହି ମାସ ଅମାବାସ୍ୟା ଦିନ ମହାଳୟା ଶ୍ରାଦ୍ଧ କରନ୍ତି । ମୁଁ ନନାଙ୍କ ମୃତ୍ୟୁପରେ ଏହି ଶ୍ରାଦ୍ଧ ଅନେକ ବର୍ଷ ପର୍ଯ୍ୟନ୍ତ କରିଛି । ସେତେବେଳେ ନିମାପଡାରେ ଦଶହରା ଦିନ ଦୁର୍ଗାପୂଜା ବିଶେଷ ଭାବରେ ପାଳନ କରାଯାଉଥିଲା । କୁମାର ପୂର୍ଣ୍ଣମୀଦିନ ଛୋଟ ଛୋଟ ଝିଅମାନେ ଜହ୍ନିଫୁଲ ଠୋଠ କହି ସେ ଫୁଲକୁ ଚାଳଘର ଉପରକୁ ଫୋପାଡନ୍ତି ଏବଂ ଜଣ ଗୋଟେ ବଗ କୁହନ୍ତି । ତାହା ମୋର ମନେ ନାହିଁ । ସେହିଦିନ ସନ୍ଧ୍ୟାବେଳେ ମାମୁଁ ଘର ଦେଇଥିବା ନୂଆ ଲୁଗା ପିନ୍ଧି ଆମଠାରୁ ବୟସରେ ବଡ ମାନଙ୍କୁ ନମସ୍କାର କରି ପଇସା ମାଗୁ । ଯିଏ ଯାହା ପଇସା ଦିଅନ୍ତି ତାକୁ ଆମେ ମନଇଚ୍ଛା

ଖର୍ଚ୍ଚ କରୁ । କୁମାର ପୂର୍ଣ୍ଣମୀ ଦିନ ଗୋଟିଏ ଖୁବ୍ ଲମ୍ବା ବାଉଁଶର ସରୁ ପାଖରେ ଗୋଟିଏ ପୁଲି୍ ଲଗା ଯାଇଥାଏ । ପୁଲି୍ ଉପର ଦେଇ ଗୋଟିଏ ଲମ୍ବା ଦଉଡି ଲାଗିଥାଏ । ଦଉଡିର ଲମ୍ବ ବାଉଁଶର ଲମ୍ବର ପ୍ରାୟ ଦୁଇଗୁଣ ହେବ । ପହିଲି କାର୍ତ୍ତିକ ଦିନ ସକାଳେ ବାଉଁଶଟି ପୋତା ହୁଏ । ଦଉଡିର ଗୋଟିଏ ପାଖ ବାଉଁଶରେ ବନ୍ଧା ହୁଏ । ଅନ୍ୟ ପାଖରେ ଗୋଟିଏ ଶିକା ବନ୍ଧା ହୋଇଥାଏ । ଗୋଟିଏ ମାଟି ହାଣ୍ଡିରେ କେତେଗୁଡିଏ କଣା କରାଯାଇ ଥାଏ । ସେହି ମାଟି ହାଣ୍ଡିଟିକୁ ଶିକାରେ ରଖାଯାଏ । ସନ୍ଧ୍ୟାବେଳେ ଗୋଟିଏ ଦୀପରେ ଘିଅ ଦିଆଯାଇ ସେଥିରେ ନିଆଁ ଲଗାଇ ଦିଆଯାଏ । ଜଳୁଥିବା ଦୀପକୁ ମାଟି ହାଣ୍ଡିରେ ରଖି ତାହା ଉପରେ ଗୋଟିଏ ସରା ଘୋଡାଇ ଦିଆଯାଏ । ଦଉଡିର ଅନ୍ୟ ମୁଣ୍ଡ ଟାଣିଲେ ହାଣ୍ଡିଟି ଆସ୍ତେ ଆସ୍ତେ ଉପରକୁ ଉଠିଯାଏ । ଦୀପଟି ରାତିଯାକ ତା ଭିତରେ ଜଳୁଥାଏ । ଏହିପରି ସବୁଦିନ ସନ୍ଧ୍ୟା ବେଳେ ଦୀପ ଦିଆଯାଏ । ଏହାକୁ ଆକାଶ ଦୀପ କୁହାଯାଏ । କାହିଁକି ଦିଆଯାଏ ମୁଁ ଜାଣେ ନାହିଁ ।

କାର୍ତ୍ତିକ ଅମାବାସ୍ୟା ଦିନକୁ ଆମେ ସବୁ ଅପେକ୍ଷା କରିଥାଉ । କିପରି ଏହି ଦିନ ଆସିଲେ ବାଣ ମରାଯିବ । ଅମାବାସ୍ୟା ଦିନ ନନା ଶ୍ରାଦ୍ଧ କରନ୍ତି । ସଂଧ୍ୟା ହେଲେ ଘର ପିଣ୍ଡାରେ ଦୀପ ଲଗାଯାଏ ଏବଂ ବାଣ ମରାଯାଏ । ରାତିରେ କାଉଁରିଆ ଜଳାଯାଏ । ତାପରେ ସମସ୍ତେ ଜଳା କାଉଁରିଆରେ ପିକା କରି ଖାଆନ୍ତି । ସେତେବେଳେ କହୁଥିଲେ କାଉଁରିଆରେ ପିକାକରି ଖାଇଲେ ଦୃଷ୍ଟି ଶକ୍ତି ଭଲ ହୁଏ ବୋଲି ବିଶ୍ୱାସ ଥିଲା । କାର୍ତ୍ତିକ ପୂର୍ଣ୍ଣମୀ ଦିନ କଦଳୀ ବାହୁଙ୍ଗାରେ ଡଙ୍ଗା ତିଆରି ହୋଇଥାଏ । ତା ମଝିରେ ଖଡିକାର ଗୋଟିଏ ମୁଣ୍ଡରେ ତୁଳା ଗୁଡାଇ ସେଥିରେ ଘିଅ ଦେଇ ବତୀଟିଏ ରଖାଯାଏ । ତାପରେ ବଡି ସକାଳୁ ଆମେ ସମସ୍ତେ ନୂଆ ପୋଖରୀକୁ ଗାଧୋଇ ଯାଉ । ଗାଧୋଇ ସାରି ଦୀପକୁ ଜଳାଇ ଡଙ୍ଗା ଭିତରେ କିଛି ପାନ ଗୁଆ ରଖି ଡଙ୍ଗାଟିକୁ ପୋଖରୀ ମଝିକୁ ଭସାଇ ଦେଉ । ସେ ବତୀ ଆଲୋକ ପାଣି ଉପରୁ ପ୍ରତିଫଳିତ ହୋଇ ସୁନାର ଖମ୍ବ ଭଳି ଦେଖାଯାଏ । ସକାଳ ହେଲେ ମହାଦେବ ମନ୍ଦିରକୁ ଦର୍ଶନ କରିବାକୁ ଯାଉ ।

ମାର୍ଗଶୀର ମାସରେ ଛୋଟ ଛୋଟ ଝିଅମାନେ ସବୁ ଛୋଟ କଣ୍ଟା ଗଛ ଦ୍ୱାରା ଝାଡୁ ତିଆରି କରି ଦାଣ୍ଡ ଓଳାଉ ଥାଆନ୍ତି । ସେତେବେଳେ କାହିଁକି ଓଳାଉ ଥାଆନ୍ତି ମୁଁ ଜାଣି ନ'ଥିଲି ଏବେ ମଧ୍ୟ ଏହାର ରହସ୍ୟ ଜାଣି ନାହିଁ । ମାର୍ଗଶୀର ମାସ ଗୁରୁବାର ଦିନ ସକାଳୁ ବୋଉ ଗାଧୋଇ ଘରେ ଝୋଟି ଦିଅନ୍ତି ଓ ମାଣ ବସାଇ ଲକ୍ଷ୍ମୀ ପୂଜା କରନ୍ତି । କେତେ ପ୍ରକାରର ପିଠାପଣା କରି ସବୁ ଗୁରୁବାର ଦିନ ପୂଜା କରାଯାଏ । ଗୋଟିଏ ଦିନ ନନା ପତିତପାବନଦେବଙ୍କ ଦେଉଳରେ ପହିଲି ଭୋଗ ଲଗାଇ ଆମ ଘରକୁ ଆଣନ୍ତି । ତାପରେ ସରସ୍ୱତୀ ପୂଜା କେବେ ପଡିବ ଆମେ ସବୁ ପିଲାମାନେ ଦିନ ଗଣୁଥାଉ । ସରସ୍ୱତୀ ପୂଜା ଦିନ ସକାଳୁ ଅନ୍ୟମାନଙ୍କ ସାଙ୍ଗରେ ଯାଇ ଫୁଲ ତୋଳି ଆଣୁ । ନିମାପଡା କଚେରୀ ପାଖରେ ଗୋଟିଏ ନଳକୂପ ସର୍ବ ସାଧାରଣଙ୍କ ପାଇଁ ଥାଏ । ଏହି ନଳକୂପରେ ଗାଧୋଇ ଘରେ ଆସି ସରସ୍ୱତୀଙ୍କ ଫଟୋ ଟେବୁଲ୍ ଉପରେ ଥୋଇ ତାହା ପାଖରେ ପଢା ବହି ସବୁ ସଜାଡି କରି ରଖୁ । ନନା ସରସ୍ୱତୀଙ୍କ ପୂଜା କରି ଦିଅନ୍ତି । ପରେ କିଛି ଭୋଗ ଖାଇ ନୂଆଲୁଗା ପିନ୍ଧି ସ୍କୁଲକୁ ଯାଉ । ସ୍କୁଲରେ ମଉଜ କରି ଭୋଗ ଖାଇ ଘରକୁ ଫେରୁ ।

- ତାପର ଦିନ ଆମ ପିଲା ମାନଙ୍କର କାମ ହେଲା ନିମାପଡା ରାସ୍ତାରେ କେତେ ଖଣ୍ଡ ମଟର ଗାଡି ଚନ୍ଦ୍ରଭାଗା ଯାଉଛି ତାହା ଗଣିବା । ପ୍ରାୟ ୨୦୦ ରୁ ୩୦୦ ଖଣ୍ଡଯାଏ । ମାଘ ସପ୍ତମୀ ଦିନକୁ ଆମେ ମଧ୍ୟ ଅପେକ୍ଷା କରିଥାଉ । ସେ ଦିନ ଥାନା ପଡିଆରେ ଗୋଟିଏ ମେଳା ହୁଏ । ସେଠାରେ ଦୋକାନ ବଜାର ବସେ ଏବଂ ରାତିରେ ଭାଣପୁରରୁ ଗୋଟିଏ ଯାତ୍ରା ଦଳ ଆସି ଥାନା ପଡିଆରେ ଯାତ୍ରା କରନ୍ତି । ଯାତ୍ରା ଦେଖୁ ଦେଖୁ ରାତିପାହିଯାଏ । ଥରେ ସୁଦାମା ଦାରିଦ୍ର୍ୟ ଭଞ୍ଜନ ନାମକ ଗୋଟିଏ ନାଟକ ହୋଇଥିଲା । ଯାତ୍ରାଟି ଏତେ ଭଲ ଲାଗିଥିଲା ଯେ ଏ ପର୍ଯ୍ୟନ୍ତ ତାହାର ବିଷୟ ବସ୍ତୁ ମନେ ଅଛି । ତାପରେ ଦୋଳପୂର୍ଣ୍ଣମୀ ଆସେ । ସେଦିନ ସକାଳୁ ନନା ବରାଦ କରି ଆମ ଜକ୍ଷିର ପେନ୍ଥା ଆଣି ଥାଆନ୍ତି । ତାହାକୁ ଦିଅଁଙ୍କ ପାଖରେ ରଖି ନନା ପୂଜା କରନ୍ତି । ସେଦିନ ବୋଉ ପୂଜା କରିବା ପାଇଁ ପିଠା ପଣା କରିଥାଏ । ସେତେବେଳେ ବଡ ଲୋକମାନେ ଓ ପିଲାମାନେ ବି ଫଗୁ ବୋଳା ବୋଳି ହେଉଥିଲେ । ତାପର ଦିନ ହୋଲି ଖେଳନ୍ତି ଅଶୋକାଷ୍ଟମୀର ୨୦ କିମ୍ବା ୨୫ ଦିନ ପୂର୍ବରୁ ନିମାପଡାରେ ଆମ ଘରେ ବାଣ ତିଆରି ହୁଏ । ଆମ ଘରେ ଯେଉଁ ବାଣ ତିଆରି ହୁଏ ତାହା ଦେଖିବାକୁ ସମସ୍ତଙ୍କୁ ଭଲ ଲାଗେ । ପ୍ରତି ବର୍ଷ ନନା ନୂଆ ନୂଆ ପ୍ରକାରର ବାଣ ତିଆରି କରନ୍ତି । ଉଦାହରଣ ସ୍ୱରୂପ ଗୋଟିଏ ତାର ବନ୍ଧା ଯାଇ ତା ଦେହରେ ଗୋଟିଏ ରଥ ରଖାଯାଇଥାଏ । ତାହାର ଦେହରେ ନିଆଁ ଲଗାଇ ଦେଲେ ରଥଟି ପ୍ରାୟ ଦୁଇ ଶହ ମିଟର ଦୂରକୁ ଚାଲି ଯାଏ । କିଛି ସମୟ ରହିଲା ପରେ ସେଥିରେ ମନକୁ ମନ ନିଆଁ ଲାଗିଯାଏ । ତାହା ପୁଣି ବିପରୀତ ଦିଗରେ ଆସି ଯେଉଁଠାରୁ ଛଡା ଯାଇଥିଲା ସେହିଠାରେ ପହଁଚି ଯାଏ । ଏହିପରି ଭାବରେ ଦୁଇ ତିନି ଥର ଯିବା ଆସିବା ପରେ ତାହା ବନ୍ଦ ହୋଇଯାଏ । ବେଳେ ବେଳେ ରେଳଗାଡି ତିଆରି ହୋଇଥାଏ । ରେଳ ଗାଡି ଚାଲିବା ପାଇଁ ଲୁହା ଲାଇନ୍ ବଦଳରେ ଦୁଇଟି ତାର ମାଟି ଠାରୁ ତିନି ଚାରି ଫୁଟ ଉଚ୍ଚରେ ବନ୍ଧା ହୋଇଥାଏ । ସେ ତାର ଉପରେ ରେଳଗାଡିଟି ରଖା ହୋଇଥାଏ । ସେଥିରେ ନିଆଁ ଲଗାଇ ଦେଲେ ଦୁଇଟି ତାର ଉପରେ ପ୍ରାୟ ୨୦୦ ମିଟର ଚାଲିଯାଇ ବାଣଟି ପୁଣି ଫେରିଆସେ । ଏହିପରି ବିଭିନ୍ନ ପ୍ରକାରର ବାଣ ନିମାପଡାରେ ତିଆରି କରି ଗାଁକୁ ନିଅନ୍ତି । -

- ଅଶୋକାଷ୍ଟମୀ ଦୁଇ କିମ୍ବା ତିନି ଦିନ ଥାଏ, ଆମେ ସମସ୍ତେ ଶଗଡରେ ଆମ ଗାଁକୁ ଯାଉ । ସେତେବେଳକୁ ଖରାଦିନିଆ ରାସ୍ତା ହୋଇ ଯାଇଥାଏ ଆମେ ରାମରଙ୍ଗ, ବାମନାଳ ଓ ଗବକୁଣ୍ଡ ଦେଇ ଆମ ଗାଁରେ ମାତ୍ର ବାର ଘଣ୍ଟାରେ ପହଁଚି ଯାଉ । ଅଶୋକା ଅଷ୍ଟମୀ ରାତିରେ ଦିଅଁ ଆସି ଆମ ଘର ଆଗରେ ଆସ୍ଥାନ ଜମାନ୍ତି ଏବଂ ଭୋଗ ରାଗ କରାଯାଏ । ଭୋଗ ଖାଇବା ପରେ ବାଣମରା ଆରମ୍ଭ ହୁଏ । ଆମପରି କେତେଜଣ ମଧ୍ୟ ଅଲଗା ଅଲଗା ବାଣ ତିଆରି କରିଥାନ୍ତି । ଗାଁର ଅନ୍ୟମାନେ ଚାନ୍ଦା ଦେଇ ଏକାଠି ବାଣ ତିଆରି କରାଇ ଥାନ୍ତି । ଅଶୋକା ଅଷ୍ଟମୀ ପରଦିନ ରାମ ନବମୀ ପଡେ ଏବଂ ରାମ ନବମୀ ଦିନ ମଧ୍ୟ ମୋର ଜନ୍ମ ଦିନ ପାଳିତ ହୋଇଥାଏ । ତାପର ଦିନ ପ୍ରାୟ ଆମେ ନିମାପଡା ଫେରି ଆସୁ । -

- ପଣାସଂକ୍ରାନ୍ତି ଦିନ ସକାଳୁ ତୁଳସୀ ଗଛ ପାଖରେ ଦୁଇଟି ଖୁଣ୍ଟ ପୋତା ଯାଏ । ସେ ଦୁଇ ଖୁଣ୍ଟକୁ ଛୋଟ ଜଣି ଦ୍ୱାରା ବାନ୍ଧି ଦିଆଯାଏ ଏବଂ ଜଣି ମଝିରେ ଗୋଟିଏ ଛୋଟ ଶିକା ତୁଳସୀ ଗଛ

ଉପରକୁ ବନ୍ଧାଯାଏ । ଶିକା ଭିତରେ ଗୋଟିଏ ମାଟି ଘଡି ରଖାଯାଏ । ମାଟି ଘଡିର ତଳେ ଗୋଟିଏ ଛୋଟ କଣା କରାଯାଏ । ଘଡିର କଣାରେ ଏକ କୁଶ ଖୋସି ଦିଆଯାଏ ଏବଂ ସେଥିରେ ପଣା ଦିଆଯାଏ । ସେହି ପଣା ଟୋପା ଟୋପା ହୋଇ ତୁଳସୀ ଗଛ ଉପରେ ପଡୁଥାଏ । ସଂଧ୍ୟା ବେଳକୁ ଘରେ ପଣା ତିଆରି ହୋଇଥାଏ । ତାହା ଦିଅଁକୁ ଭୋଗ ଲାଗିଲା ପରେ ଆମେ ସମସ୍ତେ ପିଉ । ତାପର ଦିନ ସକାଳେ ଆମ ଔଷଧ ଘର ପିଣ୍ଡା ପାଖରେ ଏକ ଛାମୁଣ୍ଡିଆ ହୁଏ । ଦୁଇ ତିନୋଟି ବଡ ହାଣ୍ଡିରେ ଦହି ପଣା ରଖା ଯାଇଥାଏ । ସେଇଠି ଜଣେ ଲୋକ ଅନ୍ୟ ଲୋକମାନଙ୍କୁ ଅନ୍ୟ ଗ୍ଲାସରେ ପଣା ଭର୍ତ୍ତିକରି ଦିଅନ୍ତି । ଯିଏ ଆସନ୍ତି ତାଙ୍କୁ ଦିଅନ୍ତି । ସେମାନେ ପଣା ପିଇ ଗ୍ଲାସଟିକୁ ଧୋଇଦେଇ ଯାଆନ୍ତି । ଏହିପରି ଭାବରେ ମାସକ ଯାକ ବାଟରେ ଯାଉଥିବା ଲୋକଙ୍କୁ ପଣା ବଣ୍ଟାଯାଏ । ଏହାଦ୍ୱାରା ନିଜନିଜ ଭିତରେ ସ୍ନେହ, ଶ୍ରଦ୍ଧା ତଥା ଆପଣାର ଭାବ ବିନିମୟ ହୋଇଥାଏ ।

ଅକ୍ଷୟ ତୃତୀୟା ଦିନ କେତେଗୁଡିଏ ଘଡି ପତୁଳି କିଣାଯାଇ ଏବଂ ସେଗୁଡିକରେ ଧଳା ରଙ୍ଗ ଦିଆଯାଏ । ଅକ୍ଷୟ ତୃତୀୟା ଦିନ ସେଥିରେ ମୁଢି ଖଇ ଭର୍ତ୍ତି କରାଯାଇ ପିଲାଙ୍କୁ ବଣ୍ଟାଯାଏ । ଏହିପରି ପରମ୍ପରା କାହିଁକି ରହିଛି ତାହା ମୁଁ ଜାଣେନାହିଁ । ତାପରେ ପଡେ ସାବିତ୍ରୀ ଅମାବାସ୍ୟା । ସେହିଦିନ ଶିଳପୁଆର ଗୋଟିଏ ମୁଣ୍ଡରେ ବହଳିଆ ବଟା ହଳଦୀ ଲଗାଇ ତା ଦେହରେ ବୋଉ ଆଖି, କାନ, ନାକ ତିଆରି କରେ । ନିଜର ଗହଣାଟକ ସଫା କରି ସାବିତ୍ରୀଙ୍କ ଦେହରେ ଲଗାଏ ଓ ପୂଜା କରେ । ଫଳ, ମୁଗ, ବତୁରା ସାଗୁ ପ୍ରଭୃତି ଖାଆନ୍ତି । ସାବିତ୍ରୀ ଅମାବାସ୍ୟା ପରେ ଶୀତଳ ଷଷ୍ଠୀ ପଡେ । ଶୀତଳ ଷଷ୍ଠୀରେ ନିମାପଡାରେ ସେମିତି କିଛି ଯାତ୍ରା ହୁଏ ନାହିଁ । କିନ୍ତୁ ମୁଁ ଜାଣିଛି ଆମ ବଡ ନାନୀ ଗାଁ ବୀର ନରସିଂହ ପୁରରେ ଶୀତଳ ଷଷ୍ଠୀ ଯାତ୍ରା ବହୁ ଆଡମ୍ବରରେ ପାଳିତ ହୁଏ ଓ ରାତିରେ ବାଣ ମରାଯାଏ । ଏହାପରେ ଦେବ ସ୍ନାନ ପୂର୍ଣ୍ଣିମା, ଶ୍ରୀ ଗୁଣ୍ଡିଚା ଯାତ୍ରା ଏହିପରି ଅନେକ ପର୍ବ ପର୍ବାଣି ପଡେ । ସେସବୁ ଆମଘରେ ପାଳନ ହୁଏନାହିଁ । ତେଣୁ ସେ ବିଷୟରେ ମୁଁ କିଛି ଲେଖୁ ନାହିଁ । ଜନ୍ମାଷ୍ଟମୀ ଦିନ ବୋଉ ଗୋଟିଏ ପ୍ରକାରର ରାଶି ଲଡୁ କରେ । ସେଇଟା ମୋତେ ଭାରି ଭଲ ଲାଗେ । ଗୁଡ ପାଗ ହୋଇ ଚୋପାଛଡା ରାଶି ଓ କୋରା ନଡିଆ ସେଥିରେ ପଡେ । ତାହା ଅନବରତ ଘଣ୍ଟା ହେଉଥାଏ । ତାପରେ ମସଲା ମସଲି ପଡେ ଏବଂ ଗୋଲ ଗୋଲ ଗୋଳା ହୁଏ । ତାପର ଦିନ ନନ୍ଦଉତ୍ସବ ପଡେ । ସେହିଦିନ ଆମ ଘର ପାଖରେ ଗୋପିଆ ବୋଲି ଜଣେ ବୁଢା ଲୋକ ନନ୍ଦ ଭାବରେ ସଜହୁଏ । ନିମାପଡା ପାଖ ଗାଁ ଗୁହାଳ ପଡିଆର ଜଣେ ଯୁବକ ଲୋକ ନନ୍ଦରାଣୀ ହିସାବରେ ସଜା ହୋଇଥାଏ । ନନ୍ଦ ଏବଂ ନନ୍ଦରାଣୀ ମିଶି ନିମାପଡାରେ ଦହି ବାଣ୍ଟନ୍ତି । ଏହି ପ୍ରକାରେ ମୁଁ ମୋ ହେତୁ ପାଇଲା ଦିନୁ ନିମାପଡା ଛାଡିବା ପର୍ଯ୍ୟନ୍ତ ଦେଖି ଆସୁଥିଲି । ତାପରେ ବାଲି ତୃତୀୟା ପଡେ । ଏହିଦିନ ବୋଉ ନିର୍ଜଳା ଉପବାସ କରେ । ରାତିରେ ମଧ୍ୟ କିଛି ଖାଏ ନାହିଁ । ସକାଳ ହେଲେ ଗଣେଶ ଚତୁର୍ଥୀ ପଡେ । ଗଣେଶ ଚତୁର୍ଥୀ ଦିନଟି ସରସ୍ୱତୀ ପୂଜା ପରି ପାଳନ କରାଯାଏ ।

ଆମ ଘରେ ଗୋଟିଏ ପରମ୍ପରା ଥିଲା । ଯେ କୌଣସି ଛୋଟ ଛୋଟ ପିଲା ପାଠ ପଢାପଢି ଆରମ୍ଭ କରିବା ପୂର୍ବରୁ ତାର କାନ ଫୋଡା ଦିଅଁଙ୍କ ପାଖରେ ହୁଏ । ଆମେ ସମସ୍ତେ

(ନନା,ବୋଉ) ଆମ ଗ୍ରାମ ରାଏଚକ୍ରଧରପୁର ଗଲୁ । ସେଠାରେ ନୀଳକଣ୍ଠ ମହାଦେବଙ୍କ ନିକଟରେ ମୋର କାନ ଫୋଡା ହେଲା ଏବଂ ତାପରେ ଖଡି ଛୁଆଁ ହେଲା । ସେହି ଗାଁରେ ଜଣାପଡିଲା ମୁଁ ଠିକ୍ ଭାବରେ ଚାଲିପାରୁ ନାହିଁ । ମୋର ଗୋଟିଏ ଗୋଡ କିପରି ମୋ ଅଜାଣତରେ ସାମାନ୍ୟ ଛୋଟାଥିଲା ଜଣାଗଲା । କେଉଁ ଗୋଡ ମୁଁ ବର୍ତ୍ତମାନ ତାହା କହିପାରିବିନି । ତାପରେ ଆମେ ନିମାପଡା ଆସିଲୁ । ନିମାପଡାରେ ଜଣେ ବୁଢା ପଣ୍ଡିତଙ୍କୁ ପାଠ ପଢାଇବା ପାଇଁ ନିଯୁକ୍ତ କରାଗଲା । ତାଙ୍କ ବୟସ ସେତେବେଳେ ପ୍ରାୟ ଷାଠିଏ ଠାରୁ ସତୁରୀ ଭିତରେ ହେବ । କିନ୍ତୁ ତାଙ୍କ ନାଆଁ ମୁଁ କହିପାରିବି ନାହିଁ । ସେ ମୋତେ ପଢାଇ ବାକୁ ପ୍ରାୟ ୧୯୩୬ ମସିହାର ଶେଷ ଭାଗରେ ଆସୁଥିଲେ । ମୋର ଜନ୍ମଦିନ ରାମନବମୀ କିମ୍ବା ତା ପୂର୍ବଦିନ ଅଶୋକା ଅଷ୍ଟମୀ ତିଥିରେ ପଡେ । ସେତେବେଳେ ଜନ୍ମଦିନରେ ଏବପରି କେକ୍ କଟା ହେଉ ନ' ଥିଲା । ଗୋଟିଏ ପରିଷ୍କାର ଘରେ ଝୋଟି ଦେଇ ଗୋଟିଏ ସୁନ୍ଦର ଚିତ୍ର କରାଯାଏ । ଚିତ୍ରଟି ପ୍ରାୟ ମୋ ବୋଉ କାଟିଥାଏ । ଆସିଥିବା ନୂଆ ଲୁଗା ପିନ୍ଧି ମୁଁ ସେଠାରେ ବସେ । ଦୁବ ବରକୋଳି ପତ୍ର ଗୋଟିଏ କନାରେ ବନ୍ଧାହୋଇ ମୋ ମୁଣ୍ଡ ଉପରେ ଥୁଆ ହୁଏ । ମୋ ଠାରୁ ବଡ ସ୍ତ୍ରୀ ଲୋକମାନେ ମୋତେ ବନ୍ଦାପନା କରନ୍ତି । ତାପରେ ଗୋଟିଏ ବ୍ରାହ୍ମଣ ଆସି ସତ୍ୟନାରାୟଣ ପୂଜା କରନ୍ତି । ଏହି ପରି ଭାବରେ ଜନ୍ମ ଦିନଟି କଟିଯାଏ । ମୋତେ ଷୋହଳ ବର୍ଷ ପୁରିବା ପର୍ଯ୍ୟନ୍ତ ବୋଉ ଏକା ପାଳନ କରୁଥିଲା । ମୁଁ ପରେ ଜାଣିବାକୁ ପାଇଲି ମୋର ଜନ୍ମ ନିମାପଡାରେ ୧୯୩୧ ମସିହା ମାର୍ଚ୍ଚ ୨୯ ତାରିଖରେ ହୋଇଥିଲା । କିନ୍ତୁ ମୋ ଜନ୍ମଦିନ ୧୯୩୨ ମସିହା ଜୁଲାଇ ୧ ତାରିଖ ବୋଲି ସ୍କୁଲରେ ଲେଖାହୋଇଥିଲା ।

ମୋର ପିଲାବେଳେ ନେଉଳ ଛୁଆ ପ୍ରତି ବଡ ଆଗ୍ରହ ଥିଲା । କପିଳ ମାଷ୍ଟ୍ର ନାମକ ଜଣେ ପ୍ରାଇମେରୀ ସ୍କୁଲ ଶିକ୍ଷକ ଆମ ନନାଙ୍କ ପାଖକୁ ଆସନ୍ତି । ମୁଁ ଜାଣିଲି ଯେ ସେ ନେଉଳ ଛୁଆ ଆଣି ଦେଇ ପାରିବେ । ତେଣୁ ମୁଁ ସବୁବେଳେ ତାଙ୍କୁ କହୁଥାଏ ଗୋଟିଏ ନେଉଳ ଛୁଆ ଆଣିବାକୁ । ଥରେ ସେ ମୋ ପାଇଁ ନେଉଳ ଛୁଆ ଆଣିଦେଲେ । ସେ ଛୁଆଟି ମୋର ପୋଷା ମାନିଗଲା । ମୋ ପାଖରେ ଶୋଉଥିଲା । ବେଳେ ବେଳେ ମୋ ସାର୍ଟ ଭିତରେ ପଶି ଯାଉଥିଲା । ହେଲେ ମୋତେ ଜମା କାମୁଡୁ ନ' ଥିଲା । ଦିନେ ସେ ହଠାତ୍ ମରିଗଲା । ମୋ ମନ ବହୁତ ଦୁଃଖି ହେଲା । ସେଦିନ ରାତିରେ କିଛି ନଖାଇ ଶୋଇ ପଡିଲି । -

- ମୋ ବୋଉଙ୍କ ଘର ବଳଭଦ୍ରପୁର ଶାସନ । ତାଙ୍କର ଦୁଇଭାଇ । ବଡ ଭାଇଙ୍କ ନାମ ଶ୍ରୀ ରଘୁନାଥ ଦାଶ । ସେ ପୁରୀରେ ସରକାରୀ ଅଫିସ୍‌ରେ କାମ କରୁଥିଲେ । ସାନ ଭାଇଙ୍କ ନାମ ଶ୍ରୀ ଦୀନବନ୍ଧୁ ଦାଶ । ସେ ସତ୍ୟବାଦୀ ହାଇସ୍କୁଲରେ ଶିକ୍ଷକ ଥିଲେ । ମୁଁ ବାହା ହେବା ପର୍ଯ୍ୟନ୍ତ ସେ କୁମାରପୂର୍ଣ୍ଣମୀକୁ ମୋତେ ଜାମାପ୍ୟାଣ୍ଟ ଦେଇ ଆସୁଥିଲେ । ମୋ ଜନ୍ମ ଦିନକୁ ମଧ୍ୟ ନୂଆ ପୋଷାକ ପଠାଉଥିଲେ । -

- ମୋର ଗୋଟିଏ ପିଉସୀ ଥିଲା । ତାଙ୍କ ଘର ବୀରରାମଚନ୍ଦ୍ର ପୁରରେ । ମୁଁ ତାଙ୍କୁ ବସୁଣୀପିଉସୀ ନାନୀ ବୋଲି କହୁଥିଲି । ତାଙ୍କ ଘରକୁ କେତେଥର ଯାଇଛି । ତାଙ୍କ ଘରକୁ ଗଲେ ଖେଚେଡି ଭାତ କରି ଖାଇବାକୁ ଦିଅନ୍ତି ଏବଂ ତାଙ୍କ ବାଡିରୁ ଚୀଳଗଜା ଆଣି ତାହାର ଖୁଙ୍କୁ କାଟି

ମୋତେ ଖାଇବାକୁ ଦେଉଥିଲେ । ତାଙ୍କ ଗାଁରେ ବହୁତ ତାଳ ଗଛ ଅଛି । ସେ ଦିନର ସ୍ମୃତି ମନରେ ଜାଗିଲେ, ବହୁତ ଆନନ୍ଦ ଦିଏ ।

## ପ୍ରାଥମିକ ଶିକ୍ଷା

ମୋର ନାମ ୧୯୩୭ ମସିହା ଜାନୁଆରୀ ମାସରେ ନିମାପଡା ଅପର ପ୍ରାଇମେରୀ ସ୍କୁଲରେ ( ଯେଉଁଠାରେ ନନା ହେଡ ପଣ୍ଡିତ ଥିଲେ) ଲେଖାଗଲା । ମତେ ସେହି ବୁଢା ମାଷ୍ଟର ଜଣଙ୍କ ପଢାଇବା ପାଇଁ ଆସୁଥିଲେ । ସେହି ବର୍ଷ ଆମେ ଖରା ଛୁଟିରେ ଗ୍ରାମକୁ ଯାଇଥିଲୁ । ଗାଁରୁ ଆସିଲା ପରେ ଦେଖିଲୁ ନିମାପଡା ହାଇସ୍କୁଲର ବାଡବାଟି ତୋଟାରେ ଯେଉଁ ଖେଳ ପଡିଆ ଥିଲା ତାହାକୁ ବାଡ ଦେଇ ନିମାପଡାର କୋଠଦେଶ୍ ଷ୍ଟେଟ୍‌ର ମ୍ୟାନେଜର ବନ୍ଦ କରି ଦେଇଥିଲେ । ଏଥିରେ ହାଇସ୍କୁଲର ପିଲାମାନେ ମନେମନେ ବଡ ଅସନ୍ତୁଷ୍ଟ ହେଉଥିଲେ । ମୁଁ ଏକଥା ଆମ ଘରେ ରହୁଥିବା ଚିନ୍ତା ଭାଇନାଙ୍କ ଠାରୁ ଶୁଣିଥିଲି । ଦିନେ ବର୍ଷା ହେଉଥିବା ବେଳେ ହେଡମାଷ୍ଟର ଶ୍ରୀ ମଧୁ ବିଶ୍ୱାଳଙ୍କ ଆଦେଶରେ ସ୍କୁଲର ସବୁ ପିଲାମାନେ ମିଶି ସେ ବାଡ ଉପାଡି ଦେଲେ ଏବଂ ସେଠି ଖେଳାଖେଳି କଲେ । ତା' ସତ୍ତ୍ୱେ ମ୍ୟାନେଜର କିଛି କାର୍ଯ୍ୟାନୁଷ୍ଠାନ କରିଲେନି କିମ୍ବା କରିପାରିଲେ ନାହିଁ । ଆଜି ପର୍ଯ୍ୟନ୍ତ ସେ ପଡିଆକୁ ସ୍କୁଲ ପିଲାମାନେ ବ୍ୟବହାର କରୁଛନ୍ତି । କୋଠଦେଶ ଷ୍ଟେଟ୍‌ର ମ୍ୟାନେଜରଙ୍କ ନାମ ଶ୍ରୀ ଗିରିଶ ଚନ୍ଦ୍ର ଚକ୍ରବର୍ତ୍ତୀ । ତାଙ୍କ ଘର ସଙ୍ଗେ ଆମ ଘରର ସମ୍ପର୍କ ଥିଲା । ତାଙ୍କର ଦୁଇ ପୁଅ ଥିଲେ । ଜଣଙ୍କର ଡାକନାମ ଖୋକା ଏବଂ ଅନ୍ୟ ଜଣଙ୍କ ଡାକନାମ ଆନୁ । ଖୋକା ମୋଠାରୁ ଅଳ୍ପ ବଡ ଏବଂ ଆନୁ ମୋଠାରୁ ଅଳ୍ପ ସାନ । ଆମେ ବେଳେ ବେଳେ ଏକାଠି ଖେଳୁ । ମୁଁ ନିମାପଡାରୁ ଆସିବା ପରଠାରୁ ତାଙ୍କୁ ଦେଖିବାକୁ ପାଇନାହିଁ ।

ସେହିବର୍ଷ ନନା ମୋର ବଡ ଭିଣୋଇଙ୍କ ଠାରୁ ଚିଠି ପାଇଲେ ଯେ ତାଙ୍କର ନିମାପଡା ବଦଳି ହୋଇଯାଇଛି । ସେ ସେତେବେଳେ ପୁରୀ ଜିଲ୍ଲା ବୋର୍ଡରେ ଓଭରସିୟର ଭାବରେ କାର୍ଯ୍ୟ କରୁଥିଲେ । ମୋ ଭିଣୋଇଙ୍କ ଘର ବୀରନରସିଂହ ପୁର । ତାଙ୍କ ନାମ ନୀଳକଣ୍ଠ ରଥ । ସେ ବଡ ନୈଷ୍ଠିକ ବ୍ରାହ୍ମଣ ଥିଲେ । ସକାଳେ ପୂରା ଦୁଇଘଣ୍ଟା ପର୍ଯ୍ୟନ୍ତ ପୂଜା କରୁଥିଲେ ଏବଂ ସଂଧ୍ୟାବେଳେ ବି କିଛି ସମୟ ସଂଧ୍ୟା ପ୍ରାର୍ଥନା କରୁଥିଲେ । ୧୯୩୭ ମସିହା ଆଷାଢ ମାସରେ ବର୍ଷା ଦିନ ହୋଇଥିବାରୁ ରାସ୍ତାରେ ଗମନାଗମନର ସୁବିଧା ନ'ଥିବାରୁ ସେ ତାଙ୍କ ଗ୍ରାମ ନରସିଂହପୁର ଠାରୁ ଗୋଟିଏ ବଡ ଡଙ୍ଗାରେ ସମଗରା ପାଟ ଦେଇ ନର୍ସିଂହପୁରା ପାଖରେ ଓହ୍ଲାଇଥିଲେ । ନନା ପ୍ରଭୃତି ଯାଇ ତାଙ୍କୁ ଆଣି ଓଭରସିୟର ସରକାରୀ ବାସ ଭବନରେ ରଖିଥିଲେ । ସେତେବେଳକୁ ମୋର ପ୍ରଥମ ଭାଣିଜୀକୁ ଏକ ବର୍ଷ ହୋଇଥିଲା । ନାନୀର ବଦଳିରେ ମୁଁ ବହୁତ ଖୁସି ହେଲି । କାରଣ ମୁଁ ମୋ ବଡ ଭାଣିଜୀକୁ ଦେଖି ନ'ଥିଲି ଏବଂ ମୋ ନାନୀ ଯେଉଁ କ୍ୱାଟରରେ ରହୁଥିଲା, ସେହି ଘରଟି ଆମ ଘରଠାରୁ ସ୍କୁଲ ଯିବା ବାଟରେ ପଡୁଥିଲା । ମୁଁ ସ୍କୁଲରୁ ଘରକୁ ଫେରିଲା ବେଳେ ନାନୀ ଘରକୁ ଯାଉଥିଲି । ନାନୀ ଘରେ ପଖାଳ କିମ୍ବା ଜଳଖିଆ ଖାଇ ସଂଧ୍ୟା ବେଳକୁ ପୁଣି ଘରକୁ ଆସୁଥିଲି ।

ସେହି ବର୍ଷ ଆଷାଢ ମାସରେ ମୋ ସାନ ନାନୀର ବିଭାଘର ଠିକ୍ କରାଗଲା । ସେଥିପାଇଁ ଆମେ ଗାଁକୁ ଯାଇଥିଲୁ । ଶ୍ରୀ ରାମଚନ୍ଦ୍ରପୁରର ଶ୍ରୀ ମଧୁସୂଦନ ମିଶ୍ରଙ୍କ ସାନ ପୁଅ ଶ୍ରୀ

ରାଧାମୋହନ ମିଶ୍ରଙ୍କ ସହିତ ବିଭାଘର ଠିକ୍ ହୋଇଥିଲା । ଶ୍ରୀ ରାଧାମୋହନ ମିଶ୍ର ଟାଟା କମ୍ପାନୀରେ ଚାକିରୀ କରିଥିଲେ । ରାଧାମୋହନ ବାବୁ ପାଲିଙ୍କିରେ ବିଭା ହୋଇ ଆସିଲା ବେଳେ ବହୁତ ବର୍ଷା ହେଉଥିଲା । କୌଣସି ପ୍ରକାରେ ବାହାଘର ସରିଗଲା । ତାପର ଦିନ ନାନୀ ଭିଣୋଇଙ୍କ ସଙ୍ଗରେ ତାଙ୍କ ଘରକୁ ଗଲେ । ମୁଁ ମଧ୍ୟ ନାନୀଙ୍କ ସାଙ୍ଗରେ ଯାଇଥିଲି । ରାଧାମୋହନ ଭାଇନା ଗାଁରେ ରୁହନ୍ତି ନାହିଁ । ତେଣୁ ସେ ଗାଁ ପିଲା ମାନଙ୍କୁ ଚିହ୍ନନ୍ତି ନାହିଁ । ମୁଁ ତାଙ୍କ ଘରେ ବୁଲାବୁଲି କରୁଥିଲି । ସେ ମୋତେ ଚିହ୍ନି ପାରୁ ନ'ଥିଲେ । କାରଣ ବାହାଘର ଦିନ ସେ ମୋତେ ଥରେ ଦେଖିଥିଲେ । ତାଙ୍କ ଘରେ ସେ ମୋତେ ପ୍ରଥମ ଥର ପାଇଁ ଭଲକରି ଦେଖିଥିଲେ । ସେ ମୋତେ ପଚାରିଲେ, ତୁମେ କାହା ପୁଅ ? ମୁଁ ଚିହ୍ନା ଦେଲି । ସେ ଖଟରୁ ଉଠିଆସି ମୋତେ ଟେକି ନେଇଗଲେ । ପାଖରେ ବସାଇଲେ । ମୋତେ ଗୋଟିଏ ଚାବିଲଗା ଶୁଆ ଖେଳିବାକୁ ଦେଲେ । ଚାବି ଦେଇ ଶୁଆଟିକୁ ଛାଡିଦେଲେ ସେଇଟା ଖୁପୁରୁ ଖୁପୁରୁ ହୋଇ ଡେଉଁଥିଲା । ସେ ମୋତେ ମିଠା ଆଣି ଖାଇବାକୁ ଦେଲେ । ମୋତେ କହିଲେ ତୁମର କଣ ଦରକାର ? ମୁଁ ତ ପିଲା ହୋଇଥିଲି, ମୁଁ କହିଲି ମୋର ସ୍କୁଲ ଯିବାପାଇଁ ଗୋଟେ ଛୋଟ ସାଇକେଲ ଦରକାର । ତାପରେ ମୁଁ ତାଙ୍କୁ କିଛି କହିନାହିଁ । ସେ ମୋତେ ବି କିଛି କହି ନାହାଁନ୍ତି । ତାପରେ ମୁଁ ଗାଁକୁ ଚାଲି ଆସିଲି । ଅଠମଙ୍ଗଳା ଦିନ ସକାଳୁ ନାନୀ ଆମ ଘରକୁ ଚାଲି ଆସିଲା । କାରଣ ତାର ପିଲାକନ୍ୟା ଭାବେ ବିବାହ ହୋଇଥିଲା । ତାର କେତେଦିନ ପରେ ଆମେ ସମସ୍ତେ ନିମାପଡା ଚାଲି ଆସିଲୁ । -

- ୧୯୩୮ ମସିହାରେ ସତକୁ ସତ ରାଧାମୋହନ ଭାଇନା ଜାମସେଦ୍‌ପୁରରୁ ଗୋଟେ ଦୁଇ ଚକିଆ ସାଇକେଲ ମୋ ପାଇଁ ପଠାଇ ଦେଲେ । ମୁଁ ସାଇକେଲ ପାଇ ବହୁତ ଆନନ୍ଦିତ ହୋଇଗଲି । କିନ୍ତୁ ସାଇକେଲ ଚଢି ପାରିଲିନି । ମୋତେ ସାଇକେଲ ଚଢିବାକୁ ସମସ୍ତେ ମନା କଲେ କାରଣ ମୋର ଗୋଟିଏ ଗୋଡ ସାମାନ୍ୟ ଛୋଟ ଥିଲା । ଛୋଟ ଗୋଡକୁ ଠିକ୍ କରିବା ପାଇଁ ନନା କେତେପ୍ରକାର କବିରାଜୀ ତୈଳ ମାଲିସ୍ କରୁଥାନ୍ତି । ଏହିପରି ଭାବରେ ଛଅମାସ ଗଲା ପରେ ମୋର ଗୋଡ ପ୍ରାୟ ଠିକ୍ ହୋଇଯାଇଥିଲା । ଦିନେ ଆମେ ସବୁ ପରମି ସ୍ୱାଇଁ ଶଗଡରେ ବସି ବାଲିକପିଳେଶ୍ୱର ମହାଦେବଙ୍କ ପାଖକୁ ଗଲୁ । ଆମକୁ ପ୍ରାୟ ୨୪ ଘଣ୍ଟା ଲାଗିଲା । ବାଲି କପିଳେଶ୍ୱର ମହାଦେବ ବର୍ତ୍ତମାନ ସମୟର କୋଣାର୍କ ଠାରୁ ପୁରୀ ଯିବା ପକ୍କାରାସ୍ତାର ଟିକିଏ ଭିତରକୁ ଗଲେ ପଡେ । ଆମେ ସେଠାରେ ପୂଜାର୍ଚ୍ଚନା କରି ଫେରିଲୁ । ମୁଁ ଜାଣିବାକୁ ପାଇଲି ମୋର ଗୋଡ ଛୋଟ ହୋଇଥିବାରୁ ନନା ମୋତେ ବାଲିକପିଳେଶ୍ୱର ନେଇ ଯିବାକୁ ମାନସିକ କରିଥିଲେ । -

- ଆମ ଘରକୁ ଶ୍ରୀ ବାଞ୍ଛାନିଧି ଦାସ ନାମକ ଜଣେ ପ୍ରାଇମେରୀ ସ୍କୁଲ ଶିକ୍ଷକ ଆସୁଥିଲେ । ମୁଁ ଜନ୍ମ ହେବା ଆଗରୁ ସେ ଆମ ଘରେ ରହି ପାଠ ପଢୁଥିଲେ । ସେ ଆସିଲେ ମୋତେ ସବୁବେଳେ ମାନସାଙ୍କ ପଚାରନ୍ତି । ମୋତେ କିଛିଟା ଆସେ କିଛିଟା ଆସେ ନାହିଁ । ସେ ଥରେ ଦୁଇଟି ମାନସାଙ୍କ ଲେଖି ଦେଇ ଗଲେ । ମୋତେ କହିଲେ ମୁଁ ଆଉ କେବେ ଆସିଲେ ଏହାର ଉତ୍ତର ଦେବୁ । ମାନସାଙ୍କ ଦୁଇଟିର ପ୍ରଶ୍ନ ହେଲା :

ପ୍ରଶ୍ନ(୧) : କିପରି ସମାନ ଲମ୍ବର ତିନିଖଣ୍ଡ ଖଡିକାକୁ ତିନି ଚୋଟରେ ନଅ ଖଣ୍ଡ କରିବ ।
ପ୍ରଶ୍ନ(୨) : କିପରି ତୁମ୍ଭେ ପଇସାଟିଏ ନେଇ ପାଞ୍ଚୋଟି ଦୋକାନରୁ ପାଞ୍ଚୋଟି ଜିନିଷ ଆଣିବ । ସଙ୍ଗେ ସଙ୍ଗେ ଦୋକାନୀଙ୍କୁ ତାର ପ୍ରାପ୍ୟ ଦେଇଦେବ ।

ଦୁଇଟି ପ୍ରଶ୍ନର ଉତ୍ତର ମୁଁ କରିପାରିଲି ନାହିଁ । ସାଙ୍ଗ ମାନଙ୍କୁ ପଚାରିଲି ସେମାନେ ମଧ୍ୟ କହିପାରିଲେ ନାହିଁ । ତାପରେ ବାଂଛା ଭାଇନା ଆସିବାରୁ ମୁଁ ତାଙ୍କୁ କହିଲି ଆପଣ ଦେଇଥିବା ମାନସାଙ୍କ ଉତ୍ତର ମୁଁ ପାଉନାହିଁ । ସେ ମୋତେ ଉତ୍ତର ବୁଝାଇ ଦେଲେ । ସେ ଦୁଇଟି ପ୍ରଶ୍ନର ଉତ୍ତର ହେଲା ।

(୧): ତିନିଖଣ୍ଡ ଖଡିକାକୁ ଚିତ୍ରରେ ଦିଆହୋଇଥିବା ଭଳି ରଖ ଯେଉଁଠି ଖଡିକା ପରସ୍ପରକୁ ଛେଦ କରିଛନ୍ତି ସେହି ତିନି ଜାଗାରେ ଚୋଟ ମାରିବା ଦ୍ୱାରା ଖଡିକା ତିନୋଟି ନଅ ଭାଗରେ ବିଭକ୍ତ ହୋଇଯିବ ।

(୨): ଏହି ପ୍ରଶ୍ନର ଉତ୍ତର ଦେବାକୁ ଯିବା ପୂର୍ବରୁ ମୁଁ ପାଠକ ମାନଙ୍କୁ ଜଣାଇ ଦେଉଛି ଯେ ସେତେବେଳେ ୧ଟଙ୍କା = ୬୪ ପଇସା = ୧୨୮ ଅଧଲା = ୧୯୨ ପାହୁଲା ଥିଲା । ତେଣୁ ୧ଅଧଲା =୧ (୧/୨) ପାହୁଲା ।

**ଉତ୍ତର :** ପ୍ରଥମ ଦୋକାନକୁ ଯିବ ଅଧ ପାହୁଲାର ଲୁଣ ଆଣିବ । ଦୋକାନିକୁ ତୁମେ ପଇସାଟିଏ ଦେବ । ସେ ତୁମକୁ ଗୋଟିଏ ପାହୁଲା ଓ ଅଧଲା ଫେରାଇବ । ଦ୍ୱିତୀୟ ଦୋକାନକୁ ଯିବ ଅଧ ପାହୁଲାର ଡାଲି ଆଣିବ, ଦୋକାନିଟିକୁ ଅଧଲାଟିଏ ଦେବ । ସେ ତୁମକୁ ପାହୁଲାଟିଏ ଫେରାଇବ । ତୃତୀୟ ଦୋକାନକୁ ଯିବ ଅଧ ପାହୁଲାର ତେଲ ଆଣି ଦୁଇ ପାହୁଲା ଦେବ ସେ ତୁମକୁ ଅଧଲାଟିଏ ଫେରାଇବ । ପଞ୍ଚମ ଦୋକାନକୁଯିବ ପାହୁଲାର ଚାଉଳ ଆଣିବ ତାକୁ ପାହୁଲାଟିଏ ଦେବ ।

## ଗାନ୍ଧୀଙ୍କୁ ଦେଖିବାର ସୁଯୋଗ

୧୯୩୮ ମସିହାରେ ମୁଁ ଓ ବୋଉ ମାମୁଁ ଘରକୁ ସତ୍ୟବାଦୀ ଯାଇଥିଲୁ । ମୁଁ ସେଠାରେ ଶୁଣିଲି ଡେଲାଙ୍ଗ ନିକଟରେ ଥିବା ବେରବୋଇ ଗ୍ରାମର ଗାନ୍ଧୀ ସେବାଶ୍ରମରେ ବାର୍ଷିକ ସମ୍ମିଳନୀ ହେଉଛି । ସେଥିରେ ମହାତ୍ମା ଗାନ୍ଧୀ, ରାଜେନ୍ଦ୍ର ପ୍ରସାଦ, ବଲ୍ଲଭ ଭାଇ ପଟେଲ, ଆଚାର୍ଯ୍ୟ କୃପାଳିନୀ ପ୍ରଭୃତି ବିଶିଷ୍ଟ ନେତାମାନେ ଯୋଗ ଦେବାକୁ ଆସିବେ । ସେହି ବାର୍ଷିକ ସମ୍ମିଳନୀ ମାର୍ଚ୍ଚ ୮ ତାରିଖରେ ହେବ ବୋଲି ଘୋଷଣା କରାଯାଇ ଥିଲା । ସେତେବେଳେ ଓଡିଶାରେ କଂଗ୍ରେସ ସରକାରର ଶାସନ ଚାଲିଥାଏ ଓ ଶ୍ରୀ ବିଶ୍ୱନାଥ ଦାଶ ଓଡିଶାର ପ୍ରଧାନ ମନ୍ତ୍ରୀ ଥିଲେ । ସେତେବେଳେ ମୁଖ୍ୟମନ୍ତ୍ରୀଙ୍କୁ ପ୍ରଧାନ ମନ୍ତ୍ରୀ କୁହାଯାଉଥିଲା । ମାମୁଁ ବୁଝାବୁଝି କରି କହିଲେ ଆମେ ୮ ତାରିଖ ଦିନ ସକାଳେ ସତ୍ୟବାଦୀଠାରୁ ଟ୍ରେନ୍‌ରେ ବେରବୋଇ ପର୍ଯ୍ୟନ୍ତ ଯିବା ବେରବୋଇ ଠାରେ ଷ୍ଟେସନ ନ'ଥିଲା, ସେଠାରେ ଗୋଟିଏ ପାସେଞ୍ଜର ହଲଟ୍‌ର ବ୍ୟବସ୍ଥା କରାଯାଇଥିଲା ।

ମୁଁ, ବୋଉ ଓ ମାମୁଁ ସକାଳେ ବେରବୋଇ ଅଭିମୁଖେ ବାହାରିଲୁ । କିଛି ଖାଇବାକୁ ମିଳିବ କି ନାହିଁ ଭାବି ମାମୁଁ ସାକ୍ଷୀଗୋପାଳ ମନ୍ଦିରରୁ କିଛି ଲଡୁ ଓ ପିଠା ସାଙ୍ଗରେ ନେଇଥିଲେ ।

ଏତେ ଲୋକ ଯାଉଥିଲେ ଯେ ତାହାର କଳନା କରିହେବ ନାହିଁ । ସେଠାରେ ଆମେ ମଞ୍ଚ ଦେଖାଯିବା ଭଳି ଗୋଟିଏ ଜାଗାରେ ଅପେକ୍ଷା କଲୁ । କିଛି ସମୟ ପରେ ମହାତ୍ମା ଗାନ୍ଧୀ, ଗୋପବନ୍ଧୁ ଚୌଧୁରୀ, ପଣ୍ଡିତ ନୀଳକଣ୍ଠ ଦାଶ, ଆଚାର୍ଯ୍ୟ ହରିହର, ମହତାବ, ବିଶ୍ୱନାଥ ଦାସ ପ୍ରଭୃତି ତାଙ୍କ ସାଙ୍ଗରେ ଆସୁଥିଲେ । ଗାନ୍ଧିଜୀ ମଞ୍ଚ ଉପରକୁ ଚଢ଼ିବା ସମୟରେ ଗାନ୍ଧିଜୀଙ୍କୀ ଜୟ, ଭାରତ ମାତାଙ୍କୀ ଜୟ ଧ୍ୱନିରେ ସଭାସ୍ଥଳ କମ୍ପି ଉଠୁଥିଲା । କିଛି ସମୟ ପରେ ମହାତ୍ମା ଗାନ୍ଧୀ ଭାଷଣ ଦେଲେ । ସେତେବେଳେ ମୋତେ ମାତ୍ର ସାତ ବର୍ଷ ବୟସ ଗାନ୍ଧୀଜୀ କଣ ସବୁ କହିଥିଲେ ମୋର କିଛି ମନେ ନାହିଁ । ଆମେ ଖରାବେଳେ ନେଇଥିବା ସାକ୍ଷୀଗୋପାଳଙ୍କ ଭୋଗ ଖାଇ ଉପରବେଳା ସେ ଜାଗା ବୁଲାବୁଲି କରି ସୂତାକଟା ସ୍ଥାନକୁ ଯାଇ ଶୋଭା ଦେବୀଙ୍କ ସାଙ୍ଗରେ ଦେଖାକଲୁ । ଶୋଭା ଦେବୀ ଜଣେ ନାରୀ କର୍ମୀ ଅଟନ୍ତି । ଶୋଭା ଦେବୀ ମାମୁଁଙ୍କ ଘର ପାଖରେ ରହୁଥିଲେ । ସଂଧ୍ୟା ବେଳକୁ ଆମେ ସତ୍ୟବାଦୀ ଫେରି ଆସିଲୁ । -

- ବାଲିକପିଳେଶ୍ୱରରୁ ଫେରିବାର କିଛିଦିନ ପରେ, ନନା ମୋତେ କହିଲେ ତୁ ଏବେ ସାଇକେଲ ଶିଖି ପାରିବୁ । ଆମ ଘରେ ଥିବା ପିଲାମାନେ କିଏ କେତେବେଳେ କେମିତି ମୋତେ ସାଇକେଲ ଶିଖାଇ ଦେଇଥିଲେ । ସାଇକେଲ ଚଢି ମୁଁ ଆମ ଘର ଠାରୁ ସ୍କୁଲକୁ ପ୍ରାୟ ଯାଉଥିଲି । ଏହିପରି ଭାବରେ କିଛି ଦିନ କଟିଗଲା । ଦିନେ ସ୍କୁଲରୁ ଆସିଲା ବେଳେ ମୁଁ ସାଇକେଲରୁ ପଡିଗଲି, ମୋ ଆଣ୍ଠୁରେ ସାଇକେଲ କ୍ରାଙ୍କର ମୁନ ପଶିଗଲା । ମୁଁ ଆଉ ସ୍କୁଲକୁ ଯାଇ ପାରିଲି ନାହିଁ । ସେହି ଘାଆଟା ପାଚିଗଲା । ମୁଁ ତିନି ଚାରିମାସ ଘରେ ପଡି ରହିଲି । ମୋର ସାଇକେଲ ଚଢା ସେହିଦିନ ଠାରୁ ବନ୍ଦ ହୋଇଗଲା । ଏହି ସମୟ ମଧ୍ୟରେ ମୁଁ ତୃତୀୟ ଶ୍ରେଣୀ ପାସ କରି ଯାଇଥିଲି । ମୋର ଚତୁର୍ଥ ଶ୍ରେଣୀରେ ନାମ ଲେଖାହେଲା । -

- ଚତୁର୍ଥ ଶ୍ରେଣୀରେ ପଢିବା ସମୟରେ ନନା ଯୋଗୀ ବାବୁ ବୋଲି ଜଣେ ସାରଙ୍କୁ ମୋତେ ଇଂରାଜୀ ପଢାଇବା ପାଇଁ ଯୋଗାଡ କଲେ । ଯୋଗୀ ସାର ଇଂରାଜୀ ସହିତ ଅନ୍ୟାନ୍ୟ ବିଷୟ ବି ମୋତେ ପଢାଉଥିଲେ । ତାଙ୍କ ଚେଷ୍ଟାରେ ଇଂରାଜୀ ଭଲ କରି ପଢି ପାରିଲି । ଇଂରାଜୀ ବ୍ୟତୀତ ଭୂଗୋଳ ମଧ୍ୟ ପଢାଉ ଥିଲେ । ତାଙ୍କର ଭୂଗୋଳ ପଢାଇବା ଶୈଳୀ ଏତେ ସୁନ୍ଦର ଯେ ମୋର ସବୁ ବିଷୟ ପ୍ରାଞ୍ଜଳ ଭାବେ ଏ ପର୍ଯ୍ୟନ୍ତ ମନେ ଅଛି । ତୃତୀୟ ଏବଂ ଚତୁର୍ଥ ଶ୍ରେଣୀରେ ପଢିବା ସମୟରେ ଶ୍ରୀ ଉଦୟ ନାଥ ଆଚାର୍ଯ୍ୟଙ୍କର ସପ୍ତାହରେ ଦୁଇଟି କ୍ଲାସ ଧର୍ମଶିକ୍ଷା ବୋଲି ଥିଲା । ତାଙ୍କ କ୍ଲାସ ଏତେ ଭଲ ଲାଗୁଥିଲା ଯେ ମୁଁ ସେ କ୍ଲାସ ଜମା ବନ୍ଦ କରୁ ନ'ଥିଲି । ବର୍ତ୍ତମାନ ଧର୍ମ ନିରପେକ୍ଷ ଯୁଗରେ ଏପରି ଶିକ୍ଷା ଦିଆଯାଉ ନାହିଁ । ଧର୍ମଶିକ୍ଷା ନ'ଦିଆଯିବାରୁ ସମାଜରେ ନୈତିକ ମୂଲ୍ୟବୋଧ ଆସ୍ତେ ଆସ୍ତେ ଲୋପ ପାଇଗଲାଣି ।

## ନନାଙ୍କ ସାଥିରେ ଉତ୍ତର ଭାରତକୁ ତୀର୍ଥଯାତ୍ରା ଓ ଭ୍ରମଣ

ମୁଁ ଚତୁର୍ଥ ଶ୍ରେଣୀରେ ପଢୁଥିବା ସମୟରେ ନନା, ବୋଉ, ମୁଁ,ପରମୀ ସ୍ୱାଇଁ ଏବଂ ମାଗୁଣୀ ବୋଲି ଗୋଟିଏ ସ୍ତ୍ରୀ ଲୋକ ତୀର୍ଥ କରିବାକୁ ବାହାରିଲୁ । ମାଗୁଣୀର ଛୁଆ ପିଲା କିଛି ନ'ଥିଲେ । ସେ ଆମ ଗାଁରେ ଆମ ଘରେ ରହୁଥିଲା । ସେହି ସମୟରେ ତାହାର ତୀର୍ଥ ଖର୍ଚ୍ଚ ସଞ୍ଚି ରଖିଥିଲା । ଆମେ ସମସ୍ତେ ନିମାପଡାରେ ଆମ ଘରେ ଦିନେ ଏକାଠି ହେଲୁ । ସେଠାରୁ ପାହାନ୍ତିଆରୁ ପରମୀ ସ୍ୱାଇଁ ଶଗଡରେ ଭୁବନେଶ୍ୱର ଅଭିମୁଖେ ଯାତ୍ରା କଲୁ । ସେହି ଦିନ ପ୍ରାୟ

ରାତି ୮ଟାରେ ଭୁବନେଶ୍ୱରରେ ଷ୍ଟେସନରେ ପହଞ୍ଚିଲୁ । ପରମୀ ସାର୍ଙ୍କ ସାଙ୍ଗରେ ତାଙ୍କ ଗାଁର ଜଣେ ଲୋକ ଶଗଡ ନେଇଫେରିଗଲା । ରାତି ଏଗାରଟା ବେଳେ ଟ୍ରେନ୍ ଧରିଲୁ ଏବଂ ସକାଳେ ଖଡଗପୁରରେ ପହଞ୍ଚିଲୁ । ଖଡଗପୁରରୁ ଦିନ ଏଗାରଟା ବେଳେ ବସି ପ୍ରାୟ ଚାରିଟା ବେଳେ ଟାଟା ନଗରରେ ପହଞ୍ଚିଲୁ । ଷ୍ଟେସନକୁ ମୋ ସାନ ଭିଣୋଇ ଗାଡି ନେଇ ଆସିଥିଲେ ଏବଂ ଆମମାନଙ୍କୁ ନେଇ ତାଙ୍କ ଘରକୁ ଗଲେ । ସେ ଚବିଶ ନମ୍ବର ଅମାନାଥ ରୋଡରେ ରହୁଥିଲେ । ସେଠାରେ ଆମେ ସବୁ ଲୁହା କାରଖାନା ଦେଖି ଯାଇଥିଲୁ । ସେଠାରେ ଦୁଇ ତିନି ଦିନ ରହିବା ପରେ ଆମକୁ ଷ୍ଟେସନରେ ଗାଡିରେ ବସାଇ ଦେଲେ । -

- ସେଠାରେ ରାଧାମୋହନ ଭାଇନାଙ୍କ ଆଉ ଦୁଇ ବଡ ଭାଇ ରହୁଥିଲେ । ତାଙ୍କ ନାମ ଶ୍ରୀ ଫକୀରମୋହନ ମିଶ୍ର ଏବଂ ଅନ୍ୟ ଜଣଙ୍କ ନାମ ଶ୍ରୀ ବ୍ରଜମୋହନ ମିଶ୍ର । ସେ ଦୁହେଁ ମଧ୍ୟ ଟାଟା କମ୍ପାନୀରେ ଚାକିରି କରୁଥିଲେ । ଫକୀରମୋହନ ମିଶ୍ରଙ୍କର ଆଠ ପୁଅ ଥିଲେ । ତାଙ୍କ ପୁଅ ମାନଙ୍କର ନାମ ଯଥାକ୍ରମେ ପଦ୍ମଲୋଚନ ମିଶ୍ର, ରାଜୀବଲୋଚନ ମିଶ୍ର, ପଙ୍କଜଲୋଚନ ମିଶ୍ର, ଆଉ ଜଣଙ୍କର ନାମ କମଳଲୋଚନ ମିଶ୍ର ତାଙ୍କର ଆଉ ଚାରିଭାଇଙ୍କର ନାମ ମୋର ମନେନାହିଁ । କେବଳ ପଦ୍ମଲୋଚନ ମିଶ୍ର ପରବର୍ତ୍ତୀ ସମୟରେ ଟାଟା ନଗରରୁ ଓଡିଶା ଆସିଲେ ଆମ ଘରକୁ ଆସୁଥିଲେ ଏବଂ କମଳ ଲୋଚନ ମିଶ୍ରଙ୍କ ସହିତ ମୋର ସମ୍ପର୍କ ମୋ ସାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ମଧ୍ୟ ଥିଲା । ଅନ୍ୟ ଦୁଇ ଜଣଙ୍କ ସହିତ ଆମ ଘରର ପ୍ରାୟ କିଛି ସମ୍ପର୍କ ନ'ଥିଲା । ବଡ ଆଶ୍ଚର୍ଯ୍ୟର କଥା ପଙ୍କଜଲୋଚନ ମିଶ୍ରଙ୍କର ୧୦ କିମ୍ବା ୧୧ ବର୍ଷ ବୟସରୁ ନିଶ ଦାଢି ଉଠିଥିଲା । ତେଣୁ ସେ ଟ୍ରେନରେ ଗଲାବେଳେ ତାଙ୍କ ପାଇଁ ପୁରା ଟିକେଟ ଦେବାକୁ ପଡୁଥିଲା । ରାଧାମୋହନ ଭାଇନାଙ୍କ ଆଉ ଜଣେ ଭାଇ ମଧ୍ୟ ଥିଲେ । ତାଙ୍କ ନାମ ଶ୍ରୀ ଚନ୍ଦ୍ରମୋହନ ମିଶ୍ର । ସେ ସେତେବେଳେ ତାଙ୍କ ଗ୍ରାମ ଶ୍ରୀରାମଚନ୍ଦ୍ର ପୁରରେ ରହୁଥିଲେ । ପରବର୍ତ୍ତୀ ସମୟରେ ସେ କଟକର ବାରବାଟୀ ଷ୍ଟାଡିଅମ୍ ପାଖରେ ଗୋଟିଏ ଘରେ ରହୁଥିଲେ । କଟକରେ ତାଙ୍କ ଘରକୁ ମୁଁ କେତେଥର ଯାଇଛି । -

- ଆମେ ତାପର ଦିନ ସକାଳେ ଗୟା ଷ୍ଟେସନରେ ଓହ୍ଲାଇଲୁ । ଗୟା ଷ୍ଟେସନରେ ପଣ୍ଡା ମାନେ ଆମକୁ ଘେରିଗଲେ ଏବଂ ଆମ ଘର କେଉଁଠି ପଚାରି ବୁଝିଲେ । ମୋର ଯାହା ମନେ ପଡୁଛି ନନା ବୋଧେ ଗୋଟିଏ ପଣ୍ଡା ନାଆଁ କହିଲେ । ତାପରେ ସେହି ପଣ୍ଡା ସହିତ ଯାଇ ଆମେ ଗୋଟିଏ ଲଜିଂ ଘରେ ରହିଲୁ । ସେ ପଣ୍ଡା ସାହାଯ୍ୟରେ ନନା ଅନ୍ତସଳିଳା ନଦୀରେ ପିଣ୍ଡ ଦାନ କଲେ । ତାପରେ ଦିନେ ବୁଦ୍ଧଗୟା ଯାଇଥିଲୁ ଏବଂ ଦିନେ ଦୁଇଦିନ ପରେ ଗୟାରୁ ଯାଇ ବନାରସ୍‌ରେ ପହଞ୍ଚିଲୁ । ଠିକ୍ ସେହିପରି ପଣ୍ଡାମାନେ ସେଠାରେ ବି ଘେରିଗଲେ । ପୁଣି ଗୋଟିଏ ଲଜିଂ ଘରେ ରହିଲୁ । ତାପର ଦିନ ସକାଳୁ କାଶୀବିଶ୍ୱନାଥ ମନ୍ଦିର ଦର୍ଶନ କରିବାକୁ ଗଲୁ । ଚାରିଟା ବେଳେ ସହର ବୁଲିବାକୁ ଗଲୁ । ନନା ବଜାରରୁ ଚାରଣା ପଇସା ଦେଇ (ଏକ ଟଙ୍କାରୁ ଚାରି ଭାଗେ) ଗୋଟିଏ କୋଲପ କିଣିଲେ । ଏ ପର୍ଯ୍ୟନ୍ତ ବି ସେ କୋଲପଟି ଆମ ଘରେ ବ୍ୟବହାର ହେଉଛି । ମୁଁ ମଧ୍ୟ ଚାରଣା ପଇସା ଦେଇ ଗୋଟିଏ ଖେଳଣା ଜାହାଜ କିଣିଲି । କେତେଦିନ ପରେ ସେହି ଜାହାଜଟି କିଏ ନେଇ ଯିବ ଭାବି ତାକୁ ନନାଙ୍କ ଔଷଧ ଆଲମିରାରେ ଏକ କୋଣରେ ଥୋଇ ଦେଇଥିଲି । ସେ ଜାହାଜର ପଛ ପଟେ ଦୁଇଟା ନଳୀ ଲାଗିଥିଲା । ସେ

ନଳୀରେ ପାଣି ଭର୍ତ୍ତିକରି ଖେଳନା ଜାହାଜଟିକୁ ଗୋଟିଏ ଗୋଲ ବାଲା ପାଣି ଟବ୍‌ରେ ଭସାଇ ଦିଆଯାଏ । ଜାହାଜ ଭିତରେ ଗୋଟିଏ ଦୀପ ଥାଏ । ସେହି ଦୀପରେ ତେଲ ପୁରାଇ ଜାହାଜ ଭିତରେ ରଖି ଦୀପଟି ଲଗାଇ ଦେଲେ ଜାହାଜଟି ଘୁଡ୍ ଘୁଡ୍ ଶବ୍ଦ କରି ଆଗକୁ ଚାଲେ । ତେଲ ସରିଗଲେ ବନ୍ଦ ହୋଇଯାଏ ।

ସେହି ଦିନ ରାତିରେ ଆମେ ବନାରସ୍‌ରୁ ଏଲ୍ଲାବାଦ୍ ଅଭିମୁଖେ ଯାତ୍ରାକଲୁ । ଏଲ୍ଲାବାଦରେ ପହଁଞ୍ଚି ଗୋଟିଏ ଲଜିଂ ଘରେ ରହିଲୁ । ତାପର ଦିନ ତ୍ରିବେଣୀ ସଙ୍ଗମ ପାଖକୁ ନଈରେ ଡଙ୍ଗାରେ ଗଲୁ । ତ୍ରିବେଣୀ ସଙ୍ଗମରେ ଗଙ୍ଗା ଓ ଯମୁନା ଏକାଠି ମିଶି ଥାଆନ୍ତି । ସରସ୍ୱତୀ ନାମକ ଅନ୍ୟ ଗୋଟିଏ ନଈ ସେଇଠି ମିଶିଥାଏ ବୋଲି ତାର ନାମ ତ୍ରିବେଣୀ ସଙ୍ଗମ ବୋଲି କୁହାଯାଏ । କିନ୍ତୁ ସରସ୍ୱତୀ ନଈର ଅସ୍ତିତ୍ୱ ନାହିଁ । ସେଠାରେ ମୁଁ ଗୋଟିଏ ବିଶେଷତ୍ୱ ଦେଖିଲି ଗଙ୍ଗା ଓ ଯମୁନା ପାଣି ଏକାଠି ମିଶି କରି ମଧ୍ୟ ଅଲଗା ଅଲଗା ଦିଶୁଥାନ୍ତି । ସଙ୍ଗମ ସ୍ଥାନରୁ ଡଙ୍ଗାରେ ଫେରିଲା ବେଳେ ଅନ୍ୟ ଡଙ୍ଗାରୁ ଆସୁଥିବା ଲୋକମାନଙ୍କ ଭିତରୁ କେତେକ ଆମକୁ କହୁଥାନ୍ତି । ଆପଣ ପାଣିରେ ପଇସା ପକାନ୍ତୁ, ଆମେ ସେଇ ପଇସାକୁ ପାଣିରେ ବୁଡ଼ିକରି ଖୋଜି ନେଇ ଆସିବୁ । ନନା ଭାବିଲେ ଏମାନେ ବୋଧେ ମିଛ କହୁଛନ୍ତି । ତେଣୁ ସେ ଗୋଟାଏ ପଇସା ତିଆରିର ସାଲ୍ ଦେଖି ପାଣିରେ ପକାଇ ଦେଲେ । ସେ ଲୋକ ପାଣିରେ ବୁଡି ଅଳ୍ପ ସମୟ ଭିତରେ ପଇସାଟିକୁ ଆଣି ନନାଙ୍କୁ ଦେଲେ । ନନା ଦେଖିଲେ ଯେ ପକାଇ ଥିବା ପଇସାରେ ଯେଉଁ ସାଲ ଲେଖା ହୋଇଥିଲା ଏଥିରେ ବି ସେହି ସାଲ ଲେଖା ହୋଇଛି । ସେମାନେ ବୁଡ଼ିବାରେ ଏପରି ଧୁରନ୍ଧର ଦେଖି ମୁଁ ବଡ ଆଶ୍ଚର୍ଯ୍ୟ ହୋଇ ଯାଇଥିଲି ।

ଏଲ୍ଲାବାଦରେ ଥିବା ଗୋଟିଏ ଦୁର୍ଗ ଭିତରକୁ ଗଲୁ । ପ୍ରଥମେ ଦୁର୍ଗର ଜଗୁଆଳି ଆମକୁ ଭିତରକୁ ଛାଡିଲା ନାହିଁ । କହିଲା ବିଶ୍ୱଯୁଦ୍ଧ ଲାଗିଯାଇଛି, ତେଣୁ ଛାଡିବାକୁ ମନା ହୋଇଛି । ନନା କହିଲେ "ଆମେ ପୁରୀରୁ ତୀର୍ଥ କରିବାକୁ ଆସିଛୁ ଆମକୁ ଟିକିଏ ଛାଡିଦିଅ" । ଜଗୁଆଳିଟି ପୁରୀରୁ ଆସିଛୁ ଶୁଣି ଟିକିଏ ବଦଳି ଗଲା । ଆମ ନାଆଁ ଲେଖିନେଲା ଏବଂ ଭିତରୁ କାହାଠାରୁ ଅନୁମତି ପତ୍ର ଆଣି ଆମକୁ ଛାଡିଦେଲା । ଆମେ ଭିତରେ ବୁଲାବୁଲି କଲୁ । କେତେ ଗୁଡିଏ ପଥର ତିଆରି ମୂର୍ତ୍ତୀ ଦେଖିଲୁ ତାପରେ ଚାଲି ଆସିଲୁ । ଆସିଲା ପରେ ମୁଁ ନନାଙ୍କୁ ପଚାରିଲି ବିଶ୍ୱଯୁଦ୍ଧ କଣ ? ନନା କହିଲେ ସେ ବହୁତ କଥା ନିମାପଡାରେ ପହଁଞ୍ଚିଲେ ବିଶ୍ୱଯୁଦ୍ଧ କଣ କହିବି । ତାପରେ ସଂଧ୍ୟାବେଳେ ଲଜିଂ ଘର ଛାଡି ଏଲ୍ଲାବାଦ ଷ୍ଟେସନକୁ ଆସିଲୁ ।

## ହାଉଡାର ଭସା ପୋଲ

ରାତିରେ ଟ୍ରେନ୍ ଧରି କଲିକତା ଅଭିମୁଖେ ଯାତ୍ରା କଲୁ । କଲିକତାରେ ପହଁଞ୍ଚି ଷ୍ଟେସନ୍ ପାଖ ଗୋଟିଏ ହୋଟେଲରେ ରହିଲୁ । ସେତେବେଳେ ବର୍ତ୍ତମାନର ହାଓଡା ପୋଲ ହୋଇ ନ' ଥିଲା । ଗଙ୍ଗାର ଗୋଟିଏ କୂଳରୁ ଲୁହା ଧାରଣା ସାହାଯ୍ୟରେ ପୋଲ ତିଆରି ହୋଇ ଗଙ୍ଗା ନଦୀରେ କିଛି ବାଟ ଯାଇଥାଏ । ସେହିପରି ବିପରୀତ କୂଳରେ ମଧ୍ୟ ଏହିପରି ପୋଲ ତିଆରି ହୋଇଥାଏ । କିନ୍ତୁ ପରସ୍ପରକୁ ଲାଗି ନ'ଥାନ୍ତି । ଦୁଇପଟ ପୋଲକୁ ଗୋଟିଏ ଭସାପୋଲ ସାହାଯ୍ୟରେ ସଂଯୁକ୍ତ କରାଯାଇ ଥାଏ । ମଝି ଭସାପୋଲଟି ସବୁବେଳେ ଦୁଇଟି ପୋଲ ସହିତ

ଯୋଡା ହୋଇଥାଏ । ପ୍ରତିଦିନ ଖରାବେଳେ କିଛି ସମୟ ପାଇଁ ଭସା ପୋଲଟି କାଢି ନିଆ ହୋଇ ଅନ୍ୟ ଜାଗାରେ ରଖାଯାଏ । ସେହି ସମୟରେ ଛୋଟ ଛୋଟ ଜାହାଜ ସବୁ ପୋଲକୁ ଅତିକ୍ରମ କରନ୍ତି । ସମୟ ହୋଇଗଲେ ଜାହାଜ ଯିବା ଆସିବା ବନ୍ଦ ହୋଇଯାଏ । ଭସାପୋଲଟି ପୁଣି ଆଣି ଦୁଇ ପୋଲ ମଝିରେ ସଂଯୁକ୍ତ କରାଯାଏ ଏବଂ ସେ ପୋଲ ଉପରେ ଲୋକ ଗାଡି ମଟରରେ ଯିବା ଆସିବା କରନ୍ତି ।

ତାପର ଦିନ ଆମେ ଚିଡିଆ ଖାନା, ଯାଦୁଘର, ଭିକ୍ଟୋରିଆ ମେମୋରିଆଲ ହଲ୍ ଓ ଦକ୍ଷିଣ କାଳୀଙ୍କ ମନ୍ଦିର ଦେଖିବାକୁ ଗଲୁ । ଦିନେ ଦୁଇଦିନ ରହି ଆମେ କଲିକତାରୁ ଟ୍ରେନରେ ଆସି ଖଡଗପୁରଠାରେ ଓହ୍ଲାଇ ସେହି ଷ୍ଟେସନରେ ଗୋଟିଏ ରାତ୍ରି ପ୍ରାୟ ଅପେକ୍ଷା କଲୁ । କିଛି ସମୟ ପରେ ମୋର ସାନ ଭିଣୋଇ ଶ୍ରୀ ରାଧାମୋହନ ମିଶ୍ର ମୋ ନାନୀକୁ ନେଇ ଆସି ପହଁଞ୍ଚିଲେ । ଭିଣୋଇ ସେଠାରୁ ଟାଟା ନଗର ଫେରିଗଲେ । ନାନୀ ଆମ ସାଙ୍ଗରେ ନିମାପଡା ଆସିଲେ । ଆମେ ସକାଳ ବେଳା ଆସି ପୁରୀଠାରେ ରହିଲୁ । ସେଇଠି ଶୁଣିବାକୁ ପାଇଲି ତୀର୍ଥ କରି ଆସିଲା ପରେ ଜଗନ୍ନାଥ ଦର୍ଶନ ନ'କଲେ ସବୁ ଶୁଭ ଫଳ ନଷ୍ଟ ହୋଇଯାଏ । ପୁରୀରେ ଜଗନ୍ନାଥ ଦର୍ଶନ କରି ଦିନେ ଦୁଇ ଦିନ ରହିଲା ପରେ ଆମେ ଶଗଡରେ ବାଲିଘାଇ, ଷୋଳପୁର, ଗୋପ୍ ଦେଇ ନିମାପଡାରେ ପହଁଞ୍ଚିଲୁ ।

ସେହି ସମୟରେ ବୃନ୍ଦନାଥ ଦଳେଇ ନାମକ ଜଣେ ସବ୍ ଇନ୍ସିପେକ୍ଟର ଆମ ଘର ପାଖେ ରହୁଥିଲେ । ତାଙ୍କର ପୁଅ ପୂର୍ଣ୍ଣଚନ୍ଦ୍ର ଦଳେଇ ମୋର ଉପର କ୍ଲାସରେ ପଢୁଥିଲା । ସେ ଆମ ଘରେ ଶ୍ରୀ ଦାମୋଦର ସାରଙ୍କ ପାଖରେ ଟିଉସନ୍ ହେଉଥିଲେ । ବୃନ୍ଦନାଥ ଦଳେଇଙ୍କ ସହିତ ନନାଙ୍କର ଭଲ ସମ୍ପର୍କ ଥିଲା । ତାଙ୍କ ପୁଅ ଆମ ଘରକୁ ପଢିବାକୁ ଆସିବା ଦ୍ୱାରା ମୋ ସାଙ୍ଗରେ ଭଲ ସମ୍ପର୍କ ମଧ୍ୟ ଥିଲା । ମୋର ମନେ ଅଛି ଶ୍ରୀ ପୂର୍ଣ୍ଣଚନ୍ଦ୍ର ଦଳେଇ ସଂଧ୍ୟାବେଳେ ଆମ ଘରକୁ ଆସିଲା ବେଳେ ତାଙ୍କ କୁକୁର ପପି ଲଣ୍ଡଣ ପାଟିରେ ଧରି ସାଙ୍ଗରେ ଆସୁଥିଲା ଏବଂ ରାତିରେ ଗଲାବେଳେ ସେ ତାଙ୍କ ସାଙ୍ଗରେ ଯାଏ । ପୂର୍ଣ୍ଣ, ମୁଁ ଓ ଆଉ କେତେଜଣ ପିଲା ମିଶି ଗୋଟିଏ ଫୁଟବଲ୍ ଟିମ୍ ଗଢିଥିଲୁ । ଆମେ ପୋଷ୍ଟ ଅଫିସ୍ ପାଖରେ ଥିବା ପଡିଆରେ ଫୁଟବଲ୍ ଖେଳୁଥିଲୁ । -

## ସ୍ୱାଧୀନତା ସଂଗ୍ରାମୀ ଗିରଫ

ସେହି ସମୟରେ ଓଡିଶାରେ ଚାଲୁଥିବା କଂଗ୍ରେସ୍ ସରକାର ଭାଙ୍ଗିଗଲା । ଦିନେ ମୁଁ ଶୁଣିବାକୁ ପାଇଲି ଯେ ଶ୍ରୀ ଈଶ୍ୱର ଦାଶଙ୍କୁ ଗିରଫ କରାଯିବ । ମୋର ମନରେ କୌତୂହଳ ଜାତ ହେଲା କିପରି ଗିରଫ ହେଉଛନ୍ତି ଦେଖିବାକୁ । ହାଟ ପାଖରେ ଯେଉଁ ପଡିଆ ଥାଏ ସେଠି ଗୋଟିଏ ସଭା ହେଉଥାଏ । କେତେ ଲୋକ ଜମା ହୋଇଥାନ୍ତି । ପୋଲିସ୍ ସବ୍ଇନ୍ସପେକ୍ଟର ଶ୍ରୀ ବୃନ୍ଦନାଥ ଦଳେଇ ବି ସେଠାରେ ଥାଆନ୍ତି । କିଛି ସମୟପରେ ଈଶ୍ୱର ଦାଶ ସେ ସଭାରେ ଭାଷଣ ଦେଲେ । ମୋର ଯେତେଦୂର ମନେ ଅଛି ଯେ ଇଂରେଜ ସରକାରଙ୍କ ବିରୋଧରେ କେତେ ଗୁଡିଏ କଥା କହିଲେ । ତାପରେ ସବ୍ଇନ୍ସପେକ୍ଟର ବୃନ୍ଦନାଥ ଦଳେଇ କହିଲେ "ମୁଁ ଆପଣଙ୍କୁ ଗିରଫ କରୁଛି ।" ତା ପରେ ପରେ ସଭା ଭଙ୍ଗ ହୋଇଗଲା ଏବଂ ଈଶ୍ୱର ଦାସଙ୍କୁ ଗିରଫ କରି

ନେଲେ । ତାପରେ ଶ୍ରୀ ବୃନ୍ଦନାଥ ଦଳେଇ ନିମାପଡାରୁ ବଦଳି ହୋଇ ଚାଲିଗଲେ ।

ନିମାପଡା ପ୍ରାଇମେରୀ ସ୍କୁଲରେ ପଢୁଥିବା ସମୟରେ ଗୋଟିଏ ପ୍ରାଇଜ୍ ହୋଇଥିଲା । ସେଥିରେ ମୁଖ୍ୟ ଅତିଥି ହିସାବରେ ସ୍ୱର୍ଗତ ଡକ୍ଟର ଶ୍ୟାମଚନ୍ଦ୍ର ତ୍ରିପାଠୀ ସେତେବେଳେ ଶିକ୍ଷା ବିଭାଗର ନିର୍ଦ୍ଦେଶକ (Director) ଥିଲେ । ଏହି ପ୍ରାଇଜ୍‌ର ସାଂସ୍କୃତିକ କାର୍ଯ୍ୟକ୍ରମରେ ମୁଁ ଶ୍ରୀକୃଷ୍ଣ ଭୂମିକାରେ ଅଭିନୟ କରିଥିଲି । ଶ୍ରୀ ବ୍ରଜ ବିଧାର ମୋତେ ଅଭିନୟ ଶିଖାଉ ଥିଲେ । ମୋର ସହାଧ୍ୟାୟିନୀ ପ୍ରମିଳା ମହାନ୍ତି ମଧ୍ୟ ଅଭିନୟ କରିଥିଲେ । ସେ ପରବର୍ତ୍ତୀ କାଳରେ ପୁରୀର ସ୍ୱର୍ଗତ ଶ୍ରୀ ବ୍ରଜମୋହନ ମହାନ୍ତିଙ୍କୁ ବିବାହ କରିଥିଲେ । ପରେ ବ୍ରଜମୋହନ ମହାନ୍ତି ଓଡିଶାର ମନ୍ତ୍ରୀ ଏବଂ ବାଚସ୍ପତି ହୋଇଥିଲେ । ସେତେବେଳେ ପ୍ରମିଳା ମହାନ୍ତିଙ୍କ ସାଙ୍ଗରେ ଥରେ ମୋର ଦେଖା ହୋଇଥିଲା ।

## ଯୋଗୀ ସାର୍ ଓ ବିଶ୍ୱଯୁଦ୍ଧର କାହାଣୀ

ନିମାପଡାରେ ପହଁଞ୍ଚିବାର କେତେଦିନ ପରେ ସାନ ନାନୀର ଗୋଟିଏ ଝିଅ ହେଲା । ତାପର ଦିନ ବଡ ନାନୀର ଗୋଟିଏ ଝିଅ ହେଲା । ସେଇଥିରେ ସମସ୍ତେ ବ୍ୟସ୍ତ ରହିଲେ । ଏହିପରି କେତେଦିନ ଗଲାପରେ ସୁବିଧା ଦେଖି ମୁଁ ନନାଙ୍କୁ କହିଲି ତୁମେ ପରା ବିଶ୍ୱ ଯୁଦ୍ଧ କଣ ମୋତେ ବୁଝାଇବ ବୋଲି କହୁଥିଲ । ତାପରେ ଯେଉଁ ଯୋଗୀ ସାର୍ ମତେ ପଢାଉଥିଲେ ତାଙ୍କୁ କହିଲେ ମୋତେ ବିଶ୍ୱ ଯୁଦ୍ଧ ବିଷୟରେ ବୁଝାଇ ଦେବାପାଇଁ । ସେ ପ୍ରଥମେ ମୋତେ ପ୍ରଥମ ବିଶ୍ୱ ଯୁଦ୍ଧ କାହା କାହା ମଧ୍ୟରେ ଏବଂ କେବେ, କେଉଁଠାରେ ଓ କାହିଁକି ହୋଇଥିଲା କହିଥିଲେ । ମୋତେ ବୁଝାଇବା ପାଇଁ ପୃଥିବୀର ମାନଚିତ୍ର ଧରି କେଉଁ ଦେଶ କେଉଁଠି, କିଏ କାହାକୁ ଆକ୍ରମଣ କଲା ବୁଝାଇଲେ । ତାପରେ ଆଉ ବିଶ୍ୱ ଯୁଦ୍ଧ ନ'ହେବା ପାଇଁ ସବୁ ଦେଶକୁ ନେଇ ପୃଥିବୀର ଗୋଟିଏ ଅନୁଷ୍ଠାନ ଗଢାହେଲା, ତା ନାଆଁ ପଛେ ଜାଣିଲି "ଲିଗ୍ ଅଫ ନେସନ୍" । ପ୍ରଥମେ ବିଶ୍ୱଯୁଦ୍ଧରେ ଜର୍ମାନ ହାରି ଯାଇଥିଲେ । ଜର୍ମାନୀମାନେ ପ୍ରତିଶୋଧ ନେବା ପାଇଁ ଚେଷ୍ଟା କରୁଥିଲେ । ଯୋଗକୁ ହିଟଲର ବୋଲି ଜଣେ ଲୋକ ନିଜକୁ ନିଜେ ଜର୍ମାନୀର ଶାସନ କର୍ତ୍ତା ବୋଲି ପରିଚୟ ଦେଲେ । ତାପରେ ୧୯୩୯ ମସିହାରେ ଜର୍ମାନ ପ୍ରଥମେ ଯୁଦ୍ଧ ଆରମ୍ଭ କଲା । ଜର୍ମାନମାନେ ଭିତରେ ଭିତରେ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଉଥିଲେ । ସେ କଥା ଅନ୍ୟ ଦେଶମାନେ ଜାଣି ନ'ଥିଲେ । ମୁଁ ପଚାରିଲି ଏହି ଯୁଦ୍ଧ କଣ ରାମାୟଣ, ମହାଭାରତ ଯୁଦ୍ଧ ଠାରୁ ବେଶୀ ଭୟଙ୍କର ? ସେ କହିଲେ ରାମାୟଣ, ମହାଭାରତ ଯୁଦ୍ଧ ଗୋଟିଏ ନିର୍ଦ୍ଦିଷ୍ଟ ନିୟମ ଅନୁସାରେ ହେଉଥିଲା ଏବଂ ଦିନରେ ହେଉଥିଲା ସୂର୍ଯ୍ୟ ଅସ୍ତ ହୋଇଗଲେ ଯୁଦ୍ଧ ବନ୍ଦ ହୋଇଯାଉଥିଲା । ସେଥିରେ କେବଳ ଯୁଦ୍ଧ କରୁଥିବା ସୈନ୍ୟମାନେ ମରୁଥିଲେ ଏବଂ ଏହା ଗୋଟିଏ ନିର୍ଦ୍ଦିଷ୍ଟ ଜାଗାରେ ହେଉଥିଲା । ଯୁଦ୍ଧ କେତେ ଦିନ ମଧ୍ୟରେ ସୀମିତ ରହୁଥିଲା । ଯଥା ମହାଭାରତ ଯୁଦ୍ଧ ଅଠର ଦିନ ହୋଇଥିଲା । କିନ୍ତୁ ବର୍ତ୍ତମାନ ବିଶ୍ୱଯୁଦ୍ଧରେ କିଛି ନିର୍ଦ୍ଦିଷ୍ଟ ନିୟମ ନାହିଁ । ଯିଏ ଯାହାକୁ ଯେତେବେଳେ ଆକ୍ରମଣ କରିପାରିଲା । ଭୟଙ୍କର ମାରଣାସ୍ତ୍ର ବ୍ୟବହାର କରୁଥିଲେ । କିନ୍ତୁ ସାଧାରଣ ଲୋକ ମଲେ କିଛି ଯାଏ ଆସେ ନାହିଁ ।

ମୁଁ ଯୋଗୀ ସାରଙ୍କୁ ପଚାରିଲି କେଉଁ କେଉଁ ଦେଶ ଭିତରେ ଯୁଦ୍ଧ ହୋଇଥିଲା ଏବଂ

କାହିଁକି ହୋଇଥିଲା । ଯୋଗୀ ସାର୍ କହିଲେ "ଜର୍ମାନ୍‌ମାନେ ପ୍ରଥମ ବିଶ୍ୱ ଯୁଦ୍ଧରେ ପରାସ୍ତ ହୋଇଥିଲେ । ତେଣୁ ପ୍ରତିଶୋଧ ନେବାକୁ ଠିକ୍ କରୁଥିଲେ । ସେହି ସମୟରେ ଜର୍ମାନମାନଙ୍କର ଓ ଚେକୋସ୍ଲୋଭାକିଆ ବାସୀଙ୍କ ମଧ୍ୟରେ ବିରୋଧ ଘଟିଥିଲା । କିନ୍ତୁ ବ୍ରିଟେନର ପ୍ରଧାନ ମନ୍ତ୍ରୀ ଚେମ୍ବରଲେନ୍ ଚେଷ୍ଟା କରି କେତେଦିନ ପାଇଁ ଯୁଦ୍ଧକୁ ଏଡାଇ ଦେଲେ । ପୁଣି ଜର୍ମାନମାନେ ପୋଲାଣ୍ଡ ଠାରେ ଗୋଟିଏ ବନ୍ଦର ପାଇବା ପାଇଁ ଦାବି କଲେ । ଏହା ତାଙ୍କର ବାଣିଜ୍ୟ କରିବା ପାଇଁ ଏକାନ୍ତ ଆବଶ୍ୟକ ବୋଲି ଜର୍ମାନର ସର୍ବମାନ୍ୟ କର୍ତ୍ତା ହିଟଲର ଦାବି କଲେ । ଏଥି ସକାଶେ ହଠାତ୍ ହିଟଲର ପୋଲାଣ୍ଡ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ ଏବଂ ପରେ ବ୍ରିଟେନ୍ ଓ ଫ୍ରାନ୍ସ ଜର୍ମାନ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ସେପ୍ଟେମ୍ବର ୧୯୩୯ ମସିହାରେ ଦ୍ୱିତୀୟ ବିଶ୍ୱ ଯୁଦ୍ଧ ଆରମ୍ଭ ହେଲା ।

## ବାଲ୍ୟ ଚପଳତା

ସେହି ସମୟରେ ଆମେ ସମସ୍ତେ ଦଦେଇଙ୍କ ଝିଅର ଝିଅ ବାହାଘର ପାଇଁ ବୀରରାମଚନ୍ଦ୍ରପୁର ଯାଇଥିଲୁ । ସେଠାରେ ରହିବା ସମୟରେ ଦିନେ ସକାଳେ ବୀରରାମଚନ୍ଦ୍ରପୁର ଗ୍ରାମ ମଧ୍ୟରେ ଥିବା ରେଳ ଲାଇନ୍ ପାଖକୁ ମୁଁ ବୁଲିବାକୁ ଯାଇଥିଲି । ସେତେବେଳେ ଗୋଟିଏ ଘଟଣା ଘଟିଥିଲା । ସେଥିପାଇଁ ମୁଁ ଏକା ଦାୟୀ । ସେ ଘଟଣାଟି ପାଇଁ ମୁଁ ସେତେବେଳେ ବହୁତ ଅନୁତାପ କରିଲି । ଏବେ ମଧ୍ୟ ଅନୁତାପ କରୁଛି । ସେ ଘଟଣାଟି ହେଲା ଆମେ ତିନି ଚାରିଜଣ ପିଲା ଖେଳିବା ଅବସ୍ଥାରେ ରେଳ ଧାରଣା ଉପରେ ପଇସାଟିଏ ଥୋଇଦେଲେ ଗାଡି ଚାଲିଗଲା ପରେ ପଇସାଟି ବଡ଼ି ଟଙ୍କା ଭଳିଆ ହୋଇଯାଏ । ସେହି ସମୟରେ ମୋର କାହିଁକି ମନକୁ ଆସିଲା ଲାଇନ୍ ଉପରେ ଖଣ୍ଡେ ଛୋଟ ପଥର ନେଇକରି ଥୋଇଦେଲି । ସଙ୍ଗେ ସଙ୍ଗେ ରେଳ ଫାଟକର ଜଗୁଆଳି ମୋ ପାଖକୁ ଦୌଡି ଆସିଲା ଏବଂ ପଥରଟି ଫୋପାଡି ଦେଲା ମୋତେ ବହୁତ ଗାଳି ଗୁଲଜ କଲା । ଅନ୍ୟମାନଙ୍କୁ ସବୁ ବାହାର କରିଦେଲା । ମୋତେ ଏତେ ଅପମାନ ଲାଗିଲା ମୁଁ କାହାକୁ କିଛି କହିଲି ନାହିଁ । କିନ୍ତୁ ପରେ ଜାଣିଲି ପଥର ଖଣ୍ଡେ ଥୋଇଦେବା ଦ୍ୱାରା ଟ୍ରେନ୍‌ର ଦୁର୍ଘଟଣା ହୋଇ ଥାଆନ୍ତା, କେତେ ଲୋକ ମରି ଯାଇଥାଆନ୍ତେ । ମୁଁ ଆଉ ସେଠାକୁ ଜମା ଯାଇନାହିଁ । ଏବେବି ବୀରରାମଚନ୍ଦ୍ରପୁର ଗ୍ରାମ ଦେଇ ଟ୍ରେନ୍‌ରେ ଗଲା ବେଳେ ମୋର ସେ କଥା ମନେ ପଡିଯାଏ । ମୁଁ ନିଜକୁ ଭାରି ଅନୁତପ୍ତ ମନେ କରେ ।

ଆମର ବୀରରାମଚନ୍ଦ୍ରପୁରରେ ଦୁଇଦିନ ରହିଲା ପରେ ଆମେ ପୁଣି ମୋ ସାନ ଭିଣୋଇ ଶ୍ରୀ ରାଧାମୋହନ ମିଶ୍ରଙ୍କ ଭାଈଙ୍କର ପୁଅ ବ୍ରତ ଘରକୁ ଶ୍ରୀରାମଚନ୍ଦ୍ରପୁର ଯାଇଥିଲୁ । ରାଧାମୋହନ ଭାଇନାଙ୍କ ବଡ ଭାଈଙ୍କ ତିନୋଟି ପୁଅ ବ୍ରତ ହେଉଥିଲେ । ତାଙ୍କ ବ୍ରତଘର ଦିନ ଗୋଟିଏ ମଜା ଘଟଣା ଘଟିଥିଲା । ବ୍ରତ ଘର ପାଇଁ ରନ୍ଧନଶାଳାର ମୁଖ୍ୟ ରାନ୍ଧୁଣିଆ କହିଲେ ମୋର ଅଫିମ ଦରକାର ନ'ହେଲେ ମୁଁ ରାନ୍ଧି ପାରିବି ନାହିଁ । କାରଣ ମୋର ଅଫିମ ଖାଇବାର ବେଳ ହୋଇଗଲାଣି । ବ୍ରତ ଘରର ରନ୍ଧାବଢା କାର୍ଯ୍ୟ ଯେଉଁ ବ୍ୟକ୍ତି ବୁଝୁଥିଲେ ସେ କହିଲେ ଅଫିମ ମଗାଇ ଦେଉଛି । ତାଙ୍କ ନାମ ମୋର ମନେ ନାହିଁ । ମୋ ଭିଣୋଇ ରାଧାମୋହନ ବାବୁ ଶୋରିଷ ତେଲ କାଣ୍ଡିରୁ କିଛି ବାହାର କରି ତାକୁ ଚକଟା ଚକଟି କରି ଅଫିମ ଭଳି ଟେଳା

ଗୋଟେ ତିଆରି କରି ଏବଂ ମୁଖ୍ୟ ରାନ୍ଧୁଣିଆକୁ ଖାଇବାକୁ ଦେଇଦେଲେ । ସେ ରନ୍ଧାବଢ଼ା ଠିକ୍ ଠାକ୍ କରୁଥିଲା । ଏହା ଭିତରେ ରାଧାମୋହନ ଭାଇନା ସତ୍ୟବାଦୀ ଲୋକ ପଠାଇ ଅଫିମ କିଣି ଆଣି ପାଖରେ ରଖିଥିଲେ । ରନ୍ଧାରନ୍ଧି ସରିଲା ପରେ ତାଙ୍କୁ ପ୍ରକୃତ ଅଫିମ ଟୋପାଟି ଦେଲେ କହିଲେ, ତୁମର ଦରକାର ହେଲେ ତୁମେ ଖାଇବ । ବ୍ରତଘର ସାରି ସମସ୍ତେ ଯିବାପରେ ମୁଁ ରାଧାମୋହନ ଭାଇନାଙ୍କ ଠାରୁ ଏକଥା ଶୁଣିଲି । ତାଙ୍କ ଘରେ ଦିନେ ଦୁଇଦିନ ରହିଲା ପରେ ଆମେ ପୁଣି ନିମାପଡା ଚାଲି ଆସିଲୁ ।

ମୁଁ ସେଠାରେ ଶୁଣିଥିଲି ସେ ଗାଆଁରେ ଦୋଳପୂର୍ଣ୍ଣମୀ ମହାସମାରୋହରେ ପାଳନ କରାଯାଏ ଏବଂ ମୋ ସାନ ଭିଣୋଇ ଦୋଳପୂର୍ଣ୍ଣମୀକୁ ସବୁ ବର୍ଷ ତାଙ୍କ ଗ୍ରାମକୁ ଆସନ୍ତି । ସିଏ ସବୁ ବର୍ଷ ନାଗାଯାତ୍ରାରେ ନାଗା ହୁଅନ୍ତି । ମୁଁ ବର୍ଷେ ଭିଣୋଇଙ୍କ କହିବା ଅନୁସାରେ ତାଙ୍କ ଗାଁକୁ ନାଗାଯାତ୍ରା ଦେଖିବାକୁ ଯାଇଥିଲି । ମୋ ଭିଣୋଇ ନାଗା ହୋଇଥିବାର ମୁଁ ଦେଖିଲି । ମୋ ବଡ ନାନୀ ଘର ବୀରନରସିଂହ ପୁର । ଶୀତଳଷଷ୍ଠୀକୁ ତାଙ୍କ ଗ୍ରାମରେ ବହୁତ ହାବେଳି ବାଣ ମରାଯାଏ । ଗାଁର ସମସ୍ତ ଲୋକ ଯେଉଁମାନେ ଚାକିରି କରି ବାହାରେ ରହୁ ଥାଆନ୍ତି ଛୁଟି ନେଇ ଗ୍ରାମକୁ ଆସନ୍ତି । ହାବେଳି ବାଣ ରାତିଯାକ ମରାଯାଏ ।

ସେହି ସମୟରେ ଚିନ୍ତା ଭାଇନା ମଧ୍ୟ ମୋତେ ପଢାଉ ଥିଲେ । ମୋର ପଢିବାରେ ଭୁଲ ହେଲେ ପେନ୍‌ସିଲରେ ଆଙ୍ଗୁଠିର ଗଣ୍ଠିକୁ ବାଡେଇ ଦେଉଥିଲେ । ସେ ସେତେବେଳେ ନବମ ଶ୍ରେଣୀରେ ପଢୁଥିଲେ । ସେ ପଢି ବସିବା ବେଳେ ମୁଁ ବାଧ୍ୟ ହୋଇ ତାଙ୍କ ସାଙ୍ଗରେ ପଢି ବସେ । ସେ ସେତେବେଳେ ନିମାପଡାରେ ଘରେ ଘରେ ବୁଲି ଖବର କାଗଜ ଦେଉଥିଲେ । କେଉଁ ଖବର କାଗଜ ଦେଉଥିଲେ ମୋର ମନେ ନାହିଁ ।

## ନିମାପଡାରେ ନାଟକ

ଏଠି ପ୍ରାୟ ପ୍ରତିବର୍ଷ ରାହାସ ବାଡିରେ ନିମାପଡା ଅଞ୍ଚଳର ପିଲାମାନେ ମିଶି ଗୋଟିଏ ନାଟକ ପରିବେଷଣ କରନ୍ତି । ମୋର କେତୋଟି ନାଟକର ନାମ ମନେ ଅଛି । ଯଥା 'ମାତୃପୂଜା', ସେଓଜି, 'ଚନ୍ଦ୍ରଗୁପ୍ତ' ଓ ଫକୀରମୋହନଙ୍କ ଲେଖା 'ମାମୁଁ' । ଏହା ବ୍ୟତୀତ ଅନେକ ଗୁଡିଏ ନାଟକ କରନ୍ତି । ମୁଁ ପ୍ରାୟ ସବୁ ନାଟକ ଦେଖିଛି । କିନ୍ତୁ ମୋର ସବୁ ନାଟକର ନାମ ମନେ ନାହିଁ । ବର୍ଷେ ପୁରୀର ମୋହନ ଗୋସ୍ୱାମୀ ନାଟକ ପରିବେଷଣ କରିବା ପାଇଁ ନିମାପଡା ଆସିଥିଲେ । ମୁଁ ସେଥିରୁ କେତେଗୁଡିଏ ନାଟକ ଦେଖିଛି । ସେତେବେଳର ସବୁ ନାଟକର ବିଶେଷତ୍ୱ ହେଲା, ସେଥିରେ କୌଣସି ଝିଅମାନେ ଯୋଗ ଦେଉ ନ'ଥିଲେ । କିନ୍ତୁ ପୁଅମାନେ ଝିଅ ବେଶରେ ନାଟକ ପରିବେଷଣ କରୁଥିଲେ । ନିମାପଡାର ବାସିନ୍ଦାମାନେ ନାଟକ ପରିବେଷଣ କଲା ବେଳେ ସାଧାରଣତଃ ନାଟକର ରୂପସଜ୍ଜା ପାଇଁ ପୁରୀର ରାମଚଣ୍ଡୀ ସାହିର କୃଷ୍ଣ ମୁଖାର୍ଜୀ ପୋଷାକ ପତ୍ର ନେଇ ଆସି ରୂପ ସଜ୍ଜା କରୁଥିଲେ । ମୋର ମନେ ଅଛି ସ୍ୱର୍ଗତ ଶ୍ରୀ ବିଶ୍ୱାନନ୍ଦ ଦାସ, ଶ୍ରୀ ପ୍ରାଣନାଥ ମହାପାତ୍ର ନାମକ ଦୁଇଜଣ ଲୋକ ସବୁବେଳେ ଝିଅ ପାର୍ଟ ନେଉଥିଲେ । ସ୍ୱର୍ଗତ ଶ୍ରୀ ବିଶ୍ୱାନନ୍ଦ ଦାସ ଜଣେ ବିଶିଷ୍ଟ ହୋମିଓ ପ୍ୟାଥିକ୍ ଡାକ୍ତର ଥିଲେ ।

୧୯୪୧ ମସିହାର ଶେଷ ଆଡକୁ ମୁଁ ଏବଂ ଆଉ ଜଣେ ଝିଅ ତାଙ୍କ ନାମ ବସନ୍ତ

କୁମାରୀ ଦେବୀ ଅପରପ୍ରାଇମେରୀ ବୃତ୍ତି ପରିକ୍ଷା ଦେବାକୁ ପୁରୀ ଯାଇଥିଲୁ ଏବଂ ଆମେ କେହି ପାଇଲୁ ନାହିଁ । ସେହି ପ୍ରାଇମେରୀ ପଢ଼ିବା ସମୟରେ ଆମ ଘରେ ଥିବା ଗୋଟିଏ ଟେବୁଲ ଘଣ୍ଟା ଆଉ ଚାଲିଲା ନାହିଁ । ମୁଁ ଚିନ୍ତା ଭାଇନାଙ୍କୁ ପଚାରିଲି, ଟେବୁଲ ଘଣ୍ଟାଟି କାହିଁକି ବନ୍ଦ ହୋଇଗଲା, ସେ ଉତ୍ତରରେ କହିଲେ, ଟେବୁଲ ଘଣ୍ଟାର ହେୟାର ସ୍ପ୍ରିଙ୍ଗଟି ଛିଣ୍ଡି ଯାଇଛି, ତେଣୁ ଚାଲୁ ନାହିଁ । ଥରେ ନନା ଏବଂ ଚିନ୍ତା ଭାଇନା ଅଳ୍ପ କେତେଦିନ ପାଇଁ ନିମାପଡାରୁ ବାହାରକୁ ଯାଇଥିଲେ ।

ମୁଁ ଆଗରୁ ଦେଖିଥିଲି ନିମାପଡା ଡାକ୍ତରଖାନାରେ ଗୋଟିଏ କାନ୍ଥ ଘଣ୍ଟା ରହିଥିଲା ଏବଂ ସେହି କାନ୍ଥ ଘଣ୍ଟାଟି ପେଣ୍ଡୁଲମ୍ ସାହାଯ୍ୟରେ ଚାଲୁଥିଲା । ମୁଁ ଚିନ୍ତା କରି ଭାବିଲି, ଗୋଟିଏ ଛୋଟିଆ ପେଣ୍ଡୁଲମ୍ ଝୁଲାଇ ଦେଲେ ବୋଧେ ଚାଲିବ । ଦିନେ କେହି ଘରେ ନ ଥିବା ସମୟରେ ଘଣ୍ଟାଟିକୁ ଖୋଲି ଦେଖିଲି ଗୋଟିଏ ପିତଳ ଚକକୁ ଲାଗି ଗୋଟିଏ ସରୁ ତାରର ଏକ ମୁଣ୍ଡ ସେହି ଅଖ ଚାରି ପାଖରେ ଗୁଡିଆ ହୋଇଛି । ଅନ୍ୟ ମୁଣ୍ଡଟି ଘଣ୍ଟା ଫ୍ରେମ୍ ଦେହରେ ସଂଯୁକ୍ତ ହୋଇଛି । କିନ୍ତୁ ସରୁ ତାରଟି ଛିଣ୍ଡି ଯାଇଛି । ମୋର ହୃଦବୋଧ ହେଲା ଯେ ସେହି ତାରଟି ହେଉଛି ହେୟାର ସ୍ପ୍ରିଙ୍ଗ୍ ଓ ସେହି ଚକଟି ହେଉଛି ବାଲାନ୍ସ ଚକ । ବାଲାନ୍ସ ଚକକୁ ଯେ କୌଣସି ପଟେ ହାତ ଆଙ୍ଗୁଠିରେ ଘୂରାଇ ଦେଲେ କିଛିଦୂର ଘୁରି ପୁଣି ପଛକୁ ଘୁରି ଫେରେ । ମୁଁ ଗୋଟେ ସରୁ ଟିଣ ପାତିଆକୁ ବାଲାନ୍ସ ଚକ ଝୁଲିବାର ମଝି ଅଂଶରେ ବାନ୍ଧିଦେଲି ଏବଂ ଗୋଟିଏ ନଟ୍ ବୋଲଟ୍ ଟିଣ ମୁଣ୍ଡରେ ଲଗାଇ ଦେଲି । ତାହା ଏକ ପେଣ୍ଡୁଲମ୍ ପରି ହୋଇଗଲା । ଘଣ୍ଟାଟିକୁ ଟେବୁଲ ଧାରରେ ଏପରି ଥୋଇଦେଲି ଯେପରି ଲାଗିଥିବା ପେଣ୍ଡୁଲମ୍‌ଟି ଝୁଲିପାରିବ । ଏହିପରି ବିଭିନ୍ନ ପ୍ରକାରର ସାମାନ୍ୟ ପରିବର୍ତ୍ତନ କରି ଦେଖିଲି ଘଣ୍ଟାଟି କିଛି ସମୟ ଚାଲି ପୁଣି ବନ୍ଦ ହୋଇଗଲା । ଭାବିଲି, ବୋଧେ ଘଣ୍ଟାରେ ତେଲ ଦିଆଯାଇ ନାହିଁ । ସେଥିପାଇଁ ବନ୍ଦ ହୋଇଯାଉଛି । ତେଣୁ ପକାଘରେ ଥିବା ଜଡା ତେଲକୁ ଘଣ୍ଟାରେ ପକାଇ ଦେଲି, ଘଣ୍ଟା ଆଉ ଚାଲିଲା ନାହିଁ । ତାକୁ ବନ୍ଦ କରି ରଖିଦେଲି । ତାର କେତେଦିନ ପରେ ନନା ବିରକ୍ତ ହୋଇ ମୋତେ ଗାଳିଦେଲେ ।

## ପିଲାଦିନର ସାଙ୍ଗସାଥୀ

ପ୍ରାଇମେରୀ ସ୍କୁଲରେ ପଢ଼ିଲା ସମୟରେ କେତେଜଣ ସହପାଠୀଙ୍କ ବିଷୟରେ କିଛି ଲେଖିବା ପାଇଁ ଇଚ୍ଛା କରୁଛି । ମୋ ସାଙ୍ଗରେ ଶ୍ରୀ ହରିହର ବେହେରା ନାମକ ଜଣେ ପିଲା ନିମ୍ନ ପ୍ରାଇମେରୀ ସ୍କୁଲରେ ପଢୁଥିଲେ । ପରବର୍ତ୍ତୀ କାଳରେ ରେଭେନ୍ସା କଲେଜରେ ମୁଁ ପଢ଼ିବା ସମୟରେ ଏବଂ ଚାକିରି କରିବା ସମୟରେ ତାଙ୍କୁ ରେଭେନ୍ସା କଲେଜରେ ଚତୁର୍ଥ ଶ୍ରେଣୀ କର୍ମଚାରୀ ରୂପେ କାମ କରୁଥିବାର ଦେଖିଛି । ମୁଁ ତାଙ୍କ ଉପରେ ବହୁତ ଖୁସି ଥିଲି । କଲେଜରେ କୌଣସି କାମ ପଡିଲେ ସେ ମୋତେ ସାହାଯ୍ୟ କରନ୍ତି । ଶ୍ରୀ ସତ୍ୟନାରାୟଣ ପଟ୍ଟନାୟକ ନାମକ ଜଣେ ପିଲା ମୋ ତଳ କ୍ଲାସରେ ପଢୁଥିଲେ । ସେ ଶିକ୍ଷାବିଭାଗ ସବ୍‌ଇନସ୍ପେକ୍ଟରଙ୍କର ପୁଅ ଥିଲେ । ତାଙ୍କ ବାପା ସରକାରୀ ବାସଘରେ ରହୁଥିଲେ । ସେ ଘରଟି ମୋର ବଡ ଭିଣୋଇଙ୍କର ସରକାରୀ ବାସ ଭବନକୁ ପ୍ରାୟ ଲାଗିଥିଲା । ତାଙ୍କ ନାମ ଶ୍ରୀଯୁକ୍ତ ବାଳମୁକୁନ୍ଦ ପଟ୍ଟନାୟକ । ମୁଁ ବି.ଏସ୍‌ସି ପଢ଼ିଲାବେଳେ ସତ୍ୟନାରାୟଣ ବାବୁଙ୍କ ସଙ୍ଗେ ପଶ୍ଚିମ ଛାତ୍ରାବାସରେ

ଦେଖା ହୋଇଥିଲା । ପରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ବଟାନି ପ୍ରଫେସର ହୋଇ ଅବସର ନେଇଛନ୍ତି ଏବଂ ଭୁବନେଶ୍ୱରର ଯାଗମରା ଠାରେ ନିଜେ ଘର ତିଆରି କରି ବର୍ତ୍ତମାନ ରହୁଛନ୍ତି । ଆଉ ଜଣେ ମୋର ସହପାଠୀ ଥିଲେ, ତାଙ୍କ ନାମ ହେଉଛି ଗୋପବନ୍ଧୁ ମହାପାତ୍ର । ତାଙ୍କ ପିତାଙ୍କ ନାମ ଶ୍ରୀ ଦୀନବନ୍ଧୁ ମହାପାତ୍ର । ଦୀନବନ୍ଧୁ ମହାପାତ୍ର ସେତେବେଳେ ନିମାପଡା ଡାକ୍ତରଖାନାରେ ଡାକ୍ତର ଥିଲେ । ମୁଁ ବି.ଏସ୍‌ସି ପଢିଲାବେଳେ ସେ ମୋ ସାଙ୍ଗରେ ବି.ଏସ୍‌ସି ପଢୁଥିଲେ । ସେ ସେତେବେଳେ ପୁରୀରେ ରହୁଥିଲେ । ମୋ ସାଙ୍ଗରେ ତାଙ୍କର ଆଉ ଦେଖା ହୋଇନାହିଁ । ବସନ୍ତ ଲତା ନାମକ ଜଣେ ଛାତ୍ରୀ ମୋର ସହପାଠିନୀ ଥିଲେ । ତାଙ୍କ ଘର ଭୁବନୀ ପୁର ଗ୍ରାମରେ । ତାଙ୍କର ବଡ ଭାଇ ଶ୍ରୀ ବିଶ୍ୱାନନ୍ଦ ଦାଶ ନିମାପଡାରେ ହୋମିଓ ପ୍ୟାଥିକ୍ ଡାକ୍ତର ହିସାବରେ ନାମ କମାଇ  ଥିଲେ । ତାଙ୍କର ଆଉ ଜଣେ ଭାଇ ଶ୍ରୀ ବ୍ରଜାନନ୍ଦ ଦାଶ ଚାକିରି କରୁଥିଲେ ଏବଂ ଭଲ ଫୁଟବଲ୍ ଖେଳୁଥିଲେ । ମୁଁ ପ୍ରାଇମେରୀ ସ୍କୁଲ୍‌ରେ ପଢିଲା ସମୟରେ ସେତେବେଳେ ନିମାପଡା ହାଇସ୍କୁଲରେ ଛାତ୍ର ଓ ଶିକ୍ଷକମାନଙ୍କର ମିଶି ନିମାପଡାର ବାସିନ୍ଦାଙ୍କ ମଧ୍ୟରେ ଫୁଟବଲ୍ ମ୍ୟାଚ୍ ଖେଳ ହେଉଥିଲା । କିନ୍ତୁ ସବୁ ବର୍ଷ ସ୍କୁଲର ଖେଳାଳିମାନେ ଜୟଯୁକ୍ତ ହେଉଥିଲେ । ଥରେ ସୁଶୀଲ ବାବୁ ନାମକ ଜଣେ ସରକାରୀ  କର୍ମଚାରୀ ନିମାପଡା ବଦଳି ହୋଇ ଆସିଥିଲେ । ସେତେବେଳେ ଯେଉଁ ମ୍ୟାଚ୍ ହେଉଥିଲା କେବଳ ତାଙ୍କ ଯୋଗୁଁ ନିମାପଡା ବାସିନ୍ଦାମାନେ ଫୁଟବଲ୍ ଖେଳରେ ଜୟଯୁକ୍ତ ହେଉଥିଲେ ।

## ମାଇନର ସ୍କୁଲ ଶିକ୍ଷା

୧୯୪୨ ଜାନୁଆରୀ ମାସରେ ନିମାପଡା ହାଇସ୍କୁଲରେ ଷଷ୍ଠ ଶ୍ରେଣୀରେ ନାମ ଲେଖାଇଲି । ସେତେବେଳେ ଶ୍ରୀ ପଦ୍ମନାଭ ମହାପାତ୍ର ସ୍କୁଲର ପ୍ରଧାନଶିକ୍ଷକ ଥିଲେ । ଶ୍ରୀ ବାଉରୀବନ୍ଧୁ ପାଣିଗ୍ରାହୀ  ସହକାରୀ ପ୍ରଧାନ ଶିକ୍ଷକ ଥିଲେ । ଶ୍ରୀ ବାଉରୀବନ୍ଧୁ ପାଣିଗ୍ରାହୀ  ଆମର ଇଂରାଜୀ କ୍ଲାସ ନେଉଥିଲେ । ଶ୍ରୀ ମଧୁସୁଦନ ମିଶ୍ର ବୋଲି ଜଣେ ଶିକ୍ଷକ ଆମର ଗଣିତ ଓ ଭୂଗୋଳ ପଢାଉ ଥିଲେ ଏବଂ ଶ୍ରୀ ସୀମାଞ୍ଚଳ ପଣ୍ଡା ବୋଲି ଜଣେ ବ୍ୟକ୍ତି ଆନ୍ଧ୍ର ବିଶ୍ୱବିଦ୍ୟାଳୟରୁ ପାସ୍ କରି ଆମକୁ ଇଂରାଜୀ ପଢାଉ ଥିଲେ । ସେ ବହୁତ ରାଗୀ ଥିଲେ । ଖରାଛୁଟି ପୂର୍ବରୁ ଶ୍ରୀ ରାମଚନ୍ଦ୍ର ମିଶ୍ର ନାମକ ଜଣେ ଶିକ୍ଷକ ସ୍କୁଲରେ ଯୋଗ ଦେଲେ । ସେ ଆମକୁ ଇତିହାସ ପଢାଉ ଥିଲେ।

ମୋର ମାଇନର ସ୍କୁଲରେ ନାମ ଲେଖା ହେବାପରେ ରାଧାମୋହନ ଭାଇନା ସାନ ନାନୀଙ୍କର ପିଲାହେବାର ଥିବାରୁ, ତାଙ୍କୁ ଆମ ଘରେ ଛାଡିବାକୁ ନିମାପଡା ଆସିଥିଲେ । ତାର ଅଳ୍ପ କେତେଦିନ ପରେ ମାଘ ସପ୍ତମୀ ବ୍ରତ ପଡୁଥିଲା । ରାଧାମୋହନ ଭାଇନାଙ୍କ ପାଇଁ କୋଣାର୍କର କାରୁକାର୍ଯ୍ୟ ଦେଖିବାର ଏବଂ ଚନ୍ଦ୍ରଭାଗାରେ ସେହି ମାଘସପ୍ତମୀ ଦିନ ସୂର୍ଯ୍ୟ ଉଦୟ ଦେଖିବାର ବ୍ୟବସ୍ଥା ହୋଇଥିଲା । ସେଥିପାଇଁ ପୂର୍ବଦିନ ରାତ୍ରିରୁ ସେ ଏବଂ ମୁଁ ପରମୀ ସ୍ୱାଇଁ ଶଗଡରେ କୋଣାର୍କ ଅଭିମୁଖେ ଯାତ୍ରା କଲୁ । ଯୁଣେଇ ଗ୍ରାମ ପାଖେ ଦୋକାନରୁ କିଛି ଖାଇ ଦେଇ ସେହି ଶଗଡରେ ଆମେ ଦୁହେଁ ଶୋଇପଡିଲୁ । ସୂର୍ଯ୍ୟ ଉଦୟ ପୂର୍ବରୁ ଯୁଣେଇରୁ ବାହାରି ଚନ୍ଦ୍ରଭାଗାରେ ପହଁଞ୍ଚିଲୁ । ଚନ୍ଦ୍ରଭାଗା ପାଣି ଛିଞ୍ଚି ହୋଇ ସୂର୍ଯ୍ୟଉଦୟ ଦେଖିବାକୁ ଗଲୁ । ସୂର୍ଯ୍ୟୋଦୟ

ଦେଖିସାରିଲା ପରେ ଆମେ ଶଗଡରେ କୋଣାର୍କ ଆସି କୋଣାର୍କ ଦେଉଳର କାରୁକାର୍ଯ୍ୟ ଦେଖିଲୁ । ତାପରେ କୋଣାର୍କଠାରୁ ନିମାପଡା ଅଭିମୁଖେ ଯାତ୍ରାକଲୁ । ନିମାପଡାରେ ରାତି ଟିକିଏ ହେବାପରେ ଆମେ ପହଁଞ୍ଚିଲୁ । କେତେ ଦିନ ପରେ ରାଧାମୋହନ ଭାଇନା ପୁଣି ଟାଟା ନଗର ଚାଲିଗଲେ ।

ଆମ ଘରକୁ ଲାଗି ପଶ୍ଚିମ ଦିଗରେ ଗୌରୀ ବାବୁ ନାମକ ଜଣେ ବୁଢା ଲୋକ ରହୁଥିଲେ । ତାଙ୍କର ଗୁନ ନାମକ ଗୋଟିଏ ପୁଅ ଥିଲେ । ତାଙ୍କ ସ୍ତ୍ରୀଙ୍କୁ ଆମେ ଗୁନ ମା ବୋଲି ଡାକୁଥିଲୁ । ସେମାନେ ଥରେ କଟକ ଯାଇଥିଲେ । ବୋଧେ ଗୌରୀ ବାବୁଙ୍କର କାଳ ହୋଇଗଲା । ଗୁନ ବାବୁ ଓ ତାଙ୍କ ମା ନିମାପଡା ଆସି ତାଙ୍କ ରହିବା ଘର ଏବଂ କେତେକ ଆସବାସ ସାମଗ୍ରୀ ବିକାବିକି କରି କଟକ ଚାଲିଗଲେ । ସେତେବେଳେ ପତିତପାବନ ଷ୍ଟୋର ନାମକ ତାଙ୍କର ଏକ ମନୋହରୀ ଦୋକାନ ଥିଲା । ସେ ଦୋକାନଟି ନନା କିଣି ନେଲେ । ସେ ଦୋକାନ କଥା ବୁଝାବୁଝି କରିବା ପାଇଁ ଚିନ୍ତା ଭାଇନାଙ୍କୁ କହିଲେ । ସେ ଦୋକାନର ବିଜ୍ଞାପନ ଦିଆଗଲା "ଆସନ୍ତୁ, ବସନ୍ତୁ, ଦେଖନ୍ତୁ, ମାଟିର ଦରରେ ଖାଣ୍ଟି ସୁନା କ୍ରୟ କରନ୍ତୁ"। ଦୋକାନଟି କିଛିଦିନ ଚାଲିଥିଲା ।

## ବ୍ରତଘରରେ ମୋର ଅନୁଭୂତି

ଦିନେ ମାର୍ଚ୍ଚ ମାସରେ ନନା ଶ୍ରୀ ନିବାସ ନାୟକ ବୋଲି ଜଣେ ଜ୍ୟୋତିଷଙ୍କୁ ଡାକି ଆମ ଘରର ସମସ୍ତଙ୍କର ଜାତକ ଦେଖାଇଲେ । ସେହିଦିନ ନନା ନିଷ୍ପତ୍ତି କଲେ ଯେ ମୋର ବ୍ରତ ଘର ଅପ୍ରେଲ ଦଶ ତାରିଖରେ ହେବ । ସେହି ଅନୁସାରେ ସମସ୍ତ ବନ୍ଧୁ ବାନ୍ଧବଙ୍କୁ ଆସିବା ପାଇଁ ଚିଠି ଦିଆଗଲା । ସେତେବେଳେ ମୋର ବଡ ଭିଣୋଇଙ୍କ ବସ୍ତା ବଦଳି ହୋଇ ଯାଇଥିଲା । କିନ୍ତୁ ବଡ ନାନୀ ନିମାପଡାର ଆମ ଘରେ ଥାଆନ୍ତି । ସାନ ଭିଣୋଇ କିଛି ଦିନ ପରେ ଜାମ୍‌ସେଦ୍‌ପୁରରୁ ଆସି ନିମାପଡାରେ ପହଁଞ୍ଚିଲେ । ଗ୍ରାମରୁ କେତେ ଲୋକ ନିମାପଡାରେ ପହଁଞ୍ଚିଲେ । ମୋର ବ୍ରତ ଘର ଠିକ୍ ପୂର୍ବରୁ ବଡ ଭିଣୋଇ ଆସି ପହଁଞ୍ଚିଲେ । ମୋ ବ୍ରତଘର ଭଲଭାବରେ ହୋଇଗଲା । ଏଥିରେ ନିମାପଡାର ବହୁତ ଲୋକ ନିମନ୍ତ୍ରିତ ହୋଇଥିଲେ । ବ୍ରତ ଘରେ ଆମର ଗୋଟିଏ ପ୍ରଥା ଅଛି, ବ୍ରତ ହେଉଥିବା ପିଲାଟି, କର୍ମଣିଆଙ୍କ କଥାରେ କହେ, ମାମୁଁ ବ୍ରତ କଲେ, ନନା ବାହା କଲେନି, ତେଣୁ ମୁଁ ଋଷିକରି ଯାଉଛି । ତାପରେ ଅନ୍ୟମାନେ ପ୍ରଶ୍ନ କରନ୍ତି, ତେବେ କେତୋଟି ବାହା ହେବ । ଏହାର ଉତ୍ତରରେ କୁହାଯାଏ, ମୁଁ ଗୋଟିଏ ବାହା ହେବି । କିନ୍ତୁ ମୁଁ କହିଲି, ମୁଁ ଦେଢଟି ବାହା ହେବି ।  କିଏ ଜଣେ ବୃଦ୍ଧ ଲୋକ କହିଲେ,ଦେଢଟିତ ହେବନି, ତେଣୁ ଆମେ ଯୋଡିଏ ବାହା କରିଦେବୁ । ତମେ ଫେରିଆସ । ମୁଁ ଫେରି ଆସିଲି । ବ୍ରତ ଘର ପରେ ମୋର ବଡ ଭିଣୋଇ ସଂଧ୍ୟା କରିବା ପାଇଁ ସକାଳେ ଏବଂ ସଂଧ୍ୟା ବେଳେ ମୋତେ ବାଧ୍ୟ କଲେ । ମୁଁ କିନ୍ତୁ ସକାଳେ ସଂଧ୍ୟା  କରୁଥାଏ । ଆମ ଘରେ ସାନ ଭିଣୋଇ ଦେଢମାସ ରହି ଜାମ୍‌ସେଦ୍‌ପୁର ଗଲେ ।

ବ୍ରତ ଘର କେତେ ଦିନ ପରେ ସ୍କୁଲରେ ଖରାଛୁଟି ହୋଇଗଲା । ତାପରେ ନନାଙ୍କ ଦେହ ଖରାପ ହେଲା । ତାଙ୍କର ଅସୁସ୍ଥତା ଆସ୍ତେ ଆସ୍ତେ ବଢିବାକୁ ଲାଗିଲା । ଚିନ୍ତା ଭାଇନା ଓ ଆମ ଘରେ ଯେଉଁ ପିଲାମାନେ ରହି ପଢାପଢି କରୁଥିଲେ, ସେମାନେ ସମସ୍ତେ ନନାଙ୍କର ସେବା

ସୁଶ୍ରୁଷା କରୁଥିଲେ । ଦିନେ ନନା କହିଲେ, ସାକ୍ଷୀଗୋପାଳ ଡାକ୍ତରଖାନାରେ ଶ୍ରୀ ମହାଦେବ ମିଶ୍ର, ବୋଲି ଜଣେ ଡାକ୍ତର ଅଛନ୍ତି, ସେ ମୋର ଚିକିତ୍ସା କଲେ ମୁଁ ଭଲ ହୋଇଯିବି । ମହାଦେବ ମିଶ୍ର ଆଗରୁ ନିମାପଡା ଡାକ୍ତରଖାନାରେ ଥିଲେ । ନନାଙ୍କର ତାଙ୍କର ଭଲ ସମ୍ପର୍କ ଥିଲା ।

ଶ୍ରୀ ମହାଦେବ ମିଶ୍ରଙ୍କୁ ଖବର ଦିଆଗଲା । ସେ ଦିନେ ଅଟୋସାଇକେଲରେ ନିମାପଡାରେ ଆସି ପହଁଞ୍ଚିଲେ । ନନାଙ୍କୁ ସାକ୍ଷୀଗୋପାଳ ନେବାପାଇଁ ବ୍ୟବସ୍ଥା ହେଲା । ନନା ଯିବା ପାଇଁ ଗୋଟିଏ ସବାରୀ ଠିକ୍ କରାଗଲା । ଆମେ ସବୁ ଯିବାପାଇଁ ଦୁଇଟା ଶଗଡ ଠିକ୍ କରାଗଲା । ନନାଙ୍କର ଯିବାର ଦିନ ଠିକ୍ କରାଗଲା । ସେ ଦିନଟି ମୋର ମନେ ନାହିଁ । ସେଦିନ ନନା ସବାରୀରେ ଗଲେ । ଚିନ୍ତା ଭାଇନା ନନାଙ୍କ ସଙ୍ଗେ ଚାଲି ଚାଲି କରି ସାକ୍ଷୀଗୋପାଳ ବଳଙ୍ଗା ବାଟ ଦେଇ ଗଲେ । ଆମେ ସବୁ ଶଗଡରେ ସେହି ବାଟେ ଗଲୁ । ସଂଧ୍ୟାବେଳେ ସମସ୍ତେ ସାକ୍ଷୀ ଗୋପାଳରେ ପହଁଞ୍ଚିଲୁ । ଶ୍ରୀ ମହାଦେବ ମିଶ୍ର ଡାକ୍ତରଖାନାରେ ନନାଙ୍କ ରହିବା ପାଇଁ ବନ୍ଦୋବସ୍ତ କରିଦେଲେ । ଆମେ ସମସ୍ତେ ରହିବା ପାଇଁ ମାମୁଁ ଡାକ୍ତରଖାନା ପାଖରେ ଗୋଟିଏ ଘର ଠିକ୍ କରିଦେଲେ । ସେଠି ସତ୍ୟବାଦୀ ଡାକ୍ତରଖାନାରେ ଶ୍ରୀ ଦୀନବନ୍ଧୁ ମିଶ୍ର ବୋଲି ଆମ ଗ୍ରାମର ଜଣେ ଲୋକ କମ୍ପାଉଣ୍ଡର ଥିଲେ । ଡାକ୍ତରବାବୁଙ୍କ କହିବା ମୁତାବକ ପୁରୀରୁ ସିଭିଲସର୍ଜନଙ୍କୁ ନନାଙ୍କୁ ଦେଖିବା ପାଇଁ ସାକ୍ଷୀଗୋପାଳ ଡକାଗଲା । ସେ ଆସିଲେ, ତାଙ୍କ ଗାଡି ଖର୍ଚ୍ଚ ଓ ଫିସ୍ ପାଇଁ ମାତ୍ର ୩୦ ଟଙ୍କା ଦିଆଗଲା । ସିଭିଲ୍‌ସର୍ଜନ କହିଲେ, ନନାଙ୍କୁ ବହୁମୂତ୍ର ରୋଗ ହୋଇଛି ଏବଂ ଭାତ ମିଠା ଇତ୍ୟାଦି ଖାଇବାକୁ ମନା କଲେ । ସାକାରିନ୍ ବଟିକା ଖାଇବାକୁ କହିଲେ । ତାପରେ ଜାଣିବାକୁ ପାଇଲି, ବହୁମୂତ୍ର ପାଇଁ ୧୯୪୨ ମସିହା ପର୍ଯ୍ୟନ୍ତ କୋଣସି ଔଷଧ ମିଳୁ ନ'ଥିଲା । ଆସ୍ତେ ଆସ୍ତେ ନନାଙ୍କ ଦେହ ଖରାପ ଆଡକୁ ଗତି କରୁଥିଲା ।

## ପିତୃ ବିୟୋଗ

୧୯୪୨ ମସିହା ଜୁନ୍ ୧୨ ତାରିଖ ଦିନ ସଂଧ୍ୟା ସାତଟା ବେଳେ ମୁଁ ଘରେ ଥିଲି । ମାମୁଁ ମୋତେ ଡାକି ନେଲେ ଏବଂ କହିଲେ ଟିକିଏ ଗଙ୍ଗା ପାଣି ନନାଙ୍କ ପାଟିରେ ଦେଇ ଦେ । ଏହାପରେ ମୋତେ ଡାକ୍ତରଖାନାରୁ ସତ୍ୟବାଦୀରେ ଆମେ ରହୁଥିବା ଘରକୁ ପଠେଇ ଦେଲେ । ମୁଁ ସେ ଘରେ ଦେଖିଲି, ମୋ ବୋଉ ମୁଣ୍ଡ ବାଡେଇ କାନ୍ଦୁଛନ୍ତି ଏବଂ ଆଉ ସମସ୍ତେ କାନ୍ଦୁଛନ୍ତି । ମାମୁଁ, ଚିନ୍ତା ଭାଇନା ଏବଂ ବ୍ରଜ ଭାଇନା (ଦଦେଇ ପୁଅ ଭାଇ) ନନାଙ୍କୁ ଗୋପବନ୍ଧୁ ସମାଧି ପାଖରେ ଚିତା ଦେଇଦେଲେ । ତାପର ଦିନ ସକାଳୁ ଆମେ ସମସ୍ତେ ଆମ ଗାଁକୁ ପଳାଇ ଗଲୁ । ତାପରେ ଶୁଦ୍ଧଘର କେମିତି ହେବ ଏବଂ କିଏ କ୍ରିୟା ଧରିବ ସେ ବିଷୟରେ ଆଲୋଚନା ହେଲା ଏବଂ ଠିକ୍ କରାଗଲା, ଦଶଦିନ ପର୍ଯ୍ୟନ୍ତ ମୁଁ କ୍ରିୟା ଧରିବି ଏବଂ ଏଗାର ବାରଦିନ ବ୍ରଜଭାଇନା ଅନ୍ୟ କାମ ସବୁ କରିବେ । ଦିନେ ଦୁଇଦିନ ପରେ ମୋ ଭିଣୋଇ ଶ୍ରୀ ନୀଳକଣ୍ଠ ରଥ ବସ୍ତାରୁ ଆସି ପହଁଞ୍ଚିଲେ । ସେ ଗାଁରେ ପହଁଞ୍ଚି, ମୋତେ ଧରି ବହୁତ କାନ୍ଦିଲେ । ସେ ନନାଙ୍କ ମରିବା ଖବର ପାଇ ନ'ଥିଲେ । ତାର ଦିନେ ଦୁଇ ଦିନ ପରେ ସାନ ଭିଣୋଇ ନନାଙ୍କ ମରିବା ଖବର ପାଇ ଜାମ୍‌ସେଦ୍‌ପୁରରୁ ଆସି ପହଁଞ୍ଚିଲେ । ଏହି ଶୁଦ୍ଧଘର କାମରେ ବ୍ୟସ୍ତ ରହି ମୁଁ ଏବଂ ଅନ୍ୟ ସମସ୍ତଙ୍କର ନନା ମରିବା ଦୁଃଖ କିଛିଟା କମି ଯାଇଥିଲା ।

## ପିଲାଦିନ

ନନାଙ୍କର ବାରଶ୍ରାଦ୍ଧ ଦିନ ମୋ ସାନ ନାନୀର ସଂଧ୍ୟା ବେଳେ ଗୋଟିଏ ଝିଅ ଜନ୍ମ ହେଲା । ତେଣୁ ତାର ନାମ ସଂଧ୍ୟା ରଖାଯାଇଥିଲା । କେତେ ଦିନ ପରେ ଆମେ ସମସ୍ତେ ନିମାପଡା ଆସିଲୁ । ନିମାପଡାର ପହଁଞ୍ଚିବାର କେତେଦିନ ପରେ ଶ୍ରୀ ବାଳକୃଷ୍ଣ ପଟ୍ଟନାୟକ ବୋଲି ଜଣେ ଲୋକ ଆସି ମୋତେ ଏବଂ ମୋ ବୋଉଙ୍କୁ ଖୋଜିଲେ । ବୋଉ ଆସିବାରୁ ତିନି ଶହ କେତେ ଟଙ୍କା ଦେଇ କହିଲେ, ମୁଁ ପଣ୍ଡିତ ମହାଶୟଙ୍କ ଠାରୁ କାମରେ ଜରୁରୀ ଦରକାର ପଡିବାରୁ ନେଇଥିଲି । ଏହା କହି ଟଙ୍କା ଫେରାଇ ଦେଲେ । ତାଙ୍କ ଠାରୁ ମୁଁ ଜାଣିଲି, ସେ ହେଉଛନ୍ତି ସ୍କୁଲ୍ ସମୂହର ସବ୍‌ଇନିସ୍ପେକଟର୍ ଏବଂ ତାଙ୍କ ସରକାରୀ ବସା ମୋ ଭିଣୋଇଙ୍କ ବସା ପାଖରେ ।

ଏହାପରେ ଆମ ସ୍କୁଲ ଖୋଲିଗଲା । ମୁଁ ଦିନେ କ୍ଲାସକୁ ଯାଇଥିଲି, ଶ୍ରୀ ରାମଚନ୍ଦ୍ର ମିଶ୍ର ଶିକ୍ଷକ କହିଲେ, ମୁଁ ଯେଉଁ ପଢା ଛୁଟି ପୂର୍ବରୁ ଦେଇଥିଲି, ତୁମେ ସବୁ ଯେଉଁମାନେ କରିନ ସେମାନେ ଛିଡା ହୁଅ । ସିଏ ତାପରେ ଜଣ ଜଣକୁ ପଚାରିଲେ, ଜଣ ସବୁ ପଢା ଦେଇଥିଲି । ଯେଉଁମାନେ କହି ନ'ପାରିଲେ ବେଞ୍ଚ ଉପରେ ଛିଡା କରିଦେଲେ ଏବଂ ଗୋଟିଏ ଛାଟରେ ବାଡେଇଲେ । ସେମାନଙ୍କ ମଧ୍ୟରୁ ମୁଁ ଜଣେ । ମୁଁ ବେଞ୍ଚ ଉପରେ ଛିଡା ହୋଇ ଦୁଇ ତିନି ଛାଟ ଖାଇଛି । କିନ୍ତୁ ମୁଁ କିଛି କହି ପାରିଲି ନାହିଁ । ପିଲା ଭିତରୁ କିଏ ଜଣେ କହିଲେ, ସିଏ ଅଜୀବ ପଣ୍ଡିତଙ୍କ ପୁଅ । କିଛିଦିନ ତଳେ ସେ ମରି ଯାଇଛନ୍ତି । ତାର ଅଳ୍ପ ସମୟ ପରେ ସେ କ୍ଲାସ ଛୁଟି କରିଦେଲେ । ମତେ କହିଲେ ,ତମେ କାହିଁକି ମୂଳରୁ ସେକଥା କହିଲନି । ସେ ମୋତେ ବହୁତ ସାନ୍ତ୍ୱନା ଦେଲେ । ସେହିଦିନ ଠାରୁ ମୋର ତାଙ୍କ ସାଙ୍ଗରେ ଭଲ ପଡିଲା । ମୋର ଧାରଣା ହେଲା ସେ ବୋଧେ ନନାଙ୍କୁ ଭଲ ଭାବରେ ଜାଣିଥିଲେ ।

## ସ୍ୱାଧୀନତା ସଂଗ୍ରାମୀ ଭବାନୀ ଚରଣ ପଟ୍ଟନାୟକ

୧୯୪୨ ମସିହା ଅଗଷ୍ଟ ମାସ ୧୬ ତାରିଖ । ସେଦିନ ନିମାପଡା ହାଟ ପଡିଥାଏ । ମୁଁ ସେଠି ଚାରିଟା ପାଞ୍ଚଟା ବେଳେ ପୋଷ୍ଟ ଅଫିସ୍ ପାଖରେ ଥିବା ଗୋଟିଏ ପଡିଆରେ ଅନ୍ୟ ପିଲାମାନଙ୍କ ସହିତ ଖେଳୁଥିଲି । ମୁଁ ଦେଖିଲି ସେଠି ବହୁତ ଲୋକ ଆସ୍ତେ ଆସ୍ତେ ଆମ ଖେଳିବା ଜାଗାରେ ବି ଜମା ହୋଇ ଗଲେଣି । ଚିନ୍ତା ଭାଇନା ଆମ ଘରେ ଥାଆନ୍ତି । ସେ କହିଲେ, ତୁ ଆଉ ବାହାରକୁ ବାହାରିବୁ ନାହିଁ । ଆଜି ଏଠାରେ ଲୋକମାନେ ଥାନା ପୋଡିଦେବା ପାଇଁ ଚେଷ୍ଟା କରୁଛନ୍ତି । କ୍ରମେ ଏତେ ଲୋକ ହେଲେ ଯେ ଆମ ଔଷଧ ଘର ପର୍ଯ୍ୟନ୍ତ ବି ଲୋକ ଜମା ହୋଇଗଲେ । ନିମାପଡା ଥାନାର ଅବସ୍ଥିତି ବିଷୟରେ ପାଠକମାନଙ୍କୁ ଅବଗତ କରାଇ ଦେଲେ ସେମାନଙ୍କୁ ବୁଝିବା ପାଇଁ ସୁବିଧା ହେବ । ଥାନାର ଉତ୍ତର ପଟେ ସବ୍‌ଇନ୍‌ସ୍ପେକ୍ଟରଙ୍କ ସରକାରୀ ବାସଭବନ ଓ ଦକ୍ଷିଣପଟେ ଥାନାପୋଖରୀ । ଥାନାର ପଶ୍ଚିମପଟେ ପ୍ରଧାନ ରାସ୍ତା । ରାସ୍ତାର ପଶ୍ଚିମପଟେ ଡାକଘର ପଡିଆ । ଡାକଘର ପଡିଆର ଉତ୍ତରପଟେ ଇନିସ୍ପେକଟରଙ୍କ ସରକାରୀ ବାସ ଭବନ ଅବସ୍ଥିତ । ଇନିସ୍ପେକଟରଙ୍କ ବାସ ଭବନକୁ ଲାଗି ଆମ ଔଷଧ ଘର ଓ ଗୋଟିଏ ବଡ ବାର୍ମି । ଔଷଧ ଘର ଓ ବାର୍ମିକୁ ଲାଗି ଏକ ରାସ୍ତା । ରାସ୍ତାର ଉତ୍ତର ପଟେ ଆମ ଘର । ଆମ ଘରର ଉତ୍ତର ପଟେ ପତିତପାବନ ଦେବଙ୍କ ପାଚେରୀ । ଔଷଧ ଘର ଠିକ୍ ପୂର୍ବ

ପଟେ ପ୍ରଧାନ ରାସ୍ତା । ରାସ୍ତାର ଠିକ୍ ପୂର୍ବ ପଟେ ସବ୍‌ଇନିସ୍ପେକଟରଙ୍କ ସରକାରୀ ବାସ ଭବନ ।

- ପ୍ରାୟ ସଂଧ୍ୟା ସାତଟା ଆଠଟା ମଧ୍ୟରେ ବହୁ ଲୋକ ଜମା ହୋଇଗଲେ । ଏହି ସମୟରେ ଶ୍ରୀ ଭବାନୀଚରଣ ପଟ୍ଟନାୟକ ବୋଲି ଜଣେ ସ୍କୁଲ ଛାତ୍ର ବହୁ ଜୋରରେ ପାଟି କରି ଥାନା ଭିତରେ ପଶିବା ପାଇଁ ଲୋକମାନଙ୍କୁ ପ୍ରବର୍ତ୍ତାଉଥିଲେ । ଥାନା ପାଖରେ କେତେଜଣ ବନ୍ଧୁକଧାରୀ ପୋଲିସ୍ ଆମ ଘର ଆଡକୁ ବନ୍ଧୁକ ଧରି ଛିଡା ହୋଇ ଥାଆନ୍ତି । ତାଙ୍କର ଉଦ୍ଦେଶ୍ୟ ବୋଧେ ଥିଲା ଇନ୍‌ସ୍ପେକଟର୍‌ଙ୍କ ବାସଭବନ ଯେପରି କିଛି କ୍ଷତି ନ'ହୁଏ । ଏହି ସମୟରେ ଆମେ ଝରକା ଫାଙ୍କ ବାଟେ ସବୁ ଦେଖୁଥାଉ । ହଠାତ ଗୁଳି ଫୁଟିବାର ଶବ୍ଦ ହେଲା । ଲୋକ ସବୁ ଛିନ୍ ଛତ୍ର ହୋଇ ଗଲେ । କିନ୍ତୁ ଭବାନୀ ପଟ୍ଟନାୟକ ସେହିପରି ବଡ ପାଟିରେ ଲୋକଙ୍କୁ ପ୍ରବର୍ତ୍ତାଉ ଥାଆନ୍ତି । ଏହି ସମୟରେ ଆମେ ଝରକା ବାଟେ ଦେଖିବାକୁ ପାଇଲୁ,ଭବାନୀ ପଟ୍ଟନାୟକଙ୍କୁ କେତେଜଣ ସମ୍ପର୍କୀୟ ଲୋକ ତାଙ୍କୁ ଭିଡି ଭିଡି ଗାଁ ଆଡେ ନେଇ ଯାଉଛନ୍ତି । କିଛି ଦିନ ପରେ ଆମେ ଜାଣିଲୁ ଭବାନୀଚରଣ ପଟ୍ଟନାୟକ, ପଦ୍ମଚରଣ ସାମନ୍ତସିଂହାର ଓ କେତେ ଜଣ ସ୍ୱାଧୀନତା ସଂଗ୍ରାମୀ ଗିରଫ ହୋଇଛନ୍ତି ।

## ସ୍ୱାଧୀନତା ଆନ୍ଦୋଳନରେ ମୋ ପ୍ରତ୍ୟକ୍ଷ ଅନୁଭୂତି

୧୮ ତାରିଖ ଦିନ ପ୍ରାୟ ଦଶଟା ଏଗାରଟା ବେଳକୁ ବଡ ପୋଲିସ୍ ଅଫିସର ଏବଂ ପୋଲିସ୍ ସବଇନିସପେକ୍ଟର ଆମ ଘରକୁ ଆସି ମୋତେ ଖୋଜିଲେ । ମୁଁ ତାଙ୍କ ସାଙ୍ଗରେ ଗଲି । ସବ୍‌ଇନ୍‌ସପେକ୍ଟରଙ୍କୁ ମୁଁ ଭଲ ଭାବରେ ଚିହ୍ନେ । ତାଙ୍କ ନାମ ଶ୍ରୀ ରଘୁନାଥ ସାହୁ । ତେଣୁ ମୋତେ ବିଶେଷ ଡର ମାଡି ନ'ଥିଲା । ମୋତେ ନେଇ ଆମ ଔଷଧ ଘର ପିଣ୍ଡାରେ ରକ୍ତ ପଡିଥିବା ଏବଂ ଘର କାନ୍ଥରେ ଗୁଳି ବାଜି ଥିବାର ଚିହ୍ନ ସବୁ ଦେଖାଇଲେ ଏବଂ ମୋତେ କହିଲେ, ତମେ କାହିଁକି ଲୋକମାନଙ୍କୁ ପିଣ୍ଡା ଉପରେ ଛିଡା ହେବା ପାଇଁ ଅନୁମତି ଦେଲ । ମୁଁ କହିଲି,ଥାନା ଭିତରେ ଲୋକମାନେ ନ'ପଶିବା ପାଇଁ ଆପଣ ବନ୍ଧୁକ ଧାରୀ ପୋଲିସ୍ ରଖିଥିଲେ । ସେହି ପୋଲିସ୍ ମାନେ ଗୁଳିମାରି ଲୋକମାନଙ୍କୁ ତଡି ଦେଲେ । ମୁଁ ବା କିପରି ଲୋକଙ୍କୁ ମନା କରିଥାଆନ୍ତି । ମୁଁ ତ ଲୁଚିକରି ଘରେ ଥିଲି । ତାପରେ ସେମାନେ ଇଂରାଜୀରେ କଣ କଥାବାର୍ତ୍ତା ହୋଇ ଚାଲିଗଲେ । ମୋତେ କହିଲେ,ଦରକାର ହେଲେ ପୁଣି ଆଉଥରେ ଅନୁସନ୍ଧାନ କରିବା ପାଇଁ ଆମେ ଆସିବୁ ଏବଂ ତୁମେ ମନେ ପକାଇ କୁହ କେଉଁମାନେ ସବୁ ତୁମ ଘର ପିଣ୍ଡାରେ ଚଢିଥିଲେ । ମୁଁ କହିଲି,ମୁଁ କହି ପାରିବି ନାହିଁ । ମୋତେ ପଚାରିଲେ,ତୁମ ଘରେ ଆଉ କିଏ କିଏ ଅଛନ୍ତି । ମୁଁ କହିଲି,କେବଳ ମୋ ବୋଉ (ମା)ଅଛନ୍ତି । ସେତେବେଳକୁ ଚିନ୍ତା ଭାଇନା ତାଙ୍କ ଗ୍ରାମକୁ ଚାଲିଯାଇ ଥିଲେ । ତାପରେ ଆମେ ଶୁଣିଲୁ ଯେ ଉଜ୍ଜ୍ୱଳ ମଲ୍ଲିକ୍ ନାମକ ଏକ ଲୋକ ଦେହରେ ଗୁଳି ବାଜିବାରୁ ସେ ଶହିଦ୍ ହୋଇ ଯାଇଛି ଏବଂ ଆଉ କେତେ ଲୋକଙ୍କୁ ପୁଲିସ୍ ଗିରଫ୍ କରି ନେଇ ଯାଇଛି । ମୁଁ ଏହି ଘଟଣା ପରେ ଭାବିବାକୁ ଲାଗିଲି ଏପରି କାହିଁକି ହେଲା । ତାପରେ କ୍ରମେ ଜାଣିଲି ଭାରତର ସ୍ୱାଧୀନତା ସଂଗ୍ରାମ ଚାଲିଛି । ମହାତ୍ମା ଗାନ୍ଧୀ, ପଣ୍ଡିତ ଜବାହାର ଲାଲ ନେହେରୁ ଏବଂ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କ ଅବଦାନ ଏଥିରେ ରହିଛି ।

ଟଙ୍କା ପଇସା ଅଭାବ ଯୋଗୁଁ ଆମ ଔଷଧ ଘର ଦୋକାନଟି ନନାଙ୍କ ପାଖରେ କବିରାଜି

ଶିଖୁଥିବା ଶ୍ରୀ କୁଳମଣି ଦାଶଙ୍କୁ ଭଡା ଦେଇଦେବା ପାଇଁ ଠିକ୍ ହେଲା । ତେଣୁ ଦିନେ ବୋଉ ଏବଂ ମୁଁ ନନାଙ୍କ ଆଲମିରା ଖୋଲି ଆଲମିରା ଭିତରେ ଆମ ଘରର ଦରକାରୀ ଜିନିଷ ସବୁ ଅଲଗା କରିଦେଲୁ । ନନା ସାଇତି ରଖିଥିବା ତାଳପତ୍ର ପୋଥି ସବୁକୁ ଘରକୁ ନେଇ ଆସିଲୁ । ସେହି ପୋଥିଗୁଡିକ ଏବେ ମଧ୍ୟ ଆମଘରେ ଅଛି । ସେହି ଆଲମିରା ସଫା କରୁ କରୁ ମୁଁ ବନାରସ୍‌ରୁ କିଣି ଆଣିଥିବା ଖେଳଣା ଜାହାଜଟି ମଧ୍ୟ ପାଇଲି । ସେ ଜାହାଜଟି ଆଣି ପଢିବା ଘରେ ରଖିଥିଲି । ଦିନେ ଜାହାଜଟି କିପରି ଚାଲୁଛି ଜାଣିବା ପାଇଁ ଆଗ୍ରହ ହେଲା । ତେଣୁ ଜାହାଜଟିକୁ ଭାଙ୍ଗିଦେଲି । ଦେଖିଲି ଏହା ଟିଣ ପାଟିଆରେ ଜାହାଜ ଆକୃତି ପରି ଛୋଟ ଆକାରରେ ତିଆରି । ସେଥିରେ ନିଆଁ ଜଳାଇବା ପାଇଁ ଛୋଟ ଦୀପଟିଏ ଥିଲା । ଦୀପ ଜଳିବା ସ୍ଥାନ ଉପରେ ପାଣି ରହିବା ପାଇଁ ଗୋଟିଏ ଛୋଟ ପତଳା କୋଠରୀ ଥିଲା । ପାଣି ରହିବା କୋଠରୀରୁ ଦୁଇଟି ନଳୀ ଜାହାଜ ପଛପଟେ ବାହାରି ଥିଲା । ଭଙ୍ଗା ଜାହାଜଟି ଆଉ ଥରେ ଯୋଡିବା ସମ୍ଭବପର ହେଲା ନାହିଁ ।

ନନାଙ୍କ ମରିବା ପୂର୍ବରୁ ଦୁଇ ତିନି ଟିଣ ଭୃଙ୍ଗରାଜ ତୈଳ ତାଙ୍କ ଆଲମିରାରୁ ବାହାରିଲା । ତାପରେ ଔଷଧ ଦୋକାନ ଘରକୁ ତିନି ଟଙ୍କାରେ ଭଡାରେ ଦେଇଦେଲୁ । ସେହି ଔଷଧ ଦୋକାନ ଘର ପଛପଟେ ଆଉ ଗୋଟିଏ ଘର ଥିଲା । ସେ ଘରେ ନନାଙ୍କର ଔଷଧ ପ୍ରସ୍ତୁତ କରାଯାଉଥିଲା । ମୋର ହେତୁ ପାଇଲା ଦିନୁ ମୁଁ ଜାଣିଛି ଗୋପିଆ ନାମକ ଜଣେ ଲୋକ ଔଷଧ ବଟାବଟି ଓ କୁଟାକୁଟି କରିବା ପାଇଁ ସବୁଦିନେ କାମ କରୁଥିଲା । ଔଷଧ ତିଆରି କରିବା ପାଇଁ ଗୋଟିଏ ବଡ ହେମଦସ୍ତା ଓ ଗୋଟିଏ ବଡ ଖଲ ଔଷଧ ଘରେ ଥିଲା । ହେମଦସ୍ତାଟି ଘରକୁ ଆଣିଲି, ତାହା ଆଜି ପର୍ଯ୍ୟନ୍ତ ଆମେ ବ୍ୟବହାର କରୁଛୁ । ଖଲଟି କୁଳମଣି ଦାଶ ମାଗିବାରୁ ତାଙ୍କୁ ଦେଇଦେଲୁ । ଆଉ ଗୋଟିଏ ବଡ ତମ୍ବା ହଣ୍ଡା ଥିଲା । ସେଇଟାକୁ ୫୦ ଟଙ୍କାରେ ବିକ୍ରି କରିଦେଲୁ । ଏହା ପରେ ଆମ ଔଷଧ ଘରଟିକୁ ଶ୍ରୀ କୁଳମଣି ଦାଶଙ୍କୁ ୩ ଟଙ୍କାରେ ଭଡା ଲଗାଇ ଦେଲୁ । ସେହି ଘରଟି ଖୋଲିକରି ଗୋଟିଏ ଲୋକକୁ ଦୁଇ ଟଙ୍କା ଭଡାରେ ଦେଇଦେଲୁ । ସେ ସେହିଘରେ ବରା ପକୁଡି ଆଦି ଛାଣିବା ଦୋକାନ କଲା ।

ନନାଙ୍କ ମଲାପରେ କୋଠଦେଶ ଷ୍ଟେଟ୍‌ର ଜମିଦାର ସୁନା ସାମନ୍ତଙ୍କର କୁଷ୍ଠରୋଗ ହୋଇଥିବାରୁ ସେ ପତିତପାବନ ଦେଉଳ ପାଖରେ ଥିବା ଝୁଲଣ ଘରର ଗୋଟିଏ ବଖରାରେ ଏକା ରହୁଥିଲେ । ବୋଧେ ତାଙ୍କ ମ୍ୟାନେଜର (ତାଙ୍କ ନାମ ମୋର ମନେ ନାହିଁ) ଆମ ଘରକୁ ଆସି ବନ୍ଧକ ଦେଇଥିବା ଜମିର କାଗଜ ପତ୍ର ଫେରାଇ ନେବାପାଇଁ ଆମକୁ ଅନୁରୋଧ କଲେ । ଆମେ ସେକଥା କିଛି ଜାଣି ନଥିଲୁ । ତେଣୁ ସେଦିନ ତାଙ୍କୁ ଫେରାଇ ଦେଲୁ ଏବଂ ପରେ ଆସିବାକୁ କହିଲୁ । ମୋ ବଡ ମାମୁଁ ପୁରୀ କଲେକ୍ଟରିଏଟ୍‌ରେ କାମ କରୁଥାନ୍ତି । ତାଙ୍କୁ ନିମାପଡା ଡକାଇ ସବୁ କାଗଜ ପତ୍ର ଦେଖାଇଲୁ, ସେ କହିଲେ, ସୁନା ସାମନ୍ତ ନନାଙ୍କଠାରୁ ୫୦୦ ଟଙ୍କା କରଜ ନେଇ ପାଞ୍ଚ ଏକର ଜମି ବନ୍ଧକ ରଖିଥିଲେ । ସେ ବନ୍ଧକର ମିଆଦ ପୁରି ଯାଇଥିଲା । ଆମେ ପୁଣି ତାଙ୍କ ମ୍ୟାନେଜରଙ୍କୁ ଡକାଇଲୁ ସେ ଆସିବାରୁ ମାମୁଁ କହିଲେ, ମିଆଦ ସମୟ ପୁରି

ଗଲାଣି । ତେଣୁ ସେ ଜମିଟା ଆମର ହୋଇଯିବ । ମ୍ୟାନେଜର ବାବୁ କହିଲେ,ମୁଁ ଆପଣଙ୍କୁ ସୁଧ ସହିତ ଟଙ୍କା ଫେରାଇ ଦେଉଛି । ଆପଣ ସେ କାଗଜଟା ମୋତେ ଫେରାଇ ଦିଅନ୍ତୁ । ମାମୁଁ ମନାକଲେ ଏବଂ କହିଲେ,ଆମକୁ ଜମି ହସ୍ତାନ୍ତର କରି ଦିଅନ୍ତୁ । ସେ ରାଜି ହେଲେ ନାହିଁ । ତେଣୁ ମାମୁଁ ପୁରୀରେ ସିଭିଲ କେସ୍ ଗୋଟିଏ ଦାଏର କଲେ । ମୋର ଖାଲି ମନେ ଅଛି ନବେ ରୁଲ୍ ଅନୁସାରେ କେସ୍ ଚାଲିଲା । ମୋର ଯେତେଦୂର ମନେ ହେଉଛି ଆମର ଡିଗ୍ରୀ ହେଲା ନାହିଁ ।

ଏହିପରି ଭାବରେ ମୋର ଷଷ୍ଠ ଶ୍ରେଣୀର ପାଠ ପଢା ସରିଗଲା । ମୁଁ ସପ୍ତମ ଶ୍ରେଣୀକୁ ଗଲି । ଚିନ୍ତା ଭାଇନା ୧୯୪୩ ମସିହା ଆରମ୍ଭରେ ମାଟ୍ରିକ୍ ପାସ୍ କଲେ । ସେ କଲେଜରେ ପଢିବା ପାଇଁ ଇଚ୍ଛା କରୁଥିଲେ, ସେତେବେଳେ ଆଉ କେଉଁଠି କଲେଜ ନ'ଥିଲା । କେବଳ ରେଭେନ୍ସା କଲେଜରେ ପଢିବାକୁ ସୁବିଧା ଥିଲା । ତେଣୁ ସେ ତାଙ୍କ ଗାଁର ଜଣେ ସମ୍ପର୍କୀୟ ଭାଇ ଶ୍ରୀ ବୃନ୍ଦାବନ ଆଚାର୍ଯ୍ୟଙ୍କୁ କହିଲେ । ସେ କଟକରେ ଶ୍ରୀ ବ୍ରହ୍ମାନନ୍ଦ ଦାଶଙ୍କ ପୁଅ ସଚ୍ଚିଦାନନ୍ଦ ଦାଶଙ୍କୁ ପଢେଇବା ପାଇଁ ଠିକ୍ କରିଦେଲେ । ବୃନ୍ଦାବନ ଆଚାର୍ଯ୍ୟ ମିଶନ ସ୍କୁଲରେ ଜଣେ ଶିକ୍ଷକ ଥିଲେ । ତାଙ୍କର ମାମୁଁ ହେଉଛନ୍ତି ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ । ତେଣୁ ଚିନ୍ତା ଭାଇନା ନିମାପଡା ଛାଡି କଟକରେ ଗୋଟିଏ ମେସ୍‌ରେ ରହିଲେ । କେବେ କଟକ ଗଲେ ମୁଁ ଠିକ୍ କରି କହିପାରିବି ନାହିଁ ।

ସେତେବେଳେ ଅନ୍ୟ ପିଲାମାନେ ଆମଘରୁ ସବୁ ଚାଲି ଯାଇ ଥାଆନ୍ତି । ତେଣୁ ନିମାପଡା ଘରେ ମୁଁ ଏବଂ ବୋଉ ଏକୁଟିଆ ରହିଲୁ । ସେତେବେଳେ ଆମ ଘରେ ଆଉ କେହି ନଥିଲେ । ତେଣୁ ମୋତେ ବଜାର ସଉଦା ହାଟରୁ ପରିବା ଆଣିବା କାମ କରିବାକୁ ପଡୁଥିଲା । ଆମ ଘର ପାଖରେ ଗୋଟିଏ ଚେଙ୍ଗରାଟି ଦୋକାନ ଥିଲା । ସେଉଠୁ ଯାଇ ସଉଦା ଆଣୁଥିଲି । ମୋର ଯାହା ମନେ ଅଛି ସେତେବେଳର ଦରଦାମ୍ ବହୁତ କମ୍ ଥିଲା । ଉଦାହରଣ ସ୍ୱରୂପ: ସୋରିଷ ତେଲ (କଟକୀ) ଏକସେରକୁ ଚାରିଅଣାରେ ମିଳୁଥିଲା । କଟକୀ ସେର୍ ମାନେ ବର୍ତ୍ତମାନ ଏକ କେ.ଜି ଦୁଇଶହ ମିଲି.ଲିଟର ଅଟେ । ସେହିପରି ଭାବରେ ପ୍ରତ୍ୟେକ ଜିନିଷର ଦାମ୍ ବହୁତ କମ୍ ଥିଲା । ନିମାପଡା ହାଟ ରବିବାର ଓ ବୁଧବାରେ ପଡେ । ସେ-ହାଟରୁ ବାଇଗଣ ସେର ଦୁଇ ପଇସା ବା ଏକ ପଇସାରେ ମିଳୁଥିଲା ।

ରାତିରେ ବୋଉ ଏବଂ ମୁଁ ପଖାଳ ଖାଉ । ସବୁଦିନ ମାଛ ହାଟରୁ ପଇସାକର ଙ୍କରାଡି ମାଛ ଆଣେ । ତାକୁ ରାତିରେ ମୁଁ ପଖାଳ ସହିତ ଖାଏ । ଯାହା ବଳେ ତାପର ଦିନ ଗରମ ଭାତ ସାଙ୍ଗରେ ଖାଏ । ପଇସାକର ମାଛ ପ୍ରାୟ ଏକ ସେରର ଚାରିଭାଗରୁ ଭାଗେ ବା ପାଏ ହୁଏ । ଏହିପରି ଭାବରେ କଷ୍ଟେ ମଷ୍ଟେ ଅଭାବ ଅସୁବିଧାରେ ଆମ ଦିନ ଗୁଡିକ କଟିଯାଏ । ଦିନେ ନୂଆ ପୋଖରୀରେ ମାଛ ଧରାହେଲା । ସେହିଦିନ ସୁନା ସାଆନ୍ତ ମୁଁ ମାଛ ଖାଇବାକୁ ଭଲ ପାଏ ବୋଲି ଗୋଟିଏ ବଡ ଭାକୁର ମାଛ ଆମ ଘରକୁ ପଠାଇଲେ । ବୋଉ ମାଛ ମୁଣ୍ଡକୁ ରାନ୍ଧିକରି ଖାଇବାକୁ ଦେଲାବେଳେ ମୋତେ ମଣିଷ ମୁଣ୍ଡଭଳି ଲାଗିଲା । ତେଣୁ ସେ ମାଛକୁ ମୁଁ ଖାଇଲି ନାହିଁ । ମୋର ମାଛ ଖାଇବାକୁ ବିତୃଷ୍ଣା ଆସିଗଲା ।

ସେହି ସମୟରେ ଆମ ଘର ପାଖରେ ଜଣେ ପଶୁ ଡାକ୍ତର, ଘର ଭଡା ନେଇ

ରହୁଥିଲେ । ତାଙ୍କର ଦୁଇ ପୁଅ ଥିଲେ । ଜଣଙ୍କ ନାମ ରମେଶ ଓ ଆଉ ଜଣକ ନାମ ଉମେଶ । ମୁଁ ସେତେବେଳେ ସେମାନଙ୍କ ସହିତ ବାଟି ଖେଳୁଥିଲି । ମୁଁ ସେମାନଙ୍କୁ ସବୁବେଳେ ବାଟି ଖେଳରେ ହରାଇ ଦେଉଥିଲି । ତେଣୁ ସେମାନେ ମୋତେ 'ଟ ମିଶ୍ର' ବୋଲି ଡାକୁଥିଲେ । ମୁଁ ସବୁଖେଳ ଖେଳୁଥିଲି । କିନ୍ତୁ କୌଣସିଥିରେ ଭଲ ଖେଳୁ ନଥିଲି । ପରବର୍ତ୍ତୀ ସମୟରେ ମୁଁ ରେଭେନ୍ସା କଲେଜରେ ପ୍ରାଧ୍ୟାପକ ଥିବା ସମୟରେ ଉମେଶ କଟକରେ ଟ୍ରେଜେରି ଅଫିସର ଭାବରେ କାମ କରୁଥିଲା ।

ସେହି ସମୟରେ ନିମାପଡା ହାଇସ୍କୁଲରେ ସପ୍ତମ ଶ୍ରେଣୀରେ ହସ୍ତକର୍ମ ଶିକ୍ଷା ଦିଆ ଯାଉଥିଲା । ମୁଁ ଚମଡା କାମ ଶିଖୁଥିଲି । ସ୍କୁଲର ଶିକ୍ଷକ ଶ୍ରୀ ରାମଚନ୍ଦ୍ର ମିଶ୍ର ଆମକୁ ଚମଡା କାମ ଶିଖାଉ ଥିଲେ । ସେଥିରେ ଆମେ ମନିପର୍ସ, ଭ୍ୟାନିଟ୍ ବ୍ୟାଗ୍ ସବୁ ହାତରେ ତିଆରି କରୁଥିଲୁ । ସେହି ବ୍ୟାଗ୍ ଉପରେ ଭିନ୍ନ ଭିନ୍ନ ରଙ୍ଗର ଚିତ୍ର ମଧ୍ୟ କରୁଥିଲୁ । ମତେ ସେ କାମ ଭାରି ଭଲ ଲାଗୁଥିଲା ।

## ମାଳିକା ବିଶ୍ୱାସ ଓ ଅହେତୁକ ଭୟ

ଥରେ ଭାରିଜୋରରେ ଶୁଣାଗଲା ଭାରତର ପଞ୍ଚଗ୍ରହକୁଟ, ଚିତାଲାଗି ଅମାବାସ୍ୟା ଦିନ ପଡିବ । ଝଡ, ବାତ୍ୟା ହୋଇ ସମୁଦ୍ର ମାଡି ଆସିବ, ଆଉ କେହି ବଞ୍ଚିବେନି । ପୃଥିବୀ ପ୍ରଳୟ ହୋଇଯିବ ବୋଲି ଜନରବ ବ୍ୟାପିଗଲା । ଏହା ମାଳିକାରେ ଲେଖା ହୋଇଛି । ସମସ୍ତଙ୍କର ଭୟ ହୋଇଥାଏ, ଆମର ମଧ୍ୟ ଭୟ ହେଲା । ଚିନ୍ତା ଭାଇନାଙ୍କୁ କାର୍ତ୍ତିକ ମାସରେ ଆମ ଘରେ ରହିବା ପାଇଁ ଡକାଇ ଆଣିଲୁ । ସେ ଆସି ରହିଲେ । ସେହିବର୍ଷ କାର୍ତ୍ତିକ ମାସରେ ସାତ ଦିନ ପର୍ଯ୍ୟନ୍ତ ଝଡବାତ୍ୟା ହୋଇଥିଲା । ଆମ ରହିବା ଘର ଛଣ ଉଡିଗଲା । ଆମ ଔଷଧ ଘର ଫାଳେ ଭାଙ୍ଗିଗଲା । ସେତେବେଳେ ମୋର ସାଇକେଲଟା ମଧ୍ୟ ଚୋରି ହୋଇଗଲା । ତାପରେ ବଡ ଭିଣୋଇ ଓ ସାନ ମାମୁଁ ନିମାପଡା ଆସିଲେ ଏବଂ ଠିକ୍ କଲେ ନିମାପଡା ବହୁତ ଦୂର ହେଉଛି, ଆମେ କେହି ଆସିପାରୁ ନାହୁଁ , ଚିନ୍ତାତ କଟକରେ ରହୁଛି । ତେଣୁ ମାମୁଁ କହିଲେ ବଟୁ ମୋ ପାଖରେ ରହି ସାକ୍ଷୀଗୋପାଳ ହାଇସ୍କୁଲରେ ମାଟ୍ରିକ୍ ପଢୁ । ବୋଉ ଗାଁରେ ରହନ୍ତୁ । ଘରର ଆୟରେ ସେ ସହଜରେ ଚଳିଯିବ । ତେଣୁ ଶେଷରେ ଏହା ଠିକ୍ ହେଲା । ମୁଁ ମାଇନର ଭଲରେ ପାସ୍ କରିଗଲି । କିନ୍ତୁ ମୋ ମନ ବୁଝୁ ନଥିଲା । ପରୀକ୍ଷା ଥିଲା ମାସେ କି ଦୁଇ ମାସ ମୁଁ ଜଣେ ସ୍କୁଲ ମାଷ୍ଟରଙ୍କ ପାଖରେ ଟିଉସନ୍ ହେଉଥିଲି । ସେ ମାଷ୍ଟର ଜଣକ ସ୍କୁଲରେ ଯେଉଁ ପ୍ରଶ୍ନ ପରୀକ୍ଷାରେ ପଡିବ ତାକୁ ସବୁ ମୋତେ ଆଗରୁ ପଢାଇ ଦେଉଥିଲେ ଏବଂ ମନେ ରଖିବାକୁ କହୁଥିଲେ । କିନ୍ତୁ ମୋର ନିମାପଡା ଛାଡିବାକୁ ଜମା ଇଚ୍ଛା ନଥିଲା । ମୁଁ ସମସ୍ତଙ୍କର କହିବା ଅନୁସାରେ ନିମାପଡା ଛାଡି ସତ୍ୟବାଦୀ ସ୍କୁଲରେ ଅଷ୍ଟମ ଶ୍ରେଣୀରେ ପଢିବା ପାଇଁ ରାଜି ହେଲି । ଯିବା ପୂର୍ବରୁ ଆମ ରହିବା ଘରଟିକୁ ମାସକୁ ସାତ ଟଙ୍କା ଭଡାରେ ଶ୍ରୀ ଦାମୋଦର ଦାସଙ୍କୁ ଦିଆଗଲା ।

ମୋର ସପ୍ତମ ଶ୍ରେଣୀରେ ଶେଷ ବେଳକୁ ନିମାପଡା ସ୍କୁଲର ପ୍ରାଇଜ୍ ସମୟରେ ମୁଁ ଡିବେଟ୍ ଭଲ କହୁଥିଲି ବୋଲି ମୋତେ ସ୍କୁଲ ତରଫରୁ ଗୋଟିଏ ପ୍ରାଇଜ୍ ଦିଆଯାଇଥିଲା ।

ପ୍ରାଇଜ୍‌ରେ ମୋତେ ଦୁଇଖଣ୍ଡି ବହି ଦିଆଯାଇଥିଲା । ସେ ବହି ଦୁଇଟିର ନାମ ଏବେ ମଧ୍ୟ ମୋର ମନେ ଅଛି । ଗୋଟିକର ନାମ "ଜଗୁଆ ମା" ଅନ୍ୟଟିର ନାମ "ତୃଣ ଗୁଚ୍ଛ" ।

-- ମୁଁ ନିମାପଡାରେ ମାଇନର ପଢିଲା ବେଳେ ମୋ ନନାଙ୍କର ମୃତ୍ୟୁ ହେବା ଯୋଗୁଁ ମୁଁ ପିଲାଙ୍କ ସଙ୍ଗେ ସମ୍ପର୍କ ରଖି ନଥିଲି । ତେଣୁ ମୋର ସେମାନଙ୍କ ନାମ ମନେ ନାହିଁ । ଏତିକି ମନେ ଅଛି ଯେ ଆମ ନିମାପଡା ଘରେ ଗୋଟିଏ ଚାଉଳିଆ (ପିଜୁଳି) ଗଛ ଥିଲା । ସେ ଗଛରେ ବହୁତ ପିଜୁଳି ଫଳୁଥିଲା । ମୁଁ ମୋ ଶ୍ରେଣୀର ପିଲାମାନଙ୍କୁ ମୋ ଜନ୍ମ ଦିନରେ ଥରେ ପିଜୁଳି ଖାଇବାକୁ ଦେଇଥିବାର ମୋର ମନେପଡୁଛି ।

- ମୁଁ ମାଇନର ପଢିଲା ବେଳେ ଥରେ ବୋଉ ସାଙ୍ଗରେ, ନନାଙ୍କ ଜକେଇଙ୍କର ପୁଅର ବ୍ରତ ଘର ପାଇଁ ପୁରୀ ଯାଇଥିଲି । ତାଙ୍କ ଘରଟା ପୁରୀ କୁଣ୍ଡେଇବେଣ୍ଟ ସାହିରେ । ଥରେ ନନାଙ୍କ ଜକେଇ ବୋଉକୁ କହିଲେ,ବଟୁ (ମୋ ଡାକ ନାମ) ଏବେ ମାଇନର ପାସ୍ କରିବ, ତେଣୁ ଆମ ଘରେ ରହି ବଜାର ସଉଦା କରିଦେବ ଓ ସମୟ ଦେଖି ମାଟ୍ରିକ୍ ପାଠ ପଢିବ । ମୁଁ ଏକଥା ଶୁଣିନି । କିନ୍ତୁ ବୋଉ ଗାଁକୁ ଯାଇ ଦୁଇଦିନ ପର୍ଯ୍ୟନ୍ତ ଖାଲି କାନ୍ଦିଲେ । ବହୁ କଷ୍ଟରେ ମୋତେ ଘଟଣାଟି କହିଲେ ଏବଂ କହିଲେ,ମୁଁ ତତେ ତାଙ୍କ ଘରେ ରହିବାକୁ ଦେବି ନାହିଁ ।

## ସତ୍ୟବାଦୀ ସ୍କୁଲରେ ମୋର ଉଚ୍ଚ ଇଂରାଜୀ ପଢା

ସତ୍ୟବାଦୀ ସ୍କୁଲରେ ମୋର ନାମ ଲେଖା ହେଲା । ମାମୁଁ ଶ୍ରୀ ଦୀନବନ୍ଧୁ ଦାଶଙ୍କ ଘରେ ରହିଲି । ତାଙ୍କ ଘରଟି ସାକ୍ଷୀଗୋପାଳ ଦେଉଳର ଉତ୍ତର ଦିଗରେ ଅବସ୍ଥିତ । ଦେଉଳର ପଛପଟେ ସତ୍ୟବାଦୀ ହାଇସ୍କୁଲ । ସ୍କୁଲଟି ମାମୁଁଙ୍କ ଘରଠାରୁ ପ୍ରାୟ ଅଧ କିଲୋମିଟର ଦୂର । ମୋର ସ୍କୁଲ ଯିବାକୁ କିଛି ଅସୁବିଧା ହୁଏ ନାହିଁ । ସ୍କୁଲରେ ସେତେବେଳେ ଶ୍ରୀ ହରିହର ମହାପାତ୍ର ପ୍ରଧାନ ଶିକ୍ଷକ ଥିଲେ । ଅଷ୍ଟମ ଶ୍ରେଣୀ ପିଲାଙ୍କୁ ଶ୍ରୀ ବାସୁଦେବ ମହାପାତ୍ର ଗଣିତ ପଢାଉ ଥିଲେ । ଶ୍ରୀ ଇନ୍ଦୁଭୂଷଣ ମିଶ୍ର ଭଲ ଇଂରାଜୀ ପଢାଉ ଥିଲେ । ଶ୍ରୀ ଫକୀରରଥ ଓଡିଆ ପଢାଉଥିଲେ ।

ମୁଁ ମାମୁଁ ଘରେ ରହିବା ଭିତରେ ମୋର କିଛି ଅସୁବିଧା ହୋଇନାହିଁ । ମାଇଁ ଓ ମାମୁଁ ଉଭୟ ମୋତେ ଖୁବ୍ ଭଲ ପାଉଥିଲେ । ବୋଉ ଗ୍ରାମରୁ ପନ୍ଦର କୋଡିଏ ଦିନରେ ଥରେ ଆସୁ ଥିଲେ । ଦୁଇ ଚାରି ଦିନ ଛୁଟି ହେଲେ ମୁଁ ଗାଁକୁ ଏକା ଚାଲିକରି ଯାଉଥିଲି । ପୁଣି ସ୍କୁଲ ଖୋଲିବା ଦିନ ସକାଳୁ ମାମୁଁ ଘରକୁ ଆସୁଥିଲି । ମାମୁଁଙ୍କ ଘରେ ଥିବାବେଳେ ତାଙ୍କ ଘର ପାଖରେ ଶ୍ରୀ ଫକୀର ରଥ, ଯିଏକି ଆମକୁ ଓଡିଆ ପଢାଉ ଥିଲେ ତାଙ୍କର ହଠାତ୍ ଦେହାନ୍ତ ହୋଇଗଲା । ତାଙ୍କ ଘର ଆମ ମାମୁଁ ଘରକୁ ଲାଗିଛି । ତାଙ୍କ ମୃତ୍ୟୁରେ ମୋତେ ବହୁତ ଦୁଃଖ ହେଲା । ତାଙ୍କର ଗୋଟିଏ ଛୋଟ ଝିଅ ଥିଲା । ତାଙ୍କ ସ୍ତ୍ରୀ, ଝିଅ ପ୍ରଭୃତି ପୁରୀ ଚାଲିଗଲେ । ତାଙ୍କ ଝିଅଙ୍କ ନାଆଁ ସ୍ୱର୍ଣ୍ଣ । ମାମୁଁଙ୍କର ଗୋଟିଏ ଝିଅ ଥିଲା ତା ନାଆଁ କନକ । କନକ ଓ ସ୍ୱର୍ଣ୍ଣ ଏକା ବୟସର । ଫକୀର ସାର ଭାରତ ସଭ୍ୟତା ଓ ବିଦେଶ ସଭ୍ୟତା ସହିତ ତୁଳନା କରି ଏମିତି ପଢାଉ ଥିଲେ ମୋତେ ଖୁବ୍ ଭଲ ଲାଗୁଥିଲା । ମାମୁଁଙ୍କ ଘର ଠାରୁ ଆଉ ଟିକିଏ ଦୂରରେ ଶ୍ରୀ ଗଙ୍ଗାଧର ରଥ ବୋଲି ଜଣେ ସତ୍ୟବାଦୀ ସ୍କୁଲ ଶିକ୍ଷକ ଥିଲେ । ତାଙ୍କ ପୁଅ ନାଆଁ ମହେଶ୍ୱର ରଥ । ସେ ମୋ ଶ୍ରେଣୀରେ ପଢୁଥିଲା । ସେ ମୋର ଘନିଷ୍ଠ ସାଙ୍ଗ ଥିଲା ।

## ଉଚ୍ଚ ଇଂରାଜି ଶିକ୍ଷା

ଶ୍ରୀ ବାସୁଦେବ ମହାପାତ୍ର ନିମାପଡା ହାଇସ୍କୁଲରେ ଆଗରୁ ଶିକ୍ଷକ ଥିଲେ । ତାଙ୍କ ଦୁଇ ପୁଅ ଉମାକାନ୍ତ ଏବଂ ରମାକାନ୍ତ ସତ୍ୟବାଦୀ ସ୍କୁଲରେ ମୋ ସାଙ୍ଗରେ ପଢୁଥିଲେ । ବାସୁଦେବ ମହାପାତ୍ର ମୋ ନନାଙ୍କ ସହିତ ପରିଚିତ ଥିବାରୁ ସେ ମଧ୍ୟ ମୋତେ ଭଲ ପାଉଥିଲେ । ସେତେବେଳେ ଶୀତ ଦିନେ ସତ୍ୟବାଦୀ ହାଇସ୍କୁଲରେ ଶ୍ରେଣୀ ସବୁ କୁରିଆନା ବନରେ ହେଉଥିଲା । ଆମ କ୍ଲାସ ମଧ୍ୟ ସେହି ବଣରେ ହେଉଥିଲା । ଗୋଟିଏ ବଡ ଗଛ ତଳେ ସିମେଣ୍ଟର ଚଉକି ଏବଂ ଟେବୁଲ୍ କରା ହୋଇଥାଏ । ସେଠାରେ ଶିକ୍ଷକ ପଢାନ୍ତି । ଶିକ୍ଷକଙ୍କ ପାଖରେ ଗୋଟିଏ ଉଠା ବ୍ଲାକ୍ ବୋର୍ଡ ରଖା ଯାଇଥାଏ । ତାଙ୍କ ଆଗରେ ଉପର ଶ୍ରେଣୀର ପିଲାମାନେ ତଳେ ଛୋଟ ଡେସ୍କ ଉପରେ ଖାତା ରଖି ଲେଖାଲେଖି କରନ୍ତି । ସେ ବର୍ଷ ସ୍କୁଲର ସରସ୍ୱତୀ ପୂଜା ଭୋଜି ମଧ୍ୟ ସେହି ବନ ବିଦ୍ୟାଳୟରେ କରାଯାଇଥିଲା । ସ୍କୁଲର ପ୍ରଧାନ ଶିକ୍ଷକଙ୍କ କାର୍ଯ୍ୟାଳୟ ଗୋଟିଏ ବଡ ବରଗଛ ତଳେ ହେଉଥିଲା । ଶିକ୍ଷକମାନଙ୍କ କ୍ଲାସ୍ ନଥିବା ସମୟରେ ସିମେଣ୍ଟ ତିଆରି ବେଞ୍ଚ ଉପରେ ବସୁଥିଲେ । କ୍ଲାସ୍ ନଥିବା ସମୟରେ ମୁଁ ବେଳେବେଳେ ଗୋପବନ୍ଧୁ ଦାସଙ୍କ ସମାଧି ପାଖକୁ ଯାଇ ସେଠାରେ କିଛି ସମୟ ବସୁଥିଲି । ଗୋପବନ୍ଧୁ ଦାସଙ୍କ ସମାଧି ସ୍କୁଲଠାରୁ ବହୁତ କମ୍ ଦୂରରେ । ସେଠାରେ ବସିବା ବେଳେ ମୋ ନନାଙ୍କ କଥା ମନେ ପଡେ । ମୁଁ ଟିକିଏ କାନ୍ଦେ । କାରଣ ନନା ସେହି ଗୋପବନ୍ଧୁ ଦାସଙ୍କ ସମାଧି ପାଖରେ ଦାହ ହୋଇଥିଲେ । ଯେତେବେଳେ ଖରା ବେଶୀ ହୋଇଯାଏ, ବନ ବିଦ୍ୟାଳୟ ପୁଣି ସ୍କୁଲ ଘରକୁ ଉଠି ଆସେ । ପୂଜା ଛୁଟି ପରେ ଶୀତ ଦିନ ଆରମ୍ଭ ହେଲେ ପଢାପଢି ସବୁ ବନ ବିଦ୍ୟାଳୟରେ ହୁଏ । ଏଭଳି ଦୃଷ୍ଟାନ୍ତ ଅନ୍ୟ କେଉଁଠାରେ ଥିବାର ମୁଁ ଜାଣିନାହିଁ ।

ସତ୍ୟବାଦୀ ସ୍କୁଲରେ ପଢିଲା ବେଳେ ସେଠାରେ ନୀଳମଣି ଦାସ ତାଙ୍କ ସାନଭାଇ ଚିନ୍ତାମଣି ଦାସ ସେହି ସ୍କୁଲରେ ଚାକିରି କରୁଥିଲେ । ଶ୍ରୀ ନୀଳମଣି ଦାସ ସ୍କୁଲରେ କିରାନି ଭାବରେ କାମ କରୁଥିଲେ । ଶ୍ରୀ ଚିନ୍ତାମଣି ଦାସ ସ୍କୁଲର ଶିକ୍ଷକ ଥିଲେ । ସେ ଆମକୁ ଇଂରାଜି ପଢାଉ ଥିଲେ । ସେ ଦୁହିଁଙ୍କର ମୋର ମାମୁଁଙ୍କ ସହିତ ଭଲ ସମ୍ପର୍କ ଥିଲା । ଶ୍ରୀ ଚିନ୍ତାମଣି ଦାସଙ୍କ ଝିଅ ବିଭାଘରକୁ ମାମୁଁଙ୍କୁ ନିମନ୍ତ୍ରଣ କରିଥିଲେ । ମାମୁଁଙ୍କ ସାଙ୍ଗରେ ମୁଁ ମଧ୍ୟ ଯାଇଥିଲି । ତାଙ୍କ ଘର ପାଖରେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଘର । ସେହି ଦିନରାତିରେ ମଧ୍ୟ ତାଙ୍କ ଝିଅର ବିଭାଘର ହେଉଥିଲା । ରାତିରେ ପଣ୍ଡିତ ନୀଳକଣ୍ଠ ଦାସଙ୍କର ଜଣେ ମୋଟରଗାଡି ଚାଳକ ପେଟ୍ରୋମାକ୍ସ ଲାଇଟ୍ ଲଗାଉଥିଲେ । ହଠାତ୍ ସେହି ଗାଡିଚାଳକଙ୍କ ଦେହରେ କୌଣସି କାରଣରୁ ନିଆଁ ଲାଗିଗଲା । ନିଆଁ ଲିଭିଗଲା ପରେ, ସେହି ଚାଳକଙ୍କ ଦେହରେ ଅନ୍ୟମାନେ ସ୍ପିରିଟ୍ ଢାଳିବାକୁ ଲାଗିଲେ । ମୋ ମନରେ ପ୍ରଶ୍ନ ଆସିଲା 'ଅନ୍ୟମାନେ କାହିଁକି ସ୍ପିରିଟ୍ ଢାଳୁଛନ୍ତି ?' ସେତେବେଳେ ମୋର ପ୍ରଶ୍ନର ଉତ୍ତର ମୁଁ ବୁଝି ପାରି ନ'ଥିଲି । କେତେ ବର୍ଷପରେ ବିଜ୍ଞାନ ପଢିଲାପରେ ତାର ସଠିକ୍ ଉତ୍ତର ଜାଣିପାରିଲି । ସେହି ଉତ୍ତରଟି ହେଲା 'ମଣିଷ ଦେହର ତାପମାତ୍ରାଠାରୁ ସ୍ପିରିଟ୍‌ର ସ୍ଫୁଟନାଙ୍କ ବହୁତ କମ୍, ତେଣୁ ସ୍ପିରିଟ୍ ମଣିଷ ଦେହରେ ପଡିଲେ ଅତିଶୀଘ୍ର ବାଷ୍ପରେ ପରିଣତ ହୋଇଯାଏ । ଫଳରେ ସ୍ପିରିଟ୍ ବାଷ୍ପରେ ପରିଣତ ହେବା ସମୟରେ ମଣିଷ ଦେହରୁ କିଛି ଗୁପ୍ତତାପ ଗ୍ରହଣ କରେ । ସ୍ପିରିଟ୍ ଢାଳିଲେ ଦେହ ପୋଡି

ଯାଇଥିବା ସମୟରେ ସ୍ପିରିଟ୍ ଗୁପ୍ତଚାପ ଗ୍ରହଣ କରିବାରୁ ମଣିଷକୁ ଥଣ୍ଡାଲାଗେ । ତେଣୁ ପୋଡିଯାଇଥିବା ମଣିଷର ଦେହରେ ସ୍ପିରିଟ୍ ଢଳାଯାଏ ।

ଘଟଣା ଚକ୍ରରେ ଶ୍ରୀ ଚିନ୍ତାମଣି ଦାସଙ୍କର ଝିଅ ମୋର ବିବାହପରେ ଖୁଡିଶାଶୁ ହୋଇଥିଲେ । ମୁଁ ନିମାପଡାରେ ପଢୁଥିବା ସମୟରେ ଜାଣିଲି ଶ୍ରୀ ଚିନ୍ତାମଣି ଦାସ ଖଲ୍ଲିକୋର୍ଟ କଲେଜରେ ଓଡିଆ ଅଧ୍ୟାପକ ଥିଲେ । ମୁଁ ଯେତେବେଳେ ବ୍ରହ୍ମପୁରରେ ହେଉଥିବା ଛାତ୍ର ସଂଘର ବାର୍ଷିକ ଅଧିବେଶନରେ ଯୋଗଦେବାକୁ ଯାଇଥିଲି ଖଲ୍ଲିକୋର୍ଟ କେଲେଜର ଏକ କୋଠରୀରେ ମୁଁ ଏବଂ ମୋ ସାଙ୍ଗରେ ଯାଇଥିବା ନିମାପଡା ସ୍କୁଲ୍‌ର ଛାତ୍ରମାନେ ରହିଥିଲେ । ଖଲ୍ଲିକୋର୍ଟ କଲେଜର ଛାତ୍ରମାନଙ୍କ ଠାରୁ ବୁଝିଲି ଶ୍ରୀ ଚିନ୍ତାମଣି ଦାସ ସେଠାରେ ଓଡିଆ ଅଧ୍ୟାପକ ଅଛନ୍ତି ଏବଂ ବୁଝିଲି ସେ କେଉଁ ସ୍ଥାନରେ ରହୁଛନ୍ତି । ମୁଁ ସେତେବେଳେ ଯାଇ ଶ୍ରୀ ଚିନ୍ତାମଣି ଦାସଙ୍କ ସହିତ ଦେଖାକଲି । ସେ ମୋତେ ପ୍ରଥମରୁ ଚିହ୍ନି ପାରିଲେ ନାହିଁ । ମୁଁ ଶ୍ରୀ ଦୀନବନ୍ଧୁ ଦାସଙ୍କର ଭଣଜା ବୋଲି ପରିଚୟ ଦେବାରୁ ସେ ବହୁତ ଖୁସିହେଲେ । କିଛି ସମୟ କଥାବାର୍ତ୍ତା ହେବାପରେ ଚାଲିଆସିଲି ।

## ଘରବାଡି ଭାଗ ବଣ୍ଟୁଆରା

ସତ୍ୟବାଦୀରେ ଥିବା ସମୟରେ ମୋର ବୋଉ ଗ୍ରାମରେ ରହୁଥିଲେ । ଥରେ ଗଛରୁ ନଡିଆ ତୋଳାଇବା ଲୋକ କହିଲା, ବ୍ରଜ ସାଆନ୍ତେ ନଡିଆ ତୋଳାଇ କରି ନେଉଛନ୍ତି । ସେ ମନା କରିଛନ୍ତି ଅନ୍ୟ କାହାକୁ ନଡିଆ ତୋଳି ନ'ଦେବା ପାଇଁ । ବୋଉଙ୍କ ମନ ବଡ ଦୁଃଖ ହେଲା ସେ ବଡ ମାମୁଁଙ୍କ ପାଖକୁ ଯାଇ ତାଙ୍କୁ କହିଲେ ଏବଂ ମୋ ବଡ ଭିଣୋଇଙ୍କୁ ମଧ୍ୟ କହିଲେ । ସେଥିରୁ ମାମୁଁ ଓ ବଡ ଭିଣୋଇ ଗାଁକୁ ଆସି ଗ୍ରାମର ମୁଖିଆ ଲୋକମାନଙ୍କୁ କହି ଘର ସମ୍ପତ୍ତି ବାଡି ଦୁଇ ଭାଗ କରିଦେଲେ । ତାହା ୧୯୪୫ ମସିହାରେ ପୁରୀ ସବ୍‌ରେଜିଷ୍ଟର ପାଖରେ କବଲା ହୋଇଗଲା । ସେହିଦିନ ଠାରୁ ବୋଉ ନଡିଆ ତୋଳାଇଲେ । ଧାନ ଭାଗ ନେଇଥିବା ଲୋକଙ୍କ ଠାରୁ ଫସଲ ଆଦାୟ କଲେ । ଫଳରେ ଆମର ଚଳିବାରେ ସୁବିଧା ହୋଇଗଲା ।

-- ମୁଁ ଅଷ୍ଟମ ଶ୍ରେଣୀରେ ପଢିଲା ବେଳେ ଶିକ୍ଷାବିଭାଗ ନିୟମ କଲେ 'ଯେ ଆମର ଅଷ୍ଟମ ଶ୍ରେଣୀ ପଢା ଛଅ ମାସରେ ସରିବ ।' ତେଣୁ ଶିକ୍ଷକମାନେ ଶୀଘ୍ର ଶୀଘ୍ର ପଢାଉ ଥିଲେ । ମୁଁ ଭଲ ବୁଝିପାରୁ ନ'ଥିଲି । ଯାହାହେଉ ଛଅମାସ ପରେ ମୁଁ ନବମ ଶ୍ରେଣୀକୁ ଉତ୍ତିର୍ଣ୍ଣ ହେଲି । ନବମ ଶ୍ରେଣୀରେ ଅନୁଭବ କଲି ମୁଁ ଗୋଟିଏ ଭଲ ଛାତ୍ର ନୁହେଁ । ସେହି ସମୟରେ ସତ୍ୟବାଦୀ ସ୍କୁଲର ଗୋଟିଏ ଶ୍ରେଣୀର ଛାତ୍ରମାନେ ଶୁକ୍ରବାର ଦିନ ସନ୍ଧ୍ୟାବେଳେ ସାଂସ୍କୃତିକ କାର୍ଯ୍ୟକ୍ରମ ପ୍ରସ୍ତୁତ କରି ସ୍କୁଲର ଛାତ୍ର ଓ ଶିକ୍ଷକ ମାନଙ୍କୁ ପରିବେଷଣ କରନ୍ତି । ସେହି ସମୟରେ ଶ୍ରୀ ଇନ୍ଦୁଭୂଷଣ ମିଶ୍ର ସେକସ୍ପିୟରଙ୍କ ଲେଖା 'ମରଚାଣ୍ଟ୍ ଅଫ ଭେନିସ୍' ନାଟକକୁ ଅନୁବାଦ କରି ତାର ନାମ ଦେଇଥିଲେ 'ସିନ୍ଧୁ ବଣିକ' । ସେହି ସିନ୍ଧୁ ବଣିକ ନାଟକଟି ସତ୍ୟବାଦୀ ସ୍କୁଲରେ ଅଭିନୀତ ହୋଇଥିଲା । ଶ୍ରୀ ଇନ୍ଦୁଭୂଷଣ ମିଶ୍ର ନିଜେ ସିନ୍ଧୁ ବଣିକ ଭାବେ ଅଭିନୟ କରିଥିଲେ । ଆମ ଗ୍ରାମର ଶ୍ରୀ ମଧୁସୁଦନ ମିଶ୍ର ଏକ ଝିଅ ଭୂମିକାରେ ଅଭିନୟ କରିଥିଲେ । ଅନ୍ୟମାନଙ୍କ କଥା ମୋର ମନେନାହିଁ । ମୋତେ ସେ ନାଟକଟି ଭାରି ଭଲ ଲାଗିଥିଲା । ମୁଁ ସତ୍ୟବାଦୀରେ

ନବମ ଶ୍ରେଣୀରେ ପଢ଼ୁଥିଲା ବେଳେ ଚିନ୍ତା ଭାଈନାଙ୍କ ପାଖକୁ କଟକ ସହର ଦେଖିବା ପାଇଁ ଶ୍ରୀ ରାମଚନ୍ଦ୍ର ବାରିକ ସଙ୍ଗେ ଯାଇଥିଲି । ରାମଚନ୍ଦ୍ର ବାରିକ ସତ୍ୟବାଦୀ ସ୍କୁଲରେ କାମ କରୁଥିଲେ । ତାଙ୍କର ମାମୁଁଙ୍କ ସଙ୍ଗେ ଭଲ ସମ୍ପର୍କ ଥିଲା । ସିଏ ଗୋପବନ୍ଧୁ ଦାସଙ୍କ ସହିତ ସତ୍ୟବାଦୀ ସ୍କୁଲରେ ବି କାମ କରୁଥିଲେ ।

## ପିଲାଦିନୁ କଟକ ଅନୁଭୂତି

ଚିନ୍ତା ଭାଈନା ଗୋଟିଏ ମେସ୍‌ରେ ରହୁଥିଲେ କିନ୍ତୁ ବ୍ରହ୍ମାନନ୍ଦ ଦାସଙ୍କ ଘରେ ଦୁଇଓଳି ଖାଉଥିଲେ । ଚିନ୍ତା ଭାଈନା ମୋତେ ଶ୍ରୀ ବ୍ରହ୍ମାନନ୍ଦ ଦାସଙ୍କ ଘରେ ରଖାଇ ଦେଲେ ଓ ଖାଇବାର ବନ୍ଦୋବସ୍ତ କରିଦେଲେ । କିନ୍ତୁ ସେ ନିଜେ ବାହାରେ କେଉଁଠି ଖାଉଥିଲେ । ଚିନ୍ତା ଭାଈନା ମୋତେ କଟକର ବିଭିନ୍ନ ସ୍ଥାନ ଯଥା: ଯୋବ୍ରା, ରେଭେନ୍ସା କଲେଜ, ବାରବାଟି କିଲ୍ଲା, ମହାନଦୀ କାଠଯୋଡିର ପଥର ବନ୍ଧ ବୁଲି ଦେଖାଇ ଥିଲେ । ସେତେବେଳେର କଟକ ସହର ବର୍ତ୍ତମାନର କଟକ ପରି ନ'ଥିଲା । ଶ୍ରୀ ବ୍ରହ୍ମାନନ୍ଦ ଦାସଙ୍କ ଘର ଓଡିଆ ବଜାର । କୌଣସି ପିଚୁ ରାସ୍ତା ନଥିଲା । ରାସ୍ତା କଡରେ ମ୍ୟୁନିସିପାଲଟିର ଡିବି ଜଳୁଥିଲା । ଓଡିଆ ବଜାରରୁ ରାତିରେ ଷ୍ଟେସନ୍ ଆସିବାକୁ ହେଲେ ଗୋଟିଏ ନିଛାଟିଆ ରାସ୍ତାରେ ଆସିବାକୁ ପଡୁଥିଲା । ମୁଁ କଟକରେ ଦୁଇ ତିନି ଦିନ ରହିବା ପରେ ରାମଚନ୍ଦ୍ର ବାରିକଙ୍କ ସାଙ୍ଗରେ ସାକ୍ଷୀଗୋପାଳ ଟ୍ରେନ୍‌ରେ ଆସିଲି । ସେତେବେଳେ ସାକ୍ଷୀଗୋପାଳ ଠାରୁ କଟକ ଟ୍ରେନ୍ ଭଡା ୧୪ ଅଣା ଥିଲା (୮୭ ପଇସା) । ସେତେବେଳେ ସାକ୍ଷୀଗୋପାଳରୁ ପୁରୀ ଯିବାପାଇଁ ଭଡା ତିନି ଅଣା ଥିଲା ।

— ନବମ ଶ୍ରେଣୀରେ ପଢିଲା ସମୟରେ ନନାଙ୍କର ଅସ୍ଥି ପକାଇବାକୁ ମୁଁ ବୋଉଙ୍କ ସାଙ୍ଗରେ ତ୍ରିବେଣୀ ଯାଇଥିଲି । ଶ୍ରୀ ରାମଚନ୍ଦ୍ରପୁରର ଜଣେ ଲୋକ କଲିକତାରେ ରହୁଥିଲେ । ତାଙ୍କର କଲିକତାରେ ଗୋଟିଏ ହୋଟେଲ ଥିଲା । ତାଙ୍କ ସାନ ଭାଇଙ୍କ ସାଙ୍ଗରେ ଆମେ ସକାଳୁ ପୁରୀ କଲିକତା ପାସେଞ୍ଜର୍‌ରେ ବସିଲୁ । ତା ପରଦିନ ଭୋର ପାଞ୍ଚଟାରେ ହାଓଡାରେ ପହଁଚିଲୁ । ସେତେବେଳକୁ ହାଓଡା ପୋଲ ତିଆରି ହୋଇ ଯାଇଥିଲା । ଆମେ ହାଓଡା ପୋଲ ଉପର ଦେଇ ଯାଇ ତାଙ୍କ ଭାଇଙ୍କ ଘରେ ରହିଲୁ । ତାପର ଦିନ ସକାଳେ ତ୍ରିବେଣୀ ଅଭିମୁଖେ ଯାତ୍ରା କଲୁ । ତ୍ରିବେଣୀରେ ପହଁଚି ଅସ୍ଥି ପକାଇ ସଂଧ୍ୟା ସୁଦ୍ଧା କଲିକତା ଫେରିଆସିଲୁ । ତାପର ଦିନ ପୁରୀ ପାସେଞ୍ଜର ଗାଡିରେ ବସି ସାକ୍ଷୀଗୋପାଳ ଆସିଲୁ । ସେତେବେଳେ ସତ୍ୟବାଦୀରୁ ହାଓଡା ଛଅ ସାତ ଟଙ୍କା ରେଳଭଡା ପଡୁଥିଲା । -

- ସତ୍ୟବାଦୀ ହାଇସ୍କୁଲରେ ପଢିଲା ବେଳେ ଶ୍ରୀ ବାସୁଦେବ ମହାପାତ୍ର ଆମକୁ ବିଜ୍ଞାନ ପଢାଉ ଥିଲେ । ପରବର୍ତ୍ତି କାଳରେ ବାସୁଦେବ ସାର୍‌ଙ୍କ ପୁତ୍ର ରମାକାନ୍ତ ଇଞ୍ଜିନିୟର ହିସାବରେ ଚାକିରିରୁ ଅବସର ନେଇ ଭୁବନେଶ୍ୱରର ଆଠ ନମ୍ବର ୟୁନିଟ୍‌ରେ ରହୁଛନ୍ତି । ରମାକାନ୍ତଙ୍କୁ ଖାଲି ଜାଣିଛି ସେ କେଉଁଠାରେ ଓକିଲାତି କରୁଛନ୍ତି । ଈଶ୍ୱରଚନ୍ଦ୍ର ବାରିକ ଜଣେ ଛାତ୍ର ମୋ ସାଙ୍ଗରେ ପଢୁଥିଲା । ସେ ଶ୍ରୀ ରାମଚନ୍ଦ୍ର ବାରିକଙ୍କ ପୁଅ । ସେ ଗୋପବନ୍ଧୁ ଦାସଙ୍କ ଅମଳରୁ ସେହି ସ୍କୁଲରେ ଚାକିରି କରି ଆସୁଥିଲେ । ଦୁଃଖର କଥା ଏହି ଯେ ଈଶ୍ୱରଚନ୍ଦ୍ର ବାରିକ ହଠାତ୍ ନିରୁଦ୍ଦିଷ୍ଟ ହୋଇଗଲେ । ସେ ଆଉ ଘରକୁ ଫେରି ନାହାଁନ୍ତି । ମୋର ଅନ୍ୟ ସହପାଠୀଙ୍କ ନାମ ହେଉଛି ଗୋପୀନାଥ ରଥ, ବେଣୁଧର ପ୍ରଧାନ, ଜଗବନ୍ଧୁ ବଳିୟାର ସିଂ । ସତ୍ୟବାଦୀ ସ୍କୁଲ ଛାଡିଲା ପରେ

ମହେଶ୍ୱର ରଥଙ୍କ ବ୍ୟତୀତ ଅନ୍ୟ କାହା ସାଙ୍ଗରେ ଦେଖା ହୋଇନାହିଁ । -

- ମୁଁ ସତ୍ୟବାଦୀରେ ଥିବାବେଳେ ମାମୁଁଙ୍କ ବଡଶଳା ସେତେବେଳେ ଜଟଣୀର ରେଲ୍ୱେ ସ୍କୁଲ୍‌ରେ ଶିକ୍ଷକ ଥାଆନ୍ତି । ତାଙ୍କର କୌଣସି ଉତ୍ସବରେ ଯୋଗ ଦେବାପାଇଁ ସେ ଥରେ ମାମୁଁଙ୍କୁ ନିମନ୍ତ୍ରଣ କରିଥିଲେ । ସେଥିପାଇଁ ମାମୁଁ, ମାଇଁ ଓ ମାମୁଁଙ୍କ ଝିଅ କନକ ଏବଂ ମୋ ପାଇଁ ବି.ଏନ୍.ଆର ରେଲ୍ୱେରେ ଯିବା ଆସିବା ପାଇଁ ଚାରୋଟି ଇଣ୍ଟର କ୍ଲାସ୍‌ର ପାସ୍‌ର ବନ୍ଦୋବସ୍ତ କରିଥିଲେ । ଫାଷ୍ଟ କ୍ଲାସ୍‌ରେ କେବଳ ଇଂରେଜ ଲୋକମାନେ ଯିବା ଆସିବା କରୁଥିଲେ । ସେକେଣ୍ଡ କ୍ଲାସ୍‌ରେ ଭାରତର ଧନୀ ଲୋକମାନେ ଯିବା ଆସିବା କରୁଥିଲେ । ଇଣ୍ଟର କ୍ଲାସ୍‌ରେ ମଧ୍ୟବିତ୍ତ ପରିବାରର ଲୋକ ସାଧରଣତଃ ଯାଉଥିଲେ । ମୁଁ ଫକୀର ବାବୁଙ୍କ ଘରେ ପହଁଞ୍ଚିଲା ପରେ ଜାଣିଲି ଶ୍ରୀ ବୃନ୍ଦନାଥ ଦଳେଇ ସେଠାର ସବ୍‌ଇନିସ୍ପେକଟର୍ ଅଛନ୍ତି । ମାମୁଁଙ୍କୁ କହିଲି ମୁଁ ଟିକିଏ ତାଙ୍କ ଘରକୁ ଯିବି ଏବଂ ତାଙ୍କ ପୁଅ ସାଙ୍ଗେ ଦେଖା କରିବି, ମାମୁଁ କହିଲେ । ସବ୍‌ଇନିସ୍ପେକଟରଙ୍କ ଠାରୁ ଫକୀର ବାବୁଙ୍କର ଚିନି ପରମିଟ୍ ଆଣିବାର ଥିଲା । କାରଣ ତାଙ୍କର ଉତ୍ସବ ପାଇଁ ଚିନି ଦରକାର ପଡୁଥିଲା । ମୁଁ ତାଙ୍କ ସାଙ୍ଗରେ ଗଲି । ସେ ଚିନି ପରମିଟ୍ ଆଣିଲେ ଏବଂ ପୂର୍ଣ୍ଣଚନ୍ଦ୍ର ଦଳେଇଙ୍କ ସାଙ୍ଗରେ ତାଙ୍କ ଘରେ ଯାଇ ଦେଖାକଲି । ଆମେ ବହୁତ ସମୟ କଥା ବାର୍ତ୍ତା ହେଲୁ । ସେ ମୋ ଭଉଣୀମାନଙ୍କ କଥା ପଚାରିଲେ । ନନାଙ୍କ ମରିବା ବିଷୟରେ ସେ ବୋଧେ ଜାଣିଥିଲେ । କିଛି ସମୟ କଥାବାର୍ତ୍ତା ପରେ ମୁଁ ଫେରି ଆସିଲି । ତାର ଦୁଇ ତିନି ଦିନ ପରେ ଆମେ ସମସ୍ତେ ସତ୍ୟବାଦୀ ଫେରି ଆସିଲୁ -

- ସେତେବେଳେ ଯୁଦ୍ଧ ଲାଗିଥିଲା । ତେଣୁ ପେଟ୍ରୋଲ ମିଳୁ ନଥିଲା । ବସ୍ ସବୁ କୋଇଲାରେ ଚାଲୁଥିଲା । ସେଥିପାଇଁ ବସ୍‌ର ପଛପଟେ ଲୁହାର ଗୋଟିଏ ବଡ ପାତ୍ର ରଖା ହୋଇଥାଏ । ତା ଦେହରେ କୋଇଲା ଭର୍ତ୍ତି ହୋଇଥାଏ । ସେହି କୋଇଲା ସାହାଯ୍ୟରେ ବସ ଚାଲେ । ବସ୍‌ର ବେଗ ଘଣ୍ଟାକୁ ୧୨/୧୩ ମାଇଲ୍‌ରୁ ବେଶୀ ହୁଏ ନାହିଁ । ବାଟରେ ବେଳେ ବେଳେ ବସ୍‌ଟି ରହିଯାଏ । ତାକୁ ପୁଣି ବସ୍‌ର ଲୋକମାନେ ସଜାଡି ଚଲାନ୍ତି ।

## ଭାର୍ଗବୀ ହାଇସ୍କୁଲ୍‌ରେ ନାଁ ଲେଖା ଓ ପଢା

ସତ୍ୟବାଦୀରେ ରହିବା ସମୟରେ ମୋତେ ଜମା ଭଲ ଲାଗୁନଥିଲା । ମୁଁ ସବୁବେଳେ ନିମାପଡା କଥା ଭାବୁଥିଲି । ମୋତେ ସେଠି ମଝିରେ ମଝିରେ ଜ୍ୱର ହେଉଥିଲା । ଏହିପରି ଭାବରେ ମୋର ଗୋଟେ ବର୍ଷ ଶେଷ ହୋଇଗଲା । ମୁଁ ଦଶମ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହେଲି । କିନ୍ତୁ ମୁଁ ପରୀକ୍ଷାରେ ଭଲ କରି ନଥିଲି । ତାପରେ ମାମୁଁଙ୍କୁ ଓ ବୋଉଙ୍କୁ କହିଲି ମୋତେ ଜମା ଭଲ ଲାଗୁନାହିଁ । ମୁଁ ଭାର୍ଗବୀ ହାଇସ୍କୁଲ୍‌ରେ ପଢିବି । ସମସ୍ତେ ରାଜି ହୋଇଗଲେ । ମୁଁ ଭାର୍ଗବୀ ହାଇସ୍କୁଲ୍‌ରେ ଦଶମ ଶ୍ରେଣୀରେ ନାମ ଲେଖାଇଲି । ଦୁଇମାସ ପରେ ମୋତେ ପୁଣି ଜ୍ୱର ହେଲା । ମୁଁ ଗାଁକୁ ଆସିଲି । ଗାଁରୁ ଭଲ ହୋଇ ଆସିବାର ମାସେ ଖଣ୍ଡେ ପରେ ପୁଣି ଜ୍ୱର ହୁଏ । ଏମିତି ଥରେ ଗାଁକୁ ଯାଇଥିଲି ଆଉ ଆସି ପାରିଲି ନାହିଁ । ପ୍ରାୟ ସବୁବେଳେ ଜ୍ୱର ହେଉଥାଏ । ତେଣୁ ବୋଉ ଏବଂ ମୁଁ ପୁଣି ପୁରୀ ଗଲୁ । ଯେଉଁ ମହାଦେବ ମିଶ୍ର ନନାଙ୍କୁ ଚିକିତ୍ସା କରିଥିଲେ ତାଙ୍କୁ ଦେଖାଇଲୁ । ସେ କହିଲେ ମ୍ୟାଲେରିଆ ହୋଇଛି ଏବଂ ମୋତେ ମ୍ୟାଲେରିଆ ଇଞ୍ଜେକ୍‌ସନ୍ ଦେଇଦେଲେ । କେତେଦିନ ପରେ ଜ୍ୱର ଛାଡିଗଲା । ସେହିଦିନ ଠାରୁ ଆଉ

ମୋତେ ମ୍ୟାଲେରିଆ ଜ୍ୱର ହୋଇନାହିଁ । କିନ୍ତୁ ଏହାର କେତେଦିନ ପରେ ମୋ ଦେହରେ ସବୁଆଡେ କାଛୁ ହୋଇଗଲା । ବହୁତ ହଇରାଣ ହେଲି । ଆମ ଗାଁରେ ଶ୍ରୀ ଭୋଳାନାଥ ରଥ ନାମକ ଜଣେ ଏମ୍.ବି.ବି.ଏସ୍ ପାସ୍ କରି ଆସିଥାନ୍ତି । ସେ ମୋର କାଛୁ ପାଇଁ ଇଞ୍ଜେକ୍ସନ୍ ଦେଲେ ଓ ଆଉ କଣ ଔଷଧ ଦେଲେ । ସେ ଔଷଧ ସବୁ ପୁରୀରୁ କିଣାହୋଇ ଆସିଲା । ଦୁଇମାସ ପରେ କାଛୁ ଭଲ ହୋଇଗଲା । ମୁଁ ପ୍ରାୟ ବର୍ଷକ ଯାକ କିଛି ପଢି ନ'ଥାଏ । ତେଣୁ ମୁଁ ପରୀକ୍ଷା ଦେବାଲାଗି ଗଲି ନାହିଁ । ତାପରେ ମୁଁ ମନେ ମନେ ଠିକ୍ କଲି ନିମାପଡା ଯାଇ ପୁଣି ପଢିବି ।

ମୁଁ ଭାର୍ଗବୀ ହାଇସ୍କୁଲ୍‌ରେ ପଢିଲା ବେଳେ ଗୋପବନ୍ଧୁ ପାତ୍ର ନାମକ ଜଣେ ଛାତ୍ରଙ୍କୁ ଭଲ ଭାବରେ ଜାଣିଥିଲି । କାରଣ ସେ ସ୍କୁଲରେ ଫାଷ୍ଟ ହେଉଥିଲେ । ତାଙ୍କୁ ମୁଁ ଏପର୍ଯ୍ୟନ୍ତ ଆଉ ଦେଖିନାହିଁ । ବୀରନରସିଂହ ପୁରର ତିନିଜଣ ପିଲାଙ୍କ ସଙ୍ଗେ ମୋର ଭଲ ଚିହ୍ନା ପରିଚୟ ଥିଲା । ଜଣଙ୍କ ଡାକ ନାଆଁ ପାପା ବୋଲି ମୋର ମନେ ଅଛି । ତାଙ୍କ ସହିତ ପରବର୍ତ୍ତୀ ସମୟରେ ଗଙ୍ଗାଧର ମହାପାତ୍ର(ଓକିଲ) ଶିକ୍ଷାମନ୍ତ୍ରୀଙ୍କ କର୍ଯ୍ୟାଳୟରେ ଦେଖା ହୋଇଥିଲା । ଆଉ ଦୁଇଜଣ ପିଲାଙ୍କ ନାଆଁ ମୋର ମନେ ନାହିଁ । ତାଙ୍କ ମଧ୍ୟରୁ ଜଣଙ୍କୁ ଏ ପର୍ଯ୍ୟନ୍ତ ବି ଦେଖିନାହିଁ । ଆଉ ଜଣେ ଦୁଇ ତିନି ଥର ମୋର ଅବସର ସମୟରେ ଅବସର କାଳୀନ ଭତ୍ତା ନେଲାବେଳେ ଦେଖା ହୋଇ ଥିଲା । ମୁଁ ଭାର୍ଗବୀ ହାଇସ୍କୁଲ୍‌ରେ ପଢିଲା ବେଳେ ମୋ ଦେହ ଖରାପ ଯୋଗୁଁ ବହୁଦିନ ସ୍କୁଲ୍‌ରେ ଅନୁପସ୍ଥିତ ରହିଥିବାରୁ ମୁଁ ଆଉ ଅନ୍ୟ ପିଲାଙ୍କ ସାଙ୍ଗରେ ମିଶି ପାରିଲି ନାହିଁ । ଭାର୍ଗବୀ ହାଇସ୍କୁଲ୍‌ରେ ପଢିଲା ବେଳେ ମୁଁ ଖାଲି ଗୋଡରେ ଯିବା ଆସିବା କରୁଥିବାରୁ ଚିନ୍ତା ଭାଇନା ଗୋଟିଏ କାନଭାସ୍ ଜୋତା ଦୁଇ ଟଙ୍କାରେ ପୁରୀରୁ କିଣିକରି ମୋତେ ଦେଇଥିଲେ । ଏହି ଘଟଣାଟି ମୋର ମନେ ଅଛି । ମୁଁ ପ୍ରଥମ କରି ଜୀବନରେ ଜୋତା ବ୍ୟବହାର କରିଥିଲି ।

## ନଈ ଗାଧୁଆ ଓ ଗାଁରେ ନାଚଗୀତ ଆସର

ଗ୍ରାମରେ ଥିବାବେଳେ ବର୍ଷେକାଳ ଯେଉଁ ଦେହ ଖରାପ ହେତୁ ରହିଲି, ସେ ବିଷୟରେ କିଛି କହିବାକୁ ଏଠାରେ ଉଚିତ ମନେକରୁଛି । ସକାଳୁ ଉଠି ଭିନ୍ନ ଭିନ୍ନ ରଇତମାନଙ୍କ ଘରକୁ ଯାଇ ଚୂନା ମାଛ ନେଇ ଆସୁଥିଲି । ତାପରେ ଭାର୍ଗବୀ ନଈକୁ ଯାଉଥିଲି ଗାଧୋଇବା ପାଇଁ । ନଈ ପ୍ରାୟ ଆମ ଘରଠାରୁ ଏକ ମାଇଲରୁ କମ୍ ହେବ । ଘଣ୍ଟେ ଦେଢ ଘଣ୍ଟା ଧରି ନଈରେ ବୁଡାବୁଡି କରି ଗାଧୋଇ ଘରକୁ ଆସୁଥିଲି । ଏହାପରେ ଗଣ୍ଡେ ଖାଇସାରିଲା ପରେ ମୋର ସମବୟସ୍କ ସାଙ୍ଗସାଥୀମାନେ ଘରେ ଆସି ଗହଳି କମାନ୍ତି । ଆମ ପିଣ୍ଡାରେ ପ୍ରାୟ ତାସ୍ ପାଲି ପଡେ । ସାଧାରଣତଃ ଆମେ ମାଗୁଣି ଖେଳୁ । ସେଥିରେ ଦୁଇ ତିନି ଘଣ୍ଟା ବିତିଯାଏ । ଆମ ଘର ଦୁଆର ମୁହଁରେ ଗୋଟିଏ କୂଅ ଥାଏ । କୂଅର ଚାରିପଟେ ଗୋଟିଏ ବଡ ଚାନ୍ଦିନୀ ଥାଏ । ଗାଁ ଲୋକେ ନାଚଗୀତ ପ୍ରିୟ । ସଂଧ୍ୟା ହେଲେ ଗାଁର ସଙ୍ଗୀତପ୍ରେମୀମାନେ ଆସି ପଖଜ ମାତ କରି ଓଡିଶୀଗୀତ ବୋଲନ୍ତି । ପ୍ରାୟ ପ୍ରତିଦିନ ଏଭଳି ଚାଲେ । ସେତେବେଳେ ମୋ ଦେହରେ କାଛୁ ହୋଇଥାଏ । ଏଣୁ ମୁଁ କୌଣସି ଥିରେ ଭାଗ ନେଉ ନ' ଥିଲି । କିନ୍ତୁ ଉପସ୍ଥିତ ରହି ଆସର ଉପଭୋଗ କରୁଥିଲି ।

- ମୁଁ ପ୍ରାୟ ସବୁବେଳେ ଦେଖେ ବୋଉ ଚୁଲାରେ ବଳିତା ବୋଳୁଥାଆନ୍ତି । ମୁଁ ଅନେକ ଥର କହେ ତୁ ଏତେ କଷ୍ଟ କରି କାହିଁକି ବଳିତା ବଳୁଛୁ । ବେଳେ ବେଳେ ଚୁପ ରହି ଯାଆନ୍ତି କିନ୍ତୁ ବେଳେ ବେଳେ କହନ୍ତି ବସିଛି ତେଣୁ ବଳି ଦେଉଛି । ମୁଁ କହେ ଟଙ୍କେ ଦି ଟଙ୍କା ଦେଲେ ତ ବହୁତ ବଳିତା ମିଳିବ ଏତେ କଷ୍ଟ କାହିଁକି କରୁଛୁ ? ଥରେ କହିଲା ମୁଁ ମାନସିକ କରିଛି । ମୁଁ ଆଉ କିଛି କହିଲି ନାହିଁ । -

- ଖରାଛୁଟି ପଡିଲେ, ପ୍ରତିବର୍ଷ ଗାଁରେ, ଗାଁ ପିଲାମାନେ ମିଶି ଗୋଟିଏ ଡ୍ରାମା କରନ୍ତି । ଠିକ୍ କେଉଁ ବର୍ଷ ମୋର ମନେନାହିଁ, 'ରାଜା' ହରିଶ୍ଚନ୍ଦ୍ର ଡ୍ରାମାରେ, ମୋତେ ରୋହିତାଶ୍ୱ ଭୂମିକାରେ ଅଭିନୟ କରିବାକୁ କୁହାଗଲା । ମାତ୍ର ମୁଁ ରାଜି ହେଲି ନାହିଁ । ଆଉ ବର୍ଷେ ଖରା ଛୁଟିରେ 'ମାତୃପୂଜା' ନାଟକ ଅଭିନୀତ ହେଉଥିଲା । ମୋ କ୍ଲାସ୍‌ର ପିଲାମାନେ ସବୁ ସେଥିରେ ଭାଗ ନେଇଥିଲେ । ସେହିବର୍ଷ ନାଟକରେ ମୁଁ ଭଲ ଭାବରେ  କାମ କରିଥିଲି । କିନ୍ତୁ କିଛି ପାର୍ଟ ନେଇ ନ'ଥିଲି । ସେହି ଡ୍ରାମାରେ କାଳକେତୁ ଭୂମିକାରେ କାଶୀନାଥ ମିଶ୍ର ବୋଲି ଜଣେ ଯୁବକ ଅଭିନୟ କରିଥିଲେ । ତାଙ୍କ ସ୍ତ୍ରୀ 'ଫୁଲରା' ଭୂମିକାରେ, ମଧୁସୂଦନ ମିଶ୍ର ଅଭିନୟ କରୁଥାନ୍ତି । ସେତେବେଳେ ପୁଅ ପିଲାମାନେ ଝିଅ ଭୂମିକାରେ ଅଭିନୟ କରୁଥିଲେ । ସେ ନାଟକର ଗୋଟିଏ ରାଜାର ଭୂମିକା ଥାଏ । ଶ୍ରୀ ଲୋକନାଥ ରଥ ନାମକ ଯୁବକ ରାଜା ଭୂମିକାରେ ଅଭିନୟ କରୁଥାନ୍ତି । ଏହି ଶ୍ରୀ ଲୋକନାଥ ରଥ ପ୍ରତିବର୍ଷ ଡ୍ରାମାର ଉଦ୍ୟୋକ୍ତା ଥାଆନ୍ତି । ସବୁ ଡ୍ରାମାରେ ଶ୍ରେଷ୍ଠ ଭୂମିକାରେ ଥାଆନ୍ତି । -

- ସେହିବର୍ଷ ମୋର ଜଣେ ସହପାଠୀ  ଜୟଦେବ ମିଶ୍ର 'ରାଇଜେମା' ଭୂମିକାରେ ଏବଂ ଆଉ ଜଣେ ସହପାଠୀ ଭଗବାନ ତ୍ରିପାଠୀ, 'ଦୁର୍ଗା' ଭୂମିକାରେ ଅଭିନୟ କରିଥିଲେ । ବେଳେ ବେଳେ କଳାକାରମାନଙ୍କ ମଧ୍ୟରେ ମତାମତ ଘଟେ । ଡ୍ରାମା ସମୟରେ କୌଣସି କାରଣରୁ ଭଗବାନ୍ ତ୍ରିପାଠୀଙ୍କର, ଲୋକନାଥ ରଥଙ୍କ ସହିତ ମତାନ୍ତର ହେଲା । ତେଣୁ ଅଭିନୟ କରିବା ପାଇଁ ଷ୍ଟେଜ୍ ରିଏଲ୍‌ସେଲ୍ ଦିନ ସେ ମନାକଲେ । ତେଣୁ ଲୋକନାଥ ରଥ ଏବଂ ଅନ୍ୟ ପିଲାମାନେ ମୋତେ ବାଧ୍ୟକଲେ ଦୁର୍ଗା ଭୂମିକାରେ ଅଭିନୟ କରିବା ପାଇଁ । ଅଗତ୍ୟା ମୁଁ ରାଜିହେଲି । ଷ୍ଟେଜରେ ରିଏଲ୍‌ସେଲ୍ କଲି । ମାତ୍ର ଡ୍ରାମା ଦିନ, ଭଗବାନ୍ ତ୍ରିପାଠୀ ଆସି ପୁଣି ଅଭିନୟ କରିବାକୁ କହିବାରୁ ମୁଁ ଆଉ ଅଭିନୟ କଲିନାହିଁ । ପରବର୍ତ୍ତୀ କାଳରେ ଶ୍ରୀ ମଧୁସୂଦନ ମିଶ୍ର, ଓଡିଶା ଅର୍ଥ ବିଭାଗର କମିଶନର ହୋଇ ଚାକିରୀରୁ ଅବସର ନେଲେ । ଭଗବାନ ତ୍ରିପାଠୀ ବି.ଏ ପାସ୍ କରି ସ୍କୁଲ୍‌ରେ ଶିକ୍ଷକ ରୂପେ କାର୍ଯ୍ୟ କରୁଥିଲେ । ଜୟଦେବ ମିଶ୍ର  ବନାରସ୍‌ରେ ଇଞ୍ଜିନିୟରିଂ ପଢି ଚିଫ୍ ଇଞ୍ଜିନିୟର ଭାବରେ ଚାକିରୀରୁ ଅବସର ନେଲେ । ଏହି ଡ୍ରାମାପରେ ମୁଁ ଯାଇ ନିମାପଡାରେ ପଢିଲି ଏବଂ ଗାଁରୁ ପ୍ରାୟ ଦୂରେଇ ଗଲି । ପିଲାଦିନର ସାଙ୍ଗସାଥୀଙ୍କ କଥା ସ୍ମୃତି ମନେପଡିଲେ ମନରେ ବହୁତ କୌତୁହଳ ଜାତହୁଏ, ସତରେ ।

## ନିମାପଡାରେ ପାଠପଢା ଓ ପରୀକ୍ଷା ନିରୀକ୍ଷା

ନିମାପଡାରେ ପଢିବା ପାଇଁ ଚିତା ଭାଇନାଙ୍କୁ କହିଲି । ବୋଉକୁ ମଧ୍ୟ କହିଲି । ବୋଉ ରାଜି ହେଲେ । ଚିତା ଭାଇନାଙ୍କର ଜଣେ ସମ୍ପର୍କୀୟ ଭାଇ ଶ୍ରୀ ବୃନ୍ଦାବନ ଆଚାର୍ଯ୍ୟ ନିମାପଡା ସ୍କୁଲରେ ଶିକ୍ଷକ ଥିଲେ । ସେ ନିମାପଡାରେ କେତେଜଣ ପିଲାଙ୍କ ସାଙ୍ଗରେ ମିଶି

ସେ ସମୟରେ ଆମ ସ୍କୁଲ୍‌ର ନବମ ଶ୍ରେଣୀର ଛାତ୍ର ଜଗନ୍ନାଥ ସାହୁ ସେଠାରେ ଦେଖାଦେଲେ । ସେ ମଧ୍ୟ ସେହି ମିଟିଙ୍ଗ୍‌ରେ ଯୋଗଦେବାକୁ ଆସିଥିଲେ । ମୋର ରହିବାର ବନ୍ଦୋବସ୍ତ ସେମାନେ କରିଦେଲେ । ରାତିରେ ତାଙ୍କ ସାଙ୍ଗେ ଯାଇ ଗୋଟିଏ ହୋଟେଲରେ ଖାଇଲୁ । ମୋ ଖାଇବା ଖର୍ଚ୍ଚ ସେମାନେ ବହନ କଲେ । ତାପର ଦିନ ସକାଳୁ ଜଳଖିଆ ଖାଇବା ପରେ, କାର୍ଯ୍ୟକାରୀ ମିଟିଙ୍ଗ୍ ଆରମ୍ଭ ହେଲା । ମିଟିଙ୍ଗ ସରିବା ପରେ, ସେହି ହୋଟେଲରେ ପୁଣି ଯାଇ ଖାଇଲୁ । ସେତେବେଳେ ମିଲ୍ ଗୋଟିକୁ ଛଅଅଣା ପଇସା ମାତ୍ର ପଡୁଥିଲା ।

- ତାପରେ ମୁଁ ଫେରିବା ପାଇଁ ବାହାରିଲି । ସେଠାରେ ଶ୍ରୀ ମନମୋହନ ମିଶ୍ର ଗୋଟିଏ ନିଜ ଲେଖା ଗୀତ ଗାଇବାର ମୁଁ ଶୁଣିଛି । ତାର ପ୍ରଥମ ପଦଟି ହେଲା "କହ କେଉଁ ଜାତି ପାଇଛି ମୁକତି : କରି ହାରି ହୁରି ଗୁହାରି ।" ଗୀତଟି ବେଶ୍ ମନଛୁଆଁ ହୋଇପାରିଥିଲା । ଫେରିଲା ବେଳେ ମୋ ସାଙ୍ଗରେ ଜଗନ୍ନାଥ ସାହୁ ମଧ୍ୟ ଆସିଥିଲେ । ପିପିଲିରେ ରାତି ହୋଇଯିବ ଏବଂ ନିମାପଡା ଯାଇ ହେବନି ଭାବି, ମୁଁ କଟକରୁ ସାକ୍ଷୀଗୋପାଳ ଚାଲିଗଲି । ସେଠାରୁ ସାତଟା ଆଠଟା ବେଳେ ଗ୍ରାମରେ ପହଁଞ୍ଚିଲି । ସେ ମଧ୍ୟ ମୋ ସାଥିରେ ଆମ ଗ୍ରାମକୁ ଯାଇଥିଲେ । ତାପର ଦିନ ଆମେ ସାକ୍ଷୀଗୋପାଳରୁ ବସ୍‌ରେ ବସି ନିମାପଡାରେ ପହଁଞ୍ଚିଲୁ । ସେହି ସମୟରେ ପୁରୀରୁ ଗୋଟିଏ ବସ୍ ନିମାପଡା ଯାଉଥିଲା । ସେହି ବସ୍‌ଟି ତାପର ଦିନ ନିମାପଡାରୁ ପୁରୀ ଫେରୁଥିଲା । ଯୋଗକୁ ବସ୍‌ଟି ସେହିଦିନ ପୁରୀରୁ ନିମାପଡା ଯାଉଥିଲା । ସେହି ବସ୍‌ରେ ମୁଁ ନିମାପଡାରେ ପହଁଞ୍ଚିଲି । ସେତେବେଳେ ଯେଉଁ ବସ୍ ପୁରୀରୁ ନିମାପଡା ଚାଲୁଥିଲା, ସେଥିରେ ମଧୁବୋଲି ଜଣେ ଲୋକ କଣ୍ଡକ୍ଟର ଥିଲେ । ସେ ଆମ ଘରେ ଆଗେ ରହି ପଢୁଥିଲେ । ସେହିପରି ଗିରିଧାରୀ ଜେନା ନାମରେ ଜଣେ ବ୍ୟବସାୟୀ ଆମ ଔଷଧ ଘର ପାଖରେ ଥିବା ଗୋଟିଏ କୋଠରୀ ଭଡା ନେଇ, ଲୁଗା ଦୋକାନ କରିଥିଲେ । ମୋତେ ନ'ପଚାରି ଆମ ଔଷଧ ଘର ଆଗରେ ଆଉ ଗୋଟିଏ ଚାଳିଆ ଗଡାଇ, ତେଜରାତି ଦୋକାନ କରିଥିଲେ । ମାତ୍ର ତାଙ୍କର ବ୍ୟବସାୟରେ ବହୁତ କ୍ଷତି ହେବାରୁ ସେ ବ୍ୟବସାୟ ଉଠାଇ ନେଇ ତାଙ୍କ ଗାଁକୁ ଚାଲିଗଲେ । ସେହି ଘରଟି ସେତେବେଳେ ଖାଲି ପଡିଥିଲା । ଏଣୁ କଣ୍ଡକ୍ଟର ଶ୍ରୀ ମଧୁଙ୍କୁ ତିନି ଟଙ୍କାରେ ଭଡା ଦେଇଦେଲି । ସେହିଦିନ ଠାରୁ ମୁଁ ଯେତେବେଳେ ନିମାପଡାରୁ ଗ୍ରାମକୁ ଯା' ଆସ କରେ, ସେ ମୋଠାରୁ ବସ୍ ଭଡା ନିଅନ୍ତି ନାହିଁ । ସେ ବସ୍ ଚାଲିବାରୁ ମୋତେ ବହୁତ ସୁବିଧା ହୋଇଥିଲା ।

- ପରୀକ୍ଷା ଫଳ ବାହାରିଲା ପରେ ପ୍ରଧାନଶିକ୍ଷକ କହିଲେ ଖରା ଛୁଟିରେ ମଧ୍ୟ କ୍ଲାସ୍ ହେବ । ତେଣୁ ତୁମେମାନେ କେହି ଘରକୁ ଯିବନାହିଁ । ମାତ୍ର ବାସନ୍ତୀ ମେସ୍ ଓ ସ୍କୁଲ୍‌ର ଛାତ୍ରାବାସ ଛୁଟିରେ ବନ୍ଦ ହୋଇଗଲା । ତେଣୁ ଶ୍ରୀ ଉଦୟନାଥ ଆଚାର୍ଯ୍ୟଙ୍କୁ କହି କମ୍ୟୁନିଷ୍ଟ ପାର୍ଟି ଅଫିସ୍‌ରେ ଅଳ୍ପଦିନ ରହିବାର ପାଇଁ ବ୍ୟବସ୍ଥା କଲି । ଉଦୟନାଥ ବାବୁ ମଧ୍ୟ ଆମ ସାଙ୍ଗରେ ରହିଲେ । ଏହିପରି ଭାବରେ ଛୁଟି ଶେଷ ପର୍ଯ୍ୟନ୍ତ, କମ୍ୟୁନିଷ୍ଟ ପାର୍ଟି ଅଫିସ୍‌ରେ ମୁଁ ରହିଲି । ସ୍କୁଲ୍ ଛାତ୍ରାବାସ ଖୋଲିଗଲା ପରେ ପରିଚାଳକ ଶ୍ରୀ ରାମନାରାୟଣ ଦାସଙ୍କୁ କହିବାରୁ ଗୋଟିଏ ସିଟ୍ ମିଳିଗଲା । ସେହି ଛାତ୍ରାବାସରେ ମୁଁ ପ୍ରବେଶିକା ପରୀକ୍ଷା ସରିବା ପର୍ଯ୍ୟନ୍ତ ରହିଲି ।

## ଯାତାୟତର ଅନୁଭୂତି

ପରୀକ୍ଷା ଫିସ୍ ଦେବା ପାଇଁ ଦରକାର ପଡିବାରୁ ବର୍ଷା ଦିନ ପରେ ମୁଁ ନିମାପଡାରୁ ଜଣଙ୍କଠାରୁ ସାଇକେଲ୍ ମାଗି ଆମ ଗ୍ରାମକୁ ପିପିଲି ବାଟେ ଆସିବା ପାଇଁ ବାହାରିଲି । ରାସ୍ତା ଖରାପ ହେତୁ ଯାଉ ଯାଉ ଗୋଟିଏ ବାଡ ନ'ଥିବା ପୋଲ ଉପରେ ପଡିବା ଅବସ୍ଥାରେ ଥିଲି । ଏଣୁ ପ୍ରାଣ ବିକଳରେ ସାଇକେଲ୍‌କୁ ଛାଡି ଦେଇ, ପୋଲ କଡରେ ଥିବା ଗୋଟିଏ ଖୁଣ୍ଟିକୁ ଦୁଇ ହାତରେ ଧରି ବର୍ତ୍ତିଗଲି । ସେତେବେଳେ ମୋ ଦେହଟି ଖୁଣ୍ଟିର ଆରପଟେ ଝୁଲୁଥିଲା । ହାତ ଛାଡିଦେଲେ ପ୍ରାୟ ୨୦ ଫୁଟ୍ ତଳେ ଯାଇପଡି ଥାଆନ୍ତି । ମୋର ଅବସ୍ଥା କଣ ହୋଇ ଥାଆନ୍ତା ଜଣା ନ'ଥିଲା । - ଏହି ସମୟରେ ଜଣେ ଲୋକ ରାସ୍ତାରେ ଯାଉଥିଲା । ସେ ଆସି ମୋତେ ସାହାଯ୍ୟ କରିବାରୁ ମୁଁ କୌଣସି ମତେ ସୁରୁଖୁରୁରେ ଉଠି ଆସିଲି । କେବଳ ହାତଟା ଟିକିଏ ଖଣ୍ଡିଆ ହେବାଛଡା ମୋର କିଛି ହୋଇ ନ'ଥିଲା । ସେଠାରେ ପନ୍ଦର କୋଡିଏ ମିନିଟ୍ ବିଶ୍ରାମ ନେଇ ପୁଣି ସାଇକେଲ୍‌ରେ ବାହାରିଲି । ପିପିଲିରେ ପହଁଞ୍ଚି ସେଠିକାର ସବ୍‌ରେଜିଷ୍ଟର ଶ୍ରୀ ମୁକୁନ୍ଦ ମହାପାତ୍ରଙ୍କ ଘରେ ସାଇକେଲ ରଖିଦେଲି । ତାଙ୍କ ଘରକୁ ମୁଁ କେତେଥର ଯାଇଛି । ସେ ମୋ ନନାଙ୍କ କଜେଇଙ୍କ ଝିଅକୁ ବିବାହ କରିଥିଲେ । ଏଣୁ ମୋର ପିଉସା ପରି ହେବେ । ପିପିଲିରୁ ବସ୍‌ରେ ବସି ସତ୍ୟବାଦୀରେ ଓହ୍ଲାଇ ସଂଧ୍ୟାବେଳେ ଗ୍ରାମରେ ପହଁଞ୍ଚିଲି । ମୁଁ ବୋଉକୁ ଏହି ଦୁର୍ଘଟଣା କଥା କହିନାହିଁ । ତାର ଦୁଇ ତିନି ଦିନ ପରେ ନିମାପଡା ଫେରିଆସିଲି । ଫେରି ଆସିଲା ପରେ ଶୁଣିଲି, ନିମାପଡା କମ୍ୟୁନିଷ୍ଟ ପାର୍ଟି ଗୋଟିଏ ସଭା ଆୟୋଜନ କରୁଛି । ସେଥିରେ ଶ୍ରୀ ଗୋକୁଳମୋହନ ରାୟ ଚୂଡାମଣି ଯୋଗଦେବାର ଅଛି । ମୁଁ ତ ଛାତ୍ର ସଂଘର ଯୁଗ୍ମସଂପାଦକ ଥିଲି । ତେଣୁ ମୋତେ ସଭାର ଆୟୋଜକମାନେ କହିଲେ "ତୁମେ ସାଇକେଲ୍‌ରେ ଯାଇ ତାଙ୍କୁ ସାଇକେଲ୍‌ରେ ବସାଇ ପିପିଲିଠାରୁ ନେଇ ଆସିବ" । - ମୁଁ ତାଙ୍କୁ ଆଗରୁ ଦେଖିଥିଲି । ତେଣୁ ମୁଁ ଚାରିଟା ବେଳକୁ ପିପିଲି ଗଲି । ମୋର ବାହାରିବାରେ ଡେରି ହୋଇଯିବାରୁ, ସେ ମହାଶୟ ପିପିଲିରୁ କେତେ ବାଟ ଚାଲି ଆସିଥିଲେ । ବାଟରେ ଚିନ୍ତା ଭାଇନାଙ୍କୁ ଦେଖିଲି । ସେ ସେଠି ମୋତେ କିଛି କହିଲେ ନାହିଁ । କିନ୍ତୁ ପରେ ବହୁତ ମୋତେ ଗାଳି ଦେଇ କହିଲେ ଯେ, ସାଇକେଲ୍ ତ ତୁ ଭଲକରି ଶିଖିନାହୁଁ । ସେଥିରେ ଦୁଇଜଣ କିପରି ଚଢିକରି ଗଲ । ମୁଁ କିଛି କହିଲିନି । ଚୁପ୍ ରହିଲି । ତାର କିଛି ଦିନ ଆଗରୁ ଚିନ୍ତା ଭାଇନା ଲକ୍ଷ୍ନୌରୁ ଶାରୀରିକ ଶିକ୍ଷା ତାଲିମ୍ ନେଇ ଆସି ନିମାପଡା ହାଇସ୍କୁଲରେ ଶାରୀରିକ ଶିକ୍ଷକ ଭାବେ ଯୋଗ ଦେଇଥିଲେ । ସେଠାରେ କେତେଦିନ ରହିବା ପରେ, ଓଡିଶା ଇଞ୍ଜିନିୟରିଂ ସ୍କୁଲର ଶାରୀରିକ ଶିକ୍ଷକଭାବେ ଯୋଗ ଦେଇଥିଲେ ।

## ଛାତ୍ରାବାସରେ ସ୍ୱାଧିନତା ପ୍ରାପ୍ତିର ଆନନ୍ଦ

- ସ୍କୁଲ ଖୋଲିବାର ଅଳ୍ପ ଦିନ ପରେ ଶୁଣାଗଲା ଭାରତ ସ୍ୱାଧୀନ ହେବ । ସତକୁ ସତ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ଭାରତ ସ୍ୱାଧୀନ ହେଲା । ଶାସନ ଚଳାଇ ବାକୁ ଏକ ମଧ୍ୟବର୍ତ୍ତୀକାଳୀନ ସରକାର ଗଢାଗଲା । ସେଥିରେ ପଣ୍ଡିତ ଜବାହାରଲାଲ ନେହେରୁ ପ୍ରଧାନ ମନ୍ତ୍ରୀ ହେଲେ । ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଘରୋଇ ମନ୍ତ୍ରୀ ହେଲେ । ତାପରେ ପରେ ଭାରତର ପ୍ରାୟ ସବୁଆଡେ ହିନ୍ଦୁ ମୁସଲମାନ୍ ହଣାମରା ଚାଲିଲା । ସବୁଠାରୁ ଅବସ୍ଥା ଖରାପ ହେଲା

ନୂଆଖାଲିରେ । ସେଠାରେ ବହୁତ ହିନ୍ଦୁଲୋକଙ୍କୁ ମୁସଲମାନ୍ ସମ୍ପ୍ରଦାୟର ଲୋକ ହତ୍ୟା କଲେ । ଏହି ଘଟଣାକଟା ବନ୍ଦ କରିବା ଲାଗି, ମହାତ୍ମାଗାନ୍ଧି ନିଜେ ନୂଆଖାଲି ଯାତ୍ରା କଲେ ଏବଂ ସେଠାରେ ଆମରଣ ଅନଶନ କଲେ । କହିଲେ "ସମସ୍ତେ ଅସ୍ତ୍ରଶସ୍ତ୍ର ଛାଡି ଶାନ୍ତ ବାତାବରଣ ନ' ଆସିବା ଯାଏ ମୁଁ ଅନଶନ ଭଙ୍ଗ କରିବି ନାହିଁ"। ତାଙ୍କ କଥାରେ ଦୁଇଗୋଷ୍ଠୀ ଅସ୍ତ୍ରଶସ୍ତ୍ର ଛାଡିଦେବାରୁ ଶାନ୍ତି ଫେରି ଆସିଲା ।

ଖରା ଛୁଟିରେ ଗ୍ରାମକୁ ଯାଇ ନ'ଥିବାରୁ ଟଙ୍କା ସରିଗଲା । ମେସ୍ ଖର୍ଚ୍ଚ ଦେବାପାଇଁ ସେହି ବର୍ଷ ବର୍ଷା ଦିନରେ ମୋତେ ଥରେ ଗ୍ରାମକୁ ଯିବା ପାଇଁ ଦରକାର ପଡିଲା । ବଳଙ୍ଗା ପର୍ଯ୍ୟନ୍ତ ଆସିବା ପାଇଁ ଜଣେ ସାଥୀ ମିଳିଗଲା । ତେଣୁ ବଳଙ୍ଗା ବାଟେ ଗ୍ରାମକୁ ଯିବା ପାଇଁ ମନସ୍ଥ କଲି । ଦିନେ ସକାଳୁ ଦୁଇ ଜଣ ଯାକ ସାଙ୍ଗ ହୋଇ ବାହାରିଲୁ । ପ୍ରାୟ ଗୋଟାଏ ବେଳେ ବଳଙ୍ଗାରେ ପହଁଞ୍ଚିଲୁ । ମୋର ସାଥୀ ଜଣକ ବଳଙ୍ଗା ଠାରେ ରହି ଗଲା । ମୁଁ ବଳଙ୍ଗାଠାରୁ ଜଗନ୍ନାଥ ସଡକ ପର୍ଯ୍ୟନ୍ତ ଚାଲିଚାଲି ଯାଇ, ବସ ଧରି ସାକ୍ଷୀଗୋପାଳ ପର୍ଯ୍ୟନ୍ତ ଯାଇ ଥାଆନ୍ତି । ସାକ୍ଷୀଗୋପାଳ ଠାରୁ ପୁଣି ଚାଲିଚାଲି ଗ୍ରାମକୁ ଯାଇ ଥାଆନ୍ତି । ସେହି ବାଟେ ମୋତେ ପ୍ରାୟ ୧୫ କିଲୋ ମିଟର ରାସ୍ତା ପଡିଥାନ୍ତା । ନଈ ବନ୍ଧରେ ଚାଲିଚାଲି ଆସିଲେ ମାତ୍ର ୮ କିଲୋମିଟର ରାସ୍ତା ପଡିବ । ବଳଙ୍ଗାଠାରେ ବସ୍ ନ'ମିଳିଲେ ମୋତେ ବଡ ହଇରାଣ ହେବାକୁ ପଡିଥାନ୍ତା । ତେଣୁ ବଳଙ୍ଗା ଠାରୁ ଗବକୁଣ୍ଡ ଆସି ନଈ ପାରି ହୋଇ ଗ୍ରାମରେ ପହଁଞ୍ଚିବାକୁ ପଡିଥାନ୍ତା । ଉଭୟ ପଟେ ନଈ ପାରି ହେବାକୁ ଥାଏ । ତେଣୁ ଗବକୁଣ୍ଡ ବାଟେ ଯିବାକୁ ଠିକ କଲି । ବଳଙ୍ଗାଠାରେ ଜଳଖିଆ ଖାଇ ନଈ ବନ୍ଧରେ ଚାଲିଚାଲି ଗଲି । ନଈ ବନ୍ଧ ପାଖରେ ପାର୍ବତୀପୁର ଗ୍ରାମ ପାଖରେ କୁଆଡୁ ମେଘ ମାଡି ଆସିଲା । ସେହି ଗ୍ରାମରେ ଘଣ୍ଟାଏ ପର୍ଯ୍ୟନ୍ତ ଅପେକ୍ଷା କରି ବର୍ଷା କମିବାରୁ ନଈବନ୍ଧରେ ଗଲି । ନଈବନ୍ଧ ଭାରି ଖସଡା ହୋଇଥାଏ । ଗୋଡ ଚିପି ଚିପି ଗବକୁଣ୍ଡ ଯାଏ ଯାଇ ସେଠାରୁ ଭାର୍ଗବୀ ନଈ ପାରି ହୋଇ ଗ୍ରାମରେ ପ୍ରାୟ ୭ ଟା ବେଳେ ପହଞ୍ଚିଲି । ଦୁଇଦିନ ଗ୍ରାମରେ ରହି ପୁଣି ନିମାପଡା ଫେରିଲି ।

## ସ୍କୁଲ ପଢା ବେଳେ ଭାରତ ସ୍ୱାଧୀନ

ଅଗଷ୍ଟ ୧୪ ତାରିଖ ରାତି ୧୨ଟା ପରେ ନିମାପଡାରେ ଆମେ ସବୁ ସ୍କୁଲ୍‌ପିଲା "ମହାତ୍ମା ଗାନ୍ଧୀଜୀ ଜୟ, ସର୍ଦ୍ଦାରବଲ୍ଲଭଭାଇ ପଟେଲଜୀ ଜୟ, ଜବାହାରଲାଲନେହେରୁଜୀ ଜୟ ଏହିସବୁ ସ୍ଲୋଗାନ ଦେଇ ନିମାପଡା ପରିକ୍ରମା କଲୁ । ଏମିତି ଭାବରେ ରାତି ପାହିଗଲା । ସକାଳ ହେଲାରୁ ସମସ୍ତଙ୍କ ମନରେ ଆନନ୍ଦ ଖେଳିଗଲା । ଚାର ଦିନେ ଦୁଇଦିନ ପରେ ଆମେମାନେ ସବୁ ପଢାପଢିରେ ଲାଗି ପଡିଲୁ । ସେତିକି ବେଳେ ନିମାପଡା ସ୍କୁଲ୍‌ର ମୁସଲମାନ୍ ପିଲାମାନେ କହୁଥାଆନ୍ତି "ଲଡକେ ଲେଙ୍ଗେ ପାକିସ୍ଥାନ ଓ ବଡକେ ଲେଙ୍ଗେ ହିନ୍ଦୁସ୍ଥାନ" ।

ଏକାଦଶ ଶ୍ରେଣୀ ଆରମ୍ଭରୁ ପଢାପଢିରେ ବ୍ୟସ୍ତ ରହି ଆଉ କିଛି ଘଟଣା ମୋର ଭଲଭାବରେ ମନେ ନାହିଁ । ଟେଷ୍ଟ ପରୀକ୍ଷାର ଦୁଇ ମାସ ଆଗରୁ ଜଣେ ସଂସ୍କୃତଶିକ୍ଷକ ଶ୍ରୀ ନୀଳକଣ୍ଠ ମିଶ୍ରଙ୍କ ପାଖକୁ ପଢିବାକୁ ଗଲି । ତାଙ୍କ ଘର ପଦ୍ମତାସାହିରେ ଅବସ୍ଥିତ । ମୋ ଶ୍ରେଣୀର ଛାତ୍ର ପ୍ରଭାସଚନ୍ଦ୍ର ମିଶ୍ର ମୋ ସାଙ୍ଗରେ ମଧ୍ୟ ସେହିଠାକୁ ସଂସ୍କୃତ ପଢିବାକୁ ଯାଉଥିଲା । ଦୁଇମାସ

ଖଣ୍ଡେ ପଢ଼ିଲା ପରେ, ମୋର ସଂସ୍କୃତଜ୍ଞାନ ବହୁ ପରିମାଣରେ ବଢ଼ିଗଲା । ଟେଷ୍ଟ ପରୀକ୍ଷାରେ ଭଲ ଭାବରେ ପ୍ରବେଶିକା(Matriculation) ପରୀକ୍ଷା ଦେବାପାଇଁ ଉପଯୁକ୍ତ ବିବେଚିତ ହେଲି । ତାପରେ ଗ୍ରାମକୁ ଯାଇ ଟଙ୍କା ସଂଗ୍ରହ କରି ପରୀକ୍ଷା ପାଇଁ ଫର୍ମ ପୂରଣ କଲି ।

- ଦଶମ ଓ ଏକାଦଶ ଶ୍ରେଣୀରେ ପଢ଼ିବା ସମୟରେ ମୁଁ ବହୁ ପରିମାଣରେ ଅଭାବ ଅନୁଭବ କରିଥିଲି । ଏପରିକି ସଂଧ୍ୟାବେଳେ ଜଳଖିଆ ଖାଇବାକୁ ମୋ ପାଖରେ ପଇସା ନ'ଥାଏ । ତେଣୁ ଚୂଡା ଧୋଇ, ଚିନି ଓ ଲେମ୍ବୁ ଟିକିଏ ପକାଇ ଖାଏ କିମ୍ବା ଚୂଡା ଓ ଗୁଡକୁ ଚୋବାଇ ଚୋବାଇ ଖାଏ । ମୁଁ ଚଳିବା ପାଇଁ ମାସକୁ ଦାମବାବୁଙ୍କ ଠାରୁ ସାତଟଙ୍କା, କୁଳମଣି ଦାସଙ୍କ ଠାରୁ ଔଷଧ ଘର ଭଡା ବାବଦରେ ତିନିଟଙ୍କା, ମଧୁ ନେଇଥିବା ଭଡାଘରୁ ତିନିଟଙ୍କା ପାଉଥିଲି । ଔଷଧ ଘର ପଛରେ ଥିବା ଗୋଟିଏ ଗୁଡିଆ ଦୋକାନୀ ଠାରୁ ଦୁଇଟଙ୍କା ପାଉଥିଲି । ଏମିତି ସର୍ବମୋଟ ମୋତେ ୧୫ ଟଙ୍କା ମିଳି ଯାଉଥିଲା । ସେହି ୧୫ ଟଙ୍କାରେ ଆଦୌ ଚଳି ହେଉ ନ'ଥିଲା । କାରଣ ମେସ୍ ଖର୍ଚ୍ଚ ମାସକୁ ବାର ଟଙ୍କା । ମୁଁ ସେ ପର୍ଯ୍ୟନ୍ତ କାହା ପାଖରେ ନାଁ କାହା ପାଖରେ ରହୁଥାଏ । ତେଣୁ ଅଭାବଟା ଉପଲବ୍ଧି କରି ପାରୁ ନ'ଥିଲି ।

- ୧୯୪୮ ମସିହା ଜାନୁଆରୀ ମାସରେ ଶୁଣିବାକୁ ପାଇଲୁ ଯେ, ଆମ ସ୍କୁଲ୍‌କୁ ଗୋଟିଏ ରେଡିଓ କିଣା ହୋଇ ଆସିବ । ନିର୍ଦ୍ଦିଷ୍ଟ ଦିନର ଆଗରୁ ସବୁଆଡେ ପ୍ରଚାର ହୋଇଗଲା ଯେ ନିମାପଡା ସ୍କୁଲ୍‌କୁ ଗୋଟିଏ ରେଡିଓ ଆସୁଛି ବୋଲି । ପ୍ରଧାନଶିକ୍ଷକ ଶ୍ରୀ ପଦ୍ମନାଭ ମହାପାତ୍ର ନିମାପଡାବାସୀଙ୍କୁ ଅନୁରୋଧ କଲେ, ସ୍କୁଲ୍‌କୁ ଆସି ସଂଧ୍ୟାବେଳେ ସମସ୍ତେ ରେଡିଓ ଶୁଣିବେ । ରେଡିଓଟି ବଜାଇବା ପାଇଁ କଲିକତାରୁ ଜଣେ ମେକାନିକ୍ ମଧ୍ୟ ଆସିଥିଲା । ସେତେବେଳେ ନିମାପଡାରେ ଇଲେକ୍‌ଟ୍ରିକ୍ ଲାଇନ୍ ନ'ଥିଲା । ତେଣୁ ଗୋଟିଏ ବାର ଭୋଲଟ୍ ବ୍ୟାଟେରୀ ସାହାଯ୍ୟରେ ରେଡିଓଟି ସମସ୍ତଙ୍କ ସମ୍ମୁଖରେ ବଜାଗଲା । ସେତେବେଳେ ଓଡିଆ ପରିବର୍ତ୍ତେ ସବୁଗୁଡିକ କାର୍ଯ୍ୟକ୍ରମ, ବଙ୍ଗଳାରେ ପ୍ରଚାର ହେଉଥିଲା । -

- ତାର ଅଳ୍ପ ଦିନ ପରେ ଜାନୁଆରୀ ତିରିଶ ତାରିଖ ରାତିରେ ଆମେ ଜାଣିବାକୁ ପାଇଲୁ ମହାତ୍ମାଗାନ୍ଧୀଙ୍କୁ କିଏ ହତ୍ୟା କରିଛି । ଆମେ ସେଥିରୁ କେତେଜଣ ପିଲା ସ୍କୁଲ୍ ଅଫିସ୍‌କୁ ଗଲୁ । ସେଠାରେ ପ୍ରଧାନଶିକ୍ଷକ ଓ ଅନ୍ୟମାନେ ରେଡିଓ ଶୁଣୁଥିଲେ । ଗୋଟିଏ ନୂଆ କଥା ମୁଁ ରେଡିଓରୁ ଶୁଣିଲି ଯେ ମହାତ୍ମାଗାନ୍ଧୀଙ୍କୁ ଜଣେ ହିନ୍ଦୁ ମାରି ଦେଇଛି । କାଳେ ହିନ୍ଦୁ ମୁସଲମାନ୍ ଭିତରେ ଗଣ୍ଡଗୋଳ ଲାଗିଯିବ, ସେଥିପାଇଁ ଏହା ପ୍ରଚାର କରାଯାଉଥିଲା ବୋଲି ସମସ୍ତେ କହିଲେ । ପରେ ଜଣା ପଡିଲା ଯେ ନାଥୁରାମ ବିନାୟକ ଗଡସେ ନାମକ ଜଣେ ହିନ୍ଦୁ ବ୍ୟକ୍ତି ମହାତ୍ମାଗାନ୍ଧୀଙ୍କୁ ଗୁଳି କରି ମାରିଛି । ମହାତ୍ମାଗାନ୍ଧୀଙ୍କ ମରିବାର ସବୁ ଖବର ଆମେ ରେଡିଓରୁ ଜାଣିପାରିଲୁ । ସେଥିପାଇଁ ଆମର ମନରେ ଦୃଢ଼ ଧାରଣା ହେଲା ଯେ ରେଡିଓ ଆମର କେତେ ଦରକାରୀ --

## ନାହାକଙ୍କ ଭବିଷ୍ୟତ ବାଣୀ

ଦିନେ ଆମ ହାଇସ୍କୁଲ୍ ଖେଳପଡିଆ ପାଖରେ ମୁଁ ଖେଳ ଦେଖୁଥିଲି । ଜଣେ ଲୋକ ମୋତେ ବଟୁ ବୋଲି ଡାକିଲେ । ମୁଁ ତାଙ୍କ ପାଖକୁ ଯିବାରୁ, ସେ ମୋତେ ବୋଉଙ୍କ କଥା ଓ ଭଉଣୀମାନଙ୍କ କଥା ପଚାରିଲେ । ମୁଁ କହିଲି, ମୁଁ ତ ଆପଣଙ୍କୁ ଚିହ୍ନିପାରୁ ନାହିଁ । ସେ କହିଲେ

"ତୁମ ବ୍ରତଘର ପୂର୍ବରୁ ମୁଁ ତୁମ ନନାଙ୍କୁ ବ୍ରତଘରଟା ଶୀଘ୍ର କରିଦେବା ପାଇଁ କହିଥିଲି । ସେହି ଅନୁସାରେ ନିର୍ଦ୍ଦିଷ୍ଟ ଦିନ ବ୍ରତଘର ସେ କରିଥିଲେ । ତାପରେ ସେ କହିଲେ, 'ମୋ ନାମ ହେଉଛି ଶ୍ରୀ ଶ୍ରୀନିବାସ ନାୟକ । ମୁଁ ତୁମର ଏବଂ ତୁମ ଭଉଣୀମାନଙ୍କର ଜାତକ ତିଆରି କରିଥିଲି" । ଏହିସବୁ ବିଷୟ କହିଲା ପରେ ମୁଁ ତାଙ୍କୁ ଚିହ୍ନି ପାରିଲି । ମୁଁ କହିଲି, ମୋ ଜାତକ ଟିକିଏ ଦେଖିଲେ, ମାଟ୍ରିକ୍ ପରୀକ୍ଷାରେ ପାସ୍ କରିବି କି ନାହିଁ । ସେ କହିଲେ, ଆର ବୁଧବାର ଦିନ ମୁଁ ହାଟକୁ ଆସିଥିବା ବେଳେ ତୁମ ଜାତକ ଦେଖି ସବୁ ଲେଖିକରି ଆଣିବି । ମୁଁ ପଚାରିଲି, ତମେ କଣ ମୋ ଜାତକ ରଖିଛ । ସେ କହିଲେ, ମୁଁ ତୁମ ଘରର ସମସ୍ତଙ୍କ ଜାତକ ରଖିଛି । ଆସନ୍ତା ବୁଧବାର ଦିନ ମୁଁ ତାଙ୍କୁ ସ୍କୁଲ୍ ପଡିଆ ପାଖରେ ଅପେକ୍ଷା କରିଥାଏ । ସେ ମୋତେ କହିଲେ, ତୁମେ ବହୁତ ଉପରକୁ ଉଠିବ । କିନ୍ତୁ ସବୁଥିରେ ବାଧାବିଘ୍ନ ଘଟିବ । ତାପରେ କହିଲେ "ତୁମେ ଯାହା ଇଚ୍ଛା କରିବ, ତାହା କରି ପାରିବ । କିନ୍ତୁ ବହୁତ ପରିଶ୍ରମ କରିବାକୁ ପଡିବ" । ମୁଁ ପୁଣି ପଚାରିଲି "ମାଟ୍ରିକ୍ ପରୀକ୍ଷାରେ ପାସ୍ ହୋଇଯିବଟି" । ସେ ହଁ କହିଲେ । ତାପରେ ଟିକିଏ ରହି କହିଲେ "ତମର ତେଇଶି ବର୍ଷରେ ଗୋଟିଏ ମାର୍କ ଦଶା ଅଛି । ଯଦି ତମର ବିଭାଘର ହୋଇ ଯାଇଥିବ, ତାହାହେଲେ କିଛି କ୍ଷତି ହେବ ନାହିଁ" । ମୁଁ ଆତ୍ମଜୀବନୀ ଲେଖିଲା ବେଳେ ମୋର ସେକଥା ମନେ ପଡିଲା ଯେ, ତେଇଶି ବର୍ଷରେ ମୋର ଦେହ ବହୁତ ଖରାପ ହୋଇଥିଲା । ସେତେବେଳକୁ ବିଭାଘର ମଧ୍ୟ ହୋଇଯାଇ ଥିଲା ।

କେତେ ଦିନ ପରେ ଆମେ ଖବର ପାଇଲୁ ନିମାପଡା ସ୍କୁଲ୍‌ର ମାଟ୍ରିକ୍ ପରୀକ୍ଷା ପାଇଁ ପୁରୀ ଜିଲ୍ଲା ସ୍କୁଲ୍ ଓ ପୁରୀ ବାଳିକା ସ୍କୁଲ୍ ସେଣ୍ଟର ହୋଇଛି । ତେଣୁ ଆମର ପୁରୀ ଯିବା ପାଇଁ ସମୟ ଓ ଦିନ ଧାର୍ଯ୍ୟ ହେଲା । ପରୀକ୍ଷାର୍ଥୀଙ୍କ ସାଙ୍ଗରେ ସ୍କୁଲ୍ ଶିକ୍ଷକ ଶ୍ରୀ ରାମନାରାୟଣ ଦାସ ଯିବା ପାଇଁ ଠିକ୍ ହେଲା । ପରୀକ୍ଷାର ଦୁଇଦିନ ପୂର୍ବରୁ ଆମେ ଶଗଡରେ ପିପିଲି ପର୍ଯ୍ୟନ୍ତ ଯାଇ ପିପିଲି ଠାରୁ ବସ୍‌ରେ ପୁରୀ ଗଲୁ । ପୁରୀରେ ବୃନ୍ଦାବନ ବାବୁ, ମୁଁ, ସଚ୍ଚିଦାନନ୍ଦ ଦାସ ବୋଲି ଜଣେ ଛାତ୍ର ବୃନ୍ଦାବନ ବାବୁଙ୍କ ମାମୁଁ ଶ୍ରୀ ଭଗବତୀଚରଣ ପାଣିଗ୍ରାହୀଙ୍କ ଘରେ ଯାଇ ରହିଲୁ । ଅନ୍ୟ ପିଲାମାନେ ମହାବୀର ଧର୍ମଶାଳାରେ ରହିଲେ । ବୃନ୍ଦାବନବାବୁଙ୍କ ମାମୁଁଘର ପୁରୀ ସହରର ରାମଚଣ୍ଡୀ ସାହିରେ । ଆମ ସ୍କୁଲ୍ ପିଲାଙ୍କ ପରୀକ୍ଷାକେନ୍ଦ୍ର ପୁରୀ ବାଳିକାଙ୍କ ସ୍କୁଲରେ ହୋଇଥିଲା । ପୁରୀ ବାଳିକାଙ୍କ ସ୍କୁଲ୍‌ଟା ରାମଚଣ୍ଡୀ ସାହି ନିକଟରେ । ତେଣୁ ପରୀକ୍ଷା ଦେବା ପାଇଁ ଆମକୁ ଯିବାକୁ ବହୁତ ସୁବିଧା ହେଉଥାଏ ।

ପରୀକ୍ଷା ପୂର୍ବଦିନ ପୁରୀରେ ପ୍ରଚାର ହୋଇଗଲା ପ୍ରବେଶିକା ପରୀକ୍ଷା ପ୍ରଶ୍ନ ଆଗରୁ ପ୍ରଚାର ହୋଇ ଯାଇଛି । ଇଂରାଜୀ ପରୀକ୍ଷା ପ୍ରଶ୍ନରେ ଯେଉଁ ଇଂରାଜୀ ଅନୁବାଦ କରିବାକୁ ପଡିଥିଲା, ସେଇଟା ମଧ୍ୟ ପ୍ରଚାର ହୋଇଥିଲା । ସେଥିରୁ ଆମେ ଓଡିଆ ଲେଖାଟି ଶ୍ରୀ ବୃନ୍ଦାବନ ସାର୍‌ଙ୍କୁ କହି ଇଂରାଜୀ କରିଦେଲୁ ଏବଂ ଇଂରାଜୀଟି ମୁଖସ୍ଥ କରିଦେଲୁ । ସତକୁ ସତ ଅନୁବାଦର ଓଡିଆ ଲେଖା ଯାହା, ତାହାର ଇଂରାଜୀ ଅନୁବାଦ ଆମେ ଘୋଷିଥିଲୁ । ଓଡିଆ ଲେଖାର ପ୍ରଥମ ଧାଡିଟି ମୋର ଏବେ ବି ମନେ ଅଛି । ତାହା ହେଲା: 'ଯେଉଁ ବ୍ୟକ୍ତି ସାହାସର ସହିତ ବିପଦର ସମ୍ମୁଖୀନ ହୁଏ, ସେହି ପ୍ରକୃତ ବୀର ଅଟେ ।' କିନ୍ତୁ ଆମକୁ ଆଉଥରେ ପରୀକ୍ଷା ଦେବାକୁ ପଡିନ'ଥିଲା । ତାପରେ ଆଉ ଯେତେ ପରୀକ୍ଷା ଦେଇଥିଲି ଏପରି ଘଟଣା ଘଟି ନ'ଥିଲା ପରୀକ୍ଷାପରେ ସମସ୍ତେ ନିମାପଡା ଫେରି ଆସିଥିଲେ, ମୁଁ କିନ୍ତୁ ଗ୍ରାମକୁ ଗଲି ।

ନିମାପଡା ହାଇସ୍କୁଲ୍‌ରେ ଦଶମ ଓ ଏକାଦଶ ଶ୍ରେଣୀରେ ପଢିଲାବେଳେ କେତେଜଣ ପିଲାଙ୍କ ସହିତ ମୋର ଭଲ ପରିଚିତ ହୋଇଥିଲା । ସେମାନଙ୍କ ମଧ୍ୟରୁ ଶ୍ରୀ ନଳିନୀ କାନ୍ତ ସ୍ୱାଇଁ ଅନ୍ୟତମ, ତାଙ୍କ ଘର ଅନ୍ତରଙ୍ଗରେ । ତାଙ୍କ ସହିତ ମୋର ଭଲ ପରିଚୟ ଥିଲା । ମୁଁ ରେଭେନ୍ସା କଲେଜରେ ଚାକିରି କରିବା ସମୟରେ, ସେ ଇଞ୍ଜିନିୟରିଂ ସ୍କୁଲ୍‌ରେ ଗଣିତ ଅଧ୍ୟାପକ ଥିଲେ । ପରେ ଆ.ଏ.ଏସ୍ ପାଇଥିଲେ । କଟକ ଛାଡିବା ପର୍ଯ୍ୟନ୍ତ ତାଙ୍କ ସଙ୍ଗେ ମୋର ଅନେକ ଥର ଦେଖା ସାକ୍ଷାତ ହୋଇଛି । ଆଉ ଜଣେ ହେଲେ ତ୍ରିଲୋଚନ ରଥ । ତାଙ୍କ ଘର ନିମାପଡା ପ୍ରହରାଜ ସାହିରେ । ତାଙ୍କ ବଡ ଭାଇ କଟକ ଟାଙ୍ଗି ବିଦ୍ୟାପୀଠରେ ପ୍ରଧାନଶିକ୍ଷକ ରୂପେ କାମ କରୁଥିଲେ । ତାଙ୍କ ବଡ ଭାଇ ଶୁଦର୍ଶନ ରଥ ମଧ୍ୟ ଆମ ଉପର ଶ୍ରେଣୀରେ ପଢୁଥିଲେ । ସେ ପରେ ରାଉରକେଲା ଇଞ୍ଜିନିୟରିଂ କଲେଜରେ ଇଲେକ୍ଟ୍ରୋନିକ୍ସ ବିଭାଗର ପ୍ରଫେସର ଭାବରେ କାମ କଲେ । ସେତିକିବେଳେ ମୋର ତାଙ୍କ ସାଙ୍ଗରେ ଦେଖା ସାକ୍ଷାତ ।

ବାମନଚରଣ ରାୟ ମୋ ଉପର କ୍ଲାସ୍‌ରେ ପଢୁଥିଲେ । ସେ ନିମାପଡାରେ ଆମ ଘର ପାଖେ ରହୁଥିବାରୁ ମୋର ତାଙ୍କ ସାଙ୍ଗରେ ଭଲ ପଡୁଥିଲା । ଚାକିରିରେ ଆମେ ପଦାର୍ଥବିଜ୍ଞାନର ଅଧ୍ୟାପକ ଭାବରେ ଦୁହେଁ ଏକା ସମୟରେ ଯୋଗ ଦେଇଥିଲୁ । ସେ ପୁରୀର ଏସ.ସି.ଏସ୍ କଲେଜରେ ଆଉ ମୁଁ ରେଭେନ୍ସା କଲେଜରେ ଯୋଗ ଦେଇଥିଲି । କେତେବର୍ଷ ପରେ ସେ ରେଭେନ୍ସା କଲେଜକୁ ବଦଳି ହୋଇ ଆସିଥିଲେ । ଗୋଟିଏ କୋଠରୀରେ ଆମେଦୁହେଁ ସବୁଦିନ ବସି ପଢାପଢି କରୁଥିଲୁ । ସେ ଗଣିତରେ ଏମ୍.ଏସ୍‌ସି ପାସ୍ ମଧ୍ୟ କରିଥିଲେ । ନେତ୍ରାନନ୍ଦ ପ୍ରହରାଜ ବୋଲି ମୋ ସାଙ୍ଗରେ ଆଉଜଣେ ପଢୁଥିଲେ, ସେ ଏ.ଜି ଅଫିସ୍‌ରେ କାମ କରୁଥିଲେ । ଏ.ଜି ଅଫିସ୍‌ରେ ମୋର କିଛି କାମ ପଡିଲେ ତାଙ୍କ ସାହାଯ୍ୟରେ କରାଇ ନେଉଥିଲି । ଭାସ୍କରଚନ୍ଦ୍ର ଦାସ ବୋଲି ଆଉ ଜଣେ ଛାତ୍ର କେମେଷ୍ଟ୍ରିରେ ଏମ.ଏସ୍.ସି ପାସ୍ କରି ଉତ୍କଳ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ହୋଇଥିଲେ । ଏବେ ମଧ୍ୟ ମୋର ତାଙ୍କ ସହିତ ବେଳେବେଳେ ଦେଖାହୁଏ ।

ଜୟକୃଷ୍ଣ ମହାନ୍ତି, ନବକିଶୋର ପ୍ରଧାନ ଓ ହରିହର ମିଶ୍ର ନାମକ ତିନି ଜଣ ଛାତ୍ର ଏକା କୋଠରୀରେ ମିଶି କରି ରହୁଥିଲୁ । ଜୟକୃଷ୍ଣ ମହାନ୍ତିଙ୍କ ସଙ୍ଗେ ମୋର ଦେଖା ହୋଇନାହିଁ । ନବ କିଶୋର ପ୍ରଧାନ ଭୁବନେଶ୍ୱରରେ ଚାକିରୀ କରୁଥିଲେ । ତାଙ୍କ ସାଙ୍ଗରେ ଥରେ ଦୁଇଥର ଦେଖା ହୋଇଛି । ମୁଁ ଅବସର ନେଇ ଭୁବନେଶ୍ୱରରେ ରହି ଆସିଛୁ । ଥରେ ହରିହର ମିଶ୍ର ଆମ ଘର ସାମ୍ନାରେ ଯାଉଥିଲେ । ମୋ ଦୁଆର ମୁହଁରେ ଥିବା ନାମ ଫଳକ ତାଙ୍କ ନଜରରେ ପଡିଲା । ତେଣୁ ଆମ ଘରକୁ ଆସି କଥାବାର୍ତ୍ତା ହୋଇ ଗଲେ । ତାପରେ ଆଉ ତାଙ୍କ ସାଙ୍ଗେ ମୋର ଦେଖା ହୋଇନାହିଁ । କଥାବାର୍ତ୍ତାରୁ ଜାଣିଲି ହରିହର ମିଶ୍ର ସ୍କୁଲ୍‌ରେ ଶିକ୍ଷକ ଭାବରେ ଚାକିରି କରି, ଅବସର ନେଇ ଭୁବନେଶ୍ୱର ଆସିଥିଲେ । ଆଉ ଜଣେ ଶ୍ରୀ ଗୁରୁଦାସ ମିଶ୍ରଙ୍କ ସାଙ୍ଗରେ ମୋର ମଧ୍ୟ ଭଲ ପରିଚୟ ଥିଲା । ତାଙ୍କ ଘର ପାଟପୁରରେ । ନିମାପଡା ଛାଡିବା ପରେ ମୁଁ ତାଙ୍କୁ ଆଉ କେବେ ଦେଖିନାହିଁ ।

## ପ୍ରାଧ୍ୟାପକ, ରେଭେନ୍ସା କଲେଜ

ଶ୍ରୀ ଜନାର୍ଦ୍ଦନ ବସ୍ତିଆ ନାମକ ଏକ ଛାତ୍ର ମୋ ସାଙ୍ଗରେ ପଢୁଥିଲେ । ତାଙ୍କ ବାପା ବୃନ୍ଦନାଥ ବସ୍ତିଆ, ନିମାପଡା ପୋଷ୍ଟ ଅଫିସ୍‌ରେ ପୋଷ୍ଟ ପିଅନ ଭାବେ କାମ କରୁଥିଲେ । ସେ ସବୁବେଳେ ମୋ ନନାଙ୍କ ପାଖକୁ ଆସନ୍ତି । ଜନାର୍ଦ୍ଦନ ବସ୍ତିଆ ସେତେବେଳେ ଭଲ ଫୁଟବଲ୍ ଖେଳୁଥିଲେ । ତାପରେ ସେ ବି.ଏସ୍‌ସି ପାସ୍ କରି, କୌଣସି ସ୍କୁଲ୍‌ରେ ଚାକିରି କରିଥିଲେ । ତାଙ୍କ ସାଙ୍ଗରେ ମୋର ଆଉ ଦେଖା ହୋଇନାହିଁ । କିନ୍ତୁ ଥରେ ହାଇସ୍କୁଲ୍ ପରୀକ୍ଷାର ମୁଖ୍ୟ ପରୀକ୍ଷକ ହିସାବରେ ମୁଁ ବିଜ୍ଞାନଖାତା ଦେଖୁଥିଲି, ସେ ମୋର ସହକାରୀ ପରୀକ୍ଷକ ହିସାବରେ ପିପିଲି ହାଇସ୍କୁଲ୍‌ରେ କାମ କରୁଥିବାର ମୁଁ ଜାଣି ପାରିଲି । ତାଙ୍କୁ ମୋର ପରିଚୟ ଦେଲି । ସେ ବହୁତ ଖୁସିରେ ମୋ ପାଖକୁ ଗୋଟିଏ ଚିଠି ଲେଖିଥିଲେ ।

## ଏକୁଟିଆ ବାଲେଶ୍ୱର ଏବଂ ଟାଟା ନଗର ଭ୍ରମଣ

ପରୀକ୍ଷା ପରେ ଗ୍ରାମ୍‌ରେ କେତେଦିନ ରହିବା ପରେ ମୁଁ ବୋଉଙ୍କୁ କହିଲି ମୁଁ ବଡ ନାନୀ ଓ ସାନ ନାନୀ ଘରକୁ ବୁଲିବାକୁ ଯିବି । ବୋଉ ଏକୁଟିଆ ଯିବା ପାଇଁ ରାଜି ହେଉ ନ'ଥିଲା । ମୋର ପ୍ରବଳ ଇଛା ଦେଖି ସେ ରାଜି ହେଲା । ଗୋଟିଏ ଟ୍ରଙ୍କରେ ଲୁଗାପଟା ଟଳେ ସାଇତି ରଖିଥିବା ଟଙ୍କା କାଢ଼ିକରି ମୋତେ ଦେଲା । ମୁଁ ଖୁସିରେ ସଂଧ୍ୟା ବେଳେ ମାମୁଁ ଘରକୁ ଗଲି । ବୋଉ ମଧ୍ୟ ମୋ ସାଙ୍ଗରେ ସତ୍ୟବାଦୀ ଗଲେ । ସତ୍ୟବାଦୀରେ ତା ପରଦିନ ସକାଳୁ ବଡି ଭୋରରୁ ଆସାନସୋଲ ଗାଡିରେ ଟିକେଟ୍ କାଟି ମାମୁଁ ମୋତେ ବସାଇ ଦେଲେ । ମୁଁ ଦିନ ବାରଟା ବେଳେ ବାଲେଶ୍ୱରରେ ଯାଇ ପହଁଞ୍ଚିଲି । ବାଲେଶ୍ୱରରୁ ହାତ ଟଣା ରିକ୍ସାରେ ବସି ବଡ ଭିଣୋଇଙ୍କ ଅଫିସ୍‌କୁ ଗଲି । କିନ୍ତୁ ଅଫିସ୍‌ରେ ପହଁଞ୍ଚିଲା ବେଳକୁ ସେଦିନ ରବିବାର ହେତୁ ଅଫିସ୍ ଛୁଟି ଥିଲା । ମୁଁ ସେକଥା ଚିନ୍ତା କରି ନ'ଥିଲି । ତାଙ୍କ ଘର ଠିକଣା ମଧ୍ୟ ମୁଁ ଜାଣି ନ'ଥିଲି । ମୋ ମୁଣ୍ଡ ଗୋଳମାଳ ହୋଇଗଲା । ସୌଭାଗ୍ୟ ବଶତଃ ତାଙ୍କ ଅଫିସ୍‌ର ଗୋଟିଏ ପିଅନ ସେଠାରେ ଦେଖାହେଲା । ସେ ପିଅନ୍‌ଟି ମୋତେ ଓ ରିକ୍ସା ବାଲାକୁ ବାଟ ବତାଇ ଦେଲା ।

ତିନି ଚାରିଦିନ ରହିଲା ପରେ ସାନ ଭିଣୋଇଙ୍କ ଘରକୁ ଟାଟା ନଗର ଯିବାପାଇଁ, ବଡ ଭିଣୋଇଙ୍କୁ କହିଲି । ଦିନେ ସେ ଯିବାର ବନ୍ଦୋବସ୍ତ କରିଦେଲେ । ଦିନେ ନଅଟା ବେଳେ ଗୋଟିଏ ଗାଡିରେ ଯାଇ ଖଡଗପୁରରେ ଓହ୍ଲାଇଲି । ଏକ ଘଣ୍ଟା ପରେ ଟାଟା ନଗର ଯିବା ପାଇଁ କଲିକତାରୁ ଆସି ଟ୍ରେନ୍ ପହଁଞ୍ଚିଲା । ଏତେ ଲୋକ ପ୍ଲାଟଫର୍ମରେ ଜମା ହୋଇଥିବା ଦେଖି ମୁଁ ଡରିଗଲି । ଗୋଟିଏ କୁଲିକୁ ପଚାଶ ପଇସା ଦେଇ, ମୋତେ ଗାଡିରେ ଚଢାଇ ଦେବାପାଇଁ କହିଲି । ଗାଡି ଆସିଲା ପରେ ଗାଡିରୁ ଏତେ ଲୋକ ଓହ୍ଲାଇଲେ ଯେ ଗାଡି ପ୍ରାୟ ଖାଲି ହୋଇଗଲା । ମୁଁ ସୁବିଧାରେ ଯାଇ ଗାଡିରେ ବସିଲି । ପ୍ରାୟ ପାଞ୍ଚଟା ବେଳକୁ ଟାଟା ନଗର ଷ୍ଟେସନରେ ପହଞ୍ଚିଲି । ସାନ ଭିଣୋଇଙ୍କ ଘର ସେତେବେଳେ ଓଲଡ୍ ଇଷ୍ଟ ପ୍ଲାଣ୍ଟ ବସ୍ତିରେ ଥିଲା । ମୁଁ ତାଙ୍କ ଠାରୁ ଘରକୁ ଯିବାର ବାଟ ଆଗରୁ ବୁଝିଥିଲି । ସଂଧ୍ୟା ବେଳକୁ ତାଙ୍କ ଘରେ ପହଁଞ୍ଚିଲି । ରାଧାମୋହନ ବାବୁଙ୍କ ସାଙ୍ଗରେ 'ଉତ୍କଳ ସମ୍ମିଳନୀ' ଅଫିସ୍‌କୁ ବୁଲି ଗଲି । ବିଷ୍ଟୁପୁର, ସାକ୍‌ଚି ପ୍ରଭୃତି ସ୍ଥାନକୁ ମୋତେ ବୁଲାଇ ନେଲେ । 'ଉତ୍କଳ ସମ୍ମିଳନୀରେ' ଓଡିଆ ଲୋକମାନେ ମିଶି ଗୋଟିଏ ଡ୍ରାମା ଅଭ୍ୟାସ କରୁଥାନ୍ତି । ରାଧାମୋହନ ବାବୁ ସେଥିରେ ଅଭିନୟ କରୁଥାଆନ୍ତି । ସେ ମୋତେ ଡ୍ରାମା ସରିବା ପର୍ଯ୍ୟନ୍ତ ରହିବାକୁ କହିଲେ । ମୁଁ ମନା କଲି ।

ଅପ୍ରେଲ ୧୨ ତାରିଖ ୧୯୪୮ ମସିହା ଦିନ, ସେ ଜଣଙ୍କ ସାଙ୍ଗରେ ମୋତେ ରେଳଗାଡିରେ ସାକ୍ଷୀଗୋପାଳ ପଠାଇ ଦେଲେ । ତାଙ୍କ ସାଙ୍ଗରେ ଗାଡିରେ ଆସିଲା ବେଳେ ମୁଁ ଦେଖିଲି ଗାଡିଟାରେ କ୍ରମଶଃ ଭିଡ ବଢୁଛି । କଟକ ପର୍ଯ୍ୟନ୍ତ ଆସିବା ବେଳକୁ, ଗାଡିରେ ଆଉ ସୋରିଷ ପକାଇବାକୁ ଜାଗା ନ'ଥିଲା । ମୁଁ ପଚାରି ବୁଝିଲି ସେଦିନ ପଣ୍ଡିତ୍ ଜବାହାରଲାଲ ନେହେରୁ କୁଆଡେ ଓଡିଶାର ରାଜଧାନୀକୁ ଶୁଭ ଦେବା ପାଇଁ ଭୁବନେଶ୍ୱର ଆସିଥାନ୍ତି । ଭୁବନେଶ୍ୱର ଠାରେ ଗାଡି ଖାଲି ହୋଇଗଲା । ମୁଁ ସତ୍ୟବାଦୀରେ ଓହ୍ଲାଇ ମାମୁଙ୍କ ଘରକୁ ଗଲି । ତା ପରଦିନ ସକାଳୁ ଗ୍ରାମକୁ ଗଲି । ଗ୍ରାମରେ ରହିବାର ମାସେ ଦେଢ଼ମାସ ପରେ, ପରୀକ୍ଷା ଫଳ ବାହାରିଲା । ଯାହାହେଉ ମୁଁ ଦ୍ୱିତୀୟ ଶ୍ରେଣୀରେ ପାସ୍ କରିଗଲି । କିନ୍ତୁ ଇଂରାଜୀରେ ମୋର ଭଲ ନମ୍ବର ନ'ଥିଲା । ମୁଁ ପରେ ଜାଣିଲି ମୁଁ ୫୭% ନମ୍ବର ରଖି ପାସ୍ କରିଛି । ତେଣୁ ମୁଁ ନିମାପଡା ଯାଇ ମୋର ଜିନିଷ ପତ୍ର ସବୁ ବସ୍‌ରେ ନେଇ ଆସିଲି । ସେହି ଖରା ଛୁଟିରୁ ନିମାପଡା ଓ ପୁରୀ ବସ୍ ଚଳାଚଳ ନିୟମିତ ହେଲା । ମୋ ଜିନିଷ ପତ୍ର ମାମୁଁ ଘରେ ରଖିଦେଇ, ଚାଲିକରି ମୁଁ ଗ୍ରାମକୁ ଗଲି । କେତେଦିନ ପରେ ସମାଜରେ ପୁରୀ କଲେଜର ନାମଲେଖା ପାଇଁ ବିଜ୍ଞାପନ ବାହାରିଲା । ମୁଁ ଦରଖାସ୍ତ କରିବା ପାଇଁ ଦିନେ ପୁରୀ ଗଲି ।

ଖରା ଛୁଟିରେ ମୁଁ ଗାଁରେ ଥାଏ । ଗାଁରେ ଥିବାବେଳେ ବାରବଖୁରୀର ବାରିକ ସପ୍ତାହକେ ଥରେ ଆସି ମୋର ଦାଢି କାଟିଦେଇ ଯାଉଥିଲା । ତାର ନାମଟି ମୋର ମନେନାହିଁ । ଦିନେ ବୋଉ କହିଲା କଲେଜରେ ପଢିଲେ ତୋର ଦାଢି କିଏ କାଟିବ ? ତେଣୁ ତୁ ନିଜେ ଦାଢି କାଟିବା ପାଇଁ ବ୍ୟବସ୍ଥା କର । ମୁଁ ଦେଖିଥାଏ ମୋର ବଡ ଭିଣୋଇ ସବୁବେଳେ ଖୁରରେ ଦାଢି କାଟନ୍ତି । ମୁଁ ବୋଉଙ୍କ କଥା ଶୁଣି ବାରିକ ଠାରୁ ଗୋଟିଏ ଖୁର ମାଗିଆଣି ଦାଢି କାଟିବାକୁ ଚେଷ୍ଟାକଲି । କିନ୍ତୁ ଦାଢି କାଟିବା ବେଳେ କାଟି ନ'ଜାଣିବାରୁ ଠାଏ ଠାଏ କଟିଗଲା । ତେଣୁ ଏହା ବନ୍ଦ କରିଦେଲି । ତେଣୁ ବୋଉ କହିଲେ, ଦାଢିକଟା ଯନ୍ତ୍ର ଗବକୁଣ୍ଡ ହାଟରୁ କିଣିଆଣ । ତେଣୁ ଗବକୁଣ୍ଡ ହାଟରୁ ଗୋଟିଏ ଦାଢିକଟା ଯନ୍ତ୍ର(Safty razor) କିଣି ଆଣିଲି । ସେହି ଯନ୍ତ୍ର ସାହାଯ୍ୟରେ ମୁହଁରେ କେତେ ଥର ପାଣି ଲଗାଇ ଦାଢି କାଟିଲି, କାଟିଲା ବେଳେ ବହୁତ କାଟେ । ମୁହଁରେ ପାଣି ବଦଳରେ ସାବୁନ୍ ଫେଣ ଲଗାଇଲେ ସେତେ କାଟେନାହିଁ । ମୋ ମନକୁ ଆସିଲା ଗୋଟିଏ ବ୍ରସ୍‌ରେ ସାବୁନ୍‌ଫେଣ ଲଗାଇଲେ ଦାଢି କାଟିଲା ବେଳେ କାଟିବ ନାହିଁ ବୋଲି । ତେଣୁ ଗୋଟିଏ ବ୍ରସ୍ ପ୍ରସ୍ତୁତ କରିବା ପାଇଁ ଲାଗିଗଲି । ନଡିଆ କତାର ଟନ୍ଥୁ ଯୋଗାଡ କରି ତାକୁ ଦୁଇଭାଙ୍ଗ କରି ତାର ଗୋଟିଏ ମୁଣ୍ଡକୁ ତାର ଦେହରେ ବାନ୍ଧିଦେଲି । ସେଥିରେ ଏକ ବ୍ରସ୍ ପ୍ରସ୍ତୁତ ହୋଇଗଲା । ମୁଁ ସବୁବେଳେ ଲକ୍ସ ସାବୁନ୍ ବ୍ୟବହାର କରୁଥିଲି । ସେହି ସାବୁନ୍‌ଫେଣ ଲଗାଇ ଦାଢି କାଟିଲେ ଆଉ ପ୍ରାୟ ବେଶୀ କାଟେନାହିଁ । ଏହିଭଳି ଭାବରେ ପୁରୀ କଲେଜରେ ପଢିଲା ପର୍ଯ୍ୟନ୍ତ ସେହିଭଳି ଦାଢି କାଟୁଥିଲି । ପୁରୀରେ ପଢିଲାବେଳେ ଅନ୍ୟ ସାଙ୍ଗମାନେ ପ୍ରବର୍ତ୍ତାଇଲେ ଏକ ବ୍ରସ୍ ଏବଂ ଖିଅର ହେବା ସାବୁନ୍ (Shaving paste) କିଣିବା ପାଇଁ । ସେମାନଙ୍କ କଥା ଅନୁସାରେ ଗୋଟିଏ ଖିଅର ହେବା ସାବୁନ୍ କିଣିବା ପାଇଁ ବାଧ୍ୟହେଲି ।

## ଇଂଟର ମିଡିଏଟ୍, ବିଜ୍ଞାନ ଶିକ୍ଷା

ତାପରେ ବଡ଼ା ହୋଇ ମୁଁ ଏସ୍.ସି.ଏସ୍ କଲେଜ ପୁରୀରେ ନାମ ଲେଖାଇଲି । ପୁରୀ କଲେଜରେ ନାମ ଲେଖା ସରିଲା । ଏହାପରେ ନନାଙ୍କ ଜକେଇ ଶ୍ରୀ ଫକୀର ମିଶ୍ରଙ୍କୁ ପୁରୀରେ ମୋର ରହିବା ପାଇଁ ବନ୍ଦୋବସ୍ତ କରିଦେବା ପାଇଁ କହିଲି । ସେ ମୋତେ କହିଲେ "ତୁମର ବ୍ରାହ୍ମଣ ସମିତି ଛାତ୍ରାବାସରେ ରହିବାର ବନ୍ଦୋବସ୍ତ କରିଦେବି । ପଢ଼ାପଢ଼ି ଆରମ୍ଭ ହେଲେ ସେଠାରେ ଆସି ରହିବ" । ବ୍ରାହ୍ମଣ ସମିତି ଛାତ୍ରାବାସ ଗୋଟିଏ, ଅନୁଷ୍ଠାନ ଯେଉଁଥିରେ ଗରିବ ବ୍ରାହ୍ମଣ ପିଲାମାନେ ରହି ପାରିବେ । କେବଳ ଖାଇବା ଖର୍ଚ୍ଚଟି ଦେବେ । ଦିନେ ସେହି ଛାତ୍ରାବାସରେ ରହି ପଣ୍ଡିତ ଗୋପବନ୍ଧୁ ଦାସ ପୁରୀ ଜିଲ୍ଲା ସ୍କୁଲରେ ପଢ଼ୁଥିଲେ । ଛାତ୍ରାବାସଟି ହେରାଗୋହିରୀ ସାହିରେ ଅବସ୍ଥିତ । ତାପରେ ମୁଁ ଗ୍ରାମକୁ ଚାଲିଗଲି । ଖୋଲିବା ପୂର୍ବଦିନ ମୁଁ ଆସି 'ବ୍ରାହ୍ମଣ ସମିତି' ଛାତ୍ରାବାସର ପରିଚାଳକଙ୍କ ଅନୁମତି ନେଇ ସେଠାରେ ରହିଲି । ସେଠାରେ ଶ୍ରୀ ସର୍ବେଶ୍ୱର ଆଚାର୍ଯ୍ୟ ବୋଲି ଜଣେ ଛାତ୍ରଙ୍କ ସାଙ୍ଗରେ ମୋର ପରିଚୟ ହେଲା ଏବଂ ଆମେ ସାଙ୍ଗ ହୋଇଗଲୁ । ଆମର ପ୍ରଥମ କ୍ଲାସ୍ କେମେଷ୍ଟ୍ରି ଥିଲା । ସ୍ୱର୍ଗତ ଶ୍ରୀ ରାମଚନ୍ଦ୍ର ତ୍ରିପାଠୀ ବୋଲି ଜଣେ ଅଧ୍ୟାପକ ଆମର ପ୍ରଥମ କ୍ଲାସ୍ ନେଇଥିଲେ । ଆମେ କ୍ଲାସ୍‌କୁ ଗଲାବେଳକୁ ଅଧ୍ୟାପକଙ୍କ ଟେବୁଲ୍ ଉପରେ ବହୁତ ଗୁଡ଼ିଏ ଉପକରଣ ଥୁଆ ହୋଇଥିଲା । ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗିଲା ଏଗୁଡ଼ାକ ସବୁ କଣ ହେବ ? କେମିଷ୍ଟ୍ରି ସାର୍ କ୍ଲାସ୍‌କୁ ଆସିଲେ । ପଢ଼ାଇବା ପରିବର୍ତ୍ତେ, କେମେଷ୍ଟ୍ରିର ଭିନ୍ନଭିନ୍ନ ପ୍ରକାରର ପରୀକ୍ଷା କରି କ୍ଲାସ୍‌ରେ ଦେଖାଇଲେ ।

ତା'ପରେ ପଦାର୍ଥ ବିଜ୍ଞାନ କ୍ଲାସ୍‌ରେ ଅଧ୍ୟାପକଙ୍କ ଟେବୁଲ୍ ଉପରେ ବହୁତ ଗୁଡ଼ିଏ ଉପକରଣ ଥୁଆ ହୋଇଥିଲା । ପଦାର୍ଥବିଜ୍ଞାନର ଅଧ୍ୟାପକ ଶ୍ରୀ ମୁକୁନ୍ଦ ମିଶ୍ର କ୍ଲାସ୍‌ରେ ପଦାର୍ଥବିଜ୍ଞାନ ସମ୍ବନ୍ଧୀୟ ବହୁତ ଗୁଡ଼ିଏ ପରୀକ୍ଷା କରି ଦେଖାଇଲେ । ପଦାର୍ଥବିଜ୍ଞାନର ପରୀକ୍ଷା ଗୁଡ଼ିକ ମଧ୍ୟରୁ ଗୋଟିଏ ପରୀକ୍ଷା, ମୋତେ ଭାରି ଭଲ ଲାଗିଥିଲା । ପରୀକ୍ଷାଟିର ନାମ ହେଉଛି 'କାର୍ଟେସିଆନ ଡାଇଭର' । ପରୀକ୍ଷାଟିରେ ଅଧ୍ୟାପକ ମହାଶୟ, ଗୋଟିଏ ଛୋଟ କଣ୍ଢେଇ ପିଲାଙ୍କୁ ଦେଖାଇଲେ । ସେଇଟିକୁ ଗୋଟିଏ ପାଣିଥିବା ଲମ୍ବା କାଚ ନଳୀ ଭିତରେ ପକାଇ ଦେଲେ । କାଚ ନଳୀ ଉପର ମୁହଁରେ ଗୋଟିଏ ରବର ବାନ୍ଧିଦେଲେ । ସେଇଟିକୁ ଟେବୁଲ୍ ଉପରେ ଥୋଇଲେ । ଯେପରି ସମସ୍ତଙ୍କୁ ଦେଖାଯିବ ତାପରେ ସେ କଣ କଲେ, ଆମେ ଜାଣି ପାରିଲୁନାହିଁ । କିନ୍ତୁ କଣ୍ଢେଇଟି ପ୍ରଥମେ ଭାସୁଥିଲା । ତାପରେ ସଙ୍ଗେସଙ୍ଗେ ବୁଡ଼ିକରି ତଳକୁ ପଳାଇଲା । ପୁଣି ସେ କଣ କରିବାରୁ କଣ୍ଢେଇଟି ଉପରକୁ ଉଠିଆସିଲା । ପୁଣି ଥରେ କଣ୍ଢେଇଟିକୁ ନଳୀ ଭିତରେ ପାଣି ମଝିରେ ରଖି, ଏପରି କଲେ ଯେ, କଣ୍ଢେଇଟି ଘିର୍ ଘିର୍ ହୋଇ ଘୂରିଲା ।

ତାହା ମୋତେ ମ୍ୟାଜିକ୍ ଭଳି ଲାଗିଲା । ଆମେ ଯେତେ ତାଙ୍କୁ ପଚାରିଲୁ କ୍ଲାସ୍‌ରେ ସେ କିଛି କହିଲେ ନାହିଁ । କହିଲେ "ତମେ ପରେ ଜାଣିବ" । ମୋର କିନ୍ତୁ ମନ ବୁଝିଲା ନାହିଁ । ମୁଁ ତାଙ୍କ ଠାରୁ ବୁଝିବା ପାଇଁ ଗୋଟିଏ ଉପାୟ ପାଞ୍ଚିଲି । ମୁଁ ଦେଖିଲି ସେ ସବୁଦିନ ନଅଟା ବେଳେ କଲେଜକୁ ଆସୁଛନ୍ତି । ମୁଁ ମନେ ପକାଇ ଜାଣିଲି, ସେ ମହାଶୟ ଆମ ଗ୍ରାମରେ ବିବାହ କରିଛନ୍ତି । ମୁଁ ମଧ୍ୟ ଥରେ ଆମ ଗ୍ରାମରେ ଅଶୋକାଷ୍ଟମୀକୁ ତାଙ୍କୁ ଦେଖିଥିଲି । ଦିନେ ସେ

ସକାଳୁ କଲେଜକୁ ଆସୁଛନ୍ତି । ତାଙ୍କ କୋଠରୀରେ ବସିଲା ପରେ, ମୁଁ ତାଙ୍କ ପାଖକୁ ଯାଇ ଚିହ୍ନା ଦେଇ କହିଲି ମୁଁ ରାୟଚନ୍ଦ୍ରଧରପୁର ଗ୍ରାମର । ସେ ମୋତେ ଡାକି ବସାଇଲେ । ମୁଁ ତାଙ୍କୁ ସେ 'କାର୍ଟସିଆନ ଡାଇଭର' ପରୀକ୍ଷା କଥା ପଚାରିଲି । ସେ କହିଲେ, ସେଇଟା ଅତି ସହଜ । ସେଥିରେ ମ୍ୟାଜିକ୍ କିଛି ନାହିଁ । ବାୟୁ ଚାପର ପରିବର୍ତ୍ତନ ଯୋଗୁଁ କଣ୍ଢେଇଟି ତଳକୁ ଯାଉଛି ଏବଂ ଉପରକୁ ଉଠୁଛି । ମଝିରେ ମଧ୍ୟ ଘୂରୁଛି । ସେ ମୋତେ କଣ୍ଢେଇଟି କାଢ଼ିକରି ଦେଖାଇଲେ । କଣ୍ଢେଇଟି ଗୋଟିଏ ମାଙ୍କଡ ଭଳି ଦେଖା ଯାଉଥିଲା । ତା ଲାଙ୍ଗୁଡ ଅଗରେ ଗୋଟିଏ ଛୋଟ କଣା ଥିଲା । ଲାଙ୍ଗୁଡ ସିଧା ତଳକୁ ନଖସି ଟିକିଏ ବଙ୍କେଇ ହୋଇ ରହିଥିଲା । ରବରଟି ଉପରୁ ଚାପିଲେ କଣ୍ଢେଇ ଭିତରେ ପାଣି ପଶି ଓଜନ ହୋଇ ବୁଡିଯାଉଥିଲା । ରବରଟିକୁ ଛାଡିଦେଲେ କଣ୍ଢେଇରୁ ପାଣି ବାହାରି ହାଲୁକା ହୋଇଯାଉଥିଲା । ତେଣୁ କଣ୍ଢେଇଟି ଭାସିଉଠୁଥିଲା । କଣ୍ଢେଇଟିକୁ ପାଣି ଭିତରେ ରଖି ଶୀଘ୍ର ଶୀଘ୍ର ଚାପିବା ଏବଂ ଛାଡିବା ଫଳରେ କଣ୍ଢେଇରୁ ବାହାରୁଥିବା ପାଣି କାଚଜାର୍ ଭିତରେ ଥିବା ପାଣିକୁ ଠେଲି ଦେବାରୁ କଣ୍ଢେଇଟି ଘୂରିଯାଉଥିଲା । ଏହି ପରୀକ୍ଷାଟି ଦେଖି ମୁଁ ନିଜେ ମନେ ମନେ ଠିକ୍ କଲି, ପଦାର୍ଥ ବିଜ୍ଞାନର ପାଠ ପଢ଼ିବି । ଏହି ପରୀକ୍ଷାଟି ମୁଁ ନିଜେ ହାତରେ ତିଆରି କରିବା ପାଇଁ ମନସ୍ଥ କଲି ।

ଉପରୋକ୍ତ ପରୀକ୍ଷାଟିକୁ ନିଜ ଘରେ କରିବା ପାଇଁ ଠିକ୍‌କଲି । ସେହିବର୍ଷ ପୂଜା ଛୁଟିରେ ଗ୍ରାମକୁ ଯାଇଥାଏ । ଗୋଟିଏ କାଚ ବୋତଲ ଓ ଗୋଟିଏ ଫିଉଜ୍ ଟର୍ଚ୍ଚ ବଲବ୍ ଠିକ୍ କଲି । ବଲବ୍‌ର ତଳଟି ଘଷି ଘଷି ପିତଳ ପର୍ଯ୍ୟନ୍ତ ଘୋରି ଘୋରି ସଫା କରିଦେଲି । ପିତଳ ଭିତରେ ଥିବା କାଚ ଭୁଣ୍ଡିଟିକୁ ଟିକିଏ ଭାଙ୍ଗି ଦେଲି । ଯାହାଦ୍ୱାରା ବଲବ୍‌ଟି କଣା ହୋଇଗଲା । ତାପରେ ତାକୁ ସେ ବୋତଲ ଭିତରେ ପାଣି ରଖି ପାଟିରେ ଫୁଙ୍କିଲି । ଦେଖିଲି ବଲବ୍ ଭିତରେ ପାଣି ପଶିଯାଉଛି, କିନ୍ତୁ ବୁଡୁନାହିଁ । ଦିନେ ଦୁଇଦିନ ପରେ ବୋତଲ ମୁହଁଟିକୁ ପାଟିରେ ରଖି, କାହିଁକି କେଜାଣି ଟିକିଏ ଶୋଷିଦେଲି । ବଲବ୍ ଭିତରୁ ପବନ କିଛି ବାହାରି ଆସିଲା । ତାପରେ ଶୋଷିବା ଛାଡିଦେବା ପରେ ବଲବ୍‌ଟି ଆଉ ନ'ଭାସି ବୁଡିଗଲା । ମୁଁ ଦେଖିଲି ବଲବ୍‌ଟିରେ ବହୁତ ଗୁଡ଼ିଏ ପାଣି ପଶିଯାଇଛି । ତେଣୁ ବଲବ୍‌ଟି ବୁଡିଗଲା । ବଲବ୍‌ଟି କାଢ଼ି ଆସ୍ତେ ଆସ୍ତେ କରି ପାଣିଛାଟି ବାହାର କରିଦେବାରୁ ତାହା ଭାସିଲା । ପାଟିରେ ଫୁଙ୍କିଲେ ବଲବ୍‌ଟି ବୁଡିଗଲା, ଛାଡିଦେଲେ ପୁଣି ଉଠି ଆସିଲା । ସେହିଦିନ ଏହି ପରୀକ୍ଷାରେ ସଫଳ ହୋଇଥିବାରୁ, ମୋ ମନରେ ବହୁତ ଆନନ୍ଦ ହେଲା ।

ପଦାର୍ଥ ବିଜ୍ଞାନ ଓ ରସାୟନ ବିଜ୍ଞାନ ବ୍ୟତୀତ, ଗଣିତ, ପ୍ରାଣୀ ବିଜ୍ଞାନ, ଉଦ୍ଭିଦ ବିଜ୍ଞାନ ଓ ଇଂରାଜୀ କ୍ଲାସ ଯଥାକ୍ରମେ ସର୍ବଶ୍ରୀ ପ୍ରଫୁଲ୍ଲ ମହାନ୍ତି, ଡକ୍ଟର ଚନ୍ଦ୍ରମଣି ବଡ଼ିଆ ଓ ସର୍ବେଶ୍ୱର ଦାଶ ପଢ଼ାଉ ଥିଲେ । କଲେଜରେ ପ୍ରଥମ ବର୍ଷର ଶେଷ ପର୍ଯ୍ୟନ୍ତ ବିଶେଷ କିଛି ଘଟଣା ଘଟି ନ'ଥିଲା । କେବଳ ସର୍ବେଶ୍ୱର ଓ ମୁଁ 'ବ୍ରାହ୍ମଣ ସମିତି' ଛାଡି ପୁରୀ କଲେଜ ଛାତ୍ରାବାସ (୧) ରେ ଯାଇ ରହିଲୁ । ଛାତ୍ରାବାସର ପରିଚାଳକ ଶ୍ରୀ ରାମଚନ୍ଦ୍ର ତ୍ରିପାଠୀ ଥାଆନ୍ତି ।

## କଲେଜ ପଢ଼ାବେଳେ ଦେଶଭ୍ରମଣ

ସେହିବର୍ଷ ଫେବୃୟାରୀ କି ମାର୍ଚ୍ଚ ମାସରେ କଲେଜରେ ନୋଟିସ୍ ବାହାରିଲା ଯେ ଯେଉଁମାନେ ଭାରତ ଭ୍ରମଣରେ, ଯିବାକୁ ଚାହାଁନ୍ତି, ସେମାନେ ଶ୍ରୀ ଚନ୍ଦ୍ରମୋହନ ବଡ଼ିଆଙ୍କୁ ଦେଖାକରି ତାଙ୍କୁ ନାମ ଦିଅନ୍ତୁ ।

## ପ୍ରାଧ୍ୟାପକ, ରେଭେନ୍ସା କଲେଜ

ମୋର ପରିଭ୍ରମଣରେ ଯିବାକୁ ବହୁତ ଇଚ୍ଛା ଥାଏ । କିନ୍ତୁ ପଇସା ଅଭାବରୁ ଓହରି ଯାଉଥିଲି । ପରେ ଜାଣିବାକୁ ପାଇଲି ଯେ ଗାଡି ଭଡାଟା ସରକାର ଦେବେ କିନ୍ତୁ ଖାଇବା ଖର୍ଚ୍ଚଟା ପିଲାମାନେ ହାତରୁ ଦେବେ । ଏହି ପରିଭ୍ରମଣରେ ବହୁତ ପିଲା ଦରଖାସ୍ତ କରିଥିଲେ । ତେଣୁ ଠିକ୍ ହେଲା ଯେ କୋଡିଏ ଜଣ ପିଲା ଯିବେ । ସେମାନଙ୍କ ନାମ ଲଟେରୀ ଦ୍ୱାରା ଗୋଟିଏ ନିର୍ଦ୍ଦିଷ୍ଟ ଦିନ ଓ ନିର୍ଦ୍ଦିଷ୍ଟ ସମୟରେ ଠିକଣା କରାଯିବ । ଯଦିଓ ମୋତ ପଇସା ଅଭାବରୁ ଇଚ୍ଛା ନ'ଥିଲା, ତଥାପି ନାମ ଦେଇଥିଲି । ମୁଁ ଲଟେରୀ ବେଳେ ମଧ୍ୟ ଉପସ୍ଥିତ ଥିଲି । ଲଟେରୀରେ ମୋର ନାମ ଉଠି ଥିଲା । ଗୋଟିଏ ନିର୍ଦ୍ଦିଷ୍ଟ ତାରିଖରେ ସତୁରୀ ଟଙ୍କା ଲେଖାଏଁ ଜମା କରିବାକୁ ଜଣାଇ ଦିଆଯାଇଥିଲା । ଯେଉଁମାନେ ନ'ଦେଇ ପାରିବେ, ତାଙ୍କ ନାମ ଲଟେରୀ ତାଲିକାରୁ ଉଠିଯାଇ ପଛରେ ଥିବା ତାଲିକାର ପିଲାମାନଙ୍କୁ ନିଆଯିବାର ସ୍ଥିର ହେଲା । ଏବେ ମୁଁ ଟଙ୍କା ଯୋଗାଡ କରିବାରେ ଲାଗିଲି । ମୋର ଜଣେ ମାମୁଁ ପୁଅ ଭାଇଙ୍କ ଠାରୁ କୋଡିଏ ଟଙ୍କା ଆଣିଲି । ବାକି ଟଙ୍କା ବୋଉଙ୍କଠାରୁ ଆଣି ନିର୍ଦ୍ଦିଷ୍ଟ ଦିନ ସୁଦ୍ଧା ଜମା କରିଦେଲି । ବାହାରିବା ଦିନ ସଂଧ୍ୟାବେଳେ ଆମେ ପୁରୀ ଷ୍ଟେସନରେ ପହଁଞ୍ଚିଲୁ । ତାଳଚେର ଗାଡିରେ ଯାତ୍ରା କଲୁ ସକାଳେ ଆମେ ତାଳଚେରରେ ପହଁଞ୍ଚିଲୁ । ସେହିଦିନ ଆମେ ତାଳଚେରରେ କୋଇଲା ଖଣି ଭିତରକୁ ଯାଇ ଦେଖିବାକୁ ଠିକ୍ କଲୁ । ଆମର ଅଧ୍ୟାପକ ଶ୍ରୀ ଚନ୍ଦ୍ରମୋହନ ବସ୍ତିଆ କୋଇଲା ଖଣିର ଉଚ୍ଚ କର୍ମକର୍ତ୍ତାଙ୍କ ସାଙ୍ଗରେ ଦେଖାକରି କୋଇଲା ଖଣି ଭିତରକୁ ଯିବାପାଇଁ ତାଙ୍କଠାରୁ ଅନୁମତି ଆଣିଲେ । ଆମେ ସବୁ ଗୋଟିଏ ଲିଫଟ୍‌ରେ ବସି ତଳକୁ ଓହ୍ଲାଇଲୁ । ଲିଫଟ୍‌ରେ ଗଲାବେଳେ ଆମର ଓଜନ କମିଗଲା ଭଳିଆ ଲାଗିଲା । ତଳେ ପହଁଞ୍ଚିଲା ପରେ ଆମକୁ କୁହାଯାଇ ଥିଲା 'ତମେମାନେ ସେଠାରେ ଅପେକ୍ଷା କରିବ ଅନ୍ୟମାନେ ପହଁଞ୍ଚିବା ପର୍ଯ୍ୟନ୍ତ । ସମସ୍ତେ ଏକାଠି ଭିତରକୁ ଯାଇ ଦେଖିବ । ତୁମ ସାଙ୍ଗରେ ଜଣେ ପଥପ୍ରଦର୍ଶକ (Guide) ଯିବେ ସେ ତମମାନଙ୍କୁ ସବୁ ବୁଲି ବୁଝାଇ ଦେବେ' । ଆମେ ଲିଫଟ୍‌ରେ ଗଲାବେଳେ ଦେଖିଲୁ ବାହାର ଚାରିଆଡ ଅନ୍ଧାର । ଖଣି ଭିତରେ ପହଁଞ୍ଚିଲା ପରେ ଥଣ୍ଡା ପବନ ବହୁଥିଲା ଏବଂ ଆଲୁଅ ଜଳୁଥିଲା । ଖଣିଭିତରେ କେତେ ବାଟ ଗଲାପରେ ସୁଡଙ୍ଗଟି ସରିଗଲା ।

ଗୋଟିଏ ସୁଡଙ୍ଗ ଭିତରେ ଆମେ ସମସ୍ତେ ପଶିଲୁ । ସେଠାରେ ତିନି ଚାରିଜଣ ଲୋକ ମେସିନ୍ ଚାଳିତ ଲୁହା ଡ୍ରିଲ୍ ଦ୍ୱାରା ଠାଏ ଠାଏ କଣା କରୁଥାନ୍ତି । ପଚାରି ବୁଝିଲୁ, ସେ କଣା ଭିତରେ ଡିନାମାଇଟ୍ ପୂରାଇ ଦିଆଯାଏ । ସମସ୍ତେ ଚାଲିଆସିଲା ପରେ ବିସ୍ଫୋରଣ କରାଯାଇଥାଏ । ବିସ୍ଫୋରଣ ପରେ କୋଇଲା ସବୁ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିକରି ପଡିଯାଏ । ତାପରେ ଆମେ ଆଉ ଗୋଟିଏ ଗୁମ୍ଫା ଭିତରକୁ ଗଲୁ । ଆମେ ଦେଖିଲୁ ସେଠାରେ ଛୋଟିଆ ରେଲ୍ ଲାଇନ୍ ପଡିଛି । ତା ଉପରେ ଛୋଟ ଛୋଟ ଟ୍ରଲି ସବୁ ଯାଉଛି । ସେ ଟ୍ରଲି ଗୁଡିକ ଲୋକମାନେ ଚଳାଉ ଥାଆନ୍ତି । ଟ୍ରଲିରେ କୋଇଲା ସବୁ ଲଦା ହୋଇ ଗୋଟିଏ ମୁଖ୍ୟ ଜାଗାକୁ ଆସେ ଏବଂ ସେଠାରୁ ଲିଫଟ୍ ଦ୍ୱାରା ଉପରକୁ ଅଣାଯାଇଥାଏ । ଏହାକୁ ଦେଖିବା ସମୟରେ ଆମକୁ ଭାରି ଡର ଲାଗୁଥିଲା । ତେବେ ସମସ୍ତେ ଏକାଠି ଥିବାରୁ ଆମକୁ ଡର ଲାଗିଲା ନାହିଁ । ତାପରେ ଦେଖି ସାରିଲା ପରେ ଆମେ ପୁଣି ଲିଫଟ୍‌ରେ ଉପରକୁ ଉଠି ଆସିଲୁ । ଲିଫଟ୍‌ରେ

ଉପରକୁ ଉଠିଲା ବେଳେ ମୋ ଓଜନ ବଢି ଗଲା ପରି ଲାଗିଲା । ସେହିଦିନ ରାତିରେ ଆମେ ମେରାମଣ୍ଡଳି ଷ୍ଟେସନ୍‌କୁ ଆସିଲୁ । ଷ୍ଟେସନ୍‌ରେ ରାତିରେ ରହିଲୁ । ମେରାମଣ୍ଡଳି ଠାରୁ ଗୋଟିଏ ବସ୍‌ରେ ଆସି ସମ୍ବଲପୁରରେ ପହଁଞ୍ଚିଲୁ । ସମ୍ବଲପୁରରେ ଆମେ ଗଙ୍ଗାଧର ମେହେର କଲେଜକୁ ଗଲୁ । ସେଠାରେ ପ୍ରଫେସ୍‌ର ନାରାୟଣ ମିଶ୍ର ଅଧକ୍ଷ୍ୟ ଥିଲେ । ଶ୍ରୀ ଚନ୍ଦ୍ରମଣି ବାବୁ ତାଙ୍କ ସାଙ୍ଗରେ କଥାବାର୍ତ୍ତା ହେଲାପରେ, ସେ ଆମକୁ ଛାତ୍ରାବାସର ଗୋଟିଏ କୋଠରୀରେ ରହିବା ପାଇଁ ଅନୁମତି ଦେଲେ । ଆମେ ଛାତ୍ରାବାସରେ ଗୋଟିଏ ରାତି ରହିଲୁ । ତାପର ଦିନ ଗୋଟିଏ ବସ୍ ଭଡା କରି ଯେଉଁଠାରେ ହୀରାକୁଦ ବନ୍ଧ ତିଆରି ହେଉଥିଲା ସେଠାକୁ ଦେଖିବାକୁ ଗଲୁ । ସେଠାରେ ଜଣେ କର୍ମକର୍ତ୍ତା ଆମକୁ ବୁଝାଇଲେ ବନ୍ଧଟି କିପରି ତିଆରି ହେବ । ସେ ଆମକୁ ଦୁଇଟା ପାହାଡ ଦେଖାଇଲେ । ସେ ପାହାଡଟା ଦୁଇଟା ବନ୍ଧ ଦ୍ୱାରା ସଂଯୁକ୍ତ କରାଯିବ । ବନ୍ଧ ହୋଇସାରିଲା ପରେ ସେ ବନ୍ଧର ଉପର ମୁଣ୍ଡରେ ଗୋଟିଏ ହ୍ରଦ ଭଳି ହୋଇ ଯିବ । ତେଣୁ ସେ ହ୍ରଦରୁ କେନାଲ ଖୋଳା ହୋଇ ସମ୍ବଲପୁର ଅଞ୍ଚଳରେ ଚାଷ ପାଇଁ ପାଣି ଯୋଗାଇ ଦିଆଯିବ । ତାପରେ ସେ କହିଲେ, ସେ ବନ୍ଧ ଦେହରେ କେତେଗୁଡିଏ କବାଟ ରଖା ଯିବ । ତାକୁ ବର୍ତ୍ତମାନ କହୁଛନ୍ତି ସୁଇସ୍ ଗେଟ୍ । ସୁଇସ୍ ଗେଟ୍ ଖୋଲି ଦେଲେ ପାଣି ନଈରେ ବହିଯିବ । ତେଣୁ ଏହି ହୀରାକୁଦ ବନ୍ଧ ଦ୍ୱାରା ଉପକୂଳ ଅଞ୍ଚଳରେ ନଈବଢିର ଆଶଙ୍କା କମିଯିବ । କାରଣ ପାଣି ଅଟକାଇ ରଖି ଧୀରେ ଧୀରେ ଛଡାଯିବ । ତାପରେ ପୁଣି କହିଲେ, ବନ୍ଧ ଭିତରେ କେତେଗୁଡିଏ ସୁଡଙ୍ଗ ତିଆରି ହେବ । ଏଥିରେ ସବୁ ବଡ ବଡ ଟରବାଇନ୍ ଖଞ୍ଜା ହୋଇଥିବ । ଟରବାଇନ୍ ଗୁଡିକ ପାଣିର ପ୍ରଖର ସ୍ରୋତରେ ଘୂରିବାକୁ ଲାଗିବ । ଯାହା ଫଳରେ ବୈଦ୍ୟୁତିକ ଶକ୍ତି ଉତ୍ପନ୍ନ ହେବ । ତାପରେ ସେ ବୁଝାଇ ଦେଲେ ବନ୍ଧର ନିମ୍ନ ଭାଗରେ କେତେଗୁଡିଏ ଛୋଟ ସୁଡଙ୍ଗ ରହିବ । ସେ ସୁଡଙ୍ଗ ଦ୍ୱାର ଖୋଲିଦେଲେ ହ୍ରଦ ତଳେ ଜମା ହୋଇଥିବା ପଟୁମାଟି ସବୁ ଧୋଇ ହୋଇ ଚାଲିଯିବ । ଫଳରେ ହ୍ରଦର ଗଭୀରତା ଶୀଘ୍ର ହ୍ରାସ ପାଇବନି ।

ସେ ଅଞ୍ଚଳ ଦେଖିସାରିଲା ବେଳକୁ ପ୍ରାୟ ସଂଧ୍ୟା ହୋଇଗଲା । ଆମେ ସେହି ବସ୍‌ରେ ଆସି ଝାରସୁଗୁଡା ଷ୍ଟେସନ୍‌ରେ ଓହ୍ଲାଇଲୁ ଏବଂ କିଛି ସମୟ ଅପେକ୍ଷା କଲା ପରେ ରାତିରେ ଟ୍ରେନ୍ ଧରି ଏହ୍ଲାବାଦ ଅଭିମୁଖେ ଯାତ୍ରା କଲୁ । କଟନି ଠାରେ ଗାଡି ବଦଳ କରି ଏହ୍ଲାବାଦରେ ଯାଇ ପହଁଞ୍ଚିଲୁ । ଏହ୍ଲାବାଦରେ ଦୁଇଜଣ ପି.ଜି. ଛାତ୍ରଙ୍କ ସହିତ ଦେଖାହେଲା । ସେଥିମଧ୍ୟରୁ ଜଣଙ୍କର ନାମ ଶ୍ରୀ ଗଦାଧର ମିଶ୍ର । ପରବର୍ତ୍ତୀ କାଳରେ ସେ ଉଦ୍ଭିଦ ବିଜ୍ଞାନର ପ୍ରଫେସର ଓ ରେଭେନ୍ସା କଲେଜର ଅଧକ୍ଷ୍ୟ ହୋଇଥିଲେ । ଅନ୍ୟ ଜଣେ ଛାତ୍ରୀ ଶ୍ରୀମତୀ ଶାନ୍ତିଲତା ମହାନ୍ତି । ପ୍ରାଣୀ ବିଜ୍ଞାନରେ ପି.ଜି. କରୁଥିଲେ । ସେମାନେ ଆମର ସବୁ ରହିବାର ବନ୍ଦୋବସ୍ତ କରିଦେଇ ଥିଲେ । ତାପରେ ଆମେ ଏହ୍ଲାବାଦ ବିଶ୍ୱବିଦ୍ୟାଳୟ ଦେଖିବାକୁ ଗଲୁ । ଉପରବେଳା ଗଙ୍ଗାଯମୁନାର ସଙ୍ଗମସ୍ଥଳୀରେ ଡଙ୍ଗାରେ ବୁଲି ଦେଖିଲୁ । ସଙ୍ଗମ ସ୍ଥଳରେ ଗଙ୍ଗା ନଈରପାଣି ଓ ଯମୁନା ନଈରପାଣି ଅଲଗା ହୋଇଥାଏ । ସେହିଦିନ ରାତିରେ ଆମେ ଏହ୍ଲାବାଦ ଛାଡି ଆଗ୍ରାରେ ସକାଳେ ପହଁଞ୍ଚିଲୁ । ଆଗ୍ରାରେ ଗୋଟିଏ ହୋଟେଲରେ ରହିଲୁ । ଆଗ୍ରା ଫୋର୍ଟ ଦେଖିବାକୁ ଗଲୁ । ଆଗ୍ରା ଫୋର୍ଟଟି ଆକବରଙ୍କ ନିର୍ଦ୍ଦେଶରେ କାସିମ୍ ଖାଁଙ୍କ ତତ୍ତ୍ୱାବଧାନରେ ଲାଲ ପଥରରେ ଗଢା ଯାଇଥିବାର କୁହାଯାଏ । ଏହି ଦୁର୍ଗର ପାଚେରୀର ଉଚ୍ଚତା ୭୦ ଫୁଟ । ଦୁର୍ଗ

ଭିତରେ ଥିବା ଜାହାଙ୍ଗୀର ମହଲ, ବିଶେଷ ଦର୍ଶନୀୟ ଅଟେ । ଯମୁନାର ଦକ୍ଷିଣ ତୀରରେ, ଆକବର ବର୍ତ୍ତମାନର ଆଗ୍ରା ସହର ସ୍ଥାପନ କରିବା ସହିତ ସେଠାରେ ଆଗ୍ରା ଦୁର୍ଗ ନିର୍ମାଣ କରିଥିଲେ । ଦୁର୍ଗ ଭିତରେ ଗୋଟିଏ କୋଠରୀ ଅଛି । ଶାହାଜାହାନ୍ ସେହି କୋଠରୀରେ ଔରଙ୍ଗଜେବ୍‌ଙ୍କ ଦ୍ୱାରା ବନ୍ଦୀ ହୋଇ ଶେଷଜୀବନ ବିତାଇ ଥିଲେ । ସେହି କୋଠରୀର ବିଶେଷତ୍ୱ ହେଲା ଏହି ଯେ ସେହି କୋଠରୀର ଝରକା ବାଟେ ତାଜ୍‌ମହଲଟି ଭଲଭାବରେ ଦେଖାଯାଏ । ଆମେ ମଧ୍ୟ ଦେଖିଲୁ, ତାଜମହଲଟି ପରିଷ୍କାର ଦେଖା ଯାଉଥିଲା । ସେହି ତାଜମହଲକୁ ନିଜେ ଶାହାଜାହାନ୍ ତାଙ୍କ ସ୍ତ୍ରୀ ମମତାଜ ମରିବା ପରେ ନିର୍ମାଣ କରାଇଥିଲେ ।

କିଛି ସମୟ ବୁଲାବୁଲି କରି ସାରିବାପରେ ହୋଟେଲକୁ ଫେରିଲା ବେଳକୁ ପ୍ରାୟ ଖାଇବାବେଳ ହୋଇ ଯାଇଥିଲା । ହୋଟେଲରେ ରୁଟି ତରକାରୀ ଖାଇ ଟିକିଏ ବିଶ୍ରାମ ନେଲା ପରେ ତାଜମହଲ ଦେଖିବାକୁ ଗଲୁ । ତାଜମହଲଟି ପୁରା ମାର୍ବଲ ପଥରରେ ତିଆରି । ତାର କାରୁକାର୍ଯ୍ୟ ଅତ୍ୟନ୍ତ ସୁନ୍ଦର । ସେତେବେଳେ ତାଜମହଲକୁ ପୃଥିବୀର ସାତଟି ଆଶ୍ଚର୍ଯ୍ୟ ମଧ୍ୟରୁ ଗୋଟିଏ ବୋଲି ଗଣା ଯାଉଥିଲା । ତାଜମହଲ ଦେଖି ସାରିଲା ପରେ, ଆମେ ହୋଟେଲରୁ ଜିନିଷ ପତ୍ର ନେଇ, ଆଗ୍ରା ଷ୍ଟେସନ୍ ଅଭିମୁଖେ ଯାତ୍ରା କଲୁ । ପ୍ରାୟ ନଅଟା ଦଶଟା ବେଳକୁ ଦିଲ୍ଲୀରେ ପହଞ୍ଚିଲୁ । ଭୟଙ୍କର ଶୀତ ହେଉଥାଏ । ତଥାପି ଆମେ ସମସ୍ତ ସତରଞ୍ଜି ପକାଇ ପ୍ଲାଟଫର୍ମରେ ଶୋଇଗଲୁ । ତା'ପର ଦିନ ସକାଳୁ ପୁଣି ଯାତ୍ରା ଆରମ୍ଭ ହେଲା । ଚାରି ପାଞ୍ଚଟା ଘୋଡା ଗାଡିରେ ବସି କୁତବ୍‌ମିନାର ଦେଖିବାକୁ ବାହାରି ଗଲୁ ।

ଦିଲ୍ଲୀ ସହରରୁ ବାରମାଇଲ୍ ଦୂରରେ କୁତବ୍‌ମିନାର ଅବସ୍ଥିତ । କୁତବ୍‌ମିନାରକୁ ଭାରତର କାରୀଗରମାନେ ଗଢିଥିଲେ ବୋଲି କୁହାଯାଏ । ୨୭ଟି ପ୍ରାଚୀନ ହିନ୍ଦୁମନ୍ଦିରର ଭଗ୍ନାବଶେଷକୁ ନେଇ ହିନ୍ଦୁ ଶିଳ୍ପୀମାନଙ୍କ ସାହାଯ୍ୟରେ, କୁତବୁଦ୍ଦିନ୍ ଗୋଟିଏ ମସ୍‌ଜିଦ୍ ତିଆରି କରିଥିଲେ । ତା'ରି ପାଖରେ ୧୧୯୯ ଖ୍ରୀଷ୍ଟାବ୍ଦରେ କୁତବମିନାର ନିର୍ମାଣ ଆରମ୍ଭ ହୋଇଥିଲା । ଏହାର ଦୁଇଟି ମହଲା କୁତବୁଦ୍ଦିନ୍ ତିଆରି କରିଥିଲେ । ତାଙ୍କ ପରେ ତାଙ୍କ ଜ୍ୱାଇଁ ଇଲତୁତ୍‌ମିସ୍ ତାକୁ ସମ୍ପୂର୍ଣ୍ଣ କରିଥିଲେ । କୁତବ୍‌ମିନାର ଉଚ୍ଚତା ପ୍ରାୟ ୨୬୫ ଫୁଟ୍ । କୁତବ୍‌ମିନାର ଉପରକୁ ଭିତରେ ଥିବା ଗୋଲାକାର ସିଡିରେ ଚଢିକରି ଯାଇହୁଏ । ଆମେ ମଧ୍ୟ ତା ଭିତରେ ତିନି ମହଲା ପର୍ଯ୍ୟନ୍ତ ଉଠି ଯାଇଥିଲୁ । ଆମ ମଧ୍ୟରୁ କେତେକ ପାଞ୍ଚ ମହଲା ଉପରକୁ ମଧ୍ୟ ଯାଇଥିଲେ । ମୁଁ କିନ୍ତୁ ତିନି ମହଲା ଠାରୁ ବେଶୀ ଉପରକୁଯାଇ ପାରି ନ'ଥିଲି । ମିନାର ଦେହରେ ଏହାର ନିର୍ମାଣର ଇତିହାସ ଓ କୋରାନ୍‌ର ବାଣୀ ସବୁ ଲେଖା ହୋଇଛି ।

କୁତବ୍‌ମିନାର ଦେଖିକରି ଫେରିଲା ବେଳକୁ ପ୍ରାୟ ମଧ୍ୟାହ୍ନ । କୌଣସି ଗୋଟିଏ ହୋଟେଲରେ ଖାଇ ବିଶ୍ରାମ ନେଇ ପୁଣି ଲାଲକିଲ୍ଲା ଦେଖିବାକୁ ବାହାରିଗଲୁ । ଲାଲକିଲ୍ଲା ବୁଲି ଦେଖିବାକୁ ବହୁ ସମୟ ଲାଗେ । ସଞ୍ଜ ହୋଇଯିବାରୁ ଆମେ ଲାଲକିଲ୍ଲା ଭଲ ଭାବରେ ଦେଖି ପାରୁଲି ନାହିଁ । ସେହି ଦିନ ସଂଧ୍ୟାବେଳକୁ ଷ୍ଟେସନକୁ ଫେରି ଆସିଲୁ । ତାପରେ ଟ୍ରେନ ଧରି ଦୁଇଦିନ ପରେ କଲିକତାରେ ପହଞ୍ଚିଲୁ ।

ହାଓଡା ଷ୍ଟେସନ୍ ପାଖରୁ ଟ୍ରାମ୍‌ରେ ଚଢି ଗୋଟିଏ ହୋଟେଲ୍‌ରେ ରହିଲୁ । ସେହି ହୋଟେଲ୍‌ରେ ରହିବା ପାଇଁ ଆମର ଆଗରୁ ବନ୍ଦୋବସ୍ତ ହୋଇଥିଲା । ହୋଟେଲ୍‌ଟି କେଉଁ ଜାଗାରେ ଥିଲା ବର୍ତ୍ତମାନ ମୋର ମନେପଡୁ ନାହିଁ । ସେହିଦିନ ଟ୍ରାମ୍‌ରେ ବସି ଆଲିପୁର ଗଲୁ । ଆଲିପୁରରେ ଥିବା ଚିଡିଆଖାନା ଦେଖିବା ପାଇଁ ଟିକେଟ୍ କରି ସମସ୍ତେ ଗଲୁ । ଚିଡିଆଖାନା ଦେଖିବା ପାଇଁ ମୋର କିନ୍ତୁ ବିଶେଷ ଆଗ୍ରହ ନ'ଥିଲା । କାରଣ ଆଗରୁ ଥରେ ନନାଙ୍କ ସଙ୍ଗେ ଆସି ଚିଡିଆଖାନା ଦେଖିଥିଲି । କିନ୍ତୁ ପୂର୍ବର ଅନୁଭୂତିପରି ଏଥର ସେପରି ହେଲା ନାହିଁ । ଖାଲି ଗୋଟିଏ ଗରିଲାର ଚାଲିଚଳନ, ଅଙ୍ଗଭଙ୍ଗୀ ଦେଖିବା ପାଇଁ ଭଲ ଲାଗୁଥିଲା । ଗରିଲାଟି ଗୋଟିଏ ସିଗାରେଟ୍ ଟାଣୁଥିବାର ମୁଁ ଦେଖିଛି ।

ଅନ୍ୟମାନେ ସମସ୍ତେ ନିଜ ଇଚ୍ଛାରେ ତିନି ଚାରିଜଣ ମିଶି ଭିନ୍ନଭିନ୍ନ ପଶୁପକ୍ଷୀଙ୍କୁ ଦେଖୁଥାଆନ୍ତି । ଗୋଟିଏ ଜାଗାରେ ସରୀସୃପ ଜାତୀୟପ୍ରାଣୀ ରଖା ଯାଇଥିଲା । ସରିସୃପଗୁଡିକୁ ଦେଖିସାରି ଆମେ ଚିଡିଆଖାନାର ବାହାର ଗେଟ୍ ପାଖକୁ ଆସି ସେଠାରେ ସମସ୍ତେ ଆସିବା ପର୍ଯ୍ୟନ୍ତ ଅପେକ୍ଷା କଲୁ । ସମସ୍ତେ ଆସିଲା ପରେ ଗୋଟିଏ ହୋଟେଲ୍‌ରେ ଯାଇ ଖାଇଲୁ । ଉପର ବେଳାକୁ ଜାତୀୟ ପାଠାଗାର ଦେଖିବାକୁ ଗଲୁ । ସେଠାରେ ବୁଲାବୁଲି କରି ଫେରିଲୁ । ସେଠାରୁ ଏସ୍‌ପ୍ଲାନେଡ୍ ଗଲୁ । ଏସ୍‌ପ୍ଲାନେଡ୍‌ରେ ବୁଲାବୁଲି କରି ମ୍ୟୁଜିୟମ୍‌ଆଡେ ଗଲୁ । ମ୍ୟୁଜିୟମ୍‌ରେ ଅନେକଗୁଡିଏ ପ୍ରାଣୀଙ୍କର ଅସ୍ଥି କଙ୍କାଳ ରଖା ହୋଇଥିଲା । ଆଉ କେତେ ଜାଗାରେ ପୁରାତନ ଯୁଗର ପଥରମୂର୍ତ୍ତି ରଖାଯାଇଥିବା ଦେଖିଲୁ ।

ମ୍ୟୁଜିୟମ୍‌ରୁ ଫେରି ଭିକ୍ଟୋରିଆ ମେମୋରିଆଲ୍ ହଲ୍ ଦେଖିବାକୁ ଗଲୁ । ତା'ପରେ ଅନ୍ୟ ସାଙ୍ଗମାନେ ଏସ୍‌ପ୍ଲାନେଡ୍‌ରୁ ସବୁ ଜିନିଷ ପତ୍ର କିଣାକିଣି କଲେ । ମୁଁ ଖାଲି ତାଙ୍କ ସାଙ୍ଗରେ ଯାଇଥାଏ କାରଣ ମୋ ପାଖରେ କିଣିବା ସେତେବେଳେ ପାଇଁ ପଇସା ନ'ଥାଏ । ରାତି ନଅଟା ବେଳେ ଫେରି ହୋଟେଲ୍‌ରେ ପହଁଞ୍ଚିଲୁ । ସେହି ହୋଟେଲ୍ ପାଖରେ 'ଗଣେଶ ଟକିଜ' ନାମରେ ଗୋଟିଏ ସିନେମା ହଲ୍ ଥିଲା । ଆମେ କେତେଜଣ ମିଶି ସିନେମା ଦେଖିବାକୁ ଗଲୁ । ଦେଖିଥିବା ଚଳଚ୍ଚିତ୍ର ନାଁଟି ଏବେ ମୋର ମନେନାହିଁ । ତାପରେ ଆସି ହୋଟେଲ୍‌ରେ ଶୋଇଲୁ । ପର ଦିନ ସକାଳୁ ଆଚାର୍ଯ୍ୟପ୍ରଫୁଲ ଚନ୍ଦ୍ର ରୋଡରେ ଥିବା କଲିକତା ବିଶ୍ୱବିଦ୍ୟାଳୟ ଦେଖିଲୁ । ୧୮୫୭ ଖ୍ରୀଷ୍ଟାବ୍ଦରେ କଲିକତା ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇଥିଲା । କଲିକତା ବିଶ୍ୱବିଦ୍ୟାଳୟ ବୁଲାବୁଲି କରି ଆମେ ଶିବପୁରରେ ଉଦ୍ଭିଦ ଉଦ୍ୟାନ (Botanical Garden) ଦେଖିବାକୁ ଗଲୁ । ଉଦ୍ୟାନରେ ଗୋଟିଏ ବହୁ ପୁରୁଣା ବରଗଛ ଥାଏ । ସେହି ବର ଓହଳରେ ଆମ ଭିତରୁ କେତେ ଜଣ ଦୋଳି ଖେଳିଲେ । ଆମର ସେହି ଦିନ ପୁରୀ ଫେରି ଯିବାକୁ ଥିବାରୁ, ସଂଧ୍ୟା ପୂର୍ବରୁ ହୋଟେଲ୍‌କୁ ଚାଲି ଆସିଲୁ । ଆମର ପୁରୀ ଏକ୍ସପ୍ରେସ୍‌ରେ ଫେରିବା ପାଇଁ ସ୍ଥିର ହୋଇଥିଲା । ତେଣୁ ଆମେ, ସାଙ୍ଗେସାଙ୍ଗେ ହୋଟେଲ୍‌ରୁ ଜିନିଷପତ୍ର ଧରି ହାଓଡା ଷ୍ଟେସନ୍‌ରେ ପହଁଞ୍ଚିଲୁ ଏବଂ ଗାଡି ଧରିଲୁ । ତା ପରଦିନ ସକାଳେ ଆସି ପୁରୀରେ ପହଁଞ୍ଚିଲୁ ।

ସେତେବେଳେ ବର୍ତ୍ତମାନ ପରି ଟ୍ରେନ୍‌ରେ ସ୍ଥାନ ସଂରକ୍ଷଣର(Reservation) ବ୍ୟବସ୍ଥା ନ'ଥିଲା । ତେଣୁ ସିଟ୍ ପାଇବାକୁ ହେଲେ କୌଣସି ଷ୍ଟେସନ୍‌ରେ ଗାଡିରେ ଚଢିଲା

ବେଳେ ଆମକୁ କୁହା ହୋଇଥିଲା, ଦୁଇ କିମ୍ବା ତିନିଜଣ ଏକାଠି ଲେଖାଏଁ ଗୋଟିଏ ଡବାରେ ଚଢିଯିବାକୁ । କାରଣ ୨୦ କିମ୍ବା ୨୨ ଜଣ ଲୋକ ଏକାଠି ଗୋଟିଏ ଡବାରେ କେବେ ଚଢିବା ସମ୍ଭବପର ନୁହେଁ । ଏବେ ଡବାରେ ଚଢିଲା ପରେ ବସିବାକୁ ତ ଜାଗା ପାଉ ନ'ଥାଉ, କିନ୍ତୁ କିଛି ସମୟ କଥାବାର୍ତ୍ତା ପରେ ଯେତେବେଳେ ଅନ୍ୟ ଯାତ୍ରୀମାନେ ଜାଣିଲେ ଆମେ ପୁରୀ ଜଗନ୍ନାଥ ଧାମରୁ ଆସିଛୁ ବୋଲି ସେମାନେ ଆମକୁ ଡାକି ପାଖରେ ବସାଇଲେ ଏବଂ ଜଗନ୍ନାଥଙ୍କ କିମ୍ବା ରଥଯାତ୍ରା ବିଷୟରେ ଆମଠାରୁ ପଚାରି ବୁଝିଲେ । ତେଣୁ ଆମର ଯିବାର ସୁବିଧା ହୋଇଯାଉଥାଏ । ଆମେ ଗାଡିରେ ଚଢିଲା ବେଳେ କିପରି ଜଗନ୍ନାଥଙ୍କ କଥା କହିବୁ ଭାବୁଥାଉ । ପ୍ରଭୁଙ୍କ କୃପାରୁ ପ୍ରାୟ ସବୁ ସମୟରେ ଆମେ ସୁବିଧା ପାଇଯାଉ ଥିଲୁ । ଯାତ୍ରୀଙ୍କ ସହ କଥାବାର୍ତ୍ତା ବେଳେ କେତେକ ଆମକୁ ଜାତିଭେଦ କଥା ପଚାରୁଥାନ୍ତି । ଆମେ କହୁ, "ଜଗନ୍ନାଥଙ୍କ ପାଖରେ ଜାତିଭେଦ କିଛି ନାହିଁ । ଯେ କୌଣସି ଲୋକ ତାଙ୍କୁ ରଥଯାତ୍ରା ବେଳେ ଛୁଇଁ ପାରିବ ଏବଂ ତାଙ୍କୁ କୁଣ୍ଢାଇ ମଧ୍ୟ ପାରିବ । ଜଗନ୍ନାଥଙ୍କ ମହାପ୍ରସାଦ ମଧ୍ୟ ବିଭିନ୍ନ ଜାତିର ଲୋକ ଏକାଠି ବସି ଖାଇ ପାରିବେ ସେଥିରେ କିଛି ବାରଣ ନାହିଁ" । ବର୍ଷକ ଭିତରେ ସମସ୍ତଙ୍କ ଘରେ ଯେଉଁ ସବୁ ପର୍ବପର୍ବାଣି ପାଳନ କରାଯାଏ ତାହା ପ୍ରାୟ ସବୁ ଦେଉଳରେ ଅଚ୍ଚେ ବହୁତେ ପାଳିତ ହୁଏ ।

ଗୋଟାଏ ପ୍ରଚଳିତ କିମ୍ବଦନ୍ତୀ ଅଛି, କଳିଙ୍ଗର ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ସ୍ୱପ୍ନାଦେଶ ହେଲା ମୋତେ ଆଣି ପୁରୀରେ ମନ୍ଦିରଟିଏ କରି ପ୍ରତିଷ୍ଠା କର । ଏହାପରେ ରାଜ୍ୟର ରାଜପୁରୋହିତ ଶ୍ରୀ ବିଦ୍ୟାପତିଙ୍କୁ, ଶବରରାଜା ନୀଳ ମାଧବଙ୍କୁ କେଉଁଠି ରଖି ଅଛନ୍ତି, ତାହାର ସଂନ୍ଧାନ ନେବା ପାଇଁ ପଠାଇଲେ । ମନ୍ତ୍ରୀ ଖୋଜି ଖୋଜି ଯାଇ ଶେଷରେ ବିଶ୍ୱାବସୁଙ୍କ ଘରେ ଆଶ୍ରୟ ନେଲେ । ଶବର ରାଜାଙ୍କ ଝିଅ ଲଳିତା, ବିଦ୍ୟାପତିଙ୍କର ସେବା କରିବା ଅବସରରେ ଦୁହେଁ ଦୁହିଁଙ୍କୁ ଭଲ ପାଇବାକୁ ଲାଗିଲେ । ପରେ ବିଦ୍ୟାପତି, ଶବର ରାଜାଙ୍କ ଅନୁରୋଧ କ୍ରମେ ତାଙ୍କ କନ୍ୟାର ପାଣି ଗ୍ରହଣ କଲେ । ଏହାପରେ ବିଦ୍ୟାପତି ଜାଣିଲେ, ଶବର ରାଜା ନୀଳମାଧବଙ୍କୁ କେଉଁଠି ରଖି ପୂଜା କରୁଛନ୍ତି । ବିଦ୍ୟାପତିଙ୍କ ଅନୁରୋଧ କ୍ରମେ ବିଶ୍ୱାବସୁ, ତାଙ୍କୁ ନୀଳମାଧବଙ୍କୁ ଦର୍ଶନ କରାଇଦେବାକୁ ରାଜି ହେଲେ । କିନ୍ତୁ କହିଲେ ବାଟ ଦେଖାଇ ପାରିବି ନାହିଁ । ବିଦ୍ୟାପତିଙ୍କ ଆଖିରେ ପଟି ବାନ୍ଧି ନେଲାବେଳେ ସେ ସାଙ୍ଗରେ କିଛି ସୋରିଷ ନେଇଥିଲେ । ସୋରିଷକୁ ଯିବା ବାଟରେ ବୁଣି ବୁଣି ଗଲେ । ପରେ ବିଦ୍ୟାପତି ସୋରିଷ ଗଛକୁ ଦେଖି ଦେଖି ନୀଳମାଧବଙ୍କ ପାଖରେ ପହଞ୍ଚିଲେ । କିନ୍ତୁ ନୀଳମାଧବ ମିଳିଲେ ନାହିଁ । ଶୂନ୍ୟବାଣୀ ହେଲା ଯେ, ବାଙ୍କୀ ମୁହାଣରେ ମୁଁ ଦାରୁ ରୂପରେ ପ୍ରକଟ ହେବି । ତୁମେ ସେହି ଦାରୁକୁ ଆଣି ବିଗ୍ରହ ତିଆରି କରି ପ୍ରତିଷ୍ଠା କରିବ । ନିର୍ଦ୍ଦିଷ୍ଟ ଦିନ ରାଜା ବାଙ୍କୀ ମୁହାଣ ଠାରେ ଦେଖିଲେ ଯେ ଗୋଟିଏ ବଡ କାଠଗଡ ସମୁଦ୍ର ମୁହାଣରେ ଭାସୁଛି । ସେହି କାଠଗଡଟିକୁ ଆଣି ଗୋଟିଏ ବୁଢା ବଢେଇକୁ ଡାକି ମୂର୍ତ୍ତି ତିଆରି କରିବାର ଆୟୋଜନ କଲେ । ବୁଢା ବଢେଇଟି ନିବୁଜ କୋଠରୀ ଭିତରେ ପ୍ରତିମା ଗଢିବାକୁ ସର୍ତ୍ତ ରଖିଲା । ଏଥିପାଇଁ ୨୧ ଦିନ ଲାଗିବ । ସେହି ୨୧ ଦିନ ଭିତରେ କେହି ଦୁଆର ଖୋଲିବେ ନାହିଁ । ମୁଁ କିଛି ଖାଇବି ନାହିଁ । ପ୍ରଥମେ ପ୍ରଥମେ କେତେଦିନ ପର୍ଯ୍ୟନ୍ତ ନିବୁଜ

କୋଠରୀରୁ ଶବ୍ଦ ଶୁଣା ଯାଉଥିଲା । କିନ୍ତୁ ୨୧ ଦିନ ପୂରିବାକୁ ଅଳ୍ପ କେତେ ଦିନ ବାକି ଅଛି ଆଉ ଶବ୍ଦ ଶୁଣାଗଲା ନାହିଁ । କାରିଗର ମରି ଯାଇଥିବ ଭାବି ରାଣୀ ଗୁଣ୍ଡିଚା ଦେବୀ କବାଟ ଖୋଲିଦେଲେ । ରାଜା ଦେଖିଲେ ତିନି ଗୋଟି ମୂର୍ତ୍ତି ଅସଂପୂର୍ଣ୍ଣ ହୋଇ ରହିଛି । କିନ୍ତୁ କାରିଗର ଅନ୍ତର୍ଦ୍ଧାନ । ଏଣୁ ରାଜା ବ୍ୟସ୍ତ ହୋଇ ପଡିଲେ । ଶୂନ୍ୟବାଣୀ ହେଲା ଯେ - ସେହି ଅସଂପୂର୍ଣ୍ଣ ବିଗ୍ରହକୁ ପୂଜାକର । ତେଣୁ ରାଜା, ସେହି ଅର୍ଦ୍ଧନିର୍ମିତ ବିଗ୍ରହକୁ ମନ୍ଦିରରେ ପ୍ରତିଷ୍ଠା କଲେ । ରାଣୀଙ୍କ ଅନୁରୋଧ କ୍ରମେ, ଗୁଣ୍ଡିଚା ଯାତ୍ରାର ଆୟୋଜନ ହେଲା । ଗୁଣ୍ଡିଚାଯାତ୍ରାରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ତିନି ରଥରେ ବସି ମାଉସୀଙ୍କ ଘରକୁ ଯାତ୍ରା କରନ୍ତି । ୯ ଦିନ ରହଣି ପରେ, ପୁଣି ଦେଉଳକୁ ଫେରି ଆସନ୍ତି । ଜଗନ୍ନାଥଙ୍କ ମନ୍ଦିରରେ ଜନ୍ମାଷ୍ଟମୀ, ଝୁଲଣ ପୂର୍ଣ୍ଣିମା, ଗଜଉଦ୍ଧାରଣ ପ୍ରଭୃତି କେତେ ପର୍ବ ପାଳିତ ହୋଇଥାଏ । ପ୍ରତି ପର୍ବରେ ତିନିମୂର୍ତ୍ତି ପ୍ରାୟ ଭିନ୍ନ ଭିନ୍ନ ବେଶରେ ଭକ୍ତମାନଙ୍କୁ ଦେଖା ଦିଅନ୍ତି । ଜଣାଯାଏ ଯେ, ଜଗନ୍ନାଥଙ୍କ ଠାରେ, ପ୍ରାୟ ୫୬ ପ୍ରକାରର ଭୋଗ ଲାଗେ । ସାଧାରଣ ମଣିଷଙ୍କ ପରି ସେ ଦାନ୍ତ ଘଷନ୍ତି, ଗାଧାନ୍ତି ଓ ରାତିରେ ଶୋଇବାକୁ ଯିବା ପୂର୍ବରୁ ଦେବଦାସୀମାନେ ତାଙ୍କ ଆଗରେ ନୃତ୍ୟ ପ୍ରଦର୍ଶନ କରନ୍ତି । ତା'ପରେ ଦେଉଳ ଦ୍ୱାର ବନ୍ଦ କରାଯାଏ ।

ରଥଯାତ୍ରାରେ ପ୍ରତିବର୍ଷ ନୂଆକରି ରଥ ନିର୍ମାଣ କରାଯାଏ । ରଥ କାଠ ସବୁ ଓଡିଶା ଜଙ୍ଗଲରୁ ଆସେ । ଅକ୍ଷୟ ତୃତୀୟା ଦିନ ରଥ ତିଆରି କାମ ଆରମ୍ଭ ହୁଏ । ଦେବସ୍ନାନ ପୂର୍ଣ୍ଣିମା ଦିନ ଜଗନ୍ନାଥ ମନୁଷ୍ୟ ପରି ଗାଧାନ୍ତି । ତାଙ୍କୁ ଜ୍ୱର ହୁଏ । ପନ୍ଦର ଦିନ ସେ କାହାକୁ ଦେଖା ନ'ଦେଇ ଗମ୍ଭୀରାରେ ରୁହନ୍ତି । ତାକୁ ଅଣସର ଘର କୁହାଯାଏ । ଏହାର ପନ୍ଦର ଦିନ ପରେ, ଦେଖାଦିଅନ୍ତି ! ତାହାକୁ 'ନବଯୌବନ ଦର୍ଶନ' ବୋଲି କୁହାଯାଏ । ତା'ପରେ ଗୁଣ୍ଡିଚାଯାତ୍ରା ପର୍ବପଡେ ।

ବେଳେ ବେଳେ ଟ୍ରେନ୍‌ରେ ଯିବାବେଳେ ଯାତ୍ରୀମାନେ ଆମ୍ଭମାନଙ୍କୁ ଜଗନ୍ନାଥଙ୍କର ନବକଳେବର ବିଷୟରେ ପଚାରନ୍ତି । ଏହାର ଉତ୍ତର ଦେବାକୁଯାଇ ମୁଁ କହେ ଭାରତର କୌଣସି ଦେବାଦେବୀଙ୍କର ଏପରି ପ୍ରଥା ନାହିଁ । ମୁଁ ଆଗରୁ କହିଛି, ଜଗନ୍ନାଥଙ୍କର ଦୈନନ୍ଦିନ କାର୍ଯ୍ୟସୂଚୀ ମନୁଷ୍ୟ ମାନଙ୍କ ନିତ୍ୟନୈମିତ୍ତିକ କର୍ମପରି । ଏହି 'ନବକଳେବର' ପ୍ରଥା ଠିକ୍ ସେହିପରି । ଦଶ ବାର ବର୍ଷରେ ଗୋଟିଏ ନିର୍ଦ୍ଦିଷ୍ଟ ଯୋଗ ପଡିଲେ, ନବକଳେବର ହୁଏ । ନବକଳେବରର ପ୍ରାୟ ପାଞ୍ଚ ଛଅମାସ ଆଗରୁ ଜଗନ୍ନାଥଙ୍କର କେତେକ ସେବକ କାକଟପୁର ମଙ୍ଗଳାଙ୍କ ପାଖରେ ଅଧିଆ ପଡନ୍ତି ଜଗନ୍ନାଥଙ୍କର ଦାରୁ (ଗଛ) ସନ୍ଧାନ ପାଇଁ । ମଙ୍ଗଳାଙ୍କଠାରୁ ସ୍ୱପ୍ନାଦେଶ ପାଇଲେ, ଓଡିଶାର ସେହି ସ୍ଥାନକୁ ଯାଇ ଖୋଜନ୍ତି । ଯେଉଁ ଗଛରେ ସାପ ବାସ କରୁଥାଏ, ଚକ୍ର ଚିହ୍ନ ଥାଏ, ପାଖରେ ବେଲ ଗଛ, ଚମ୍ପା ଗଛ, ନିମ୍ବ ଗଛ ଥାଏ, ସେହି ଗଛ, ଦାରୁ ପାଇଁ ଉପଯୁକ୍ତ ବିବେଚିତ ହୋଇଥାଏ । ସେମାନେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ପାଇଁ ତିନୋଟି ନିମ୍ବ ଗଛ ତିନୋଟି ଜାଗାରେ ଚିହ୍ନଟ କରି ଆସନ୍ତି । ନିର୍ଦ୍ଦିଷ୍ଟ ଶୁଭ ତିଥି ଯୋଗରେ ପୂଜା ପାଠ କରାଯାଇ ଦାରୁ ବୃକ୍ଷଗୁଡିକୁ କଟାଯାଏ ଓ ଗଣ୍ଡି ଗୁଡିକ ଶଗଡିରେ ପୁରୀକୁ ଅଣାଯାଏ । ପୁରୀରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ତିନୋଟି ମୂର୍ତ୍ତି ତିଆରି କରାଯାଏ ।

ମୂର୍ତ୍ତି ତିଆରି ହେବା କେବେ ମୁଁ ଦେଖିନାହିଁ ଆଉ କିଏ ଦେଖିବାର ଶୁଣିନାହିଁ । ମୂର୍ତ୍ତି ତିଆରି ସରିଲେ ପୂର୍ବରୁ ଥିବା ମୂର୍ତ୍ତି ମଧ୍ୟରେ ରଖାଯାଇଥିବା ବ୍ରହ୍ମକୁ ଜଗନ୍ନାଥଙ୍କର ଜଣେ ବୃଦ୍ଧ ସେବକ ହାତରେ କନା ବାନ୍ଧି ପୁରୁଣା ମୂର୍ତ୍ତିରୁ ବାହାର କରି ନୂତନ ମୂର୍ତ୍ତିରେ ସ୍ଥାପନ କରିବାର ପରଂପରା ଅଛି । କୁହାଯାଏ କେତେଦିନ ପରେ ସେହି ସେବକର ମୃତ୍ୟୁ ହୋଇଯାଏ । ଏହାକୁ ଜଗନ୍ନାଥଙ୍କର ନବଯୌବନ ଦର୍ଶନ କୁହାଯାଏ । ପୁରୁଣା ମୂର୍ତ୍ତିକୁ କୋଇଲି ବୈକୁଣ୍ଠରେ ସମାଧି ଦିଆଯାଏ ।

## ପୁରୁଷୋତମ ଦେବଙ୍କ କାଞ୍ଚି ଅଭିଯାନ

୧୪୭୦ ସାଲରେ ପୁରୁଷୋତ୍ତମ ଦେବ ଦାକ୍ଷିଣାତ୍ୟ ଅଭିଯାନରେ ଯାଇଥିଲେ । ସେହି ଅଭିଯାନ ସମୟରେ କାଞ୍ଚି ରାଜକନ୍ୟା ପଦ୍ମାବତୀଙ୍କ ସହିତ ପ୍ରଣୟ ଜାତ ହୋଇଥିଲା । ତେଣୁ ପ୍ରବାଦ ଅଛି ପୁରୁଷୋତ୍ତମ ଦେବ ପଦ୍ମାବତୀଙ୍କ ସଙ୍ଗେ ବିବାହ କରିବା ପାଇଁ ଇଚ୍ଛାକରି କାଞ୍ଚିରାଜାଙ୍କ ସହିତ ବନ୍ଧୁତା ସୂତ୍ରରେ ଆବଦ୍ଧ ହେଲେ । ପରେ କାଞ୍ଚିରାଜ୍ୟର ମନ୍ତ୍ରୀ ରଥଯାତ୍ରା ସମୟରେ ପୁରୀ ଆସିଥିଲେ । ସେଠାରେ ପୁରୁଷୋତ୍ତମ ଦେବ ଜଗନ୍ନାଥଙ୍କ ରଥରେ ଛେରାପହଁରା କରୁଥିବାର ଦେଖି କାଞ୍ଚିରାଜାଙ୍କୁ ଜଣାଇଲେ । ଛେରା ପହଁରା ଏକ ନିମ୍ନଜାତି ଲୋକର କା଼ର୍ଯ୍ୟ । ତେଣୁ କାଞ୍ଚିରାଜା ତାଙ୍କ କନ୍ୟାଙ୍କୁ ବିବାହ ଦେବାଲାଗି ମନାକରିଦେଲେ । ପୁରୁଷୋତ୍ତମଦେବ କାଞ୍ଚି ଆକ୍ରମଣ କଲେ ଏବଂ ପରାସ୍ତ ମଧ୍ୟ ହୋଇଥିଲେ । ତେଣୁ ଜଗନ୍ନାଥଙ୍କ ପାଖରେ ଅଧିଆ ପଡି ଦୁଃଖ ଜଣାଇଲେ । ତାପରେ ପୁନର୍ବାର କାଞ୍ଚି ଅଧିକାର କରିବା ପାଇଁ ଅଭିଯାନ କଲେ । ଜଗନ୍ନାଥ ଓ ବଳଭଦ୍ର ପୁରୀ ରାଜାଙ୍କ ସହିତ ଯୁଦ୍ଧପାଇଁ ଯାଉଥିଲେ । ବାଟରେ ମାଣିକ ନାମରେ ଜଣେ ଗଉଡୁଣୀ ଦହି ବିକ୍ରି କରୁଥିବା ଦେଖି ତାଠାରୁ ଦହି ଖାଇଥିଲେ । ଗଉଡୁଣୀ କଉଡି ମାଗିବାରୁ ଜଗନ୍ନାଥ ତାଙ୍କ ଆଙ୍ଗୁଠିରୁ ରତ୍ନ ମୁଦ୍ରିକାଟିକୁ କାଢି ଗଉଡୁଣୀଙ୍କୁ ଦେଇ କହିଲେ, ପଛରେ ରାଜା ଆସୁଛନ୍ତି ତାହାଙ୍କୁ ଏହି ମୁଦ୍ରିକା ଦେଖାଇ କଉଡି ନେଇଯିବୁ । କିଛି ସମୟ ପରେ ରାଜା ସୈନ୍ୟମାନଙ୍କ ସହିତ ସେଠାରେ ପହଁଞ୍ଚିଲେ । ଗଉଡୁଣୀ ରାଜାଙ୍କୁ ରତ୍ନ ମୁଦ୍ରିକା ଦେଇ କଉଡି ମାଗିଥିଲା । ରାଜା ଜଗନ୍ନାଥଙ୍କ ରତ୍ନ ମୁଦ୍ରିକା ଦେଖି କହିଲେ ତୁହିଏକା ଭାଗ୍ୟବାନ, ଯେ'କି ସ୍ୱଚକ୍ଷୁରେ ଜଗନ୍ନାଥ ଓ ବଳଭଦ୍ରଙ୍କୁ ଦେଖି ପାରିଲୁ । ତେଣୁ ମାଣିକ ଗଉଡୁଣୀ ନାମରେ ସେହି ସ୍ଥାନକୁ ମାଣିକପାଟଣା ନାମରେ ନାମକରଣ କଲେ । ଏବେ ମଧ୍ୟ ମାଣିକପାଟଣାରେ ପ୍ରସ୍ତୁତ ହେଉଥିବା ଦହି ସୁସ୍ୱାଦୁ ଲାଗେ ।

ତାପରେ ରାଜାଙ୍କ ସହିତ ଜଗନ୍ନାଥ ଯୁଦ୍ଧ କ୍ଷେତ୍ରକୁ ଯାଉଥିବାର ଜାଣି ନିର୍ଭୟରେ କାଞ୍ଚି ଆକ୍ରମଣ କଲେ । କାଞ୍ଚି ରାଜାଙ୍କୁ ପରାସ୍ତ କରି ପୁରୁଷୋତ୍ତମ ଦେବ ପଦ୍ମାବତୀଙ୍କୁ ଆଣି ତାଙ୍କ ମନ୍ତ୍ରୀଙ୍କୁ କହିଲେ, ତୁମେ ପଦ୍ମାବତୀଙ୍କୁ ଏକ ଚଣ୍ଡାଳ ହାତରେ ଦେଇଦେବ । ଏହା ଭିତରେ ପୁଣି ରଥଯାତ୍ରା ପଡିଲା । ସେହି ସମୟରେ ରାଜା ଛେରାପହଁରା କରୁଥିବା ସମୟରେ ମନ୍ତ୍ରୀ ରାଜାଙ୍କ ହାତରେ ପଦ୍ମାବତୀଙ୍କୁ ସମର୍ପଣ କରିଦେଲେ ଏବଂ କହିଲେ ଆପଣ ବର୍ତ୍ତମାନ ଚଣ୍ଡାଳର କାମ କରୁଛନ୍ତି ତେଣୁ ମୁଁ ଆପଣଙ୍କୁ ପଦ୍ମାବତୀଙ୍କୁ ସମର୍ପଣ କଲି । ରାଜା ପୁରୁଷୋତ୍ତମ ଦେବ ପଦ୍ମାବତୀଙ୍କୁ ପାଟରାଣୀ କରି ରଖିଲେ ।

## ପାଥରପୁରୀ ଛାତ୍ରାବାସରେ ଅଭିଜ୍ଞତା

ଏବେ ପୂର୍ବ କଥାରୁ କହୁଛି ଶ୍ରେଣୀ ପରୀକ୍ଷାରେ ଉର୍ତ୍ତୀର୍ଣ୍ଣ ହୋଇ ଦ୍ୱିତୀୟ ବର୍ଷକୁ ଗଲି । କିନ୍ତୁ ମୁଁ ଛାତ୍ରାବାସରେ ରହିବା ପାଇଁ ଆସିବା ବେଳକୁ ଜାଣିଲି, ଯେ ପ୍ରଥମ ଛାତ୍ରାବାସଟି ବନ୍ଦ ହୋଇଯାଇଛି ଓ ସେଠାରେ କଲେଜର କ୍ଲାସ୍ ହେଉଛି । ଯେଉଁମାନେ ପ୍ରଥମ ଛାତ୍ରାବାସରେ ଥିଲେ, ସେମାନଙ୍କୁ ପାଥରପୁରୀ ଛାତ୍ରାବାସରେ ରହିବାକୁ ଜାଗା ଦିଆଯାଇଛି । ଏଣୁ ମୁଁ ପ୍ରଥମେ ଯାଇ ତଳମହଲାରେ ରହିଲି

ସେତେବେଳେ ଇତିହାସ ଅଧ୍ୟାପକ ଶ୍ରୀ ରାଜେନ୍ଦ୍ର କୁମାର ଦାସ, ପାଥରପୁରୀ ଛାତ୍ରାବାସର ପରିଚାଳନା ଦାୟିତ୍ୱରେ ଥିଲେ । ଏକ ନମ୍ବର ଛାତ୍ରାବାସର ସବୁପିଲା ପାଥରପୁରୀକୁ ସ୍ଥାନାନ୍ତର ହୋଇଥିବାରୁ କିଏ କେଉଁ କୋଠରୀରେ ରହିବ, ତାହାର କିଛି ଠିକଣା ହୋଇ ନ'ଥିଲା । ମୁଁ ପାଥରପୁରୀରେ ପହଞ୍ଚିଲା ବେଳକୁ ଅନ୍ୟ ପିଲାମାନେ ଆସି ଭଲ ଜାଗାବାଛି ରହିଯାଇଥିଲେ । ତେଣୁ ମୁଁ ତଳ ମହଲାରେ ଥିବା ଗୋଟିଏ ଚାରିଜଣିଆ କୋଠରୀରେ ରହିଲି । କିନ୍ତୁ ଭାରି ଇଚ୍ଛା ଥିଲା, ଉପର ମହଲାରେ ଗୋଟିଏ କୋଠରୀରେ ରହିବା ପାଇଁ । ତେଣୁ ମୁଁ ପରିଚାଳକଙ୍କୁ ଅନୁରୋଧ କଲି ମୋତେ ଉପର ମହଲାରେ ଗୋଟିଏ ସିଟ୍ ଦେବାକୁ । ସେ କହିଲେ "ବର୍ତ୍ତମାନ ମୁଁ ଦେଇ ପାରିବି ନାହିଁ ।" ଉପର ମହଲାରେ ଖାଲି ହେଲେ ତୁମକୁ ସିଟ୍ ଦେବି । ଯୋଗକୁ ଦୁଇମାସ ପରେ ଉପର ମହଲାରେ ଗୋଟିଏ ସିଟ୍ ଖାଲି ହେଲା । ମୁଁ ସେହି ସିଟ୍‌ରେ ଯାଇ ରହିଲି । ସେହି କୋଠରୀରେ ଶ୍ରୀ ଶ୍ୟାମସୁନ୍ଦର ଚୌଧୁରୀ ନାମକ ଜଣେ ଚତୁର୍ଥ ବାର୍ଷିକ କଳାଛାତ୍ର ରହୁଥିଲେ । ମୁଁ ଯାଇ ସେହି କୋଠରୀରେ ରହିଲି । ତାର କେତେଦିନ ପରେ ଶ୍ୟାମସୁନ୍ଦର ଚୌଧୁରୀ ମୋତେ କହିଲେ "ତୁମେ ଯାଅ ଦଶ ନମ୍ବର କୋଠରୀରେ ସର୍ବେଶ୍ୱର ଆଚାର୍ଯ୍ୟଙ୍କ ପାଖରେ ରହିବ । ସେଠାରେ ରହୁଥିବା ବାଲାଜୀ ପଣ୍ଡା ନାମକ ଜଣେ ଚତୁର୍ଥ ବାର୍ଷିକ ଛାତ୍ର ଆସି ମୋ କୋଠରୀରେ ରହିବେ ।" ବିଲେଇ କପାଳକୁ ଶିକା ଛିଣ୍ଡିଲାପରି ମୁଁ ଯେଉଁ ସୁଯୋଗ ଖୋଜୁଥିଲି, ପାଇଲି ।

କଲେଜ ନିର୍ବାଚନରେ ସେତେବେଳେ ସଭାପତି ପଦ ପାଇଁ ଦୁଇଜଣ ପାର୍ଥୀ ଛିଡା ହୋଇଥିଲେ । ଜଣେ ହେଉଛନ୍ତି ଶ୍ରୀ ଶ୍ୟାମସୁନ୍ଦର ଚୌଧୁରୀ । ସେ ବୋଧେ କୌଣସି ଦଳର ନ' ଥିଲେ । ଅନ୍ୟ ଜଣଙ୍କ ନାମ ହେଉଛି ଶ୍ରୀ କମଳକୁମାର ମିଶ୍ର । ସେ ହେଉଛନ୍ତି ଛାତ୍ରସଂଘର ପ୍ରତିନିଧି । ଯେହେତୁ ମୁଁ ପୁରୀ ଜିଲ୍ଲା ଛାତ୍ରସଂଘର ଯୁଗ୍ମ ସଂପାଦକ ଥିଲି । ମୋତେ କମଳକୁମାର ମିଶ୍ରଙ୍କ ପ୍ରଚାର କରିବା ପାଇଁ ଅନୁରୋଧ କରାଯାଇଥିଲା । କିନ୍ତୁ ସେମାନଙ୍କୁ ମନା କରିଥିଲି । ମୁଁ ମନା କରିବାର କାରଣ ହେଉଛି ସେତେବେଳକୁ ଭାରତ ସ୍ୱାଧୀନ ହୋଇ ଯାଇଥାଏ । ମୁଁ ଭାବିଲି ଛାତ୍ରସଂଘର ଆଉ ଆବଶ୍ୟକତା ନାହିଁ । ଯାହାହେଉ ସେହି ନିର୍ବାଚନରେ ଶ୍ରୀ ଶ୍ୟାମସୁନ୍ଦର ଚୌଧୁରୀ ନିର୍ବାଚିତ ହୋଇଥିଲେ ।

ଦିନେ ସଂଧ୍ୟାବେଳେ ମୁଁ କୋଠରୀରେ ପଢୁଛି, ଏହି ସମୟରେ ଛାତ୍ରାବାସର ପିଅନ ଆସି କହିଲା, ଆପଣଙ୍କୁ ପରିଚାଳକ ଡାକୁଛନ୍ତି । ଡ୍ରାମାରେ ଭାଗ ନେବା ପାଇଁ । ସେତେବେଳେ ଇକୋନୋମିକ୍ସର ଅଧ୍ୟାପକ ଶ୍ରୀ ଦୟାନିଧି ମହାପାତ୍ର ଛାତ୍ରାବାସର ପରିଚାଳକ ଥାଆନ୍ତି । ମୁଁ

ତାଙ୍କ ପାଖରେ ପଢ଼ିଛିଲାକ୍ଷଣି ସେ ମୋତେ କହିଲେ "ତୁମେ ଗୋଟିଏ ନିର୍ଦ୍ଦିଷ୍ଟ ଭୂମିକାରେ ଅଭିନୟ କରିବାକୁ ଏକା ଉପଯୁକ୍ତ ଅଟ" । ମୁଁ କହିଲି କେବେ ଅଭିନୟ କରିନାହିଁ । ତେଣୁ ବୋଧେ ଅଭିନୟ କରିପାରିବି ନାହିଁ । ମାତ୍ର ଅଭିନୟଟି ଥିଲା "କାଙ୍ଗାଳ" ଭୂମିକାରେ । ସେଥିରେ କିଛି କହିବାକୁ ନ'ଥିଲା । ଖାଲି ଛିଡା ହୋଇ ଖାଇବାକୁ ମାଗିବା । ମୁଁ ସେହି ଅଭିନୟଟି କରିବାକୁ ବାଧ୍ୟ ହେଲି । ମୁଁ ପରେ ବୁଝି ପାରିଲି ପରିଚାଳକ ମୋତେ "କାଙ୍ଗାଳ" ଅଭିନୟଟି କରିବା ପାଇଁ କାହିଁକି କହିଲେ । କାରଣ ସେତେବେଳେ ମୋର ଚେହେରା ଅତି ଦୁର୍ବଳ ଥିଲା । ଏହାପରେ ଆଉ ଜୀବନରେ କୌଣସି ଅଭିନୟ କରିନାହିଁ ।

ସେହି ବର୍ଷ ଛାତ୍ରାବାସର କିମ୍ବା କଲେଜର ବାର୍ଷିକ ଉତ୍ସବରେ ଶ୍ରୀ ସାତକଡି ହୋତା ନାମକ ଜଣେ ଚତୁର୍ଥ ବାର୍ଷିକ ଛାତ୍ରଙ୍କ ଦ୍ୱାରା ଲିଖିତ କବିତାଟି ଛାତ୍ରମାନଙ୍କ ଦ୍ୱାରା ଆଦୃତ ହୋଇଥିଲା । ସେହି କବିତାର ବିଶେଷତ୍ୱ ହେଲା ଯେ ସେତେବେଳେ ପୁରୀ କଲେଜରେ ଯେଉଁ ଛାତ୍ରୀମାନେ ପଢୁଥିଲେ, ସେମାନଙ୍କ ନାମ କବିତାରେ ସ୍ଥାନ ପାଇଥିଲା । ପୁରା କବିତାଟି ମୋର ମନେ ନାହିଁ । କେବଳ ଗୋଟିଏ ଗୋଟିଏ ପଦ ଏଠାରେ ଦିଆ ଯାଇଅଛି ।

ସୁନାର ଗୌରାଙ୍ଗ ଦେଖି ମିନାକ୍ଷୀରେ ଗଲା ଲାଗି,
ସୁଧାସାଗରରୁ ଆଶା ଶଶୀ ଆସି କଲା ଭରପୂର ।

(ଏହି ଦୁଇପଦ କବିତାରେ ଅଳ୍ପ କିଛି ଭୁଲ୍ ରହିପାରେ କାରଣ ପ୍ରାୟ ୬୪ ବର୍ଷ ପରେ ମୁଁ ମନେ ପକାଇ ଲେଖୁଛି ।) ସାତକଡି ହୋତାଙ୍କ ନାମ ଆଜି ସାହିତ୍ୟ ଜଗତରେ ବେଶ୍ ଜଣାଶୁଣା ।

ମୁଁ ପଢିବା ସମୟରେ ଶ୍ରୀ ସଦାଶିବ ମିଶ୍ର ନାମକ ଜଣେ ରସାୟନବିଭାଗର ଡେମୋନେଷ୍ଟ୍ରେଟର କଲେଜରେ ଚାକିରି କରୁଥିଲେ । ତାଙ୍କ ଘର ବିଶ୍ୱନାଥପୁର ଗ୍ରାମରେ । ଆମ ଗ୍ରାମ ରାୟଚକ୍ରଧରପୁର ଯିବାକୁ ହେଲେ ବିଶ୍ୱନାଥପୁର ଦେଇ ଯିବାକୁ ହୁଏ । ସେ ମୋତେ ଖୁବ୍ ଭଲ ପାଉଥିଲେ ଏବଂ ଆଇ.ଏସ୍‌ସି ପଢିବା ସମୟରେ ମୋତେ ପୁରୀ କଲେଜ ପାଠାଗାରରୁ ଅନେକ ଦରକାରୀ ବହି ଆଣି ଦେଉଥିଲେ । ତାଙ୍କ ଦ୍ୱାରା ମୁଁ ବହୁତ ଉପକୃତ ହୋଇଥିଲି । ମୁଁ ସେଥିପାଇଁ ତାଙ୍କଠାରେ ଋଣୀ । ମୋର ଦଦେଇପୁଅ ଭାଇ ଶ୍ରୀ ବ୍ରଜବନ୍ଧୁ ମିଶ୍ର କଂସାରି ସାହିରେ ଘର ଭଡା ନେଇ ରହୁଥିଲେ । ମୁଁ ପଢିଲା ବେଳେ, ତାଙ୍କ ଘରକୁ ଅନେକ ଥର ଯାଉଥିଲି । ତାଙ୍କ ଘରେ ତାଙ୍କର ଶଳା, ନାରାୟଣ ମିଶ୍ର ରହୁଥିଲେ । ନାରାୟଣ ମିଶ୍ର ଜଣେ ଭଲ ଛାତ୍ର ଥିଲେ । ସେ ସେତେବେଳେ ଇକୋନୋମିକ୍ସ ଅନର୍ସ ନେଇ ବି.ଏ ପଢୁଥିଲେ । ଯେତେବେଳେ ଶ୍ୟାମସୁନ୍ଦର ଚୌଧୁରୀ ପୁରୀ କଲେଜର ସଭାପତି ପାଇଁ ନିର୍ବାଚନ ଲଢିଲେ ସେତେବେଳେ ପୁରୀ କଲେଜର କେତେକ ଛାତ୍ର ନାରାୟଣ ମିଶ୍ରଙ୍କୁ ସଭାପତି ପଦ ପାଇଁ ନିର୍ବାଚନରେ ଲଢିବାକୁ ପ୍ରବର୍ତ୍ତାଉ ଥିଲେ । କିନ୍ତୁ ସେ ମନା କଲେ । ମୋ ଜାଣିବାରେ ତାଙ୍କ ବାପା ଅତ୍ୟନ୍ତ ଧାର୍ମିକ ଓ ଗରିବ ଲୋକ ଥିଲେ । ନାରାୟଣ ମିଶ୍ର ସେଠାରୁ ବି.ଏ.ପାସ୍ କରି କଟକରେ ଆଇନ୍ ପାଠ ପଢିଲେ । ଆଇନ୍ ପାସ୍ କରି ପୁରୀରେ ଓକିଲାତି କଲେ । ପରେ ଶ୍ରୀ ଆର୍ତ୍ତବନ୍ଧୁ ଦାସ୍‌ଙ୍କର ଝିଅଙ୍କୁ ବିଭା ହେଲେ । ତାଙ୍କ ଶ୍ୱଶୁର ତାଙ୍କୁ ହରଚଣ୍ଡି ସାହିରେ ରହିବା ପାଇଁ ଗୋଟିଏ ଘର ଦେଇଥିବାର ଜାଣେ ।

ମୁଁ ପାଥରପୁରୀରେ ସର୍ବେଶ୍ୱର ଆଚାର୍ଯ୍ୟଙ୍କ କୋଠରୀରେ ରହିଲା ପରେ ମୋର ତାଙ୍କ ସହିତ ବନ୍ଧୁତା ବଢ଼ିଗଲା । ସେ ପ୍ରବେଶିକା ପରୀକ୍ଷାରେ ଅଧିକ ନମ୍ବର ରଖି ପ୍ରଥମ ଶ୍ରେଣୀରେ ପାସ୍ କରିଥିଲେ ଏବଂ କଲେଜ କ୍ଲାସ୍ ପରୀକ୍ଷାରେ ମଧ୍ୟ ଫାଷ୍ଟ ହୋଇଥିଲେ । ମୁଁ ତାଙ୍କ ଭଳି ପଢ଼ୁ ନ'ଥାଏ ବୋଲି ସେ କେବେ ମୋତେ ବେଖାତିର କରୁ ନ'ଥିଲେ । ଏପରିକି ତାଙ୍କ ଘର କଥା ସବୁ କହୁଥିଲେ । ମୁଁ ଏକା କେବଳ ଜାଣିଥିଲି ଯେ ସେ ଦଶମ ଶ୍ରେଣୀରେ ତାରା ନାମକ ଗୋଟିଏ ଝିଅକୁ ବାଲ୍ୟ ବିବାହ କରିଥିଲେ । ସେ ମୋତେ କେତେଥର ତାଙ୍କ ଗ୍ରାମକୁ ଯିବା ପାଇଁ କହିଛନ୍ତି । ମୁଁ କିନ୍ତୁ ତାଙ୍କୁ ପରୀକ୍ଷା ପରେ ଯିବି ବୋଲି କହିଥିଲି ।

ପରୀକ୍ଷା ଦୁଇ ତିନି ମାସ ଥାଏ ବ୍ରଜମୋହନ ସାହୁ ନାମକ ଆମର ଜଣେ ସହପାଠୀ ସେହି ଛାତ୍ରାବାସରେ ରହୁଥିଲେ । ତାଙ୍କର ପଢ଼ିବାରେ ଅସୁବିଧା ହେବାରୁ ସେ ଆମକୁ କହିଲେ ମୁଁ ତୁମ କୋଠରୀରେ ପରୀକ୍ଷା ପର୍ଯ୍ୟନ୍ତ ରହିବି । ସର୍ବେଶ୍ୱର ଏବଂ ମୁଁ ତାଙ୍କୁ ରଖିବା ପାଇଁ ରାଜି ହେଲୁ । ସେ ପରୀକ୍ଷା ସରିବା ପର୍ଯ୍ୟନ୍ତ ଆମ କୋଠରୀରେ ରହିଲେ । ସେହି ସମୟର ଏକ ଘଟଣା ମୁଁ ଏଠାରେ ଉଲେଖ କରୁଛି । ଆମ କୋଠରୀର ଦୁଇଟା ଝରକା ଥାଏ । ଝରକା ଦୁଇଟି ସମୁଦ୍ର ଆଡକୁ ଖୋଲି ହୁଏ । କୋଠରୀର ଗୋଟିଏ କବାଟ ଝରକାର ବିପରୀତ ପାଖକୁ ଥାଏ । ଝରକା ଦୁଇଟି ଏବଂ ଦ୍ୱାର ଖୋଲିଦେଲେ ଜୋର ପବନରେ ବହିପତ୍ର ଓ ଖାତା ପତ୍ର ଉଡାଇ ନିଏ । ତେଣୁ ଆମେ ସବୁବେଳେ ଦୁଆର ଦେଇ ଘରେ ବସୁ । କିନ୍ତୁ ଝରକା ଦୁଇଟି ସବୁବେଳେ ଖୋଲାଥାଏ । ଦୁଆର ଦେହରେ କେତେ ଗୁଡିଏ ଫାଙ୍କ କରା ହୋଇଥାଏ । ଯାହା ଫଳରେ ସେହି ବାଟେ ଥଣ୍ଡା ପବନ ଆସେ । କୋଠରୀରେ ଗରମ ହୁଏ ନାହିଁ । ସେହି ସମୟରେ ଆମେ ତିନିଜଣ ରହିବାରୁ ଆମ ତିନିଜଣଙ୍କ ପାଖରେ କୌଣସି ନା କୌଣସି ଛାତ୍ରଙ୍କର କାମ ପଡେ । ତେଣୁ ସେମାନେ ଡାକିଲେ ଦୁଆର ଖୋଲିବାକୁ ପଡେ । ସେମାନେ ଗଲାପରେ ପୁଣି ଦୁଆର ବନ୍ଦ କରିବାକୁ ପଡେ । ତେଣୁ ଦୁଆର ଖୋଲା ଥିବା ସମୟରେ ସେହି କୋଠରୀରେ ଜମା ପଢ଼ି ହୁଏ ନାହିଁ । ତେଣୁ ସର୍ବେଶ୍ୱର କହିଲେ ଗୋଟିଏ ବ୍ୟବସ୍ଥା ନ'କଲେ ପଢ଼ି ହେବ ନାହିଁ । ଦୁଆରଟି ଦୁଇଫାଳ ଓ ମଝିରେ ଭିତର ପଟୁ ଗୋଟିଏ ବୋଲ୍ଟ ଥାଏ । ଦୁଇ ଦୁଆର ମଝିରେ ମଝିରେ ପବନ ଯିବାଲାଗି ଫାଙ୍କ ରଖା ଯାଇଥାଏ । ଆମର ଅସୁବିଧାର ସମାଧାନ କରିବା ଲାଗି ନିମ୍ନ ପ୍ରକାରେ ବ୍ୟବସ୍ଥା କଲି ।

ଟାୱାର ବୋଲ୍ଟ ଦୁଇପଟେ ଟିକିଏ ଉପରକୁ ଦୁଇଟି ଲୁହା କଣ୍ଟା ବାଡେଇ ଦେଲି । ଟାୱାର ବୋଲ୍ଟର ଭୁଣ୍ଡି ଓ କଣ୍ଟା ଦୁଇଟି ମିଶାଇ ଗୋଟିଏ ରବର ରିଙ୍ଗ୍ ଭିଡି କରି ଲଗାଇ ଦେଲି, ଯେପରି ଟାୱାର ବୋଲ୍ଟଟି ସବୁବେଳେ ଟେକି ହୋଇ ରହିବ । ଟାୱାର ବୋଲ୍ଟରେ ଗୋଟିଏ ସରୁ ଦଉଡି ବାନ୍ଧି ଦୁଆର ଫାଙ୍କ ବାଟେ ବାହାରକୁ ପକାଇ ଦେଲି । ଦୁଆରଟି ଭିତରୁ ଦିଆଯାଇଥିବା ସମୟରେ ଯଦି କେହି କୋଠରୀ ଭିତରକୁ ଆସିବାକୁ ଚାହେଁ ତେବେ ସେ ବାହାରେ ଝୁଲୁଥିବା ଦଉଡିକୁ ଭିଡିଦେଲେ ଟାୱାର ବୋଲ୍ଟଟି ତଳକୁ ଖସି ଆସେ ଓ ଦ୍ୱାରଟି ଖୋଲିଯାଏ । ଆଗନ୍ତୁକ, କୋଠରୀ ବାହାରକୁ ଗଲାବେଳେ ଦଉଡିକୁ ଟାଣି ଧରି ଦଉଡିଟି ଛାଡିଦେଲେ ଦୁଆରଟି ପଡିଯାଏ । ଆମେ ଦୁହେଁ ବାହାରକୁ ଗଲା ବେଳେ ରବରଟିକୁ ଟାୱାର ବୋଲ୍ଟ ଭୁଣ୍ଡିରୁ କାଢ଼ି

ଚାଲା ପକାଇ ଯାଉ । ଦିନେ ପରୀକ୍ଷା ସରିଲା ପରେ ସର୍ବେଶ୍ୱର ମୋତେ କହିଲା "ବି.ଏସ୍‌ସିରେ ଆଡମିଶନ୍ ନେବା ବେଳେ ମୋତେ ତୁ କିଛି ଟଙ୍କା ସାହାଯ୍ୟ କରିବୁ ।" ଯଦିଓ ଆମର ପଇସା ପତ୍ରର ବହୁତ ଅଭାବ, ତଥାପି ମୁଁ ସମ୍ମତି ଜଣାଇ ଥିଲି ।

ଥିଓରି ପରୀକ୍ଷା ସରିଲା । ପରୀକ୍ଷାର ଶେଷଦିନ, ପରୀକ୍ଷା ହଲରୁ ଫେରି ପୁରୀ ସମୁଦ୍ର କୂଳକୁ ବୁଲି ଗଲି । ସମୁଦ୍ର କୂଳଟା ସେଠାରୁ ଖୁବ୍ ଅଳ୍ପ ବାଟ । ଆମେ ରହିଲା ବେଳେ ଶୁଣିଥିଲୁ 'ପାଥରପୁରୀ' ଛାତ୍ରାବାସଟି ରବୀନ୍ଦ୍ରନାଥ ଠାକୁରଙ୍କର ବୋଲି । ତାକୁ ପରେ ଓଡ଼ିଶା ସରକାର କିଣିନେଇ ଥିଲେ ଓ ତାକୁ ପାଥରପୁରୀ ଛାତ୍ରାବାସରେ ପରିଣତ କରିଥିଲେ । ସମୁଦ୍ରକୂଳରେ ବସିଥିବା ବେଳେ, ମୋତେ ଜଣେ ଆସି ପଚାରିଲେ "ତମ ନାମ କଣ ବଟୁ ?" ମୁଁ ହଁ କହିଲି । କିନ୍ତୁ ମୁଁ ଆପଣଙ୍କୁ ଚିହ୍ନି ପାରୁନାହିଁ । ସେ କହିଲେ, 'ମୋ ନାମ ହେଉଛି ବ୍ରଜବନ୍ଧୁ ମହାପାତ୍ର । ମୁଁ ଏବେ ଆମେରିକାରୁ ଫେରି ଓଡ଼ିଶା ଇଞ୍ଜିନିୟରିଂ ସ୍କୁଲ୍‌ରେ ଓ୍ୱାର୍କସପ୍‌ର ତତ୍ତ୍ୱାବଧାରକ ଅଛି ।" ସେ ସମୁଦ୍ର ବାଲିରେ ବସି ମୋ ସହିତ କଥାବାର୍ତ୍ତା ହେଲେ । ଆମ ଘର କଥା ପଚାରିଲେ । ବୋଉଙ୍କ ଓ ନାନୀ ମାନଙ୍କ କଥା ପଚାରିଲେ । ଏହାପରେ ମୋତେ "କହିଲେ ତମେ ତ ନିମାପଡାରେ ପଢୁଥିଲ। ନିମାପଡାରେ ଯେଉଁ ଥିଏଟର ହୁଏ, ମୁଁ ସେଥିରେ ଭାଗ ନିଏ । ତୁମେ ଥିଏଟର ଦେଖିବାକୁ ଆସୁଥିଲ । ମୁଁ ହେଉଛି ତୁମ ନନାଙ୍କ ସାଙ୍ଗ, ମଧୁସୂଦନ ମହାପାତ୍ରଙ୍କର ପୁଅ ।" ପରବର୍ତ୍ତୀ କାଳରେ ସେ ବୁର୍ଲା ଇଞ୍ଜିନିୟରିଂ କଲେଜରେ ମେକାନିକାଲ ଇଞ୍ଜିନିୟରିଂ ବିଭାଗରେ ପ୍ରଫେସର ହେଲେ । ତାପରେ ଅଧ୍ୟକ୍ଷ ହେଲେ । ଉତ୍କଳ ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ୍ ମେମ୍ବର ଥିଲେ ମଧ୍ୟ ।

ସେହିଦିନ ସଂଧ୍ୟାବେଳେ କିଛି ସମୟ କଥାବାର୍ତ୍ତା ହେଲାପରେ ସେ ଚାଲିଗଲେ । ମୁଁ ସେହି ବାଲିରେ କିଛି ସମୟ ଶୋଇ ପଡିଲି । କେତେ ରାତି ହେବଜାଣେ ନାହିଁ, ଜଣେ ପୋଲିସ୍ କନେଷ୍ଟବଳ ଆସି ମୋତେ ଉଠାଇଲେ । କେଉଁଠି ରହୁଛ ପଚାରିଲେ । ମୁଁ ପାଥରପୁରୀ ଛାତ୍ରାବାସରେ ରହୁଛି ବୋଲି କହିବାରୁ, ମୋତେ ସେ କହିଲେ "ଚାଲ ମୁଁ ତୁମକୁ ସେଠାରେ ଛାଡିଦେବି ।" ମୁଁ ଛାତ୍ରାବାସକୁ ଆସି ସର୍ବେଶ୍ୱରକୁ ଡାକି କୋଠରୀକୁ ଯିବାପରେ କନେଷ୍ଟବଳଟି ଚାଲିଗଲା । ସେତେବେଳକୁ ଘଣ୍ଟାରେ ପ୍ରାୟ ଦୁଇଟା ବାଜିଥାଏ । ଥିଓରି ପରୀକ୍ଷା ପରେ ପ୍ରାକଟିକାଲ ପରୀକ୍ଷା ଦେବାକୁ କେତେଦିନ ବାକିଥାଏ, ବୋଉ ପୁରୀ ଆସି ଥାଏ । ମୁଁ ତାଙ୍କ ସଙ୍ଗେ ଜଗନ୍ନାଥଙ୍କୁ ଦେଖିବାକୁ ଗଲି । ସେ ମୋତେ କହିଲେ "ମୁଁ ଗୋଟିଏ କଥା ଠିକ୍ କରିଛି, ତୁ ମନା କରିବୁ ନାହିଁ । କଥା କଣ ବୋଲି ଯେତେ ପଚାରିଲି ବି ସେ କିଛି କହିଲେ ନାହିଁ । ତାର ଆଠ ଦଶ ଦିନ ପରେ ମୁଁ ଚିନ୍ତା ଭାଇନାଙ୍କ ଠାରୁ ଗୋଟିଏ ଚିଠି ପାଇଲି । ସେଥିରେ ଲେଖାଥିଲା ଯେ, ବୋଉ ଗୋଟିଏ ଝିଅ ଦେଖିବାକୁ ଜଣଙ୍କ ଘରକୁ ଯାଇ ତା ହାତରେ ଗୋଟିଏ ମୁଦି ପିନ୍ଧାଇ ଦେଇଛନ୍ତି । ସେ ଭାବିଲେ ମୋର ବୋଧେ ଏଥିରେ ସମ୍ମତି ଅଛି । ମୁଁ ତାଙ୍କୁ ଲେଖିଲି ଯେ "ମୁଁ ଏ ବିଷୟରେ କିଛି ଜାଣେନାହିଁ । ମୋର ଏଥିରେ ସମ୍ମତି ମଧ୍ୟ ନାହିଁ ।" ଏହାପରେ ସେହି ପ୍ରସ୍ତାବଟି ଭାଙ୍ଗିଗଲା ।

ମୁଁ ପ୍ରାକ୍ଟିକାଲ ପରୀକ୍ଷା ଦେଇ ସାରି ଗ୍ରାମରେ ଯାଇ ରହିଲି । ଦିନେ ବୋଉଙ୍କ ଠାରୁ ୨୭୦ ଟଙ୍କା ଯୋଗାଡ କରି, ସର୍ବେଶ୍ୱର ଗ୍ରାମକୁ ଯିବାକୁ ବାହାରିଲି । ତା କହିବା ଅନୁସାରେ ମୁଁ

ସାକ୍ଷୀଗୋପାଳ ଷ୍ଟେସନରୁ ମୋଟରୀ ଯାଏ ଟିକେଟ କରି ମୋଟରୀ ଠାରେ ଓହ୍ଲାଇଲି । ତାର ଗାଁ ନାଁ ଚାଇଁପୁର । ଗ୍ରାମଟି ମୋଟରୀ ଷ୍ଟେସନକୁ ଦେଖାଯାଏ । ତା'କହିବା ଅନୁସାରେ ମୁଁ ଯାଇ ତା ଗାଁରେ ପହଁଞ୍ଚିଲି । ତାର ବଡ ଭାଇ ମୋତେ ଦେଖି ତାଙ୍କ ଘର ଭିତରକୁ ଡାକିନେଲେ ଏବଂ ସର୍ବେଶ୍ୱରକୁ ଡାକିଦେଲେ । ତାଙ୍କ ସ୍ତ୍ରୀ ତାରା ଆସି ପ୍ରଥମରୁ ମୋତେ ଆମ୍ବ ଖାଇବାକୁ ଦେଲେ । ଆମେ ଦୁହେଁ ବସି କଥାବାର୍ତ୍ତା ହେଲୁ । ସେ ମୋତେ ପଚାରିଲା "ଆଇ.ଏସ୍‌ସି ପରେ ତୁ କଣ କରିବୁ ।" ମୁଁ କହିଲି "ମୁଁ ତ ଭଲ ଛାତ୍ର ନୁହେଁ । ଭବିଷ୍ୟତ କଥା ଏବେଠାରୁ କହିହେବ ନାହିଁ ।" ସେ କହିଲା "ତଥାପି ତୁ ତ କଣ ଭାବି ରଖିଥିବୁ ?" "ଯଦି ସମ୍ଭବ ହୁଏ ତେବେ ଫିଜିକ୍ସ ପଢ଼ିବି, ଏବଂ ଏକ୍ସପେରିମେଣ୍ଟରେ ଗବେଷଣା କରିବି ।" ମୁଁ ତାକୁ କାହାକୁ ଏ କଥା ନ'କହିବାକୁ ବାରଣ କଲି । କାରଣ ମୁଁ ଜାଣିଥାଏ ଫିଜିକ୍ସ ଅନର୍ସରେ ପଢ଼ିବା ପାଇଁ ସହଜରେ ସିଟ୍ ମିଳେ ନାହିଁ । କିଛି ସମୟ ପରେ ମୁଁ ଫେରିଯିବାକୁ ବାହାରିବାରୁ, ସେ କହିଲା ଖାଇକରି ଛାଇ ପଡିଲେ ଯିବୁ । ଗାଡି ସମୟ ହେବାରୁ, ସେ ମୋ ସାଙ୍ଗରେ ମୋଟରୀ ଷ୍ଟେସନ ପର୍ଯ୍ୟନ୍ତ ସେଦିନ ଆସିଥିଲା । ସେହି ଷ୍ଟେସନ୍‌ରେ ସାହାଯ୍ୟ ବାବଦକୁ ମୁଁ ତାକୁ ୨୭୦ ଟଙ୍କା ଦେଲି । ଆଉ ଅଧିକ ଯୋଗାଡ ହୋଇପାରିଲା ନାହିଁ ମଧ୍ୟ ବୋଲି କହିଲି । ସେ ଭାରି ଖୁସି ହେଲା । ଟଙ୍କା ତକ ମୋ ହାତରୁ ନେଇ ସେ ରଖିଲା । ସେ ଅଧ୍ୟାପକ ହେବା ପରେ, ମୋ ଟଙ୍କା ଫେରସ୍ତ କରି ଦେଇଥିଲା ।

ଫଳ ବାହାରିବା ପର୍ବରୁ ମୁଁ ଭାବିଲି ୨ କିମ୍ବା ୩ ମାସ କୌଣସି ସ୍କୁଲରେ ଶିକ୍ଷକ ହୋଇ ରହିଗଲେ କିଛି ପଇସା ରୋଜଗାର ହେବ । ବିଏସ୍.ସି.ରେ ନାମ ଲେଖାଇବା ପାଇଁ ସୁବିଧା ହେବ । ମୁଁ ଖବର କାଗଜରୁ ପଢ଼ିଲି 'ବେଗୁନିଆ ମାଇନର ସ୍କୁଲରେ ଅଳ୍ପଦିନ ପାଇଁ ଏକ ଶିକ୍ଷକ ଆବଶ୍ୟକ' । ମୁଁ ଦୁଇଦିନ ପରେ ବୋଉଙ୍କଠାରୁ କିଛି ଅଳ୍ପ ଟଙ୍କା ନେଇ ସତ୍ୟବାଦୀ ଠାରୁ ବସ୍‌ରେ ଯାଇ ଖୋର୍ଦ୍ଧା ବସଷ୍ଟାଣ୍ଡରେ ପହଁଞ୍ଚିଲି । ସେଠାରୁ ବୁଝିଲି ବେଗୁନିଆ ୬/୭ ମାଇଲ ହେବ । ତେଣୁ ଚାଲି ଚାଲି ଯାଇ ବେଗୁନିଆ ସ୍କୁଲରେ ପହଁଞ୍ଚିଲି । ସେଠାରେ ଜଣେ ଶିକ୍ଷକଙ୍କୁ ଭେଟିଲି । ତାଙ୍କ ନାମ ହେଉଛି 'ଶ୍ରୀ ଗଙ୍ଗାଧର ମିଶ୍ର । ତାଙ୍କଠାରୁ ବୁଝିଲି ସେଠାରେ ଆଉଜଣଙ୍କୁ ନିଯୁକ୍ତି ପତ୍ର ଦିଆ ସରିଛି । ଶିକ୍ଷକ ପଚାରିଲେ "କଣ ଖାଇଛ ।" ମୁଁ ମନାକଲି । ସେ ପୁଣି କହିଲେ ସ୍କୁଲ ଛାତ୍ରବାସରେ ଖାଇଦିଅ । ସେ ମହାଶୟ ଛାତ୍ରାବାସ ପୂଜାରୀକୁ ଡାକି ଦୁଇଜଣଙ୍କ ପାଇଁ ବାଢ଼ିବାକୁ କହିଲେ । ଆମେ ଖାଇସାରିଲା ପରେ ମୋତେ ପଚାରିଲେ "ତୁମ ଘର କେଉଁଠି" ମୁଁ ରାୟଚକ୍ରଧରପୁର କହି ଚାଲି ଆସିଲି ।

ମୁଁ ପୁରୀ କଲେଜରେ ଅଧ୍ୟାପକ ଥିବା ସମୟରେ ମୁଁ ଆମ ଗ୍ରାମର ଜଣେ ସମ୍ପର୍କୀୟଙ୍କ ଘରକୁ ଯାଇଥିବା ସମୟରେ ମୋର ଶ୍ରୀ ଗଙ୍ଗାଧର ମିଶ୍ରଙ୍କ ସହିତ ଦେଖାହେଲା । ସେ କହିଲେ 'ଆପଣଙ୍କୁ କେଉଁଠି ଦେଖିଲା ପରି ଲାଗୁଛି ।' ମୁଁ କହିଲି 'ଆପଣଙ୍କ ନାମ ଗଙ୍ଗାଧର ମିଶ୍ର ବୋଧେ ।' ସେ କହିଲେ ଆପଣ କିପରି ଜାଣିଲେ ।' ମୁଁ କହିଲି 'ଆପଣ ସଙ୍ଗେ ବେଗୁନିଆ ସ୍କୁଲରେ ଦେଖା ହୋଇଥିଲା ।' କଥାବାର୍ତ୍ତା ହେଲାପରେ ଜଣା ପଡିଲା 'ସେ ଆମ ଗାଁର ଆମ ଘର ପାଖର ଆମର ସମ୍ପର୍କୀୟ କୁନିକୁ ବିବାହ କରିଛନ୍ତି ।

## ଇଣ୍ଟର ମିଡିଏଟ ବିଜ୍ଞାନ ଶିକ୍ଷା

ମୁଁ ଗ୍ରାମରେ ଥାଏ । ଏହି ସମୟରେ ଦିନେ ଆଇ.ଏସ୍‌ସି ପରୀକ୍ଷା ଫଳ ବାହାରିଲା । ମୁଁ ଦେଖିଲି ଖବର କାଗଜରେ ମୋ ରୋଲ୍ ନମ୍ବର ନାହିଁ । ତେଣୁ ମୁଁ ଫେଲ ହୋଇଯାଇଛି ଭାବିଲି ପରେ ଜାଣିଲି, ମୁଁ କେବଳ ଇଂରାଜୀରେ ଫେଲ ହୋଇଛି । ମୋ ମନ ବହୁତ ଖରାପ ହେଲା ତାପରେ ପରେ ସପ୍ଲିମେଣ୍ଟାରି ପରୀକ୍ଷା ପାଇଁ ଫର୍ମ ପୂରଣ କଲି । କଟକରେ ସେତେବେଳେ ଚିନ୍ତା ଭାଉନା ଥାଆନ୍ତି । ସେ ଫିଜିକାଲ ଟ୍ରେନିଂ ଇନ୍‌ଷ୍ଟ୍ରକଟର ଭାବେ ରେଭେନ୍ସା କଲେଜରେ କାମ କରୁଥିଲେ । ତାଙ୍କ ଅଧୀନରେ ଜିମ୍ନାସିୟମ୍ ପାଖରେ ଗୋଟିଏ କୋଠରୀ ଥିଲା । ସେହି ରୁମରେ ରହି ପଢାପଢି କରିବାର ବ୍ୟବସ୍ଥା ମୋ ପାଇଁ ସେ କରିଦେଲେ । ସେହିଠାରେ ଥିବାବେଳେ ମୋ ସ୍କୁଲ୍ ବେଳର ସାଙ୍ଗ ତ୍ରିଲୋଚନ ରଥଙ୍କ ସହିତ ବେଳେ ବେଳେ ଦେଖା ହେଉଥିଲା । ମୁଁ ତାଙ୍କୁ ମୋର ପଇସା ପତ୍ର ଅଭାବ କଥା କହିଥିଲି । ସେ ମୋତେ ଦିନେ କହିଲା "ପରୀକ୍ଷା ସରିଲା ପରେ କପିଳାସ ରୋଡ୍ ଷ୍ଟେସନ ପାଖରେ ଥିବା ଟାଙ୍ଗି ସ୍କୁଲ୍‌ରେ ବିଜ୍ଞାନଶିକ୍ଷକ ଭାବରେ ରହିବା ପାଇଁ ମୁଁ ଠିକ୍ କରି ଦେବି । ସେଠାରେ ଆଠ ମାସ ପର୍ଯ୍ୟନ୍ତ ତୁ ରହି ପାରିବୁ" । ସେତେବେଳେ ଟାଙ୍ଗି ସ୍କୁଲ୍‌ର ପ୍ରଧାନଶିକ୍ଷକ ଥିଲେ ଶ୍ରୀ ଭଗବାନ ରଥ । ସେ ଥିଲେ ନିମାପଡାର ବାସିନ୍ଦା ଏବଂ ନନାଙ୍କର ଛାତ୍ର । ଶ୍ରୀ ଭଗବାନ ରଥ ତ୍ରିଲୋଚନ ରଥଙ୍କର ବଡ ଭାଇ । ତେଣୁ କିଛି ଅସୁବିଧା ହେଲା ନାହିଁ । ମୁଁ ପରୀକ୍ଷା ସରିଲା ମାତ୍ରେ ଟାଙ୍ଗି ଯାଇ, ଶିକ୍ଷକ ଭାବରେ ସେଠାରେ ଯୋଗ ଦେଲି ।

ଟାଙ୍ଗି ବିଦ୍ୟାଳୟଟି କପିଳାସରୋଡ୍‌ର ଷ୍ଟେସନ ପାଖରେ ଅବସ୍ଥିତ । ପ୍ରଧାନଶିକ୍ଷକ, ମୋତେ ନେଇ ଅନ୍ୟ ଜଣେ ଶିକ୍ଷକଙ୍କ ସହିତ ଛାତ୍ରାବାସର ଗୋଟିଏ କୋଠରୀରେ ରହିବାକୁ କହିଲେ । ସେହିଦିନୁ ଛାତ୍ରାବାସର ମେସ୍‌ରେ ଖିଆପିଆ କଲି । କେତେଗୁଡିଏ କ୍ଲାସ୍ ମୋତେ ବିଭିନ୍ନ ଶ୍ରେଣୀର ନେବାକୁ ଦିଆଗଲା । ମୁଁ କ୍ଲାସ୍‌ଗୁଡିକରେ ରୀତିମତ୍ ଯାଇ ପଢାଉଥିଲି । ଥରେ ମୋତେ ଷଷ୍ଠ କିମ୍ବା ସପ୍ତମ ଶ୍ରେଣୀରେ ସାଧାରଣ ଜ୍ଞାନ ପଢାଇବା ପାଇଁ ପ୍ରଧାନଶିକ୍ଷକ ମହୋଦୟ କହିଲେ । ସେତେବେଳେ ସାଧାରଣ ଜ୍ଞାନ କହିଲେ ସାଧାରଣତଃ ଦେଶରେ ଘଟୁଥିବା ଘଟଣାବଳୀ, ଭାରତର ବିଭିନ୍ନ ନେତାଙ୍କ ବିଷୟ ଓ ଭାରତର ସ୍ୱାଧୀନତା ସଂଗ୍ରାମରେ ସେମାନଙ୍କ ଅବଦାନ ସଂପର୍କରେ ସାଧାରଣ ଜ୍ଞାନ ପାଠ ଭାବରେ ପଢା ହେଉଥିଲା । ତେଣୁ ବିଜ୍ଞାନ ସମ୍ବନ୍ଧୀୟ ବିଷୟ ଯାହା ମୁଁ ଆଇ.ଏସ୍‌ସି ରେ ପଢିଥିଲି, ସେହି ବିଷୟ ସହିତ କେତେ ଗୁଡିଏ ଛୋଟଛୋଟ ପରୀକ୍ଷାମାନ କରି, କ୍ଲାସ୍‌ରେ ପିଲାଙ୍କୁ ଶିଖାଉ ଥିଲି । ଉଦାହରଣ ସ୍ୱରୂପ, ଟେବୁଲ୍ ଉପରେ ଗୋଟିଏ କାଗଜ ରଖି, ତା'ଉପରେ ଗୋଟିଏ ପେପରୱେଟ୍ ରଖି, କାଗଜକୁ ଧୀରେଧୀରେ ଟାଣିଲେ ପେପରୱେଟଟି କିପରି କାଗଜ ସହିତ ସାଙ୍ଗେସାଙ୍ଗେ ଚାଲି ଆସେ । ମାତ୍ର କାଗଜଟିକୁ ଜୋରରେ ଟାଣି ଆଣିଲେ, ପେପରୱେଟ୍‌ଟି ସେଠାରେ ରହିଯାଏ, ତାହା ଦେଖାଇଲି । ଦୁଇତିନି ଜଣ ପିଲାଙ୍କୁ ଅଲଗା ଅଲଗା ଡାକିଲି । ସେମାନଙ୍କୁ ମୋ ହାତକୁ ଛୁଇଁବାକୁ କହିଲି । ତାପରେ ମୋ ହାତ କିପରି ସେମାନଙ୍କୁ ଗରମ ବା ଥଣ୍ଡା ଲାଗୁଥିଲା, ତାହା ଭଲ ଭାବରେ ବୁଝାଇଦେଲି ।

ସେମାନେ ସବୁ ଆଶ୍ଚର୍ଯ୍ୟ ହୋଇଗଲେ । ସେମାନଙ୍କୁ ବୁଝାଇ ଦେଲି ଯେ ସେମାନଙ୍କ ହାତ ଯଦି ମୋତେ ଗରମ ଲାଗିବ, ତାହେଲେ ମୋ ହାତ ସେମାନଙ୍କୁ ଥଣ୍ଡା ଲାଗିବ । ଆଉ ଗୋଟିଏ ପରୀକ୍ଷା ହେଲା ଗୋଟିଏ କାଚବାଟି ପିଲାଙ୍କଠାରୁ ମାଗି ଆଣିଲି । ତାର କିଛି ଅଂଶ ଜଳୁଥିବା ମହମ ବତୀ ଉପରେ ଦେଖାଇ, କଳା କରିଦେଲି । ଏହାପରେ ତାହାକୁ ପାଣିରେ ବୁଡାଇ ଦେଖାଇ ଦେଲି ଯେ, କାଚବାଟିଟିର ଯେଉଁ ଅଂଶଟି କଳା ପଡିଥିଲା, ସେହି ଅଂଶଟି କିପରି ଚକ୍ ଚକ୍ ଦେଖାଗଲା । କାହିଁକି ଚକ୍ ଚକ୍ ଦେଖାଗଲା ତାହାର ରହସ୍ୟ ମଧ୍ୟ ବୁଝାଇ ଦେଲି । ଏହିପରି ପରୀକ୍ଷା ମାନ କରି ଦେଖାଇ ଦେବାପରେ ଜାଣି ପାରିଲି ଯେ, ପିଲାମାନେ ମୋ କ୍ଲାସ୍‌ରେ ବହୁତ ଖୁସି । ତେଣୁ ସେମାନେ ଏହିପରି ପରୀକ୍ଷା କରି ଦେଖାଇବାକୁ ମୋତେ ବାରମ୍ବାର ଅନୁରୋଧ କରୁଥିଲେ । ଯେତେ ଦୂର ପାରେ ମୁଁ ମୋର କଳାକୌଶଳ ଦେଖାଇଲି ମଧ୍ୟ ।

ଆଇ.ଏସ୍‌ସି ପଢିଲା ସମୟରେ ମୋର ମନକୁ ବହୁତ ପ୍ରକାର ଚିନ୍ତା ଆସୁଥିଲା । ଚିନ୍ତା ଗୁଡିକ ହେଲା, ମଣିଷ କାହିଁକି ଜନ୍ମ ହୋଇଛି, ମଣିଷ ଦିନେ ନା ଦିନେ ମରିବ । କିନ୍ତୁ କୋଠା ବାଡି ସବୁ ଛାଡିଯିବ । ଏ ସବୁ ଚିନ୍ତା କାହିଁକି ମନକୁ ଆସୁଛି ତାର କାରଣ ଦିନେ ସାଙ୍ଗମାନଙ୍କୁ ପଚାରି ଥିଲି । ମାତ୍ର କାହାଠାରୁ କିଛି ନିର୍ଭୁଲ ଉତ୍ତର ପାଇ ନ'ଥିଲି । ସତରେ, ଏହିପରି ମୋତେ ଚିନ୍ତା ବେଳେବେଳେ ବଡ ବ୍ୟତିବ୍ୟସ୍ତ କରି ପକାଉଥିଲା । ବେଳେବେଳେ ପୃଥିବୀର ବିଭିନ୍ନ ମହାପୁରୁଷ ମାନଙ୍କ କଥା ଚିନ୍ତା କରେ । ଭାବେ, ସେମାନେ ଏତେ କାମ କରି କ'ଣ ମଲେନାହିଁ ? ଉଦାହରଣ ସ୍ୱରୂପ: ଚୀନ୍‌ର ତ୍ରାଣକର୍ତ୍ତା କନ୍‌ଫୁସିୟସ୍‌ଙ୍କ କଥା ମନେପଡିଲେ, ମନଟା ଛଟପଟ ହୁଏ । ଥରେ ଥରେ ସିନେମା ଦେଖି ଯାଇଥିଲେ, ସିନେମାରେ କୌଣସି ପୌରାଣିକ ବିଷୟବସ୍ତୁ ଦେଖି ମନଟା ଖରାପ ହୋଇଯାଉଥିଲା । ମୁଁ ସେତେବେଳେ ଭାବୁଥାଏ, ଏମାନେ ତ ସବୁ ମରିଗଲେ, ମୁଁ ବି ମରିଯିବି । ଏହା ଭାବିଭାବି ମନରେ ବହୁତ ପରିମାଣରେ ଦୁଃଖ ବଢିଯାଏ । ମୁଁ ଭାବୁଥିଲି "ଯଦି ମରିବାଟା ନିଶ୍ଚିତ ତେବେ ସମସ୍ତେ କାହିଁକି ପାଠପଢିବେ ? ଏତେ କାମ କାହିଁକି କରିବେ" ମାତ୍ର ମୋ ଚିନ୍ତାର ଅଡୁଆ ସୂତାର ଖିଅ ମୁଁ ଏଯାଏ ପାଇଲି ନାହିଁ । ଏହାର ସମାଧାନ ମାର୍ଗ ମୋତେ କେହି ବୁଝାଇ ନାହାଁନ୍ତି । ଏହି ପ୍ରକାର ଚିନ୍ତାଧାରା ମୋର ବି.ଏସ୍‌ସି ପଢିବା ପରେ ଚାଲିଗଲା । ଆଉ ଏପରି ଦୁଶ୍ଚିନ୍ତା ଆଜିଯାଏ ଘାରି ନାହିଁ ।

ଟାଙ୍ଗି ବିଦ୍ୟାପୀଠରେ ମାସେ ଦେଢମାସ ରହିବା ପରେ ମୋର ପରୀକ୍ଷା ଫଳ ବାହାରିଲା । ପରୀକ୍ଷାରେ ମୁଁ ଫେଲ୍ ହୋଇଥିଲି । ସେ ଦିନଟି ଗହ୍ମାପୂର୍ଣ୍ଣମୀ ଥିଲା । ତେଣୁ ମୁଁ ଟ୍ରେନ୍‌ରେ ବସି ମନ ଦୁଃଖରେ ଗାଁକୁ ଫେରୁଥାଏ । ଗାଡି ମହାନଦୀ ପୋଲ ଅତିକ୍ରମ କରୁଥିବା ସମୟରେ ଭାବିଲି ନଦୀକୁ ଡେଇଁପଡି ଆତ୍ମହତ୍ୟା କରିବି । ମାତ୍ର ତାପରେ ବୋଉର ଅବସ୍ଥା କଣ ହେବ ଭାବି, ସେଥିରୁ ନିବୃତ୍ତ ହେଲି । ସଙ୍ଗେସଙ୍ଗେ ମନେ ପଡିଗଲା, ନିମାପଡାର ଶ୍ରୀନିବାସ ଜ୍ୟୋତିଷଙ୍କ କଥା । ସେ କହିଥିଲେ ଯେ ମୁଁ ବଡ ହେଲେ ବହୁତ ଉପରକୁ ଉଠିବି । ଏମିତି ଭାବୁଭାବୁ ଗାଡି ମହାନଦୀ ପାରହେଲା । ମୋର ଦୁଶ୍ଚିନ୍ତା ଦୂର ହୋଇଗଲା । ସାକ୍ଷୀଗୋପାଳ ଷ୍ଟେସନରେ ଓହ୍ଲାଇ ଘରେ ଯାଇ ପହଁଚିଲି । ସେଦିନ ବୋଉ ମୋତେ ବହୁତ ବୁଝାଇଲେ ।

ଏହାପରେ ମୋର ମନଟା ଟିକିଏ ଶାନ୍ତ ହୋଇଗଲା । ଦୁଇ ତିନି ଦିନ ପରେ ପାଥରପୁରୀ ଛାତ୍ରାବାସ ପାଖରେ ଥିବା ଗୋଟିଏ ମେସ୍‌ରେ ରହି ପୁଣି ପଢାପଢି ଆରମ୍ଭ କରିଦେଲି । ଆଉଥରେ ପରୀକ୍ଷା ଦେବାକୁ ଲାଗି ପଡିଲି । ଶଙ୍କର ଦାଶ ନାମକ ଜଣେ କଳା ଶ୍ରେଣୀର ଛାତ୍ର ଏବଂ ମୁଁ ଏକତ୍ର ଗୋଟିଏ କୋଠରୀରେ ରହି ପଢୁଥିଲୁ । ଶଙ୍କର ଆଇ.ଏ. ପାଶ୍‌କରି ଏକ ମନୋହରୀ ଦୋକାନ ଖୋଲି ପରବର୍ତ୍ତୀ କାଳରେ ପରିବାର ଚଳାଉଥିଲା ।

ଆଉ ଦିନେ ମୁଁ ବ୍ରଜ ଭାଇନାଙ୍କ ଘରକୁ ବୁଲି ଯାଇଥିଲି । ସେ ମୋତ ପଚାରିଲେ, "ତୁ କୁଆଡେ ଇଂରାଜୀରେ ଫେଲ୍ ହୋଇଯାଇଛୁ ? ତୁ ମୋ ଶଳା ନାରାୟଣ ମିଶ୍ରଙ୍କ ଘରକୁ ଯାଆ ସେ ତୋତେ ଇଂରାଜୀ ପଢାଇ ଦେବେ । ମୁଁ ତାଙ୍କୁ କହି ଦେଇଛି" । ଭାଇନାଙ୍କ ଘରୁ ଫେରି ମୁଁ କିନ୍ତୁ ଜାଣିଲି, ପାଥରପୁରୀ ଛାତ୍ରାବାସ ପାଖରୁ ହରଚଣ୍ଡୀ ସାହି ଚାଲିକରି ଯିବା ଏତେ ସହଜ ନୁହେଁ । ତେଣୁ ଚିନ୍ତାଭାଇନାଙ୍କୁ ଚିଠି ଲେଖିଲି ତାଙ୍କ ସାଇକେଲ୍‌ଟା ମୋତେ ଚାରିମାସ ପାଇଁ ଦେବାକୁ । କାରଣ ମୁଁ ଜାଣିଥିଲି, ତାଙ୍କର ଅଫିସ୍ ଯିବାପାଇଁ ସାଇକେଲ୍ ଦରକାର ପଡେ ନାହିଁ ।-

ସେତେବେଳେ ସେ ଇଂଜିନିୟରିଂ ସ୍କୁଲରେ ଫିଜିକାଲ ଇନ୍‌ଷ୍ଟ୍ରକଟର ଭାବରେ ଚାକିରି କରୁଥିଲେ । ସ୍କୁଲ୍ କମ୍ପାଉଣ୍ଡ ଭିତରେ ରହୁଥିଲେ । ସେ ଚିଠି ପାଇବା ମାତ୍ରେ ମୋତେ ଜଣାଇଲେ ଯେ ସେ ଆମ ଘରେ ସାଇକେଲ୍‌ଟି ରଖିଦେଇ ଆସିଛନ୍ତି । ସେଠାରୁ ନେଇଯିବାକୁ ହେବ । ଚିନ୍ତାଭାଇନା ଆମ ଗ୍ରାମରେ ବିଭା ହୋଇଥିବାରୁ ଅଧିକାଂଶ ସମୟରେ ଆସନ୍ତି । ବୋଉଙ୍କ ସାଙ୍ଗେ ଦେଖାକରି ଭଲମନ୍ଦ ବୁଝନ୍ତି । ମୁଁ ଦିନେ ବୋଉଙ୍କଠାରୁ ଖବର ପାଇଲି ଯେ, ସାଇକେଲ୍‌ଟି ସତରେ ଆମ ଘରେ ଅଛି । ତେଣୁ ସଙ୍ଗେସଙ୍ଗେ ଗ୍ରାମକୁ ଗଲି ଓ ସାଇକେଲଟିରେ ଚଢି ପୁରୀ ଚାଲି ଆସିଲି । ତା ପରଦିନ ଶ୍ରୀ ନାରାୟଣ ମିଶ୍ରଙ୍କ ଘରକୁ ଗଲି । କେତେବେଳେ ଓ କେଉଁଦିନ ତାଙ୍କ ଘରକୁ ଯିବାକୁ ହେବ ବୁଝି ଆସିଲି । ସେ କହିଲେ "ସପ୍ତାହରେ ଦୁଇ ବା ତିନି ଥର ସକାଳ ୯ଟା ବେଳେ ଆସି ୧୦ ଟା ବେଳେ ଚାଲିଯିବ । ଅଥବା ରବିବାର ଦିନ ଦୁଇଟା ବେଳେ ଆସିଲେ ମୁଁ ଏକାବେଳେ ଦୁଇଘଣ୍ଟା ପଢାଇ ଦେବି । ସେ ଜଣେ ମେଧାବି ଛାତ୍ର ଥିଲେ । ତାଙ୍କ ପଢାରେ ମୁଁ ଉପକୃତ ହେଲି । କିନ୍ତୁ ମୁଁ ପୁରୀ କଲେଜରେ ପ୍ରାଧ୍ୟାପକ ଥିବାବେଳେ କୌଣସି କାରଣରୁ ତାଙ୍କୁ କୃତଜ୍ଞତା ଜଣାଇ ପାରି ନ'ଥିବାରୁ ମନରେ ମୋର ବହୁତ ଅବଶୋଷ ରହିଗଲା ।

ମୁଁ ପାଥରପୁରୀ ଛାତ୍ରବାସ ପାଖରେ ଗୋଟିଏ ମେସ୍‌ରେ ରହୁଥିବା ସମୟରେ ଖାଇବା ପିଇବାରେ ଅସୁବିଧା ଅନୁଭବ କଲି । ମୋର ସହପାଠୀ କୃଷ୍ଣମୋହନ ଆଚାର୍ଯ୍ୟଙ୍କ ସହିତ ଦୁହେଁ ସମୁଦ୍ର କୂଳକୁ କଚେରୀ ରାସ୍ତାରେ ଯାଉଥିଲୁ । ସମୁଦ୍ର କୂଳିଆ ସେ ରାସ୍ତା ଉପରେ ଗୋଟିଏ ହୋଟେଲ ଥିଲା । ତାର ନାଁ ଲାଲମୋହନ ହୋଟେଲ । ଦିନେ ସେହି ହୋଟେଲର ଜଣେ ପୌଢ ଓ ପୃଥଳକାୟ ବ୍ୟକ୍ତି, ହଠାତ ମୋ ନାଁ ଧରି ଡାକିଲେ । ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ମୁଁ ପାଖକୁ ଯିବାରୁ ସେ ଆମ ଘର କଥା ସବୁ ପଚାରି ବୁଝିଲେ । ମୁଁ କଣ କରୁଛି ବୋଲି ପଚାରିଲେ । ଆମକୁ ହୋଟେଲରୁ କିଛି ମଧ୍ୟ ଖାଇବାକୁ ଦେଲେ । ମୁଁ ତାଙ୍କୁ ପଚାରିଲି " ମୁଁ ତ ଆପଣଙ୍କୁ ଚିହ୍ନିପାରୁ ନାହିଁ ?" ସେ କହିଲେ "ଆମେ ତୁମ ଘର ପାଖେ ରହୁଥିଲୁ । ତୁମ ନନାଙ୍କର ଦେହାନ୍ତ ହେବାର

କେତେଦିନ ଆଗରୁ ମୋର ବାପା ଗୌରିବାବୁଙ୍କର ଦେହାନ୍ତ ହୋଇଯିବାରୁ, ଆମେ ନିମାପଡା ଛାଡି ଚାଲି ଆସିଲୁ । ଆମେ ତୁମ ନାନାଙ୍କୁ ଆମ ମୋନହରୀ ଦୋକାନଟା ବିକି ଦେଇଥିଲୁ" । ଏହା ଶୁଣି ମୋର ସବୁକଥା ମନେ ପଡିଗଲା । ମୁଁ ତାଙ୍କୁ ପଚାରିଲି "ଆପଣଙ୍କ ନାମ କଣ ଗୁନବାବୁ ?" ସେ ହଁ କହିଲେ । ତାପରେ ମୁଁ ତାଙ୍କୁ ପଚାରିଲି " ଦୁଇଓଳି ତୁମ ହୋଟେଲରେ ଖାଇଲେ ମାସକୁ କେତେ ଟଙ୍କା ପଡିବ" ? ସେ ପ୍ରଶ୍ନ କଲେ "କିଏ ଖାଇବ ?" ମୁଁ କହିଲି "ଆମେ ଦୁହେଁ ଖାଇବୁ" । "ତାହାହେଲେ ଜଣକୁ ମାସକୁ ୩୦ଟଙ୍କା ଲେଖା ଦେବାକୁ ପଡିବ" । ସେ କହିଲେ । ଆମେ ତାଙ୍କୁ କହିଲୁ ଆମେ ଦୁହେଁ ଦୁଇ ଓଳି ଆସି ଖାଇବୁ । ସେ ହେଟେଲ୍‌ରେ ପରୀକ୍ଷା ପର୍ଯ୍ୟନ୍ତ ପ୍ରାୟ ଚାରି ମାସ ଖାଇଥୁ । ପରୀକ୍ଷା ସରିବା ପରେ, କୃଷ୍ଣମୋହନ ବାବୁ ଓ ମୁଁ ଗ୍ରାମକୁ ଚାଲିଗଲୁ । କୃଷ୍ଣମୋହନ ବାବୁ ପରେ ଇଂରାଜୀରେ ଏମ୍.ଏ. ପାସ୍ କରି ଅଧ୍ୟାପକ ହୋଇଥିଲେ । ସେ ଟେରିଟୋରିଆଲ୍ ଆର୍ମିରେ ଯୋଗ ଦେଇଥିଲେ । ପରେ ମୁଁ ଖଲ୍ଲିକୋର୍ଟ କଲେଜରେ ଅଧ୍ୟକ୍ଷ ଥିବାବେଳେ, ସେ ଛତ୍ରପୁର କଲେଜରେ ଅଧ୍ୟକ୍ଷ ହୋଇଥିଲେ ।

## ରନ୍ତଲେଇ ହୁକୁମ୍

ମୁଁ ଆଇ.ଏସ୍‌ସି ପଢିବା ସମୟରେ ଓଡିଶାରେ ଗୋଟିଏ ଅଦ୍ଭୁତ ଓ ମର୍ମନ୍ତୁଦ ଘଟଣା ଘଟିଥିଲା । ତାର ଠିକ୍ ସମୟଟା ମୋର ମନେ ନାହିଁ । ଘଟଣାଟି ହେଲା ଅନୁଗୁଳ ପାଖରେ ଥିବା ରନ୍ତଲେଇ ଗ୍ରାମରେ ଗୋଟିଏ ଗାଈଆଳ ପିଲା, ଚେର ମୂଳୀ ଆକାରରେ ହୁକୁମ୍ ଦେବାକୁ ଲାଗିଲା । ସେଥିରେ ଆଖପାଖ ଲୋକଙ୍କର ସବୁ ପ୍ରକାର ରୋଗ ଭଲ ହୋଇ ଯାଉଛି ବୋଲି, ଗୁଜବକୁ ବିଶ୍ୱାସ କଲେ । ଏହା ଏତେ ପ୍ରଚାର ହୋଇଗଲା ଯେ ଓଡିଶାର ସବୁ ଅଞ୍ଚଳରୁ ଲୋକମାନେ ସେହି ପିଲାଠାରୁ ହୁକୁମ୍ ନେବା ପାଇଁ ସେଠାରେ ଭିଡ ଜମେଇଲେ । ତା ଦ୍ୱାରା ସେ ଅଞ୍ଚଳର ବ୍ୟବସାୟୀମାନେ ବିକ୍ରିବଟା କରି ବହୁତ ଲାଭବାନ ହେଲେ । ମୋର ଯେତେ ଦୂର ବିଶ୍ୱାସ ସେଠାରେ ବ୍ୟବସାୟୀମାନେ ହୁକୁମ୍ ଦେବା ବିଷୟରେ ପ୍ରଚାର କଲେ । ଶେଷରେ ଏମିତି କାନକୁହା କଥା ବ୍ୟାପିଗଲା ଯେ ଭାରତର ବିଭିନ୍ନ ଜାଗାରୁ କି ଧନୀ କି ଦରିଦ୍ର ସମସ୍ତେ ରନ୍ତଲେଇ ଆସିବାକୁ ଲାଗିଲେ । ସେଠାକୁ ଯିବାପାଇଁ ସେତେବେଳେ ମାତ୍ର ଦୁଇଟି ରାସ୍ତା ଥିଲା । ଯେଉଁମାନେ ବିହାର କିମ୍ବା ବେଙ୍ଗଲ ଆଡୁ ଆସୁଥିଲେ, ସେମାନେ କଟକରେ ଟ୍ରେନ୍‌ରେ ଓହ୍ଲାଇ ତାଳଚେର ଟ୍ରେନ୍‌ରେ ଚଢି ମେରାମଣ୍ଡଳୀ ପର୍ଯ୍ୟନ୍ତ ଯାଉଥିଲେ । ସେଠାରୁ ଟ୍ରେନ୍‌ରୁ ଓହ୍ଲାଇ ଚାଲିଚାଲି କିମ୍ବା ଭଡା ଗାଡି କରି ରନ୍ତଲେଇ ଗଲେ । ଯେଉଁମାନେ ବର୍ତ୍ତମାନର ଆନ୍ଧ୍ର କିମ୍ବା ତାମିଲନାଡୁରୁ ଆସୁଥିଲେ, ସେମାନେ କଟକଠାରେ ଟ୍ରେନ୍‌ରୁ ଓହ୍ଲାଇ ଢେଙ୍କାନାଳ ଦେଇ ରନ୍ତଲେଇ ଯାଉଥିଲେ । କିନ୍ତୁ ଯେଉଁମାନେ ମଧ୍ୟପ୍ରଦେଶ କିମ୍ବା ଦିଲ୍ଲୀ ଆଡୁ ଆସୁଥିଲେ ସେମାନେ ଝାରସୁଗୁଡା ଠାରେ ଟ୍ରେନ୍‌ରୁ ଓହ୍ଲାଇ ସମ୍ବଲପୁର ଯାଏ ଆସି, ସେଠାରୁ ବସ୍‌ରେ ଅନୁଗୁଳ ପର୍ଯ୍ୟନ୍ତ ଆସି ରନ୍ତଲେଇରେ ପହଁଞ୍ଚୁଥିଲେ । କିମ୍ବା ଝାରସୁଗୁଡା ଠାରୁ ବସ୍‌ରେ ଆସୁଥିଲେ । କ୍ରମେ ଲୋକ ସମାଗମ ଏତେ ବେଶୀ ହେଲା ଯେ, ମହାମାରୀ ବ୍ୟାପିଗଲା । ଲୋକମାନେ ଏଠି ସେଠି ପଡି ମଲେ । ମୋର ସହକର୍ମୀ ପ୍ରଫେସର ଡକ୍ଟର ଗଙ୍ଗାଧର ସାହୁ ମୋତେ କହୁଥିଲେ ଯେ ସେ ସେତେବେଳେ ଅନୁଗୁଳ ହାଇସ୍କୁଲ୍‌ରେ ନବମ ଶ୍ରେଣୀରେ

ପଢୁଥିଲେ । ସ୍କାଉଟ୍‌ରେ ଯୋଗ ଦେଇଥିଲେ । ସେ ତାଙ୍କ ସ୍କାଉଟ୍‌ଶିକ୍ଷକଙ୍କ ସହିତ ଯାଇ, ନାକରେ କନା ବାନ୍ଧି, ଅନେକ ଶବ ସତ୍କାର କରିଥିଲେ । ସେତେବେଳେ କଟକ ଷ୍ଟେସନ୍‌ରେ ଶହ ଶହ ଲୋକଙ୍କ ଶବ ପଡିଥିଲା । ସେଥିରୁ ସରକାରଙ୍କର ନିଦ ଭାଙ୍ଗିଲା । ହୁକୁମ୍ ସହିତ ଦିଆ ଯାଉଥିଲା ଚେର ମୂଳୀକୁ ପରୀକ୍ଷା ପାଇଁ ଗବେଷଣାଗାରକୁ ପଠାଗଲା । ତାପରେ ଆମେ ଶୁଣିଲୁ ମାଳତୀ ଦେବୀ ଅନ୍ୟ କେତେ ଜଣଙ୍କୁ ସାଙ୍ଗରେ ନେଇ ତାର ହୁକୁମ୍ ଦେବା ବନ୍ଦ କରିଦେଲେ । କେତେ ଦିନ ପରେ ଆସ୍ତେ ଆସ୍ତେ ସବୁ ଶାନ୍ତ ପଡିଗଲା । କିନ୍ତୁ କଥା କାଳ କାଳକୁ ରହିଗଲା ।

ଗ୍ରାମରେ ଶୁଣିଲି ଲୋକମାନେ ସବୁ କହୁଥିଲେ ମୁଁ କୋଉଠି ପାଠ ନ'ପଢି ବାଳୁଙ୍ଗା ହୋଇଗଲି । ଏହି ପ୍ରକାର ଅନେକ ଗୁଜବ ମୋ ନାଁରେ ରଟୁଥିଲା । ମୁଁ ସବୁ ଶୁଣି ନ ଶୁଣିଲା ପରି ରହୁଥିଲି ।

ମୁଁ ଗ୍ରାମରେ ଥିବାବେଳେ ଆଇ.ଏସ୍‌ସି. ପରୀକ୍ଷା ଫଳ ବାହାରିଲା । ମୁଁ ଖବର କାଗଜରୁ ଜାଣିଲି ଯେ, ମୋର ଦ୍ୱିତୀୟ ଶ୍ରେଣୀରେ ପାସ୍ ହୋଇଛି । କେବଳ ବୋଉକୁ କହିଥାଏ ଯେ ମୁଁ ଭଲ ଭାବରେ ପାସ୍ କରି ଯାଇଛି । ଗ୍ରାମରେ ଥାଇ ରେଭେନ୍ସା କଲେଜରୁ ଦରଖାସ୍ତ ଫର୍ମ ମଗାଇଲି । ଫିଜିକ୍ସ ଅନର୍ସ ନେଇ ବି.ଏସ୍‌ସି ପଢିବା ପାଇଁ ଦରଖାସ୍ତ କଲି । ତାର ପ୍ରାୟ ୨୦ ଦିନ ପରେ ମୋ ପାଖକୁ ଚିଠି ଆସିଲା ଯେ ବି.ଏସ୍‌ସିରେ ଫିଜିକ୍ସ ଅନର୍ସ ନେଇ ପଢିବା ପାଇଁ ଗୋଟିଏ ସିଟ୍ ତୁମ ପାଇଁ ସଂରକ୍ଷିତ ଅଛି । କିନ୍ତୁ ଗୋଟିଏ ନିର୍ଦ୍ଦିଷ୍ଟ ତାରିଖ ଭିତରେ ଆଡମିଶନ୍ ନ'ନେଲେ ସ୍ଥାନଟି ଅନ୍ୟକୁ ଦେଇ ଦିଆଯିବ । ସେଥିରୁ ମୋ ମନରେ ପାଠପଢାପ୍ରତି ଆବେଗ ସଞ୍ଚାର ହେଲା । ମୁଁ ତା'ପରେ ଜାଣିଲି କେତେକ ଫାଷ୍ଟ ଡିଭିଜନ ପିଲା ଫିଜିକ୍ସ ଅନର୍ସରେ ଆଡମିସନ୍ ପାଇ ନାହାଁନ୍ତି । ତାର କାରଣ ହେଲା ମୋର ଫିଜିକ୍ସ ଓ ମ୍ୟାଥମେଟିକ୍ସରେ ଅଧିକ ନମ୍ବର ଥିବାରୁ, ମୋତେ ଫିଜିକ୍ସ ଅନର୍ସ ଆଗ ମିଳିଗଲା ।

ପୁରୀ କଲେଜରେ ପଢିଲା ସମୟରେ ଅନେକ ପିଲାଙ୍କ ସହିତ ମୋର ଘନିଷ୍ଠତା ବଢିଥିଲା । ତାଙ୍କ ଭିତରୁ କେତେ ଜଣଙ୍କ ନାମ ଏଠାରେ ଲେଖୁଛି । ନୃସିଂହଚରଣ ପ୍ରଧାନ, ରାଧାଚରଣ ପଟ୍ଟନାୟକ, ଜୟଦେବ ପାତ୍ରୀ, ଦିବାକର ପତି, ଅନନ୍ତରାମ ମିଶ୍ର, ଦୟାନିଧି ଖାଡଙ୍ଗା, ଓ ଭାସ୍କର ମହାନ୍ତି ପ୍ରଭୃତି । ନୃସିଂହଚରଣ ପ୍ରଧାନ ଉତ୍କଳ ବିଶ୍ୱବିଦ୍ୟାଳୟରୁ ମାଟ୍ରିକ୍ୟୁଲେସନ ପରୀକ୍ଷାରେ ପ୍ରଥମ ହୋଇ ପାସ୍ କରିଥିଲେ । ପରବର୍ତ୍ତୀ ସମୟରେ 'ଇଉନିୟନ ଫରେଷ୍ଟ ସର୍ଭିସ' ପରୀକ୍ଷାରେ କୃତକାର୍ଯ୍ୟ ହୋଇ ଓଡିଶା ଫରେଷ୍ଟ ଡିପାର୍ଟମେଣ୍ଟରେ କାମ କଲେ । ତାଙ୍କ ସହିତ ମଝିରେ ମଝିରେ ଦେଖା ହୁଏ । ରାଧାଚରଣ ପଟ୍ଟନାୟକ ଶ୍ରୀ ରଙ୍ଗନାଥ ମିଶ୍ରଙ୍କ ପାଖରେ ଓକିଲାତି କରୁଥିଲେ । ପରବର୍ତ୍ତୀ କାଳରେ ହାଇକୋର୍ଟର ଜଷ୍ଟିସ୍ ରୂପେ ଯୋଗ ଦେଇଥିଲେ ଏବଂ ସୁପ୍ରିମ କୋର୍ଟର ଜର୍ଜ ମଧ୍ୟ ହୋଇଥିଲେ । ସୁପ୍ରିମ କୋର୍ଟ ଜର୍ଜ ହିସାବରେ ରହିବାର କେତେ ଦିନ ପରେ, ତାଙ୍କର କାର ଦୁର୍ଘଟଣାରେ କଟକ ଭୁବନେଶ୍ୱର ରାସ୍ତାରେ ଦେହାନ୍ତ ହେଲା । ଜୟଦେବ ପାତ୍ରୀ ପରେ କୃଷିବିଜ୍ଞାନ ପଢି ଓଡିଶାର କୃଷିବିଜ୍ଞାନ ବିଶ୍ୱବିଦ୍ୟାଳୟରେ ପ୍ରଫେସର ଥିଲେ । ତାଙ୍କ ସହିତ ମୋର ଅନେକ ଥର ପେନ୍‌ସନ୍ ନେବା ସମୟରେ ଦେଖା ହୋଇଛି । ଦିବାକର ପତିଙ୍କ ଘର ହେଉଛି ଢେଙ୍କାନାଳରେ । ତାଙ୍କ ସଙ୍ଗେ

ମୋର ଆଉ ଦେଖା ହୋଇନାହିଁ । ଆମେ ତାଙ୍କୁ ଚିଡାଉଥିଲୁ "ଢେଙ୍କାନାଳରେ ନିଶ ରଖିବା ପାଇଁ ହେଲେ, ରାଜାଙ୍କ ଠାରୁ ଲାଇସେନସ୍ ନେବାକୁ ପଡେ ।" ଜୟଦେବ ମିଶ୍ର ଓ ଦୟାନିଧି ଖାଡେଙ୍ଗା ଆମ ଗ୍ରାମର ମୋ ସାଙ୍ଗରେ ଚାକିରି ଜୀବନ ଭିତରେ ଭଲ ସମ୍ପର୍କ ଥିଲା । ଜୟଦେବ ମିଶ୍ର ଇଲେକଟ୍ରିକାଲ ଚିଫ ଇଞ୍ଜିନିୟର ହୋଇ ଅବସର ନେଲେ । ଦୟାନିଧି ଖାଡେଙ୍ଗା ଏଜୁକେସନ୍ ଅଧ୍ୟାପକ ହୋଇ କାର୍ଯ୍ୟରୁ ଅବସର ନେଲେ । ଅନନ୍ତରାମ ମିଶ୍ର ମଧ୍ୟ ମୋ ଉପର କ୍ଲାସରେ ପଢୁଥିଲେ । ସେ ଆମ ଘରକୁ ଏବେ ବେଳେ ବେଳେ ଆସନ୍ତି । ସେ ଓ.ଏ.ଏସ୍ ପରୀକ୍ଷାରେ ଉତୀର୍ଣ୍ଣ ହୋଇ ଓଡିଶା କ୍ୟାର୍ଡରେ ଚାକିରି କରି ଅବସର ନେଲେ । ଭାସ୍କର ମହାନ୍ତି ପୁରୀ ସହରର ବାସିନ୍ଦା ଅଟନ୍ତି । ସେ ମୋ ସାଙ୍ଗରେ ବି.ଏସ୍‌ସି ଗଣିତରେ ଅନର୍ସ ନେଇ ପଢୁଥିଲେ । ପଶ୍ଚିମ ଛାତ୍ରାବାସରେ ମୋ ପାଖ ଜଣିକିଆ କୋଠରୀରେ ରହୁଥିଲେ । ତାପରେ ବି.ଏସ୍‌ସି ପାସ୍ କରି ଜର୍ମାନୀ ଯାଇଥିଲେ । ମୁଁ ଆଉ ତାଙ୍କୁ ଦେଖିନାହିଁ ।

## ସ୍ନାତକ ବିଜ୍ଞାନ ଶିକ୍ଷା

ମୁଁ ଘରୁ ଆସି କଲେଜ ଓ ପଶ୍ଚିମ ଛାତ୍ରାବାସରେ ଆଡମିଶନ୍ ନେଇ ୧୪ ନମ୍ବର କୋଠରୀରେ ରହିଲି । ସେତେବେଳେ ଶ୍ରୀ ଗଣେଶ୍ୱର ମିଶ୍ର ଛାତ୍ରାବାସର ପରିଚାଳକ ଥିଲେ । ତାଙ୍କ ଘର ଆମ ଗାଁ ରାୟଚକ୍ରଧରପୁରରେ । ସେ ମୋର ବହୁତ ସୁବିଧା କରିଥିଲେ । ଛାତ୍ରାବାସରେ ରହିବାର ଦିନେ ଦୁଇଦିନ ପରେ ପଢା ଆରମ୍ଭ ହେଲା । ଗଣିତ ପଢାଉଥିଲେ ଡକ୍ଟର ଘନଶ୍ୟାମ ସାମଲ ଓ ଶ୍ରୀ ଜୟନାରାୟଣ ପଣ୍ଡା । ଡକ୍ଟର ସାମଲ୍ ପରବର୍ତ୍ତୀ କାଳରେ ରେଭେନ୍ସା କଲେଜର ଗଣିତ ପ୍ରଫେସର ଓ ଗଙ୍ଗାଧର ମେହେର କଲେଜର ଅଧ୍ୟକ୍ଷ ହୋଇଥିଲେ । ଡକ୍ଟର ଗୋକୁଳାନନ୍ଦ ମହାପାତ୍ର ଓ ଡକ୍ଟର ସୁକୁମାର ଆଦିତ୍ୟ କେମେଷ୍ଟ୍ରି ପଢାଉଥିଲେ । ଡକ୍ଟର ମହାପାତ୍ର ଅରଗାନିକ୍ କେମେଷ୍ଟ୍ରି ପଢାଉଥିଲେ ଓ ଡକ୍ଟର ଆଦିତ୍ୟ ଫିଜିକାଲ୍ କେମେଷ୍ଟ୍ରି ପଢାଉଥିଲେ । ସେ ସରକାରୀ ଚାକିରୀରୁ ଅବସର ନେଲାପରେ କଲିକତା ଚାଲିଗଲେ । ଫିଜିକ୍ସ ଅନର୍ସ କ୍ଲାସ୍ ଡକ୍ଟର ତ୍ରିଲୋଚନ ପ୍ରଧାନ, ପ୍ରପଟିଜ୍ ଅଫ୍ ମ୍ୟାଟର ଡକ୍ଟର ହରିହର ମିଶ୍ର ହିଟ୍, ଡକ୍ଟର ରାଧାଚରଣ ଦାସ ଅପ୍‌ଟିକ୍ସ ପଢାଉଥିଲେ । ଏସ୍. ଭେଙ୍କଟନାଦନ୍ ଇଲେକ୍‌ଟ୍ରିସିଟି ଏବଂ ମ୍ୟାଗ୍ନେଟିଜିମ୍ ପଢାଉ ଥିଲେ । ମୋତେ ଅନର୍ସ କ୍ଲାସ୍ ଗୁଡିକରେ ଉପସ୍ଥିତ ରହିବାକୁ ଭାରି ଭଲ ଲାଗୁଥିଲା । ଆଇ.ଏସ୍‌ସି କ୍ଲାସ୍‌ରେ ଯାହା ପଢା ହେଉଥିଲା, ମୁଁ ଭଲ ଭାବରେ ବୁଝି ପାରୁ ନ'ଥିଲି । କିନ୍ତୁ ଅନର୍ସ କ୍ଲାସ୍‌ରେ ଯାହା ପଢା ହେଉଥିଲା ତାହା ମୁଁ ଭଲ ଭାବରେ ବୁଝି ପାରୁଥିଲି । ଏମିତି କେତେ ଦିନ ଗଲାପରେ, ଆମେ ଶୁଣିବାକୁ ପାଇଲୁ ଯେ ସରକାର କଲେଜ ଫିସ୍ ବଢାଇ ଦେଇଛନ୍ତି । ତେଣୁ ଛାତ୍ର ଆନ୍ଦୋଳନର ସୂତ୍ରପାତ ହେଲା । ଛାତ୍ର ଆନ୍ଦୋଳନର ସୂତ୍ରଧର ଶ୍ରୀ ଗୋବିନ୍ଦଚନ୍ଦ୍ର ଦାସ । ସେ ଷଷ୍ଠ ବାର୍ଷିକ ଶ୍ରେଣୀର ଛାତ୍ରଥିଲେ । ଶ୍ରୀ ରାଜେନ୍ଦ୍ର ପ୍ରସାଦ ଦାସ ପଞ୍ଚମ ବାର୍ଷିକ ଛାତ୍ର ଥିଲେ । ସେହି ବର୍ଷ ପଶ୍ଚିମ ଛାତ୍ରାବାସର ସାଧାରଣ ସଂପାଦକ ଥିଲେ ଶ୍ରୀ ଶରତଚନ୍ଦ୍ର ହାଜେରା । ସେତେବେଳେ ରେଭେନ୍ସା କଲେଜ ହଲରେ ଓଡିଶାର ବିଧାନ ସଭା ବସୁଥିଲା । କଲେଜ ହଲ ଉପରେ ଥିବା ବିଭିନ୍ନ କୋଠରୀରେ ଥିଲା ମନ୍ତ୍ରୀମାନଙ୍କ ପ୍ରକୋଷ୍ଠ । ଯେଉଁଦିନ ଠାରୁ ଆନ୍ଦୋଳନ ଆରମ୍ଭ ହେଲା ତା ପରଦିନ

ଛାତ୍ରମାନେ ଫିସ୍ ବୃଦ୍ଧିର ପ୍ରତିବାଦ କରି ବିଧାନ ସଭା ସମ୍ମୁଖରେ ବିକ୍ଷୋଭ ପ୍ରଦର୍ଶନ କରିଥିଲେ । ପରଦିନ ଛାତ୍ରନେତାମାନେ ଠିକଣା କଲେ ଯେ, ଆମେ ଆଉ ବିଧାନସଭା ଚଳାଇ ଦେବୁ ନାହିଁ । ତେଣୁ ତା'ପର ଦିନ ପିଲାମାନେ ମନ୍ତ୍ରୀ ଓ ବିଧାନସଭାର ସଦସ୍ୟ ମାନଙ୍କୁ ହଲ୍ ଭିତରକୁ ପଶିବାକୁ ଦେଲେ ନାହିଁ । ପୋଲିସ୍ ଆସି ପିଲାଙ୍କ ଉପରକୁ ପାଣି ମାଡ କରି ଘଉଡାଇ ଦେବାକୁ ଚେଷ୍ଟା କଲେ । କିନ୍ତୁ ଦଳ ପରେ ଦଳ ପିଲା ଆସୁଥିବାରୁ ପିଲାଙ୍କୁ ଆଉ ଘଉଡାଇ ପାରିଲେ ନାହିଁ । ସେହିଦିନ ବିଧାନସଭା ବନ୍ଦ୍ ହୋଇଗଲା । ତା'ପର ଦିନ ସକାଳୁ ଉଠିଲା ବେଳକୁ ଆମେ ଦେଖିଲୁ ହଲ୍ ଚାରିପାଖରେ ରାଇଫଲ ଧରି ପୋଲିସ୍ ଧାଡି ହୋଇ ଛିଡା ହୋଇଛନ୍ତି । ଛାତ୍ରନେତାଙ୍କ କହିବା ଅନୁସାରେ ସବୁ ପିଲାମାନେ ଆଉ ଗୋଟିଏ ଧାଡି କରି ପୋଲିସ୍ ଆଗରେ ଛିଡାହେଲେ । ତେଣୁ ବିଧାନସଭା ଭିତରକୁ ଆଉ କେହି ପଶି ପାରିଲେ ନାହିଁ । କିଛି ସମୟ ପରେ ପୋଲିସ୍‌ମାନେ ଲୁହବୁହା ଗ୍ୟାସ୍ ଛାଡିଲେ । ଲାଠି ଚାର୍ଜ କଲେ କେତେ ପିଲାଙ୍କୁ ଗିରଫ କରି ପୋଲିସ୍ ଗାଡିରେ ବସାଇ ନେଇଗଲେ ।

ପରିସ୍ଥିତି କ୍ରମେ ଉଦ୍‌ବେଗ ଜନକ ହୋଇଗଲା । ତାପରେ ଆମେ ଛାତ୍ରାବାସରୁ ଶୁଣିବାକୁ ପାଇଲୁ ଯେ, ପରିଚାଳକ ରାତିଠାରୁ ମେସ୍ ବନ୍ଦ କରି ଦେଇଛନ୍ତି । ସବୁ ପିଲାଙ୍କୁ ଛାତ୍ରାବାସ ଛାଡି ଚାଲିଯିବା ପାଇଁ ନିର୍ଦ୍ଦେଶ ଦିଆଯାଇଛି । ସେତେବେଳକୁ ପ୍ରାୟ ୪ଟା ବାଜିଥାଏ । କେତେଜଣ ପିଲା ଜିନିଷ ପତ୍ର ନେଇ ଗ୍ରାମକୁ ଯିବାକୁ ବାହାରିଲେଣି । ଭାବିଲି, ମୁଁ ତ ଗ୍ରାମରେ ପହଁଞ୍ଚି ପାରିବି ନାହିଁ । ତେଣୁ ଚିନ୍ତା ଭାଇନାଙ୍କ ଘରକୁ ଚାଲିଯିବି । ତେଣୁ ମୋ ଜିନିଷ ପତ୍ର ଗଣେଶ୍ୱର ବାବୁଙ୍କ ଘରେ ରଖିଦେଇ, ଚିନ୍ତା ଭାଇନାଙ୍କ ଘରକୁ ଯିବାକୁ ବାହାରି ପଡିଲି । ସେତେବେଳେ ଭାଇନା ରେଭେନ୍ସା କଲେଜରୁ ବଦଳି ହୋଇ କଲିଜିଏଟ୍ ସ୍କୁଲ୍‌ରେ ଯୋଗ ଦେଇଥିଲେ । ସେ ସେତେବେଳେ ମଲ୍ଲିକ୍ କୋଠାରେ ଶ୍ରୀ ଦାମୋଦର ପଟ୍ଟନାୟକଙ୍କ ସହିତ ଏକାଠି ସପରିବାରେ ରହୁଥିଲେ । ମଲ୍ଲିକ୍ କୋଠାଟି ମହାନଦୀ କୂଳରେ ଗୋଟିଏ ନିଛାଟିଆ ଜାଗାରେ ଅବସ୍ଥିତ । ମୁଁ ତାଙ୍କ ଘରକୁ ଯିବା ପାଇଁ କଲେଜ ଛକରେ ପହଁଞ୍ଚିଲା ବେଳକୁ ତାଙ୍କୁ ସେଠାରେ ଦେଖିଲି । ମୁଁ କହିଲି "ଆମ ଛାତ୍ରାବାସ ଆଜି ସଂଧ୍ୟା ସୁଦ୍ଧା ଖାଲି କରି ଦେବା ପାଇଁ ନିର୍ଦ୍ଦେଶ ଦିଆଯାଇଛି । ତେଣୁ ମୁଁ ତୁମ ଘରକୁ ବାହାରିଛି ।" ସେ କହିଲେ "ମୁଁ ଏହି କଥା ରେଡିଓରୁ ଶୁଣି ତୋତେ ନେବାକୁ ଆସିଥିଲି ।" ଆମେ ଦୁହେଁ ଯାକ ସାଙ୍ଗହୋଇ ତାଙ୍କ ଘରକୁ ଗଲୁ । ତାପର ଦିନ ସକାଳୁ ଗ୍ରାମକୁ ଚାଲିଗଲି ।

ଗ୍ରାମରେ ପ୍ରାୟ ୩୦ ଦିନ ରହିଲା ପରେ ପୂଜା ପୂର୍ବରୁ ଖବର କାଗଜରୁ ପଢିଲି, କଲେଜ ଏକ ନିର୍ଦ୍ଦିଷ୍ଟ ତାରିଖରେ ଖୋଲୁଛି । ଯେଉଁ ଛାତ୍ରମାନେ ସବୁ ଯେଉଁ ଛାତ୍ରାବାସରେ ଥିଲେ, ସେମାନେ ଆସି ପୁଣିଥରେ ସେହି ଛାତ୍ରାବାସରେ ପୁନର୍ବାର ଆଡମିଶନ୍ ନିଅନ୍ତୁ । ନ'ହେଲେ ତାଙ୍କ ସିଟ୍ ଅନ୍ୟମାନଙ୍କୁ ଦେଇ ଦିଆଯିବ । ତେଣୁ ସବୁ ପିଲାମାନେ ଛାତ୍ରାବାସରେ ଆଡମିଶନ୍ ନେବାପାଇଁ ପହଁଞ୍ଚିଲେ । ଆମେ କେତେ ଜଣ ଆଡମିଶନ ନେଇଗଲୁ । ଅନ୍ୟ କେତେ ପିଲା ତାଙ୍କ ମୁରବୀମାନଙ୍କୁ ନେଇ ଆସିବାକୁ କୁହାଗଲା । ଆଉ କେତେଜଣଙ୍କୁ କୁହାଗଲା ଯେ ସେମାନଙ୍କର ଛାତ୍ରାବାସରେ ଆଡମିଶନ ହୋଇପାରିବ ନାହିଁ । ତାର କେତେଦିନ ପରେ ପ୍ରାୟ

ସମସ୍ତଙ୍କର ଆତମିଶନ ହୋଇଗଲା । ଯେଉଁମାନଙ୍କୁ ମନା କରାଯାଇଥିଲା ସେମାନେ ବହୁ କଷ୍ଟରେ କେତେ ଦିନ ପରେ ଛାତ୍ରାବାସରେ ରହିଲେ । ଆସ୍ତେ ଆସ୍ତେ ସବୁ ଶାନ୍ତ ହୋଇଗଲା । ସେତେବେଳେ ଶ୍ରୀ ନବକୃଷ୍ଣ ଚୌଧୁରୀ ଓଡିଶାର ମୁଖ୍ୟମନ୍ତ୍ରୀ ଥିଲେ । ବଢିଥିବା ଦରମା ଆଉ ପ୍ରତ୍ୟାହୃତ ହେଲା ନାହିଁ । କିନ୍ତୁ ସରକାର ଫ୍ରିଶିପ୍ ସଂଖ୍ୟା ବଢାଇ ଦେଲେ । ଏହିଭଳି ଭାବରେ ଆନ୍ଦୋଳନ ଶାନ୍ତ ହୋଇଗଲା । ଏହାପରେ ପଢାପଢି ପୂର୍ଣ୍ଣ ମାତ୍ରାରେ ଚାଲିଲା । ଶିକ୍ଷକମାନେ ଅଧିକ କ୍ଲାସ୍ ନେଇ ପାଠ୍ୟକ୍ରମକୁ ଶୀଘ୍ର ସାରିବା ପାଇଁ ଲାଗିଗଲେ । ସେତେବେଳେ ପର୍ଯ୍ୟନ୍ତ ଆମର ପ୍ରାକ୍ଟିକାଲ୍ କ୍ଲାସ୍ ଆଦୌ ଆରମ୍ଭ ହୋଇ ନ'ଥାଏ ।

## ଆଦର୍ଶ ଶିକ୍ଷକଙ୍କ ପଢାଇବା ନୀତି

ଆମର ପ୍ରଥମ ପ୍ରାକ୍ଟିକାଲ କ୍ଲାସ୍ ଅବସର ପ୍ରାପ୍ତ ପ୍ରଫେସର୍ ଶ୍ରୀ ନାରାୟଣ ମିଶ୍ର ନେଇଥିଲେ । ସେ କ୍ଲାସ୍‌ରେ କେତେଗୁଡିଏ ନିୟମ ପାଳନ କରିବା ପାଇଁ ପିଲାଙ୍କୁ ନିମ୍ନଲିଖିତ ନିର୍ଦ୍ଦେଶ ଦେଇଥିଲେ ।୧ – କ୍ଲାସ୍‌କୁ ଠିକ୍ ସମୟରେ ଆସିବ, ୨ – ଯେଉଁ ଏକ୍ସପେରିମେଣ୍ଟ କରିବାକୁ ଅଛି, ତାକୁ ଭଲକରି ପଢିବୁଝି ଆସିବ । ଯଦି ନବୁଝି ପାରିବ ତେବେ ଏକ୍ସପେରିମେଣ୍ଟର ଉପକରଣ ନେବା ପୂର୍ବରୁ କ୍ଲାସ୍ ଶିକ୍ଷକଙ୍କୁ ପଚାରି ବୁଝିବ, ୩ - ପ୍ରାକ୍ଟିକାଲ୍ ଖାତାରେ ଏକ୍ସପେରିମେଣ୍ଟ ଟେକ୍ସ ଗୁଡିକୁ ଭଲଭାବରେ ଲେଖିବ ଏବଂ ଏକ୍ସପେରିମେଣ୍ଟର ଟେବୁଲ୍ ଗୁଡିକ ସ୍କେଲରେ କାଟିକରି ଘରୁ ଆଣିଥିବ, ୪ – ତାପରେ କ୍ଲାସ୍‌ରେ ଏକ୍ସପେରିମେଣ୍ଟ କରିବାକୁ ଆରମ୍ଭ କରିବ । ଯଦି ଏ ସବୁ କାର୍ଯ୍ୟରେ କୌଣସି ଅସୁବିଧା ହୁଏ, ତେବେ ଶିକ୍ଷକଙ୍କ ଠାରୁ ବୁଝିବ, ୫ – ଏକ୍ସପେରିମେଣ୍ଟ ସରିଲେ ସବୁ ହିସାବପତ୍ର କରି ଫଳ ବାହାର କରି ଶିକ୍ଷକଙ୍କୁ ଦେଖାଇ ଘରକୁ ଯିବ ।

ଶେଷରେ ସେ କହିଲେ ଯେ "ମୋ କ୍ଲାସ୍‌ରେ ଏକ୍ସପେରିମେଣ୍ଟ୍ ନ ସାରିଲେ ତମେ ଘରକୁ ଯାଇ ପାରିବ ନାହିଁ ।" ଆମେ ସବୁ ମନେ ମନେ ହସିଲୁ । କାରଣ ଏହା କଣ ସମ୍ଭବ ? ପରେ ଆମେ ଦେଖିଲୁ ତାଙ୍କ କ୍ଲାସ୍‌ରେ ଲାବୋରାଟୋରୀ ଆସିସ୍‌ଟାଣ୍ଟ ଓ ପିଅନମାନେ ମଧ୍ୟ ଥାଆନ୍ତି । ଯଦି ରାତି ୮ଟା କିମ୍ବା ୯ ହୋଇଯାଏ , ବେଳେ ବେଳେ ପିଲାଙ୍କୁ ଭୋକ ହେବଣି କହି , ରସଗୋଲା ମଗାଇ ନିଜେ ଖାଆନ୍ତି ଓ ଅନ୍ୟମାନଙ୍କୁ ଖାଇବାକୁ ଦିଅନ୍ତି । ମୁଁ ବି କେତେଥର ରସଗୋଲା ଖାଇଛି । ଏଭଳି ଆଦର୍ଶ ଶିକ୍ଷକ ମୁଁ ଆଉ କେବେ ପଢିବା ଭିତରେ ଏବଂ ପଢାଇବା ଭିତରେ ଦେଖିନାହିଁ । ନାରାୟଣ ସାରଙ୍କ ବିଷୟରେ ଆଉ ପଦେ ଲେଖିବାକୁ ଇଚ୍ଛା କରୁଛି ।

ସେତେବେଳେ ଶ୍ରୀ ଗୋଲକବିହାରୀ ବାନାର୍ଜୀ ରେଭେନ୍ସା କଲେଜର ଅଧ୍ୟକ୍ଷ ଥାଆନ୍ତି । ଶ୍ରୀ ଗୋଲକବିହାରୀ ବାନାର୍ଜୀ ଫିଜିକ୍ସର ପ୍ରଫେସର ଥିଲେ । ପରେ ଅଧ୍ୟକ୍ଷ ହୋଇଥିଲେ । ସେ ନାରାୟଣ ମିଶ୍ରଙ୍କର ଛାତ୍ର ଥିଲେ । ଯେତେବେଳେ ଦୁହିଁଙ୍କର ଫିଜିକ୍ସ ଡିପାର୍ଟମେଣ୍ଟରେ କ୍ଲାସ୍ ଥାଏ ସେତେବେଳେ ସେ ଦୃଶ୍ୟ ବେଶୀ ଆନନ୍ଦ ଦାୟକ । କାରଣ କିଏ କାହାକୁ ଆଗ ନମସ୍କାର କରିବେ, ପରିସ୍ଥିତି ସୃଷ୍ଟିହୁଏ । ବେଳେବେଳେ ଗୋଲକବାବୁ ଆଗ ନମସ୍କାର କରି ଦିଅନ୍ତି । ଆମେ ଏ କଥା ଅଧ୍ୟକ୍ଷଙ୍କୁ ତ ପଚାରି ପାରିଲୁ ନାହିଁ । ନାରାୟଣ ବାବୁଙ୍କୁ ପଚାରି ବୁଝିଲୁ ଯେ, ଗୋଲକ ବାବୁଙ୍କୁ ନମସ୍କାର ହୁଅନ୍ତି କାରଣ ସେ ହେଉଛନ୍ତି ଅଧ୍ୟକ୍ଷ । ଗୋଲକବାବୁ ନାରାୟଣ ବାବୁଙ୍କୁ ନମସ୍କାର ହୁଅନ୍ତି କାରଣ ସେ ହେଉଛନ୍ତି ତାଙ୍କ ଶିକ୍ଷକ । ନାରାୟଣବାବୁ ଅବସର ନେଲା ପରେ,

ପୁଣି ଚାକିରିରେ ତାଙ୍କୁ ବାରମ୍ବାର ନିଯୁକ୍ତି ଦିଆଯାଇଥିଲା । କାରଣ ସେତେବେଳେ ଫିଜିକ୍ସ ଅଧ୍ୟାପକ ମିଳୁନ'ଥିଲେ ।

ଥରେ ନାରାୟଣ ବାବୁ ମୋତେ କ୍ଲାସ୍‌ରେ ପ୍ରଶ୍ନ କଲେ, ଦୁଇଟି ଫିଜିକ୍ସ ସମ୍ବନ୍ଧୀୟ ପ୍ରଶ୍ନରୁ କେଉଁଟି ଠିକ୍ ଏବଂ କାହିଁକି ? ମୁଁ କହିଲି ବୋଧ ହୁଏ ଗୋଟିଏ ନିର୍ଦ୍ଦିଷ୍ଟ ଉତ୍ତର ଠିକ୍ । ସେ ମୋ ଉପରେ ବିରକ୍ତ ହୋଇ କହିଲେ ଫିଜିକ୍ସ ପାଠରେ କୌଣସି 'ବୋଧହୁଏ' ଶବ୍ଦ ନାହିଁ । ତମର ଜ୍ଞାନ ଅନୁସାରେ ଗୋଟିଏ ଉତ୍ତର ଠିକ୍ ବୋଲି କହିବ । ସେ ଉତ୍ତରଟି ପଛେ ଭୁଲ୍ ହୋଇଥାଉ । ତୁମେ ଅଧିକ ଫିଜିକ୍ସ ତତ୍ତ୍ୱ ଜାଣିଲେ, କହିବ ମୋ ଉତ୍ତରଟି ଭୁଲ । ତେଣୁ ପ୍ରତ୍ୟେକ ଉତ୍ତରର କାରଣ ତୁମକୁ ବୁଝାଇବାକୁ ପଡିବ ।

## ଦରମା ଛାଡ ଆବେଦନ

ଦିନେ ଦେଖିଲି କଲେଜ ନୋଟିସ୍ ବୋର୍ଡରେ ଫ୍ରିସିପ୍ ପାଇବା ପାଇଁ ଦରଖାସ୍ତ ଆହ୍ୱାନ କରାଯାଉଛି । ସେତେବେଳେ ଖାଇବା ଖର୍ଚ୍ଚ ପାଇଁ ପ୍ରାୟ ମାସକୁ ୨୫ ଟଙ୍କା ଦେବାକୁ ପଡୁଥିଲା । ଫ୍ରିସିପ୍ ନ'ପାଇଲେ ପଢିବା ଅସମ୍ଭବ ହେବ ଜାଣି, ମୁଁ ଆମ ଗ୍ରାମର ଗଣେଶ୍ୱର ମିଶ୍ରଙ୍କୁ ଯାଇ କହିଲି । ସେ କହିଲେ ତୁମେ ପୁରୀ କଲେଜରେ ଫ୍ରିସିପ୍ ପାଉଥିଲ ? ମୁଁ କହିଲି ହଁ । ସେ କହିଲେ ତୁମେ ପୁରୀ କଲେଜରେ ଫ୍ରିସିପ୍ ପାଉଥିଲ ବୋଲି ଗୋଟିଏ ପ୍ରମାଣ ପତ୍ର ଆଣ । ତାହାହେଲେ ମୁଁ ତୁମର ଫ୍ରିସିପ୍ କରାଇ ଦେବି । କାରଣ ମୁଁ ଜାଣିଥାଏ ଯେ, ଫ୍ରିସିପ୍ କମିଟିର ସେ ଜଣେ ସଭ୍ୟ । ତାଙ୍କ କଥା ଶୁଣି ମୁଁ ଦିନେ ପୁରୀ ଯାଇ କଲେଜରୁ ଫ୍ରିସିପ୍ ପାଉଥିଲି ବୋଲି ଗୋଟିଏ ସାର୍ଟିଫିକେଟ୍ ଆଣିଲି । ଦିନେ ଦେଖିଲି କେମେଷ୍ଟ୍ରି ବିଭାଗରେ ପ୍ରଫେସର୍ ବଳଭଦ୍ର ପ୍ରସାଦଙ୍କ କୋଠରୀ ଠାରୁ  ଗୋଟିଏ ଲମ୍ବା ଧାଡି ଲାଗିଛି । ମୁଁ ପଚାରି ବୁଝିଲି 'ଡକ୍ଟର ପ୍ରସାଦ ଫ୍ରିସିପ୍ ପାଇବା ପାଇଁ ଆବେଦନ କରିଥିବା ଛାତ୍ର ମାନଙ୍କୁ ସାକ୍ଷାତ କରୁଛନ୍ତି । ତାପରେ ତୃତୀୟ ବାର୍ଷିକ ବିଜ୍ଞାନ ଛାତ୍ରଙ୍କ ସାକ୍ଷାତକାର ପାଇଁ ନିର୍ଦ୍ଦିଷ୍ଟ ତାରିଖରେ ବଟାନୀ ପ୍ରଫେସର ଡକ୍ଟର ବଂଶୀଧର ସାମନ୍ତରାଏଙ୍କୁ ଦେଖା କରିବା ପାଇଁ ଜଣାଇ ଦିଆଗଲା । ସେ ଦିନ ଫ୍ରିସିପ୍ ସାକ୍ଷାତକାର ପାଇଁ ମୁଁ ତାଙ୍କ କୋଠରୀକୁ ଗଲି । ସେ ମୋତେ ବହୁତ ବିଷୟ ଓଡିଆରେ ପଚାରିଲେ । ମୁଁ ତାଙ୍କୁ ଉତ୍ତର ଓଡିଆ  ଭାଷା ସାଙ୍ଗରେ ଗୋଟିଏ ଗୋଟିଏ ଇଂରାଜୀ ଶବ୍ଦ ଲଗାଇ କହିବାରୁ ସେ ବିରକ୍ତ ହେଲେ ଏବଂ କହିଲେ ତୁମକୁ କଣ ଓଡିଆ ଆସୁନାହିଁ । ଓଡିଆ ଭାଷା ସାଙ୍ଗରେ ମଝିରେ କାହିଁକି ଇଂରାଜୀ ଶବ୍ଦ କହୁଛ । ମତେ ପଚାରିଲେ ୧୯୪୮ରେ ମାଟ୍ରିକ୍ ପାଶ କଲ ଓ ୧୯୫୧ରେ ଆଇ.ଏସ୍‌ସି ପାଶ କଲ, ଗୋଟିଏ ବର୍ଷ ମଝିରେ କଣ କଲ  ? ମୁଁ କହିଲି ଇଂରାଜୀରେ ଫେଲ ହୋଇଗଲି । ସେ ପୁଣି ପଚାରିଲେ ଆଉ ତୁମର କିଏ ସବୁ ଅଛନ୍ତି । ମୁଁ କହିଲି ବୋଉ ଛଡା ମୋର ଆଉ କେହି ନାହାଁନ୍ତି । ସେ ପଚାରିଲେ ତୁମର ଆୟ ସବୁ କଣ ଅଛି । ମୁଁ କହିଲି ଯାହା ଧାନ ମିଳେ ତାହା ବର୍ଷକୁ ଜଣଙ୍କ ପାଇଁ ହୋଇଯାଏ । ୨/ ୩ ମାସରେ ନଡିଆ ତୋଳି ବିକ୍ରି କଲେ ମୋଟା ମୋଟି ୩୦ ଟଙ୍କା  ମିଳେ । ସେ ପ୍ରଶ୍ନ କଲେ "ତୁମେ ପରୀକ୍ଷା ଏବଂ ନାମ ଲେଖା ଫିସ୍ କିପରି ଦିଅ ?" ମୁଁ କହିଲି 'ନନା ଥିବା ସମୟରେ ବୋଉଙ୍କର କିଛି ଅଳଙ୍କାର ଥିଲା ତାକୁ ବିକ୍ରି କରି ଫିସ୍ ଦେଉଥିଲି ।' "ତୁମ ନନା କଣ କରୁଥିଲେ  ?" ସେ ପ୍ରଶ୍ନକଲେ । ମୁଁ କହିଲି "ନିମାପଡାରେ ଥିବା ପ୍ରାଇମେରୀ ସ୍କୁଲ୍‌ରେ ପ୍ରଧାନଶିକ୍ଷକ ଥିଲେ ।" ସେ ପ୍ରଶ୍ନ କଲେ "କେତେ ବର୍ଷ ହେଲାଣି ତାଙ୍କର

କାଳ ହୋଇଗଲାଣି ?" କହିଲି "ନଅ ବର୍ଷ ହେଲଣି ।" "ତମେ ପୁରା ଫ୍ରିସିପ୍ ପାଇଲେ ମଧ୍ୟ ପଢ଼ିବାକୁ ଟଙ୍କା ଅଣ୍ଟିବନି ?" ସେ କହିଲେ । ମୁଁ କହିଲି "ଆମର ଆଉ ଗୋଟିଏ ଆୟ ପନ୍ଥା ଅଛି । ନନା ବଞ୍ଚିଥିବା ସମୟରେ ନିମାପଡାରେ ୩ ଟି ଛୋଟ ଘର କରିଥିଲେ । ସେଥିରୁ ୧୦ କିମ୍ବା ୧୫ ଟଙ୍କା ଭଡା ମିଳେ । ତେଣୁ ଫ୍ରିସିପ୍ ପାଇଲେ ପଢ଼ି ପାରିବି ବୋଲି ମୋର ବିଶ୍ୱାସ । "ମୋ କଥା ଶୁଣି ସାରିବା ପରେ ସେ କହିଲେ "ବେକୁବ୍ ତୁମେ ଫ୍ରିସିପ୍ ପାଇବ । ଯାଅ ତୁମେ ଭଲ କରି ପଢାପଢ଼ି କର ।" ତାର କେତେ ଦିନ ପରେ ନୋଟିସ୍ ବାହାରିଲା ଯେ ମୁଁ ପୂରା ଫ୍ରିସିପ୍ ପାଇଛି । ମୋର ସେହି ଦୁଇ ବର୍ଷ ପଢ଼ିବା ପାଇଁ କିଛି ଅସୁବିଧା ହୋଇନାହିଁ ।

ମୁଁ ପ୍ରଫେସର ହେଲାପରେ ଫ୍ରିସିପ୍ ପାଇଁ ସାକ୍ଷାତକାର ନେଲାବେଳେ ଜାଣିଲି ଆବେଦନକାରୀଙ୍କ ମଧ୍ୟରୁ କେତେକ ମଧ୍ୟ ସାକ୍ଷାତକାର ପାଇଁ ଆସନ୍ତି ନାହିଁ । ଅନୁସନ୍ଧାନରୁ ଜାଣିଲି ଫ୍ରିସିପ୍‌ର ପରିମାଣ ୧୪ ଟଙ୍କା । କିନ୍ତୁ ମେସ୍ ଖର୍ଚ୍ଚ ପ୍ରାୟ ୧୦୦ ଟଙ୍କା । ଛାତ୍ରଙ୍କ ଅନ୍ୟାନ୍ୟ ଖର୍ଚ୍ଚ ବହୁତ ବେଶୀ । ତେଣୁ ସେମାନେ ଫ୍ରିସିପ୍ ପାଇବା ପାଇଁ ଲାଳାୟିତ ନୁହନ୍ତି ।

ଏହି ସମୟ ମଧ୍ୟରେ ରେଭେନ୍ସା କଲେଜରେ ଫିଜିକ୍ସ ଏମ୍.ଏସ୍‌ସି କ୍ଲାସ୍ ଖୋଲି ଯାଇଥିଲା । ମାତ୍ର ଚାରିଜଣ ପିଲାଙ୍କୁ ଆଡମିଶନ୍ ଦିଆଯାଇଥିଲା । କାରଣ ସ୍ଥାନ ସଂଖ୍ୟା ଚାରିଗୋଟି ଥିଲା । ଏମ.ଏସ୍‌ସି ପଢାଇବା ପାଇଁ ଡକ୍ଟର ଅରୁଣ କୁମାର ଦତ୍ତ ମୟୁରଭଞ୍ଜ ପ୍ରଫେସର ଭାବରେ ଫିଜିକ୍ସ ବିଭାଗରେ ଯୋଗ ଦେଇଥିଲେ । ଏହା ପୂର୍ବରୁ ସେ ଢାକା ବିଶ୍ୱବିଦ୍ୟାଳୟରେ ଚାକିରି କରୁଥିଲେ । ଭାରତ ପାକିସ୍ଥାନ ଭାଗ ଭାଗ ହେଲା ପରେ ସେ କଲିକତାର କୌଣସି କଲେଜରେ ଚାକିରି କରୁଥିଲେ । ସେ ରେଭେନ୍ସା କଲେଜରେ ଫିଜିକ୍ସ ମୁଖ୍ୟ ଭାବେ କାର୍ଯ୍ୟ କଲେ । ସେ ନୋଟିସ୍ ଦେଲେ ଯେ, ତାଙ୍କର ପୋଷ୍ଟ ଗ୍ରାଜୁଏଟ୍ ପିଲାଙ୍କର ନିର୍ଦ୍ଦିଷ୍ଟ ଦୁଇଟି କ୍ଲାସ୍‌ରେ ଅନର୍ସ ଛାତ୍ରମାନେ ମଧ୍ୟ ଯୋଗ ଦେବେ । ସେ ସେହି କ୍ଲାସ୍‌ରେ ଆମକୁ ଭେକ୍ଟର ଆନାଲିସିସ୍ ପଢାଉ ଥିଲେ । -

## ଛାତ୍ରାବାସରେ ପୂଜା ଓ ବାର୍ଷିକ ଉତ୍ସବ

ମୁଁ ଛାତ୍ରାବାସରେ ଥିବାବେଳେ ଗଣେଶ ପୂଜା ଓ ସରସ୍ୱତୀ ପୂଜା ପଶ୍ଚିମ ଓ ପୂର୍ବ ଛାତ୍ରାବାସ ମିଶି ପାଳନ କରାଯାଉଥିଲା । ପ୍ରଚଳିତ ପ୍ରଥା ଅନୁସାରେ ଗଣେଶ ପୂଜା ପଶ୍ଚିମ ଓ ସରସ୍ୱତୀ ପୂଜା ପୂର୍ବ ଛାତ୍ରାବାସରେ ଆୟୋଜନ କରାଯାଏ । ଦୁଇ ଛାତ୍ରାବାସର ମୂର୍ତ୍ତି ଏବଂ ପୂଜା ଗୋଟିଏ ଛାତ୍ରାବାସରେ କରାଯାଏ । ପୂଜା ପାଇଁ ସବୁ ଅଧ୍ୟାପକ ଓ ଅଧ୍ୟକ୍ଷଙ୍କୁ ନିମନ୍ତ୍ରଣ କରାଯାଏ । କେତେଜଣ ଅଧ୍ୟାପକ ପୂଜା ସମୟରେ ଉପସ୍ଥିତ ହୁଅନ୍ତି ଓ ଉପସ୍ଥିତ ଛାତ୍ରମାନଙ୍କ ସହିତ ମିଶି ପୁଷ୍ପାଞ୍ଜଳି ଅର୍ପଣ କରନ୍ତି । ପରେ ସମସ୍ତେ ଛାତ୍ରାବାସ ବାରଣ୍ଡାରେ ଧାଡି ହୋଇ ବସନ୍ତି ଏବଂ ସେମାନଙ୍କୁ କେତେକ ଛାତ୍ର ଓ କର୍ମଚାରୀ ମିଶି ଭୋଗ ବିତରଣ କରନ୍ତି । ଦିନେ ଦୁଇ ଦିନ ପରେ ମୂର୍ତ୍ତିକୁ ବିସର୍ଜନ କରାଯାଏ । ଗଣେଶ ପୂଜା ଓ ସରସ୍ୱତୀ ପୂଜାରେ ଗୋଟିଏ ଭୋଜିର ବ୍ୟବସ୍ଥା ହେଇଥାଏ । କିନ୍ତୁ ଏ ଭୋଜି ଭିନ୍ନ ଭିନ୍ନ ଛାତ୍ରାବାସରେ ଭିନ୍ନ ଭିନ୍ନ ଦିନରେ ହୋଇଥାଏ । ସେହି ଭୋଜିକୁ ଅଧ୍ୟକ୍ଷ, ଅନ୍ୟ ଛାତ୍ରାବାସର ପରିଚାଳକ, ସହ ପରିଚାଳକ ଓ ଛାତ୍ରାବାସର ନିର୍ବାଚିତ ପ୍ରତିନିଧି ମାନଙ୍କୁ ନିମନ୍ତ୍ରଣ କରାଯାଏ । କିନ୍ତୁ ପୂଜା ଭୋଜିରେ ଆମିଷର ବନ୍ଦୋବସ୍ତ ହୋଇଥାଏ । ଏହି ପ୍ରଥାକୁ ମୁଁ ବିରୋଧ କରିଥିଲି । ମାତ୍ର ମୋ କଥା ରହି ନ' ଥିଲା ।

ପ୍ରତି ଛାତ୍ରବାସରେ ପ୍ରାୟ ପ୍ରତିବର୍ଷ ଗୋଟିଏ ବାର୍ଷିକ ଉତ୍ସବ ପାଇଁ ଜଣେ ଜଣେ ପ୍ରତିଷ୍ଠିତ ବ୍ୟକ୍ତି ନିମନ୍ତ୍ରିତ ହୁଅନ୍ତି । ମୋର ମନେଅଛି ଛାତ୍ରାବାସର ଉତ୍ସବରେ ପୁରୀର ଶଙ୍କରାଚାର୍ଯ୍ୟ ଭାରତୀକୃଷ୍ଣ, ପଶ୍ଚିମ ବଙ୍ଗଳାର ବିଶିଷ୍ଟ ଓକିଲ ଶ୍ରୀ ଶିଦ୍ଧାର୍ଥ ଶଙ୍କର ରାୟ ପରବର୍ତ୍ତୀ କାଳରେ ପଶ୍ଚିମ ବଙ୍ଗଳାର ମୁଖ୍ୟମନ୍ତ୍ରୀ ପ୍ରଭୃତି ନିମନ୍ତ୍ରିତ ହୋଇ ଯୋଗଦେଇଥିଲେ । ବାର୍ଷିକ ଉତ୍ସବକୁ ରେଭେନ୍ସା କଲେଜର ସବୁ ଅଧ୍ୟାପକ ଓ ପ୍ରତି ଛାତ୍ରାବାସର ନିର୍ବାଚିତ ପ୍ରତିନିଧି ମାନଙ୍କୁ ମଧ୍ୟ ନିମନ୍ତ୍ରଣ କରାଯାଉଥିଲା । ବାର୍ଷିକ ଉତ୍ସବର କେତେଦିନ ଆଗରୁ ବିଭିନ୍ନ ପ୍ରକାର ପ୍ରତିଯୋଗିତା କରାଯାଇ ଶ୍ରେଷ୍ଠ ବିବେଚିତ ଅନ୍ତେବାସୀମାନଙ୍କୁ ସେହିଦିନ ପ୍ରାଇଜ୍ ଦିଆଯାଉ ଥିଲା । ମୁଁ ବ୍ୟାଡମିଟନ୍ ସିଙ୍ଗଲସ୍‌ରେ ଥରେ ଏବଂ ଡବଲସ୍‌ରେ ଥରେ ପୁରସ୍କୃତ ହୋଇଥିଲି । ଡବଲସ୍‌ରେ ମୋ ସାଙ୍ଗରେ ଭାସ୍କର ମହାନ୍ତି ଖେଳୁଥିଲେ । ସେହି ବାର୍ଷିକ ଉତ୍ସବରେ ପ୍ରାୟ ଅଧ୍ୟକ୍ଷ ସଭାପତିତ୍ୱ କରିଥାନ୍ତି । ବେଳେ ବେଳେ ଛାତ୍ରବାସର ପରିଚାଳକ ମଧ୍ୟ ସଭାପତିତ୍ୱ କରୁଥିଲେ । ଏହି ସଭାରେ ପ୍ରଧାନ ଅତିଥିଙ୍କୁ ପରିଚାଳକ ପରିଚୟ କରିଦିଅନ୍ତି । ତାପରେ ସାଧାରଣ ସଂପାଦକ, ଛାତ୍ରାବାସର ବାର୍ଷିକ ବିବରଣୀପାଠ କରନ୍ତି । ଶେଷରେ ସାଂସ୍କୃତିକ କାର୍ଯ୍ୟକ୍ରମ ହୁଏ । ଏହି କାର୍ଯ୍ୟକ୍ରମ ପରଂପରା କ୍ରମେ ହୋଇ ଆସୁଥିଲା ।

ଡିସେମ୍ବର ମାସରେ ଆମର ଛଅ ମାସିକ ପରୀକ୍ଷା ହେଲା । ବଡ ଦିନ ଛୁଟି ପରେ ପରୀକ୍ଷା ଫଳ ବାହାରିଲା । ମୁଁ ଅନର୍ସରେ ପ୍ରଥମ ସ୍ଥାନ ଅଧିକାର କରିଥିବାରୁ ଡକ୍ଟର ଶ୍ରୀ ହରିହର ମିଶ୍ର ଶ୍ରେଣୀରେ ମୋତେ ବଧେଇ ଜଣାଇଥିଲେ । ତା ପରଠାରୁ ମୁଁ ଅନର୍ସର ଗୋଟିଏ, ଭଲ ଛାତ୍ର ବୋଲି ଗଣା ହେଲି ।

## ମର୍ଯ୍ୟାଦାଜନକ ବିତର୍କ ସଭା

ଆମେ ବି.ଏସ୍‌ସି ପଢ଼ିଲା ବେଳେ ପ୍ରତିବର୍ଷ ବିଶ୍ୱବିଦ୍ୟାଳୟ ଅଧୀନରେ ଥିବା ସବୁ କଲେଜର ବଛା ବଛା ଛାତ୍ରମାନେ ଡିବେଟ୍ ବା ତର୍କ ପ୍ରତିଯୋଗିତା ଯୋଗ ଦିଅନ୍ତି । ଏହି ତର୍କ ପ୍ରତିଯୋଗିତାକୁ "ଚାନସେଲର ଡିବେଟ" କୁହାଯାଏ । ଏହା ହେଉଛି ସବୁଠାରୁ ମର୍ଯ୍ୟାଦାଜନକ ତର୍କ ପ୍ରତିଯୋଗିତା । ସେତେବେଳେ ଏହି ମର୍ଯ୍ୟାଦାଜନକ ପ୍ରତିଯୋଗିତା ସାଧାରଣତଃ ପଦାର୍ଥ ବିଜ୍ଞାନ ଗ୍ୟାଲେରୀରେ ଅନୁଷ୍ଠିତ ହେଉଥିଲା । ଏହି ମର୍ଯ୍ୟାଦାଜନକ ବକ୍ତୃତା ଶୁଣିବା ପାଇଁ କଟକର ବିଶିଷ୍ଟ ଲୋକ, ଅଧ୍ୟାପକ ଓ ଓକିଲମାନେ ଏତେ ପରିମାଣରେ ଆସୁଥିଲେ ଯେ ଫିଜିକ୍ସ ଗ୍ୟାଲେରୀରେ ଜାଗା ହେଉ ନ'ଥିଲା । ପିଲାମାନେ ସବୁ ବାରଣ୍ଡାରେ ଛିଡାହୋଇ ଶୁଣୁଥିଲେ । ପରବର୍ତ୍ତୀ କାଳରେ ଏହି ଡିବେଟ୍‌ରେ 'ବକ୍ତା ଓ ବିଚାରକ' ମଣ୍ଡଳୀ ବ୍ୟତୀତ ଆଉ କେହି ଆସନ୍ତି ନାହିଁ ।

ଏଠାରେ ଆଉ ଗୋଟିଏ ତର୍କ ପ୍ରତିଯୋଗିତା ବିଷୟରେ ପାଠକମାନଙ୍କୁ ଜଣାଇବା ଉଚିତ ମନେକରୁଛି । କାରଣ, ସେତେବେଳର ଅବସ୍ଥା ସହିତ ବର୍ତ୍ତମାନର ଅବସ୍ଥା ତୁଳନା କରିହେବ । ସେଥିରୁ ଅନୁମାନ କରିହେବ ଆଜିକୁ ଜ୍ଞାନର ଅବକ୍ଷୟ କେତେ ହେଲାଣି । ଥରେ ମଧୁ ବାରିଷ୍ଟରଙ୍କର ଜନ୍ମ ତିଥିରେ ଉତ୍କଳ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଗୋଟିଏ ତର୍କସଭାର ଆୟୋଜନ ହୋଇଥିଲା । ବିତର୍କର ବିଷୟବସ୍ତୁ ଥିଲା 'ମହିଳାମାନେ ଆଇନ୍ ବ୍ୟବସାୟକୁ ନିଜର

ଜୀବିକା ରୂପେ ଗ୍ରହଣ କରିବା ଉଚିତ୍ ନୁହେଁ(Women should not choose legal profession as their career) । ଏହି ବିଷୟ ବସ୍ତୁ ଉପରେ ଯେଉଁମାନେ ସପକ୍ଷରେ ଓ ବିପକ୍ଷରେ ରହିଥିଲେ ସେମାନଙ୍କ ମଧ୍ୟରୁ କେତେଜଣ ହେଲେ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ, ଡକ୍ଟର ପ୍ରଫୁଲ୍ଲ କୁମାର ପତି, ଡକ୍ଟର ଗଣେଶ୍ୱର ମିଶ୍ର ଓ କେତେକ ବିଶିଷ୍ଟ ଓକିଲ । ଜଣେ ବିପକ୍ଷରେ କହିଲେ "ସେକସ୍‌ପିୟରଙ୍କ ମରଚାଣ୍ଟ ଅଫ୍ ଭେନିସ୍ ନାଟକରେ ପୋରସିୟା ଜଣେ ସ୍ତ୍ରୀ ହୋଇ ମଧ୍ୟ ଜବାବ ସୁଆଲ କରିଥିଲେ ।" ଅନ୍ୟ ଜଣେ ସପକ୍ଷରେ କହିଲେ ଯେ, "ପୋରସିୟା କିନ୍ତୁ ପୁଅ ବେଶରେ ଯୁକ୍ତି କରିଥିଲେ ।" ତାଙ୍କ କହିବାର ମର୍ମ ହେଉଛି ପୋରସିୟା ଜଣେ ଅସାଧାରଣ ସ୍ତ୍ରୀ ଲୋକ । କିନ୍ତୁ ସାଧାରଣ ସ୍ତ୍ରୀ ଲୋକ, ଏପରି କହିପାରିବେ ନାହିଁ । ଏହି ଭଳିଆ ତର୍କ ପ୍ରତିଯୋଗିତା ମୁଁ ମୋ ଜୀବନରେ କେବେ ଶୁଣି ନାହିଁ ।

ଯେତେ ଦୂର ମନେ ଅଛି ମୋର, ତୃତୀୟ ବର୍ଷ ବିଜ୍ଞାନ ପଢ଼ିବା ସମୟରେ, ଥରେ ଚିନ୍ତା ଭାଇନା ରହୁଥିବା ମଲ୍ଲିକ୍ କୋଠୀରେ ତିନି ଜଣ ଡକାୟତ ପଶି, ଭାଇନା ରହୁଥିବା କୋଠରୀକୁ ବାହାରୁ ବନ୍ଦ କରିଦେଲେ । ଶ୍ରୀ ଦାମୋଦର ପଟ୍ଟନାୟକ ରହୁଥିବା ଘର ଦୁଆରକୁ ଗୋଟିଏ ବଡ ପଥରଖଣ୍ଡ ଦ୍ୱାରା ଆଘାତ କରି ଭାଙ୍ଗି ଦେଲେ । ତାଙ୍କ ଶୋଇବା ଘର ଭିତରେ ପଶି ଗଲେ । ଏହି ସମୟରେ ଦାମ ବାବୁ ଉଠି ଜଣେ ଡକାୟତର ପଚ୍ଛପଟୁ ଅଣ୍ଟାରୁ ଧରି ପକାଇଲେ । ତାଙ୍କ ପାଟି ଶୁଣି ଭାଇନାଙ୍କ ପିଲାମାନେ ଓ ଭାଉଜ ଉଠି ପଡିଲେ । କିନ୍ତୁ ବାହାରକୁ ବାହାରି ପାରିଲେ ନାହିଁ । ସେହି ସମୟ ଭିତରେ ଅନ୍ୟ ଦୁଇଜଣ ଡକାୟତ ଦାମ ବାବୁଙ୍କୁ ଆକ୍ରମଣ କଲେ । ତାଙ୍କ ମୁଣ୍ଡ ଫଟାଇ ଦେଲେ । ସେ ଅଚେତ ହୋଇଗଲେ । ଏହି ଅବସରରେ ଡକାୟତମାନେ ପଳାଇ ଗଲେ । ମଲ୍ଲିକ୍ କୋଠାରେ ପାଟି ଶୁଣି, ପାଖ ଆଖ ଲୋକେ ଆସିଲା ବେଳକୁ ଡକାୟତ ମାନେ ଚାଲି ଯାଇଥିଲେ । ଦାମବାବୁଙ୍କୁ ସଙ୍ଗେ ସଙ୍ଗେ ଡାକ୍ତରଖାନାକୁ ନିଆଗଲା । ସେ ପନ୍ଦର କୋଡିଏ ଦିନ ପରେ, ଟିକିଏ ସୁସ୍ଥ ହୋଇ ଘରକୁ ଫେରିଲେ । ଏହାପରେ ସେ ଘରେ ଆଉ, ସେମାନେ ରହିଲେ ନାହିଁ । ଚିନ୍ତା ଭାଇନା ସେ ଘର ଛାଡି, ତେଲେଙ୍ଗା ବଜାରରେ ଗୋଟିଏ ଘର ଭଡା ନେଇ ରହିଲେ ।

ଚତୁର୍ଥ ବର୍ଷକୁ ମୋର ପ୍ରମୋସନ ହୋଇଗଲା ଓ ମୁଁ ଗୋଟିଏ ଏକୁଟିଆ କୋଠରୀ ପାଇବାକୁ ଯୋଗ୍ୟ ବିବେଚିତ ହେଲି । ସବୁ ଛାତ୍ରଙ୍କ ମଧ୍ୟରୁ ଯେଉଁମାନେ ଅନର୍ସରେ ବେଶୀ ନମ୍ବର ପାଇଥାଆନ୍ତି ସେମାନଙ୍କୁ କ୍ରମାନ୍ୱୟରେ ଏକୁଟିଆ କୋଠରୀ ରହିବାକୁ ଦିଆଯାଏ । ମୋତେ ୪୩ ନମ୍ବର ଏକୁଟିଆ କୋଠରୀ ମିଳିବାରୁ ପଢାପଢି କରିବା ପାଇଁ ମୋର ବହୁତ ସୁବିଧା ହେଲା । ଅନର୍ସ ପ୍ରାକ୍ଟିକାଲ୍ କ୍ଲାସ୍‌ରୁ ଗୋଟିଏ କ୍ଲାସ୍ ଡକ୍ଟର ଦତ୍ତ ନେଉଥିଲେ । ସେ ଠିକ୍ ସମୟରେ ଆସି କ୍ଲାସ୍ ସରିବା ପର୍ଯ୍ୟନ୍ତ ରହୁଥିଲେ । ଅନ୍ୟ ପ୍ରାକ୍ଟିକାଲ କ୍ଲାସ୍ ଗୁଡିକ ଶ୍ରୀ ପ୍ରବୁଦ୍ଧ ବାନାର୍ଜୀ, ଶ୍ରୀ ବିଭୂତି ଭୂଷଣ ଦେଓ ଓ ଅନ୍ୟମାନେ ମିଶିକରି ନେଉଥିଲେ । ଶ୍ରୀ ତ୍ରିଲୋଚନ ପ୍ରଧାନ, ମେକାନିକ୍ସ, ହିଟ୍ କ୍ଲାସ୍, ହରିହର ମିଶ୍ର ପରିବର୍ତ୍ତେ ଅଧ୍ୟକ୍ଷ ଡକ୍ଟର ବାନାର୍ଜୀ ନେଉଥିଲେ । ଅପ୍‌ଟିକ୍ସ କ୍ଲାସ୍ ଡକ୍ଟର ବ୍ରହ୍ମାନନ୍ଦ ମିଶ୍ର ଓ ଇଲେକ୍‌ଟ୍ରିକ୍‌ସିଟି କ୍ଲାସ୍ ଶ୍ରୀ ଭେଙ୍କଟନୋଦନ ନେଉଥିଲେ । ମୋ ପାଖ କ୍ଲାସ୍‌ରେ ଭାସ୍କର ମହାନ୍ତି, ତ୍ରିଲୋଚନ ରଥ ଓ ଚନ୍ଦ୍ରଶେଖର ଦାନୀ

ପ୍ରଭୃତି ରହି ପଢୁଥିଲେ । ୩୮ ନମ୍ବରର ପାଖ ଜଣିଆ କୋଠରୀରେ, ସରୋଜ ବେହେରା, କିଶୋରଚନ୍ଦ୍ର ହୋତା, ଜଗବନ୍ଧୁ ପାଇକ୍‌ରାୟ ପ୍ରଭୃତି ଛାତ୍ରମାନେ ସେତେବେଳେ ରହୁଥିଲେ ।

## ଛାତ୍ର ଜୀବନରେ ବନ୍ଧୁ ବତ୍ସଳତା

ଆମେ ସବୁ ମିଶି ଗୋଟିଏ ଅନୁଷ୍ଠାନ ଗଢ଼ିଥାଉ । ତାହାର ନାମ ଦେଇଥିଲୁ "୩୮ ଆଣ୍ଡ୍ କୋ" ନାମରେ ସେହି ଲଟେରୀ ଟିକେଟ୍ କିଣାଯାଉ ଥିଲା । ଯଦି ଲଟେରୀରେ ଜିତି ଥାଆନ୍ତୁ, ତେବେ ଅଂଶୀଦାର ମାନେ ଭାରତ ଭ୍ରମଣ କରିବାକୁ ଯାଇଥାଆନ୍ତେ । କିନ୍ତୁ ଲଟେରୀ ମିଳିଲା ନାହିଁ । ଏ ସେହି ବନ୍ଧୁମାନଙ୍କ ମଧ୍ୟରୁ କେତେ ଜଣଙ୍କ ବିଷୟରେ କିଛି ଲେଖୁଛି । ଏଠାରେ ଆଉ କିଛି ଲେଖିବା ପାଇଁ ଇଚ୍ଛା କରୁଛି । ତ୍ରିଲୋଚନ ରଥ ବି.ଏସ୍‌ସି ରେ ଦ୍ୱିତୀୟ ଶ୍ରେଣୀ ଅନର୍ସ ପାଇ ପାସ୍ କରିଥିଲେ । ସର୍ବ ଭାରତୀୟ ଫରେଷ୍ଟ ସର୍ଭିସ୍ ପରୀକ୍ଷାରେ କୃତକାର୍ଯ୍ୟ ହୋଇ ଡି.ଏଫ.ଓ ହୋଇଥିଲେ । ପରବର୍ତ୍ତୀ ସମୟରେ କଂଜରଭେଟର ହୋଇଥିଲେ । ଅବସର ନେବା ପର୍ଯ୍ୟନ୍ତ ତାଙ୍କ ସହିତ ଦେଖା ହେଉଥିଲା । ଆମେ ତାଙ୍କ ଘରକୁ ଯାଉଥିଲୁ ଓ ତାଙ୍କ ପରିବାର ଆମ ଘରକୁ ଆସୁଥିଲେ । ସେ କଟକରେ ଗୋଟିଏ ଘର କରିଥିଲେ । ମୁଁ ଅବସର ନେବା ପରେ ଭୁବନେଶ୍ୱର ଚାଲି ଆସିଲି । ତାପର ଠାରୁ ଆଉ ତାଙ୍କ ସାଙ୍ଗରେ ଦେଖା ହୋଇପାରୁନାହିଁ । ଚନ୍ଦ୍ରଶେଖର ଦାନୀ ମଧ୍ୟ ଫରେଷ୍ଟ ସର୍ଭିସ୍ ପରୀକ୍ଷାରେ କୃତକାର୍ଯ୍ୟ ହୋଇ, କଂଜରଭେଟର ହୋଇଥିଲେ । ମୁଁ ଥରେ ଭଞ୍ଜନଗର ଓ ଫୁଲବାଣୀ କଲେଜରେ ଅନର୍ସ ପ୍ରାକ୍ଟିକାଲ ପରୀକ୍ଷା କରିବାକୁ ଯାଇଥିଲି । ଭଞ୍ଜନଗରରେ ତାଙ୍କ ସହିତ ଦେଖା ହୋଇଥିଲା । ସେ ମୋତେ ତାଙ୍କ ଘରକୁ ଖାଇବାକୁ ଡାକିଥିଲେ । ମୁଁ ତାଙ୍କ ଗାଡିରେ ଭଞ୍ଜନଗର ଠାରୁ ଫୁଲବାଣୀ ଯାଇଥିଲି । ମୋର ଅବସର ନେବା ପରେ, ଥରେ ତାଙ୍କ ସହିତ ଦେଖା ହୋଇଥିଲା । ସରୋଜକାନ୍ତ ବେହେରାଙ୍କୁ ଆଉ ଏ ପର୍ଯ୍ୟନ୍ତ ଦେଖି ନାହିଁ । ଶ୍ରୀ କିଶୋରଚନ୍ଦ୍ର ହୋତାଙ୍କ ସହିତ ଥରେ ଦୁଇ ଥର ଦେଖା ହୋଇଥିଲା । ଶ୍ରୀ ଜଗବନ୍ଧୁ ପାଇକ୍‌ରାୟଙ୍କ ଝିଅ ରେଭେନ୍ସା କଲେଜରେ ଫିଜିକ୍ସ ଅନର୍ସ ପଢୁଥିବାରୁ ମୋ ସାଙ୍ଗରେ ତାଙ୍କର କେତେ ଥର ଦେଖା ହୋଇଛି । ଏବେ ମଧ୍ୟ ତାଙ୍କ ଝିଅ ଦିଲ୍ଲୀ ବିଶ୍ୱବିଦ୍ୟାଳୟରୁ ଏମ୍.ଏସ୍‌ସି ପାସ କରି ରେଭେନ୍ସା କଲେଜରେ ଅଧ୍ୟାପିକା ଅଛି । କିନ୍ତୁ ତାଙ୍କ ବାପାଙ୍କର ଅକାଳ ମୃତ୍ୟୁ ହୋଇ ଯାଇଛି ।

ଥରେ ଆମେ କେତେ ଜଣ ବସି ଗପସପ କରୁଥାଉ । ପାଖ କୋଠରୀରେ କେତେଜଣ ଛାତ୍ର ମଧ୍ୟ ସେଠାରେ ଉପସ୍ଥିତ ହେଲେ । ତାଙ୍କ ସହିତ ସତ୍ୟନାରାୟଣ ପଟ୍ଟନାୟକ ନାମକ ବଟାନି ଅନର୍ସର ଜଣେ ଛାତ୍ର ମଧ୍ୟ ସେଠାରେ ଉପସ୍ଥିତ ଥିଲେ । ଅନ୍ୟାନ୍ୟ ଆଲୋଚନା ଭିତରେ ସତ୍ୟନାରାୟଣ ବାବୁ ତାଙ୍କ ପିଲା ଦିନର ଅନୁଭୂତି କହୁ କହୁ କହିଲେ ଯେ, ମୁଁ ନିମାପଡା ପ୍ରାଇମେରୀ ସ୍କୁଲ୍‌ରେ ପଢୁଥିଲି । ସେ କହିଲେ ସେହି ସ୍କୁଲ୍‌ର ହେଡ ପଣ୍ଡିତ ଜଣେ ଭାରି କଡା ଲୋକ ଥିଲେ । ତାଙ୍କ ନାମ ମୋର ମନେ ପଡୁ ନାହିଁ । ମୁଁ କହିଲି "ତାଙ୍କ ନାମ ଅଜୀବ ମିଶ୍ର । ମୁଁ ତାଙ୍କ ପୁଅ । ଆପଣଙ୍କ ବାପା ସେଠାରେ କଣ କରୁଥିଲେ ?" ସେ କହିଲେ "ସ୍କୁଲ୍ ସମୂହର ସବ୍‌ଇନ୍‌ସପେକ୍ଟର ଥିଲେ" । ମୁଁ କହିଲି "ଆପଣଙ୍କ ବାପାଙ୍କ ନାମ ଶ୍ରୀ ବାଳମୁକୁନ୍ଦ ପଟ୍ଟନାୟକ କି ?" ସେ ମୋତେ ପ୍ରଶ୍ନ କଲେ "ଆପଣ କିପରି ଜାଣିଲେ ?" ନନାଙ୍କ ମୃତ୍ୟୁ

ପରେ ନନାଙ୍କର କିଛି ପ୍ରାପ୍ୟ ମୋତେ ଫେରାଇବାକୁ ଆସିଥିଲେ । ଶ୍ରୀ ପଟ୍ଟନାୟକ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ହୋଇଥିଲେ । ମୋର ତାଙ୍କ ସହିତ ବହୁତ ସମୟରେ ଦେଖା ହୁଏ । ସେ ବଟାନି ପ୍ରଫେସର ଭାବରେ ଚାକିରିରୁ ଅବସର ନେଇ ଜାଗମରା ଠାରେ ନିଜର ଘର ତିଆରି କରି ଏବେ ରହୁଛନ୍ତି । ସେହି ଚତୁର୍ଥ ବର୍ଷ ଭିତରେ ଆଉ କିଛି ପ୍ରଧାନ ଘଟଣା ଘଟିନାହିଁ। ତାପରେ ଆମର ପ୍ରିଟେଷ୍ଟ ପରୀକ୍ଷା ହେଲା । ଏଥିରେ ମଧ୍ୟ ମୁଁ ଭଲ କରିଥିଲି । ଟେଷ୍ଟ ପରୀକ୍ଷାରେ ମଧ୍ୟ ଭଲ ହେଲା ଓ ବିଶ୍ୱବିଦ୍ୟାଳୟ ପରୀକ୍ଷା ଦେବାକୁ ମଧ୍ୟ ମନୋନୀତ ହୋଇଥିଲି । ସମସ୍ତେ କହୁଥିଲେ ୩/୪ ଜଣଙ୍କ ସହିତ ମୁଁ ପ୍ରଥମ ଶ୍ରେଣୀରେ ପାସ୍ କରିବି । ଅନ୍ୟ ଆଡେ ମନ ନଦେଇ ବିଶ୍ୱବିଦ୍ୟାଳୟ ପରୀକ୍ଷା ପାଇଁ ପଢାପଢି କଲି । କେତେ ଦିନ ପରେ ପରୀକ୍ଷା ପ୍ରୋଗ୍ରାମ୍ ବାହାରିଲା । ପ୍ରୋଗ୍ରାମ୍ ଅନୁସାରେ ପ୍ରଥମ ଦିନ, ଅନର୍ସ ପ୍ରଥମ ଓ ଦ୍ୱିତୀୟ ପେପର । ଦ୍ୱିତୀୟ ଦିନ, କେମେଷ୍ଟ୍ରି ପ୍ରଥମ ଓ ଦ୍ୱିତୀୟ ପେପର । ତୃତୀୟ ଦିନ, ମ୍ୟାଥ୍‌ମେଟିକ୍ସ ପ୍ରଥମ ଓ ଦ୍ୱିତୀୟ ପେପର । ଚତୁର୍ଥ ଦିନ, ମ୍ୟାଥ୍‌ମେଟିକ୍ସ ତୃତୀୟ ପେପର । ପଞ୍ଚମ ଦିନ, ଅନର୍ସ ତୃତୀୟ ଏବଂ ଚତୁର୍ଥ ପେପର । ମାତ୍ର ପାଞ୍ଚ ଦିନରେ ପରୀକ୍ଷା ଶେଷ । କିନ୍ତୁ ବର୍ତ୍ତମାନ ଏକା ଦିନକେ ଦୁଇଟି ପେପର ପରୀକ୍ଷା ପ୍ରୋଗାମ ହେଲେ ଛାତ୍ର ଆନ୍ଦୋଳନର ସୂତ୍ରପାତ ହେଉଛି । ଏବେ ଦୁଇଟି ପେପର ମଝିରେ ଅନ୍ତତଃ ଦୁଇଦିନ ଖାଲି ରହୁଛି । ଆମ ଥିଓରି ପରୀକ୍ଷାର ସରିବା ୨୦ କିମ୍ବା ୨୫ ଦିନ ପରେ ପ୍ରାକ୍ଟିକାଲ୍ ପରୀକ୍ଷା ହୋଇଥିଲା । ସେହି ପରୀକ୍ଷାକୁ କଲିକତା ବିଶ୍ୱବିଦ୍ୟାଳୟର ଶ୍ରୀ ପୁରଣଚନ୍ଦ୍ର ମହାନ୍ତି ନାମକ ଜଣେ ପ୍ରଫେସର ବାହ୍ୟ ପରୀକ୍ଷକ ହୋଇ ଆସିଥିଲେ । ଏ.କେ. ଦତ୍ତ ଆଉ ଜଣେ ପରୀକ୍ଷକ ଥିଲେ । ପ୍ରାକ୍ଟିକାଲ ପରୀକ୍ଷାରେ ମୋର ଭଲ ହେଲା ନାହିଁ । ସେହି ପରୀକ୍ଷା ପରେ ମୁଁ ଗ୍ରାମକୁ ଚାଲିଗଲି ।

ମୋର ବି.ଏସ୍‌ସି ପଢିବା ସମୟରେ ନିମାପଡା ଘରଭଡାରୁ ମାସିକ ୧୫ ଟଙ୍କା ପାଉଥିଲି । ନଡିଆ ବିକ୍ରିରୁ କିଛି ଟଙ୍କା ପାଉଥିଲି । ସ୍କଲାରସିପ୍ ପାଇ ମଧ୍ୟ ବି.ଏସ୍‌ସି ପଢିବା ପାଇଁ ହେଉଥିବା ଖର୍ଚ୍ଚ ଏହାଠାରୁ ବହୁତ ବେଶୀ ଥିଲା । ଯେତେବେଳେ ଟଙ୍କା ନିଅଣ୍ଟ ପଡେ ବୋଉଙ୍କର ଯେଉଁ ସୁନା ଅଳଙ୍କାର ଥିଲା ତାକୁ ବିକି ଖର୍ଚ୍ଚ ତୁଲାଉଥିଲି । ମୁଁ କାହାଠାରୁ ଟଙ୍କା ଆଣି ନାହିଁ କି ଟିଉସନ୍ କରିନାହିଁ ।

ଗ୍ରାମ୍‌ରେ ଥିବାବେଳେ ମୋର ବି.ଏସ୍‌ସି ଫଳ ବାହାରିଲା । ମୋର କିନ୍ତୁ ପ୍ରଥମ ଶ୍ରେଣୀ ହୋଇନ'ଥିଲା । ପ୍ରଥମ ଶ୍ରେଣୀକୁ ୭ ନମ୍ବର କମି ଯାଇଥିଲା । ଥିଓରି ପେପରରେ ପ୍ରଥମ ଶ୍ରେଣୀ ନମ୍ବର ଥାଇ ମଧ୍ୟ ପ୍ରାକ୍ଟିକାଲ୍‌ରେ କମ୍ ନମ୍ବର ଥିବାରୁ ଦ୍ୱିତୀୟ ଶ୍ରେଣୀ ହୋଇଗଲା । ମୋ ଉପରେ ଆଉ ତିନି ଜଣ ଫାଷ୍ଟ କ୍ଲାସ୍ ପାଇଥିଲେ । ମୋ ମନ ବହୁତ ଖରାପ ହେଲା । ଆଉ କିଛି କରିବାର ନ'ଥିଲା । ଭାଗ୍ୟକୁ ଆଦରି ରହିଲି । ମୋର ବନ୍ଧୁବାନ୍ଧବ ମାନେ ବି.ଇ.ଡି ପଢିବା ପାଇଁ କହୁଥିଲେ । ମୋର ମନକୁ ପାଉ ନ'ଥିଲା । ଏହି ସମୟରେ ଓଡିଶା ସରକାରଙ୍କର ବାହାରେ ଟେକ୍ନିକାଲ ପଢିବା ପାଇଁ ଦରଖାସ୍ତ ଆହ୍ୱାନ କରିଥିଲେ । ମୁଁ ରେଡିଓ ଫିଜିକ୍ସ ପଢିବା ପାଇଁ ଦରଖାସ୍ତ କରିଥିଲି ଏବଂ ମୁଁ କଲିକତାରେ ମାସିକ ୭୫ ଟଙ୍କା ଷ୍ଟାଇପେଣ୍ଡ ପାଇ ରେଡିଓ ଫିଜିକ୍ସ ଓ ଇଲେକଟ୍ରୋନିକ୍ସ ପଢିବା ପାଇଁ ମନୋନୀତ ହୋଇଥିଲି । ଏଥିପାଇଁ ବେଶୀ ଟଙ୍କା ଦରକାର ହେବ ଜାଣି ମୁଁ ଏବଂ ବୋଉ ନିମାପଡା ଯାଇ ଭଡା ନେଇଥିବା ଘରକୁ ବିକ୍ରି କରି ଦେବାପାଇଁ

ଠିକ୍ କଲୁ । ଆମ ଘରଟିକୁ ଦାମ ବାବୁ ନିଜେ ନେବାପାଇଁ କହିବାରୁ ଆମେ ତାଙ୍କୁ ଦେବାକୁ ରାଜି ହେଲୁ । ସେ ଘରର ଦାମ୍ ବାବଦକୁ ମାସକୁ ୬୦ ଟଙ୍କା ହିସାବରେ ଦୁଇ ବର୍ଷ ପର୍ଯ୍ୟନ୍ତ ଦେଲା ପରେ ଆମେ ତାଙ୍କୁ କବଲା କରିଦେବୁ ବୋଲି ଚୁକ୍ତି ପତ୍ର କରିଦେଲୁ ।

## ପରିଣୟ ପ୍ରସ୍ତାବ ଓ ବିଭାଘର

୧୯୫୩ ମସିହା ବେଳକୁ ରାଜଧାନୀ ତିଆରି କାମ ଜୋର ସୋରରେ ଆରମ୍ଭ ହୋଇଯାଇଥାଏ । ସେତେବେଳେ ମୋର ବଡ ଭିଣୋଇ ବାଲେଶ୍ୱରରୁ ଆସି ଭୁବନେଶ୍ୱର ରାଜଧାନୀ ନିର୍ମାଣ ବିଭାଗରେ କାମ କରୁଥିଲେ । ମୁଁ ଏବଂ ବୋଉ ତାଙ୍କ ଘରକୁ ଯିବାପାଇଁ ବାହାରିଲୁ । କିନ୍ତୁ ତାଙ୍କ ଘର ଦେଖି ନ'ଥିଲୁ । ପଚାରି ବୁଝିଲୁ ଯେ ଗୋଟିଏ ବସ୍ ସବୁ ଟ୍ରେନ୍ ସମୟକୁ ଭୁବନେଶ୍ୱର ଷ୍ଟେସନରେ ଛିଡା ହୁଏ ବୋଲି । ସେହି ବସ୍‌ରେ ବସିଲେ ତାଙ୍କ ଘର ପାଖରେ ପହଁଞ୍ଚି ହେବ । ସେହି ଅନୁସାରେ ଆମେ ଯାଇ ତାଙ୍କ ଘରେ ପହଞ୍ଚିଲୁ । ସେଠାରେ ତିନି କିମ୍ବା ଚାରିଦିନ ରହିଲା ଭିତରେ ମୁଁ ଜାଣିବାକୁ ପାଇଲି ଯେ, ବୋଉ ବଡ ଭିଣୋଇଙ୍କୁ କହିଲେ "ତୁମେ ଗୋଟିଏ ଭଲ ବ୍ରାହ୍ମଣ ପାତ୍ରୀ ବଚ୍ଚୁ ପାଇଁ ଠିକ୍ କରିଦିଅ ।" ସେ ରାଜି ହେଲେ । ଭିଣୋଇଙ୍କ ଗ୍ରାମର ବଳୀ ମହାପାତ୍ର ନାମକ ଜଣେ ଲୋକ ପୁରୀର ସଂସ୍କୃତ କଲେଜର ଅଧ୍ୟାପକ ଶ୍ରୀ ଆନନ୍ଦ ମିଶ୍ରଙ୍କର ଗୁମାସ୍ତା ରୂପେ କାମ କରୁଥିଲେ । ସେ ଭିଣୋଇଙ୍କୁ କହିଲେ "ଆନନ୍ଦ ମିଶ୍ରଙ୍କର ଦୁଇଟି ନାତୁଣୀ ପାଇଁ ବରପାତ୍ର ଖୋଜୁଛନ୍ତି । ଆପଣ ଚାହିଁଲେ ତାଙ୍କ ସାଙ୍ଗରେ କଥା ବାର୍ତ୍ତା କରିବି" । ମୁଁ ଥରେ ପୁରୀ ଯାଇଥାଏ । ସେହି ସମୟରେ ପରିସ୍ଥିତିରେ ପଡି ମୁଁ ଏବଂ ବୋଉ, ତାଙ୍କ ସାନ ନାତୁଣୀକୁ ଦେଖିବାକୁ ତାର ମାମୁଁ ଘରକୁ ଗଲୁ । ମୁଁ ସେତେବେଳେ କିଛି ନ'କହି ଘରକୁ ଆସିଲି । ଖବର ସଂଗ୍ରହ କରି ବୁଝିଲି ଯେ ସାନ ନାତୁଣୀଟି ହେଉଛି ତାଙ୍କ ପୁଅର ଝିଅ । ଆନନ୍ଦ ମିଶ୍ରଙ୍କର ଝିଅ ନ'ଥିବାରୁ ସେ ନାତୁଣୀକୁ ଝିଅ କରିଥିଲେ । ମୁଁ ମନା କରି ନ'ଥିବାରୁ ମୁଁ ରାଜି ବୋଲି ବୋଉ ଭାବିନେଲେ । ସେହି ବର୍ଷ ଶୀତଳ ଷଷ୍ଠୀକୁ ମୁଁ ଭିଣୋଇଙ୍କ ଗ୍ରାମ ବୀର ନରସିଂହପୁର ଯାଇଥିଲି । ଆନନ୍ଦ ମିଶ୍ରଙ୍କର ଗୋଟିଏ ଘର ଭିଣୋଇଙ୍କ ଗ୍ରାମରେ ଥାଏ । ମୋତେ ଭିଣୋଇ ତାଙ୍କ ଘରକୁ ଡାକି ନେଇଗଲେ । ବୋଧେ ସେ ମୋତେ ଦେଖିବାକୁ ଚାହୁଁଥିଲେ । ସେ ମୋ ସହିତ କଥାବାର୍ତ୍ତା ହେଲେ ଏବଂ ଗୋଟିଏ ଶ୍ଳୋକ ବୋଲିଲେ । ତାର ଅର୍ଥ ମୁଁ ଏପର୍ଯ୍ୟନ୍ତ ବୁଝିନାହିଁ । ସେ ମୋତେ କହିଲେ "ଚଞ୍ଚଳାଟି ଭାରି ଭାଗ୍ୟବତୀ ଓ ଲକ୍ଷ୍ମୀବନ୍ତ" । ମୁଁ ଯାହା ତାଙ୍କ କଥାରୁ ଜାଣିଲି, ସେ ଏହି ପ୍ରସ୍ତାବରେ ରାଜି ହୋଇଗଲେ । ତାପରେ ଭିଣୋଇଙ୍କ ଠାରୁ ଶୁଣିଲି ଜାତକ ଭଲ ଶୁଝିଛି ଏବଂ ରାଜଜୋଟକ ପଡିଛି । ମୁଁ ମନେ ମନେ ଭାବିଲି, ସେ କାହିଁକି ତାଙ୍କ ଝିଅକୁ ମୋ ସହିତ ବିଭା ଦେବାକୁ ରାଜି ହେଲେ ? ମୋର ତ କିଛି ନାହିଁ । ନିର୍ବନ୍ଧ ଦିନ ମୁଁ, ବୋଉ ଓ ଭିଣୋଇ ପୁରୀ ଯାଇଥିଲୁ । ସୂର୍ଯ୍ୟ ମନ୍ଦିରରେ ନିର୍ବନ୍ଧ ହୋଇଗଲା । ପରେ ପରେ ଜୁନ୍ ୨୪ ତାରିଖରେ ବିବାହ ହେବ ବୋଲି ସ୍ଥିର ହୋଇଗଲା । ୨୩ ତାରିଖରେ ଆମ ଗ୍ରାମରେ ମଙ୍ଗଳକୃତ୍ୟ ଭୋଜି ହୋଇଥିଲା । ୨୪ ତାରିଖ ଦିନ ସକାଳୁ ମୁଁ ପାଲିଙ୍କିରେ ବସି

ସତ୍ୟବାଦୀରେ ପହଁଞ୍ଚିଲି । କିଛି ସମୟ ପରେ ବସ୍‌ରେ ପୁରୀ ଗଲୁ । ଗୋଟିଏ ଧର୍ମଶାଳାରେ କିଛି ସମୟ ଅପେକ୍ଷା କଲୁ । ଧର୍ମଶାଳା ପାଖକୁ ସେମାନେ ପାଲିଙ୍କୀ ପଠାଇଲେ । ପାଲେଙ୍କୀରେ ବସି ବାସେଲି ସାହିର ପଣ୍ଡିତ ଆନନ୍ଦ ମିଶ୍ରଙ୍କ ଘରକୁ ଗଲୁ । ଯେପରି ବିଭାଘର ହେବା କଥା ସେହି ଅନୁସାରେ ବିଭାଘର ହୋଇଗଲା । ବିଭାଘର ପରଦିନ ଗୋଟିଏ କାରରେ ବସି ଆମେ ଦୁହେଁ ସତ୍ୟବାଦୀ ଆସିଲୁ । ସତ୍ୟବାଦୀରେ ଆଉ ଗୋଟିଏ ପାଲିଙ୍କୀର ବନ୍ଦୋବସ୍ତ ହୋଇଥିଲା । ଆମେ ଦୁଇଜଣ ପୁଣି ପାଲିଙ୍କୀରେ ବସି ଗ୍ରାମକୁ ଆସିଲୁ । ସାତ ମଙ୍ଗଳା ଶେଷ ପର୍ଯ୍ୟନ୍ତ ବିଭାଘରର କିଛି କର୍ମ ହେଉଥିଲା । ଆଠ ମଙ୍ଗଳା ଦିନ ସକାଳୁ ପୁରୀରୁ ଶ୍ୱଶୁରଙ୍କ ଘରୁ କେହି ଜଣେ ସମ୍ପର୍କୀୟ ଆସି, ମୋ ସ୍ତ୍ରୀଙ୍କୁ ନେଇଗଲେ । ତାପରେ ତା ସାଙ୍ଗରେ ଏମ୍.ଏସ୍‌ସି ଆଡମିସନ୍ ନେବା ଭିତରେ ଆଉ ଦେଖା ହୋଇ ନଥିଲା ।

## ସ୍ନାତକୋତ୍ତର ବିଜ୍ଞାନ ଶିକ୍ଷା

ଏତିକିବେଳେ ପୋଷ୍ଟ ଗ୍ରାଜୁଏଟ୍‌ରେ ଆଡମିସନ୍ ନେବାପାଇଁ ଦରଖାସ୍ତ ଆହ୍ୱାନ କରାଯାଇଥିଲା । ମୁଁ ଦରଖାସ୍ତ କଲି । ମୁଁ ଆଡମିସନ୍ ନେବାପାଇଁ ମଧ୍ୟ ମନୋନୀତ ହୋଇଥିଲି । ମାତ୍ର ଏମ୍.ଏସ୍‌ସି ପଢ଼ିବି କି କଲିକତାରେ ରେଡିଓ ଫିଜିକ୍ସ ପଢ଼ିବି, ଏହା ଠିକ୍ କରି ନପାରି ବୁଝା ବୁଝି କରିବା ପାଇଁ କଟକ ଗଲି । ଦିନେ ୯ଟା ବେଳେ ମୁଁ ଯାଇ ଅଧ୍ୟକ୍ଷ ଡକ୍ଟର ବାନାର୍ଜୀଙ୍କୁ ଦେଖାକରି 'ଏମ୍.ଏସ୍‌ସି ପଢ଼ିବି କି କଲିକତାରେ ରେଡିଓ ଫିଜିକ୍ସ ପଢ଼ିବି ବୋଲି ପଚାରିଲି ।' ସେ ମୋର ଅଭାବ ଅସୁବିଧା କଥା ବୁଝିଲେ । ଏହାପରେ ସେ କହିଲେ, "ତୁମେ ରେଡିଓ ଫିଜିକ୍ସ ପଢ଼ିଲେ ଇଂଞ୍ଜିନିୟର କିମ୍ବା ଅଧ୍ୟାପକ ହୋଇ ପାରିବ ନାହିଁ । ତେଣୁ ଏମ.ଏସ୍‌ସି ପଢ଼ିବା ଭଲ । ପାଶ୍ କଲାପରେ, ସଙ୍ଗେ ସଙ୍ଗେ ଚାକିରି ମିଳିଯିବ ।" ତାଙ୍କ କଥା ମାନି ମୁଁ ଆଉ ରେଡିଓ ଫିଜିକ୍ସ ଇଲେକଟ୍ରୋନିକ୍ସରେ ଆଡମିସନ୍ ନେବା ପାଇଁ କଲିକତା ଗଲି ନାହିଁ । ସିଦ୍ଧାନ୍ତ କଲି ଏମ୍.ଏସ୍‌ସି ପଢ଼ିବି । ୧୯୫୩ ମସିହାରେ ମୁଁ ଏମ.ଏସ୍‌ସି(M.Sc) ପଢ଼ିବା ଉଦ୍ଦେଶ୍ୟରେ ଟଙ୍କା ଦରକାର ହେବାରୁ ଶ୍ରୀ ଦାମୋଦର ଦାଶଙ୍କୁ ସେହି ଜାଗାଟି ବିକ୍ରି କରିଦେଇ ଥିଲି । ସେ କିନ୍ତୁ ମାସକୁ ଷାଠିଏ ଟଙ୍କା ଲେଖାଏଁ ଘରର ଦାମ ବାବଦରେ ଦୁଇବର୍ଷ କାଳ ଦେବାକୁ ରାଜି ହୋଇଥିଲେ । ଯାହାହେଉ ସେହି ଟଙ୍କାରେ ଏମ.ଏସସି ପଢ଼ି ପାସ କରିବା ପାଇଁ ସକ୍ଷମ ହୋଇଥିଲି ।

ସାତ ମଙ୍ଗଳା ଯିବାର କେତେ ଦିନ ପରେ ମୁଁ ଆଡମିସନ୍ ନେବାକୁ କଟକ ଚାଲିଗଲି । ଆଡମିସନ୍ ନେଇସାରି ପୋଷ୍ଟଗ୍ରାଜୁଏଟ୍ ଛାତ୍ରାବାସରେ ରହିଲି । ପୋଷ୍ଟଗ୍ରାଜୁଏଟ୍ ଛାତ୍ରାବାସ ଦେଖି ମୋର ଛାତ୍ରାବାସ ପ୍ରତି ଧାରଣା ଖରାପ ହୋଇଗଲା । ସେଠାରେ ପଞ୍ଚମ ବାର୍ଷିକ ଛାତ୍ର ପିଲାଙ୍କୁ ଗୋଟିଏ, ୧୨ ଜଣିଆ କୋଠରୀରେ ରହିବାକୁ ପଡୁଥିଲା । ମୁଁ ମୋର କେତେଜଣ ସାଙ୍ଗ ଛାତ୍ରାବାସରେ କେତେ ଦିନ ରହିଲା ପରେ ଚାଉଳିଆଗଞ୍ଜରେ ଥିବା ଗିରିଧାରୀ ସାହୁ କଲୋନୀରେ ଗୋଟିଏ ଘର ମାସକୁ ଚାଳିଶି ଟଙ୍କାରେ ଭଡା ନେଇ ଆମେ ପାଞ୍ଚ ଜଣ ପିଲା ସେଠାରେ ମେସ୍ କରି ରହିଲୁ । ସେ ମେସ୍‌ର ନାମ ଦେଲୁ 'ପୋଷ୍ଟଗ୍ରାଜୁଏଟ୍ ଲଜ୍' । ଯେଉଁମାନେ ସେଠାରେ ଥିଲୁ ସେମାନେ ହେଲେ ଶ୍ରୀ ଶାନ୍ତନୁ କୁମାର ଆଚାର୍ଯ୍ୟ, ପଞ୍ଚମ ବାର୍ଷିକ ରସାୟନ ବିଜ୍ଞାନ, ଶ୍ରୀ ସତ୍ୟନାରାୟଣ ପଟ୍ଟନାୟକ, ଶ୍ରୀ ଶ୍ରୀଧର ଜେନା, ଶ୍ରୀ ରାଘବନ୍ ଓ ମୁଁ । ଅନ୍ୟ ତିନି ଜଣ ଯାକ ପଞ୍ଚମ ବାର୍ଷିକ ଉଦ୍ଭିଦ ବିଜ୍ଞାନ ଛାତ୍ର । ଆମେ ଘରକାମ ପାଇଁ ଗୋଟିଏ ପିଲା ରଖିଥିଲୁ । ସେ ସବୁ କାମ କରୁଥିଲା । ସେ ପିଲାଟି ଯେତେବେଳେ ଚାକିରି ଛାଡିଦେଇ ଚାଲିଗଲା ଆମେ ସମସ୍ତେ ମିଶିକରି ରାନ୍ଧି ଖାଇଲୁ । ଆମର ସେଇଠାରେ ଦିନ ଗୁଡିକ ସୁରୁଖରୁରେ

କଟିଯାଉଥିଲା । ଗିରିଧାରୀ ସାହୁ କଲୋନୀ ରେଭେନ୍ସା କଲେଜ ଠାରୁ ପ୍ରାୟ ତିନି କିଲୋମିଟର ରାସ୍ତା । ତେଣୁ ମୁଁ ବୋଉଙ୍କଠାରୁ କିଛି ପଇସା ଆଣି ଓ ମୁଁ ବଞ୍ଚାଇ ରଖିଥିବା କିଛି ଟଙ୍କା ମିଶାଇ ସାଇକେଲ୍‌ଟିଏ କିଣିଲି । ମାସେ କିମ୍ବା ଦୁଇମାସ୍ ଚଢିଲା ପରେ ଗୋଟିଏ ଦୁର୍ଘଟଣାର ସମ୍ମୁଖୀନ ହେଲି । ପାଖରେ ଯାଉଥିବା ଗୋଟିଏ ଟ୍ରକ ନିକଟକୁ ଚାଲି ଆସି ତାର ଆଗଚକ ଦୁଇଟି ଅତିକ୍ରମ କରି ଚାଲିଗଲା ସମୟରେ ମୁଁ ଟ୍ରକ ଆଡକୁ ପଡି ଯିବାକୁ ଲାଗିଲି । ଠିକ୍ ସେହି ସମୟରେ ହାଣ୍ଡଲରୁ ହାତ ଛାଡିଦେଇ ଟ୍ରକକୁ ଠେଲି ଦେଲି । ଫଳରେ ମୁଁ ଟ୍ରକର ବିପରୀତ ପଟକୁ ପଡିଗଲି । ଟ୍ରକର ପଛ ଚକ ଗୋଟିଏ ସାଇକେଲର ଆଗ ଚକ ଏବଂ ହ୍ୟାଣ୍ଡଲ ଉପର ଦେଇ ମାଡିଗଲା । ମୋର କିଛି ହୋଇନ'ଥିଲା । ଯଦି ବିପରୀତ ଦିଗରେ ପଡିଥାଆନ୍ତି, ତେବେ ମୁଁ ଆଉ ଏ ସଂସାରରେ ନ' ଥାଆନ୍ତି । ମୁଁ ଗୋଟିଏ ସାଙ୍ଗ ପିଲାଠାରୁ ଟଙ୍କା ଧାରକରି ସାଇକେଲଟି ସଜାଡିବା ପାଇଁ ଦେଲି । ତାର ତିନି ଚାରି ଦିନ ଭିତରେ ସାଇକେଲ୍‌ଟି ତିଆରି ହୋଇଗଲା । କିନ୍ତୁ ନୂଆ ହ୍ୟାଣ୍ଡେଲଟିଏ ଲଗାଇବାକୁ ପଡିଲା । ମୋର ଏହି ଦୁର୍ଘଟଣା କଥା ବୋଉ କିମ୍ବା ଅନ୍ୟ କାହାକୁ କହିନାହିଁ । ଏଠାରେ ଗୋଟିଏ କଥା ପାଠକ ମାନଙ୍କର ମନେ ପକାଇ ଦେବାକୁ ଚାହୁଁଛି ଯେ ମୋତେ ନିମାପଡାରେ ଜ୍ୟୋତିଷ ଶ୍ରୀ ଶ୍ରୀନିବାସ ନାୟକ କହିଥିଲେ ଯେ ତୁମର ୨୩ ବର୍ଷ ବୟସରେ ଗୋଟିଏ ମାର୍କ ଦଶା ଅଛି । କିନ୍ତୁ ଯଦି ତୁମର ବିବାହ ହୋଇ ଯାଇଥିବ, ତେବେ ଖରାପ ଦଶାଟି କିଛି କ୍ଷତି କରିପାରିବ ନାହିଁ । ଏହି ଦୁର୍ଘଟଣା ହୋଇଥିବା ସମୟରେ ପ୍ରାୟ ମୋତେ ୨୨ ବର୍ଷ ୬ ମାସ ହୋଇଥିଲା ଏବଂ ମୋର ବିବାହ ସରିଥିଲା । ଏଣୁ ତାହାଙ୍କ କଥା ଫଳିଲା ।

ମୋର ପଞ୍ଚମ ବାର୍ଷିକ କ୍ଲାସ୍‌ରେ ଡକ୍ଟର ଏ.କେ ଦର, ଡକ୍ଟର ବ୍ରହ୍ମାନନ୍ଦ ମିଶ୍ର, ଡକ୍ଟର ରାଧାଚରଣ ଦାସ, ଶ୍ରୀ ତ୍ରିଲୋଚନ ପ୍ରଧାନ ଓ ଶ୍ରୀ ହରେକୃଷ୍ଣ ରାଉତ୍ ଥିଓରି କ୍ଲାସ୍ ନେଉଥିଲେ । ଅଧ୍ୟାପକଙ୍କ ସଂଖ୍ୟା କମ୍ ଥିବାରୁ ଆମେ ପ୍ରାକ୍ଟିକାଲ କ୍ଲାସ୍‌କୁ କେହି ଆସି ରହୁ ନ'ଥିଲେ । ଦରକାର ପଡିଲେ ଆମେ ଯାଇ ଶିକ୍ଷକଙ୍କ ପାଖରୁ ବୁଝି ଆସୁଥିଲୁ । ମୁଁ ନିଜେ ଯାଇ ଶ୍ରୀ କୁଳମଣି ସାମଲଙ୍କ ଠାରୁ ବୁଝି ଆସୁଥିଲି । ସେ ହେଉଛନ୍ତି ରେଭେନ୍ସା କଲେଜର ଫିଜିକ୍ସ ପୋଷ୍ଟଗ୍ରାଜୁଏଟ୍ କ୍ଲାସ୍‌ର ପ୍ରଥମ ବ୍ୟାଚ୍ ଛାତ୍ର । ସେ ସେହି ବର୍ଷ ଅଧ୍ୟାପକ ଭାବରେ ନିଯୁକ୍ତି ପାଇଥାଆନ୍ତି । ପୋଷ୍ଟଗ୍ରାଜୁଏଟ୍ ଲଜ୍‌ରେ ଥିବାବେଳେ ଥରେ ଜଣେ ଛାତ୍ର ମୋତେ କହିଲେ "ମୁଁ ମୁଷାମରା ଔଷଧ ଭୁଲ୍ ବଶତଃ ଖାଇଦେଇଛି । ଆମ ଘରକୁ ଖବର ଦିଅ ଏବଂ ମୋତେ ଡାକ୍ତରଖାନା ନେଇଯାଅ ।" ଆମ ଲଜ୍ ପିଲାମାନେ ମିଶି ତାଙ୍କୁ ନେଇ ଇମରଜେନସି ଓ୍ୱାଡ୍‌ରେ ଆଡମିସନ୍ କରିଦେଲୁ । ତାଙ୍କ ଘରକୁ ମଧ୍ୟ ଖବର ଦେଇଦେଲୁ । ୩ କିମ୍ବା ୪ ଦିନ ପରେ ସେ ଭଲ ହୋଇ ଘରକୁ ଆସିଲେ ।

ଆମ ସାଙ୍ଗରେ ଜଣେ ଛାତ୍ର ଏମ.ଏସ୍‌ସି. ପଢିବା ପାଇଁ ନାମ ଲେଖାଇ ଥିଲେ । ତାଙ୍କନାମ ମୋର ମନେ ନାହିଁ । ତାଙ୍କୁ ପ୍ରାୟ ସେତେବେଳେ ୫୦ ବର୍ଷ ହୋଇଥିଲା । ସେ ବୋଧେ ୧୯୨୧ ମସିହାରେ ବି.ଏସ୍‌ସି. ପାସ କରିଥିଲେ । ତାଙ୍କର ଏମ.ଏସ୍‌ସି. ପଢିବାର ଆଗ୍ରହକୁ ମନେ ମନେ ଧନ୍ୟବାଦ ଦେଉଥିଲି । କିନ୍ତୁ ସେ ୫/୬ ମାସ ପର୍ଯ୍ୟନ୍ତ ଆମ ସାଙ୍ଗରେ ଥିଓରି ଏବଂ ପ୍ରାକ୍ଟିକାଲ କ୍ଲାସକୁ ଆସୁଥିଲେ । ତାପରେ ଜମା କ୍ଲାସକୁ ଆସିଲେ ନାହିଁ କି ପରୀକ୍ଷା ଦେଲେ ନାହିଁ । ଏହି ସମୟରେ ଶ୍ରୀ ତ୍ରିଲୋଚନ ପ୍ରଧାନ, ଭାରତ ସରକାରଙ୍କ ଦ୍ୱାରା ମନୋନୀତ



ନନାଙ୍କର ଦେହାନ୍ତ : ୧୨.୦୬.୧୯୪୨, ସତ୍ୟବାଦୀ ଡାକ୍ତରଖାନା



ବୋଉଙ୍କର ଦେହାନ୍ତ :
୦୨.୦୪.୧୯୬୬, ଭୁବନେଶ୍ୱର



ସ୍ତ୍ରୀଙ୍କର ଦେହାନ୍ତ :
୧୭.୦୬.୧୯୯୮, ଭୁବନେଶ୍ୱର



ବଡ଼ ଝିଅ ପ୍ରଭାତୀ ମିଶ୍ର ସ୍କୁଲର ସବୁ ଛାତ୍ରୀଙ୍କ ମଧ୍ୟରେ
ଉତ୍କୃଷ୍ଟ ବିବେଚିତ ହୋଇଥିବା ଯୋଗୁ ପ୍ରଫେସର ରାଜକିଶୋର ରାୟଙ୍କ ଧର୍ମପତ୍ନୀ
ଶ୍ରୀମତୀ ରାୟ ସୁନା ପଦକ ପୁରସ୍କାର ପ୍ରଦାନ କରୁଛନ୍ତି : ପୁରୀ ବାଳିକା ବିଦ୍ୟାଳୟର
ବାର୍ଷିକ ଉତ୍ସବ : ୨୭.୩.୧୯୭୩



ଶ୍ରୀମତୀ ପ୍ରଣତି ମିଶ୍ର ଭୂଗୋଳରେ ପି.ଏଚ୍.ଡ଼ି. ପାଇବା ପାଇଁ ବନାରସ ବିଶ୍ୱବିଦ୍ୟାଳୟରେ
ବକ୍ତୃତା ଦେଉଛନ୍ତି । ସମ୍ମୁଖରେ ବିଶ୍ୱବିଦ୍ୟାଳୟର ଶିକ୍ଷକ ଏବଂ ଛାତ୍ରମାନେ ଶୁଣୁଛନ୍ତି । (୧୯୯୧)



କାଶ୍ମୀର ସସ୍ତ୍ରୀକ ପରିଭ୍ରମଣ
ସମୟରେ ଖିଲାଣ ମାର୍ଗ ଠାରେ : ମସିହା ୧୯୮୫



ଇଣ୍ଟର ନ୍ୟାସନାଲ କନ୍‌ଫରେନସ୍ ଅନ୍ ଫିଜିକ୍ସ ଏଜୁକେସନ, କର୍ମଶାଳା,
ଜୟପୁର, ରାଜସ୍ଥାନ, ମୋର ଭାଷଣ : ୨୯.୧୨.୮୩



ଫିଜ଼ିକ୍ସ ବିଭାଗରେ, ଅଂଶଗ୍ରହଣକାରୀମାନେ 'ସ୍ୱଳ୍ପ ବ୍ୟୟରେ ପ୍ଲାଜମା ବିଜ୍ଞାନ ପରୀକ୍ଷା'
କରିବାକୁ ଯିବା ପୂର୍ବରୁ ମୁଁ, ମୋର ସ୍ତ୍ରୀ ଓ ଡଃ ଅଭିମନ୍ୟୁ ମିଶ୍ରଙ୍କ ଉପସ୍ଥିତରେ
ଡଃ ପ୍ରିୟତମା ଦେଓ ରିବନ୍ କାଟୁଛନ୍ତି : ୨୧.୦୬.୧୯୮୭



ରେଭେନ୍ସା କଲେଜ ଫିଜ଼ିକ୍ସ ବିଭାଗରେ 'ଲୋ କଷ୍ଟ କ୍ଲାସ ରୁମ୍ ଏକ୍ସପେରିମେଣ୍ଟ'
ସମୟରେ ପ୍ରାୟୋଗିକ ପରୀକ୍ଷା କରୁଛନ୍ତି : ୧୯୮୭

ଦେଲେ ନାହିଁ । ଏହି ସମୟରେ ଶ୍ରୀ ତ୍ରିଲୋଚନ ପ୍ରଧାନ, ଭାରତ ସରକାରଙ୍କ ଦ୍ୱାରା ମନୋନୀତ ହୋଇ 'ଫୁଲ୍ ବ୍ରାଇଟ୍ ବୃତ୍ତି' ପାଇ ଆମେରିକାକୁ ଗବେଷଣା କରିବା ପାଇଁ ଯାଇଥିଲେ । ସେ ଚିକାଗୋ ବିଶ୍ୱବିଦ୍ୟାଳୟରେ ଗବେଷଣା କରୁଥିଲେ ।

ଶ୍ରୀ କୁଳମଣି ସାମଲ, ଆମ ଘର ପାଖରେ ଗିରିଧାରୀ ସାହୁ କଲୋନୀରେ ଘର ଭଡାନେଇ ରହୁଥିଲେ । ଆମ ଲଜ୍ ପାଖରେ ଡାକ୍ତର ସତ୍ୟବାଦୀ ହଜାରୀ ମେଡିକାଲ କଲେଜରେ ଆନାଟୋମି ବିଭାଗରେ ଅଧ୍ୟାପକ ମଧ୍ୟ ରହୁଥିଲେ । ଶ୍ରୀ କୁଳମଣି ସାମଲ, ଡକ୍ଟର ଦରଙ୍କ ପାଖରେ ଅଲଟ୍ରାସୋନିକ୍‌ରେ ଗବେଷଣା କରୁଥିଲେ । ମୁଁ ଏବଂ ସାମଲ ବାବୁ ସଂଧ୍ୟାବେଳେ ଗିରିଧାରୀ ସାହୁ କଲୋନୀ ପାଖରେ ଥିବା ବିଲ ଭିତରେ ବସି କଥାବାର୍ତ୍ତା ହେଉ । ମୁଁ ତାଙ୍କ ଠାରୁ ଗବେଷଣା ବିଷୟରେ ବୁଝାବୁଝି କରେ । ସେ ଏକ୍ସପେରିମେଣ୍ଟ ଉପରେ ଗବେଷଣା କରୁଥିଲେ । ମୁଁ ମନେ ମନେ ଠିକ୍ କରିଥିଲି ଏମ୍.ଏସ୍‌ସି ପାଶ୍ କଲାପରେ, ଏକ୍ସପେରିମେଣ୍ଟ ଉପରେ ଗବେଷଣା କରିବି । ପଞ୍ଚମ ବର୍ଷ ପଢିବା ସମୟରେ ଭୋର ୪ ଟାରୁ ଉଠି ସକାଳୁ ଗାଧୋଇ କଣ ଟିକିଏ, ଖାଇ ପଢାପଢି କରୁଥିଲି । ଭୋରରୁ ନିଦ ଭାଙ୍ଗିବା ପାଇଁ ଗୋଟିଏ ବ୍ୟାଟ୍ରି ଚାଳିତ ଇଲେକଟ୍ରିକ୍ ବେଲ୍‌କୁ ଏପରି ଭାବରେ ସଂଯୁକ୍ତ କରିଥିଲି ଯେ ଠିକ୍ ନିର୍ଦ୍ଦିଷ୍ଟ ସମୟ ହେଲେ ୧୦ କିମ୍ବା ୧୫ ସେକେଣ୍ଡ ପାଇଁ ବେଲ୍‌ଟି ବାଜି ଉଠେ । ତେଣୁ ଠିକ୍ ସମୟରେ ଉଠି ପଡୁଥିଲି ।

## ପୁରାତନ ଛାତ୍ର, ଶିକ୍ଷକ ସମାବେଶ ଓ ବିଜ୍ଞାନ ମେଳା

ପ୍ରତିବର୍ଷ ଫେବୃଆରୀ କିମ୍ବା ମାର୍ଚ୍ଚ ମାସରେ ରେଭେନ୍ସା କଲେଜର ପୁରାତନ ଛାତ୍ର, ଅଧ୍ୟାପକ ଓ ଛାତ୍ରମାନଙ୍କର ଗୋଟିଏ ସମାବେଶ ହୁଏ । ସେହି ଅବସରରେ ପ୍ରତି ବିଜ୍ଞାନ ବିଭାଗରେ ପ୍ରଦର୍ଶନୀ (Exhivition) ଆୟୋଜନ ହୁଏ । ଫିଜିକ୍ସ ବିଭାଗରେ ପୋଷ୍ଟ ଗ୍ରାଜୁଏଟ୍ ଓ ଅନର୍ସ ଛାତ୍ରମାନେ ମିଶି ବିଭିନ୍ନ ଦର୍ଶନୀୟ ଏକ୍ସପେରିମେଣ୍ଟ ସବୁ ଦର୍ଶକ ମାନଙ୍କୁ ଦେଖାନ୍ତି ଓ ବୁଝାନ୍ତି ଏବଂ ବିଭିନ୍ନ କାମରେ ଅଧ୍ୟାପକମାନଙ୍କୁ ସାହାଯ୍ୟ କରନ୍ତି । ପିଲାମାନଙ୍କୁ କୁହାଯାଏ ସେମାନେ ଯଦି କୌଣସି ନୂଆ ଏକ୍ସପେରିମେଣ୍ଟ କିଛି କରି ଦେଖାଇ ପାରିବେ ତେବେ ଫିଜିକ୍ସ କର୍ମଶାଳାର ସାହାଯ୍ୟ ନେଇ ପାରିବେ ।

ମୁଁ ସେ ବର୍ଷ ପ୍ରଦର୍ଶନୀରେ ସୂର୍ଯ୍ୟାସ୍ତ କିପରି ହୁଏ ? ତାହା ପ୍ରଦର୍ଶନ କରିଥିଲି । ସେଥିପାଇଁ ଗୋଟିଏ ବଡ କାଚ ବିକରରେ ଚାରିଭାଗରୁ ତିନିଭାଗ ପାଣି ନେଇଥିଲି । ସେଥିରେ ୩୦ ସି.ସି ଲଘୁ ସଲଫ୍ୟୁରିକ୍ ଏସିଡ୍ ମିଶାଇ ଦେଇଥିଲି । ଠିକ୍ ସୂର୍ଯ୍ୟାସ୍ତ କିପରି ହୁଏ ତାହା ଦେଖାଇବା ସମୟରେ ୧୦ ସି.ସି ଖଣ୍ଡେ ହାଇପୋ-ଦ୍ରବଣ ବିକର ପାଣିରେ ପକାଇ ଦେଇ ତାକୁ ମିଶାଇ ଦେଲି । ତାପରେ ପାଣିକୁ ଏକ ଉଜ୍ଜ୍ୱଳ ଧଳା ଆଲୋକ ଉତ୍ସ ବିକର ଉପରେ ପକାଇ ଥିଲି । ଦୁଇ ତିନି ମିନିଟ୍ ପରେ ସଲଫର କଣିକାଗୁଡିକ ପାଣିର ସବୁଆଡେ ଭାସିବାକୁ ଆରମ୍ଭ କଲା । ଫଳରେ ଆଲୋକ ପ୍ରକୀର୍ଣ୍ଣ ହୋଇ (Scatter) ନୀଳ ଆଲୋକ ଦେଖାଗଲା । ସିଧା ଯାଉଥିବା ଆଲୋକ ଉତ୍ସ କମଳା ଓ ନାଲି ରଙ୍ଗର ଆଲୋକ ଦେଖାଗଲା । କିଛି ସମୟ ପରେ ଯେତେବେଳେ ସଲଫର କଣିକା ଗୁଡିକ ବଡ ହେବାକୁ ଲାଗିଲା ସେତେବେଳେ ସ୍କ୍ରିନ ଉପରେ ପଡୁଥିବା ଆଲୋକ ହ୍ରାସ ପାଇବାକୁ ଲାଗିଲା ଏବଂ କ୍ରମେ ଅନ୍ଧାର ହୋଇଗଲା । ଏହିପ୍ରକାର ସୂର୍ଯ୍ୟାଲୋକର ରଙ୍ଗ ସଂଧ୍ୟା ସମୟରେ ବଦଳି ଯାଉଥାଏ ।

## ପ୍ରାଧ୍ୟାପକ, ରେଭେନ୍ସା କଲେଜ

ପ୍ରାୟ ଦୁଇ ମାସ ପରେ ପଞ୍ଚମ ବର୍ଷର (Part-I) ପରୀକ୍ଷା ତିନି ମାସ ପରେ ସରିଗଲା । ପ୍ରାକଟିକାଲ ପରୀକ୍ଷା ପାଇଁ ଡକ୍ଟର ସରକାର ନାମକ ଜଣେ ପ୍ରଫେସର କଲିକତାରୁ ଆସିଥିଲେ । ଡକ୍ଟର ବ୍ରହ୍ମାନନ୍ଦ ମିଶ୍ର ଆମ କଲେଜ ତରଫରୁ ଆଉଜଣେ ପ୍ରଫେସର ପରୀକ୍ଷକ ଥିଲେ । ପରୀକ୍ଷାରେ ଭଲ କରିଛି ବୋଲି ମୋତେ ଲାଗିଲା । ପରୀକ୍ଷା ପରେ ମୁଁ ଗ୍ରାମକୁ ଚାଲିଗଲି । କିନ୍ତୁ ପରେ ଜଣାଗଲା ମୁଁ ଭଲ କରିନାହିଁ ।

ଦିନେ ଗ୍ରାମରୁ ପୁରୀ ଯାଇଥିଲି । ସମୁଦ୍ର କୂଳରେ ବୁଲୁ ବୁଲୁ ମୋର ସାଙ୍କ ସହିତ ଦେଖାହେଲା । ଆମେ କିଛି ସମୟ କଥାବାର୍ତ୍ତା ହେଲୁ । ତାପରେ ମୁଁ ଗ୍ରାମକୁ ଆସି ବୋଉକୁ ସବୁକଥା କହିଲି । ବୋଉ ମୋ ଉପରେ ବିରକ୍ତ ହେଲେ ଏବଂ କହିଲେ, ତୋର ତା ସହିତ ଦେଖା କରିବା ଉଚିତ୍ ହେଲା ନାହିଁ । ମୁଁ କିଛି ବୁଝି ପାରିଲି ନାହିଁ । ପରେ ପଚାରି ଜାଣିଲି, ଯଦି କୌଣସି ଲୋକ ପିଲା କନ୍ୟା ବିବାହ କରିଥାଏ ତେବେ ପୁଆଣି ଘର ନ'ହେବା ପର୍ଯ୍ୟନ୍ତ ତାଙ୍କ ଦୁହିଁଙ୍କର ଦେଖା ହେବା ଉଚିତ୍ ନୁହେଁ । ତେଣୁ ମୋର ଆଉ ସାଙ୍କ ସହିତ ଦେଖା ହୋଇନାହିଁ ।

ଖରା ଛୁଟି ସରିବା ପରେ ମୁଁ କଟକ ଯାଇ ଆମ ଲଜ୍‌ରେ ରହିଲି । ତାର କେତେ ଦିନ ପରେ କଲେଜରେ ଷଷ୍ଠ ବର୍ଷର କ୍ଲାସ୍ ଆରମ୍ଭ ହେଲା । ସେତେବେଳେ ସ୍ପେକ୍‌ଟ୍ରୋସ୍କୋପି (Spetroscopy) ବ୍ୟତୀତ ଅନ୍ୟ କୌଣସି ସ୍ୱତନ୍ତ୍ର (Special) ପାଠ୍ୟକ୍ରମ ନ'ଥିଲା । ତେଣୁ ଆମେ ସମସ୍ତେ ସ୍ପେକ୍‌ଟ୍ରୋସ୍କୋପି ନେଲୁ । ଅଧ୍ୟକ୍ଷଙ୍କ ପୁଅ ଶ୍ରୀ ପ୍ରବୁଦ୍ଧ ବାନାର୍ଜୀ ସ୍ପେକ୍‌ଟ୍ରୋସ୍କୋପି ପଢାଉ ଥିଲେ । ଅନ୍ୟ ମାନଙ୍କ ଭିତରେ ଡକ୍ଟର ଏ.କେ. ଦତ୍ତ, ଡକ୍ଟର ବ୍ରହ୍ମାନନ୍ଦ ମିଶ୍ର, ଓ ଡକ୍ଟର ବିଭୂତିଭୂଷଣ ଦେଓ ଯଥାକ୍ରମେ କ୍ୱାଂଟମ୍‌ମେକାନିକ୍ସ, ଅପଟିକ୍ସ ଓ କସ୍ମିକ୍ ରେଜ୍ କ୍ଲାସ୍ ନେଉଥିଲେ । ଅନ୍ୟମାନେ ସବୁ ମିଶିକରି ଅନ୍ୟାନ୍ୟ ଶ୍ରେଣୀରେ ପଢାଉଥିଲେ । ସ୍ପେକ୍‌ଟ୍ରୋସ୍କୋପି ପ୍ରାକ୍ଟିକାଲ୍ କ୍ଲାସ୍‌କୁ ମଝିରେ ମଝିରେ ଶ୍ରୀ ପ୍ରବୁଦ୍ଧ ବାନାର୍ଜୀ ଆସି କିପରି ଏକ୍ସପେରିମେଣ୍ଟ ହେବ କହୁଥିଲେ । ଅନ୍ୟ ପ୍ରାକ୍ଟିକାଲ୍ କ୍ଲାସ୍‌କୁ ପ୍ରାୟ କେହି ସବୁବେଳେ ଆସୁ ନ'ଥିଲେ । ଆମେ ଦରକାର ପଡିଲେ ଡକ୍ଟର ଦତ୍ତଙ୍କ ପାଖକୁ ଯାଇ ବୁଝି ଆସୁଥିଲୁ । ମୁଁ ବେଳେ ବେଳେ ଶ୍ରୀ କୁଳମଣି ସାମଲଙ୍କ ଠାରୁ ବୁଝି ଆସୁଥିଲି ।

ସେହି ବର୍ଷ ଅଧ୍ୟାପକ ମାନଙ୍କ ଦ୍ୱାରା ଆମ ଡିପାର୍ଟମେଣ୍ଟରେ ବ୍ୟାଡମିଣ୍ଟନ ଖେଳ ଆରମ୍ଭ ହେଲା । ଆଗରୁ ମଧ୍ୟ ହେଉଥିଲା । ମୁଁ ତାହା ନଜର ଦେଇ ନ'ଥିଲି । ସେହି ବର୍ଷ ମୁଁ ଖେଳ ପାଖରେ ଦେଖିବାକୁ ବସୁଥିଲି । ମୋର ଖେଳିବାକୁ ଭାରି ଇଚ୍ଛା ହେଉଥିଲା । କିନ୍ତୁ ମୁଁ କହିପାରୁ ନ'ଥିଲି । ପ୍ରାୟ ସବୁଦିନ ପ୍ରଫେସର ଶ୍ରୀ ନାରାୟଣ ମିଶ୍ର, ଗଣିତ ଅଧ୍ୟାପକ ଶ୍ରୀ ଶିବ ପ୍ରସାଦ ମିଶ୍ର, ଡକ୍ଟର ବିଭୂତି ଭୂଷଣ ଦେଓ ଓ ରେଭେନ୍ସା କଲେଜର ମୁଖ୍ୟ ଲାଇବ୍ରେରିଆନ ଶ୍ରୀ ବଂଶୀଧର ଆଚାର୍ଯ୍ୟ ଖେଳୁଥିଲେ । ଶ୍ରୀ ଶିବ ପ୍ରସାଦ ମିଶ୍ର ହେଉଛନ୍ତି ପ୍ରଫେସର ନାରାୟଣ ମିଶ୍ରଙ୍କ ପୁତ୍ର । ଥରେ ତିନି ଜଣ ଅଧ୍ୟାପକ ଖେଳୁଥିଲେ ମୁଁ ସେହିଠାରେ ବସିଥିଲି । ମୋତେ କିଏ ଜଣେ ଖେଳିବାକୁ ଡାକିଲେ । ମୁଁ ତ ଆଗରୁ ଖେଳୁଥିଲି, ତେଣୁ ଭଲ ଭାବରେ ଖେଳିଲି । ଖେଳିବା ପାଇଁ ଉପକରଣ ସବୁ ଅଧ୍ୟାପକ ମାନେ ନିଜ ହାତରୁ ପଇସା ଦେଇ କିଣୁଥିଲେ ।

ସ୍ପେକ୍‌ଟୋସ୍କୋପି ପ୍ରାକ୍ଟିକାଲ୍ କ୍ଲାସ୍ ହିସାବ କରିବା ପାଇଁ ବଡ କଷ୍ଟ ହୁଏ । କାରଣ ପାଞ୍ଚ ଅଙ୍କ ବିଶିଷ୍ଟ ଲଗ୍ ଟେବୁଲ୍ ଦ୍ୱାରା ହିସାବ କରିବା ପାଇଁ ବ୍ୟବହାର କରାଯାଏ । ତାହା ଉପଲବ୍ଧି କରି ଡକ୍ଟର ଦତ୍ତ ଦୁଇଟି କାଲ୍‌କୁଲେଟିଙ୍ଗ୍ ମେସିନ୍ ଡିପାର୍ଟମେଣ୍ଟକୁ କିଣି ଦେଇଥିଲେ । ସେତେବେଳେ ତାର ଦାମ୍ ପ୍ରାୟ ଗୋଟିକୁ ୭ କିମ୍ବା ୮ ହଜାର ଟଙ୍କା ପଡିଥିଲା । ତାହା ଦ୍ୱାରା କେବଳ ମିଶାଣ, ଫେଡାଣ, ଗୁଣନ ଓ ହରଣ କରି ହେଉଥିଲା । ତାର ଓଜନ ଏତେ ବେଶୀ ଥିଲା ଯେ ଦୁଇଜଣ ଲୋକ ନହେଲେ ଟେକି ହେଉ ନ'ଥିଲା । ସେହି ବର୍ଷ ଠାରୁ ସ୍ପେକ୍‌ଟ୍ରୋସ୍କୋପି ପ୍ରାକ୍ଟିକାଲ୍ କ୍ଲାସ୍‌ରେ ଆମେ ସେହି ଯନ୍ତ୍ର ସାହାଯ୍ୟରେ ହିସାବ ପତ୍ର କରୁଥିଲୁ । ଏପରି ଏକ ଯନ୍ତ୍ର ହିସାବ କରିବା ପାଇଁ ଆସିଛି ବୋଲି ଅନ୍ୟ ବିଭାଗର କେତେଜଣ ଅଧ୍ୟାପକ ଓ ଛାତ୍ର ଏହାର କାର୍ଯ୍ୟକାରିତା ଦେଖିକରି ଯାଇଥିଲେ । ଏହି ସମୟରେ ପୁଣିଥରେ ପ୍ରଦର୍ଶନୀ ଆୟୋଜନ କରାଯାଇଥିଲା । ଅଧ୍ୟାପକମାନେ ଠିକ୍ କଲେ ଏହି ହିସାବ ଯନ୍ତ୍ରଟି ଦର୍ଶନୀୟ ଉପକରଣ ହିସାବରେ ପ୍ରଦର୍ଶନୀରେ ଦର୍ଶକ ମାନଙ୍କୁ ଦେଖାଯିବ । ଦେଖାଇବା ଦାୟିତ୍ୱ ମୋ ଉପରେ ନ୍ୟସ୍ତ କରା ଯାଇଥିଲା । ପ୍ରଦର୍ଶନୀ ଦୁଇ ଦିନ ହୋଇଥିଲା । ସେହି ଦୁଇଦିନ ଏହି ଯନ୍ତ୍ର ପାଖରେ ଏତେ ଭିଡ ହେଉଥିଲା ଯେ ତାହା ବର୍ଣ୍ଣନା କରିହେବ ନାହିଁ । ବର୍ତ୍ତମାନ ଗୋଟିଏ ବୈଜ୍ଞାନିକ ହିସାବ ଯନ୍ତ୍ରର ଦାମ୍ ମାତ୍ର ୨୦୦ ଟଙ୍କା । ଏହା ଏତେ ଛୋଟ ଏବଂ ଏତେ ହାଲୁକା ଯେ ପକେଟରେ ନେଇ ହେବ । ତେଣୁ ପୁରାତନ ହିସାବ ଯନ୍ତ୍ର ଦୁଇଟି ପରିତ୍ୟକ୍ତ ଅବସ୍ଥାରେ କେଉଁଠି ଡିପାର୍ଟମେଣ୍ଟରେ ପଡିଥିବ ତାହା ଜଣା ନାହିଁ । ଏହିଥିରୁ ବିଜ୍ଞାନର ଜ୍ଞାନକୌଶଳ ଆଉ ୫୦ ବର୍ଷ ତଳର ଜ୍ଞାନକୌଶଳ ମଧ୍ୟରେ ସହଜରେ ତୁଳନା କରିହେବ ।

ପରୀକ୍ଷା ପାଖ ହେବାରୁ ଆମେ କୌଣସିରେ ମନ ନ'ଦେଇ ପଢାପଢିରେ ଲାଗିଗଲୁ । କାରଣ ଏହି ପରୀକ୍ଷାଟି ହେଉଛି ଜୀବନର ଶେଷ ପରୀକ୍ଷା । ପରୀକ୍ଷା କେତେଦିନ ଥାଏ ମୋ ଛାତିରେ ଭଲା ପଶିଲା ପରି କଷ୍ଟ ହେଲା । କଷ୍ଟଟି ଦୁଇ କିମ୍ବା ତିନି ଦିନ ପର୍ଯ୍ୟନ୍ତ ରହି ଛାଡିଲା ନାହିଁ । ସେ ସ୍ଥାନଟି ଆସ୍ତେ ଆସ୍ତେ ଉପରୁ ଦରଜ ହୋଇଗଲା । ଦିନେ ସକାଳୁ ଦାନ୍ତ ଘଷିବା ବେଳେ ପାଟିରୁ ରକ୍ତ ମିଶା ଖଙ୍କାର ପଡିଲା । ମୁଁ ଭୟରେ ଡାକ୍ତର ସତ୍ୟବାଦୀ ହଜାରୀଙ୍କୁ କହିଲି । ସେ ମୋତେ ବହୁତ ସାହାଯ୍ୟ କଲେ । ସେ ମୋତେ ଟି.ବି ଓ୍ୱାଡ଼କୁ ନେଇ ପରୀକ୍ଷା କରାଇଲେ । ଖଙ୍କାର ପରୀକ୍ଷା କରିବା ପାଇଁ ଦିଆଗଲା । ଟି.ବି ହୋଇନାହିଁ ବୋଲି ରିପୋର୍ଟ ଆସିଲା । ଏହି ଭଳି କଷ୍ଟ ଛାତିର ଅନ୍ୟ ଜାଗାରେ ହେଲା ମୁଁ ତାକୁ ଖାତିର ନକରି ପଢାପଢିରେ ବ୍ୟସ୍ତ ରହିଲି । ଡାକ୍ତର ସତ୍ୟବାଦୀ ହଜାରୀଙ୍କ ଚିକିତ୍ସାରେ ଥାଏ । ସେ ଯାହା ଔଷଧ ଦେଉଥାଆନ୍ତି ତାହା ଖାଉଥାଏ ।

କେତେ ଦିନ ପରେ ଆଉଥରେ ସେହିପରି ହେଲା । ତେଣୁ ସେ ଆଉ ଥରେ ଟି.ବି ଓ୍ୱାଡରେ ମୋତେ ଦେଖାଇଲେ । ସେମାନେ ମଧ୍ୟ ଟି.ବି ହୋଇନାହିଁ ବୋଲି ରିପୋର୍ଟ ଦେଲେ । କିନ୍ତୁ ସେ ଔଷଧ ସେହିପରି ଖାଉଥାଏ । ୧୯୫୫ ମସିହା ଭିତରେ ୩ କିମ୍ବା ୪ ଥର ସେହିପରି ଯନ୍ତ୍ରଣା ହୋଇଥିଲା । କିନ୍ତୁ ସବୁବେଳେ ୩ କିମ୍ବା ୪ ଦିନ ଭିତରେ ଛାଡି ଯାଉଥାଏ । ମୁଁ ତାର କାରଣ କିଛି ଜାଣି ପାରିଲି ନାହିଁ । ଡାକ୍ତର ମାନେ ମଧ୍ୟ କିଛି କହୁନ'ଥାଆନ୍ତି । ଯେତେବେଳେ

କଷ୍ଟ ହେଉଥାଏ ସେତେବେଳେ ଉଠି ବସି ପାରୁ ନଥାଏ । ଆମେ ପରୀକ୍ଷା ଦେବା ସମୟରେ ପୋଷ୍ଟଗ୍ରାଜୁଏଟ୍ ଲଜ୍‌ରେ ସର୍ବେଶ୍ୱର ଆଚାର୍ଯ୍ୟ ଦିଲ୍ଲୀରୁ ଆସି ମୋ ପାଖରେ ରହିଥିଲେ । ମୁଁ ପଚାରିଲି, ତୁ କାହିଁକି ଫିଜିକ୍ସ ଅଧ୍ୟାପକ ପାଇଁ ଦରଖାସ୍ତ କଲୁନାହିଁ । ସେ କହିଲା, ମୁଁ ଦିଲ୍ଲୀରେ ଡକ୍ଟର ମଜୁମ୍‌ଦାରଙ୍କ ପାଖରେ ଗବେଷଣା କରୁଅଛି । ତେଣୁ ମୁଁ ଦରଖାସ୍ତ କରିନାହିଁ । ଦୁଇଦିନ ରହି ଦିଲ୍ଲୀ ଚାଲିଗଲେ । ପରୀକ୍ଷା ଜୁନ୍‌ମାସରେ ଆରମ୍ଭ ହେଲା ଏବଂ ୧୫ ଦିନ ଭିତରେ ଥିଓରି ସରିଗଲା । ତାର ୨୦ କିମ୍ବା ୨୫ ଦିନ ପରେ ପ୍ରାକ୍ଟିକାଲ୍ ପରୀକ୍ଷା ଆରମ୍ଭ ହେଲା ।

## ମୋର ସ୍ପେକ୍‌ଟ୍ରୋସ୍କୋପି ପ୍ରାକ୍ଟିକାଲ୍ ପରୀକ୍ଷା

ପ୍ରାକ୍ଟିକାଲ୍ ପରୀକ୍ଷା କରିବାକୁ ଡକ୍ଟର ଅଶ୍ୱିଣୀ ନାମକ ଜଣେ ପ୍ରଫେସର ବନାରସରୁ ଆସିଥିଲେ । ପରୀକ୍ଷା ତିନି ଦିନରେ ସରିଗଲା । ପରୀକ୍ଷା ସରିବାର ୨ କିମ୍ବା ୩ ଘଣ୍ଟା ପରେ ଡକ୍ଟର ଦତ୍ତ ମୋତେ ତାଙ୍କ କୋଠରୀକୁ ଡକାଇଲେ । ମୁଁ ତାଙ୍କ କୋଠରୀକୁ ଯିବା ବେଳେ ସେଠାରେ ଡକ୍ଟର ଅଶ୍ୱିଣୀ ବସିଥିଲେ । ସେ ମୋତେ ମୋର ନାମ ପଚାରିଲେ ଏବଂ ପ୍ରାକ୍ଟିକାଲ୍ ଭଲ କରିଥିବାରୁ ଧନ୍ୟବାଦ ଦେଲେ । ଡକ୍ଟର ଅଶ୍ୱିଣୀ ହେଉଛନ୍ତି ଭାରତର ଜଣେ ସ୍ପେକ୍‌ଟ୍ରୋସ୍କୋପିର ବିଶିଷ୍ଟ ବ୍ୟକ୍ତି ।

ନିମାପଡା ଘର ବିକ୍ରି କରି ଦେଇଥିବା ଯୋଗୁଁ ମୁଁ ମାସକୁ ୬୦ ଟଙ୍କା ଦାମ ବାବୁଙ୍କ ଠାରୁ ପାଉଥିଲି ତାହା ବନ୍ଦ ହୋଇଗଲା । କାରଣ ଦୁଇବର୍ଷ ପୁରିଗଲା । ତେଣୁ ପରୀକ୍ଷା ସରିବା ପରେ କଟକରେ ରହି ଚଳିବା ପାଇଁ ଜମା ପଇସା ନ'ଥିଲା । ବାଧ୍ୟ ହୋଇ ଗ୍ରାମକୁ ଯିବି ବୋଲି ଭାବୁଥିଲି । ଏହି ସମୟରେ ଡକ୍ଟର ଦତ୍ତଙ୍କୁ ମୋର ଆର୍ଥିକ ଅବସ୍ଥା କଥା କହିଲି । ସେ ମୋତେ କହିଲେ, ତମର ଫଳ ବାହାରୁ ଯଦି ସୁବିଧା ହୁଏ ମୁଁ କିଛି ବ୍ୟବସ୍ଥା କରିଦେବି । ସେହି ସମୟରେ ଶ୍ରୀ ଦୁଃଖୀଶ୍ୟାମ ନନ୍ଦ ନାମକ ଜଣେ ଲାବୋରାଟୋରୀ ଆସିସ୍‌ଟାଣ୍ଟ ବାହାରେ ଉପସ୍ଥିତ ଥିଲେ । ମୁଁ ଡକ୍ଟର ଦତ୍ତଙ୍କ କୋଠରୀରୁ ବାହାରି ଆସିଲା ପରେ ଶ୍ରୀ ଦୁଃଖୀଶ୍ୟାମ ବାବୁ ମୋ ସଙ୍ଗେ ଦେଖା କଲେ । ସେ ବୋଧେ ଆମ କଥାବାର୍ତ୍ତା ବାହାରୁ ଶୁଣୁଥିଲେ । ମୋତେ ପଚାରିଲେ, ଗୋଟିଏ ଆଇ.ଏସ୍‌ସି ପଢୁଥିବା ଝିଅ ପିଲାକୁ ଟିଉସନ୍ କରିବ । ମୁଁ କହିଲି, ହଁ କରିବି । ମୁଁ ତାଙ୍କୁ ପଚାରିଲି, ସେ କିଏ ଏବଂ ସେ କେଉଁଠାରେ ରୁହେ ? ସେ କହିଲେ, ଏରୋଡ୍ରମସ୍ ଇଞ୍ଜିନିୟରିଙ୍ଗରେ ଜଗନ୍ନାଥ ମିଶ୍ର ନାମକ ଜଣେ ଭଲ ମେକାନିକ୍ ଅଛନ୍ତି । କହିଲି ମୁଁ ତାଙ୍କୁ ଜାଣିଛି । ତାଙ୍କର ସମ୍ପର୍କୀୟ ଜଣେ ଝିଅକୁ ତାଙ୍କ ଘରକୁ ଯାଇ ପଢାଇବାକୁ ହେବ । ସେ ମାସକୁ ୫୦ ଟଙ୍କା ଦେବେ । ମୁଁ ରାଜି ହୋଇଗଲି । ତାପରେ ମୋର ଚିନ୍ତା ହେଲା କେଉଁଠି ରହିବି । କାରଣ ଯେଉଁ ଘରଟିରେ ପୋଷ୍ଟ ଗ୍ରାଜୁଏଟ୍ ଲଜ୍ ହୋଇଥିଲା ତାହା ପରୀକ୍ଷା ପରେ ବନ୍ଦ ହୋଇ ଯାଇଥିଲା । ମୁଁ ଶ୍ରୀ ଦୁଃଖୀଶ୍ୟାମ ବାବୁଙ୍କୁ କହିଲି ମୋର ରହିବାର ବ୍ୟବସ୍ଥା କରିଦିଅନ୍ତୁ । ସେ ସଙ୍ଗେ ସଙ୍ଗେ କହିଲେ ମୁଁ ଯେପରି ଡିପାଟ୍‌ମେଣ୍ଟରେ ରହୁଛି ସେହିପରି ତୁମେ ରୁହ । ସେ ଡିପାର୍ଟମେଣ୍ଟରେ ରହୁଥିଲେ । ମୁଁ ବହୁତ ଖୁସି ହୋଇଗଲି । ତାଙ୍କ କହିବା ଅନୁସାରେ ଜିନିଷ ପତ୍ର ଆଣି ଗୋଟିଏ କପ୍‌ବୋର୍ଡ ଭିତରେ ରଖିଦେଲି ଏବଂ ରାତିରେ ସେମିନାର ଟେବୁଲ୍ ଉପରେ ଦୁହେଁ ଶୋଇ ଯାଉଥିଲୁ । ବାହାରେ ବୁଲିବୁଲି ଶ୍ରୀ ଜଗଦିଶ୍ ଖଣ୍ଡେଇ ହେଟେଲ, ସାଉଥ୍ ଇଣ୍ଡିଆନ୍ ହୋଟେଲ୍ ଓ

ଇଷ୍ଟନ୍ ହୋଟେଲରେ ଖାଉଥିଲି । ପ୍ରାୟ ଖରାବେଳେ ଓ ରାତିରେ ଜଗଦିଶ୍ ଖଣ୍ଡେଇ ହୋଟେଲରେ ଖାଉଥିଲି । ସେହି ହୋଟେଲ୍‌ରେ ଖାଇଲେ ଅଳ୍ପ ଖର୍ଚ୍ଚ ହେଉଥିଲା । ହୋଟେଲ୍‌ରେ ଖାଇବା ଚାର୍ଜଟା କହିଦେଲେ ପାଠକମାନେ ବର୍ତ୍ତମାନ ସମୟ ସହିତ ସେହି ସମୟର ଖର୍ଚ୍ଚର ତୁଳନା କରି ପାରିବେ । ଜଗଦିଶ୍ ବାବୁଙ୍କ ହୋଟେଲରେ ଭାତ ପ୍ଲେଟ ୨ଅଣା, (୧୨ ନୂଆ ପଇସା) ଡାଲି କପ୍ ୧ ଅଣା,(୬ ନୂଆ ପଇସା) ତରକାରୀ ପ୍ଲେଟ ୨ ଅଣା, ଓ ମାଂସ ପ୍ଲେଟ ୪ ଅଣା(୨୫ ନୂଆ ପଇସା) । ଏମିତି ୫ ଅଣାରେ ମିଲ୍‌ଟିଏ ଖାଇପାରିବ । ସେହିପରି ୩ ଅଣା କିମ୍ବା ୧୦ ପଇସା ଦେଲେ ଜଳଖିଆ ଖାଇ ପାରିବ । ୧ ଟଙ୍କାରେ ଗୋଟିଏ ଦିନ ଚଳିଯିବ । ଏହିପରି ଭାବରେ ଟିଉସନ୍‌ରୁ ୫୦ ଟଙ୍କା ପାଇ ଚଳି ଯାଉଥିଲି । ଏଠାରେ ପୁଣି ଥରେ ମନେ ପକାଇ ଦେବାକୁ ଚାହେଁ ଯେ ସେତେବେଳେ ୧ଟଙ୍କା = ୬୪ ପଇସା ଓ ୧ ଅଣା = ୪ ପଇସା କିନ୍ତୁ ବର୍ତ୍ତମାନ ୧ଟଙ୍କା = ୧୦୦ ପଇସା ।

## ସ୍ନାତକୋତ୍ତର ପରୀକ୍ଷାର ଫଳ ପ୍ରକାଶିତ

ଅଗଷ୍ଟ ୧୫ ତାରିଖ ବେଳକୁ ଆମର ପରୀକ୍ଷା ଫଳ ବାହାରିଲା । ଡକ୍ଟର ଅଶ୍ୱିଣ୍ଠୀ ପ୍ରାକ୍ଟିକାଲ ପରୀକ୍ଷା ପରେ ମତେ ଧନ୍ୟବାଦ ଦେଇଥିବାରୁ ମୁଁ ପ୍ରଥମ ଶ୍ରେଣୀ ପାଇବି ବୋଲି ଭାବିଥିଲି । କିନ୍ତୁ ମୁଁ ୫୯.୬ % ରଖି ଦ୍ୱିତୀୟ ଶ୍ରେଣୀରେ ପାଶ୍ କଲି । ମୋ ମନ ଦୁଃଖରେ ଭାଙ୍ଗି ପଡିଲା । ଡକ୍ଟର ଅଶ୍ୱିଣ୍ଠୀ ମୋତେ ଦୁଇଟି ପ୍ରାକ୍ଟିକାଲ ପରୀକ୍ଷାରେ ସମସ୍ତଙ୍କ ଠାରୁ ବେଶୀ ମାର୍କ ଦେଇଥିଲେ । ଅନ୍ୟ ମାନଙ୍କର ମାର୍କ ମୋ ଠାରୁ ବହୁତ କମ ଥିଲା । ମୋର ଷଷ୍ଠ ବର୍ଷ ଥିଓରି ପେପରରେ ମଧ୍ୟ ପ୍ରଥମ ଶ୍ରେଣୀ ନମ୍ବର ଥିଲା । ତେଣୁ ମୋର ହୃଦବୋଧ ହେଲା ଯେ ପଞ୍ଚମ ବର୍ଷ ପରୀକ୍ଷାରେ ଜଣେ ବରିଷ୍ଠ ଅଧ୍ୟାପକଙ୍କ ଯୋଗୁଁ ମୋର ପଞ୍ଚମ ବର୍ଷ ପରୀକ୍ଷାରେ ବହୁତ କମ ନମ୍ବର ଥିଲା । ମୁଁ ଡକ୍ଟର ହରିହର ମିଶ୍ରଙ୍କୁ ମୋର ଦୁଃଖ କଥା କହିଲି । ସେ ମୋତେ ସାନ୍ତ୍ୱନା ଦେଇ କହିଲେ ଆମେ ସମସ୍ତେ ଓ ତମ ସାଙ୍ଗ ପିଲାମାନେ ମଧ୍ୟ ଜାଣନ୍ତି ତୁମର ପ୍ରଥମ ଶ୍ରେଣୀ ପାଇବା କଥା । ଆଉ ୧୦ ବର୍ଷ ପରେ ସମସ୍ତେ କହିବେ ତୁମେ ଗୋଟିଏ ଦ୍ୱିତୀୟ ଶ୍ରେଣୀ ଛାତ୍ର । ତୁମେ ଏମିତି କାର୍ଯ୍ୟକର ଯାହା ଫଳରେ ତୁମକୁ କେହି କହି ପାରିବେ ନାହିଁ ଯେ ତୁମେ ଗୋଟିଏ ଦ୍ୱିତୀୟ ଶ୍ରେଣୀ ଛାତ୍ର । ପଚାରିଲି, ମୁଁ କଣ କରିବି ? ତମେ ଗବେଷଣା କରି ଦେଖାଇ ଦିଅ ଯେ ତୁମେ ପ୍ରଥମ ଶ୍ରେଣୀ ଛାତ୍ରଙ୍କ ଠାରୁ ବହୁ ଉଚ୍ଚରେ । ମୋତେ ତାଙ୍କ କଥା ସବୁ ସନ୍ତୋଷ ଜନକ ପରି ମନେ ହେଲା । ମୋ ମନର ଦୁଃଖ କେତେକ ପରିମାଣରେ ଲାଘବ ହୋଇଗଲା । ମୁଁ ସେହି ଦିନ ଠାରୁ ଗବେଷଣା କରିବି ବୋଲି ଠିକ୍ କଲି ।

ଏମ.ଏସ୍‌ସି ପଢିଲା ସମୟରେ ଭାରତ ସରକାରଙ୍କ ଅଧୀନରେ କେତେଗୁଡିଏ ଜିଓ-ଫିଜିସିଷ୍ଟ ଚାକିରି ପାଇଁ ସର୍ବ ଭାରତୀୟ ଲୋକସଭା ଆୟୋଗ(Union Public service Commission) ଦ୍ୱାରା ବିଜ୍ଞାପନ ବାହାରିଲା । ମୁଁ ଚାକିରୀ ପାଇଁ ଦରଖାସ୍ତ କରିଥିଲି ଠିକ୍ ଫଳ ବାହାରିଲା ପରେ ସାକ୍ଷାତ୍‌କାର ପାଇଁ ଚିଠି ଆସିଥିଲା । ସାକ୍ଷାତ୍‌କାର ପାଇଁ ଯିବାକୁ

ଠିକ୍ କରିଥିଲି ଏବଂ ଗ୍ରାମ୍‌କୁ ଯାଇ ବୋଉଙ୍କଠାରୁ ଦିଲ୍ଲୀ ଯିବା ପାଇଁ କିଛି ଟଙ୍କା ଆଣିଥିଲି । ଯେଉଁଦିନ କଟକରୁ ବାହାରିବା କଥା ତାହାର ୪ କିମ୍ବା ୫ ଦିନ ପୂର୍ବରୁ ମୋର ସହପାଠୀ ଶ୍ରୀ କୃଷ୍ଣଚନ୍ଦ୍ର ପଟ୍ଟନାୟକ ଏବଂ ଶ୍ରୀ ବାମଦେବ ରଥ ମତେ ଆସି କହିଲେ ଯେ ସାକ୍ଷାତ୍‌କାର ପାଇଁ ଆମକୁ ମଧ୍ୟ ଡକା ହୋଇଛି । ଆମେ ସାଙ୍ଗ ହୋଇଯିବା । ମୁଁ ରାଜି ହେଲି । କଟକ ଷ୍ଟେସନରୁ ୩ ଖଣ୍ଡି ତୃତୀୟ ଶ୍ରେଣୀ ଟ୍ରେନ୍ ଟିକେଟ, କଟକ ଠାରୁ ଦିଲ୍ଲୀ ପର୍ଯ୍ୟନ୍ତ କିଣି ଆଣିଲି । ସେତେବେଳେ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଶ୍ରେଣୀରେ ଯାଇ ହେଉଥିଲା । ଆମର ନିର୍ଦ୍ଦିଷ୍ଟ ଦିନରେ ପୁରୀ ଏକ୍ସପ୍ରେସ୍‌ରେ କଟକରୁ ହାଓ୍ୱାଡା ପର୍ଯ୍ୟନ୍ତ ଯିବାର ଥାଏ । ସେହିଦିନ ଉପର ବେଳା ଦୁହେଁଯାକ ଆସି ପହଁଚିଲେ । ମୁଁ ସେମାନଙ୍କୁ କହିଲି ସର୍ବେଶ୍ୱର ଆଚାର୍ଯ୍ୟଙ୍କ ପାଖକୁ ଗୋଟିଏ ଟେଲିଗ୍ରାମ କରିଦେଇଛି । ସେ ଯେପରି ଦିଲ୍ଲୀରେ ତୋଫାନ ଏକ୍ସପ୍ରେସ୍ ପହଁଚିଲା ବେଳକୁ ଷ୍ଟେସନ୍‌ରେ ଉପସ୍ଥିତ ଥିବେ ଏବଂ ଆମେ ତିନି ଜଣ ସାଙ୍ଗ ହୋଇ ଯାଉଛୁ । ସର୍ବେଶ୍ୱର ଆଚାର୍ଯ୍ୟ ମଧ୍ୟ ସେମାନଙ୍କୁ ଚିହ୍ନନ୍ତି । ଠିକ୍ ସେହି ସମୟରେ ପୁରୀ ଏକ୍ସପ୍ରେସ୍‌ରେ ଯାଇ ବସିଲୁ । ତାପର ଦିନ ସକାଳେ ହାଓ୍ୱଡାରେ ପହଁଚିଲୁ । ସକାଳୁ ଗାଧୁଆ ପାଧୁଆ ସାରି ଜଳଖିଆ ଖାଇ ପ୍ଲାଟଫର୍ମକୁ ଗଲୁ । କିନ୍ତୁ ଦେଖିଲୁ ବହୁତ ଲୋକ ଗାଡିରେ ଯିବା ପାଇଁ ଅପେକ୍ଷା କରିଛନ୍ତି । ଗାଡିରେ ଚଢିବାକୁ କଷ୍ଟ ହେଲା, ତେଣୁ ଟ୍ରେନ୍‌ରେ ଯାଉଥିବା କଣ୍ଡକ୍ଟରଙ୍କୁ ଅନୁରୋଧ କଲୁ ତିନୋଟି ତୃତୀୟ ଶ୍ରେଣୀ ଟିକେଟ ହାଓ୍ୱଡାରୁ ଦିଲ୍ଲୀ ପର୍ଯ୍ୟନ୍ତ ଦ୍ୱିତୀୟ ଶ୍ରେଣୀକୁ ପରିବର୍ତ୍ତନ କରି ଦିଅନ୍ତୁ । ସେ ସଙ୍ଗେ ସଙ୍ଗେ ରାଜି ହୋଇଗଲେ ଏବଂ ତିନୋଟି ଟିକେଟ୍‌କୁ ୯୦ ଟଙ୍କା ଦେବାକୁ କହିଲେ । ଆମେ ଗାଡିରେ ସୁବିଧାରେ ବସିଲୁ । ତୋଫାନ ଏକ୍ସପ୍ରେସଟି ପରଦିନ ସଂଧ୍ୟା ୫ ଟା ବେଳେ ଦିଲ୍ଲୀରେ ପହଁଚିଲା । ସର୍ବେଶ୍ୱର ଆଚାର୍ଯ୍ୟଙ୍କ ସହିତ ଷ୍ଟେସନ୍‌ରେ ଦେଖା ହେଲା । ଆମେ ତାଙ୍କୁ କହିଲୁ ରହିବା ପାଇଁ ଏକ ଶସ୍ତା ହୋଟେଲ ବୁଝି ଦିଅ । ସେ କହିଲେ ଗୟାରହଲରେ ସବୁ ବ୍ୟବସ୍ଥା କରିଦେଇଛି । ତେଣୁ ଆମେ ଟାକ୍ସିଟିଏ କରି ଯାଇ ତାଙ୍କ କୋଠରୀରେ ପହଁଚିଲୁ ଓ ସୁବିଧାରେ ରହିଲୁ । ହଷ୍ଟେଲ ମେସ୍‌ରେ ଖାଇଲୁ । ସାକ୍ଷାତ୍‌କାର ଦିନ ପବ୍ଲିକ୍ ସର୍ଭିସ କମିସନ୍ ଅଫିସ୍‌କୁ ଗଲୁ । ସେ ଅଫିସ୍‌ଟି ସାହାଜାହାନ ରୋଡରେ ଅବସ୍ଥିତ । ସର୍ବେଶ୍ୱର ଆମକୁ କହିଥିଲା ପବ୍ଲିକ୍ ସର୍ଭିସ୍ କମିସନ୍ ଅଫିସ କ୍ୟାଣ୍ଟିନରୁ ଖରାବେଳେ ଖାଇବ । ସେଠାରେ ଖାଇବା ଜିନିଷ ତୁମେ ସବୁ ହାତରେ ବାଛିକରି ଆଣିବ । କାଉଁଟର ପାଖରେ ବସିଥିବା ବ୍ୟକ୍ତି ତୁମକୁ କେତେ ପଇସା ଦେବାକୁ ପଡିବ ତାହା ଜଣାଇ ଦେବେ । ଅନ୍ୟ ଲୋକ ପାଖରେ ସେତିକି ପଇସା ଦେଇ, ଖାଇବା ଥାଳି ନେଇ ଟେବୁଲ୍ ଉପରେ ବସି ଖାଇବ । ସାକ୍ଷାତ୍‌କାର ଆମର ସକାଳେ ପଡିଲା ନାହିଁ । ତେଣୁ ଖାଇସାରି ପୁଣି ଅପେକ୍ଷା କଲୁ । ସାକ୍ଷାତ୍‌କାର ଦେଇସାରି ପବ୍ଲିକ୍ ସର୍ଭିସ୍ କମିସନ୍ ଅଫିସ୍‌ରୁ ଗାଡି ଭଡା କରି ପୁଣି ଗୟାରହଲ ଆସିଲୁ । ସେଠାରେ ଆଉ ଗୋଟିଏ ଦିନ ରହି ଦିଲ୍ଲୀର କେତେକ ସ୍ଥାନ ବୁଲି ପରଦିନ ଟ୍ରେନ୍‌ରେ ବସି କଟକ ପର୍ଯ୍ୟନ୍ତ ଚାଲି ଆସିଲୁ । ତାର ମାସକ ପରେ ଚିଠି ଆସିଲା ଯେ ତୁମେ ଚାକିରୀ ପାଇଁ ମନୋନୀତ ହୋଇନାହଁ । ପରେ ଜାଣିଲୁ ଓଡିଶାରୁ କାହାର ବି ହୋଇନାହିଁ ।

## ପ୍ରଥମ ଚାକିରୀର ଅନୁଭୂତି

୧୯୫୫ ମସିହା ଅଗଷ୍ଟ ମାସ ଶେଷ ଆଡକୁ ଡକ୍ଟର ଦାଶ ମୋତେ ଡାକି ଗୋଟିଏ ଚିଠି ଦେଲେ ଏବଂ କହିଲେ ତୁମେ ଲାବୋରାଟୋରୀ ଆସିସ୍‌ଟାଣ୍ଟ ହୋଇ କାର୍ଯ୍ୟରେ ଯୋଗ ଦିଅ ଏବଂ ଅନର୍ସ ଲାବୋରାଟୋରୀରେ କାମ କରିବ । ଏହା ଭିତରେ ଅନର୍ସର ସବୁ ଏକ୍ସପେରିମେଣ୍ଟ

ଗୁଡିକ ଭଲକରି ବୁଝିନିଅ । ମୁଁ ବହୁତ ଖୁସି ହୋଇ ଚାଲି ଆସିଲି । ତାପର ଦିନ ଗ୍ରାମକୁ ଗଲି । ବୋଉକୁ ସବୁ କଥା କହିଲି ଏବଂ ଆଉ ମଧ୍ୟ କହିଲି ମାସେ ଦୁଇମାସ ଭିତରେ କଟକରେ ଗୋଟିଏ ଘର ଭଡା ନେଇ ଆମେ ଦୁହେଁ ରହିବା । ତୁ ସବୁ ବନ୍ଦୋବସ୍ତ କରିଦେ । ମୁଁ କଟକ ଆସି ଭଲ ଦିନ ଦେଖି ସେପ୍ଟେମ୍ବର ମାସ ୩ ତାରିଖରେ ଲାବୋରାଟୋରୀ ଆସିସ୍‌ଟାଣ୍ଟ ଭାବେ ଯୋଗ ଦେଲି । ସେହିଦିନ ଠାରୁ ଅନର୍ସ ଲାବୋରାଟୋରରେ ରାତିରେ ଶୋଇଲି । ମୁଁ ସେତେବେଳେ ୧୨୦ ଟଙ୍କାରେ ଚାକିରୀ କରୁଥିଲି ।

ମୁଁ ଚାକିରୀରେ ଯୋଗ ଦେବାର କିଛିଦିନ ପରେ ମହାନଦୀ କାଠଯୋଡିରେ ବନ୍ୟା ଆସି ଦଳେଇ ଘାଇ ଭାଙ୍ଗିଗଲା । ବନ୍ୟାକ୍ଲିଷ୍ଟ ଲୋକଙ୍କୁ ସାହାଯ୍ୟ କରିବା ପାଇଁ କଲେଜର ଅଧ୍ୟାପକମାନଙ୍କୁ ପଠାଗଲା । କଲେଜ ପୂଜାଛୁଟି ଶେଷ ପର୍ଯ୍ୟନ୍ତ ବନ୍ଦ କରି ଦିଆଗଲା । କ୍ଲାସ୍ ବନ୍ଦ ହୋଇ ଯାଇଥାଏ । କିନ୍ତୁ ଆମେ ସବୁ କଲେଜ ଯାଉ ଥାଉ । ମୋର ମନ ହେଲା ନାନୀ ଘରକୁ ପୂଜା ଛୁଟିରେ ଜାମସେଦ୍‌ପୁର ଯିବା ପାଇଁ । ପୂଜା ଛୁଟି ଆରମ୍ଭ ହେବାପରେ ମୁଁ ଏକା ତାଙ୍କୁ ଚିଠି ନ'ଦେଇ ଦିନ ୪ଟା ସମୟରେ ତାଙ୍କ ଘରେ ପହଞ୍ଚିଲି । ନାନୀ, ଭିଣୋଇ, ଭଣଜା ଓ ଭାଣେଜୀ ମାନେ ବହୁତ ଖୁସି ହେଲେ ମୁଁ ପ୍ରକୃତରେ ଭିଣୋଇ କିପରି ଡ୍ରାମା କରନ୍ତି ଓ ଡିରେକ୍‌ସନ୍ ଦିଅନ୍ତି ତାହା ଦେଖିବାକୁ ଯାଇଥିଲି । କିନ୍ତୁ ସେ ବର୍ଷର ବନ୍ୟା ପାଇଁ ଉତ୍କଳ ଆସୋସିଏସନର ସମସ୍ତ କାର୍ଯ୍ୟକ୍ରମ ବନ୍ଦ କରିଦିଆ ଯାଇଥିଲା । ବଗାଦ ହୋଇଥିବା ଟଙ୍କାସବୁ ବନ୍ୟାକ୍ଲିଷ୍ଟ ଲୋକଙ୍କୁ ଦେବା ପାଇଁ ଠିକ୍ କରାଯାଇ ଥିଲା । ତେଣୁ ମୁଁ ଚାରି କିମ୍ବା ପାଞ୍ଚ ଦିନ ରହି ଫେରି ଆସିଲି ।

## ଗିରିଧାରୀ ସାହୁ କଲୋନୀରେ ପ୍ରଥମ ଭଡାଘର

ଗିରିଧାରୀ ସାହୁ କଲୋନୀରେ ଗୋଟିଏ ଛୋଟ ଘର ଭଡା ନେବା ପାଇଁ ଚେଷ୍ଟା କଲି ଏବଂ ଗୋଟିଏ ଛୋଟ ଘର ପାଇଲି । ସେହି ପୂଜା ଛୁଟି ଭିତରେ ଗ୍ରାମକୁ ଗଲି । ଗ୍ରାମରୁ ଜିନିଷ ପତ୍ର ଧରି ବୋଉକୁ ସାଙ୍ଗରେ ନେଇ କଟକ ଆସିଲି ଏବଂ ଗିରିଧାରୀ ସାହୁ ଭଡା ଘରେ ଆମେ ଦୁଇ ଜଣ ରହିଲୁ । ସେ ଘରଟିରେ ଗୋଟିଏ ରହିବା ଘର, ଗୋଟିଏ ଷ୍ଟୋର ଘର ଏବଂ ଗୋଟିଏ ରୋଷାଇ ଘର ଥିଲା । ଅଗଣାରେ ଗୋଟିଏ କୂଅ ମଧ୍ୟ ଥିଲା । ସେ ଘରର ଭଡା ହେଉଛି ୨୦ ଟଙ୍କା । ସେଠାରେ ରହିବାର ଅଳ୍ପ ଦିନପରେ ବୋଉ କହିଲେ ମୁଁ  ଟଙ୍କା ସଞ୍ଚିକରି ରଖିଛି ଓ ବ୍ରଜ(ମୋ ଦଦେଇଙ୍କ ପୁଅ ଭାଇ) ସାଙ୍ଗରେ କଥାବାର୍ତ୍ତା କରି ଆସିଛି ପୁରୀ ଦେଉଳରେ ପଥର ପକାଇବା ପାଇଁ ବ୍ୟବସ୍ଥା କରିଦେବ । ସେ ମାର୍ବଲ ପଥର ଉପରେ ଲେଖା ଲେଖି କରି ରଖିଥିବ । ତୋର ଛୁଟି ହେଲେ ପୁରୀ ଯାଇ ପଥର ପକାଇ ଦେବା । ମୁଁ କହିଲି ଆସନ୍ତା ବଡଦିନ ଛୁଟିରେ ଯାଇ ପଥର ପକାଇ ଦେବା ।

## ସ୍ତ୍ରୀଙ୍କର ପୁଆଣିଘର ଏବଂ ସୀମା ଆନ୍ଦୋଳନ

ବଡଦିନ ଛୁଟିରେ ବୋଉ ଓ ମୁଁ ପୁରୀ ଯାଇ ବ୍ରଜ ଭଇନାଙ୍କ ଘରେ ପହଞ୍ଚିଲୁ । ପଥରେ ଉପରେ ଲେଖା ହୋଇଥିଲା : ପିତାମହ – ଲୋକନାଥ ମିଶ୍ର, ପିତା - ଅଜିତ ମିଶ୍ର, ମାତା – ଚନ୍ଦ୍ରମଣୀ ଦେବୀ ଓ ପୁତ୍ର ପତିତପାବନ ମିଶ୍ର । ସେହିଦିନ ସଂଧ୍ୟାବେଳେ ଆମେ ଦେଉଳରେ ପହଞ୍ଚିଲୁ । ଭାଇନା ଦେଉଳ କାର୍ଯ୍ୟାଳୟକୁ ଯାଇ କିଛି ପ୍ରାପ୍ୟ ଦାଖଲ କଲାପରେ ସେମାନେ

କହିଲେ କାଲି ପଥର ଦେଉଳରେ ପକା ହୋଇଯିବ । ତାପର ଦିନ ଯାଇ ଦେଖିଲୁ ପଥର ପଡି ଯାଇଛି । ପରେ ଆମେ ବହୁଦିନ ପର୍ଯ୍ୟନ୍ତ ଜଗନ୍ନାଥଙ୍କୁ ଦେଖିବାକୁ ଗଲାବେଳେ ପଥର ପଡିଥିବାର ଦେଖିଛୁ । ସେଠାରେ ରହିବାର ପ୍ରାୟ କେତେ ଦିନ ପରେ ମୋର ସ୍ୱାଙ୍କର ପୁଆଣୀ ଘର କରିବା ପାଇଁ ବୋଉ ଯୋଗାଡ କଲେ । ୧୯୫୬ ମସିହା ଜାନୁୟାରୀ ୨୧ ତାରିଖରେ ପୁଆଣୀ ଘର ହେବାର ଦିନ ଠିକ୍ ହୋଇଗଲା । ନିର୍ଦ୍ଧାରିତ ତାରିଖରେ ମୋ ସ୍ୱା ତାର ଦଦେଇ ପୁଅ ଭାଇ ଓ ସାନ ମାମୁଁ ଶ୍ରୀ ରବିନ୍ଦ୍ର ନାଥ ରଥଙ୍କ ସାଙ୍ଗରେ ଗିରିଧାରୀ ସାହୁ କଲୋନୀରେ ଥିବା ଆମ ଘରେ ପହଁଞ୍ଚିଲେ । ସେତେବେଳକୁ ଷ୍ଟେଟ ରିଅରଗାନାଇଜେସନ୍ କମିଶନଙ୍କ ରିପୋର୍ଟ ବାହାରି ଯାଇଥିଲା । ସେଥିରେ ଓଡିଶାରେ ଆଗରୁ ଥିବା ଷଢେଇକଳା ଓ ଖରସୁଆଁ ବିହାରରେ ଅନ୍ତର୍ଭୁକ୍ତ କରାଯିବାର ଠିକ କରା ଯାଇଥିଲା । ତାପର ଦିନ ଓଡିଶାରେ ଏପରି ଆନ୍ଦୋଳନ ହେଲା ଯେ ଟ୍ରେନ୍ ବସ୍ ସବୁ ବନ୍ଦ ହୋଇଗଲା । ସେହିଦିନ ମୋର ସ୍ୱାଙ୍କର ମାମୁଁ ଓ ଭାଇ ପୁରୀ ଫେରିଯିବାର କଥା । କିନ୍ତୁ ରହିବାକୁ ଉପଯୁକ୍ତ ମନେ ନ'କରି ଚାଲିଗଲେ । ତାର ଦିନେ ଦୁଇ ଦିନ ପରେ ପୁରୀରେ ଗୁଳିକାଣ୍ଡ ଘଟି ବେଙ୍ଗ ପାଣିଆ ନାମକ ଜଣେ ପିଲାର ମୃତ୍ୟୁ ହୋଇଗଲା । ପୁରୀ ସହର ହୁଲୁ ସ୍ଥୁଲୁ କମ୍ପିଲା । ଆମେ ମାମୁଁ ଓ ଭାଇଙ୍କ କଥା ଜାଣି ପାରିଲୁ ନାହିଁ । ପାଞ୍ଚ ଦିନ ପରେ ଖବର ପାଇଲୁ ଯେ ସେମାନେ ଚାଲି ଚାଲି ପୁରୀରେ ପହଁଞ୍ଚିଲେ ।

କେତେ ଦିନ ପରେ ସବୁ ଶାନ୍ତ ହୋଇଗଲା ଏହିଠାରେ ସୀମା ଆନ୍ଦୋଳନ ବିଷୟରେ ଟିକିଏ ଆଲୋଚନା କଲେ ବର୍ତ୍ତମାନର ପାଠକ ମାନେ ଜାଣି ପାରିବେ କିପରି ଓଡିଶା ପ୍ରଦେଶ ପ୍ରତି ଅନ୍ୟାୟ କରାଯାଇଛି । ୧୯୩୬ ମସିହା ଅପ୍ରେଲ ପହିଲା ତାରିଖ ଦିନ ବିହାର ଠାରୁ ଅଲଗା ହୋଇ ଗୋଟିଏ ନୂତନ ପ୍ରଦେଶ ଗଢା ଗଲା । ଓଡିଶା ଲୋକଙ୍କ ଦାବିଥିଲା ଷଢେଇକଳା ଖରସୁଆଁ ବ୍ୟତିତ ସମ୍ବଲପୁର ପାଖରେ ଥିବା ଓଡିଆ ଭାଷା ଭାଷି ଅଞ୍ଚଳ ଓଡିଶାରେ ମିଶାଇବା ପାଇଁ । ସମ୍ବଲପୁର ପାଖରେ ଥିବା ଓଡିଆ ଭାଷା ଭାଷି ଅଞ୍ଚଳ ମିଶା ନ'ଯାଇ ଓଡିଶା ପ୍ରଦେଶ ଗଢାଗଲା । ଓଡିଶା ପ୍ରଦେଶର ଲୋକମାନେ ଆଶା କରିଥିଲେ ୧୯୫୫ର କମିଶନ୍ ଅନ୍ତତଃ ସମ୍ବଲପୁରର ପାଖା ପାଖି କିଛି ଅଞ୍ଚଳ ଓଡିଶାରେ ମିଶିବ । କିନ୍ତୁ ଦୁଃଖର ବିଷୟ ହେଲା ଯେ ଓଡିଶାରେ ଥିବା ଷଢେଇକଳା ଖରସୁଆଁକୁ କାଢି ପୁଣି ବିହାରରେ ସାମିଲ୍ କରାଯିବ । ୧୯୫୬ ମସିହା ଜାନୁୟାରୀ ୨୨ ତାରିଖ ଦିନ ଆନ୍ଦୋଳନ ଭୟଙ୍କର ରୂପ ନେଲା । କଟକରେ ଗୁଳିକାଣ୍ଡ ଘଟି ସୁନିଲ ଦେ ନାମକ ଗୋଟିଏ ଯୁବକର ମୃତ୍ୟୁ ହେଲା । ସେହିପରି ପୁରୀରେ ଗୋଟିଏ ସ୍କୁଲ୍ ପିଲାର ମଧ୍ୟ ମୃତ୍ୟୁ ହୋଇଥିଲା ।

ସୀମା ଆନ୍ଦୋଳନର ମାସକ ପରେ ବୋଉ ସାନ ନାନୀର ଡେଲିଭରୀ ପାଇଁ ଜାମସେଦ୍‌ପୁର ଚାଲିଗଲେ । ଆମେ ଦୁଇଜଣ ଏକା ରହିଲୁ । ଆହୁରି କେତେ ଦିନ ସୁରୁଖୁରୁରେ କଟିଗଲା । ଦିନେ ସରସ୍ୱତୀ ପୂଜା ଦିନ ଆମ ଦୁଇ ଜଣଙ୍କର ମନୋମାଳିନ୍ୟ ଘଟିଲା । କାରଣଟା ଏବେ ମୋର ମନେ ନାହିଁ । ମୋତେ ସେ କହିଲା ମୁଁ ପୁରୀ ଯିବି । ତମେ ମୋତେ ଛାଡିଦେଇ ଆସ । ମୁଁ ଯାଇ ପାରିବି ନାହିଁ ବୋଲି କହିଲି ଏବଂ କହିଲି ଆଉ କେତେ ଦିନ ପରେ ସୁବିଧା କରି କାହା ସାଙ୍ଗରେ ପଠାଇଦେବି । କେତେ ଦିନ ପରେ ସ୍ୱାଙ୍କୁ ପୁରୀ ପଠାଇ ଦେଲି । ଏକୁଟିଆ ଥାଏ । ସେହି ସମୟରେ ଶ୍ରୀ ବାମନ ଚରଣ ରାୟ ଡକ୍ଟର ଦତ୍ତଙ୍କ ପାଖରେ ସହକାରୀ ଗବେଷକ

ହିସାବରେ ଯୋଗ ଦେଇଥାଆନ୍ତି ଓ ସେହି ଗିରିଧାରୀ ସାହୁ କଲୋନୀରେ ଆମ ଘର ପାଖରେ ରହିଥାଆନ୍ତି । ମୁଁ ତାଙ୍କ ସାଙ୍ଗରେ ଖାଇବା ବାବଦକୁ ୪୦ ଟଙ୍କା ଦେଇ ଖାଇଲି । ଦିନେ ସ୍ୱାଙ୍କ ଘରର କେହି ଜଣେ ବ୍ୟକ୍ତି କହିଲେ ସେ ଏଠାରେ ତୁମ ବୋଉଙ୍କ ପାଖରେ ରହିବାକୁ ମଙ୍ଗୁନାହିଁ । ମୁଁ କହିଲି ବୋଉକୁ ତ ଛାଡି ପାରିବି ନାହିଁ । ବୋଉ ତ ବୁଢ଼ି ହେଲେଣି ତେଣୁ ତାଙ୍କ ପରେ ସ୍ୱା ମୋ ପାଖକୁ ଆସିବ ବୋଲି ତାଙ୍କୁ କହିଲି । ମୋ ମନରେ ବହୁତ କଷ୍ଟ ହେଲା । ମୁଁ ଆଉ ଚିଠି ଦେଲି ନାହିଁ । ଚୁପ୍ ଚାପ୍ ରହିଲି । ଛୋଟ ଘରଟିଏ ବଦଳାଇ ବଡ ଘରଟିଏ ସେହି ଗଳିରେ ଭଡା ନେଲି । ଅଳ୍ପ ଦିନ ପରେ ଗୋଟିଏ ଟେବୁଲ୍ ପଙ୍ଖା ଓ ଗୋଟିଏ ବଡ ରେଡିଓ କିଣିଲି । ଏହିପରି ପ୍ରାୟ ୬ ମାସ  କଟିଗଲା । ମୁଁ ସ୍ୱାଙ୍କର କିଛି ଖବର ରଖୁ ନ'ଥିଲି, କି କିଛି ଖବର ଦେଉନାହିଁ । କିନ୍ତୁ ଖରା ଛୁଟିରେ ଦିନେ ୧୦ଟା ସମୟରେ ତାର ବଡ ଦଦେଇଙ୍କ ସାଙ୍ଗରେ ଆସି ପହଁଞ୍ଚିଲା ଏବଂ ଅଭିମାନ କରି କହିଲା ତୁମେ କେମିତି କିଛି ଚିଠି ପତ୍ର ଦେଲନାହିଁ । ମୁଁ ତାକୁ କହିଲି ତୁ ବୋଉ ବଞ୍ଚିଥିବା ବେଳେ ଆସିବୁ ନାହିଁ ବୋଲି ତମ ଘରର କେହି ଜଣେ ମୋତେ କହିଥିଲା । ସେହି କାରଣରୁ ମୁଁ ଚିଠି ଦେଉନ'ଥିଲି । ସେ କହିଲା ଏକଥା କାହାକୁ ଜମା କହିନାହିଁ ଏବଂ ବହୁତ କାନ୍ଦିଲା । ତାପରେ ଆମର ସବୁ କଳି ତୁଟିଗଲା । ଆମର ତାର ମୃତ୍ୟୁ ପର୍ଯ୍ୟନ୍ତ ଆଉ କଳି ଲାଗିନାହିଁ । ସେ ଆଉ ୧୦ ବର୍ଷ ବୋଉଙ୍କ ପାଖରେ ରହିଛି କିନ୍ତୁ ଏପରି କିଛି ଗୋଳମାଳ ହୋଇନାହିଁ ।

ସେହି ଖରା ଛୁଟିରେ ଡକ୍ଟର ଦରଙ୍କ ସଙ୍ଗେ କଥା ବାର୍ତ୍ତା କରି କହିଲି ଏକ୍ସପେରିମେଣ୍ଟ ଉପରେ ଗବେଷଣା କରିବା ପାଇଁ ଗୋଟିଏ ପ୍ରୋଜେକ୍ଟ ମୋତେ ଦିଅନ୍ତୁ । ସେ ସଙ୍ଗେ ସଙ୍ଗେ ସ୍ପେକ୍ଟ୍ରୋସ୍କୋପି ସମ୍ବନ୍ଧୀୟ ଗୋଟିଏ ପ୍ରୋଜେକ୍ଟ ଦେଇଦେଲେ । ମୋତେ ଜଣାଗଲା ଯେ ଯେପରି ଆଗରୁ ମୋତେ ଏହି ପ୍ରୋଜେକ୍ଟ ଦେବାପାଇଁ ଠିକ୍ କରିଥିଲେ । ଛୁଟି ଭିତରେ କାମ ଆରମ୍ଭ କରି ଦେଲି । ଏହି କାମ କରିବା ପାଇଁ ଗୋଟିଏ ଅଳ୍ପ ଅନ୍ଧାରୁଆ ଘର ଦରକାର । ଏକ୍ସପେରିମେଣ୍ଟ କରି ଫଟୋ ଉଠାଯାଏ । ଫଟୋଟିକୁ ପୂର୍ଣ୍ଣ ଅନ୍ଧାରୁଆ ଘରେ ଧୁଆଯାଏ ଏବଂ କେତେକ ଲାଇନ୍‌ର ତୀବ୍ରତା ମପାଯାଏ । କାମ ସୁରୁଖୁରୁରେ ଚାଲିଲା । ମୋତେ ଏହି କାମ କରିବାକୁ ବେଶ ଭଲ ଲାଗୁଥିଲା । ଖରାଛୁଟି ପରେ ବୋଉ ଜାମସେଦ୍‌ପୁରରୁ ଫେରି ଆସିଲେ ।

## ଅଧ୍ୟାପକ, ରେଭେନ୍ସା କଲେଜ ଓ ଗବେଷଣା ଆରମ୍ଭ

ଦିନେ ହଠାତ୍ ମୁଁ ଜାଣିଲି ସରକାର ମୋତେ ଅଧ୍ୟାପକ ରୂପେ ସାମୟିକ ଭାବରେ ନିଯୁକ୍ତି ଦେଇଛନ୍ତି । ତେଣୁ ମୁଁ ଲାବୋରାଟୋରି ଆସିସ୍‌ଟାଣ୍ଟ ଚାକିରୀରୁ ଅବ୍ୟାହତ ନେଇ ୦୩.୦୮.୧୯୫୬ ତାରିଖରେ ଅଧ୍ୟାପକ ଭାବେ ଯୋଗ ଦେଲି । ସେହି ନିଯୁକ୍ତି ପତ୍ରରେ ଶ୍ରୀ ବାମନ ଚରଣ ରାୟ ପାରଳାଖେମୁଣ୍ଡି କଲେଜରେ ଓ ଶ୍ରୀ କୃଷ୍ଣଚରଣ ପଟ୍ଟନାୟକ ରେଭେନ୍ସା କଲେଜରେ ଅଧ୍ୟାପକ ରୂପେ ଯୋଗ ଦେବାକୁ ଆଦେଶ ପାଇଥିଲେ । ଏହାର ଅଳ୍ପ ଦିନ ପରେ ଜଣେ ଏମ୍.ଏସ୍‌ସି ପାସ କରି ଡକ୍ଟର ଦତ୍ତଙ୍କ ଗବେଷଣା ସହକାରୀ ଭାବରେ ଯୋଗ ଦେଲେ । ଆଉ କେତେଦିନ ପରେ ଆଉ  ଜଣେ ଝିଅ ଡକ୍ଟର ଦରଙ୍କ ଗବେଷକ ହିସାବରେ ଯୋଗଦେଲେ । ଡକ୍ଟର ଦତ୍ତ ସେ ଦୁଇ ଜଣଙ୍କୁ ମଧ୍ୟ ସ୍ପେକ୍ଟ୍ରୋସ୍କୋପି ସମ୍ବନ୍ଧୀୟ ଏକ୍ସପେରିମେଣ୍ଟର ପ୍ରୋଜେକ୍ଟ ଦେଲେ । ତାର କେତେ ଦିନ  ପରେ କେତେ ଗୁଡିଏ ଘଟଣା

ଘଟିଲା । ତାହା ପ୍ରକାଶ କରିବା ପାଇଁ ମୁଁ ଉଚିତ୍ ମନେ କରୁନାହିଁ । ମୁଁ ଡକ୍ଟର ଦରଙ୍କୁ କହିବା ପାଇଁ ବାଧ୍ୟ ହେଲି ଯେ ମୁଁ ଆଉ ସ୍ପେକ୍‌ଟ୍ରୋସ୍କୋପି ସମ୍ବନ୍ଧୀୟ ଗବେଷଣା କରିପାରିବି ନାହିଁ । ସେ ମୋତେ କାରଣ ପଚାରିଲେ । ମୁଁ କହିଲି, ତାହା କହି ପାରିବି ନାହିଁ । ତେଣୁ ସେ ମୋତେ ଆଉ ଗୋଟିଏ ପ୍ରୋଜେକ୍ଟ ସଲିଡ୍ ଷ୍ଟେଟ ଉପରେ ଦେଲେ । ଏହାର କେତେଦିନ ପରେ ସ୍ଥାୟୀ ଅଧ୍ୟାପକ ପାଇଁ ଓଡିଶା ପବ୍ଲିକ୍ ସର୍ଭିସ୍ କମିସନ୍ ଦ୍ୱାରା ବିଜ୍ଞାପନ ବାହାରି ଥିଲା । ମୁଁ ଦରଖାସ୍ତ କରିଥିଲି । ମୁଁ ଦରଖାସ୍ତରେ ମୋର ଅବସର ସମୟର କାର୍ଯ୍ୟ(Hobby) ମେକାନିକାଲ ଉଦ୍ଭାବନ ଲେଖିଥିଲି । ସାକ୍ଷାତ୍କାର ସମୟରେ ଅନ୍ୟମାନଙ୍କ ସହିତ ଶ୍ରୀ ପି.ଏସ୍. ସୁନ୍ଦରାମ୍ ନାମକ ରେଭେନ୍ସା କଲେଜର ପୂର୍ବତନ ଅଧ୍ୟାପକ ସଭ୍ୟ ଥିଲେ ଓ ଡକ୍ଟର ଏ.କେ ଦର ଫିଜିକ୍ସ ପ୍ରଫେସର ବିଶେଷଜ୍ଞ ଭାବରେ ଜଣେ ସଭ୍ୟ ଥିଲେ । ଆଉ ଦୁଇଜଣ ସଭ୍ୟଙ୍କ ନାମ ମୋର ମନେ ନାହିଁ । ଚେୟାରମ୍ୟାନ ପ୍ରଶ୍ନ ପଚାରି ସାରିଲା ପରେ ଶ୍ରୀ ସୁନ୍ଦରାମ୍ ପଚାରିଲେ, ତମେ ଅବସର ସମୟର ପ୍ରିୟକାର୍ଯ୍ୟ(Hobby)ରେ ଲେଖିଛ ମେକାନିକାଲ ଉଦ୍ଭାବନ । ତୁମେ କଣ କଣ ମେକାନିକାଲ ଉଦ୍ଭାବନ କରିଛ । ଟେବୁଲ ଘଣ୍ଟାକୁ ପେଣ୍ଡୁଲମ ଦ୍ୱାରା ଚଳାଇବା, ପାଣି ଆସିଲା ବେଳେ ଘଣ୍ଟା ବାଜିବା ଯନ୍ତ୍ର ଇତ୍ୟାଦି । ସେ ପୁଣି ପଚାରିଲେ, ଜଣେ ବ୍ୟକ୍ତି ଗୋଟିଏ ପଛୁଆ ଚାଲୁଥିବା ଘଣ୍ଟାକୁ ଠିକ୍ କରିବା ପାଇଁ ଘଣ୍ଟା ଦୋକାନୀକୁ ଦେଲେ । କିନ୍ତୁ ଘଣ୍ଟା ଦୋକାନୀ କହିଲା ତାହା ଠିକ୍ ହୋଇ ପାରିବ ନାହିଁ । ସେ ପଚାରିଲେ, 'ଦୋକାନୀ ଠିକ୍ କହୁଛି କି ନାହିଁ ?' ମୁଁ କହିଲି, ଦୋକାନୀ ଭୁଲ୍ କହୁଛି ଘଣ୍ଟା ପେଣ୍ଡୁଲମ୍‌ର କିମ୍ବା ହେୟାର ସ୍ପ୍ରିଙ୍ଗର ଲମ୍ବ ଛୋଟ କରିଦେଲେ ଠିକ୍ ଚାଲିବ । ତାପରେ ମତେ ଯିବାକୁ ଅନୁମତି ଦେଲେ ।

ଗିରିଧାରି ସାହୁ କଲୋନୀରେ ରହୁଥିବା ସମୟରେ ଏନ୍ ଭିମାରାଓ ନାମକ ଜଣେ ଟେଲିଫୋନ କାର୍ଯ୍ୟାଳୟର କର୍ମଚାରୀ ଆମେ ରହୁଥିବା ଘରର ଆଗଧାଡିରେ ରହୁଥିଲେ । ସେ ସମସ୍ତଙ୍କୁ ସହାଯ୍ୟ କରିବାକୁ ଆଗେଇ ଆସନ୍ତି । ତାଙ୍କ ସହଧର୍ମିଣୀ ମଧ୍ୟ ସେହିପରି ।ମୋତେ ଥରେ ଷ୍ଟୁଆର୍ଟ କଲେଜରେ ଆଇ.ଏସସି ପ୍ରାକ୍ଟିକାଲ୍ ପରୀକ୍ଷାରେ ଆକସ୍ମିକ ଭାବେ ପରୀକ୍ଷା ନିୟନ୍ତ୍ରକ ପକାଇ ଦେଇଥିଲେ । କିନ୍ତୁ ସେହିବର୍ଷ ଶ୍ରୀ ଶଶାଙ୍କଶେଖର ପଟ୍ଟନାୟକ ନାମକ ଜଣେ ଅଧ୍ୟାପକଙ୍କର ପରୀକ୍ଷା ବାରିପଦା କଲେଜରେ ପଡିଥିଲା । ସେ ଭାବିଲେ ମୁଁ ବୋଧେ ଧରାଧରି କରି ଷ୍ଟୁଆର୍ଟ କଲେଜରେ ମୋର ପ୍ରାକ୍ଟିକାଲ୍ ପରୀକ୍ଷା ପକାଇ ଦେଇଛି । ମୁଁ କଲେଜରୁ ଶୁଣିବାକୁ ପାଇଲି, ଶଶାଙ୍କ ବାବୁ ପରୀକ୍ଷା କରିବାକୁ ବାରିପଦା ଯିବେ ନାହିଁ ବୋଲି । ତେଣୁ ସେହିଦିନ କଲେଜରେ ତାଙ୍କୁ ଦେଖାକରି କହିଲି "ଆପଣ ବିଶ୍ୱାସ କରନ୍ତୁ ମୁଁ ଜମା ଧରାଧରି କରି ପରୀକ୍ଷା ଷ୍ଟୁଆର୍ଟ କଲେଜରେ ପକାଇ ନାହିଁ । ଯଦି ଆପଣ ଇଚ୍ଛା କରୁଛନ୍ତି ତେବେ, ଆପଣ ଷ୍ଟୁଆର୍ଟ କଲେଜରେ ପରୀକ୍ଷା କରନ୍ତୁ ଆଉ ମୁଁ ବାରିପଦାରେ ପରୀକ୍ଷା କରିବାକୁ ଯିବି ।" ସେହି ଅନୁସାରେ ପରୀକ୍ଷା ନିୟନ୍ତ୍ରକଙ୍କ ପାଖକୁ ଶଶାଙ୍କ ବାବୁ ଓ ମୁଁ ଦୁହେଁ ଲେଖିକରି ଦେଲୁ । କିନ୍ତୁ ତାପରଦିନ ବାରିପଦା କଲେଜରେ ପରୀକ୍ଷା ହେବାର ଥିଲା । ସେହିଦିନ ମୋର ଥରେ ଦରକାର ପଡିବାରୁ , ଶ୍ରୀ ଭିମାରାଓଙ୍କୁ ମୁଁ ଅନୁରୋଧ କରି କହିଲି "ବାରିପଦା କଲେଜ ଅଧ୍ୟକ୍ଷଙ୍କୁ ମୋର ଏକ ଜରୁରୀ ଖବର ଫୋନ ଦ୍ୱାରା ଜଣାଇବା ଦରକାର ।" ସେ ସଙ୍ଗେ ସଙ୍ଗେ ରାଜି ହେଲେ । ପ୍ରାୟ ରାତି ଆଠଟା କିମ୍ବା ନଅଟା ବେଳକୁ ଆମେ ଦୁହେଁ ଟେଲିଫୋନ୍ ବିନିମୟ

(Exchange) କାର୍ଯ୍ୟାଳୟକୁ ଗଲୁ । ଟେଲିଫୋନ୍ ବିନିମୟ ଅଫିସ୍‌ରେ ଥିବା ଜଣେ କର୍ମଚାରୀଙ୍କୁ ସେ ଅନୁରୋଧ କଲେ ଫୋନ୍ ଖବର ବାରିପଦା କଲେଜର ଅଧ୍ୟକ୍ଷଙ୍କ ପାଖକୁ ପଠାଇବାକୁ ଅଛି । ସେ କର୍ମଚାରୀ କହିଲେ ଅଧ୍ୟକ୍ଷଙ୍କ ଫୋନ୍ ନମ୍ବର କେତେ ? "ଆମେ କହିଲୁ ଆମକୁ ଜଣାନାହିଁ ।" ସେ କର୍ମଚାରୀ କହିଲେ ତାଙ୍କ ନାମ କ'ଣ ? "ମୁଁ କହିଲି ଦାମୋଦର ମିଶ୍ର ।" ଭିମାରାଓ ବାବୁ ତାଙ୍କୁ କହିଲେ ବାରିପଦା ଟେଲିଫୋନ୍ ବିନିମୟ ଅଫିସ୍‌କୁ ପଚାରନ୍ତୁ ଦାମୋଦର ମିଶ୍ରଙ୍କ ଫୋନ୍ ନମ୍ବର କେତେ ? ବାରିପଦା ଟେଲିଫୋନ୍ ବିନିମୟ ଅଫିସ୍‌ରୁ ଦାମୋଦର ମିଶ୍ରଙ୍କ ଫୋନ୍ ନମ୍ବର ମିଳିଲା । ତାପରେ ସେ ଅଫିସ୍‌ର କର୍ମଚାରୀ ଦାମୋଦର ମିଶ୍ରଙ୍କ ପାଖକୁ ଫୋନ୍ ଲଗାଇଦେଇ ମୋତେ କଥା ହେବାକୁ କହିଲେ । ମୁଁ ଦାମବାବୁଙ୍କୁ କହିଲି "ସାର୍, କାଲି ଆପଣଙ୍କ କଲେଜରେ ଯେଉଁ ପରୀକ୍ଷା ଅଛି ତାହା କାଲି ହେବନାହିଁ, କାରଣ ଶ୍ରୀ ଶଶାଙ୍କଶେଖର ପଟ୍ଟନାୟକ ଯିବେନାହିଁ । କିନ୍ତୁ ମୁଁ ତାପର ଦିନ ଯାଇ ପରୀକ୍ଷା କରିବି । ଆପଣ ସବୁ ବନ୍ଦୋବସ୍ତ କରିଥିବେ ।" ସେହି ଅନୁସାରେ ମୁଁ ବାରିପଦା ପରୀକ୍ଷା କରିବାକୁ ଯାଇଥିଲି । ବାରିପଦା କଲେଜରେ ପହଁଞ୍ଚି ଅଧ୍ୟକ୍ଷଙ୍କୁ ଦେଖାକଲି । ସେ ଉତ୍ତର ଦେଲେ ପରୀକ୍ଷାଟି କଲେଜଠାରୁ ଦୁଇ କିଲୋମିଟର ଦୂର ଟକଟପୁର ଠାରେ ହେଉଛି । ତେଣୁ ଆପଣ ଟକଟପୁର ଚାଲିଯାଇ ଶ୍ରୀ ବିପିନିବିହାରି ସାଇଁଙ୍କ ସଙ୍ଗେ ଦେଖାକର । ସେ ସବୁ ପରୀକ୍ଷାର ବନ୍ଦୋବସ୍ତ କରିଦେବେ । ତାଙ୍କ କହିବା ଅନୁସାରେ ରିକ୍ସାରେ ଯାଇ ଟକଟପୁରରେ ଥିବା ଗୋଟିଏ ଆଉଟହାଉସ୍ ଘରେ ପରୀକ୍ଷା ହେଉଥିଲା । ତାଙ୍କ କହିବା ଅନୁସାରେ ସେଠାରେ ପହଁଞ୍ଚି ପରୀକ୍ଷା କଲି । ପରୀକ୍ଷା ସରିବାପରେ ବିପିନ୍ ବାବୁଙ୍କ ଶ୍ୱଶୁର ଘରେ ରହିଲି । ବିପିନ୍ ବାବୁ ମଧ୍ୟ ସେଠାରେ ରହୁଥିଲେ । ଆଉ ଦୁଇଦିନ ପରେ ପରୀକ୍ଷା ସରିଗଲା ତାପରେ ମୁଁ ଚାଲି ଆସିଲି । ଆଉ କେତେ ଥର ମଧ୍ୟ ବାରିପଦା ପରୀକ୍ଷା କରିବାକୁ ଯାଇଥିଲି । ସେତେବେଳେ ପରୀକ୍ଷା ବାରିପଦା କଲେଜରେ ହେଉଥିଲା ।

ଭିମାରାଓ ଅନେକ ସମୟରେ ମଧ୍ୟ ମୋତେ ସାହାଯ୍ୟ କରିଛନ୍ତି । କେତେଦିନ ପରେ ଭିମାରାଓଙ୍କୁ ସରକାରୀ ବାସଭବନ ମିଳିଯିବାରୁ ସେ ସେହି ଘର ଛାଡି ଚାଲିଗଲେ । ମୁଁ ଭିମାରାଓଙ୍କ ବାସଭବନରେ ଯାଇ ରହିଲି । ମୁଁ ଅବସର ନେବାପରେ ଆସି ଭୁବନେଶ୍ୱରରେ ରହିଥିଲି । ଟେଲିଫୋନ୍ ସଂଯୋଗ କରିବା ପାଇଁ ଟେଲିଫୋନ୍ ଅଫିସକୁ ଯାଇ ଦରଖାସ୍ତ କରିଆସିଲି । କେତେଦିନ ପରେ ତମର ଟେଲିଫୋନ୍ ସଂଯୋଗ କରାଯିବ ବୋଲି ଚିଠି ଆସିଗଲା । ତାର କେତେଦିନ ପରେ ଟେଲିଫୋନ୍ ମଧ୍ୟ ସଂଯୋଗ ହୋଇଗଲା । ଦୁଇମାସ ପରେ ମୋ ପାଖକୁ ଚିଠି ଆସିଲା ତୁମେ ଟେଲିଫୋନ୍ ଦେୟ ଦେଇ ନ'ଥିବାରୁ ତମେ ଏକଶତ ଟଙ୍କା ଜୋରିମାନା ଦେବାପାଇଁ ଚିଠି ଆସିଲା । ନିର୍ଦ୍ଦିଷ୍ଟ ତାରିଖରେ ନ'ଦେଲେ ତୁମର ଫୋନ୍ ଲାଇନ୍ କାଟି ଦିଆଯିବ । ସେଥିପାଇଁ ଟେଲିଫୋନ୍ କାର୍ଯ୍ୟାଳୟକୁ ଯାଇକହିଲି ମୁଁ ପ୍ରଥମ ଟେଲିଫୋନ୍ ବିଲ୍ ପାଇନାହିଁ, ତା'ହେଲେ ଜୋରିମାନା କାହିଁକି ଦେବି । ତାଙ୍କ ସଙ୍ଗେ କଥାବାର୍ତ୍ତା ହେଉହେଉ ହଠାତ୍ ଭିମାରାଓଙ୍କ ସହିତ ଦେଖାହେଲା । ସେ ମୋତେ ପଚାରିଲେ ଆପଣଙ୍କର କଣ ଅସୁବିଧା ହୋଇଛି ? ମୁଁ ସବୁକଥା କହିଲି ମୋ କଥା ଶୁଣି ଭିମାରାଓ, ଜଣେ ଉଚ୍ଚପଦସ୍ଥ କର୍ମଚାରୀଙ୍କ ସହିତ ମୋତେ ନେଇ ଦେଖା କଲେ ଏବଂ ଉଚ୍ଚପଦସ୍ଥ କର୍ମଚାରୀଙ୍କ ସହିତ ମୋର

ଅସୁବିଧା ବିଷୟରେ କଥାବାର୍ତ୍ତା କଲେ । ବିଲ୍ ଉପରେ ସେ କ'ଣ ଲେଖିଦେଲେ । ତାହାର ମର୍ମ ହେଉଛି ମୋତେ ଜୋରିମାନା ଦେବାକୁ ପଡିବ ନାହିଁ । ମୁଁ ସଙ୍ଗେ ସଙ୍ଗେ ଫୋନ୍ ବିଲ୍ ପଇସା ଦାଖଲ କରିଦେଲି । ସେହିଦିନ ଠାରୁ ଫୋନ୍ ବିଷୟରେ ମୋର କିଛି ଅସୁବିଧା ହୋଇନାହିଁ ।

ସେହି ସମୟରେ ମୋ ଘର ଆଗରେ ଆଉଜଣେ ଇଞ୍ଜିନିୟର ତାଙ୍କ ସ୍ତ୍ରୀ ଓ ପିଲାମାନଙ୍କ ସହିତ ରହୁଥିଲେ । ସେହି ଇଞ୍ଜିନିୟର ପାଖରେ କ୍ୟାମେରା ଥାଏ ଏବଂ ତାଙ୍କୁ ଫଟୋ ଉଠାଇବାକୁ ଭଲଲାଗେ । ସେ ଥରେ ତାଙ୍କ ପିଲାମାନଙ୍କ ସହିତ ମୋ ସ୍ତ୍ରୀର ଫଟୋ ଉଠାଇଥିଲେ । ହଠାତ୍ ସେହି ଇଞ୍ଜିନିୟରଙ୍କର ଦେହାନ୍ତ ହୋଇଗଲା ତାର କିଛି ସମୟପରେ ମଧ୍ୟ ତାଙ୍କ ପତ୍ନୀଙ୍କ ଦେହାନ୍ତ ହୋଇଗଲା । ଦୁର୍ଯୋଗ ଏକ କୋକେଇରେ ଯାଇ ଗୋଟିଏ ଜୁଇରେ ଅଗ୍ନି ସଂଯୋଗ କରାଗଲା । ତାଙ୍କର ଗୋଟିଏ ପୁଅ ଏବଂ ଗୋଟିଏ ଝିଅ ଥିବାକଥା ମୁଁ ଜାଣିଛି ।

ବହୁଦିନ ପରେ ୨୦୦୩ ମସିହାରେ ଓଡିଶା ଫିଜିକାଲ୍ ସୋସାଇଟ୍‌ର ଏକ ବାର୍ଷିକ ଅଧିବେଶନ ରାଉରକେଲାଠାରେ ହେଉଥିଲା । ମୁଁ ସେହି ଅଧିବେଶନରେ ଯୋଗ ଦେବା ପାଇଁ ରାଉରକେଲାରେ ମୋ ଝିଅଘରେ ରହିଥିଲି । ମୋ ଝିଅ ପ୍ରଭାତୀ ମିଶ୍ର ମଧ୍ୟ ଓଡିଶା ଫିଜିକାଲ୍ ସୋସାଇଟ୍‌ର ସଦସ୍ୟ ହୋଇଥିଲେ । ମୋ ଝିଅ ସହିତ ମୁଁ ଅଧିବେଶନରେ ଯୋଗ ଦେବା ପାଇଁ ଯାଇଥିଲି । ସେହି ସମୟରେ ଆଉ ଗୋଟିଏ ଝିଅ ମୋ ଝିଅ ପ୍ରଭାତୀକୁ କହିଲେ 'ମୋତେ ତାଙ୍କୁ ଚିହ୍ନା ଚିହ୍ନା ଲାଗୁଛି ।' ମୋ ଝିଅ କହିଲା 'ସେ ମୋର ନନା' । ସେ ପୁଣି କହିଲେ 'ତାଙ୍କର ଗୋଟିଏ ଫଟୋ ବୋଧେ 'ଆମ ଘରେ ମଧ୍ୟ ଅଛି ।' ସେ ଭଦ୍ର ମହିଳା ଓ ପ୍ରଭାତୀ ଆସି ମୋ ସହିତ କଥାବାର୍ତ୍ତା ହେଲେ । ଭଦ୍ର ମହିଳାଙ୍କୁ ଦେଖି 'ମୁଁ ତାଙ୍କୁ କହିଲି ଆପଣଙ୍କୁ କେଉଁଠି ଦେଖିଲା ପରି ଲାଗୁଛି ।' ଭଦ୍ର ମହିଳା କହିଲେ ଆପଣ ଗିରିଧାରୀ ସାହୁ କଲୋନୀରେ ଥିଲେ କି ? ମୁଁ କହିଲି ' ହଁ ଥିଲି ।' ମୋର ୫୦ ବର୍ଷର କଥା ମନେପଡିଗଲା । ମୁଁ ତାଙ୍କୁ ପଚାରିଲି ଆପଣ କଣ ଇଂଜିନିୟର ସେନାପତି ବାବୁଙ୍କ ଝିଅ ? ଆପଣ ମା ଓ ବାପା ଏକା ଦିନକେ ସଂସାରରୁ ବିଦାୟ ନେଇଥିଲେ । ମୁଁ ତାଙ୍କୁ କହିଲି ଆପଣଙ୍କ ନାମ ବୋଧେ ବିଦ୍ୟାବତୀ ସେନାପତୀ ।

ବାରିପଦାର ପରୀକ୍ଷା ସାରି ଫେରିବା ପରେ ନଭେମ୍ବର ମାସ ହୋଇ ଯାଇଥାଏ । ନଭେମ୍ବର ମାସର ଶେଷ ଆଡକୁ ପୁଣି ଡିପାର୍ଟମେଣ୍ଟରେ ବ୍ୟାଡମିଂଟନ ଖେଳ ଆରମ୍ଭ ହେଲା । କେତେ ଦିନ ପରେ ଜାଣିଲି ସ୍ଥାୟୀ ଅଧ୍ୟାପକ ପାଇଁ ମୁଁ 'ପବ୍ଲିକ୍ ସର୍ଭିସ୍ କମିସନ୍' ଦ୍ୱାରା ମନୋନୀତ ହୋଇଛି । କିନ୍ତୁ ମୁଁ ରେଭେନ୍ସା କଲେଜରେ ଅଧ୍ୟାପକ ନ'ହୋଇ ଅନ୍ୟ କଲେଜରେ ସ୍ଥାୟୀ ଅଧ୍ୟାପକ ହେବି । ସେତେବେଳକୁ ରେଭେନ୍ସା କଲେଜର ଅଧ୍ୟକ୍ଷ ଡକ୍ଟର ବାନାର୍ଜୀ ମରି ଯାଇଥାଆନ୍ତି । କେମେଷ୍ଟ୍ରି ପ୍ରଫେସର ଡକ୍ଟର ବଳଭଦ୍ର ପ୍ରସାଦ ଶିକ୍ଷା ନିର୍ଦ୍ଦେଶକ ଭାବରେ ଯୋଗ ଦେଇଥାଆନ୍ତି ଓ ଶ୍ରୀ ବାମାଚରଣ ଦାସ ଅଧ୍ୟକ୍ଷ ଭାବରେ ଯୋଗ ଦେଇଥାଆନ୍ତି । ରେଭେନ୍ସା କଲେଜରେ ପଢିଲା ବେଳେ ଡକ୍ଟର ବଳଭଦ୍ର ପ୍ରସାଦ ମୋତେ ଭଲକରି ଜାଣିଥିଲେ । ମୁଁ ଠିକ୍ କଲି ସମୟ ଆସିଲେ ତାଙ୍କ ଅଫିସ୍‌ରେ ଦେଖା କରିବି । ମୋର ମନ ଖୁସି ଥାଏ । ଆମେ ସେମିତି ସନ୍ଧ୍ୟାବେଳେ ବ୍ୟାଡମିଂଟନ ଖେଳୁଥାଉ । ହଠାତ୍ ଦିନେ ବ୍ୟାଡମିଂଟନ ଖେଳୁ ଖେଳୁ ପଡିଯାଇ ମୋ ଗୋଡ ମୋଡି ହୋଇଗଲା । ମୁଁ ଆଉ ଚାଲି ପାରିଲି ନାହିଁ । କିଛି ସମୟ ଯିବାପରେ ଟିକିଏ ଭଲ ଲାଗିବାରୁ ଘରକୁ ରିକ୍ସାରେ ବସି ଆସିଲି । ଦୁଇ ଦିନ ଛୁଟିନେଇ ଘରେ ରହିଲି । ତାପରେ

କଲେଜକୁ ଗଲି । ଅଧ୍ୟକ୍ଷଙ୍କ ଠାରୁ ଚିଠି ପାଇଲି ଯେ ତୁମେ ଅସ୍ଥାୟୀ ଅଧ୍ୟାପକ ଚାକିରୀରୁ ଅବ୍ୟାହତି ନିଅ । ତୁମ ଜାଗାରେ ଅନ୍ୟ ଲୋକ ଯୋଗଦେବେ । କଲେଜ ଅଫିସ୍‌ରୁ ବୁଝିଲି ମୋର ସ୍ଥାୟୀ ଅଧ୍ୟାପକ ଚାକିରୀର ନିଯୁକ୍ତି ବାଲେଶ୍ୱରେ ଦୁଇ କିମ୍ବା ତିନି ଦିନ ଭିତରେ ଆସିବ । ତେଣୁ ଏ ଚିଠି ପାଇ ଛୋଟା ଗୋଡରେ ଶିକ୍ଷା ବିଭାଗର ନିର୍ଦ୍ଦେଶକଙ୍କୁ ତାଙ୍କ ଅଫିସ୍‌ରେ ଦେଖାକଲି । ସେ ମୋ କଥାକୁ ଧୈର୍ଯ୍ୟର ସହିତ ଶୁଣିଲେ । ମୁଁ ତାଙ୍କୁ କହିଲି ମୁଁ ଲାବୋରାଟୋରୀ ଆସିସ୍‌ଟାଣ୍ଟ ଭାବରେ ରେଭେନ୍ସା କଲେଜରେ ଯୋଗ ଦେଇଥିଲି । ଗୋଟିଏ ଘର ଭଡା ନେଇ ଆମେ ସ୍ୱାମୀ ଓ ସ୍ତ୍ରୀ ଦୁଇଜଣ ରହୁଛୁ । ମୁଁ ଅନ୍ୟ ଜାଗାରେ ଯୋଗଦେଲେ କଲେଜରୁ ଅବ୍ୟାହତି ନେଇ ଯାଇଥିବାରୁ ମୋତେ ଆଉ ଗ୍ରସ୍ତ ଖର୍ଚ୍ଚ ମିଳିବ ନାହିଁ । ପୁଣି କହିଲି ଆଜ୍ଞା ମୋ ଗୋଡ ମୋଡି ହୋଇ ଯାଇଥିବାରୁ ମୁଁ ଚାଲି ପାରୁ ନାହିଁ । ମୁଁ ଅନ୍ୟ ଜାଗାରେ ଯାଇ କେମିତି ଯୋଗ ଦେବି ? ସେ ମୋତେ କହିଲେ 'ଦର୍ଶକ କୋଠରୀରେ ଅପେକ୍ଷା କର ଓ ମୋତେ ଏକ ଘଣ୍ଟା ପରେ ଦେଖା କରିବ ।' ମୁଁ ଘଣ୍ଟାଏ ଅପେକ୍ଷା କରି ପୁଣି ଥରେ ଦେଖାକଲି । ସେ କହିଲେ ଦୁଇ ଗୋଟି ଅସୁବିଧାକୁ ମୁଁ ବୁଝି ପାରୁଛି । ତେଣୁ ତୁମକୁ ବର୍ତ୍ତମାନ ପାଇଁ ରେଭେନ୍ସା କଲେଜରେ ଯୋଗ ଦେବା ପାଇଁ ନିର୍ଦ୍ଦେଶ ଦେଉଛି । କିନ୍ତୁ ଆସନ୍ତା ବର୍ଷ ଆରମ୍ଭରୁ ତୁମକୁ ବାଲେଶ୍ୱର କଲେଜକୁ ବଦଳି କରିବି । ରେଭେନ୍ସା କଲେଜରେ ଯୋଗ ଦେବା ପାଇଁ ନିର୍ଦ୍ଦେଶ ପତ୍ରଟି କାଲି ଅଫିସରୁ ନେଇଯିବ । ଡିରେକ୍‌ଟରଙ୍କ ଅଫିସକୁ ଯାଇ ନିର୍ଦ୍ଦେଶ ପତ୍ରଟି ଆଣିଲି । କିନ୍ତୁ ସେହି ଦିନ ମୋତେ ଯୋଗ ଦେବାକୁ ଅଧ୍ୟକ୍ଷ ଅନୁମତି ଦେଲେ ନାହିଁ କହିଲେ 'କାରଣ କଲେଜରେ ବଡ ଦିନ ଛୁଟି ହୋଇଯାଇଛି ।' ମୁଁ ଅନ୍ୟ ମାନଙ୍କଠାରୁ ବୁଝିଲି ଯେଉଁ ପୋଷ୍ଟରେ ମୋତେ ଯୋଗ ଦେବାକୁ ନିର୍ଦ୍ଦେଶ ଆସିଛି ସେହି ପୋଷ୍ଟରେ ଆଉ ଜଣେ ବାଲେଶ୍ୱରରୁ ଆସିବା ପାଇଁ ଚେଷ୍ଟା କରୁଛନ୍ତି । ତେଣୁ ଅଧ୍ୟକ୍ଷ ଟମକୁ ବୋଧେ ଯୋଗ ଦେବାକୁ ମନା କଲେ । ବଡ ଦିନ ଛୁଟି ପରେ କଲେଜ ତିନି ତାରିଖରେ ଖୋଲିଲା । ମୁଁ ସେହିଦିନ ସାଢେ ଦଶଟା ବେଳେ ଯୋଗ ଦେବାକୁ ଗଲି । କିନ୍ତୁ ଅଧ୍ୟକ୍ଷ ସେତେବେଳେ ଯୋଗ ଦେବାକୁ ମନା କଲେ କହିଲେ ତିନିଟା ବେଳକୁ ଆସ । ମୁଁ ବାଧ୍ୟ ହୋଇ ୩ ତାରିଖ ଉପର ବେଳା ରେଭେନ୍ସା କଲେଜରେ ସ୍ଥାୟୀ ଅଧ୍ୟାପକ ଭାବରେ ଯୋଗ ଦେଲି । ଅଧ୍ୟକ୍ଷ ମୋତେ ସାଢେ ଦଶଟାବେଳେ ଯୋଗ ଦେବାକୁ ମନା କରିବାଟା ତାଙ୍କ ପକ୍ଷରେ ନିୟମ ବିରୁଦ୍ଧ କାମ ହୋଇଥିଲା । ତେଣୁ ମୁଁ ବାଧ୍ୟହୋଇ ଉପର ବେଳା ଯୋଗଦେଲି । ଯୋଗ ଦେଇ ସାରିଲା ପରେ ଭାବିଲି "ଈଶ୍ୱର ଯାହା କରନ୍ତି ତାହା ମଙ୍ଗଳ ପାଇଁ ।" ସେଥିପାଇଁ ଗୋଡ ମୋଡି ହୋଇଗଲା । ଗୋଡ ମୋଡି ହୋଇ ନ'ଥିଲେ ମୋତେ ବୋଧେ ବାଲେଶ୍ୱର ଯିବାକୁ ପଡିଥାଆନ୍ତା । ମୋର ଗୋଡ ମୋଡି ହୋଇଯିବାରୁ ମୁଁ ଘରେ ପ୍ରାୟ ରହୁଥାଏ ।

ଦେଖିଲି ବୋଉ ବି ବଳିତା ସେମିତି ବଳୁ ଥାଆନ୍ତି । ତେଣୁ ପଚାରିଲି ତୋର କଣ ମାନସିକ ଅଛି ? ସେ କହିଲା ମୁଁ ଜଗନ୍ନାଥଙ୍କ ପାଖରେ ବଳିତା ବସାଇବି ବୋଲି ମାନସିକ କରିଥିଲି । ମୁଁ ପଚାରିଲି କେତେ ଟଙ୍କା ଲାଗିବ ? ମୁଁ ଏକ ଲକ୍ଷ ବଳିତା ବଳି ସାରିଲେ ତୋତେ କହିବି । ମୋତେ ଆଉ ପ୍ରାୟ ଏକ ବର୍ଷ ଲାଗିବ । ମୁଁ କହିଲି ତୋର ବଳା ସରିଲେ ମୋତେ କହିବୁ । ମୋତେ କହିଲା ପରେ, ମୁଁ ତାହାର ବ୍ୟବସ୍ଥା କରିବି ।

ଏହା ଭିତରେ ଡକ୍ଟର ଦର ଯେଉଁ ପରିଯୋଜନା ଦେଇଥିଲେ ଏଥିରେ ମୋତେ

ଗବେଷଣା କରିବା ପାଇଁ ମନ ଲାଗୁ ନ'ଥିଲା । ଏହି ସମୟରେ ଡକ୍ଟର ତ୍ରିଲୋଚନ ପ୍ରଧାନ ଆମେରିକାରୁ ଆସି ରେଭେନ୍ସା କଲେଜରେ ଯୋଗଦେଲେ । ସେ ପ୍ରଥମେ କଟକ ହୋଟେଲ୍‌ରେ ରହୁଥିଲେ । କେତେଦିନ ପରେ ସେ ଗିରିଧାରୀ ସାହୁ କଲୋନୀରେ ଗୋଟିଏ ଘର ଭଡା ନେଇ ରହିଲେ । ସେ ଆମେରିକା ଯିବା ପୂର୍ବରୁ ଆମର ତୃତୀୟ ଓ ଚତୁର୍ଥ ବର୍ଷର ଅନର୍ସ କ୍ଲାସ୍ ନେଉଥିଲେ । ମୋତେ ଭଲ କରି ଚିହ୍ନି ଥାଆନ୍ତି । ମୁଁ ଦିନେ ସକାଳୁ ତାଙ୍କ ଘରକୁ ଗଲି । ମୁଁ ତାଙ୍କ ପାଖରେ ଗବେଷଣା କରିବାକୁ ଇଚ୍ଛା କରୁଛି ବୋଲି କହିଲି ଏବଂ ମୋତେ ଗୋଟିଏ ପରିଯୋଜନା ଦିଅନ୍ତୁ ବୋଲି କହିଲି । ସେ ରାଜି ହେଲେ କିନ୍ତୁ କହିଲେ ଦୁଇ ବର୍ଷ ପଢାପଢି କଲେ ତାପରେ ତୁମକୁ ପ୍ରୋଜେକ୍ଟ ଦେବି । ମୋ ମନ ଦୁଃଖୀ ହୋଇଗଲା । ମୁଁ ତାଙ୍କୁ କିଛି କହିଲି ନାହିଁ । ଥରେ କେତେଜଣ ଅଧ୍ୟାପକ କଳା ଟେବୁଲ ପାଖରେ ବସି ଥାଆନ୍ତି ଓ ତାତ୍ତ୍ୱିକ ଗବେଷଣା ଉପରେ ଆଲୋଚନା ଚାଲିଥାଏ । ଦୁଇ ବର୍ଷ ଭଲଭାବରେ ପଢାପଢି କଲା ପରେ ଜଣେ ତାତ୍ତ୍ୱିକ ଫିଜିକ୍ସରେ ଗବେଷଣା କରିପାରିବ । ଏହି ସମୟରେ ଡକ୍ଟର ହରିହର ମିଶ୍ର କହିଲେ ତ୍ରିଲୋଚନ (ତ୍ରିଲୋଚନ ବାବୁ ହରିହର ମିଶ୍ରଙ୍କର ଛାତ୍ର) ପତିତପାବନ ଦୁଇ ବର୍ଷ ପଢାପଢି କଲାପରେ ତାଙ୍କର ଅନ୍ୟ କଲେଜକୁ ବଦଳି ହୋଇଯାଇପାରେ । ତେଣୁ ପତିତପାବନ ଆଉ ଗବେଷଣା କରିବାକୁ ଏଠାରେ ନ'ଥିବେ । କୌଣସି କଲେଜ ଅଧ୍ୟାପକ ଏଠି ସେମିତି ଗବେଷଣା କରିପାରିବେ ନାହିଁ । କାରଣ ଦୁଇ ବର୍ଷ ହେଲା ବେଳକୁ ତାଙ୍କର ବଦଳି ହୋଇଯାଇ ପାରିଥାଏ । ତମେ ଆଗ ପରିଯୋଜନା ଦିଅ, ପରିଯୋଜନା ସମ୍ବନ୍ଧୀୟ ବିଷୟ ତାଙ୍କୁ ପଢିବାକୁ ଦିଅ । ତାହାହେଲେ ତାଙ୍କର ଆଗ୍ରହ ହେବ ଏବଂ ସେ ଗବେଷଣା କରିବେ । ଠିକ୍ ସେହିଦିନ ତ୍ରିଲୋଚନ ବାବୁ ମୋତେ ଡାକି କହିଲେ ତୁମେ କାଲି ସକାଳୁ ଆସ ମୁଁ ତୁମକୁ ଗୋଟିଏ ପରିଯୋଜନା ଦେବି ଏବଂ କଣ ପଢାପଢି କରିବାକୁ ହେବ ମୁଁ କହିଦେବି । (ଏହିଠାରେ ମନେ ପକାଇ ଦେଉଛି ଯେ ଶ୍ରୀ ହରିହର ମିଶ୍ର ମୋତେ ସାନ୍ତ୍ୱନା ଦେଇ କହିଥିଲେ ତୁମେ ଗବେଷଣା କରି ଦେଖାଇ ଦିଅ, ଯେ ତୁମେ ପ୍ରଥମ ଶ୍ରେଣୀ ଛାତ୍ରଙ୍କ ଠାରୁ କୌଣସି ଗୁଣରେ କମ୍ ନୁହେଁ । ସେ ପୁଣି ତ୍ରିଲୋଚନ ବାବୁଙ୍କ ମନ ପରିବର୍ତ୍ତନ କରାଇ ଦେଲେ ।

## ପ୍ଲାଜମା ସମ୍ବନ୍ଧୀୟ ତାତ୍ତ୍ୱିକ ପରିଯୋଜନା ଆରମ୍ଭ

ତ୍ରିଲୋଚନ ବାବୁ ମୋତେ ଗୋଟିଏ ପରିଯୋଜନା ଦେବାକୁ ରାଜି ହେଲେ । ସେଥିପାଇଁ ମୁଁ ଶ୍ରୀ ହରିହର ମିଶ୍ରଙ୍କ ପାଖରେ ଋଣୀ । ମୁଁ ବହୁତ ଖୁସି ହୋଇ ସକାଳୁ ତାଙ୍କୁ ଦେଖାକଲି । ସେ ମୋତେ ଖଣ୍ଡେ କାଗଜ ବଢାଇ ଦେଲେ ସେଥିରେ ଲେଖାଥିଲା (୧) ପ୍ରଫେସର ଚନ୍ଦ୍ରଶେଖରଙ୍କ ସଙ୍ଗେ ମିଶି ସେ ପ୍ଲାଜମା ସମ୍ବନ୍ଧୀୟ ଗୋଟିଏ ଗେବେଷଣାମୂଳକ ପ୍ରବନ୍ଧ ପ୍ରକାଶ କରିଥିଲେ । ତାକୁ ଚନ୍ନ ଚନ୍ନ କରି ପଢିବା ପାଇଁ ଉପଦେଶ ଦେଇଥିଲେ । (୨) ଏହା ବ୍ୟତିତ ଗୁଡିଏ ମ୍ୟାଥମେଟିକାଲ ଫିଜିକ୍ସ ପଢିବାକୁ କହିଥିଲେ ଓ ତାହାର ଗୋଟିଏ ତାଲିକା ମଧ୍ୟ ଦେଇଥିଲେ । (୩) ଚନ୍ଦ୍ରଶେଖରଙ୍କ ପେପରଟି ପଢି ସାରିଲେ ମୁଁ ତୁମକୁ ତାହା ସମ୍ବନ୍ଧୀୟ ଗୋଟିଏ ପରିଯୋଜନା ଦେବି । ମୁଁ ତାଙ୍କଠାରୁ ସେ ପେପରଟା ନେଇ ଆସିଲି । ସେହି ଚାରି ପୃଷ୍ଠାର ପେପରଟା ମୋତେ ପଢିବାକୁ ୬ ମାସ ଲାଗିଗଲା । ତାପରେ ସେ ମୋ କାମଟା କଣ କରିବାକୁ

ଦେବ ଭଲ ଭାବରେ ବୁଝାଇ ଦେଲେ । ସେହିଦିନ ଠାରୁ ମୁଁ ସବୁଦିନ ସକାଳୁ ୮ଟା ବେଳେ ଆସି ତାଙ୍କ କୋଠରୀରେ ବସି ପଢାପଢି କରେ । କ୍ଲାସ୍ ଥିବାବେଳେ କ୍ଲାସ୍ ନିଏ । ଦିନ ଗୋଟାଏ ବେଳକୁ ଖାଇବାକୁ ଯାଏ । ପୁଣି ଦୁଇଟା ବେଳେ କଲେଜ ଯାଏ । କଲେଜରୁ ୫ କିମ୍ବା ୬ ଟା ବେଳେ ଘରକୁ ଯାଏ । ଜଳଖିଆ ଖାଇ ପୁଣି ୭ଟା ବେଳକୁ କଲେଜ ଯାଏ । ଅତି କମ୍‌ରେ ୨ ଘଣ୍ଟା ପଢାପଢି କରେ । ସେତେବେଳେ ତ୍ରିଲୋଚନ ବାବୁଙ୍କ କୋଠରୀରେ ମୁଁ ଓ ଦ୍ୱାରିକା ନାଥ ତ୍ରିପାଠୀ ନାମକ ଆଉ ଗୋଟିଏ ଛାତ୍ର ବସୁଥିଲୁ । ଅନ୍ୟ ପାଖ କୋଠରୀରେ ବିଭୁତି ବାବୁ ଓ ଶିବ ବାବୁ ବସି ଗବେଷଣା କରନ୍ତି । ଆମେ ପାଞ୍ଚ ଜଣ ପ୍ରାୟ ରାତି ୯ଟା ପର୍ଯ୍ୟନ୍ତ ଡିପାର୍ଟମେଣ୍ଟରେ ରହୁ ।

ସେହି ବର୍ଷ ପୁଣି ଏକ ପ୍ରଦର୍ଶନୀର ଆୟୋଜନ ହେଲା । ମୋତେ ସେତେବେଳର ଫିଜିକ୍ସ ବିଭାଗର ମୁଖ୍ୟ ଆଇ.ଏସ୍‌ସି. ପ୍ରୟୋଗଶାଳା ପ୍ରଦର୍ଶନୀର ଶୃଙ୍ଖଳା(Displine) ରଖିବା ଦାୟିତ୍ୱ ଦେଲେ । ପ୍ରଦର୍ଶନୀ ସରିବାର ତିନି ଦିନ ପରେ ବିଭାଗର ମୁଖ୍ୟ ମୋତେ ଡାକି ପଚାରିଲେ ପ୍ରଦର୍ଶନୀ ଦେଖିବା ପାଇଁ ପ୍ରାୟ କେତେ ଦର୍ଶକ ପଦାର୍ଥ ବିଜ୍ଞାନ ବିଭାଗକୁ ଆସିଥିଲେ । ଆନୁମାନିକ ୬୦୦/୭୦୦ ଦର୍ଶକ ଆସିଥିଲେ ବୋଲି କହିଲି । ସେହିଦିନ ଠାରୁ ମନକୁ ଆସିଲା ଗୋଟିଏ "ଦର୍ଶକ ଗଣନାଯନ୍ତ୍ର କିପରି ସହଜରେ ତିଆରି କରିହେବ" ।

ବିରାଡି କପାଳକୁ ଶିକା ଛିଣ୍ଡିଲା ପରି ଡକ୍ଟର ବଳଭଦ୍ର ପ୍ରସାଦ ଶିକ୍ଷା ନିର୍ଦ୍ଦେଶକ ଚାକିରୀ ଛାଡି ପାଟନା ବିଶ୍ୱ ବିଦ୍ୟାଳୟର କୁଳପତି ଭାବରେ ଯୋଗଦେଲେ । ସେ ମୋର ରେଭେନ୍ସା କଲେଜର ଅଧ୍ୟାପକ ଭାବେ ଯୋଗଦେବା ସମୟରେ କହିଥିଲେ, ଯେ ମୋତେ ବାଲେଶ୍ୱର ବଦଳି କରିବେ । ସେ ଚାଲି ଯିବାରୁ ମୋର ଆଉ ବଦଳି ହେଲାନାହିଁ । ଏହା ଭିତରେ ଶ୍ରୀ ବାମାଚରଣ ଦାସ ଅଧ୍ୟକ୍ଷ ପଦ ଛାଡି ଶିକ୍ଷା ନିର୍ଦ୍ଦେଶକ ଭାବେ ଯୋଗ ଦେଲେ । ସେ ମଧ୍ୟ ମୋତେ ବଦଳି କଲେ ନାହିଁ ।

ଏହି ସମୟରେ ଦିନେ ମୋ ସ୍ତ୍ରୀର ପେଟରେ ବହୁତ କଷ୍ଟ ହେଲା । ମୁଁ ଡକ୍ଟର ନିରୁପମା ରଥଙ୍କୁ ତାଙ୍କ କ୍ଲିନିକ୍‌ରେ ସ୍ତ୍ରୀକୁ ଦେଖାଇଲି । ସେ ଔଷଧ ଦେଲେ ଏବଂ କହିଲେ ଆଉ କଷ୍ଟ ହେବ ନାହିଁ । ତାଙ୍କ କଥା ଠିକ୍ ହେଲା ।

## କୁମାର ପୂର୍ଣ୍ଣମୀ ଦିନ ରାତିରେ ବ୍ରିଜ୍‌ଖେଳ

ସେହିବର୍ଷ କୁମାର ପର୍ଣ୍ଣମୀ ଦିନ ଆମେ ସନ୍ଧ୍ୟାବେଳେ ବ୍ରୀଜ ଖେଳିବାକୁ ଠିକ୍ କଲୁ । ମୁଁ ତ୍ରିଲୋଚନ ବାବୁ , ବିଭୁତି ବାବୁ, ଶିବ ବାବୁ ଖେଳିବାକୁ ବସିଲୁ । ଆମେ ଖେଳୁ ଖେଳୁ ପ୍ରାୟ ରାତି ପାହିଗଲା । ମୁଁ ଭୋରରୁ ଘରକୁ ଫେରି ଆସିଲି । ଘରେ ବୋଉଙ୍କ ଠାରୁ ଗାଳି ଖାଇଲି । ମୋତେ ମୋର ସ୍ତ୍ରୀ ଦୁଇଦିନ ପର୍ଯ୍ୟନ୍ତ କଥା କହିଲା ନାହିଁ । ସେହିଦିନ ଠାରୁ ବ୍ରୀଜ୍ ଖେଳିବି ନାହିଁ ବୋଲି ଠିକ କଲି । ଆଜି ପର୍ଯ୍ୟନ୍ତ ବି ଖେଳି ନାହିଁ । ବେଳେ ବେଳେ ଅନ୍ୟମାନେ ବାଧ୍ୟ କଲେ ଖେଳି ବସେ କିନ୍ତୁ କୌଣସି ଆଳ ଦେଖାଇ ଖସିଆସେ । ଡକ୍ଟର ଦତ୍ତଙ୍କ କହିବା ଅନୁସାରେ ଏକ ଦର୍ଶକ ଗଣନା ଯନ୍ତ୍ର ପ୍ରସ୍ତୁତ କରିବା ପାଇଁ ମନବଳାଇଲି । ପଦାର୍ଥବିଜ୍ଞାନ ଷ୍ଟୋରରେ ଗୋଟିଏ ଅଚଳନ୍ତି ବଡ କାନ୍ଥ ଘଣ୍ଟା ଥିଲା । ଘଣ୍ଟାଟି ମୁଁ ଷ୍ଟୋରରୁ ଆଣି ଚାବି ଦେଲାରୁ ଘଣ୍ଟାଟି ଚାଲିଲା

ନାହିଁ । ଘଣ୍ଟାଟି ଚାଲିଲା ସମୟରେ ହେୟାର ସ୍ପିଙ୍ଗ୍‌ଟି ବାଲାନ୍ସ ଚକକୁ ହଲାଏ । କିନ୍ତୁ ହେୟାର ସ୍ପିଙ୍ଗ୍‌ଟି ଛିଣ୍ଡି ଯାଇଥିଲା । ତେଣୁ ଘଣ୍ଟାଟି ଚାଲୁ ନ'ଥିଲା । ବାଲାନ୍ସ ଚକଟିକୁ ହାତରେ ହଲାଇଲେ ଘଣ୍ଟାଟି ଚାଲିଲା । ଖଣ୍ଡିଏ ପିତ୍ତଳ ତାର (୨ ସେ.ମି ଲମ୍ବ) ସହିତ ଖଣ୍ଡେ ନରମ ଲୁହା ରିପିଟ୍ କରିଦେଲି । ଲୁହା ପାଖରେ ଗୋଟିଏ ଛୋଟ ବୈଦ୍ୟୁତିକ ଚୁମ୍ବକ ରଖିଲି । ଘଣ୍ଟାରେ ଆଗରୁ ଲାଗିଥିବା ଲିଭରକୁ କାଢି ଦେଲି । ଏକ ପିତ୍ତଳ ପାଟିଆ ତିଆରି କଲି । ଏକ ଛୋଟ ନଟ ଓ ବୋଲ୍ଟ ସାହାଯ୍ୟରେ ତିଆରି କରିଥିବା ଲିଭରକୁ ଘଣ୍ଟା ଫ୍ରେମରେ ଖଞ୍ଜିଦେଲି ଯେପରି ଲିଭରଟି ଏକ ଭୂସମାନ୍ତର ଅକ୍ଷରେ ଘୁରି ପାରିବ । ଲିଭରଟି ସବୁବେଳେ ଦାନ୍ତି ଚକର ତଳେ ଥିବା ଏକ ଦାନ୍ତକୁ ଘୁରିବାକୁ ଦିଏନାହିଁ । ବୈଦ୍ୟୁତିକ ଚୁମ୍ବକର ଗୋଟିଏ ତାରକୁ ବ୍ୟାଟ୍ରି ସହିତ ଯୋଗକଲି ଅନ୍ୟ ତାରଟି ପାପୋଛ ତଳକୁ ନେଲି । ଦୁଇଟିକୁ ଏପରି ରଖିଲି ଯେ ଜଣେ ବ୍ୟକ୍ତି ପାପୋଛ ଉପରେ ଗୋଡ ଦେଇ ଉପରକୁ ଉଠି ଯିବା ସମୟରେ ବୈଦ୍ୟୁତିକ ସଂଯୋଗ ହୁଏ । ଫଳରେ ଚୁମ୍ବକ ନିକଟରେ ଥିବା କୋମଳ ଲୁହା ପଟିଟିକୁ ଟାଣି ଦିଏ । ପିତ୍ତଳ ତାରଟି ଲିଭରକୁ ଟାଣି ଦିଏ । ଫଳରେ ଲିଭର ତଳ ଦାନ୍ତଟିକୁ ଛାଡି ଦିଏ । ତାହା ଟିକିଏ ଘୁରିଲା ପରେ ଲିଭରର ଉପର ପଟର ଗୋଟିଏ ଦାନ୍ତକୁ ଘୁରିବାକୁ ଦିଏ ନାହିଁ । ବ୍ୟକ୍ତିର ଅନ୍ୟ ଗୋଡଟି ପାପୋଛ ଉପରୁ ଉଠାଇ ନେଲାପରେ ବୈଦ୍ୟୁତିକ ସଂଯୋଗ କଟିଯାଏ । ଫଳରେ ଲିଭରଟି ପ୍ରଥମ ଅବସ୍ଥାକୁ ଯାଏ । ଘଣ୍ଟାଟିର ସେକେଣ୍ଡ କଣ୍ଟାଟି ଏକ ଘର ଅତିକ୍ରମ କରେ । ଏଥିରୁ ବୁଝିବାକୁ ହେବ ସେକେଣ୍ଡ କଣ୍ଟାଟି ଥରେ ଘୁରି ଆସିଲେ ୬୦ ଜଣ ଦର୍ଶକ ଦେଖିବାକୁ ଯାଇଛନ୍ତି । ମିନିଟ୍ କଣ୍ଟାଟି ଥରେ ଘୁରି ଆସିଲେ ବୁଝିବାକୁ ହେବ ଯେ ୩୬୦୦ ଜଣ ଦର୍ଶକ ଯାଇଛନ୍ତି । ସେହିପରି ଘଣ୍ଟା କଣ୍ଟାଟି ଥରେ ଘୁରିଲେ ୨୧୬୦୦୦ ଜଣ ଲୋକ ପ୍ରଦର୍ଶନୀ ଦେଖିବାକୁ ଯାଇଛନ୍ତି ବୋଲି ଜଣାପଡେ ।

ମେଡିକାଲ କଲେଜର ଆନାଟୋମୀ ପ୍ରଫେସର୍ ଡାକ୍ତର ରାଏକୃଷ୍ଣ ମହାନ୍ତି ପ୍ରଦର୍ଶନୀ ଦେଖିବାକୁ ଆସିଥିଲେ । ସେ ମହାଶୟ ମୋତେ ପଚାରିଲେ ଏଠାରେ କଣ ହୋଇଛି । ମୁଁ କହିଲି ଏହା ଗୋଟିଏ ଦର୍ଶକ ଗଣନା ଯନ୍ତ୍ର । ପୁଣି ପଚାରିଲେ ଏହା କିପରି କାମ କରୁଛି ? ମୁଁ ତାହାର କାର୍ଯ୍ୟକାରିତା ବୁଝାଇ ଦେଲି । ସେ ଧନ୍ୟବାଦ ଦେଇ ଚାଲିଗଲେ । ଅଧ୍ୟାପକ ଡାକ୍ତର ସତ୍ୟବାଦୀ ହଜାରୀ ଆମ ଘର ପାଖାପାଖି ରହୁଥିଲେ । ଦିନେ ହଜାରୀ ବାବୁ ମୋତେ ପଚାରିଲେ ତୁମେ ଡାକ୍ତର ରାୟକୃଷ୍ଣ ମହାନ୍ତିକୁ ଜାଣିଛ, ସେ ତୁମଠାରୁ ଦର୍ଶକ ଗଣନା ଯନ୍ତ୍ର ବିଷୟରେ ବୁଝିଥିଲେ । ସେ ପଚାରିଛନ୍ତି 'ତୁମେ ପ୍ରତି ୩ ମିନିଟ୍‌ରେ ଥରେ ଆଲାରାମ୍ ବା କଲିଙ୍ଗ ବେଲ୍ ବାଜିବାର କିଛି ବ୍ୟବସ୍ଥା କରିଦେଇ ପାରିବ' ? ମୁଁ କହିଲି କରିପାରିବି କି ନାହିଁ ୫ କିମ୍ବା ୬ ଦିନ ପରେ କହିବି । କଲେଜ ଛକରେ ଜଣେ ଘଣ୍ଟା ଦୋକାନୀ ସହିତ ମୋର ଭଲ ପରିଚୟ ଥିଲା । ତାଙ୍କ ଦୋକାନକୁ ଯାଇ ଖୋଲା ପୁରୁଣା କାନ୍ଥ ଘଣ୍ଟାଟିଏ ଦେଖାଇ ଦେବାକୁ କହିଲି । ସେ ରାଜି ହେଲେ ଏବଂ ଭିତର ଘରେ ଅପେକ୍ଷା କରିବାକୁ କହିଲେ । କିଛି ସମୟ ପରେ ଖୋଲା ବଡ ଘଣ୍ଟାଟିଏ ଦେଲେ । ସେହି ଘଣ୍ଟାକୁ ତନ୍ନ ତନ୍ନ ଭାବରେ ଦେଖି ଘଣ୍ଟାଟି କିପରି ଚାଲେ ତାହା ଭଲ ଭାବରେ ଜାଣି ପାରିଲି । ଜାଣି ସାରିବା ପରେ ମୋ ହୃଦ୍‌ବୋଧ ହେଲା ଯେ ଏକ ବଡ କାନ୍ଥ ଘଣ୍ଟା ସାହାଯ୍ୟରେ ୩ ମିନିଟ୍ ଅନ୍ତରାଳରେ ଏକ କଲିଙ୍ଗ ବେଲ୍ ବଜାଇ ପାରିବି । ତେଣୁ ହଜାରି ବାବୁଙ୍କୁ

କହିଲି ମୋତେ ଗୋଟିଏ ପୁରୁଣା କାନ୍ଥ ଘଣ୍ଟା ଓ ବ୍ୟାଟ୍ରି ଚାଳିତ ଡାକିବା ଘଣ୍ଟି ଦରକାର । ଏହି ଦୁଇଟି ଉପକରଣ ଆଣିଦେଲେ ମୁଁ ୧୫ କିମ୍ବା ୨୦ ଦିନ ଭିତରେ ତିଆରି କରିଦେଇ ପାରିବି । ଆଉ ଯାହା ଜିନିଷ ଦରକାର ମୁଁ ଘଣ୍ଟା ଦୋକାନରୁ ଆଣିବି । ମୁଁ ୨୫ ଦିନ ଭିତରେ ତିଆରି କରିଦେଇ ଡକ୍ଟର ହଜାରୀଙ୍କୁ ଦେଇଦେଲି । ଏକ ଅକ୍ଷରେ ୬ ଟି ଚଉଡା ଦାନ୍ତଥିବା ଗୋଟିଏ ଚକ ଖୋଜି ଆଣିଲି । ଆଉ ଗୋଟିଏ ପତଳା ୬ଟି ଦାନ୍ତ ଥିବା ଚକ ସଂଗ୍ରହ କଲି । ସେହି ୬ଟି ଦାନ୍ତି ଚକର ଦୁଇ ବିପରୀତ ଦିଗରେ ଥିବା ଦୁଇଟି ଦାନ୍ତକୁ ଛାଡି ବାକି ୪ଟି ଦାନ୍ତ ଲୁହା(File)ରେ ଘଷି ସଫା କରିଦେଲି ଓ ସେହି ଅକ୍ଷରେ ସଂଯୁକ୍ତ କରିଦେଲି । ସେହି ୬ଟି ଦାନ୍ତ ଥିବା ଅକ୍ଷଟି ଘଣ୍ଟା ଫ୍ରେମ ଦେହରେ ୱାର୍କସପ୍‌ର ସାହାଯ୍ୟ ନେଇ ଉପଯୁକ୍ତ ଯାଗାରେ ଖଞ୍ଜିବାର ବ୍ୟବସ୍ଥା କରିଦେଲି । ଯେପରି ୬ଟି ଚଉଡ଼ା ଦାନ୍ତି ଚକ ସହିତ ମିନିଟ୍ କଣ୍ଟା ଅକ୍ଷରେ ଲାଗି ଥିବା ୬୦ ଦାନ୍ତ ସହିତ ସଂଯୁକ୍ତ କରିଦେଲି । ତେଣୁ ସେହି ଅକ୍ଷଟି ୬ ମିନିଟରେ ଥରେ ଘୂରିବ । ତାହାହେଲେ ଗୋଟିଏ ଦାନ୍ତ ଅତିକ୍ରମ କରିବାକୁ ୩ ମିନିଟ୍ ଲାଗିବ । ଗୋଟିଏ ପିତଳ ପାତିଆ ଘଣ୍ଟାର ଉପଯୁକ୍ତ ଯାଗାରେ କୁପରିବାହୀ ଉପରେ ସଂଯୁକ୍ତ କଲି ଯେପରି ପିତଳ ପାତିଆଟିର କେବଳ ୨ଟି ଦାନ୍ତ ସହିତ ବୈଦ୍ୟୁତିକ ସଂଯୋଗ ହୋଇ ପାରିବ । ବୈଦ୍ୟୁତିକ ସଂଯୋଗ ଅଳ୍ପ ସମୟ ପର୍ଯ୍ୟନ୍ତ ହେବା ପାଇଁ କୁପରିବାହୀ ପଦାର୍ଥର ପଟି, ପିତଳ ପାତିଆର ଅଳ୍ପ ଅଂଶ ଛାଡି ଅଠା ଦ୍ୱାରା ଲଗାଇ ଦେଲି । ଆଣିଥିବା ସେହି ୬ଟି ଦାନ୍ତ ଥିବା ଅକ୍ଷଟି ଘଣ୍ଟା ଫ୍ରେମ ଦେହରେ ୱାର୍କସପ୍‌ର ସାହାଯ୍ୟ ନେଇ ଉପଯୁକ୍ତ ଯାଗାରେ ଖଞ୍ଜିବାର ବ୍ୟବସ୍ଥା କରିଦେଲି ଯେପରି ୬ଟି ଦାନ୍ତ ସହିତ ମିନିଟ୍ କଣ୍ଟା ଅକ୍ଷରେ ଲାଗି ଥିବା ୬୦ ଦାନ୍ତ ସହିତ ସଂଯୁକ୍ତ କରିଦେଲି । ତେଣୁ ସେହି ଅକ୍ଷଟି ୬ ମିନିଟରେ ଥରେ ଘୁରିବ । ଘଣ୍ଟାରେ ଚାବି ଦେଲା ପରେ କଲିଙ୍ଗ୍ ବେଲ୍‌ଟି ଠିକ୍ ୩ ମିନିଟ୍‌ରେ ଥରେ ପ୍ରାୟ ୧୦ ସେକେଣ୍ଡ ପର୍ଯ୍ୟନ୍ତ ବାଜିଲା । ଘଣ୍ଟାର ଚାବି ସରିଗଲେ ଘଣ୍ଟାଟି ଚାଲିବ ନାହିଁ । ବ୍ୟାଟ୍ରି ପରିପଥରେ ଏକ ମୁଗି କି ସଂଯୁକ୍ତ କଲି । 'କି' କୁ ଖୋଲି ଦେଲେ ଘଣ୍ଟା ଚାଲୁଥିଲେ ଆଲାରାମ ବାଜିବ ନାହିଁ । ଦୁଇ ତିନି ଦିନ ବଜାଇ ତାହା ଡାକ୍ତର ବାବୁଙ୍କୁ ଦେଇ ଦେଲି । ପ୍ରାୟ ୧୦ କିମ୍ବା ୧୫ ଦିନ ପରେ ହଜାରୀ ବାବୁ ମୋତେ ତାଙ୍କ ଡିପାର୍ଟମେଣ୍ଟକୁ ଡାକି ନେଲେ । ପ୍ରଫେସର ରାୟକୃଷ୍ଣ ମହାନ୍ତିଙ୍କ ସହିତ ମୋର ପରିଚୟ କରିଦେଲେ । ପ୍ରଫେସର ମହାନ୍ତି ତାଙ୍କ ଡିପାର୍ଟମେଣ୍ଟରେ ମୋତେ ନେଇ ବୁଲାଇ ଦେଖାଇଲେ ଏବଂ ଅନ୍ୟ ଅଧ୍ୟାପକ ଓ ଛାତ୍ରମାନଙ୍କ ସହିତ ପରିଚିତ କରାଇ ଦେଲେ ।

ମୁଁ ଏବଂ ମୋର ସ୍ତ୍ରୀ ଥରେ ପୁରୀ ଯାଇଥିଲୁ । ସେଠାରେ ଶ୍ରୀ ଚିନ୍ତାମଣୀ ମିଶ୍ରଙ୍କ ଘରେ ଚିହ୍ନା ପରିଚୟ ହେଲା । ଶ୍ରୀ ଚିନ୍ତାମଣୀ ମିଶ୍ର ସେତେବେଳେ ଓଡିଶା ସରକାରଙ୍କର ଜଣେ ଉଚ୍ଚ ପଦସ୍ଥ କର୍ମଚାରୀ ଥିଲେ । କୌଣସି କାରଣରୁ ତାଙ୍କର ଓ ମୁଖ୍ୟମନ୍ତ୍ରୀଙ୍କ ସଙ୍ଗେ ମତାନ୍ତର ହେଲା । ତେଣୁ ସେ ଚାକିରୀରୁ ଇସ୍ତଫା ଦେଇ ଚାନ୍ଦିନୀ ଚୌକ ଠାରେ ଗୋଟିଏ ପ୍ରେସ୍ ସ୍ଥାପନ କଲେ । ତାର ନାମ ରଖିଲେ ନବଜୀବନ ପ୍ରେସ୍ । ସେହିଠାରୁ ନବଜୀବନ ନାମକ ଗୋଟିଏ ମାସିକ ପତ୍ରିକା ପ୍ରକାଶ କଲେ । ସେ ପ୍ରତ୍ୟେକ ଏକାଦଶୀ ଦିନ ନିଜ କାରରେ ପୁରୀ ଯାଆନ୍ତି ଏବଂ ମୋର ଶଶୁର ଆନନ୍ଦ ମିଶ୍ରଙ୍କ ସଙ୍ଗେ ଧର୍ମ ସମ୍ବନ୍ଧୀୟ ଆଲୋଚନା ସବୁ କରନ୍ତି । ମୋର

ଶ୍ୱଶୁର ତାଙ୍କୁ କହିଲେ ତମେତ ପ୍ରତି ଏକାଦଶୀ ଦିନ ପୁରୀ ଆସୁଛ, ଟିନୁ ଓ ମିଶ୍ରଙ୍କୁ ଗାଡ଼ିରେ ନେଇ ଆସିବ ଏବଂ ଫେରିଲା ବେଳେ ଘରେ ଛାଡ଼ିଦେବ । ସେହି ଅନୁସାରେ ସେ ପ୍ରତି ଏକାଦଶୀ ଦିନ ଆମକୁ କଟକରୁ ନେଇ ଆସନ୍ତି । ରାତି ବାରଟା ଗୋଟାଏ ବେଳେ କଟକ ଘରେ ଛାଡ଼ି ଦିଅନ୍ତି । ଥରେ ଦୁଇଥର ତାଙ୍କ କହିବା ମୁତାବକ ମୁଁ ସନ୍ଧ୍ୟାବେଳେ କେତେକ ଅଧ୍ୟାପକମାନଙ୍କୁ ମୋ ଘରକୁ ଡାକିଥାଏ । ଚିନ୍ତାମଣି ବାବୁ ମଧ୍ୟ ଆସନ୍ତି । ଦେଶର ପରିସ୍ଥିତି ଉପରେ ଚର୍ଚ୍ଚା ହୁଏ । ତାଙ୍କର ଗୋଟିଏ ପୁତୁରା ରେଭେନ୍ସା କଲେଜରେ କେମେଷ୍ଟ୍ରି ପଢୁଥାଏ । ଏମିତି ବର୍ଷେ ଖଣ୍ଡେ ଚାଲିଲା । ତାପରେ ସେ ଆଉ ଆସି ପାରିଲେ ନାହିଁ । ତାଙ୍କର ଦେହ ବୋଧେ ଖରାପ ହୋଇଗଲା । ତାପରେ ମୁଁ ଘର ତିଆରି କରିବା ପାଇଁ ଭୁବନେଶ୍ୱର ଚାଲି ଆସିଲି । ତାର ଦୁଇ ବର୍ଷ ପରେ ମୋର ଶ୍ୱଶୁରଙ୍କର ମୃତ୍ୟୁ ହୋଇଗଲା । ସେତେବେଳେ ମୁଁ ନବଜୀବନ ପତ୍ରିକା ସବୁ ପଢୁଥିଲି । ଚିନ୍ତାମଣୀ ବାବୁଙ୍କ ସମ୍ପାଦକୀୟ ଲେଖା ମୋତେ ଖୁବ୍ ଭଲ ଲାଗୁଥିଲା ।

## ବୋଉର ଜଗନ୍ନାଥ ଦେଉଳରେ ବଳିତା ବସାଇବା

ଏହି ସମୟରେ ଦିନେ ବୁଝାବୁଝି କରି ବଳିତା ବସାଇବାର ବ୍ୟବସ୍ଥା କଲୁ । ବଳିତା ବସାଇବା ଦିନ ଆମେ ସମସ୍ତେ ପୁରୀ ଗଲୁ । ସେହି ଦିନଟି ମୋର ମନେ ନାହିଁ । ବୋଉ ବଳିଥିବା ଏକ ଲକ୍ଷ ବଳିତା ତାଙ୍କ ସାଙ୍ଗରେ ନେଇଥିଲେ । ସନ୍ଧ୍ୟା ହେଲା ପରେ ସବୁ ବଳିତ ଟକ ଏକ ପଲମରେ ରଖାହେଲା । ବଳିତା ପଲମରେ ଘିଅ ବଳା ହେଲା ଓ ଗୋଳିଆ ହେଲା । ବୋଉ ନୂଆଲୁଗା ପିନ୍ଧି ବସିଲେ । ସବୁ ନିକଟ ସମ୍ପର୍କିୟ ଲୋକମାନେ ବି ନୂଆ ଲୁଗା ପିନ୍ଧିଲେ । ଜଣେ ସେବକ ମନ୍ତ୍ରବୋଲି ବଳିତା ଦେହରେ ଅଗ୍ନି ସଂଯୋଗ କଲେ । ବୋଉ ଏକ ଚଉଡା ଓଦା ଲୁଗା ମୁଣ୍ଡ ଉପରେ ରଖି ସେହି ନିଆଁ ଲାଗିଥିବା ପଲମଟିକୁ ମୁଣ୍ଡରେ ଟେକିଲେ । ତାପରେ ସେ ଆମ ସମସ୍ତଙ୍କ ସହିତ ଦେଉଳ ପରିକ୍ରମା କଲେ । ତାପରେ ଉପସ୍ଥିତ ଥିବା ସମ୍ପର୍କିୟମାନେ ପ୍ରସାଦ ସେବନ କଲେ ।

ସେହି ବର୍ଷ କାର୍ତ୍ତିକ ମାସରେ ମୋର ପ୍ରଥମ ଝିଅ ପ୍ରଭାତୀ ଜନ୍ମ ହୋଇଥିଲା । ତାର ମାସିକିଆକୁ ଡିପାର୍ଟମେଣ୍ଟର ସବୁ ଅଧ୍ୟାପକମାନଙ୍କୁ ରାତ୍ରି ଭୋଜନ ପାଇଁ ନିମନ୍ତ୍ରଣ କରିଥିଲି । ଜଣେ ଅଧ୍ୟାପକ ଶ୍ରୀ ଜୟନ୍ତ ମହାପାତ୍ର ପଚାରିଲେ କଣ ସବୁ ଖାଇବାକୁ କରିବ । ମୁଁ କହିଲି ମାଛ କି ମାଂସ ହେବ ନାହିଁ । ଚୁଡ଼ା ଘଷା, କଦଳୀ ଚକଟା, ଡାଲମା, ପୁରୀ ଓ ତରକାରୀ ପ୍ରଭୃତି ହେବ । ସେ କହିଲେ ମୁଁ ଚୁଡାଘଷା ଖାଇବି ନାହିଁ କାହିଁକି ଯିବି ? ମୁଁ କହିଲି 'ପୁରୀ ତରକାରୀ ଖାଇପାରିବେ କାହିଁକି ଯିବେ ନାହିଁ ?' ତାଙ୍କୁ ଆସିବାକୁ ଅନୁରୋଧ କଲି । ସରନ୍ତି ସୋମବାର ଦିନ ପୁରୀ ଲୋକନାଥଙ୍କ ପାଖରେ ଯେଉଁ ପ୍ରକାର ଚୁଡାଘଷା କରାଯାଏ, ସେହି ପ୍ରକାର ଚୁଡ଼ାଘଷା ହୋଇଥିଲା । ଅନ୍ୟାନ୍ୟ ଜିନିଷ ସବୁ ଘରେ ତିଆରି ହୋଇଥିଲା । ଏହା ବ୍ୟତିତ ମୋର ବୋଉ ପୁରଦିଆ ସରୁ ଚକୁଳି କରିଥିଲେ । ରାତିରେ ପ୍ରାୟ ସବୁ ଅଧ୍ୟାପକ ଆସିଥିଲେ । ସମସ୍ତେ ସରୁ ଚକୁଳି ଓ ଚୂଡ଼ାଘଷାକୁ ତାରିଫ୍ କଲେ । ଚୁଡାଘଷା ବୋଲି କେହି ଜାଣି ପାରିଲେ ନାହିଁ । ଶେଷରେ ଶ୍ରୀ ଜୟନ୍ତ ବାବୁ ମୋତେ ପଚାରିଲେ ତମେ ଚୁଡାଘଷା କାହିଁ ? ମୁଁ କହିଲେ ଆପଣ ଦୁଇଥର ମାଗିକରି ଖାଇଲେଣି । ଏମିତି ଚୂଡାଘଷା ହୁଏ ବୋଲି ମୁଁ ଜାଣିନ'ଥିଲି । ଶ୍ରୀ ଦୁର୍ଗାପଦ

ମିଶ୍ର ନାମକ ଜଣେ ଅଧ୍ୟାପକ ମୋତେ କହିଲେ ମୋ ପୁଅ ଏକୋଇଶିଆରେ ଏହିଭଳି ଚୂଡାଘଷା କରିବି । ମୋତେ ଟିକିଏ ବଚାଇ ଦେବ । ସେ ଅଧ୍ୟାପକ ଆମ ଘରୁ କେମିତି ଚୂଡାଘଷା କରିବାକୁ ହୁଏ ତାହା ବୁଝିଗଲେ ତାଙ୍କୁ କୁହା ହୋଇନ'ଥିଲା ଯେ ନଡିଆ ପାଣିକୁ ନ'ପକାଇ ବାହାରେ ଢାଳିଦେବ । ତାଙ୍କ ପୁଅ ଏକୋଇଶିଆରେ ସେ ମଧ୍ୟ ସବୁ ଅଧ୍ୟାପକମାନଙ୍କୁ ଡାକିଥିଲେ । କିନ୍ତୁ ଚୂଡାଘଷାରେ ନଡିଆ ପାଣି ପକାଇ ଦେଇଥିଲେ । ଚୂଡାଘଷାଟିର ପାଗ ବିଗିଡି ଗଲା । ବଡ ଦୁଃଖର ବିଷୟ ଯେ ଦୁର୍ଗାପଦ ବାବୁଙ୍କର ମସ୍ତିସ୍କରେ ଟ୍ୟୁମର ହେବାରୁ ଭେଲୋର ଠାରେ ଅସ୍ତ୍ରପ୍ରଚାର କରିଥିଲେ । ସେଥିରେ ତାଙ୍କର ୧୯୬୨ ମସିହାରେ ମୃତ୍ୟୁ ହୋଇଗଲା ।

ମୁଁ ସେହି ବର୍ଷ ଆରମ୍ଭରୁ ଅଧ୍ୟକ୍ଷଙ୍କ ନିର୍ଦ୍ଦେଶରେ କଲେଜ ରୁଟିନ୍ କମିଟିରେ ଯୋଗ ଦେଲି । ଶ୍ରୀ ଶଙ୍କରର୍ଷଣ ମହାପାତ୍ର ରୁଟିନ୍ କମିଟିର ମୁଖ୍ୟ ଥିଲେ । ସେ ମୋତେ ବିଜ୍ଞାନ ଛାତ୍ରଙ୍କ ରୁଟିନ୍ କରିବା ପାଇଁ କହିଲେ । ଦିନେ ରାତି ୧୨ଟା ବେଳେ ମୁଁ ରୁଟିନ୍ ତିଆରି କରୁଛି ମୋ ସ୍ତ୍ରୀର ବଡ ମାମୁଁ ଶ୍ରୀ ଭାସ୍କର ରଥ ଆସି ଆମ ଘରେ ପହଁଞ୍ଚିଲେ । ତାଙ୍କ ପୁଅ ବ୍ରତ ଘରକୁ ମୋର ସ୍ତ୍ରୀର ଅଜା କୌଣସି କାରଣରୁ ଆମକୁ ଡାକିବାକୁ ଭୁଲି ଯାଇଥିଲେ । ଯଦିଓ ମୋ ସ୍ତ୍ରୀ ଯିବା ପାଇଁ ଇଚ୍ଛା କରୁଥିଲା, ସେ ଡାକି ନ'ଥିବାରୁ ମୁଁ ଯିବାକୁ ରାଜି ହେଲି ନାହିଁ । ସ୍ତ୍ରୀର ମାମୁଁ ଆଣିଥିବା ତାଙ୍କ ଗାଡିରେ ସଙ୍ଗେ ସଙ୍ଗେ ଯିବା ପାଇଁ କହିଲେ କାରଣ ବ୍ରତଘର ପରଦିନ ହେବାର ଠିକ୍ ହୋଇଥିଲା । ବୋଉ ଏକା କଟକରେ ରହିଲେ । ତାଙ୍କ ପୁଅର ବ୍ରତ ଘର ସରିବା ପରେ ଆମେ ଦୁଇଜଣ ବସ୍‌ରେ ଚାଲିଆସିଲୁ ।

ସେହିବର୍ଷ ଅଧ୍ୟାପକ ଶ୍ରୀ ଶରତ ଚନ୍ଦ୍ର ମିଶ୍ର ମୋତେ ତାଙ୍କ ସଙ୍ଗେ ମିଶି ସ୍କୁଲ୍ ପିଲାଙ୍କର ଗୋଟିଏ ବୀଜଗଣିତ ବହି ଲେଖିବା ପାଇଁ କହିଲେ । ମୁଁ ରାଜି ହେଲି ଏବଂ ଲେଖିଲି ମଧ୍ୟ । ଶ୍ରୀ ଆକୁଳୀ ମିଶ୍ରଙ୍କ ପୁଅ ଶ୍ରୀ ସର୍ବେଶ୍ୱର ମିଶ୍ର ବହିଟିକୁ ଛପାଇ ଥିଲେ । କିନ୍ତୁ ବହିଟି ସେକେଣ୍ଡାରି ବୋର୍ଡ ଦ୍ୱାରା ଗୃହିତ ହେଲା ନାହିଁ । ବହି ଲେଖିବା ପାଇଁ ବହୁତ ପରିଶ୍ରମ କରିବାରୁ ମୋ ଛାତିରେ ପୂର୍ବପରି ଯନ୍ତଣା ହେଲା । ସେଥିପାଇଁ ଡାକ୍ତର ଶରତ ଚନ୍ଦ୍ର ମିଶ୍ରଙ୍କର ଚିକିତ୍ସାରେ ରହିଲି । ସେ ମୋତେ ଏକ ମାସ ମେଡିକାଲ ଛୁଟି ନେଇ ବିଶ୍ରାମ ନେବାକୁ ଉପଦେଶ ଦେଲେ । ମୁଁ ଛୁଟି ନେଲି ସେହି ବର୍ଷ ବିଜ୍ଞାନ ପ୍ରଚାର ସମିତି, କଟକର ସଭ୍ୟ ଶ୍ରେଣୀଭୁକ୍ତ ହେଲି । ବିଜ୍ଞାନ ପ୍ରଚାର ସମିତି ଗୋଟିଏ ଅନୁଷ୍ଠାନ ଯେଉଁଥିରେ ବିଜ୍ଞାନ ସମ୍ବନ୍ଧୀୟ ବାର୍ତ୍ତା, ଉଦ୍ଭାବନ ଏବଂ ବଡ ବଡ ବୈଜ୍ଞାନିକ ମାନଙ୍କର ଜୀବନ ସମ୍ବନ୍ଧୀୟ ଲେଖା ସଭାରେ ଆଲୋଚନା ହୁଏ । ଏହି ବିଜ୍ଞାନ ପ୍ରଚାର ସମିତି ୧୯୫୦ ମସିହାରେ ଡକ୍ଟର ଗୋକୁଳାନନ୍ଦ ମହାପାତ୍ର, ଡକ୍ଟର ରାଧାନାଥ ରଥ ଓ ଡକ୍ଟର ଗୋପାଳ ଚରଣ ପଟ୍ଟନାୟକଙ୍କ ଚେଷ୍ଟା ଫଳରେ ଆରମ୍ଭ କରାଯାଇଥିଲା ।

୧୯୫୮ ମସିହାରେ ବଡ ଭାଣେଜୀର ସ୍ୱାମୀ ଶ୍ରୀ ମଧୁସୂଦନ ମିଶ୍ର ଭୁବନେଶ୍ୱର କୋପରେଟିଭ୍ ଘର ତିଆରି କରିବା ସୋସାଇଟିର ଜଣେ କର୍ମକର୍ତ୍ତା ଥିଲେ । ସେ କଟକ ଆସିଥିଲେ ଏବଂ ମୋତେ କହିଲେ ତୁମେ ଭୁବନେଶ୍ୱର କୋପରେଟିଭ୍ ଘର ତିଆରି କରିବା ସୋସାଇଟିର ଗୋଟିଏ ସଭ୍ୟ ହୁଅ । ସଭ୍ୟ ହେଲେ ତୁମକୁ ବାପୁଜୀ ନଗରରେ ଘର କରିବା ପାଇଁ ଗୋଟିଏ ପ୍ଲଟ ମିଳିପାରିବ ଏବଂ ଘର କରିବାକୁ ଟଙ୍କା କରଜ ମିଳିବ । ତାଙ୍କ କହିବା ଅନୁସାରେ ମୁଁ ସେହି ସୋସାଇଟିର ସଭ୍ୟ ହୋଇଥିଲି ।

## ସ୍ନାତକୋତ୍ତର ବିଜ୍ଞାନ ଶିକ୍ଷା

୧୯୫୯ ମସିହାରେ ମୋର ପ୍ରଥମ ବୈଜ୍ଞାନିକ ପ୍ରବନ୍ଧ ଡକ୍ଟର ତ୍ରିଲୋଚନ ବାବୁଙ୍କ ସାଙ୍ଗରେ ମିଶିକରି ପ୍ରକାଶନ ପାଇଁ ଆମେରିକା ଫିଜିକାଲ ରିଭ୍ୟୁକୁ ପଠାଗଲା । ସେହି ବର୍ଷ ଜୁଲାଇ ମାସରେ ଡକ୍ଟର ଦାସ ମୋତେ ସ୍ପେକଟ୍ରୋସ୍କୋପି ଲାବୋରାଟୋରୀ ଦାୟିତ୍ୱରେ ରଖିଲେ । ସେହି ଲାବୋରାଟୋରୀ ପିଲାଙ୍କୁ କିପରି ଏକ୍ସପେରିମେଣ୍ଟ କରିବାକୁ ହେବ ତାହା ବୁଝାଉ ଥାଏ ଏବଂ କିଏ କିପରି କାମ କରୁଛନ୍ତି ତାହାର ପ୍ରମାଣ ରଖିବାକୁ ଡକ୍ଟର ଦାସଙ୍କ ଠାରୁ ନିର୍ଦ୍ଦେଶ ପାଇଥିଲି ।

## ବୋଉର ଦେହ ଅସୁସ୍ଥତା

ସେହି ବର୍ଷ ମୋ ବୋଉର ଦେହ ଭିଷଣ ଖରାପ ହେଲା । କ୍ରମେ ନିମୋନିଆ ଆଡକୁ ଗତି କଲା । ମୋ ସାର ମାମୁଁ ଡାକ୍ତର ବିଜୟ ରଥ ଡାକ୍ତର ଘନଶ୍ୟାମ ମହାପାତ୍ରଙ୍କୁ ଡାକି ଆଣି ଘରେ ଦେଖାଇ ତାଙ୍କର ଚିକିତ୍ସା କଲେ । ତାଙ୍କ ଦେହ ଏପରି ଖରାପ ହୋଇଗଲା ଯେ ସେ ଦଶମୀ ଦିନ ଅଚେତ ହୋଇଗଲେ । ଡାକ୍ତର ଘନଶ୍ୟାମ ବାବୁ କହିଲେ ସେ ଅଚେତ ହୋଇଯାଇଛନ୍ତି ସତ କିନ୍ତୁ ଦେହ ବିଶେଷ କିଛି ଖରାପ ହୋଇନାହିଁ । ବୋଉକୁ ପ୍ରତି ତିନି ଘଣ୍ଟାରେ ପେନ୍‌ସିଲିନ୍ ଓ ଗ୍ଲୁକୋଜ ଇଞ୍ଜେକସନ୍ ଦିଆଯାଉଥାଏ ଏବଂ ଅକ୍ସିଜେନ ମଧ୍ୟ ଦିଆଯାଉଥାଏ । ସେ ପାଞ୍ଚ ଦିନ ପରେ ଚେତା ଫେରି ପାଇଲେ । କିନ୍ତୁ ଚେତା ଆସିବା ପରେ କହିଲେ ଆଜି ଏକାଦଶୀ ମୁଁ ଖାଇବି ନାହିଁ । ତାଙ୍କୁ ବହୁତ ବୁଝା ବୁଝି କରିବା ପରେ ସେ କିଛି ଖାଇଲେ । ବୋଉଙ୍କ ଦେହ ଖରାପ ଥିଲା ବେଳେ ଚିନ୍ତା ଭାଇନାଙ୍କ ସ୍ତ୍ରୀ ସାହାଯ୍ୟ କରିବା ପାଇଁ ଆସି ଆମ ଘରେ ଥିଲେ । ତାର କେତେ ଦିନ ପରେ ମୋ ସ୍ତ୍ରୀର ସାନ ଦଦେଇ ଶ୍ରୀ ଚକ୍ରଧର ମିଶ୍ର ଓ.ଏମ. ପି ଡାକ୍ତରଖାନାକୁ ବଦଳି ହୋଇ ଆସିଲେ । ମୋର ଛାତିରେ ଯେଉଁ ଯନ୍ତ୍ରଣା ହେଉଥିଲା ତାର ଚିକିତ୍ସା କଲେ । ଓ.ଏମ୍.ପି ଡାକ୍ତରଖାନାର ଗୋଟିଏ ପୁଅ ନର୍ସକୁ ମୋତେ ଇଞ୍ଜେକ୍ସନ୍ ଦେବାପାଇଁ ଆମ ଘରକୁ ପ୍ରତିଦିନ ପଠାଇଲେ । କିନ୍ତୁ ମୋ ଦେହରେ କିଛି ପରିବର୍ତ୍ତନ ହେଲା ନାହିଁ । ବୋଉଙ୍କ ଦେହ ଖରାପରେ ବହୁତ ଖର୍ଚ୍ଚ ହୋଇଯିବାରୁ ଟଙ୍କା ଅଭାବ ପଡିଲା । ତେଣୁ ନିମାପଡାରେ ଯେଉଁ ଘର ଶ୍ରୀ କୁଳମଣି ଦାସ ଭଡା ନେଇଥିଲେ ତାହାକୁ ୧୮୦୦ ଟଙ୍କାରେ ବିକ୍ରି କରିଦେଲି । କେତେ ଦିନପରେ ଦରମାରୁ ସେହି ଟଙ୍କା ଡାକଘରେ ଜମା କରି ଦେଇଥିଲି ।

ତାର କେତେ ଦିନ ପରେ ମୋର ଦ୍ୱିତୀୟ ଝିଅ ଜନ୍ମ ହେଲା । ତାର କେତେ ଦିନପରେ ଗୋଟିଏ ଗୋଡ ଦରଜ ହେଲା ଏବଂ ଫୁଲି ଗଲା । ଦେହ ବହୁତ ଖରାପ ହୋଇଗଲା । ମୋ ସ୍ତ୍ରୀର ଦଦେଇ ଚିକିତ୍ସା କଲେ । ମୋ ଝିଅର ଦେହ ଆସ୍ତେ ଆସ୍ତେ ଭଲ ହୋଇଗଲା । ଗୋଟିଏ ବିଜ୍ଞାନ ପ୍ରଚାର ସମିତିର ଅଧିବେଶନରେ ଜାଣିଲି ଡାକ୍ତର ଭଗବତୀ ଆଚାର୍ଯ୍ୟ ଜଣେ ଭଲ ଚିକିତ୍ସକ । ତେଣୁ ମୁଁ ତାଙ୍କୁ ମୋର ଅସୁସ୍ଥତା ପାଇଁ ଘରକୁ ଡାକିଲି । ସେ ଦେଖିବାକୁ ଆସିଲେ । ମୁଁ ତାଙ୍କୁ ସବୁ ଡାକ୍ତରଙ୍କ ପ୍ରେସକ୍ରିପସନ୍ ଦେଖାଇଲି । ସେ ବହୁତ ଚିକିନିଖି କରି ଦେଖିଲେ । ସେ ପଚାରିଲେ ଡାକ୍ତର ଚକ୍ରଧର ମିଶ୍ର ତୁମର କଣ ହୁଅନ୍ତି । ମୁଁ ତାଙ୍କ ଝିଆରିକୁ ବିଭା ହୋଇଛି ବୋଲି କହିଲି । ତାହା ହେଲେ ତୁମେ ଚଣ୍ଡ ଝିଅକୁ ବିବାହ କରିଛ । ମୁଁ ହଁ କଲି । ସେ ମୋତେ

ତିନିଗୋଟି ପ୍ରଶ୍ନ ପଚାରିଲେ । କେତେଟା ଇଞ୍ଜେକ୍‌ସନ୍ ନେଇଛ । ମୁଁ କହିଲି ପ୍ରାୟ ୧୦୦ଟା ଇଞ୍ଜେକ୍‌ସନ୍ ନେଇଛି । କିନ୍ତୁ ରୋଗର କିଛି ପରିବର୍ତ୍ତନ ହୋଇନାହିଁ । ତୁମର ମଣ୍ଟୁ ଟେଷ୍ଟ ହୋଇଛି । ମୁଁ କହିଲି ନାହିଁ । ସେ କହିଲେ ତୁମର ଟି.ବି ହୋଇନାହିଁ । ତମେ ଯେତେ ଇଞ୍ଜେକ୍‌ସନ୍ ନେଇଛ ତମର ଭଲ ହୋଇଯିବା କଥା ନ'ହେଲେ ତମେ ମରିଯିବା କଥା । ମୁଁ ଚକ୍ରଧର ସଙ୍ଗେ ଆଲୋଚନା କରି ତମେ କି ଔଷଧ ଖାଇବ ତାହାର ବ୍ୟବସ୍ଥା କରିବି । ତାପରେ ମୁଁ ତାଙ୍କୁ ୬୦ଟଙ୍କା ଯାଚିଲି । ସେ ନେଲେ ନାହିଁ କହିଲେ ପଣ୍ଡିତ ଆନନ୍ଦ ମିଶ୍ରଙ୍କ ଝିଅଠାରୁ ଟଙ୍କା ନେବି ନାହିଁ । ମୁଁ ତାପରେ ମୋ ସ୍ତ୍ରୀଙ୍କୁ ପଚାରିଲି ଡାକ୍ତର ଭଗବତୀ ଆଚାର୍ଯ୍ୟଙ୍କର ତୁମ ଘର ସଙ୍ଗେ କି ସମ୍ପର୍କ ? ସେ କହିଲା ଶ୍ରୀ ବୈଦନାଥ ମିଶ୍ରଙ୍କ ଭଉଣୀକୁ ମୋ ବାପା ବିବାହ କରିଥିଲେ ଏବଂ ତାଙ୍କ ଝିଅକୁ ଡାକ୍ତର ସୁରେନ୍ ଆଚାର୍ଯ୍ୟ ବିବାହ କରିଥିଲେ । ଶ୍ରୀ ଭଗବତୀ ଆଚାର୍ଯ୍ୟ ଶ୍ରୀ ସୁରେନ୍ ଆଚାର୍ଯ୍ୟଙ୍କର ନିକଟ ସମ୍ପର୍କୀୟ । ସେ ଚକ୍ରଧର ମିଶ୍ରଙ୍କ ସହିତ ଆଲୋଚନା କରି ଦୁଇଟି ପ୍ରକାରର ଟାବଲେଟ୍ ଲେଖିଦେଲେ । ଗୋଟିଏ ହେଲା ସେଲିନ୍ ଓ ଅନ୍ୟଟି ସାଲାମାଇଡ୍ । ଏହାକୁ ଦିନକୁ ଦୁଇଥର ଖାଇବ ଓ ସବୁଦିନ ଗରମ ପାଣିରେ ଗାଧୋଇବ । ମୁଁ ସେହି ଚିକିତ୍ସାରେ ରହିଲି । ସେହି ଦିନଠାରୁ ମୋ ଛାତିରେ କଷ୍ଟ ହୋଇନାହିଁ ।

ମୁଁ ଚାକିରୀ କରିବାର ଅଳ୍ପ କେତେ ଦିନ ପରେ ମୋତେ ନିର୍ବାଚନ ଦାୟୀତ୍ୱ ବଡନିନି ଗ୍ରାମରେ ଦିଆହୋଇ ଥିଲା । ମୁଁ ନିର୍ବାଚନ ଦାୟୀତ୍ୱ ସୂଚାରୁ ରୂପେ ସମ୍ପାଦନ କରିଥିଲି । ତାପରେ ଆଉଥରେ ମଧ୍ୟ ନିର୍ବାଚନ ଦାୟୀତ୍ୱ ଦିଆଯାଇଥିଲା । ନିର୍ବାଚନର ଦୁଇଦିନ ପୂର୍ବରୁ ମୋ ଗୋଡରେ ଗରମ ପାଣି ଢାଳି ହୋଇଯାଇ ଫୋଟକା ହୋଇ ଯାଇଥିଲା । ମୁଁ ସହକର୍ମିମାନଙ୍କୁ କହି ନିର୍ବାଚନ ଦାୟୀତ୍ୱ ଛାଡ କରିବା ପାଇଁ ଲେଖିକରି ଜଣାଇଥିଲି । ଯେଉଁମାନେ ନିର୍ବାଚନ ଦାୟୀତ୍ୱ ପକାଇ ଥିଲେ ସେମାନେ କିଛି ଶୁଣିଲେ ନାହିଁ । ମୁଁ ବ୍ୟସ୍ତ ହୋଇ ଗିରିଧାରୀ ସାହୁ କଲୋନୀରୁ ଗୋଟିଏ ରିକ୍ସା କରି ଅଧ୍ୟକ୍ଷଙ୍କ ରହିବା ଘରେ ତାଙ୍କୁ ଦେଖା କଲି ଏବଂ ମୋ ଗୋଡରେ ଯେଉଁ ଫୋଟକା ହୋଇଥିଲା ତାକୁ ମଧ୍ୟ ଦେଖାଇଲି ଓ କହିଲି ନିର୍ବାଚନ ଦାୟୀତ୍ୱରେ ଥିବା ସରକାରୀ କର୍ମଚାରୀ ମାନେ ମୋର କଥା ଶୁଣୁ ନାହାଁନ୍ତି । କିଛି ସାହାଯ୍ୟ କରୁ ନାହାନ୍ତି । ଆପଣ ସାହା କରିବେ । ସେ ମୋତେ ଉତ୍ତର ଦେଲେ ତମେ ଆଉ କୁଆଡେ ନ'ଯାଇ ସିଧା ଘରକୁ ଯାଅ ଓ ଘରେ ବିଶ୍ରାମ ନିଅ ନିର୍ବାଚନ ଦାୟୀତ୍ୱ କଥା ମୁଁ ବୁଝିବି । ତାଙ୍କ କଥାରେ ଆଶ୍ୱସ୍ତ ହୋଇ ମୁଁ ଘରକୁ ଆସିଲି । ନିର୍ବାଚନ ଦାୟୀତ୍ୱ ସମ୍ପାଦନ କରିନ'ଥିଲି ବୋଲି ମୋ ପାଖକୁ ନିର୍ବାଚନ ଅଫିସ୍‌ରୁ କୌଣସି ଚିଠି ଆସି ନ'ଥିଲା । ତାହାର କେତେଦିନ ପରେ ଜାଣି ପାରିଲି ମୋ ସ୍ତ୍ରୀ ଅନ୍ୟମାନଙ୍କ ବିଭାଘର ପାଇଁ ବରାଦ ଅନୁସାରେ ଗୀତ ଲେଖେ । ମୁଁ କହିଲି ଆଉସବୁ ଜଣ ଲେଖିକୁ । ବହୁ କଷ୍ଟରେ ସେ ଗୋଟିଏ ଗୀତ ବୋଲି ଶୁଣାଇଲା । ସେ ଗୀତର ପ୍ରଥମ ପଦଟି ହେଲା ।

ପଟିତ ପାବନ ବାନା          ମୋ ବେଳକୁ ହେଲା ମନା
କି ଦୋଷ କରିଛି ପ୍ରଭୁ ମୁହିଁ ତୁମରି ।

(ପରେ ସମ୍ପୂର୍ଣ୍ଣ ଗୀତଟି ଲେଖା ହୋଇଛି) । ମୁଁ ତାକୁ ପଚାରିଲି ଏ ଗୀତ କେବେ ଲେଖିଥିଲୁ । ସେ

କହିଲା ଯେତେବେଳେ ତୁମେ ମୋ ଉପରେ ରାଗି କରି ଚିଠି ଦେଉ ନ'ଥିଲ ସେତେବେଳେ ଲେଖିଥିଲି । ମୁଁ କହିଲି ତୁ ଛୋଟ ଛୋଟ ଗଳ୍ପ ଲେଖୁନୁ । ମୋ କହିବା ଅନୁସାରେ ସେ ଗଳ୍ପଟିଏ ଲେଖିକରି ଦେଲା । ମୁଁ ସାମ୍ବାଦିକ ଶ୍ରୀ ଗୋପାଳ ମିଶ୍ରଙ୍କୁ ଛପାଇ ଦେବା ପାଇଁ ଦେଲି । ସେ ତାକୁ ପ୍ରଜାତନ୍ତ୍ରରେ ଛପାଇ ଦେଲେ । ସେ ଗଳ୍ପର ନାମ ହେଉଛି "ପ୍ରାୟଶ୍ଚିତ" । ଗୋପାଳ ମିଶ୍ର ହେଉଛନ୍ତି ନିମାପଡା ହାଇସ୍କୁଲର ମୋର ସହପାଠୀ । ତାଙ୍କ ଘର ପାଟପୁର । ଏହାପରେ ତାର କେତୋଟି ଛୋଟ ଗଳ୍ପ ପତ୍ର ପତ୍ରିକାରେ ପ୍ରକାଶ ପାଇଛି । ସେଥିରୁ କେତେ ଗୁଡିକର ନାମ ହେଲା ମିଷ୍ଟର ଯାୟି, ବିଜୟ ବାବୁଙ୍କ ବଦଳି, ବିଦ୍ରୋହୀ ମନ, ମଧ୍ୟରାତ୍ରିର ଅତିଥି ଇତ୍ୟାଦି । ତାପରେ ମୁଁ କହିଲି ଗୋଟିଏ ଡିଟେକ୍‌ଟିଭ୍ ଉପନ୍ୟାସ ଲେଖିବା ପାଇଁ ମୁଁ ତାକୁ ଗୋଟିଏ ଡିଟେକ୍‌ଟିଭ୍ ଉପନ୍ୟାସ ଗପ କହିଲି । ସେ ଗପଟି ଆଇ.ଏସ୍‌ସି ପାଠ୍ୟକ୍ରମରେ ଥିଲା । ସେ ଯେଉଁ ଉପନ୍ୟାସଟି ଲେଖିଥିଲା ତାର ନାମ ହେଉଛି "ଛଦ୍ମବେଶୀ" ।

## ଛଦ୍ମବେଶୀ

**କାହିଣିର ସାରମର୍ମ ହେଲା :** ଜଣେ ଧନୀକ ଶ୍ରେଣୀର ଭଦ୍ରଲୋକ ପୁରୀରେ ରହୁଥିଲେ, ତାଙ୍କ ସ୍ତ୍ରୀଙ୍କର ଦେହାନ୍ତ ହୋଇଯାଇ ଥିଲା ଏବଂ ତାଙ୍କର ଗୋଟିଏ ପୁଅ ଥିଲା । ତାଙ୍କ ସହିତ ତାଙ୍କର ଜଣେ ଭାଇ ଏବଂ ଭାଇଙ୍କର ସ୍ତ୍ରୀ ଥିଲେ । ଭାଇଙ୍କର ସ୍ତ୍ରୀ ଏକ ଶିଶୁ ପୁତ୍ରକୁ ଜନ୍ମ ଦେବା ସମୟରେ ତାଙ୍କର ମଧ୍ୟ ଦେହାନ୍ତ ହୋଇଗଲା । ତାଙ୍କ ସାନ ଭାଇ ଖଳ ପ୍ରକୃତିର ଲୋକଥିଲେ । ଦିନେ ହଠାତ୍ ତାଙ୍କର ସାନଭାଇ ଜନ୍ମିତ ତାଙ୍କର ଛୋଟ ସନ୍ତାନକୁ ସାଙ୍ଗରେ ନେଇ କେଉଁଆଡେ ଚାଲିଗଲେ । ଆଉ ତାଙ୍କର ସନ୍ଧାନ ମିଳିଲା ନାହିଁ । ଏହିପରି ବାର ଏବଂ ତେର ବର୍ଷ କଟିଗଲା । ଏହା ଭିତରେ ଏହି ଭଦ୍ରଲୋକ ନିଜର ଖାଇବା ଓ ପିଇବାରେ ଅସୁବିଧା ହେଲାରୁ ଜଣେ ବିଶ୍ୱସ୍ତ ଚାକର ଘରେ ଆଣି ରଖିଲେ । ସେ ତାଙ୍କର ଖାଇବା ପିଇବା ଠାରୁ ଆରମ୍ଭ କରି ତାଙ୍କର ସମସ୍ତ କାର୍ଯ୍ୟ ବୁଝାସୁଝା କରୁଥିଲା ।

ଦିନେ ସେହି ଭଦ୍ରବ୍ୟକ୍ତିଙ୍କ ଘର ପାଖରେ ଜଣେ ଶିଖ ବ୍ୟକ୍ତି ଓ ତାଙ୍କର ଗୋଟିଏ ଝିଅ ଏବଂ ଗୋଟିଏ ପୋଷା କୁକୁର ଆଣି ତାଙ୍କ ଘର ପାଖରେ ଭଡା ନେଇ ରହିଲେ । ତାଙ୍କ ପୋଷା କୁକୁରର ମୁଣ୍ଡରେ ସୌନ୍ଦର୍ଯ୍ୟ ବୃଦ୍ଧିପାଇ ଗୋଟିଏ ପଦକ ଲାଗି ରହିଥାଏ । ପୁରୀରେ ରହୁଥିବା ଭଦ୍ରବ୍ୟକ୍ତଙ୍କ ସହିତ କ୍ରମେ ଶିଖ୍ ବ୍ୟକ୍ତିଙ୍କର ସମ୍ପର୍କ ବଢିଲା । ଶିଖ୍ ବ୍ୟକ୍ତିଙ୍କର ଝିଅଟି ସବୁବେଳେ ତାଙ୍କ ଘରକୁ ଆସେ ଓ ତାଙ୍କ ପୁଅଙ୍କ ସହିତ ବନ୍ଧୁତ୍ୱ ଗଢି ଉଠିଲା । ଝିଅର ଆସିବାକୁ ପୁରୀ ଭଦ୍ରବ୍ୟକ୍ତିଙ୍କର ବିଶ୍ୱସ୍ତ ଚାକର ସହି ପାରୁ ନ'ଥିଲା । ଦିନେ ସେ ଚାକରଟି ଶିଖ୍ ବ୍ୟକ୍ତିଙ୍କ ଘର ଆଡେ ଯାଇଥିବା ସମୟରେ କୁକୁରଟି ଆସି ସେହି ଚାକରକୁ ଆକ୍ରମଣ କଲା ଏବଂ କାମୁଡିଲା ନାହିଁ । କିନ୍ତୁ ଦୁଇ ତିନି ମିନିଟ ପରେ ସେହି ଚାକରଟି ମରିଗଲା । ତେଣୁ ପୋଲିସ୍ କର୍ମଚାରୀମାନେ ଆସି ଚାକରର ଶବ ବ୍ୟବଚ୍ଛେଦ କରିଲେ । ଶବ ବ୍ୟବଚ୍ଛେଦ ପରେ ଜଣାପଡିଲା ପୋଟାସିଏମ୍ ସାଇନାଇଡ ବିଷ ଯୋଗୁଁ ଚାକରଟିର ମୃତ୍ୟୁ ହୋଇଛି । ପୋଲିସ୍ କର୍ମଚାରୀମାନେ ପଚାର ଉଚରା କରି ଜାଣିଲେ ଯେ ଚାକରଟି ଯେଉଁ ବ୍ୟକ୍ତିଙ୍କ ଘରକୁ ଯାଇଥିଲା ସେହି ବ୍ୟକ୍ତି ଜଣକ ନିକଟରେ ପଞ୍ଜାବରୁ ଆସି ପୁରୀରେ ବାସ କରୁଛନ୍ତି । ମରିଯାଇ

ଥିବା ଚାକରର ମାଲିକକୁ ପୋଲିସ୍ କେତେ ଜଣ ପଚାରି ସାରିବା ପରେ କେତେ ଗୁଡିଏ ଗୁପ୍ତ ଉପଦେଶ ଦେଇଯାଇ ଥିଲେ । ଏହିପରି କେତେଦିନ ଗଲାପରେ ପୁରୀରେ ରହୁଥିବା ଭଦ୍ରବ୍ୟକ୍ତିଙ୍କ ପୁଅ ଦିନେ ରାସ୍ତାରେ ଯାଉଥିବା ସମୟରେ ଏହି ଶିଖ୍ ବ୍ୟକ୍ତିଙ୍କର ପୋଷା କୁକୁରଟି ପୁଣି କାମୁଡିବାକୁ ଆସିଲା ଏବଂ ତାଙ୍କୁ ନ'କାମୁଡି ତାଙ୍କ ଗୋଡକୁ ମୁଣ୍ଡରେ ଠେଲିଦେଇ ଚାଲିଗଲା । ଏହି ସମୟରେ ଭୟରେ ତାଙ୍କର ପୁଅ ଅଚେତ ହୋଇ ପଡିଗଲେ । ଲୋକମାନେ ଜମା ହୋଇ କିଛି ସେବା କରିବା ପରେ ତାଙ୍କ ଚେତା ଫେରିଲା ଡାକ୍ତରଖାନା ଯାଇ ଡାକ୍ତର ପରୀକ୍ଷା ହେଲା । ଡାକ୍ତର ପରୀକ୍ଷାରୁ ଜଣାପଡିଲା ତାଙ୍କ ଦେହରେ କିଛି ବିଷାକ୍ତ ଦ୍ରବ୍ୟ ନାହିଁ । ଏହି ବିଷୟଟି ପୋଲିସ୍‌କୁ ଜଣାଇ ଦିଆଗଲା । ପୋଲିସ୍ ଆସି ସେହି ଭଦ୍ରଲୋକଙ୍କ ପୁଅର ସବୁ ବେଳେ ବାନ୍ଧି ରଖିଥିବା ପୋଲିସ୍‌ର ଗୁପ୍ତ ମନ୍ତ୍ରଣା ଅନୁଯାଇ ଦୁଇ ଗୋଡର ବନ୍ଧା ହୋଇଥିବା ବ୍ୟାଣ୍ଡେଜକୁ ପରୀକ୍ଷା କରିବାକୁ ନେଇଗଲେ । ପରୀକ୍ଷାରୁ ଜାଣିଲେ ଗୋଟିଏ ବ୍ୟାଣ୍ଡେଜ୍‌ରେ ଗୋଟିଏ ସ୍ଥାନରେ ପୋଟାସିୟାମ୍ ସାଇନାଇଡ୍ ଲାଗିଛି । ତେଣୁ ପୋଲିସ୍‌ମାନେ ଆସି ସେହି କୁକୁରକୁ ଧରି ନେଇଗଲେ ତା ମୁଣ୍ଡରେ ଲାଗିଥିବା ପଦକକୁ ପରୀକ୍ଷା କରି ଦେଖିଲେ ସେହି ପଦକରେ ଗୋଟିଏ ସରୁ ଜଣାଅଛି ଏବଂ ସେହି ପଦକରେ କିଛି ପୋଟାସିୟାମ୍ ସାଇନାଇଡ୍ ଅଛି । ତାପରେ ପୋଲିସ୍ ଆସି ଶିଖ୍ ଭଦ୍ରଲୋକ ଏବଂ ତାଙ୍କ ଝିଅକୁ ଗିରଫ କରି ନେଇଗଲେ । ପୋଲିସ୍ ତଦାରଖ କରି ଜାଣିଲେ କୁକୁରର ମୁଣ୍ଡରେ ଲାଗିଥିବା ପଦକରେ ପୋଟାସିୟାମ୍ ସାଇନାଇଡ୍ ରଖାଯାଇଛି ଓ ଶିଖ୍ ଭଦ୍ରଲୋକଙ୍କର ଯେଉଁ ଝିଅଟି ଥିଲା ସେ ପ୍ରକୃତରେ ପୁଅ । ଆହୁରି ତଦାରଖ କରି ଜାଣିଲେ ପଞ୍ଜାବରୁ ଆସିଥିବା ଭଦ୍ରବ୍ୟକ୍ତି ପୁରୀରେ ଥିବା ଭଦ୍ରବ୍ୟକ୍ତିଙ୍କର ଛଦ୍ମବେଶୀ ସାନଭାଇ । ବଡ ଭାଇ ଏବଂ ତାଙ୍କର ପୁଅକୁ ଏହିଭଳି ଭାବରେ ମାରି ତାଙ୍କର ସମସ୍ତ ସମ୍ପତ୍ତିକୁ ଦଖଲ କରିଥାଆନ୍ତା । ଏହାଥିଲା ଏହି ଛଦ୍ମବେଶୀ ଲେଖାର ବିଷୟବସ୍ତୁ । ମୁଁ ତାହା କାଳୀଚରଣ ତ୍ରିପାଠୀ ନାମକ ଜଣେ ପ୍ରକାଶକଙ୍କୁ ଦେଲି । ସେ ବହିଟି ବୋଧେ ୧୯୬୩ ମସିହାରେ ଛପା ହୋଇଥିଲା ।

ମୁଁ ପୁରୀରେ ପଢିଲା ସମୟରୁ ଜାଣିଛି ଅଧ୍ୟାପକ ମୁକୁନ୍ଦ ମିଶ୍ର ପ୍ରାକୃତିକ ଚିକିତ୍ସା ଉପରେ ବହୁତ ଜୋର ଦିଅନ୍ତି । ନିଜର କିମ୍ବା ପିଲାମାନଙ୍କର ଦେହ ଖରାପ ହେଲେ ପ୍ରାକୃତିକ ଚିକିତ୍ସାର ଆଶ୍ରୟ ନିଅନ୍ତି । ମୋର ଛାତିରେ ଯେତେ କଷ୍ଟ ହେଉଥିଲା ଡାକ୍ତରମାନେ ଠିକ୍ ରୋଗ ଚିହ୍ନି ନପାରି ମୋତେ ବହୁତ ଗୁଡିଏ ଇଞ୍ଜେକ୍‌ସନ୍ ଦେଇଥିଲେ । କିନ୍ତୁ ଭଗବତୀ ବାବୁ କେବଳ ଭିଟାମିନ୍ ସି ଏବଂ ସାଲାମାଇଡ୍ ବଟିକା ଖାଇବାକୁ ଦେଇ ମୋ ରୋଗ ଭଲ କରିଦେଲେ । ତେଣୁ ମୋର ଡାକ୍ତରି ଚିକିତ୍ସା ଉପରେ ବିଶ୍ୱାସ ତୁଟିଗଲା । ମୁଁ ଭାବିଲି ମୁକୁନ୍ଦ ବାବୁଙ୍କ ସଙ୍ଗେ ଦେଖା କରି ପ୍ରାକୃତିକ ଚିକିତ୍ସା ବିଷୟରେ ଆଲୋଚନା କରିବି । ଗୋଟିଏ ଛୁଟି ଦିନ ଦେଖି ପୁରୀ ଗଲି ଏବଂ ତାଙ୍କଠାରୁ ପରାମର୍ଶ ନେଇ ପ୍ରାକୃତିକ ଚିକିତ୍ସା ଉପରେ ପାଞ୍ଚ ଖଣ୍ଡି ବହିର ନାମ ଓ କେଉଁଠି ମିଳିବ ତାର ଠିକଣା ଆଣିଲି । ସେ ବହିଗୁଡିକ ବଙ୍ଗଳାରେ ପ୍ରକାଶିତ ହୋଇଥିଲା । ମୁଁ ତାଙ୍କୁ ପଚାରିଲି ଏହାର ଓଡିଆ ଅନୁବାଦ ହୋଇନାହିଁ । ସେ ମନା କଲେ । ତେଣୁ ଗୋଟିଏ ଚିଠି ଲେଖି ନିର୍ଦ୍ଦିଷ୍ଟ ଦୋକାନକୁ ପଠାଇ ଦେଲି ଏବଂ ଲେଖିଲି ବହି ପାଞ୍ଚ ଖଣ୍ଡି ଭି.ପି.ପି ଦ୍ୱାରା ପଠାଇ ଦେଲେ ଉପକୃତ ହେବି । ସେ ବହି ଗୁଡିକ ସବୁ ବଙ୍ଗଳାରେ ଲେଖା ହୋଇଥିଲା । ମୁଁ ଭଲକରି

ବଙ୍ଗଳା ପଢି ଜାଣି ନ'ଥିଲି । କିନ୍ତୁ ମୋର ସ୍ତ୍ରୀ ବଙ୍ଗଳା ପଢି ଜାଣିଥିଲା । ବହି ପଢିସାରି ଜାଣିପାରିଲି ଯେ ସବୁ ରୋଗର ମୂଳ କାରଣ ହେଉଛି ପରିଷ୍କାର ଝାଡା ନହେବା । ସେଥିପାଇଁ ସେ ବହିରେ ଲେଖାଥିଲା, ଯଦି ପେଟ ଗୋଳମାଳ ହୁଏ କିମ୍ବା ଝାଡା ହେଲେ ବା ଝାଡା ନହେଲେ ଡୁସ୍ ପାତ୍ରରେ ସାମାନ୍ୟ ଉଷୁମ ପାଣି ରଖି କୌଣସି କାନ୍ଥରେ ଝୁଲାଇ ଦେବ ଏବଂ ସେ ଉଷୁମ ପାଣିରେ ଫାଳେ କିମ୍ବା ଗୋଟିଏ ଲେମ୍ବୁ ଚିପୁଡି ଦେବ ସାମାନ୍ୟ ଟିକିଏ ଲୁଣ ପକାଇ ଦେବ । ସେହି ପାଣିକୁ ବାମ କଡରେ ଶୋଇ ଡୁସ୍ ନେଇଯିବେ । ଚାର ପନ୍ଦର କୋଡିଏ ମିନିଟ୍ ପରେ ଝାଡା ସଫା ହୋଇଯିବ । ଥଣ୍ଡା ଜ୍ୱର ହେଲେ ଗୋଟିଏ ଷ୍ଟିମ୍ ବାଥ୍ ନେବେ । ଷ୍ଟିମ୍ ବାଥର ନେବାର ପ୍ରଣାଳୀ ହେଉଛି । ଗୋଟିଏ ଚୌକିରେ ବସିବ ଗୋଟିଏ ବାଲ୍ଟିରେ ଫୁଟନ୍ତା ପାଣି ରଖିବ । ଗୋଟିଏ କମ୍ବଳ ଘୋଡାଇ ହୋଇ ବସିବ ସେହି ଜଳୀୟ ବାଷ୍ପ ସବୁ ଦେହରେ ବାଜି ଦେହରୁ ଝାଳ ବାହାରିବ । ତାପରେ ଆଉ ଜ୍ୱର ହେବ ନାହିଁ । କେଉଁ କେଉଁ ରୋଗରେ ନଈ ପଙ୍କ ଆଣି ପେଟରେ ଲଦିବ ନହେଲେ ମୁଣ୍ଡରେ ଲଗାଇବ । ବହୁତ ପ୍ରକାର ରୋଗ ପାଇଁ ଏହି ପ୍ରାକୃତିକ ଚିକିତ୍ସା ସବୁ ଲେଖା ହୋଇଥାଏ । ମୁଁ ପ୍ରାୟ ଦୁଇ ତିନି ବର୍ଷ ପର୍ଯ୍ୟନ୍ତ ଏହି ପ୍ରକାର ଚିକିତ୍ସା ସବୁ ନିଜ ଦେହରେ ପ୍ରୟୋଗ କରିଛି ଏବଂ କିଛି ଉପକାର ମଧ୍ୟ ପାଇଛି । ଏହି ପ୍ରକାର ଚିକିତ୍ସା ବଡ ସମୟ ସାପେକ୍ଷ । ପୋଷ୍ଟଗ୍ରାଜୁଏଟ୍ ଛାତ୍ରାବାସର ପରିଚାଳକ ହେବାରୁ ଏବଂ ଗବେଷଣାରେ ବ୍ୟସ୍ତ ରହିବାରୁ ଏହି ଚିକିତ୍ସା ଆଉ କରି ପାରିଲି ନାହିଁ । ସେ ପାଞ୍ଚ ଖଣ୍ଡି ବହି କିଏ ମାଗି ନେଲା ଓ ଆଉ ଫେରାଇଲା ନାହିଁ ।

୧୯୬୦ ମସିହାରେ ମୁଁ କ୍ୟାପିଟାଲ କୋପରେଟିଭ୍ ହାଉସ୍ ବିଲ୍‌ଡିଙ୍ଗ ସୋସାଇଟିରୁ ଗୋଟିଏ ଚିଠି ପାଇଲି ଯେ ତୁମକୁ ବାପୁଜୀ ନଗରରେ ୧୪୦ ନମ୍ବର ପ୍ଲଟ୍‌ଟି ଦିଆଗଲା । ତୁମେ ଶିଘ୍ର ୩୫୦ ଟଙ୍କା ଦାଖଲ କରି ପ୍ଲଟ୍‌ଟି ତୁମ ନାମରେ ରେଜିଷ୍ଟ୍ରି କରିଦିଅ ଓ ତିନି ବର୍ଷ ଭିତରେ ସେହି ପ୍ଲଟ୍‌ରେ ଘର ତିଆରି କର । ସେହି ଅନୁସାରେ ୧୯୬୦ ମସିହାରେ ପ୍ଲଟ୍‌ଟି ରେଜିଷ୍ଟ୍ରି କରିଦେଲି । ଘର ତିଆରି ପାଇଁ ୧୦,୦୦୦ ଟଙ୍କା ଋଣ ପାଇଁ ଦରଖାସ୍ତ କରିଦେଲି ।

## ରେଭେନ୍ସା କଲେଜରେ ସାଇନ୍ସ କଂଗ୍ରେସର ଆୟୋଜନ

୧୯୬୧ ମସିହା ଶେଷ ଆଡକୁ ଜଣା ପଡିଲା ଯେ ସାଇନ୍‌ସ କଂଗ୍ରେସ ଜାନୁଆରି ପହିଲା ଦିନ ରେଭେନ୍ସା କଲେଜରେ ହେବାର ଠିକ୍ ହୋଇଛି । ସେଥିପାଇଁ ଦୁଇ ତିନି ମାସ ଆଗରୁ ପ୍ରାଥମିକ କାର୍ଯ୍ୟ ଆରମ୍ଭ ହୋଇଗଲା । ସାଇନସ୍ କଂଗ୍ରେସରେ ଭାରତର ବିଭିନ୍ନ ସାଇଣ୍ଟିଫିକ୍ କମ୍ପାନୀମାନେ ମାସେ ଆଗରୁ ଆସି ତାଙ୍କର ଉପକରଣ ସବୁ ଦେଖାଇବା ପାଇଁ ବ୍ୟବସ୍ଥା ହୋଇଥାଏ । ମୋତେ ସେହି ଦାୟିତ୍ୱରେ ରଖାଯାଇଥିଲା । ସାଇନସ୍ କଂଗ୍ରେସର ସ୍ଥାନୀୟ ସମ୍ପାଦକ ଭାବେ ଡକ୍ଟର ବଂଶୀଧର ସାମନ୍ତରାୟଙ୍କୁ ଓ ଡକ୍ଟର ରାଧାନାଥ ରଥଙ୍କୁ ନିଯୁକ୍ତ କରାଯାଇଥିଲା । ସାଇନସ୍ କଂଗ୍ରେସକୁ ଉଦ୍‌ଘାଟନ କରିବା ପାଇଁ ଭାରତର ପ୍ରଧାନ ମନ୍ତ୍ରୀ ଶ୍ରୀଯୁକ୍ତ ଜବାହରଲାଲ ନେହେରୁ ଆସିଥିଲେ । ସେତେବେଳେ ଡକ୍ଟର ପ୍ରାଣକୃଷ୍ଣ ପରିଜା ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଓ ଡକ୍ଟର ସଦାଶିବ ମିଶ୍ର ରେଭେନ୍ସା କଲେଜର ଅଧ୍ୟକ୍ଷ ଥିଲେ । ସାଇନସ୍ କଂଗ୍ରେସରେ ଦୁଇ ଦିନ ଆଗରୁ ଏବଂ ସରିବା ପର୍ଯ୍ୟନ୍ତ ମୋତେ ଏବଂ

ଅନ୍ୟମାନଙ୍କୁ ସକାଳ ୮ଟା ବେଳେ ଆସି ରାତି୧୦ ପର୍ଯ୍ୟନ୍ତ ରହିବାକୁ ପଡ଼ୁଥିଲା । ଯେଉଁମାନଙ୍କ ଉପରେ ଦାୟୀତ୍ୱ ଦିଆହୋଇ ଥିଲା ସେମାନଙ୍କୁ ସକାଳ ଜଳଖିଆ, ଖରାବେଳ ଖାଇବା ଓ ରାତିର ଖାଇବା ମାଗଣାରେ ମିଳୁଥିଲା । ଏଥିରେ ମୋତେ ବହୁତ ପରିଶ୍ରମ କରିବାକୁ ପଡିଥିଲା । ସାଇନସ୍ କଂଗ୍ରେସ ସରିବାର ଦିନେ କିମ୍ବା ଦୁଇ ଦିନ ପରେ ମୁଁ କ୍ୟାପିଟାଲ କୋପରେଟିଭ୍ ସୋସାଇଟିରୁ ଚିଠି ପାଇଲି, ତୁମକୁ ୧୦ ହଜାର ଟଙ୍କା ଋଣ ମଞ୍ଜୁର କରାଯାଇଛି । ତେଣୁ ତୁମେ ବର୍ଷକ ଭିତରେ ଘର ତିଆରି କର ।

## ଭୁବନେଶ୍ୱର ଘର ତିଆରି ଆରମ୍ଭ

ମୁଁ ୧୦ ହଜାର ଟଙ୍କାର ଋଣ ଆଣି ଘର ତିଆରି କରିବାପାଇଁ ଯୋଗାଡରେ ଲାଗିଗଲି । ସେତେବେଳେ ସିମେଣ୍ଟ ମିଳୁ ନ'ଥିଲା । ମୋର ସାଙ୍ଗ ସର୍ବେଶ୍ୱର ଆଚାର୍ଯ୍ୟଙ୍କ ଶଡୁ ଶ୍ରୀ ଧ୍ରୁବଚରଣ ଦାସ ସେତେବେଳେ କଟକ ରେଲୱେ ଷ୍ଟେସନ୍‌ର ପାର୍ଶଲ ଅଫିସ୍‌ରେ କାମ କରୁଥିଲେ । ମୁଁ ତାଙ୍କୁ କହିବାରୁ ସେ କୌଣସି ଡିଲର ଠାରୁ ୧୦୦ ବସ୍ତା ସିମେଣ୍ଟ ଯୋଗାଡ କରିଦେବେ ବୋଲି କହିଲେ । ସେତେବେଳେ ସିମେଣ୍ଟ ବସ୍ତା ୬ ଟଙ୍କାରେ ପରମିଟ୍‌ରେ ମିଳୁଥାଏ । ସେ ୭/୮ ଦିନ ପରେ ଆମ ଘରେ ଖବର ଦେଲେ ଯେ ତୁମେ ପାଖରେ ୭୦୦ଟଙ୍କା ରଖିଥାଅ । ଏହି ଦୁଇଦିନ ଭିତରେ ଗୋଟିଏ ଟ୍ରକ ୧୦୦ ବସ୍ତା ସିମେଣ୍ଟ ନେଇ ଆପଣଙ୍କ ଘରେ ଦେଇଦେବ । ଆପଣ ତାକୁ ୭୦୦ଟଙ୍କା ଦେଇଦେବେ । ମୁଁ ସେତେବେଳେ ଗିରିଧାରୀ ସାହୁ କଲୋନୀରେ ରହୁଥାଏ । ତାଙ୍କ କହିବା ଅନୁସାରେ ଦିନେ ସଂଧ୍ୟାବେଳେ ସିମେଣ୍ଟ ଆଣି ଦେଇଗଲା । ମୁଁ ତାକୁ ଆମ ଷ୍ଟୋର ଘରେ ରଖିଲି । କେମିତି ସେ ସିମେଣ୍ଟକୁ ଭୁବନେଶ୍ୱର ଆଣିବି ମୋର ଚିନ୍ତା ହୋଇଗଲା । କାରଣ କୌଣସି ଟ୍ରକ ସିମେଣ୍ଟ ନେବାପାଇଁ ରାଜି ହେଲେନାହିଁ । ସାଇନସ୍ କଂଗ୍ରେସକୁ ଜିନିଷପତ୍ର ଫେରାଇବା ପାଇଁ ଗୋଟିଏ ଟ୍ରକ୍ ସବୁବେଳେ ଭୁବନେଶ୍ୱର ଯାଉଥିଲା । ସେହି ଟ୍ରକ୍ ମାଲିକ ନେବା ପାଇଁ ରାଜି ହେଲେ । ସେ ମାଲିକଙ୍କ ସାଙ୍ଗରେ ସାଇନସ୍ କଂଗ୍ରେସ ବେଳେ ଟିକ୍କା ପରିଚୟ ହୋଇଥିଲା । ସେ କହିଲେ ଭଡା ବାବଦକୁ ୧୦ ବସ୍ତା ସିମେଣ୍ଟ ନେବି ଏବଂ ଯେଉଁଠାରେ କହିବେ ସେହିଠାରେ ପହଁଞ୍ଚାଇ ଦେବି । ମୁଁ ୨/୩ ଦିନ ଭିତରେ କେଉଁଠାରେ ପହଁଞ୍ଚାଇ ଦେବ କହିବି । ମୁଁ ତାପର ଦିନ ଭୁବନେଶ୍ୱର ଆସି ମୋ ୧୪୦ ନମ୍ବର ପ୍ଲଟ୍ ଆଗରେ ସେନ୍ ବାବୁ ନାମକ ଜଣେ ସରକାରୀ କର୍ମଚାରୀଙ୍କର ଗୋଟିଏ, ବଡ କୋଠରୀ ଭଡା ନେଲି । ସେଥିରେ ପିଲାମାନଙ୍କର ରହିବାର ବ୍ୟବସ୍ଥା କଲି । ଘର ତିଆରି ଉପକରଣ ରଖିବା ପାଇଁ ଆଉ ଗୋଟିଏ କୋଠରୀ ଭଡା ନେଲି । ନିର୍ଦ୍ଦିଷ୍ଟ ଦିନରେ ଆମେ ସବୁ ବସ୍‌ରେ ଭୁବନେଶ୍ୱର ଆସିଲୁ । ଟ୍ରକ୍‌ଟି ସିମେଣ୍ଟ ଓ ଆମ ଜିନିଷ ପତ୍ର ଧରି ଆମେ ଆସିବା ପରେ ପରେ ପହଁଞ୍ଚିଲା । ସେତେବେଳେ ମୁଁ ନିଜେ ଘର କାମ ଦେଖା ଶୁଣା କରୁଥିଲି । ଦିନ ୯ଟା ସମୟରେ ଷ୍ଟୁଡେଣ୍ଟ ସ୍ପେଶାଲ ବସ୍‌ରେ ଭୁବନେଶ୍ୱର ଠାରୁ କଟକ ଯାଉଥିଲି ଏବଂ ୫ଟା ସମୟରେ ପୁଣି ଭୁବନେଶ୍ୱର ଫେରି ଆସୁଥିଲି । ପ୍ରାୟ ଖରାବେଳେ ଖାଇବା ପାଇଁ କିଛି ଜଳଖିଆ ନେଇଯାଉ ଥିଲି । ସେହିବର୍ଷ ଡକ୍ଟର ଏ.କେ. ଦତ୍ତ ରେଭେନ୍ସା କଲେଜର ମୟୁରଭଞ୍ଜ ପ୍ରଫେସର ପଦ ଛାଡି କଲିକତା ବିଶ୍ୱବିଦ୍ୟାଳୟରେ ପାଲିତ୍ ପ୍ରଫେସର ରୁପେ ଯୋଗ ଦେବାକୁ ଗଲେ । ତା ପୂର୍ବରୁ ମୋତେ ସ୍ପେକ୍‌ଟ୍ରୋସ୍କୋପି ଥିଓରି କ୍ଲାସ୍ ନେବା ପାଇଁ କହିଲେ ।

## ସ୍ନାତକୋତ୍ତର ବିଜ୍ଞାନ ଶିକ୍ଷା

ସେହି ବର୍ଷ ଡକ୍ଟର ଦର ଚାଲି ଯିବାରୁ ଡକ୍ଟର ପ୍ରଧାନଙ୍କୁ ସ୍ପେକ୍ଟ୍ରୋସ୍କୋପି ପ୍ରାକ୍ଟିକାଲର ପରୀକ୍ଷକ ରୂପେ ଉତ୍କଳ ବିଶ୍ୱବିଦ୍ୟାଳୟ ନିଯୁକ୍ତି ଦେଇଥିଲା । କିନ୍ତୁ କୌଣସି କାରଣରୁ ସେ ପରୀକ୍ଷା କରିବାକୁ ମନା କଲେ । ତେଣୁ ମୁଁ ସେହି ପରୀକ୍ଷା କରିବା ପାଇଁ ନିଯୁକ୍ତ ହେଲି । ବନାରସ୍ ବିଶ୍ୱବିଦ୍ୟାଳୟର ପ୍ରଫେସର ଡକ୍ଟର ନନ୍ଦଲାଲ ସିଂହ ସ୍ପେକ୍ଟ୍ରୋସ୍କୋପି ପ୍ରାକ୍ଟିକାଲ ବାହ୍ୟ ପରୀକ୍ଷକ ରୂପେ ଆସିଥିଲେ । ସେ ସେତେବେଳେ କେଉଁଠି ରହୁଥିଲେ ମୋର ମନେନାହିଁ । ସେହି ବର୍ଷ ଡକ୍ଟର ତ୍ରିଲୋଚନ ପ୍ରଧାନ ରେଭେନ୍ସା କଲେଜରୁ ବିଦାୟ ନେଇ ସାହା ଇନିଷ୍ଟିଚ୍ୟୁଟ୍‌ରେ ଆସୋସିଏଟ୍ ପ୍ରଫେସର ଭାବେ ଯୋଗ ଦେଲେ । ତାଙ୍କୁ ମୋ ଗବେଷଣା ବିଷୟରେ ପଚାରିବାରୁ ସେ କହିଲେ ମୁଁ କଲିକତା ଯାଏ ତୁମକୁ ସାହା ଇନ୍‌ଷ୍ଟିଚ୍ୟୁଟ୍‌ରେ ଗୋଟିଏ ଗବେଷଣା ବୃତ୍ତିର ଯୋଗାଡ କରିଦେବି । ସେତେବେଳେ ମୋ ସ୍ତ୍ରୀର ଦଦେଇଙ୍କର ଓ.ଏମ୍.ପି ଡାକ୍ତରଖାନାରେ ମୃତ୍ୟୁ ହୋଇଗଲା । ତାଙ୍କର ମୃତ ଦେହ ସାଙ୍ଗରେ ଆମେ ସବୁ ପୁରୀ ଯାଇଥିଲୁ । ମୋ ସ୍ତ୍ରୀ ଓ ପିଲାମାନେ ପୁରୀରେ ରହିଲେ ମୁଁ ଚାଲି ଆସିଲି । ତାର କେତେ ଦିନ ପରେ ମୋର ଗୋଟିଏ ପୁତ୍ର ସନ୍ତାନ ପୁରୀରେ ଜନ୍ମ ହେଲା ।

ଏହି ସମୟରେ ଥରେ ହାଇସ୍କୁଲ୍ ପରୀକ୍ଷାର ମୁଖ୍ୟ ପରୀକ୍ଷକ ହିସାବରେ ମୁଁ ବିଜ୍ଞାନ ଖାତା ଦେଖୁଥିଲି ମୋର ସହକାରୀ ପରୀକ୍ଷକ ହିସାବରେ ପିପିଲି ହାଇସ୍କୁଲ୍‌ରେ ଜନାର୍ଦ୍ଦନ ବସ୍ତିଆ କାମ କରୁଥିବାର ମୁଁ ଜାଣିଲି । ତାଙ୍କୁ ମୋର ପରିଚୟ ଦେଇଥିଲି । ସେ ବହୁତ ଖୁସିରେ ମୋ ପାଖକୁ ଗୋଟିଏ ଚିଠି ଲେଖିଥିଲେ । ସେହିପରି ମଧ୍ୟ ଶ୍ରୀମତୀ ବସନ୍ତ କୁମାରୀ ଦେବୀ ନାମକ ଜଣେ ମୋ ସହପାଠୀ ଥିଲେ । ମୁଁ ହାଇସ୍କୁଲ୍‌ର ମୁଖ୍ୟ ପରୀକ୍ଷକ ଥିବା ସମୟରେ ଶ୍ରୀମତୀ ବସନ୍ତ କୁମାରୀ ଦେବୀ ମୋର ସହକାରୀ ପରୀକ୍ଷକ ହିସାବରେ କାମ କରୁଥିଲେ । ମୁଁ ତାଙ୍କୁ ଲେଖିକରି ପଚାରିଥିଲି ଆପଣ ରେଭେନ୍ସା କଲେଜରେ ମୋ ସାଙ୍ଗରେ ପଢୁଥିଲେ କି ? ସେ ଉତ୍ତର ଦେଇଥିଲେ ମୋର ଠିକ୍ ମନେଅଛି ଆପଣ ମୋ ସାଙ୍ଗରେ ବି.ଏସ୍‌ସି ପଢୁଥିଲେ । ଥରେ ଚିନ୍ତା ଭାଇନାଙ୍କ କୌଣସି ଉତ୍ସବରେ ମୁଁ ତାଙ୍କୁ ଭେଟିଥିଲି ।

ଭୁବନେଶ୍ୱର ଆସିବା ପୂର୍ବରୁ ମୁଁ ଗୋଟିଏ ଉଷା ସିଲେଇ ମେସିନ୍ କିଣିଥିଲି । ସେଥିରେ ଗୋଟିଏ ଇଲେକ୍‌ଟ୍ରିକ୍ ମୋଟର ଲାଗିଥିଲା । ଏହି ମେସିନ୍ କିଣିବା କଥା ବଡ ନାନୀ ଘରେ କହିଲି । ମୋର ଭାଣେଜୀ ମାନେ କହିଲେ ତୁମେ କାହିଁକି ସିଲେଇ ମେସିନ୍ କିଣିଲ ? ମାଇଁ ତ ସିଲାଇ କରିବେ ନାହିଁ । ତୁମେ ତ ଗବେଷଣାରେ ବ୍ୟସ୍ତ ରହିବ । ମୁଁ କଣ ଭାବିଲି କହିଲି ମୁଁ ନିଜେ ସିଲାଇ କରିବି । ସେମାନେ ହସିଲେ । ମୁଁ କହିଲି ଯେତେବେଳେ ମୋ ପାଇଁ ହାତରେ ଗୋଟିଏ ସାର୍ଟ ତିଆରି କରିବି ସେତେବେଳ ସେ ସାର୍ଟ ପିନ୍ଧି ତୁମ ଘରକୁ ଆସିବି । ଉଷା ମେସିନ୍ ସହିତ ଗୋଟିଏ ସିଲାଇ ବହି ମିଳିଥିଲା । କେତେ ଦିନ ଭିତରେ ସେହି ବହି ଦେଖି ମୋ ଝିଅମାନଙ୍କ ପାଇଁ ଫର୍କ ଓ ସ୍ତ୍ରୀ ପାଇଁ ବ୍ଲାଉଜ୍ ତିଆରି କରିବା ପାଇଁ ସକ୍ଷମ ହୋଇଥିଲି । ୧୯୬୩ ମସିହାରେ ହଳଦିଆ ଟେରିକଟ୍ କନାର ଗୋଟିଏ ସାର୍ଟ ତିଆରି କରି ବଡ ନାନୀ ଘରକୁ ପିନ୍ଧିକରି ଗଲି । ଅବଶ୍ୟ ସିଲାଇ ଭଲ ହୋଇନ'ଥିଲା । ଭାଣେଜୀମାନଙ୍କୁ କହିଲି ଏ ସାର୍ଟଟା ମୁଁ ନିଜେ ତିଆରି କରିଛି । ସେମାନେ ସବୁ ଆଶ୍ଚର୍ଯ୍ୟ ହୋଇଗଲେ ।

ମୁଁ ତ୍ରିଲୋଚନ ବାବୁଙ୍କ ପାଖରେ ଗବେଷଣା କରୁଥିଲି । ସେ ଶାହା ଇନିଷ୍ଟିଚ୍ୟୁଟ୍‌କୁ ଚାଲିଯିବା ପରେ ମୁଁ ତାଙ୍କୁ ଅନୁରୋଧ କରିଥିଲି ଆପଣ କିଛି ବୃତ୍ତିର ବ୍ୟବସ୍ଥା କରିଦେଲେ ମୁଁ କଲିକତାରେ ରହି ମୋର ଥିସିସ୍ କାମଟି ସାରିଦେବି । ତାପରେ ତ୍ରିଲୋଚନ ବାବୁଙ୍କ ଠାରୁ ଚିଠି ପାଇଲି ତୁମେ ଏଠାକୁ ଛୁଟି ନେଇ ଆସିଲେ ୩ ବର୍ଷ ଗବେଷଣା କରିବା ପାଇଁ ମାସକୁ ୩୦୦ ଟଙ୍କାର ଗୋଟିଏ ବୃତ୍ତି ଦିଆଯିବ । କିନ୍ତୁ ୩ ବର୍ଷ ଭିତରେ ତମ ଗବେଷଣା କାମ ସାରିବାକୁ ପଡିବ । ସେ ଚିଠିରେ ମୋତେ ଉପଦେଶ ଦେଇଥିଲେ ସଲିଡ ଷ୍ଟେଟ ଫିଜିକ୍ସର ଗୋଟିଏ କନଫରେନସ୍ କାନପୁରରେ ହେଉଛି ସେଥିରେ ଯୋଗଦିଅ । ମୁଁ ଯିବା ଆସିବା ଖର୍ଚ୍ଚ ଯୋଗାଡ଼ କରିଦେବି । ଆହୁରି ଲେଖିଥିଲେ ଆସନ୍ତା ଖରା ଛୁଟିରେ ଗୋଟିଏ ସମର ସ୍କୁଲ୍ ମାସେ କାଳ ହେଉଛି ତମେ ଯୋଗ ଦେବା ପାଇଁ ଦରଖାସ୍ତ କର । ସେମାନେ ସମସ୍ତ ଖର୍ଚ୍ଚ ବହନ କରିବେ । ମୁଁ କାନ୍‌ପୁରରୁ ଫେରିବା ସମୟରେ ତ୍ରିଲୋଚନ ବାବୁଙ୍କ ସାଙ୍ଗରେ ଫେରିଲି । ସେ କହିବାରୁ ତାଙ୍କ ଘରେ ରାତିରେ ରହିଲି । ତାପର ଦିନ ସକାଳେ ମୁଁ ଛୁଟି ନେଇ ଆସିଲେ କେଉଁଠାରେ ରହିବି ସେ ସବୁ ବିଷୟ ବୁଝିବା ପାଇଁ କଲିକତାର ବିଭିନ୍ନ ଲଜ୍‌କୁ ଯାଇ ବୁଝିଲି । ସେଦିନ ରାତିରେ ପୁରୀ ଏକ୍ସପ୍ରେସ୍‌ରେ ଫେରି ଆସିଲି ।

## ଡେଲାହାଉସୀ ଠାରେ ଗ୍ରୀଷ୍ମକାଳୀନ ସ୍କୁଲ

ସମର ସ୍କୁଲ୍ ୧୯୬୩ ମସିହା ଜୁନ୍ ୧ ଠାରୁ ୩୦ ପର୍ଯ୍ୟନ୍ତ ହେବ ବୋଲି ମୋ ପାଖକୁ ଚିଠି ଆସିଥିଲା । ମୁଁ ଦରଖାସ୍ତ କରିଥିଲି ଏବଂ ବଛା ହୋଇଥିଲି । ମେ ୨୮ ତାରିଖରୁ ଭୁବନେଶ୍ୱରରୁ ଟ୍ରେନ୍‌ରେ ଯାଇ କଟକରେ ଅପେକ୍ଷା କଲି । ସେହି ୨୮ ତାରିଖରେ ମୁଁ ଏବଂ ଶ୍ରୀ ଶିବପ୍ରସାଦ ମିଶ୍ର ହାୱଡା ଏକ୍ସପ୍ରେସ୍‌ରେ କଲିକତା ପର୍ଯ୍ୟନ୍ତ ଯାତ୍ରା କଲୁ । ହାୱଡା ଠାରୁ ସିଆଲଦା ଯାଇ ସିଆଲଦା-ପଠାଣକୋଟ ଏକ୍ସପ୍ରେସ୍‌ରେ ଯାଇ ପଠାଣକୋଟ ଠାରେ ୩୧ ତାରିଖ ଦିନ ସକାଳେ ପହଁଚିଲୁ ଏବଂ ସଙ୍ଗେ ସଙ୍ଗେ ଡେଲାହାଉସି ଯିବା ପାଇଁ ବସ୍‌ରେ ବସିଲୁ । ବସ୍‌ରେ ବସିବା ସମୟରେ ଅନ୍ୟ ଯାତ୍ରୀମାନେ ଆମ ଦୁଇଜଣଙ୍କୁ କହିଲେ ଗରମ କୋର୍ଟ ବାହାର କରି ହାତରେ ଧରନ୍ତୁ । ଅନ୍ୟମାନଙ୍କ ପରାମର୍ଶ ମାନି ହାତରେ କୋର୍ଟ ଧରିଲୁ । ଡେଲାହାଉସ୍ ଯିବା ରାସ୍ତାରେ କେବଳ ଗୋଟିଏ ବସ୍ ଯାଇପାରିବ । ଆମେ ୧୨ଟା ସୁଦ୍ଧା ରାସ୍ତା ମଝିରେ ଗୋଟିଏ ଜାଗାରେ ପହଁଚିଲୁ । ସେଠାରେ ଯେତେ ବସ୍ ଡେଲାହାଉସ୍ ଯାଉଥିଲା ସବୁ ବସ୍ ରହିଥିଲା ଏବଂ ପଠାଣକୋର୍ଟ ଯାଉଥିବା ସବୁ ବସ୍ ମଧ୍ୟ ସେଠାରେ ରହିଲା । ନିର୍ଦ୍ଦିଷ୍ଟ ସମୟରେ ସେଠାରୁ ବାହାରି ଡେଲାହାଉସ୍ ଠାରେ ସଂନ୍ଧ୍ୟା ୫ଟା ବେଳେ ପହଁଚିଲୁ । ବାଟରେ ତାପମାତ୍ରା ଏତେ ଜୋରରେ କମିବାକୁ ଲାଗିଲା ଯେ ଆମେ ବାଟରେ କୋର୍ଟ ପିନ୍ଧିବା ପାଇଁ ବାଧ୍ୟ ହେଲୁ । ମୁଁ ବୁଝିଲି ଅନ୍ୟ ଯାତ୍ରୀମାନେ କାହିଁକି କହୁଥିଲେ ହାତରେ କୋର୍ଟ ଧରନ୍ତୁ । ଡେଲାହାଉସ୍‌ରେ ପହଁଚି ବସ୍‌ରୁ ଓହ୍ଲାଇବା ମାତ୍ରେ ସେଠାର ଲୋକମାନେ ସବୁ ଆମ ଜିନିଷପତ୍ର ନେବାପାଇଁ ପହଁଚିଗଲେ । ସେମାନଙ୍କ ସାହାଯ୍ୟରେ ଆମେ ଜିନିଷପତ୍ର ନେଇ ଗୋଟିଏ ହୋଟେଲ୍‌ରେ ଯାଇ ରହିଲୁ । ସେଠାରୁ ଅନ୍ୟ କୌଣସି ଯାନର ବ୍ୟବସ୍ଥା ନ'ଥିଲା । ସେଠାରେ ବହୁତ ଶୀତ ହୁଏ । ତେଣୁ ଡେଲାହାଉସ୍ ନାମକ ଜଣେ ଭାରତର ଇଂରେଜ ଗଭର୍ଣ୍ଣର ଜେନେରାଲ ସେହି ସହରଟିକୁ ବସାଇ ଥିଲେ । ତାଙ୍କ ନାମ ଅନୁସାରେ ଏହି ଜାଗାର ନାମକରଣ

ହୋଇଥିଲା । ଡେଲାହାଉସ୍‌ର ଥଣ୍ଡା ଯୋଗୁଁ ମୋର ଛାତିରେ ଯେଉଁ କଷ୍ଟ ହେଉଥିଲା ତାର ଲକ୍ଷଣ ଦେଖାଗଲା । ମୁଁ ତେଣୁ ସେଠାରେ ପୁରା ମାସେ ନ'ରହି ଦଶବାର ଦିନ ପରେ ଭୁବନେଶ୍ୱର ଫେରି ଆସିବାକୁ ଚାହିଁଲି । ସମସ୍ତେ ଏକୁଟିଆ ଫେରିବାକୁ ମନା କଲେ । ପରେ ଜାଣିଲି ଡକ୍ଟର ଦୁର୍ଯ୍ୟୋଧନ ମଙ୍ଗରାଜ କେମେଷ୍ଟ୍ରି ଅଧ୍ୟାପକ ୧୨ ତାରିଖରେ ଡେଲାହାଉସ୍‌ରୁ ଖଡଗପୁର ଆସୁଥିଲେ । ତାଙ୍କ ସାଙ୍ଗରେ ଆସିବା ପାଇଁ ଠିକ୍ କଲି । ୧୨ ତାରିଖ ଦିନ ସକାଳୁ ଡେଲାହାଉସ୍‌ରୁ ବସ୍‌ରେ ଆସି ପଠାଣ କୋର୍ଟ ଠାରେ ଟ୍ରେନ୍‌ରେ ବସିଲୁ । କିଛିବାଟ ଗଲାପରେ ରାତି ହେବାରୁ କଣ୍ଡକ୍ଟର କହିଲା ଆପଣଙ୍କର ସଂରକ୍ଷଣ ନାହିଁ । ତେଣୁ ଆପଣ ଗାଡିରୁ ଓହ୍ଲାଇ ଗୋଟିଏ ଷ୍ଟେସନରେ ଅପେକ୍ଷା କରନ୍ତୁ ପୁଣି ସକାଳ ହେଲେ ଅନ୍ୟ ଗାଡିରେ ଯିବେ । ଦୁର୍ଯ୍ୟୋଧନ ବାବୁ କହିଲେ ଆମେ ଦୁଇଜଣ ଗୋଟିଏ ବର୍ଥରେ ଶୋଇଯିବୁ । ଏଥିରେ କଣ୍ଡକ୍ଟର ରାଜି ହେଲା । କେତେଟା ଷ୍ଟେସନ ଗଲାପରେ ମୋ ପାଇଁ ଗୋଟିଏ ଶୋଇବା ଯାଗା ସଂରକ୍ଷଣ କରିଦେଲା । ତେଣୁ ମୋର ହାଓ୍ୱାଡା ପର୍ଯ୍ୟନ୍ତ କିଛି ଅସୁବିଧା ହେଲାନାହିଁ । ଦୁର୍ଯ୍ୟୋଧନ ବାବୁ କହିଲେ ମୁଁ କଲିକତାରେ ରହିଯିବି । ଆମେ ଦୁଇଜଣ ଚେଷ୍ଟା କଲୁ କିନ୍ତୁ ସଂରକ୍ଷଣ ମିଳିଲା ନାହିଁ । ମୁଁ କଣ୍ଡକ୍ଟରଙ୍କୁ ଅନୁରୋଧ କରି ଫାଷ୍ଟକ୍ଲାସ୍ ତଳେ ଶେଜ ପକାଇ ଶୋଇଗଲି । ସେ ମୋତେ ଖଡଗପୁର ଠାରେ ଗୋଟିଏ ଶୋଇବା ଯାଗା ସଂରକ୍ଷଣ କରିଦେଲେ । ମୁଁ ସୁବିଧାରେ ଆସି ଭୁବନେଶ୍ୱରରେ ପହଞ୍ଚିଗଲି ।

ବର୍ଷକ ପୂର୍ବରୁ ମୁଁ ଓ ଦୁର୍ଗାପଦ ବାବୁ ମିଶିକରି ଗୋଟିଏ ବୈଜ୍ଞାନିକ ପ୍ରବନ୍ଧ ଇଣ୍ଡିଆନ ଜରନାଲ ଅଫ ଫିଜିକ୍ସକୁ ପଠାଇଥିଲୁ । ସେହି ପ୍ରବନ୍ଧଟି ଛପା ହୋଇଥିଲା । କିନ୍ତୁ ମୁଁ ଦୁଃଖର ସହିତ ଲେଖୁଛି ସେତେବେଳକୁ ଦୁର୍ଗାପଦ ବାବୁଙ୍କର କାଳ ହୋଇଯାଇଥିଲା । ସେ ୧୯୬୨ ମସିହାରେ ବ୍ରେନ୍ ଟ୍ୟୁମର ଯୋଗୁଁ ପୀଡିତ ହୋଇ ଭେଲୋର ଅପରେସନ୍ ହେବାକୁ ଯାଇଥିଲେ । ଅପରେସନ୍ ପରେ ସେ ଆସି ବାପୁଜୀ ନଗରରେ ତାଙ୍କର ଭଉଣୀଙ୍କ ଘରେ ରହୁଥିଲେ । ସେହିଠାରେ ତାଙ୍କର ମୃତ୍ୟୁ ହୋଇ ଯାଇଥିଲା ।

ଚାକିରୀ କରିବାର କେତେ ବର୍ଷ ଭିତରେ ପୁରାତନ ଛାତ୍ରମାନଙ୍କର ବାର୍ଷିକ ଉତ୍ସବରେ ଗୋଟିଏ ଆନନ୍ଦ ମେଳା ଆୟୋଜନ ହୋଇଥିଲା । କେଉଁ ବର୍ଷ ହୋଇଥିଲା ତାହା ମୋର ମନେ ନାହିଁ । ସେହି ଆନନ୍ଦ ମେଳାରେ ସବୁ ବିଭାଗ ପକ୍ଷରୁ କୌଣସି ପ୍ରକାର ପରୀକ୍ଷା ଦେଖାଇ ସାଧାରଣ ଦର୍ଶକଙ୍କ ଠାରୁ ପଇସା ସଂଗ୍ରହ କରିବାର ଠିକ୍ ହୋଇଥିଲା । ସବୁ ବିଭାଗ ପକ୍ଷରୁ ଜଣେ ଅଧ୍ୟାପକଙ୍କୁ ଦାୟିତ୍ୱ ଦିଆଯାଇ ଥିଲା ଏବଂ ପଦାର୍ଥ ବିଜ୍ଞାନ ବିଭାଗରେ ମୋତେ ଦାୟିତ୍ୱ ଦିଆଯାଇଥିଲା । କଳା ବିଭାଗରେ ଗୋଟିଏ କ୍ୟାଣ୍ଟିନ୍‌ରେ ଜଳଖିଆ ତିଆରି କରି ଆନନ୍ଦ ମେଳାରେ ସବୁ ଦର୍ଶକ ମାନଙ୍କୁ ବିକିବା ପାଇଁ ବ୍ୟବସ୍ଥା କରାଯାଇ ଥିଲା । ସଂଗୃହିତ ପଇସା କୌଣସି ଅନୁଷ୍ଠାନକୁ ଦିଆଯିବାର ଠିକ୍ ହୋଇଥିଲା । ମୋର ତାହା ମନେନାହିଁ । ପଦାର୍ଥବିଜ୍ଞାନ ବିଭାଗରେ କେତେ ଗୁଡିଏ ପରୀକ୍ଷା ଦେଖାଇ ପଇସା ସଂଗ୍ରହ କରାଯାଇଥିଲା । ସଂଗୃହିତ ପଇସା ସବୁ କଲେଜ ଅଫିସ୍‌ରେ ଜମା ଦିଆଯାଇଥିଲା । ନିମ୍ନଲିଖିତ ପରୀକ୍ଷା ଗୁଡିକ ଉପରେ ସାମାନ୍ୟ ଆଲୋଚନା କଲେ ପାଠକ ମାନଙ୍କୁ ଭଲ ଲାଗିବ ବୋଲି ମୁଁ ଭାବୁଛି ।

୧. ଏକ ଟେବୁଲ୍ ଉପରେ ଗୋଟିଏ ପଟଲା କାଠପଟା ସାମାନ୍ୟ ଗଡାଣିଆ ଭାବରେ

ରଖାଯାଇ ଥାଏ । ତିନୋଟି ସାଇକେଲ୍‌ରେ ବ୍ୟବହାର କରାଯାଉଥିବା ଗୁଲି ଉପରୁ ଗଡାଇ ଦେଲେ ଯେପରି ନିର୍ଦ୍ଦିଷ୍ଟ ଜାଗାରେ ରହିବ । ୩ଟି ଗୁଲି ଗଡାଇବା ପାଇଁ ଜଣକୁ ୫୦ ପଇସା ଦେବାକୁ ପଡିବ । ଯଦି ଗୋଟିଏ ଗୁଲି ନିର୍ଦ୍ଦିଷ୍ଟ ଜାଗାରେ ରହେ ସେ ୧ଟଙ୍କା ପାଇବ । ସେହି ଜାଗାରେ ନ'ରହିବା ପାଇଁ ପଚଳା କାଠ ପଟା ତଳେ ଗୋଟିଏ ଶକ୍ତିଶାଳୀ ଚୁମ୍ବକ ବାହାରକୁ ଦେଖା ନ'ଯିବା ଭଳି ରଖି ଦିଆଯାଇ ଥିଲା । ଗୁଲିଟି ଗଡିଯିବା ସମୟରେ ଟାଣି ହୋଇଯାଇ ନିର୍ଦ୍ଦିଷ୍ଟ ଜାଗାରେ ପଡେ ନାହିଁ ।

୨. ଗୋଟିଏ ବଡ କାଚ ପାତ୍ରରେ ଅଧାରୁ ବେଶୀ ପାଣି ରଖାଯାଇଥାଏ । ସେ ପାତ୍ରରେ ପ୍ରାୟ ମଝିରେ ଗୋଟିଏ ଛୋଟ ଠିପି ରଖାଯାଇଥାଏ । ପୂର୍ବ ପରୀକ୍ଷା ପରି ତିନୋଟି ଗୁଲି ଜଣେ କିଣିବ । ଗୁଲିରୁ ଗୋଟିଏ ସେହି ଠିପି ଭିତରେ ପକାଇ ଦେଲେ ସେ କିଣିଥିବା ଗୁଲି ସବୁର ଦୁଇଗୁଣ ପଇସା ପାଇବ । କିନ୍ତୁ ସେ ଗୁଲି କାଚ ପାତ୍ରର ଏକ ପାଖରୁ ଦେଖି ପକାଇବାକୁ ପଡିବ । କିନ୍ତୁ କେହି ପକାଇ ପାରନ୍ତି ନାହିଁ । କାରଣ ପ୍ରତିଶରଣ ଯୋଗୁଁ ଠିପିଟି ପାଖରେ ଥିବାପରି ଦେଖାଯାଏ । ଏହିପରି ଆଉ କେତେଗୁଡିଏ ପରୀକ୍ଷା ଦେଖାହୋଇ ପଇସା ଆଦାୟ କରାଯାଉଥିଲା ।

୩. ପ୍ରଧାନ ଦେଖିବାର ପରୀକ୍ଷା ହେଲା ଗୋଟିଏ ପାତ୍ରରୁ ଗୋଟିଏ କାଚ ନଳୀ ବାହାରି ଥାଏ । ଗ୍ଲାସ୍‌ଟିଏ ସେହି କାଚ ନଳୀ ତଳେ ରଖି ଗୋଟିଏ ସ୍ଥାନରେ ଗୋଟିଏ ୫୦ ପଇସାର ମୁଦ୍ରା ପକାଇ ଦେଲେ । କାଚ ନଳୀ ଦେଇ ଥଣ୍ଡା ପାଣି ବୋହି ଆସେ ଓ ଗ୍ଲାସ୍‌ଟି ପୂର୍ଣ୍ଣ ହୋଇଗଲେ ପାଣି ଆସିବା ଆପେ ଆପେ ବନ୍ଦ ହୋଇଯାଏ । ଏହି ଯନ୍ତ୍ରଟି ଲେଖକ ନିଜେ ପଦାର୍ଥବିଜ୍ଞାନ କର୍ମଶାଳାରେ ମେକାନିକ୍‌ମାନଙ୍କ ଦ୍ୱାରା କରାଇଥିଲେ । ତାର କାର୍ଯ୍ୟକାରିତା ପ୍ରଣାଳୀ ପିଲାଙ୍କୁ ବୁଝାଇବା ପାଇଁ ଗୋଟିଏ ଚିତ୍ର ଦେଇଥିଲି । ଫ୍ଲସ୍ ପାଇଖାନାର କାର୍ଯ୍ୟକରିବା ପ୍ରଣାଳୀ ପରି ଏହା ତିଆରି କରାଯାଇଥିଲା ।

୧୯୬୩ ଅଗଷ୍ଟ ମାସ ସୁଦ୍ଧା ଭୁବନେଶ୍ୱର ଘର ତିଆରି ପ୍ରାୟ ସରିଯାଇଥିଲା । ଘର ପ୍ରତିଷ୍ଠା ସେହିବର୍ଷ ଦଶହରା ଦିନ କରିବା ପାଇଁ ଆୟୋଜନ କରିଥିଲି । ଘର ପ୍ରତିଷ୍ଠା ଦିନ ରାତ୍ର ଭୋଜନ ପାଇଁ ବହୁତ ଲୋକଙ୍କୁ ନିମନ୍ତ୍ରଣ କରାଯାଇଥିଲା । ସେଥିପାଇଁ ପୁରୀରୁ ମହାପ୍ରସାଦ ଓ କ୍ଷୀରୀ ଆଣିବାର ବନ୍ଦୋବସ୍ତ କରାଯାଇଥିଲା । ଦୁର୍ଯୋଗକୁ ପୁରୀ ଦେଉଳରେ ମାଘସ୍ନାନ ପଡିଗଲା । ତେଣୁ ଅଭଡା ବାହାରି ପାରିଲା ନାହିଁ । ଆମେ ମନ ଖୁସିରେ କାହାରିକୁ ଖାଇବାକୁ ଦେଇ ପାରିଲୁ ନାହିଁ । କେବଳ ପୁରୀ ତରକାରି କରି ମାତ୍ର କେତେ ଜଣଙ୍କୁ ଖାଇବାକୁ ଦେଲୁ ଓ ଅନ୍ୟମାନେ ସେମିତି ଫେରିଗଲେ । ଅଭଡା ଓ କ୍ଷୀରୀ ତା ପରଦିନ ସକାଳୁ ଆସି ପହଞ୍ଚିଲା । ଅଭଡା ଓ କ୍ଷୀରୀକୁ ଗୋଟିଏ ଗାଡିରେ ଧରି ଭୁବନେଶ୍ୱରର ଯେଉଁ ଲୋକମାନଙ୍କୁ ଡକାଯାଇଥିଲା ସେମାନଙ୍କ ଘରକୁ ଯାଇ ବାଣ୍ଟି ଦିଆଯାଇଥିଲା । ତାପରେ ଆମେ ଭଡା ଘର ଛାଡି ନିଜ ଘରେ ରହିଲୁ ।

୧୯୬୪ ମସିହା ଆରମ୍ଭରୁ ସ୍ନାତକୋତ୍ତର ଛାତ୍ରାବାସର ପରିଚାଳକ ପାଇଁ କଲେଜରେ ଦରଖାସ୍ତ ଆହ୍ୱାନ କରାଯାଇଥିଲା । ଅଧ୍ୟକ୍ଷ ଡକ୍ଟର ବଂଶୀଧର ସାମନ୍ତରା ଦିନେ ମୋତେ ପଚାରିଲେ ତୁମେ ସ୍ନାତକୋତ୍ତର ଛାତ୍ରାବାସର ପରିଚାଳକ ପାଇଁ ଦରଖାସ୍ତ କରିଛ କି ? ମୁଁ

କହିଲି 'ହଁ ସାର' । ଆଉ ମୋତେ କିଛି କହିଲେ ନାହିଁ । ଦିନେ ହଠାତ୍ ଅଧ୍ୟକ୍ଷଙ୍କ ଠାରୁ ଚିଠି ପାଇଲି ତୁମକୁ ସ୍ନାତକୋତ୍ତର ଛାତ୍ରାବାସର ପରିଚାଳକ ଭାବେ ନିଯୁକ୍ତ କରାଗଲା । ତୁମେ ଶୀଘ୍ର କାର୍ଯ୍ୟଭାର ଗ୍ରହଣ କର । ମୋ ଠାରୁ ବରିଷ୍ଠ ଅଧ୍ୟାପକ ମାନେ ମଧ୍ୟ ଦରଖାସ୍ତ କରିଥିଲେ । କାହିଁକି କେଜାଣି ଅଧ୍ୟକ୍ଷ ଡକ୍ଟର ବଂଶୀଧର ସାମନ୍ତରାୟଙ୍କର 'ମୋ ଉପରେ କାର୍ଯ୍ୟଦକ୍ଷ ଅଧ୍ୟାପକ ବୋଲି ଧାରଣା ଜାତ ହୋଇଥିଲା' । ମୁଁ ମନେ କରୁଛି ସାଇନସ୍ କଂଗ୍ରେସର ସଂପାଦକ ଥିବା ସମୟରେ ତାଙ୍କର ଏପରି ଧାରଣା ଜାତ ହୋଇଥିବ ।

## ପରିଚାଳକ, ସ୍ନାତକୋତ୍ତର ଛାତ୍ରାବାସ ଓ କୋଣାର୍କ ପରିଦର୍ଶନ

ନିଯୁକ୍ତି ପାଇବା ପରେ ମୁଁ କାର୍ଯ୍ୟରେ ଯୋଗଦେଲି । ମୁଁ କାର୍ଯ୍ୟରେ ଯୋଗଦେଇ, ସେହିଦିନ ଭୁବନେଶ୍ୱର ଚାଲିଆସିଲି । ସେତେବେଳେ ଛାତ୍ରାବାସର ସାଧାରଣ ସଂପାଦକ ଥିଲେ ଶ୍ରୀ ଭବାନି ପ୍ରସାଦ ଦାସ । ତାପର ଦିନ ସେ ମୋତେ ବଣଭୋଜିରେ କୋଣାର୍କ ଯିବାକୁ ଭୁବନେଶ୍ୱର ଆସି ଅନୁରୋଧ କଲେ । ମୁଁ ତାଙ୍କୁ ବହୁତ ମନାକଲି । କାରଣ ମୁଁ କୋଣାର୍କ ଦୁଇତିନି ଥର ଦେଖିଛି । ସେ ବହୁତ ବାଧ୍ୟ କରିବାରୁ ମୁଁ ପିଲାଙ୍କ ସାଙ୍ଗରେ ବଣଭୋଜି କରିବାକୁ କୋଣାର୍କ ଗଲି । କୋଣାର୍କରେ ପହଁଚି ରୋଷେୟା ମାନେ ରନ୍ଧାରନ୍ଧିରେ ଲାଗିଗଲେ । ପିଲାମାନେ କୋଣାର୍କର ବିଭିନ୍ନ ସ୍ଥାନ ଦେଖିବାକୁ ଚାଲିଗଲେ । ରୋଷେଇ ସରିଲାପରେ ଆମେ ସମସ୍ତେ ଖାଇ ବସ୍‌ରେ ଚନ୍ଦ୍ରଭାଗା ଦେଖିବାକୁ ଗଲୁ । ଚନ୍ଦ୍ରଭାଗା ବୁଲି ପୁଣି କୋଣାର୍କ ଆସିଲୁ । ଆସିଲାପରେ କୋଣାର୍କର ସୂର୍ଯ୍ୟ ମନ୍ଦିର ପରିସର ଭିତରକୁ ଦେଖିବାକୁ ଗଲୁ । ପିଲାମାନେ ଏହି କାରୁକାର୍ଯ୍ୟ ଦେଖି ସବୁ ଆଶ୍ଚର୍ଯ୍ୟ ହୋଇଗଲେ । ମୁଁ କୋଣାର୍କ ଆଗରୁ ଦୁଇତିନି ଥର ଦେଖିଥିବାରୁ ମୋତେ କିଛି ନୂଆ ଲାଗିଲାନାହିଁ । ମୁଁ ଗୋଟିଏ ସ୍ଥାନରେ ବିଶ୍ରାମ ନେଲି । ପ୍ରାୟ ସନ୍ଧ୍ୟା ବେଳକୁ ଆମେ ଯାଇଥିବା ବସ୍‌ରେ ବସି କଟକ ଅଭିମୁଖେ ଯାତ୍ରାକଲୁ । ମୁଁ ଭୁବନେଶ୍ୱରର ଆମ ଘରପାଖରେ ଓହ୍ଲାଇ ଗଲି । ପିଲାମାନେ ସେହି ବସ୍‌ରେ କଟକ ଗଲେ ।

ବଣଭୋଜିର ପରେ ଭୁବନେଶ୍ୱର ଘରେ ଜଣେ ବଙ୍ଗାଳୀ ଭଦ୍ର ଲୋକଙ୍କୁ ଭଡା ଦେଇ ଦେଲି । ତାର ୩/୪ ଦିନ ପରେ ଏକ ଛୋଟ ଟ୍ରକରେ ଜିନିଷ ରଖି ମୁଁ କଟକ ଚାଲି ଆସିଲି । ପିଲାମାନେ ସମସ୍ତେ ବସ୍‌ରେ କଟକ ଚାଲି ଆସିଲେ । ଆମେ ସମସ୍ତେ ପୋଷ୍ଟଗ୍ରାଜୁଏଟ୍ ଛାତ୍ରାବାସର ପରିଚାଳକଙ୍କ ବାସଘରେ ରହିଲୁ । ପରବର୍ଷ ଆରମ୍ଭର ଅଳ୍ପ କେତେଦିନ ପରେ ଗୋଟିଏ ରେଡିଓ ତିଆରି ଦୋକାନରୁ କଲେଜ ପିଲାଙ୍କ ସଙ୍ଗେ ଗୋଳମାଳ ଆରମ୍ଭ ହେଲା । ସରକାରଙ୍କର ଭୁଲ୍ ନିଷ୍ପତ୍ତି ଯୋଗୁଁ ସେ ଗୋଳମାଳ ଓଡିଶା ସାରା ବ୍ୟାପିଗଲା । ଦିନେ ରେଭେନ୍ସା କଲେଜର ପିଲାମାନେ ଗୋଳମାଳ କରିବାରୁ ତାଙ୍କ ଭିତରୁ କେତେ ଜଣଙ୍କୁ ଗିରଫ କରି ନେଇ କଟକ ଜେଲ୍‌ରେ ରଖିଲେ । ପୋଷ୍ଟଗ୍ରାଜୁଏଟ୍ ଛାତ୍ରାବାସର ଶ୍ରୀ ବାନାମ୍ବର ମାର୍ଥା, ଶ୍ରୀ ରତ୍ନାକର ପାତ୍ରୀ ଓ ଆଉ କେତେ ଜଣ ଜେଲ୍‌ରେ ଅନଶନ କଲେ । ସେମାନଙ୍କ ମଧ୍ୟରୁ ବାନାମ୍ବରଙ୍କର ସ୍ୱାସ୍ଥ୍ୟର ଅବନତି ଘଟିବାରୁ ତାଙ୍କୁ ଜେଲ୍‌ରୁ ମୁକ୍ତ କରିଦିଆ ଗଲା । ତାପରେ ପିଲାମାନଙ୍କର କହିବା ଅନୁସାରେ ଅନ୍ୟ ପିଲାଙ୍କୁ କଣ ପ୍ରତିଶ୍ରୁତି ଦେଇ ସମସ୍ତଙ୍କୁ ଛାଡିଦେଲେ । ପୁଣି ଥରେ ସରକାର ପ୍ରତିଶ୍ରୁତି ଭାଙ୍ଗିବାରୁ ପିଲାମାନେ ପୁଣି ଥରେ ଧର୍ମଘଟ କଲେ । ପୁଣି

କେତେଜଣ ପିଲାଙ୍କୁ ଗିରଫ କରି ଜେଲ୍‌ରେ ରଖିଲେ । ଶ୍ରୀ ରତ୍ନାକର ପାତ୍ରୀଙ୍କୁ ଗିରଫ କରି ନ'ଥିଲେ । ସେ ଜେଲ୍ ଫାଟକ ଆଗରେ ଆସି ତାଙ୍କୁ ପୁଣି ଥରେ ଗିରଫ କରିବା ଲାଗି ଦାବି କଲେ । ତାଙ୍କୁ ଗିରଫ ନ'କରିବାରୁ ସେ ଆସି କଲେଜ ହତା ଭିତରେ ଅନଶନ ଧର୍ମଘଟ କଲେ । ଅଧ୍ୟକ୍ଷ ସେଠାରେ ଅନଶନ ଧର୍ମଘଟ କରିବାକୁ ମନା କରିବାରୁ ସେ ଯାଇ ପଶ୍ଚିମ ଗେଟ୍ ପାଖରେ ଗୋଟିଏ ଗଛ ମୂଳରେ ବସି ଅନଶନ ଧର୍ମଘଟ କଲେ । ତାଙ୍କ ଅବସ୍ଥା ଖରାପ ହେବାରୁ ପ୍ରଫେସର ଓ ଅଧ୍ୟାପକମାନେ ଯାଇ ତାଙ୍କୁ ବୁଝାଇ ତାଙ୍କ ଧର୍ମଘଟ ଭଙ୍ଗ କଲେ । ଏହି ସମୟରେ ମୋର ଶ୍ୱଶୁର ଆନନ୍ଦ ମିଶ୍ରଙ୍କର ପୁରୀରେ ମୃତ୍ୟୁ ହୋଇଗଲା । ତାଙ୍କ ଦଶାହ କ୍ରିୟାରେ ମୁଁ ଯୋଗ ଦେଇ ପାରିଲି ନାହିଁ । ବାଧ୍ୟ ହୋଇ ପିଲାଙ୍କୁ ପଠାଇ ଦେଲି । ମୁଁ ଏକା ରହିଲି । କଲେଜରେ ଧର୍ମଘଟ ଚାଲିଥିବା ସମୟରେ ଛାତ୍ରାବାସର ଶ୍ରୀ ନାରାୟଣ ପୃସେଥ ନାମକ ଜଣେ ଛାତ୍ର ସାଧାରଣ ସଂପାଦକ ଭାବରେ ନିର୍ବାଚିତ ହୋଇଥିଲେ । ଦିନେ ପୋଲିସ୍ ଆସି ପଚାରିଲା ଏହି ତାଲିକା ଭିତରୁ କେଉଁ ପିଲାମାନେ ଆପଣଙ୍କ ଛାତ୍ରାବାସରେ ରହନ୍ତି । ମୁଁ କହିଲି ସେ ତାଲିକାଟି ଦେଇଯାଅ ପରେ କହିବି । ସେଥିରେ ନାରାୟଣ ପୃସେଥଙ୍କ ନାମ ଥିଲା । ମୋତେ ଲାଗିଲା ତାଙ୍କ ନାମରେ ବୋଧେ ଗିରଫ ପରୱାନା ଅଛି । ପୋଲିସ୍ ଗଲାପରେ ମୁଁ ତାଙ୍କୁ ଡାକି ସବୁ କଥା କହିଲି । ସେ ବଡ ବ୍ୟସ୍ତ ହେଲେ । କହିଲେ ଆପଣ ମୋତେ ଟିକିଏ ସାହାଯ୍ୟ କରନ୍ତୁ । ଯେପରି ମୋତେ ପୋଲିସ୍ ଗିରଫ କରି ପାରିବ ନାହିଁ । ମୁଁ କହିଲି 'ତମେ ଆଉ ଛାତ୍ରାବାସରେ ନ'ରହି ଆଜି ରାତିରେ ତମଘରକୁ ଚାଲିଯାଅ । ମୋତେ ଗୋଟିଏ ଦରଖାସ୍ତ ଦିଅ ଯେ ମୁଁ ଘରକୁ ଯାଉଛି । ଧର୍ମଘଟ ବନ୍ଦ ହେଲେ ଆସିବି । ସେ ସାଙ୍ଗେ ସାଙ୍ଗେ ଗୋଟିଏ ଦରଖାସ୍ତ ଲେଖିଦେଇ ଚାଲିଗଲେ । ତାପର ଦିନ ପୋଲିସ୍ ଆସି ପଚାରିଲା । ମୁଁ କହିଲି ଜଣେ ଥିଲେ ସେ ଘରକୁ ଚାଲି ଯାଇଛନ୍ତି । ଧର୍ମଘଟ ବନ୍ଦ ନ'ହେବାରୁ ଭାରତ ସରକାରଙ୍କର ମୁଣ୍ଡ ବ୍ୟଥା ହେଲା । ସେତେବେଳେ ଶ୍ରୀ ଗୁଲ୍‌ଜାରିଲାଲ ନନ୍ଦା ଭାରତ ସରକାରଙ୍କର ଘରୋଇ ମନ୍ତ୍ରୀ ଥିଲେ । ସେ ନିଜେ ରେଭେନ୍ସା କଲେଜ ଆସି ଛାତ୍ରମାନଙ୍କ ସହିତ କଥାବାର୍ତ୍ତା କଲେ । ଛାତ୍ରମାନେ ଶାନ୍ତ ହୋଇଗଲେ । ପୁଣି ସୁରୁଖୁରୁରେ କ୍ଲାସ୍ ସବୁ ଚାଲିଲା ।

## ବରିରାମଚନ୍ଦ୍ରପୁର କଲେଜରେ ପ୍ରାକ୍‌ଟିକାଲ ପରୀକ୍ଷା

ଏହି ୧୯୬୫ ମସିହାରେ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟରୁ ବରିରାମଚନ୍ଦ୍ରପୁର କଲେଜର ଇଣ୍ଟର ମିଡିଏଟ୍‌ର ପ୍ରାକ୍ଟିକାଲ୍ ପରୀକ୍ଷା କରିବା ପାଇଁ ନିର୍ଦ୍ଦେଶ ପାଇଥିଲି । ମୁଁ ବୁଝାବୁଝି କରି ଜାଣିଲି ଯେ ବରିରାମଚନ୍ଦ୍ରପୁର କଲେଜକୁ ସହଜରେ ଯାଇହେବ ନାହିଁ । କାରଣ ରାସ୍ତାର ସୁବିଧା ନାହିଁ । ସେଥିପାଇଁ ମନା କରିଦେବି ବୋଲି ଠିକ୍ କରିଥିଲି କିନ୍ତୁ ଗୋଟିଏ ଚିଠି କଲେଜର ପରୀକ୍ଷକଙ୍କ ଠାରୁ ପାଇଲି । ସେ ମୋତେ ଅନୁରୋଧ କରି କହିଲେ ଆମ କଲେଜକୁ ଆସିବା ପାଇଁ ରାସ୍ତାନାହିଁ । ତେଣୁ ଆପଣ ପରୀକ୍ଷାର ପୂର୍ବଦିନ ବସ୍‌ରେ ଇନ୍ଦୁପୁର ପର୍ଯ୍ୟନ୍ତ ଆସି ଇନ୍ଦୁପୁର ହାଇସ୍କୁଲ୍‌ରେ ରାତ୍ରିରେ ରହିଯିବେ ଏବଂ ତାପର ଦିନ ସକାଳେ ବଡ ଡଙ୍ଗାରେ ନଦୀ ପାରିହେବା ପରେ କଲେଜରୁ ଦୁଇଜଣ ବ୍ୟକ୍ତି ଦୁଇଟି ସାଇକେଲ ନେଇ ନଦୀର କୂଳରେ ଆପଣଙ୍କୁ ଅପେକ୍ଷା କରିଥିବେ । ଆପଣ ଜଣଙ୍କ ସାଇକେଲର ପଛପଟରେ ବସି କଲେଜକୁ ଆସିବେ ଏବଂ ପରୀକ୍ଷାପରେ ପୁଣି ଆପଣଙ୍କୁ ସେହିଭଳି ଭାବରେ ଛାଡି ଦେଇ ଆସିବେ । ଆପଣ ଇନ୍ଦୁପୁରରେ

ପୁଣି ଏକ ରାତି କଟାଇ ତାପର ଦିନ ସକାଳେ କଟକ ଚାଲିଯିବେ । ଏ ଚିଠିଟି କଲେଜ ପରୀକ୍ଷକଙ୍କ ଠାରୁ ପାଇ ମୁଁ ଯିବାକୁ ବାଧ୍ୟହୋଇ ଯିବିବୋଲି ତାଙ୍କୁ ଜଣାଇଦେଲି ।

ଠିକ୍ ପରୀକ୍ଷାର ପୂର୍ବଦିନ ବସ୍‌ରେ ଯାଇ ଇନ୍ଦୁପୁର ହାଇସ୍କୁଲ୍‌ର ଛାତ୍ରାବାସର ପରିଚାଳକଙ୍କୁ କହିବାରୁ ସେ ମୋର ରାତିରେ ରହିବାର ସୁବିଧା କରିଦେଲେ । ସେହି ଛାତ୍ରାବାସର ଜଣେ ଛାତ୍ର ତାଙ୍କର ନାମ ହେଉଛି ଚାରୁଚନ୍ଦ୍ର ହାଜାରା ମୋର ରହିବା ଓ ଖାଇବାର ସବୁ ବନ୍ଦୋବସ୍ତ କରିଦେଲେ । ଛାତ୍ରାବାସର ଅନ୍ୟ ଛାତ୍ରମାନେ ଏକାଠି ହୋଇ ମୋତେ କିଛି କହିବା ପାଇଁ ଅନୁରୋଧ କଲେ । ମୁଁ ପଦାର୍ଥବିଜ୍ଞାନ ସମ୍ବନ୍ଧୀୟ କିଛି ତଥ୍ୟ କହି କହିବା ଶେଷକଲି । ତାପରେ ସେମାନେ ଭାତ, ଡାଲ୍‌ମା ଓ ଇଲିଶି ମାଛଭଜା ଖାଇବାକୁ ଦେଲେ । ତାପର ଦିନ ସକାଳୁ ନଦୀ ପାରହୋଇ ଆରପଟ କୂଳରେ ପହଁଞ୍ଚିଲାପରେ ସାଇକେଲ୍ ଧରିଥିବା ଦୁଇଜଣ ଲୋକଙ୍କୁ ଦେଖିଲି । ଅନ୍ଦାଜ କରି ତାଙ୍କୁ ପଚାରିଲି ସେ ହଁ କରିବାରୁ ଜଣଙ୍କ ସାଇକେଲ୍ ପଛରେ ବସି ବରିରାମଚନ୍ଦ୍ରପୁର ଅଭିମୁଖେ ଯାତ୍ରାକଲି । ମୋର ଭାଗ୍ୟ ଖରାପ ଯୋଗୁଁ ଅସରାଏ ବର୍ଷା ହୋଇଗଲା ତେଣୁ ସାଇକେଲ୍‌ରେ ବସି ଯାଇହେଲା ନାହିଁ ତେଣୁ ଅମେ ତିନିଜଣ ଚାଲି ଚାଲି କଲେଜରେ ପହଁଞ୍ଚିଲୁ । ପରୀକ୍ଷା ସରିଲାପରେ ଆମେ ପୁଣି ସାଇକେଲରେ ବସି ନଦୀ କୂଳକୁ ଆସିଲୁ । ଭଗବାନଙ୍କ କୃପାରୁ ଆଉ ବାଟରେ ବର୍ଷା ନ'ହେବାରୁ ଆମେ ସୁବିଧାରେ ଇନ୍ଦୁପୁର ହାଇସ୍କୁଲ୍‌ର ଛାତ୍ରାବାସରେ ପହଁଞ୍ଚିଲୁ । ସେମାନେ ମୋତେ ଛାଡିଦେଇ ପୁଣି କଲେଜ ଫେରିଗଲେ । ଇନ୍ଦୁପୁର ଛାତ୍ରାବାସର ଛାତ୍ରମାନେ ରାତିରେ ଭାତ, ଡାଲମା ଓ ଇଲିଶ ମାଛ ମଞ୍ଜି ଭଜା ଖାଇବାକୁ ଦେଲେ । ଇଲିଶ ମାଛ ମଞ୍ଜିଭଜା ଏତେ ସ୍ୱାଦ ଯେ ମୁଁ କେବେ ଖାଇ ନ'ଥିଲି । ରାତି ପାହିଲା ପରେ ମୁଁ ନିତ୍ୟକର୍ମ ସାରି ବସ୍‌ରେ କଟକ ଚାଲି ଆସିଲି । ଏହାଥିଲା ବରିରାମଚନ୍ଦ୍ରପୁର ପରୀକ୍ଷା କରିବା ପାଇଁ ଯିବାର ଅନୁଭୂତି ।

ଏହା ଭିତରେ ମୁଁ ତ୍ରିଲୋଚନ ବାବୁଙ୍କ ଠାରୁ ଚିଠି ପାଇଲି । ସେ ଲେଖିଥିଲେ ତୁମେ ଛୁଟି ନେଇ କଲିକତା ଆସନାହିଁ । କାରଣ ମୋର ବିଦେଶ ଚାଲିଯିବାର ଅଛି । ତେଣୁ ମୁଁ ମନ ଦୁଃଖରେ ରହିଲି । କିନ୍ତୁ ଗବେଷଣା କାମ ମନକୁ ଯାହା ଆସିଲା କରୁଥାଏ । ଗୋଟିଏ କାମ ସରିଗଲା ପରି ମୋତେ ଲାଗିଲା । ମୁଁ ସେ କାମଟିକୁ ଭଲ ଭାବରେ ଲେଖି ତ୍ରିଲୋଚନ ବାବୁଙ୍କ ପାଖକୁ ତାଙ୍କର ମତାମତ ପାଇଁ ପଠାଇ ଦେଲି । ୧୫ ଦିନ ପରେ ତାଙ୍କ ଠାରୁ ଚିଠି ପାଇଲି ଯେ କାମଟା ଠିକ୍ ହୋଇଛି ଓ ତୁମେ ଏହାକୁ ଛପାଇବା ପାଇଁ ପଠାଇ ଦିଅ । ସେ ପୁଣି ଲେଖିଥିଲେ ମୋର ହୃଦ୍‌ବୋଧ ହେଉଛି ଯେ ତମେ ନିଜକୁ ନିଜେ ପିଏଚ୍.ଡି କାମ ଶେଷ କରି ପାରିବ । ମୋତେ ଯାହା ସାହାଯ୍ୟ ମାଗିବ ମୁଁ ତାହା କରିବି ।

୧୯୬୫ ମସିହାର ଜାଗର ଦିନ ପୂର୍ବ ଛାତ୍ରାବାସର ଲୋକନାଥ ଆଚାର୍ଯ୍ୟ ନାମକ ଗୋଟିଏ ଛାତ୍ର ଧୂଆ ହୋଇଥିବା ଟ୍ରେନ୍‌ରୁ ଆର ଗୋଟିଏ ଟ୍ରେନ୍ ଲାଇନ୍‌କୁ ଡେଇଁ ପଡିଲା । ସେହି ଲାଇନ୍‌ରେ ସେତେବେଳେ ଆଉ ଗୋଟିଏ ଗାଡି ଆସୁଥିଲା । ସେ ଛାତ୍ରଟି ମରିଗଲା । ସେ ଛାତ୍ରର ମୃତ ଦେହକୁ କେତେକ କଲେଜ ପିଲା ନେଇ ଅଧ୍ୟକ୍ଷ ଡକ୍ଟର ବଂଶୀଧର ସାମନ୍ତରାୟଙ୍କ ଘର ପିଣ୍ଡାରେ ପକାଇ ଦେଲେ । ଅଧ୍ୟକ୍ଷଙ୍କ ସାଙ୍କ ଆଗରେ ଅକଥନୀୟ ଭାଷାରେ ଗାଳି ଗୁଲଜ କଲେ ଏବଂ କହିଲେ ତମେ ହେଉଛ ହତ୍ୟାକାରୀ । ତାପରେ ଅଧ୍ୟାପକ ମାନେ ଆସି କୌଣସି

ପ୍ରକାରେ ଛାତ୍ରମାନଙ୍କୁ ବୁଝା ବୁଝି କରି ଶାନ୍ତ କଲେ । ମୃତ ଦେହକୁ ପୂର୍ବ ଛାତ୍ରାବାସକୁ ନେଇଗଲେ । ପରିଚାଳକ ଲୋକନାଥର ବାପାଙ୍କ ପାଖକୁ ଖବର ଦେଲେ । ମୃତ ଛାତ୍ରର ଦେହକୁ ବରଫ ଭିତରେ ତା ବାପା ଆସିବା ପର୍ଯ୍ୟନ୍ତ ରଖାଇଲେ । ତା ବାପା ଆସିବାପରେ ଶବ ସଂସ୍କାର କରାହେଲା । ତାପରେ ଦିନେ ସେହି ପିଲା ମାନଙ୍କ ମଧ୍ୟରୁ କେତେଜଣ ଯାଇ ଅଧ୍ୟକ୍ଷଙ୍କୁ ଅଫିସ୍‌ରେ ଅନ୍ୟ ପ୍ରଫେସର ଓ ଅଧ୍ୟାପକଙ୍କ ଆଗରେ ଗାଳି ଗୁଲଜ କଲେ ।

ପରେ ଆମେ ଜାଣିଲୁ ଲୋକନାଥ ଆଚାର୍ଯ୍ୟ କଲେଜ ଇଉନିୟନର ସାଧାରଣ ସଂପାଦକ ଭାବେ ନିର୍ବାଚିତ ହୋଇଥିଲେ । କଲେଜ କାମରେ ବ୍ୟସ୍ତ ରହି ତାଙ୍କର ଚତୁର୍ଥ ବର୍ଷ ଉପସ୍ଥାନ ନିର୍ଦ୍ଧାରିତ ସଂଖ୍ୟା ଠାରୁ କମ୍ ହୋଇଗଲା । ଯେତେବେଳେ ସେ ଜାଣିପାରିଲେ ଯେ ପରୀକ୍ଷା ଦେଇ ପାରିବେ ନାହିଁ । ଆଗର ଦିନ ସେ ଆତ୍ମହତ୍ୟା କଲେ । ଆଗର ହେଉଛି ତାଙ୍କର ଜନ୍ମ ଦିନ । କେତେକ ଅଧ୍ୟକ୍ଷଙ୍କୁ ଦୋଷ ଦେଲେ । କେତେକ ମଧ୍ୟ କହିଲେ ଅଧ୍ୟକ୍ଷଙ୍କର ଦୋଷ ନାହିଁ । କୌଣସି ବିଭାଗର ନିର୍ଦ୍ଧାରିତ ଉପସ୍ଥାନ ସଂଖ୍ୟା ଠାରୁ କମ୍ ହେଲେ ଅଧ୍ୟକ୍ଷ ନିର୍ଦ୍ଧାରିତ ଉପସ୍ଥାନ ସଂଖ୍ୟା ବଢାଇ ଦେଇ ପାରିବେ ନାହିଁ । ନିୟମ ଅନୁସାରେ ଯଦି ଛାତ୍ର କ୍ଲାସ୍‌ରେ ଉପସ୍ଥିତ ହୋଇ ନ'ଥିବ ତେବେ କେହି ତାଙ୍କର ନିର୍ଦ୍ଧାରିତ ଉପସ୍ଥାନ ସଂଖ୍ୟା ବଢାଇଦେଇ ପାରିବେ ନାହିଁ । ମୋ ମତରେ ଏଥିରେ କାହାରି ଦୋଷ ନାହିଁ ।

ଯେଉଁ ପିଲାମାନେ ଅଧ୍ୟକ୍ଷଙ୍କ ସମ୍ମୁଖରେ ଲୋକନାଥର ମୃତ ଦେହକୁ ପକାଇ ଥିଲେ ଓ ଗାଳି ଗୁଲଜ୍ କରିଥିଲେ ତାଙ୍କ ଭିତରୁ ଜଣେ ପି.ଜି ଛାତ୍ରାବାସରେ ରହୁଥିଲେ । ସେ ପିଲାଟି କଲେଜରୁ ଚରିତ୍ର ସାର୍ଟିଫିକେଟ ନେବା ପାଇଁ ଦରଖାସ୍ତ କରିଥିଲା । ଅଧ୍ୟକ୍ଷ ତାର ଦରଖାସ୍ତ ଉପରେ ଲେଖିଦେଲେ ଦରଖାସ୍ତ ବିଭାଗର ମୁଖ୍ୟଙ୍କ ଏବଂ ପରିଚାଳକଙ୍କ ଜରିଆରେ ଅସିବା ଉଚିତ୍ । ସେ ପିଲାଟି ଚରିତ୍ର ସାର୍ଟିଫିକେଟ୍ ପାଇଁ ପରିଚାଳକଙ୍କ ଜରିଆରେ ଦରଖାସ୍ତ କରି ହାତେ ହାତେ ସୁପାରିଶ କରିଦେବା ପାଇଁ କହିଲେ । ମୁଁ ନିୟମ ଅନୁସାରେ ମନ୍ତବ୍ୟ ଲେଖି ତୁମ ହାତରେ ଦେଇ ପାରିବି ନାହିଁ । ମୁଁ ଡାକ ବହିରେ ପଠାଇବି । ସେ ଛାତ୍ରଟି ମୋ ଉପରେ ଅସନ୍ତୁଷ୍ଟ ହେଲା ଏବଂ ଚାଲିଗଲା । ତା ପରଦିନ ନିମ୍ନ ଲିଖିତ ମନ୍ତବ୍ୟ ଦେଇ ଅଧ୍ୟକ୍ଷଙ୍କ ପାଖକୁ ପଠାଇ ଦେଲି । (ଯେଉଁ ଛାତ୍ରମାନେ ଆପଣଙ୍କୁ କଲେଜ ଅଫିସ୍‌ରେ ଖରାପ ବ୍ୟବହାର କରିଥିଲେ ସେମାନଙ୍କ ମଧ୍ୟରୁ ଏହି ଛାତ୍ରଟି ଜଣେ ) ।

## ମୋ ସହିତ ଜଣେ ଛାତ୍ରଙ୍କର ମନାନ୍ତର

ଅଧ୍ୟକ୍ଷ ତାଙ୍କୁ ଚରିତ୍ର ସାର୍ଟିଫିକେଟ୍ ଦେଲେ ନାହିଁ କିମ୍ବା କିଛି ଉତ୍ତର ଦେଲେ ନାହିଁ । ଛାତ୍ରଟି ମୋ ମନ୍ତବ୍ୟକୁ କଲେଜ ଅଫିସ୍‌ରୁ କୌଣସି ପ୍ରକାରେ ବୁଝିପାରି ଆଉ କେତେ ଜଣ ଛାତ୍ରଙ୍କ ସହିତ ଆସି ମୋ ସଙ୍ଗେ ଯୁକ୍ତି ତର୍କ କଲେ । ମୁଁ ତାଙ୍କୁ କହିଲି 'ଆଉ ଅଧିକ କିଛି କରି ପାରିବି ନାହିଁ , ତୁମ ବିପକ୍ଷରେ କିଛି ଲେଖିନାହିଁ । ମୁଁ ଖାଲି ଚିହ୍ନାଇ ଦେଇଛି ଯେଉଁମାନେ ଖରାପ ବ୍ୟବହାର କରିଥିଲେ ତାଙ୍କ ଭିତରୁ ଏହି ଛାତ୍ରଟି ଜଣେ । ମୋ କଥାରେ ସନ୍ତୁଷ୍ଟ ନ'ହୋଇ ମୋତେ କହିଲେ ' ମୁଁ ଟିକିଏ ବି ଆପଣଙ୍କୁ ଖାତିରି କରେ ନାହିଁ ।' ମୁଁ ଏହି କଥା ଲେଖି ଚିଠିରେ ଅଧ୍ୟକ୍ଷଙ୍କୁ ଜଣାଇ ଦେଲି । ତାସହିତ ଲେଖିଲି ତାଙ୍କୁ ଅନ୍ୟ ଛାତ୍ରାବାସକୁ ବଦଳି କରାଯାଉ କିମ୍ବା ମୋତେ ଛାତ୍ରାବାସ ଦାୟିତ୍ୱରୁ ମୁକ୍ତି ଦିଆଯାଉ । ତାର କେତେ ଦିନ ପରେ ମୁଁ ଅଧ୍ୟକ୍ଷଙ୍କ ଠାରୁ

ଚିଠି ପାଇଲି । ସେ ଚିଠିଟି ସେହି ଛାତ୍ରଙ୍କ ପାଖୁ ଲେଖା ଯାଇଥିଲା ଏବଂ ତାର ନକଲ ମୋ ପାଖକୁ ମଧ୍ୟ ଆସିଥିଲା । ସେ ଚିଠିର ବିଷୟ ବସ୍ତୁ ହେଲା । ତମେ ମୋ ସାଙ୍ଗରେ ଖରାପ ବ୍ୟବହାର କରିଛ ଏବଂ କେତେ ଦିନ ପରେ ପରିଚାଳକଙ୍କ ସଙ୍ଗେ ମଧ୍ୟ ଖରାପ ବ୍ୟବହାର କରିଛ । ଏହା ବ୍ୟତିତ ଅନ୍ୟ ସବୁ କଣ ଲେଖାଥିଲା ତାହା ମୋର ମନେ ନାହିଁ । ତେଣୁ ତମେ କଲେଜରୁ ଟ୍ରାନ୍‌ସଫର ସାର୍ଟିଫିକେଟ ନେଇଯାଅ । ନଚେତ୍ ତୁମକୁ କଲେଜରୁ ବାହାର କରି ଦିଆଯିବ । ସେହି ଚିଠିଟି ପିଅନ ହାତରେ ପଠାଇ ଦେଲି । ତାର ତିନି ଚାରି ଦିନ ପରେ ଛାତ୍ରାବାସର ରାତିରେ ବହୁତ ପାଟିତୁଣ୍ଡ ହେଲା ତାର କାରଣ କିଛି ଜାଣି ପାରିଲି ନାହିଁ । ତାପର ଦିନ ଅଧ୍ୟକ୍ଷ ମୋତେ କଲେଜ ଅଫିସ୍‌କୁ ଡକାଇଲେ ଏବଂ କହିଲେ ମୁଁ ସେହି ଛାତ୍ରକୁ କ୍ଷମା ଦେଇଛି । ତେଣୁ ସେ ଛାତ୍ରାବାସରେ ରହିବେ ଏବଂ କଲେଜରେ ପଢ଼ିବେ । ମୁଁ ତାଙ୍କ ନିଷ୍ପତ୍ତିକୁ ଭୁଲ୍ ବୋଲି ଦୃଢ଼ ଭାବରେ କହିଲି । ସେ ମୋ ଉପରେ ବହୁତ ବିରକ୍ତ ହେଲେ ଏବଂ କହିଲେ "ତୁମକୁ ଜୟପୁର ବଦଳି କରିଦେବି ।" ମୁଁ ରାଗିଯାଇ କହିଲି ଏଭଳି ସରକାରୀ ଚାକିରୀ ମୋର ଦରକାର ନାହିଁ । ଆପଣ ଜାଣନ୍ତି 'ଯେଉଁ ସାର୍ଟଟା ପିନ୍ଧିଛି ତାହା ମୁଁ ହାତରେ କରିଛି । ଦର୍ଜି ହୋଇ ପଛେ ସଂସାର ଚଳାଇବି ।' ଏହିପରି କହି ଚାଲି ଆସିଲି । ତାପରେ ଦିନେ ଅଧ୍ୟକ୍ଷ ମୋତେ ତାଙ୍କ ଘରକୁ ଡକାଇଲେ ଏବଂ ପରିସ୍ଥିତିକୁ ବୁଝାଇବାକୁ ଚେଷ୍ଟା କଲେ । ମୁଁ ବୁଝିଲି ସେ ଛାତ୍ରଟି ବିରେନ୍ ମିତ୍ରଙ୍କ ସଙ୍ଗେ ଦେଖା କରିଥିଲେ । ବିରେନ୍ ମିତ୍ରଙ୍କ କହିବା ଅନୁସାରେ ସେ ତାକୁ ଛାଡି ଦେଇଛନ୍ତି । ଆପଣ ସେତେବେଳେ ମୋତେ ଡକାଇ ଦେଇଥାଆନ୍ତେ । କାରଣ ସେ ମୋ ସହିତ ମଧ୍ୟ ଖରାପ ବ୍ୟବହାର କରିଛି । ଆପଣ ମଧ୍ୟ ତାକୁ ଗ୍ରହଣ କରିଛନ୍ତି । ଯଦି ଆପଣ ତାକୁ ଛାଡି ଦିଆଗଲା ବୋଲି ମୋ ପାଖକୁ ଚିଠି ଦିଅନ୍ତି ମୁଁ ଛାତ୍ରାବାସର ପରିଚାଳକ ପଦରୁ ସଙ୍ଗେ ସଙ୍ଗେ ଇସ୍ତଫା ଦେବି । ଯଦି ତାହା ନହୁଏ ତେବେ ମୁଁ ଆପଣଙ୍କୁ ଅନୁରୋଧ କରୁଛି ମୋତେ ଅନ୍ୟ କଲେଜକୁ ବଦଳି କରି ଦିଅନ୍ତୁ କିମ୍ବା ମୁଁ ଦରଖାସ୍ତ କରି ଦେଉଛି ମୋର ଦେହ ଖରାପ ଥିବାରୁ ମୁଁ ପରିଚାଳକ ଦାୟିତ୍ୱ ଆଉ ତୁଲାଇ ପାରିବି ନାହିଁ । ଆପଣ ଏହି ଦାୟିତ୍ୱରୁ ମୁକ୍ତି ଦେଲାପରେ ନୂଆ ପରିଚାଳକଙ୍କୁ ଚିଠି ଦେବେ ଯେ ସେ ଛାତ୍ରକୁ କ୍ଷମା ଦିଆଗଲା । ଏହା ଫଳରେ ସବୁ ସମାଧାନ ହୋଇଯିବ । ମୋର ଏହି ଦୁଇଟି ପ୍ରସ୍ତାବରେ ଅଧ୍ୟକ୍ଷ ମଧ୍ୟ ରାଜି ହେଲେ ନାହିଁ କହିଲେ 'ମୁଁ ପରେ ଏହାର ନିଷ୍ପତ୍ତି କରିବି ।' ତାର ଦୁଇ ତିନି ଦିନ ପରେ ପୁଣି ସକାଳୁ ଡକାଇଲେ । ମୁଁ ଯାଇ ପହଁଞ୍ଚିବାରୁ କହିଲେ ମନ୍ତ୍ରୀ ମହୋଦୟ ତୁମକୁ ଓ ମୋତେ ଡକାଇଛନ୍ତି । ତାପରେ କହିଲେ ତୁମେ ଘଣ୍ଟାଏ ଛାଡିକରି ପ୍ରସ୍ତୁତ ହୋଇ ଆସ । ସାଙ୍ଗ ହୋଇକରି ମୋ ଗାଡିରେ ଯିବା । ତାଙ୍କ କହିବା ମୁତାବକ ମୁଁ ଆସିଲି ଆମେ ଏକାଠି ଦୁର୍ଦ୍ଦେଯାକ ମନ୍ତ୍ରୀ ଶ୍ରୀ ସତ୍ୟପ୍ରିୟ ମହାନ୍ତିଙ୍କ ଅଫିସ୍‌କୁ ଗଲୁ । ସେତେବେଳେ ଶିକ୍ଷା ବିଭାଗର ସେକ୍ରେଟାରୀ ଶ୍ରୀ କାଳିକିଙ୍କର ସାମଲ ମଧ୍ୟ ସେଠାରେ ଉପସ୍ଥିତ ଥିଲେ । ମନ୍ତ୍ରୀ ମହୋଦୟ ଏବଂ ଅଧ୍ୟକ୍ଷଙ୍କୁ ଆଉଥରେ ସେ କଥା କହିଲି । ମନ୍ତ୍ରୀ ମହୋଦୟ କହିଲେ ଅଧ୍ୟକ୍ଷ ତାକୁ କ୍ଷମା ଦେଇଛନ୍ତି ତେଣୁ ସେ କଲେଜରୁ ବାହାରିବାର ପ୍ରଶ୍ନ ଉଠୁନାହିଁ । ତମେ ରାଜି ହେଲେ, ସେ ତୁମ ଛାତ୍ରାବାସରେ ରହିପାରିବେ । ଆଉ କିଛି ଗୋଳମାଳ ହେବ ନାହିଁ । ମୁଁ କହିଲି ଏଥିରେ ମୁଁ ସହମତ ନୁହେଁ । ପୁଣି କହିଲି ଆପଣ ତାକୁ ଅନ୍ୟ ଛାତ୍ରାବାସକୁ

ବଦଳି କରିଦିଅନ୍ତୁ କିମ୍ବା ସେ ମୋତେ ଲେଖି କରି କ୍ଷମା ମାଗୁ । ମୋ କଥାର ଉତ୍ତରରେ ଆଉ ଜଣେ କିଏ କହିଲେ ଲିଖିତ କ୍ଷମା ମାଗିବାକୁ ସେ ରାଜି ହେବ ନାହିଁ । ସବୁ କଥାବାର୍ତ୍ତା ପରେ ଠିକ୍ ହେଲା ଯେ ଅଧ୍ୟକ୍ଷ ମୋ ପାଖକୁ ଚିଠି ଦେବେ ଯେ ମୁଁ 'ତାଙ୍କୁ କ୍ଷମା ଦେଇଅଛି ।' ତୁମକୁ ଖରାପ ବ୍ୟବହାର କରିଥିବା ଯୋଗୁଁ ତୁମେ ନିଜେ ଶୃଙ୍ଖଳା ଗତ କାର୍ଯ୍ୟାନୁଷ୍ଠାନ ନିଅ । ମୁଁ ଏଥିରେ ରାଜି ହେଲି । ସେକ୍ରେଟେରୀ ପୁଣି କହିଲେ ତୁମେ ବେଶୀ ଗୁଡାଏ ଜୋରିମାନା କରିବ ନାହିଁ । ମୁଁ କହିଲି ତାଙ୍କୁ ଗୋଟିଏ ପଇସା ଜୋରିମାନା କରିବି । ସେକ୍ରେଟାରୀ ପୁଣି କହିଲେ ତମେ ଟଙ୍କାଏ କିମ୍ବା ଦୁଇ ଟଙ୍କା ଜୋରିମାନା କରିବ । ଏହି କଥାବାର୍ତ୍ତା ଅନୁସାରେ ଅଧ୍ୟକ୍ଷଙ୍କ ଠାରୁ ଚିଠି ପାଇଲା ପରେ ମୁଁ ସେହି ଛାତ୍ରକୁ ଦୁଇ ଟଙ୍କା ଜୋରିମାନା କଲି ଏବଂ ଛାତ୍ରାବାସ ଅଫିସକୁ ନିର୍ଦ୍ଦେଶ ଦେଲି ସେ ଛାତ୍ର ମେସ୍ ପାଇଁ ଟଙ୍କା ଦେଲା ବେଳେ ଦୁଇ ଟଙ୍କା ଜୋରିମାନା କାଟି ରଖି ବାକି ଟଙ୍କା ମେସ୍‌ରେ ପକାଇବ । ସେ ମେସ୍ ଖର୍ଚ୍ଚ ଦେଲା ନାହିଁ କି ଜୋରିମାନା ଦେଲା ନାହିଁ । ଏହା ପରେ ପରେ ଖରା ଛୁଟି ପାଇଁ କଲେଜ ବନ୍ଦ ହୋଇଗଲା ।

ଖରାଛୁଟି ଆଗରୁ ତ୍ରିଲୋଚନ ବାବୁଙ୍କ ପାଖକୁ ଯେଉଁ ପେପର ତାଙ୍କ ମତାମତ ପାଇଁ ପଠାଇ ଥିଲି ସେହି ପେପରଟି ଛୁଟି ଭିତରେ ଛପା ହେବା ପାଇଁ ଇଣ୍ଡିଆନ ଜରନାଲ୍ ଅଫ୍ ଫିଜିକ୍ସର ସଂପାଦକଙ୍କ ପାଖକୁ ପଠାଇ ଦେଲି । ସେ ପେପରଟି ୧୯୬୬ ମସିହାରେ ଛପା ହୋଇଗଲା । ମୁଁ ସାଇନସ୍ କଂଗ୍ରେସରେ ବହୁତ ପରିଶ୍ରମ କରୁଥିବାରୁ ମୋତେ ବିଶ୍ୱବିଦ୍ୟାଳୟର ଟାବୁଲେଟର କରା ଯାଇଥିଲା । ସେହି ବର୍ଷ ଠାରୁ ପୁରୀ ବଦଳି ହେବା ପର୍ଯ୍ୟନ୍ତ  ପ୍ରତି ବର୍ଷ ଟାବୁଲେଟର ହୋଇ ଆସୁଥିଲି ।

ଖରାଛୁଟି କଲେଜ ଖୋଲିଲା । ତାର କେତେ ଦିନ ପରେ କଲେଜ ନିର୍ବାଚନ ପାଇଁ ବିଜ୍ଞାପନ ବାହାରିଲା । ବାହାରିବା ପରେ ସେହି ଛାତ୍ର ଜଣକ ଛାତ୍ରାବାସର ସବୁ ଦେୟ ଦେଇ ଯାଇ କଲେଜରେ ନାମ ଲେଖାଇଲେ । ସେ କଲେଜ ଇଉନିୟନ୍‌ର ସଭାପତି ପାଇଁ  ଛିଡା ହୋଇଥିଲେ । ସେ ଇଉନିୟନ୍‌ର ସଭାପତି ପାଇଁ ନିର୍ବାଚିତ ମଧ୍ୟ ହେଲେ । ସେହିଦିନ ସଂଧ୍ୟାବେଳେ ସେହି ଛାତ୍ରଟି ଘରକୁ ଆସି ମୋ ଠାରୁ ଭୁଲ୍ ମାଗିଲେ । ମୋର କାର୍ଯ୍ୟକୁ ପ୍ରଶଂସା କଲେ ଏବଂ କହିଲେ ସାର ସବୁ ଭୁଲି ଯାଆନ୍ତୁ । ମୁଁ ତ ସବୁ ଭୁଲି ଯାଇଛି ତମେ ଆଜି ଭୁଲି ଯାଇଛ । ତାପରେ ଆମେ ଦୁହେଁ ଛାତ୍ରାବାସର ଉନ୍ନତି ପାଇଁ ଚେଷ୍ଟା କଲୁ । ମୁଁ ମଧ୍ୟ ତାଙ୍କଠାରୁ ପୂର୍ଣ୍ଣ ସହଯୋଗ ପାଇଲି । ମୁଁ ତାଙ୍କୁ ଭଲକରି ଜାଣେ । ସେ ବର୍ତ୍ତମାନ ଜଣେ ପ୍ରତିଷ୍ଠିତ ବ୍ୟକ୍ତି । ସେ ଥରେ କୌଣସି ଅଶୋଭନୀୟ କାର୍ଯ୍ୟ କରିଥିବାରୁ ତାଙ୍କ ନାମ ପ୍ରକାଶ କରିବାକୁ ମୁଁ ଉପଯୁକ୍ତ ମନେକରୁ ନାହିଁ ।

ଆଗରୁ ପି.ଜି ଛାତ୍ରାବାସରେ ବାର୍ଷିକ ଉତ୍ସବ ହେଉ ନ'ଥିଲା । ୧୯୬୬ ମସିହାରେ ଛାତ୍ରାବାସର ପିଲାମାନେ ମୋତେ ଅନୁରୋଧ କଲେ ଅନ୍ୟ ଛାତ୍ରାବାସ ପରି ଆମର ବାର୍ଷିକ ଉତ୍ସବ କରନ୍ତୁ । ଛାତ୍ରାବାସ କାର୍ଯ୍ୟକାରୀ ସଭାରେ ବାର୍ଷିକ ଉତ୍ସବ ବିଷୟ ଆଲୋଚନା ହେଲା ଏବଂ ବାର୍ଷିକ ଉତ୍ସବ କରିବା ପାଇଁ ପ୍ରସ୍ତାବ ଅନୁମୋଦନ କରାଗଲା ଓ ତାହା ସହିତ ଗୋଟିଏ ମାଗାଜିନ୍ ବାହାର କରିବା ପାଇଁ ନିଷ୍ପତ୍ତି ନିଆଗଲା । ଅପ୍ରେଲ ପହିଲା ଦିନ ବାର୍ଷିକ ଉତ୍ସବ ସହିତ ସାଂସ୍କୃତିକ କାର୍ଯ୍ୟକ୍ରମ ହେବ ବୋଲି ଠିକ୍ କରାଗଲା ।

## ସ୍ନାତକୋତ୍ତର ଛାତ୍ରାବାସର ବାର୍ଷିକ ଉତ୍ସବ

ବାର୍ଷିକ ଉତ୍ସବ ପାଇଁ ମନ୍ତ୍ରୀ ମହୋଦୟଙ୍କୁ ଅନୁରୋଧ କରି ଛାତ୍ରାବାସ ପଡିଆରେ ଗୋଟିଏ ପେଣ୍ଡାଲ ପବ୍ଲିକ୍ ୱାର୍କସ ବିଭାଗ ଦ୍ୱାରା ତିଆରି କରାଇ ଦେଇଥିଲି । ବାର୍ଷିକ ଉତ୍ସବରେ ଶିକ୍ଷା ବିଭାଗର ନିର୍ଦ୍ଦେଶକ ଡକ୍ଟର ସଦାଶିବ ମିଶ୍ର ପ୍ରଧାନ ଅତିଥି ଭାବେ ଯୋଗ ଦେଇଥିଲେ । ଅଧ୍ୟକ୍ଷ ଡକ୍ଟର ବଂଶୀଧର ସାମନ୍ତରାୟ ସଭାପତିତ୍ୱ କରିଥିଲେ । ସାଂସ୍କୃତିକ କାର୍ଯ୍ୟକ୍ରମରେ ଶ୍ରୀ ପ୍ରଫୁଲ୍ଲ କୁମାର କର ଗୀତ ଗାଇବା ପାଇଁ ନିମନ୍ତ୍ରିତ ହୋଇଥିଲେ । ତାଙ୍କ ପରାମର୍ଶରେ ସେ ଲେଖିଥିବା ଗୋଟିଏ ଗୀତକୁ ମୋର ଝିଅ ପ୍ରଭାତୀ ମିଶ୍ର ଗାଇଥିଲା । ସେତେବେଳେ ପ୍ରଭାତୀର ବୟସ ଥିଲା ମୋଟେ ଆଠ ବର୍ଷ । ସେଇ ଗୀତଟି ହେଲା -

ବୋଉଲୋ ମତେ କାହିଁ ବାହା କରିଦେଲୁ
ଶାଶୁ ଘର ସେତ ନୁହେଁ ଲୋ ମୋତେ ଯମପୁର ଠେଲି ଦେଲୁ ।
ବୋଉଲୋ ମୋତେ କାହିଁ ବାହା କରିଦେଲୁ
ବାହା ବାସିଦିନ ମୁହଁ ସଞ୍ଜ ବେଳେ ପାଲିଙ୍କି ଲାଗିଲା ଗାଁ ଦାଣ୍ଡରେ
ବନ୍ଦାପନା ସାରି ବଡ ନଣନ୍ଦ ମୋ କାଖକରି ନେଲେ ଅତି ଆଦରେ
ଦିନଯାକ ପିନ୍ଧି ବନାରଶୀ ପାଟ ହେଉଥିଲି ଆଲୋ ମୁଁ ଛଟପଟ
କହିଲି ଶାଶୁ ହେ ଜାମା ଖଣ୍ଡେ ଦିଅ ପାଟ ପିନ୍ଧି ମୋର ଜଳୁଛି ଦେହ
ମୋ କଥାକୁ ଶୁଣି ନଣନ୍ଦ କହିଲେ କେଡେ ଅଲାଜୁକି କଥା କହିଲୁ
ବୋଉଲୋ ---------------
ଜୋଇଁ ବୋଲିଯିଏ ଏତେ ଛଟରା ଲୋ କଥା କଥାକେ ବିଧା ଚାପୁଡା
କଉଡି ଖେଳରେ ହାରିଗଲେ ବୋଲି ମୋ ସାଥିରେ ପରା କଲେ ଝଗଡା
ଶଶୁର ବୋଲି ଯେ ଏତେ କୋରଡା ଲୋ ସବୁବେଳେ ଖାଲି ଫିଙ୍ଗା ଫୋପଡା
ବଡକୋଳି ଗଣ୍ଡେ ମାଗିଦେଲି ବୋଉ ଏତେ ବଡ ପାଟି କରିଲେ ପରା
ବୋଉଲୋ ----------------
ଶେଷଦିନ ଯାହା ହେଲା ଲୋ ବୋଉ କହିବାକୁ ଲାଜ ଶୁଣିବାକୁ ଲାଜ
ବୋଉଚ ତୁ ମୋର କହୁଛି ଖୋଲି ମୁଁ ତୋ ଆଗେ କିପାଇଁ କରିବି ଲାଜ
ଯେଉଁ କଥା ପାଇଁ ସବୁଦିନ ମୁହିଁ ରାତିରେ ତୋଠାରୁ ଖାଏ ଲୋ ଗାଳି
ସେହି କଥା ପୁଣି କରି ବସିଲି ଲୋ ପଡିଗଲା ଦୁଗି ଶେଯ ମୁଚୁରୀ
ବୋଉଲୋ ମୋତେ କାହିଁ ବାହା କରିଦେଲୁ
ଶାଶୁ ଘର ସେତ ନୁହେଁ ଲୋ ମୋତେ ଯମପୁର ଠେଲି ଦେଲୁ ।

ଏହି ଗୀତଟି ପିଲାମାନଙ୍କ ଓ ଅଧ୍ୟାପକମାନଙ୍କ ଦ୍ୱାରା ବହୁତ ଆଦୃତ ହୋଇଥିଲା । ସାଂସ୍କୃତିକ କାର୍ଯ୍ୟକ୍ରମରେ ଗୋଟିଏ ଏକାଙ୍କିକା ନାଟକ ପରିବେଷିତ ହୋଇଥିଲା । ସେ ଏକାଙ୍କିକା ନାଟକର ନାମ ହେଉଛି ଅବିବାହିତ ସଂଘ ଓ ଏହାର ବିଷୟ ବସ୍ତୁ ହେଉଛି : ଅବିବାହିତ ସଂଘର ସଭ୍ୟମାନେ ସମସ୍ତେ ଅବିବାହିତ ରହିବେ ବୋଲି ପ୍ରତିଜ୍ଞା କରିଥିଲେ । ଥରେ ଇଂରେଜୀ ଖବର

କାଗଜରେ ବରପାତ୍ର ପାଇଁ ଗୋଟିଏ ବିଜ୍ଞାପନ ବାହାରିଥିଲା । ସେଥିରେ ଲେଖାଥିଲା 'ମୋର କନ୍ୟା ପାଇଁ ଗୋଟିଏ ଭଲ ପାତ୍ର ଆବଶ୍ୟକ । ଯାହାକୁ ପାତ୍ର ପାଇଁ ଉପଯୁକ୍ତ ମନେ କରିବି ତାକୁ ବିଦେଶ ପଢ଼ିବା ପାଇଁ ପଠାଇବି । ସମସ୍ତ ଖର୍ଚ୍ଚ ମୁଁ ବହନ କରିବି । ମୋ ପରେ ସମସ୍ତ ସମ୍ପତ୍ତିର ମାଲିକ ହେବ' । ସେ ବିଜ୍ଞାପନଟି ପ୍ରକୃତରେ ଛାତ୍ରାବାସର ଗୋଟିଏ ଛାତ୍ର କୌଣସି ଧନୀ ଲୋକଙ୍କ ନାମରେ ଛପାଇ ଥିଲା । ବିଜ୍ଞାପନଟିରେ ଲେଖାଥିଲା ନିର୍ଦ୍ଦିଷ୍ଟ ତାରିଖରେ ଓ ନିର୍ଦ୍ଦିଷ୍ଟ ସ୍ଥାନରେ ଇଚ୍ଛୁକ ଛାତ୍ରମାନେ ସାକ୍ଷାତକାର ପାଇଁ ଆସିବେ । ଯେଉଁ ଛାତ୍ରଟି ବିଜ୍ଞାପନ ଦେଇଥିଲା । ସେ ଛାତ୍ରଟି ବୃଦ୍ଧ ବେଶରେ ସାକ୍ଷାତକାର ନେଉଥିଲା । ସେଇଠି ଅବିବାହିତ ସଂଘ ଭାଙ୍ଗି ଗଲା ।

ସେହି ସମୟରେ ଘଟଣା ଚକ୍ରରେ ଶ୍ରୀ ବିରେନ୍ ମିତ୍ର ଆସି ଛାତ୍ରାବାସ ସମ୍ମୁଖରେ ଥିବା ଅତିଥି ଭବନରେ ଦୁଇଟି କୋଠରୀ ନେଇ ରହୁଥିଲେ । ଏହି ସମୟରେ କେତେକ ଛାତ୍ର ମତେ ନ'ଜଣାଇ ଶ୍ରୀ ବିରେନ୍ ମିତ୍ରଙ୍କୁ ବାର୍ଷିକ ଭୋଜି ପାଇଁ ନିମନ୍ତ୍ରଣ କରିଥିଲେ । ଅନ୍ୟ କେତେକ ଛାତ୍ର ତାର ପ୍ରତିବାଦ କରି ମୋତେ ଜଣାଇଲେ । ତେଣୁ ଯେଉଁମାନେ ଡାକିଥିଲେ ତାଙ୍କୁ ଡକାଇ ମୁଁ କହିଲି ତମର ତାଙ୍କୁ ଡାକିବା ଅନୁଚିତ୍ । ସେମାନେ ଯୁକ୍ତି କଲେ ଆମେ ଆମର ପରିଚିତ ଲୋକଙ୍କୁ ଡାକିଲେ କଣ ଆପଣଙ୍କର ଅନୁମତି ନେବୁ । ମୁଁ କହିଲି ନା ତମେ ଅନୁମତି ନେବ ନାହିଁ । କିନ୍ତୁ ବିରେନ୍ ମିତ୍ର ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ ଏବଂ ଛାତ୍ରାବାସର ବାର୍ଷିକ ଉତ୍ସବ କରିବା ପାଇଁ ବହୁତ ସାହାଯ୍ୟ କରିଛନ୍ତି । ତେଣୁ ତାଙ୍କୁ ଛାତ୍ରାବାସ ତରଫରୁ ଡାକିବାକୁ ହେଲେ ଛାତ୍ରାବାସର କାର୍ଯ୍ୟକାରୀ ସଭାରେ ପ୍ରସ୍ତାବଟିର ଅନୁମୋଦନ ଦରକାର । ତେଣୁ ମୁଁ କାର୍ଯ୍ୟକାରୀ ସଭା ଡାକିଲି । କିନ୍ତୁ ସଭାରେ ପ୍ରସ୍ତାବଟି ଅନୁମୋଦିତ ହେଲା ନାହିଁ । ତେଣୁ ମୁଁ କହିଲି ତାଙ୍କୁ ଡାକି ପାରିବି ନାହିଁ ।

ସେ ପିଲାମାନଙ୍କୁ ଅଲଗା ସମୟରେ କହିଲି ତୁମେ ମନା କରିଦିଅ । ସେମାନେ ଅନୁରୋଧ କରି କହିଲେ ଆମେ କିପରି ନାହିଁ କରିବୁ । ମୁଁ ସେହି ପିଲାମାନଙ୍କୁ କହିଲି ତାହା ହେଲେ ତୁମ ନାମରେ ଦୁଇଟା ଗେଷ୍ଟ ମିଲ୍ ପକାଇ ଦିଅ । ଆଉ ସେ ବିଷୟରେ ଆଲୋଚନା କରନାହିଁ । ସେତେବେଳେ ମୋର ଶଳା କିଶୋରଚନ୍ଦ୍ର ଆମ ଘରେ ରହି ଓକିଲାତି ପଢୁଥିଲା । ଆମ ଘର ପାଖରେ ଶ୍ରୀ ବିରେନ୍ ମିତ୍ର ସେତେବେଳେ ରହୁଥିବାରୁ ଓ କିଶୋର ଛାତ୍ର କଂଗ୍ରେସରେ ଥିବାରୁ ଶ୍ରୀ ବିରେନ୍ ମିତ୍ରଙ୍କ ଘରକୁ ବେଳେ ବେଳେ ଯାଉଥିଲା । ସେଥିଯୋଗୁଁ ମୋର ତାଙ୍କ ସଙ୍ଗେ କିଛି ସମ୍ପର୍କ ହୋଇ ଯାଇଥିଲା । ତାଙ୍କ ସ୍ତ୍ରୀ ଆମ ଘରକୁ ଥରେ ବୁଲି ଆସିଥିଲେ । ସୁବିଧା ଦେଖି ମୁଁ ବିରେନ୍ ମିତ୍ରଙ୍କ ଘରକୁ ଯାଇ ଛାତ୍ରାବାସକୁ ଖାଇବା ପାଇଁ ଆସିବାକୁ ମନା କରିଦେଲି ଏବଂ କାରଣଟା କହିଦେଲି । ସେ ବୁଝିଗଲେ । ମୋତେ ଯିବିନାହିଁ ବୋଲି କହିଲେ । ଭୋଜି ଦିନ ରାତିରେ ଯେଉଁ ଦୁଇଟା ଅଧିକ ମିଲ୍ ପଡ଼ିଥିଲା ତାକୁ ଗୋଟିଏ ଟିଫିନ୍ କ୍ୟାରିଅରରେ ସଜାଡ଼ି ତାଙ୍କୁ ଡାକିଥିବା ଛାତ୍ରଙ୍କ ହାତରେ ପଠାଇ ଦେଲି । ଏହିପରି ଭାବରେ ଗୋଳମାଳର ସମାଧାନ ହୋଇଗଲା ।

୧୯୬୬ ମସିହାରେ ମୁଁ ବିଜ୍ଞାନ ପ୍ରଚାର ସମିତିର ସମ୍ପାଦକ ରୂପେ ନିର୍ବାଚିତ ହେଲି । ବିଜ୍ଞାନ ପ୍ରଚାର ସମିତିର ନିୟମ ଅନୁସାରେ ପ୍ରତି ୧୫ ଦିନରେ ଥରେ ରବିବାର ଦିନ ୪ଟା

ବେଳେ ଅଧିବେଶନ ହୁଏ । ଅତି କମ୍‌ରେ ବିଜ୍ଞାନ ସମ୍ବନ୍ଧୀୟ ଗୋଟିଏ ଲେଖା ପଢା ହୋଇ ଆଲୋଚନା ହୁଏ । ବେଳେ ବେଳେ କୌଣସି ନିର୍ଦ୍ଦିଷ୍ଟ ସଭ୍ୟଙ୍କୁ ଗୋଟିଏ ବିଷୟରେ ପୁସ୍ତକ ଲେଖିବା ପାଇଁ ମଧ୍ୟ କୁହାଯାଏ । ସମ୍ପାଦକ ଥିବାବେଳେ ମୋତେ ପରମାଣୁ ଶକ୍ତି ଉପରେ ଗୋଟିଏ ପୁସ୍ତକ ଲେଖିବା ପାଇଁ କୁହାଯାଇଥିଲା । ମୁଁ ଲେଖିବା ଆରମ୍ଭ କରିଦେଲି । କୌଣସି ଅଧିବେଶନରେ ଲେଖା ନ'ମିଳିଲେ ମୁଁ ପରମାଣୁ ବହିର କେତେକ ଅଂଶ ପଢିଦିଏ । ମୁଁ ଦୁଇ ବର୍ଷ ସଂପାଦକ ରହିବା ଭିତରେ ମୋର ପରମାଣୁ ଶକ୍ତି ବହିର ଲେଖାଟି ସମ୍ପୂର୍ଣ୍ଣ ସରିଗଲା । ସେ ବହିଟି ବିଜ୍ଞାନ ପ୍ରଚାର ସମିତି ଛପାଇ ଥିଲା । ଦୁଇ ବର୍ଷ ପରେ ଅନ୍ୟ ଜଣେ ଅଧ୍ୟାପକ ସମ୍ପାଦକ ହେଲେ ।

ସେହି ୧୯୬୬ ମସିହାରେ ମୋର ବୋଉଙ୍କ ଦେହ ପୁଣିଥରେ ଖରାପ ହେଲା । ମୁଁ ତାଙ୍କୁ କଟକ ମେଡିକାଲ ୱାର୍ଡରେ ଚିକିତ୍ସା ପାଇଁ ଭର୍ତ୍ତି କରିଦେଲି । ଭଗବାନଙ୍କ କୃପାରୁ ତିନି ଚାରି ଦିନ ପରେ ଟିକିଏ ଭଲ ହେବାରୁ ଘରକୁ ନେଇ ଆସିଲି । ଏହା ଭିତରେ ମୁଁ ଗବେଷଣା କାମରେ ଆଗେଇ ଥାଏ । ଦୁଇଟା ବୈଜ୍ଞାନିକ ପ୍ରବନ୍ଧର କାମ ସାରି ଇଣ୍ଡିଆନ୍ ଜରନାଲ ଅଫ୍ ଫିଜିକ୍ସକୁ ଛପାଇବା ପାଇଁ ପଠାଇ ଦେଇଥାଏ । ପରବର୍ତ୍ତି ସମୟରେ ସେ ଦୁଇଟା ପ୍ରବନ୍ଧ ଛପା ହୋଇଥିଲା । ଏହି ମସିହାରେ ସାହା ଇନ୍‌ଷ୍ଟିଚ୍ୟୁଟ୍‌କୁ ଖରା ଓ ବଡ ଦିନ ଛୁଟିରେ ଗବେଷଣା କାମ ସାରିବା ପାଇଁ ଯାଇଥିଲି । ସେତେବେଳେ ନିୟମ ଥିଲା ଯଦି କୌଣସି ଅଧ୍ୟାପକ ବାହାରକୁ ଗବେଷଣା କରିବାକୁ ଯିବାକୁ ଇଚ୍ଛାକରେ, ତେବେ ବିଶ୍ୱବିଦ୍ୟାଳୟରୁ ଦୈନିକ ଭତ୍ତା ଓ ଯିବା ଆସିବା ଖର୍ଚ୍ଚ ମିଳିବ । ସେଥିପାଇଁ ଖରା ଛୁଟିରେ ୩୧ ଦିନର ଓ ବଡ ଦିନ ଛୁଟିରେ ୧୦ ଦିନର ଖର୍ଚ୍ଚ ପାଇ ଗବେଷଣା କରିବାକୁ ଯାଇଥିଲି । ଖରା ଛୁଟିରେ ସାହା ଇନ୍‌ଷ୍ଟିଚ୍ୟୁଟ୍ ଛାତ୍ରାବାସରେ ଓ ବଡ ଦିନ ଛୁଟିରେ ଉତ୍କଳ ଭବନରେ ଗୋଟିଏ କୋଠରୀ ଭଡା ନେଇ ରହିଥିଲି । ଏହା ବ୍ୟତିତ ଆଉ ଦୁଇ ଥର ତିନି ଦିନ ପାଇଁ ଯାଇ ସୂର୍ଯ୍ୟସେନ୍ ଷ୍ଟ୍ରିଟ୍‌ରେ ଥିବା ମଡର୍ଣ୍ଣ ଲଜ୍‌ରେ ରହିଥିଲି । ଇନ୍‌ଷ୍ଟିଚ୍ୟୁଟ୍ ଯାଇ କାମ କରୁଥିଲି । ମୁଁ ତାପରେ ଠିକ୍ କଲି ଏକାଠି ଯାଇ ତିନି ଚାରି ମାସ ରହିଗଲେ କାମ ସରିଯିବ ଓ ମୁଁ ଥେସିସ୍ ବିଶ୍ୱବିଦ୍ୟାଳୟରେ ଦାଖଲ କରିବା ପାଇଁ ସମର୍ଥ ହେବି । ତେଣୁ ମୁଁ ଖରା ଛୁଟିକୁ ମିଶାଇ ଦୁଇ ମାସ ଛୁଟି ନେଲି । ମାର୍ଚ୍ଚ ମାସରେ ପିଲାମାନଙ୍କୁ ନେଇ କଲିକତା ଯିବା ପାଇଁ ଠିକ୍ କଲି । ବୋଉଙ୍କୁ ବଡ ନାନାଙ୍କ ଘରେ ଭୁବନେଶ୍ୱରରେ ରହିବା ପାଇଁ ବନ୍ଦୋବସ୍ତ କରିଦେଲି । ମାର୍ଚ୍ଚ ମାସରେ କଲିକତା ଯାଇ ଗୋଟିଏ ହୋଟେଲ୍‌ରେ ମାସିକ ଦେୟ ଦେଇ ରହିଲି । ସେ ହୋଟେଲ୍‌ଟି ଗରିଆ ଘାଟ ଅଞ୍ଚଳରେ ଅବସ୍ଥିତ ।

## ବୋଉଙ୍କ ଦେହାନ୍ତ

ମୋର ମନେ ଅଛି ଅପ୍ରେଲ ୨ ତାରିଖରେ ତ୍ରିଲୋଚନ ବାବୁ କହିଲେ, "ତମ କାମ ସରିଗଲା । ତମେ ଏଥର ଥେସିସ୍ ଲେଖା ଆରମ୍ଭ କର"। ସେହିଠାରେ ଠିକ୍ ହେଲା ଥିସିସ୍‌ର ବିଷୟ ବସ୍ତୁ କଣ ରହିବ । ଠିକ୍ ସେହି ଦିନ ଇନ୍‌ଷ୍ଟିଚ୍ୟୁଟ୍‌ରେ ସଂଧ୍ୟା ବେଳେ ଟେଲିଗ୍ରାମ ପାଇଲି ଯେ ବୋଉଙ୍କ ଦେହ ଭାରି ଖରାପ, ଶୀଘ୍ର ଆସ । ତେଣୁ ତାପର ଦିନ ଖରାବେଳେ ମାଡ୍ରାସ୍ ମେଲରେ ଆମେ ସମସ୍ତେ ଭୁବନେଶ୍ୱର ଅଭିମୁଖେ ଯାତ୍ରା କଲୁ । ଆମେ ଭୁବନେଶ୍ୱରେ ପହଞ୍ଚି

ଜାଣିବାକୁ ପାଇଲୁ ତାଙ୍କର ୨ ତାରିଖ ଦିନ ଉପର ବେଳା ଦେହାନ୍ତ ହୋଇ ଯାଇଛି । ଆମର ଭୁବନେଶ୍ୱର ଘରର ଉପର ମହଲାରେ ସବୁବେଳେ ଗୋଟିଏ କୋଠରୀ ଚାବି ପଡି ରହିଥାଏ । ସେହି କୋଠରୀରେ ଆମେ ଯାଇ ରହିଲୁ ଏବଂ ଛାତ ଉପରେ ତମ୍ବୁ ବାନ୍ଧି ତାଙ୍କର ଦଶାହ କ୍ରିୟା ଶେଷ କଲୁ । ୧୨ ଶ୍ରାଦ୍ଧ ପରେ ଆମେ କଟକ ଫେରି ଆସିଲୁ । ମୁଁ କଲେଜରେ ଯୋଗ ଦେଲି ନାହିଁ । ମୁଁ ମୋ ସ୍ତ୍ରୀ ଠିକ୍ କଲୁ ସମସ୍ତେ ପୁଣି ଥରେ କଲିକତା ଯାଇ କାମଟା ସାରିଦେଇ ଆସିବା । ଦିନେ ରାତିରେ ମୁଁ କଲିକତାର ମଡର୍ଣ୍ଣ ଲଜ୍‌କୁ ଫୋନ୍ କରି ଗୋଟିଏ କୋଠରୀ ସଂରକ୍ଷିତ କରିଦେଲି ।

## କଲିକତାର ମଡର୍ଣ୍ଣ ଲଜ୍‌ରେ ଅବସ୍ଥାନ

ମଡର୍ଣ୍ଣ ଲଜ୍‌ର କାର୍ଯ୍ୟକାରି ମାଲିକ ମୋତେ ଆଗରୁ ଜାଣିଥିଲେ, ତେଣୁ ସଂରକ୍ଷଣ କରିବା ପାଇଁ କିଛି ଅସୁବିଧା ହେଲା ନାହିଁ । ପର ଦିନ ରାତିରେ ଆମେ ସାଧାରଣ ଡବାରେ ଯିବାକୁ ବାଧ୍ୟ ହେଲୁ । ସେହି ଲଜ୍‌ର ମାଲିକ ଆମକୁ ସବୁ ସୁବିଧା କରିଦେଲେ । ସୂର୍ଯ୍ୟସେନ ଷ୍ଟ୍ରିଟ୍‌ଟି ସାହା ଇନ୍‌ଷ୍ଟିଚ୍ୟୁଟ ଠାରୁ ଅଳ୍ପ ଦୂରରେ । ସେତେବେଳେ ୧୦ ପଇସା ଦେଇ ସୂର୍ଯ୍ୟସେନ୍ ଷ୍ଟ୍ରିଟ୍ ଠାରୁ ସାହା ଇନ୍‌ଷ୍ଟିଚ୍ୟୁଟ୍ ବସ୍‌ରେ କିମ୍ବା ଟ୍ରାମ୍‌ରେ ଯାଇ ହେଉଥିଲା । ପ୍ରଥମ ଦିନ ଇନ୍‌ଷ୍ଟିଚ୍ୟୁଟ୍‌ରେ ପହଁଞ୍ଚିଲା ପରେ ମୋର ମନେ ପଡିଲା ଯେତେବେଳେ ମୋର କାମ ସରିଲା ବୋଲି ତ୍ରିଲୋଚନ ବାବୁ କହିଲେ ଠିକ୍ ସେତିକି ବେଳେ ବୋଉର ମୃତ୍ୟୁ ହୋଇଥିଲା । ମୋତେ ସେତେବେଳେ ଲାଗିଲା 'ଯେପରି ମୋର କାମ ସରିବା ପର୍ଯ୍ୟନ୍ତ, ବୋଉ ମରିବାକୁ ଅପେକ୍ଷା କରିଥିଲା ।' ମୁଁ ସବୁଦିନ ଇନ୍‌ଷ୍ଟିଚ୍ୟୁଟ୍ ଯାଏ ମୋର ଥିସିସ୍ ଲେଖିବା ପାଇଁ ଯେଉଁ ବିଷୟ ବସ୍ତୁ ଦରକାର ତାହା ଲେଖି ରଖେ । ପ୍ରତି ରବିବାର ଦିନ ଇନ୍‌ଷ୍ଟିଚ୍ୟୁଟ ବନ୍ଦ ହୋଇଥିବାରୁ ଆମେ ଭିନ୍ନ ଭିନ୍ନ ସ୍ଥାନକୁ ବୁଲିବାକୁ ଯାଉଥିଲୁ ।

ସେଗୁଡିକ ମଧ୍ୟରୁ ପ୍ରଧାନ ହେଲା ବେଲୁର ମଠ । ବେଲୁର ମଠ ଯିବାକୁ ହେଲେ ଆମେ ବୁଝିଲୁ ବସ୍‌ରେ ଯିବାକୁ ପଡିବ । ମୁଁ ଏବଂ ପିଲାମାନେ କଲିକତାରୁ ବସ୍‌ରେ ବସି ବେଲୁର ମଠ ପର୍ଯ୍ୟନ୍ତ ଗଲୁ । ବେଲୁର ମଠଟି ଗଙ୍ଗା ନଦୀ କୂଳରେ ଅବସ୍ଥିତ । ସେହି ମଠ ଭିତରେ ରାମକୃଷ୍ଣ ପରମହଂସଙ୍କର ଏକ ବିଶାଳ ମୂର୍ତ୍ତୀ ଦେଖିବାକୁ ପାଇଲୁ । ସେହିମଠରୁ ଭୋଗଖାଇ ଦୁଇଟା ତିନିଟା ବେଳକୁ ଫେରିଆସିଲୁ । ସେ ସ୍ଥାନଟି ମୋତେ ଖୁବ୍ ଭଲ ଲାଗିଲା । ଆଉ ଏକ ରବିବାର ଦିନ ବଟାନିକାଲ ଗାର୍ଡନ ଦେଖିବାକୁ ଗଲୁ । ତାହା ମଧ୍ୟରେ ଏକ ବହୁପୁରୁଣା ବଡ ବରଗଛ ଅଛି । ସେହି ବର ଓହଳରେ ମୁଁ ଓ ସ୍ତ୍ରୀ  ଦୋଳି ଖେଳିଲୁ । ଅନ୍ୟ ଏକ ରବିବାର ଦିନ ଚିଡିଆଖାନା ଦେଖିବାକୁ ପିଲାଙ୍କର ସହିତ ଗଲି । ଆଉଥରେ ତ୍ରିଲୋଚନ ବାବୁଙ୍କ ଘରକୁ ଯାଇ ତାଙ୍କ ପିଲାମାନଙ୍କ ସାଥିରେ ଲେକ୍ ଅଞ୍ଚଳ ଆଡେ ବୁଲି ଯାଇଥିଲୁ । ସେ ସେତେବେଳେ ଗରିଆ ଘାଟ ଅଞ୍ଚଳରେ ତ୍ରିଲୋଚନ ବାବୁ ରହୁଥିଲେ । ମୁଁ ଇନ୍‌ଷ୍ଟିଚ୍ୟୁଟ୍‌ରେ ଗବେଷଣା କରିବା ସମୟରେ ଓଡିଶାର ମମତା ପଟ୍ଟନାୟକ, ଲକ୍ଷ୍ମୀଧର ଶତପଥି, ରାଜକିଶୋର ଶତପଥି ଓ ଦ୍ୱାରିକାନାଥ ତ୍ରିପାଠି ପ୍ରଭୃତି ଛାତ୍ରମାନେ ସେଠାରେ ଗବେଷଣା କରୁଥିଲେ । ବ୍ରହ୍ମାନନ୍ଦ ଦାଶଗୁପ୍ତ କେବଳ ପ୍ଲାଜମା ଫିଜିକ୍ସ ଥିଓରି ଉପରେ ଗବେଷଣା କରୁଥିଲେ । କଲେଜ ଖୋଲିବା ପାଖ ହେବାରୁ ଆମେ ସାନ ନାନୀ ଘରକୁ ଜାମସେଦପୁର ଯାଇ ସେଠାରେ ବୁଲାବୁଲି କରି କଟକ

ଫେରି ଆସିଲୁ । କଟକରେ ପହଁଞ୍ଚି ମୁଁ ଥିସିସ୍ ଲେଖିବା ପାଇଁ ଲାଗି ପଡିଲି । ମୁଁ ଭାବିଥିଲି ବର୍ଷକ ଭିତରେ ଥିସିସ୍‌ଟି ଉତ୍କଳ ବିଶ୍ୱବିଦ୍ୟାଳୟରେ ଦାଖଲ କରିଦେବି । କିନ୍ତୁ ଥିସିସ୍‌ଟି ଟାଇପ୍ କରିବା ପାଇଁ ଅନ୍ୟ ଲୋକ ଉପରେ ନିର୍ଭର କରୁଥିବାରୁ ୬ ମାସ ଡେରି ହୋଇଗଲା ।

ଥିସିସ୍ ଲେଖିବା ସମୟରେ ମୋର ସ୍ତ୍ରୀ ଗର୍ଭବତୀ ହୋଇଥିଲେ । ତାଙ୍କ ଦେହ ଭଲ ରହିଲା ନାହିଁ । ତେଣୁ ମୁଁ ଜଣେ ସ୍ତ୍ରୀ ରୋଗ ଡାକ୍ତରଙ୍କୁ ଦେଖାଇଥିଲି । ସେ କହିଲେ ବୋଧେ ଦୁଇଟି ପିଲା ଅଛି । ମୋ ମନ ଭାରି ଖରାପ ହେଲା । ମୋର ସ୍ତ୍ରୀର ଦଦେଇଙ୍କ ମୃତ୍ୟୁ ପରେ ଓ.ଏମ୍.ପି ଡାକ୍ତରଖାନାକୁ ଡକ୍ଟର ବିନୟ କୁମାର ଦାସ ବଦଳି ହୋଇ ଆସିଥିଲେ । ମୁଁ ପରିଚାଳକ ରହିବା ଭିତରେ ଡକ୍ଟର ବିନୟ କୁମାର ଦାସଙ୍କ ସାଙ୍ଗରେ ପରିଚୟ ହୋଇଥିଲା । ସେତେବେଳେ ତାଙ୍କ ସ୍ତ୍ରୀ ଚଟିନୀ ଦାସ ଆଇ.ଏସ୍‌ସି ପଢୁଥିଲେ । ଦିନେ ମୁଁ ତାଙ୍କୁ ମୋ ସ୍ତ୍ରୀଙ୍କ କଥା କହିବାରୁ ସେ ଆମ ଘରକୁ ଆସି ଦେଖିଲେ । କହିଲେ ତାଙ୍କର ଡେଲିଭରୀ ସମୟରେ ଟିକିଏ ଅସୁବିଧା ହୋଇପାରେ । ତେଣୁ ଆପଣ ଡକ୍ଟର ନିରୁପମା ରଥଙ୍କ କ୍ଲିନିକ୍‌ରେ ପରୀକ୍ଷା କରାନ୍ତୁ ଓ ଡେଲିଭରୀ ତାଙ୍କରି କ୍ଲିନିକ୍‌ରେ କରାନ୍ତୁ । ମୁଁ ସବୁପ୍ରକାର ସାହାଯ୍ୟ ତାଙ୍କରି କ୍ଲିନିକ୍‌ରେ କରି ପାରିବି । ମୁଁ ତାଙ୍କୁ ଅନ୍ୟ ଡାକ୍ତରଙ୍କ ବ୍ୟବସ୍ଥା ପତ୍ର(Prescription)ଦେଖାଇଲି । ସେ ମନା କଲେ କହିଲେ ଗୋଟିଏ ପିଲା ଅଛି । ମୋ ସ୍ତ୍ରୀର ଅସୁବିଧା ଅଛି ଶୁଣି ମୋ ମନ ଖରାପ ହୋଇଗଲା । ମୁଁ ଜାଣିଥିଲି ଫିଜିକ୍ସ ଛାତ୍ର ଶ୍ରୀ ବାନାମ୍ବର ମାର୍ଥା ଓ ଶ୍ରୀ ନାରାୟଣ ଦାସ ଯଥାକ୍ରମେ ଜାତକ ଓ ହାତ ଦେଖି ଭବିଷ୍ୟତ କଥା କହିପାରନ୍ତି । ତେଣୁ ମୁଁ ପ୍ରଥମେ ବାନାମ୍ବର ମାର୍ଥାଙ୍କୁ ଘରକୁ ଡକାଇ ତାଙ୍କୁ ମୋର ସ୍ତ୍ରୀର ଜାତକ ଦେଖାଇଲି । ସେ ମୋତେ କହିଲେ "ତୁମର ଗୋଟିଏ ପୁଅ ହେବ ଓ ତମ ସ୍ତ୍ରୀ ବର୍ତ୍ତମାନ ଭଲ ହୋଇଯିବେ । କିନ୍ତୁ ତାଙ୍କୁ ୪୫ ବର୍ଷ ପରେ ଖରାପ ଯୋଗ ଅଛି ।" ତାପରେ ମୁଁ ନାରାୟଣ ଦାସଙ୍କୁ ଡକାଇ ସ୍ତ୍ରୀଙ୍କର ହାତ ଦେଖାଇଲି । ସେ ହାତ ଦେଖିସାରି ବହୁତ ହିସାବ ପତ୍ର କରି ଗୋଟିଏ ସଂଖ୍ୟା ଲେଖିଦେଲେ ଏବଂ କହିଲେ ସଂଖ୍ୟାଟି ଦେଖି ଭବିଷ୍ୟତ କହିହେବ । ତାପରେ ସେ କହିଲେ ଆପଣଙ୍କର ପୁଅ ହେବ । ବିନୟ ବାବୁଙ୍କ କହିବା ଅନୁସାରେ ସେ ମୋ ସ୍ତ୍ରୀକୁ ତାଙ୍କ ସାଙ୍ଗରେ ନିରୁପମା ରଥଙ୍କ କ୍ଲିନିକ୍‌କୁ ନେଇଗଲେ । ତାଙ୍କ ସହିତ କଥାବାର୍ତ୍ତା କରି କଣ ସବୁ ଔଷଧ ଖାଇବ ତାର ବ୍ୟବସ୍ଥା କରିଦେଲେ । ଡେଲିଭରି ଦିନ ପାଖ ହେବାରୁ ନିରୁପମା ରଥଙ୍କ କ୍ଲିନିକ୍‌ରେ ଆଡମିସନ୍ କରିଦେଲେ । ୧୯୬୮ ଜୁନ୍ ପହିଲା ଦିନ ନିରୁପମା ରଥ ମୋତେ କହିଲେ ଆଜି ଡେଲିଭରି ହୋଇଯିବ । ତୁମେ କୁଆଡେ ଯାଅ ନାହିଁ । ତେଣୁ ତାଙ୍କ କ୍ଲିନିକ୍ ପାଖରେ ଗୋଟିଏ ପଡିଆରେ ଚାଲିଥିବା ଏକ୍‌ଜିବିସନ୍‌ରେ ମୁଁ ସମୟ କଟାଇବା ପାଇଁ ବୁଲି ଦେଖୁଥାଏ ଏବଂ ମଝିରେ ମଝିରେ କ୍ଲିନିକ୍ ଆସି ବୁଝି ଯାଉଥାଏ । ସଂଧ୍ୟାବେଳେ ଜାଣିବାକୁ ପାଇଲି ମୋର ଗୋଟିଏ ପୁତ୍ର ସନ୍ତାନ ହୋଇଅଛି । ମାଆ ଓ ପିଲା ଭଲ ଅଛନ୍ତି । ବାନାମ୍ବର ଓ ନାରାୟଣ ଦୁଇଜଣଙ୍କ କଥା ସତ ହେଲା । ଚାରି ଦିନକ ପରେ କ୍ଲିନିକ୍‌ରୁ ସ୍ତ୍ରୀକୁ ମୋ ବାସ ଭବନକୁ ନେଇ ଆସିଲି । ଏହା ଭିତରେ ମୋ ସ୍ତ୍ରୀର ବୋଉ ଆସି ପିଲାଙ୍କ ସହିତ ରହିଥାଆନ୍ତି । ମୋର ବଡ ପୁଅ ପୁରୀରେ ଜନ୍ମ ହୋଇଥିଲା । ତାର ଏକୋଇଶିଆ ମଧ୍ୟ ପୁରୀରେ ହୋଇଥିଲା । ସାନ ପୁଅର ଏକୋଇଶିଆ ଭଲ ଭାବରେ କରିବା ପାଇଁ ଆମେ ଦୁଇ ଜଣ ଠିକ୍

କଲୁ । ପୁଅର ଏକୋଇଶିଆକୁ ଛାତ୍ରାବାସର ସବୁ ଛାତ୍ରଙ୍କୁ ନିମନ୍ତ୍ରଣ କରିଥିଲୁ । ବନ୍ଧୁ ବାନ୍ଧବ ମାନେ ମଧ୍ୟ ଆସିଥିଲେ । ଛାତ୍ରାବାସର ପିଲାମାନଙ୍କ ଆସିବା ଦୃଶ୍ୟ ମୋର ଏବେ ମଧ୍ୟ ମନେ ଅଛି । ସେମାନେ ଗୋଟିଏ ଲୁହା ତିଆରି ଦୋଳି ବାଉଁଶରେ ଝୁଲାଇ କାନ୍ଧେଇ ଆସିଥିଲେ । ପୁଅ ପାଇଁ ନୂଆ ଜାମା, ଶେଯ ଓ ମଶାରୀ ଆଣିଥିଲେ । ପୁଅକୁ ତା ଉପରେ ଶୁଆଇ ଛାତ୍ରାବାସ ଯାକ ବୁଲାଇ ଥିଲେ । ଏକୋଇଶିଆ ଦିନ ପୁଅର ନାମ ଦେବାର ଗୋଟିଏ ପ୍ରଥା ଅଛି । ସେହିଦିନ ତାର ଡାକ ନାମ ବୁବୁ ଏବଂ ଭଲ ନାମ ପ୍ଲାଜମନ୍ ବୋଲି ଦିଆଗଲା । ଭଲ ନାମଟି ମୁଁ ବାଛିଥିଲି । କାରଣ ମୁଁ ପ୍ଲାଜମା ପଦାର୍ଥ ବିଜ୍ଞାନ ଉପରେ ଗବେଷଣା କରୁଥିଲି ଏବଂ ଥିସିସ୍ ଲେଖିଲା ସମୟରେ ସେ ଜନ୍ମ ହୋଇଥିଲା । ଏହା ବ୍ୟତିତ ପ୍ଲାଜମା ହେଉଛି ପଦାର୍ଥର ଚତୁର୍ଥ ଅବସ୍ଥା ଏବଂ ମୋର ପୁଅ ହେଉଛି ଚତୁର୍ଥ ସନ୍ତାନ ତେଣୁ ତାହାର ନାମ ପ୍ଲାଜମନ ବୋଲି ଦେଇଥିଲି । ପୁଅର ଏକୋଇଶିଆ ଭୋଜିକୁ ମୁଁ ପଦାର୍ଥ ବିଜ୍ଞାନ ବିଭାଗର ଅଧ୍ୟାପକ ମାନଙ୍କୁ ମଧ୍ୟ ଡାକିଥିଲି । କଥା ବାର୍ତ୍ତା ହେବା ସମୟରେ କୌଣସି କାରଣରୁ ନିମାପଡା କଥା ପଡିଲା । ସେହି ସମୟରେ ଶ୍ରୀ ସିମାଞ୍ଚଳ ପଣ୍ଡା ନାମକ ଜଣେ ଫିଜିକ୍ସର ବରିଷ୍ଠ ଅଧ୍ୟାପକ ମୋତେ ପଚାରିଲେ ତୁମେ କଣ ନିମାପଡା ସ୍କୁଲରେ ପଢୁଥିଲ । ମୁଁ କହିଲି ହଁ । ସେ ପଚାରିଲେ କେଉଁ ମସିହାରେ ପଢୁଥିଲ । ମୁଁ ୪୨,୪୩,୪୭ ଓ ୪୮ ମସିହାରେ ପଢୁଥିଲି ବୋଲି କହିଲି । ସିମାଞ୍ଚଳ ବାବୁ କହିଲେ ତୁମେ ମୋତେ ଚିହ୍ନି ପାରୁଛ । ମୁଁ ନିମାପଡା ସ୍କୁଲରେ ସେହି ସମୟରେ ଶିକ୍ଷକ ଥିଲି । ମୁଁ ତାଙ୍କ ମୁହଁକୁ କିଛି ସମୟ ଚାହିଁ କହିଲି ହଁ ଚିହ୍ନିପାରୁଛି । ଆପଣ କଣ ସେହି ସିମାଞ୍ଚଳ ବାବୁ ? ସେତେବେଳେ ଆପଣ ସବୁବେଳେ ଧଳାକନାରେ ଫୁଲ୍ ପ୍ୟାଣ୍ଟ ଏବଂ ସାର୍ଟ ପିନ୍ଧୁଥିଲେ । ଆପଣ ଭାରି ରାଗି ଥିଲେ । କିନ୍ତୁ ଆପଣ ବର୍ତ୍ତମାନ ସେମିତି ନାହାଁନ୍ତି । ସେ କହିଲେ ମୋତେ ବୟସ ହୋଇଗଲାଣି । ତୁମ ନାମ ସେତେବେଳେ ପତିତପାବନ ନ ଥିଲା । ଆଉ ଗୋଟେ କଣ ବୋଲି ଡାକୁ ଥିଲେ । ମୁଁ କହିଲି ମୋତେ ନିମାପଡାରେ ସମସ୍ତେ 'ବଟୁ' ବୋଲି ଡାକନ୍ତି । ତାପର ଠାରୁ ତାଙ୍କର ମୋର ସମ୍ପର୍କ ବଢିଗଲା ।

ମୁଁ ସ୍ନାକୋତ୍ତର ଛାତ୍ରାବାସର ପରିଚାଳକ ଥିବା ସମୟରେ ଗୋଟିଏ ବିଶେଷ ଘଟଣା ଘଟିଥିଲା । ତାହାର ସମୟ ମୋର ମନେ ନାହିଁ । ସ୍ନାତକୋତ୍ତର ଛାତ୍ରାବାସ ଓ ମୋର ଘର ମଧ୍ୟରେ ଗୋଟିଏ ଏୟାର ଉଇଙ୍ଗ୍ ଅଫିସ୍ ଥିଲା । ତାହା ସବୁଦିନ ଖୋଲା ହୁଏ ନାହିଁ । ସପ୍ତାହକୁ ଥରେ ବା ଦୁଇ ଥର ଖୋଲା ହୁଏ । ଏୟାର ଉଇଙ୍ଗ୍ର ଜଣେ ଅଫିସର ଛାତ୍ରାବାସ ଆଗରେ ଥିବା ସରକାରୀ ଘର ମଧ୍ୟରୁ ଗୋଟିକରେ ରହୁଥିଲେ । ଦିନେ ୫ଟା ବେଳେ ଛାତ୍ରାବାସର ତିନି ଜଣ ପିଲାଙ୍କର କୌଣସି କାରଣରୁ ସେ ଅଫିସର ଘର ବାରଣ୍ଡାରେ ତାଙ୍କର ଜଣେ ସମ୍ପର୍କୀୟଙ୍କ ସାଙ୍ଗେ ପାଟିତୁଣ୍ଡ ହେଲା । ଏହି ସମୟରେ ଅଫିସର ଜଣଙ୍କ ତାଙ୍କ ଘରୁ ଗୋଟିଏ ବନ୍ଧୁକ ଆଣି ପିଲାମାନଙ୍କୁ ଡରାଇଲେ ଏବଂ ପିଲାମାନଙ୍କୁ ଚାଲି ଯିବା ପାଇଁ କହିଲେ । ଏହି ସମୟରେ ଛାତ୍ରାବାସରୁ ପିଲାମାନେ ଯାଇ ତାଙ୍କ ଘର ଆଗରେ ଜମା ହୋଇଗଲେ । ମୁଁ ଖବର ପାଇ ସାଙ୍ଗେ ସାଙ୍ଗେ ଅଧ୍ୟକ୍ଷଙ୍କୁ ଫୋନ୍ କରି କହିଲି । ଅଧ୍ୟକ୍ଷ କଲେକ୍ଟରଙ୍କୁ ଫୋନ୍ କରି କହିଲେ । ତାର ପ୍ରାୟ ୨୦ ମିନିଟ୍ ପରେ କଲେକ୍ଟର ସେଠାରେ ପହଁଞ୍ଚିଗଲେ । କଲେକ୍ଟର ଆସିବାରୁ ପିଲାମାନେ ଟିକିଏ ଶାନ୍ତ ହୋଇଗଲେ ଏବଂ ତାଙ୍କୁ କହିଲେ ଆପଣ ସେ ଅଫିସରଙ୍କୁ ଗିରଫ କରନ୍ତୁ ଏବଂ

କରନ୍ତୁ ଏବଂ ତାଙ୍କ ବନ୍ଧୁକଟିକୁ ଅକ୍ତିଆର କରିନିଅନ୍ତୁ । ପିଲାମାନେ ଟିକିଏ ଶାନ୍ତ ହେବାରୁ କଲେକ୍ଟର, ମୁଁ ଓ ପିଲାମାନେ ଆମ ଘରକୁ ଆସିଲୁ । ମୁଁ ଓ କଲେକ୍ଟର ପିଲାଙ୍କୁ ବୁଝାଇ ଦେବାରୁ ପିଲାମାନେ ଶାନ୍ତ ହୋଇ ଛାତ୍ରାବାସକୁ ଚାଲିଗଲେ । କଲେକ୍ଟର ତାଙ୍କ ଘର ପାଖରେ ପୁଲିସ୍ ଜଗୁଆଳି ରହିବା ପାଇଁ ବନ୍ଦୋବସ୍ତ କରିଦେଲେ । ତାପରେ ସବୁ ଶାନ୍ତ ହୋଇଗଲା । ମୋତେ ତାପର ଦିନ କେତେଜଣ ପିଲା ପଚାରିଲେ ଆପଣଙ୍କର ନିକଟରେ କୁଆଡେ ଯିବାକୁ ଅଛି କି ? ମୁଁ କହିଲି ନାହିଁ । କେତେବେଳେ ହଠାତ୍ କୁଆଡେ ଯିବାକୁ ପଡିଯାଇ ପାରେ ତାହା ଆଗରୁ କହି ପାରିବି ନାହିଁ । ଦିନେ ସକାଳୁ ମୁଁ ଭୁବନେଶ୍ୱର ଯାଇଛି ଛାତ୍ରାବାସର ସବୁ ପିଲାମାନେ ଏୟାର ଉଇଙ୍ଗ ଅଫିସ୍‌ର ସବୁ କୋଠରୀର ତାଲା ଭାଙ୍ଗି ତାକୁ ଅଧିକାର କରିନେଲେ । କେବଳ ଅଫିସରଙ୍କର କୋଠରୀଟିର କିଛି କରି ନ'ଥିଲେ । ଅନ୍ୟ କୋଠରୀରେ ପିଲାମାନେ ଆସି ରହିଗଲେ । ମୁଁ ୫ଟା ବେଳକୁ ଆସି ସବୁ କଥା ଜାଣିଲି । ମୁଁ ସାଙ୍ଗେ ସାଙ୍ଗେ ଅଧ୍ୟକ୍ଷଙ୍କୁ ଲେଖିକରି ଜଣାଇ ଦେଲି । ସେ କଥା ନେଇ ସରକାରୀ ଭାବେ କିଛି ଚିଠି ଆସିଲା ନାହିଁ । ପିଲାମାନେ ଏୟାର ଉଇଙ୍ଗ ଅଫିସ୍‌ରେ ସବୁ ରହିଲେ । ଅଫିସ୍‌କୁ ଛାତ୍ରାବାସରେ ପରିଣତ ହେଲା ବୋଲି କିଛି ଚିଠି ଆସିଲା ନାହିଁ । ତାର କେତେ ଦିନ ପରେ ଖରାଛୁଟି ହୋଇଯିବାରୁ ଅଧିକାଂଶ ପିଲାମାନେ ଘରକୁ ଚାଲିଗଲେ । ଖରାଛୁଟି ଭିତରେ ମୁଁ ଚିଠି ପାଇଲି ଛାତ୍ରାବାସର ସିଟ୍ ସଂଖ୍ୟା ୧୦୦କୁ ବୃଦ୍ଧି କରାଗଲା ଏବଂ ଶ୍ରୀ ଧନେଶ୍ୱର ମହାପାତ୍ର ନାମକ ଜଣେ ଓଡିଆ ଅଧ୍ୟାପକଙ୍କୁ ସହ ପରିଚାଳକ ରୂପେ ନିଯୁକ୍ତି ଦିଆଗଲା । ଧନେଶ୍ୱର ମହାପାତ୍ର ପ୍ରଥମେ କଲିଜିଏଟ୍ ସ୍କୁଲ୍‌ରେ ସଂସ୍କୃତ ଶିକ୍ଷକ ଥିଲେ । ସେ ପ୍ରାଇଭେଟ୍ ଭାବରେ ପରୀକ୍ଷା ଦେଇ ଆଇ.ଏ, ବି.ଏ, ଓ ଏମ୍.ଏ ପାଶ କରି ଅଧ୍ୟାପକ ହୋଇଥିଲେ । ସେ ସହକାରୀ ପରିଚାଳକ ରହିବାରୁ ମୋର କାମ କମିଗଲା । ମୋତେ ଗବେଷଣା କରିବାକୁ ଅଧିକ ସମୟ ମିଳିଲା ।

ଏହିଠାରେ ମୋର ସ୍ନାତକୋତ୍ତର ଛାତ୍ରାବାସର କେତେଗୁଡିଏ ଅନୁଭୂତି ପାଠକ ମାନଙ୍କୁ ଜଣାଇ ଦେବାକୁ ଇଚ୍ଛା କରୁଛି । ସ୍ନାତକୋତ୍ତର ଛାତ୍ରାବାସର ପରିଚାଳକ ଥିବା ସମୟରେ ଦିନେ ଖରାବେଳେ ଖାଇବାକୁ ଆସିବା ବେଳେ ମୋ ଦୁଆର ମୁହଁରେ ୫ କିମ୍ବା ୬ ଜଣ ଛାତ୍ର ଛିଡା ହୋଇଥିଲେ । ସେମାନେ ମୋତେ ଭେଟିବା ପାଇଁ କହିଲେ । ସେମାନେ କହିଲେ ଆମେ ନ'ଖାଇ ଆପଣଙ୍କୁ କହିବାକୁ ଆସିଛୁ । କହିଲେ ଭାତରୁ ପିମ୍ପୁଡି ବାହାରିଲା । ମୁଁ କହିଲି କଣ ସମସ୍ତଙ୍କ ଭାତରୁ ପିମ୍ପୁଡି ବାହାରିଲା । ଜଣେ କହିଲା ମୋ ଭାତରୁ ପିମ୍ପୁଡି ବାହାରିଲା । ତେଣୁ ମୁଁ ଖାଇ ନାହିଁ । ମ୍ୟାନେଜରଙ୍କୁ କହିବାରୁ ସେ ହସି ଦେଲେ , କିଛି କହିଲେ ନାହିଁ । ତେଣୁ ମୁଁ ଖାଇବା ଜାଗାରୁ ଉଠି ଆସିଛି । ମୁଁ ପଚାରିଲି ଆଉ କାହା ଭାତରୁ ପିମ୍ପୁଡି ବାହାରିଛି । ଅନ୍ୟମାନେ କିଛି କହିଲେ ନାହିଁ । ତେଣୁ ମୁଁ ଜାଣିଗଲି ଜଣେ ପିଲା ଭାତରୁ ପିମ୍ପୁଡି ବାହାରିଛି । କେଉଁମାନେ ଖାଇ ନାହାଁନ୍ତି ? କେହି କିଛି କହିଲେ ନାହିଁ । ମୁଁ ସେମାନଙ୍କୁ କହିଲି ଛାତ୍ରାବାସକୁ ଯିବାପାଇଁ । ଯେଉଁ ପିଲାଟି ଖାଇ ନ'ଥିଲା ତାକୁ ଅପେକ୍ଷା କରିବା ପାଇଁ କହିଲି । ଘର ଭିତରକୁ ଯାଇ ସ୍ତ୍ରୀଙ୍କୁ କହିଲି ମୋ ସହିତ ଆଉ ଗୋଟିଏ ଖାଇବାକୁ ବାଢ । ଦୁଇଟି ମିଲ୍ ବଢାହେଲା । ମୁଁ ବାହାରକୁ ଯାଇ ସେ ପିଲାକୁ କହିଲି ତୁମେ ୧୦ଟା ବେଳେ ଖାଅ ତୁମକୁ ଭାରି ଭୋକ ହେବଣି । ତମେ ଆସ ଆମ ଘରେ ଗଣ୍ଡେ ଖାଇଦେବ । ମୋତେ ମଧ୍ୟ ଭାରି ଭୋକ

ହେଲାଣି । ପରେ ମ୍ୟାନେଜରଙ୍କୁ ଡାକି ପଚାରିବି । ଆମେ ଦୁହେଁ ଖାଇସାରିବା ପରେ ମୁଁ ସେ ଛାତ୍ରଙ୍କୁ ପଚାରିଲି ତମ ଘରେ ଯଦି ପିମ୍ପୁଡି ଭାତରୁ ବାହାରି ଥାଆନ୍ତା, ତୁମେ ଉଠି ଆସ ନା ମାଆଙ୍କୁ ଗାଳି ଦିଅ । ସେ ଚୁପ୍ ରହିଲେ । ତାଙ୍କୁ ବୁଝାଇଲି ଏମିତି ଛୋଟ କଥାଟିକୁ ବଡ କରିବା ଉଚିତ୍ ନୁହେଁ । ତାଙ୍କର ସବୁ ରାଗ ଶାନ୍ତ ହୋଇ ଯାଇଥିଲା । ମୁଁ ତାକୁ କହିଲି ମ୍ୟାନେଜରଙ୍କୁ ମୋ ପାଖକୁ ପଠାଇ ଦେବ । ଏ ବିଷୟରେ ମୁଁ ତାଙ୍କୁ ସତର୍କ କରାଇ ଦେବି । ସେ ପିଲାଟି ବୋଧେ ମ୍ୟାନେଜରଙ୍କୁ କହି ନ'ଥିଲେ । କାରଣ ମ୍ୟାନେଜର୍ ଆଉ ଆସି ନ'ଥିଲେ । ପରେ ମ୍ୟାନେଜରଙ୍କ ସହିତ ଦେଖା ହେଲା ବେଳେ ମୁଁ ତାଙ୍କୁ କହିଲି ପିଲାଟି ଯେତେବେଳେ ଆପଣଙ୍କୁ ପିମ୍ପୁଡି ବାହାରିଲା ବୋଲି କହିଲା ଆପଣ ହସିବାଟା ଠିକ୍ ହୋଇନାହିଁ । ଆପଣ ତାଙ୍କ ଭାତ ଥାଳିଟା ବଦଳାଇ ଦେଇ ଆଉ ଥରେ ଭାତ ଦେଇଥିଲେ ମୋ କାନକୁ ଏକଥା ଆସିନଥାନ୍ତା ।

ଥରେ ମୁଁ ଷଷ୍ଠ ବର୍ଷ ସ୍ପେକ୍‌ଟ୍ରୋସ୍କୋପି ଥିଓରି କ୍ଲାସ୍‌ରେ ପଢାଇବା ସମୟରେ ଛାତ୍ରମାନଙ୍କୁ କହିଲି ପ୍ରାଇମେରୀ କ୍ଲାସ୍‌ର ଛାତ୍ର ଯେପରି ତୁମେମାନେ ମଧ୍ୟ ସେହିପରି । ଛାତ୍ରମାନେ ମୋ କଥାରେ ପ୍ରତିବାଦ କଲେ । ମୁଁ କହିଲି ତାହା ପ୍ରମାଣ କରିଦେବି । ଛାତ୍ରମାନେ କହିଲେ ପ୍ରମାଣ କରନ୍ତୁ । ବର୍ତ୍ତମାନ ପ୍ରମାଣ କରି ପାରିବି ନାହିଁ । କେତେ ଦିନ ପରେ ମୁଁ ତାଙ୍କୁ କେତେ ଖଣ୍ଡ ଅଙ୍କ କଷିବା ପାଇଁ ଦେଲି ଏବଂ କହିଲି ଏହି ଅଙ୍କ ଗୁଡିକ କଷିଦେଲେ ତୁମର ବହୁତ ଉପକାର ହେବ । ତାର ପ୍ରାୟ ମାସକ ପରେ ପଚାରିଲି ସେ ଅଙ୍କ ଗୁଡିକ ସବୁ କିଏ କରିଛ ? କେହି ଜଣେ ହେଲେ କରିଛି ବୋଲି କହିଲେ ନାହିଁ । ସେହି କ୍ଲାସ୍‌ରେ କହିଲି ଆସନ୍ତା କ୍ଲାସ୍‌ରେ ଅଙ୍କ ଗୁଡିକ କରି ଆଣିଥିବ ମୁଁ ଦେଖିବି । ପର କ୍ଲାସ୍‌ରେ ମୁଁ ଖାତା ମାଗିଲି । କେତେ ଜଣ ଖାତାଦେଲେ କିନ୍ତୁ ସବୁ ଅଙ୍କ କରି ନ'ଥିଲେ । ମୁଁ ପୁଣି କହିଲି ଆସନ୍ତା କ୍ଲାସ୍‌ରେ ଯେ ଅଙ୍କ ସବୁ କରି ଆଣି ନ'ଥିବେ ତାଙ୍କୁ କ୍ଲାସ୍‌ରେ ବସିବାକୁ ଦେବିନାହିଁ । ତାପର କ୍ଲାସ୍‌ରେ ପ୍ରାୟ ସମସ୍ତେ ଅଙ୍କ ସବୁ କରି ଆଣିଥିଲେ । ମୁଁ କହିଲି ଆଜି ପ୍ରମାଣ କରି ଦେଉଛି ଯେ ପ୍ରାଇମେରୀ ଛାତ୍ର ଆଉ ତୁମ ଭିତରେ କିଛି ତଫାତ୍ ନାହିଁ । ଏତିକି ତଫାତ୍ ଯେ ପ୍ରାଇମେରୀ ପିଲାଙ୍କୁ ଶିକ୍ଷକ ମାଡ ଦିଅନ୍ତି । କିନ୍ତୁ ମୁଁ ତୁମକୁ କହିଲି କ୍ଲାସ୍‌ରେ ବସିବାକୁ ଦେବି ନାହିଁ ।

ଆମେ ଗିରିଧାରି ସାହୁ କଲୋନୀରେ ଥିବା ସମୟରେ ବୋଉଙ୍କ କହିବା ଅନୁସାରେ ମୋ ସ୍ତ୍ରୀ କାଠ ଚୁଲିରେ ମାଟି ହାଣ୍ଡିରେ ମଠା ପିନ୍ଧି ରାନ୍ଧୁଥିଲା । ତାପରେ ଅନ୍ୟମାନେ କହିବାରୁ ବଜାରରୁ ଏକ କରତ ଗୁଣ୍ଡା ଚୁଲି ଏବଂ କରତ ଗୁଣ୍ଡା ଏକ ବସ୍ତା କିଣି ଆଣିଲି । କେତେ ଦିନ ପରେ ଆମେ ଜାଣି ପାରିଲୁ କରତ ଗୁଣ୍ଡା ଚୁଲିରେ ଖର୍ଚ୍ଚ କମ୍ ହେଉଛି । କିନ୍ତୁ ଯେଉଁ ପାତ୍ରରେ ରନ୍ଧା ରନ୍ଧି କରୁଥିଲୁ ସେଗୁଡିକର ତଳଭାଗ ଏତେ କଳା ହୋଇ ଯାଉଛି ଯେ ତାକୁ ଛଡାଇବାକୁ ବଡ କଷ୍ଟ ହେଉଛି । ତେଣୁ ତିନି ଚାରି ମାସ ପରେ କରତ ଗୁଣ୍ଡା ଚୁଲିରେ ଆଉ ରନ୍ଧା ରନ୍ଧି କରିଲୁ ନାହିଁ । ତାପରେ ପୁଣି କୋଇଲା ଚୁଲିରେ ରାନ୍ଧିବା ଆରମ୍ଭ କରିଦେଲୁ । ବୋଉଙ୍କର ପ୍ରଥମ ଦେହ ଖରାପରୁ ଭଲ ହେବା ପରେ ଥରେ ସ୍ତ୍ରୀଙ୍କର ବଡ ଦଦେଇ ବୋଉଙ୍କୁ ଦେଖିବାକୁ ଆସିଥିଲେ । ତା ପୂର୍ବରୁ ଆମ ଘରେ ଚା ଜମା ହେଉ ନ'ଥିଲା । ଦଦେଇ ବୋଉଙ୍କୁ କହିଲେ ଆପଣ ସକାଳେ ଓ ଉପର ବେଳା ଚା ଖାଆନ୍ତୁ । ଆପଣଙ୍କୁ ଭଲ ଲାଗିବ ଏବଂ ଦେହ ଭଲ ରହିବ । ସେହି ଦିନ ଠାରୁ ବୋଉ ଦୁଇ ବେଳା ଚା ଖାଇଲେ । କ୍ରମେ ମୁଁ ଏବଂ ମୋର ସ୍ତ୍ରୀ ମଧ୍ୟ

ଚା ଖାଇଲୁ । ମୁଁ ଅନୁଭବ କଲି କୋଇଲା ଚୁଲିରେ ଚା କରିବାକୁ ବଡ ଅସୁବିଧା ହେଉଛି ତାପରେ ମୁଁ ଠିକ୍ କଲି ଗୋଟିଏ କିରୋସିନି ଷ୍ଟୋଭ କିଣି ଆଣିଲେ ଚା କରିବାକୁ ସୁବିଧା ହେବ । ତେଣୁ ଦରମା ପାଇଲା ଦିନ ଗୋଟିଏ ଭଲ କିରୋସିନି ଷ୍ଟୋଭ୍ ୪୦ ଟଙ୍କା ଦେଇ କିଣି ଆଣିଲି । ସେଥିରେ ଚା ହେଲା । ବୋଉଙ୍କୁ ଆସ୍ତେ ଆସ୍ତେ ମନାଇ ସେହି ଷ୍ଟୋଭ୍‌ରେ ଭାତ, ଡାଲି ଓ ତରକାରି ପ୍ରଭୃତି ରନ୍ଧାହେଲା । ଏହିପରି ଦୁଇ କିମ୍ବା ତିନି ବର୍ଷ ଚାଲିଗଲା । ଷ୍ଟୋଭ୍‌ଟି ଆସ୍ତେ ଆସ୍ତେ ଖରାପ ହୋଇଗଲା । ସେତେବେଳକୁ ବଜାରରେ ନୂଆ ହୋଇ ଜନତା ଷ୍ଟୋଭ୍ ବିକ୍ରି ହେଉଥାଏ । ସେହି ଜନତା ଷ୍ଟୋଭଟି କିରୋସିନିରେ ଚାଲେ । ବୁଝା ବୁଝି କରି ଜାଣିଲି ଜନତା ଷ୍ଟୋଭ ଯେତେବେଳେ ଇଛା ସେତେବେଳେ ମଧ୍ୟ ଲଗାଇ ହେବ । ତେଣୁ ମୋଟେ ଆଠ ଟଙ୍କା ଦେଇକରି କିଣି ଆଣିଲି । ଏହିପରି ଭାବରେ କିଛିଦିନ ଚାଲିଲା । ସ୍ନାତକୋତ୍ତର ଛାତ୍ରାବାସ କ୍ୱାଟରରେ ଥିବାବେଳେ ମୁଁ ଗୋଟିଏ ରେଫ୍ରିଜେରେଟର କିଣିବା ପାଇଁ ଠିକ୍ କଲି । ମୋ ସ୍ତ୍ରୀ କହିଲା ତୁମେ ଆଗ ବୋଉଙ୍କୁ ରାଜି କରାଇ ଦିଅ । ତାପରେ କିଣିବ । ନ'ହେଲେ ଗୁଡିଏ ଟଙ୍କାଦେଇ କିଣିବ କିନ୍ତୁ ବୋଉ ଯଦି ତା ଭିତରେ ରଖା ଯାଇଥିବା ଜିନିଷ ନ'ଖାଇବେ, ତେବେ ଅଯଥାରେ କେତେଗୁଡିଏ ଟଙ୍କା ଖର୍ଚ୍ଚ ହେବ । କିନ୍ତୁ କିଛି କାମରେ ଲାଗିବ ନାହିଁ । ସ୍ନାତକୋତ୍ତର ଛାତ୍ରାବାସ ନିକଟରେ ମୋର ସମ୍ପର୍କୀୟ ମେଜର ଧୀରେନ୍ଦ୍ର କୁମାର ନନ୍ଦ ରହୁଥିଲେ । ତାଙ୍କ ସ୍ତ୍ରୀ ମୋ ସ୍ତ୍ରୀର ଭଉଣୀ ହେବେ । ସେ ଆମ ଘରକୁ ବୁଲି ଆସନ୍ତି ଓ ଆମେ ତାଙ୍କ ଘରକୁ ବୁଲି ଯାଉ । ଦିନେ ଆମେ ସମସ୍ତେ ତାଙ୍କ ଘରକୁ ବୁଲି ଯାଇଥିଲୁ । ସେ ଆମକୁ ଲେମ୍ବୁ ସରବତ ପିଇବାକୁ ଦେଲେ । ବୋଉ ଥଣ୍ଡା ସରବତ ପିଇ ଦେଲେ । ତାଙ୍କୁ ଖୁବ୍ ଭଲ ଲାଗିଲା । ସେ ପଚାରିଲେ ପାଣି କିପରି ଏତେ ଥଣ୍ଡା ହେଲା । ମୁଁ କହିଲି ତାଙ୍କ ଘରେ ଗୋଟିଏ ଥଣ୍ଡା କରିବା ଯନ୍ତ୍ର ଅଛି । ମୋର ତ ଗୋଟିଏ ରେଫ୍ରିଜେରେଟର କିଣିବାକୁ ଇଛା ଥିଲା । ତେଣୁ ତାଙ୍କୁ ନେଇ ତାହା ଦେଖାଇ ଦେଲି ଏବଂ କହିଲି ଏହା ଭିତରେ ରନ୍ଧା ଜିନିଷ ରଖିଦେଲେ ୨/୩ ଦିନ ରହିଯିବ ଖରାପ ହେବ ନାହିଁ । ଘରକୁ ଆସିଲା ପରେ ମୋତେ କହିଲେ, 'ତୁ ଆମର ଗୋଟିଏ ସେହିପରି ଯନ୍ତ୍ର କିଣି ଦେଉନୁ ।' ବୋହୂକୁ ସୁବିଧା ହେବ । ସକାଳେ ଡାଲି ତରକାରୀ କରି ରଖିଦେଲେ ରାତିରେ ଆଉ ଥରେ କରିବାକୁ ପଡିବ ନାହିଁ । ଆଉ ଖରା ଦିନେ ଥଣ୍ଡା ପାଣି ଟିକିଏ ପିଇବାକୁ ମିଳିବ । ମୁଁ କହିଲି ମାଛ ମାଂସ ରନ୍ଧା ହେଲେ କେଉଁଠି ରହିବ ? ତା ଭିତରେ ତ ତିନୋଟି ଥାକ ଅଛି ଗୋଟିଏ ଥାକରେ ଆମିଷ ଅନ୍ୟ ଦୁଇ ଥାକରେ ନିରାମିଷ ରଖିବ । ତାଙ୍କଠାରୁ ଏ ସବୁ ଶୁଣିବା ପରେ ମୁଁ କହିଲି ସେହିପରି ଗୋଟିଏ ଯନ୍ତ୍ର ଆସନ୍ତା ମାସ ପ୍ରଥମ ସପ୍ତାହରେ କିଣି ଆଣିବି । ସେତେବେଳେ ରେଭେନ୍ସା କଲେଜରେ ଗୋଟିଏ କୋପରେଟିଭ୍ ସୋସାଇଟି ଥିଲା । ସେଥିରେ ସଭ୍ୟ ହେଲେ ମାସକୁ ଅତି କମ୍‌ରେ ୧୦ ଟଙ୍କା ଲେଖାଏଁ ଜମା କରିବାକୁ ପଡେ । କୌଣସି ସଭ୍ୟଙ୍କ ଦରକାର ପଡିଲେ ସେ କୋପରେଟିଭ୍ ସୋସାଇଟିରୁ ଟଙ୍କା କରଜ ନେଇ ପାରିବେ । କୋପରେଟିଭ୍ ସୋସାଇଟି ତରଫରୁ ପ୍ରତି ବର୍ଷ ଗୋଟିଏ ଭୋଜିର ଆୟୋଜନ କରାହୁଏ । ସବୁ ସଭ୍ୟମାନେ ସେଥିରେ ଯୋଗ ଦିଅନ୍ତି । ମୁଁ ତାହାର ସଭ୍ୟ ଥିଲି । ସୋସାଇଟିରୁ ୫୦୦ ଟଙ୍କା କରଜ ଆଣି ଦରମାରୁ ୧୦୦ ଟଙ୍କା ଓ ବାକି ୯୦୦ଟଙ୍କା ତିନି ମାସରେ ଦେବି ବୋଲି ଚୁକ୍ତି କରି ଗୋଟିଏ ଅଲୱିନ୍ ରେଫ୍ରିଜେରେଟର ଘରକୁ ଆଣିଲି । ପିଲାମାନଙ୍କର ଖୁସି ଦେଖି ମୋତେ ମଧ୍ୟ ଭାରି

ଖୁସି ଲାଗିଲା । ପିଲାମାନେ ଟିକିଏ ବଡ ହୋଇଯିବାରୁ ଥଣ୍ଡା ପାଣି ପିଇବା ପାଇଁ ସବୁବେଳେ ଫ୍ରିଜ୍ ଖୋଲି ଦିଅନ୍ତି । ଅଭ୍ୟାସ ନ'ଥିବାରୁ ଫ୍ରିଜ୍ ଦୁଆରଟା ମଧ୍ୟ ସବୁବେଳେ ଖୋଲା ରଖି ଦିଅନ୍ତି । ତେଣୁ ଫ୍ରିଜ୍‌ରେ ବହୁତ ବରଫ ଜମି ଯାଏ । ଫ୍ରିଜ୍‌ରେ ଭଲ ଥଣ୍ଡା ହୁଏ ନାହିଁ । ଏହାପରେ ଫ୍ରିଜ୍ ଦୁଆରେ ଗୋଟିଏ ତାଲା ପକାଇବାର ବନ୍ଦୋବସ୍ତ କଲି । ସେଥିରେ ଆମକୁ ମଧ୍ୟ ଅସୁବିଧା ହେଲା । ତେଣୁ ମୁଁ ଠିକ୍ କଲି ଫ୍ରିଜ୍ ନ'ଖୋଲି କିପରି ଥଣ୍ଡା ପାଣି ବାହାରି ପାରିବ ତାର ବନ୍ଦୋବସ୍ତ କରିବା ପାଇଁ ଭାବିଲି । ଏହି ବ୍ୟବସ୍ଥା କରିବା ପାଇଁ ଅନେକ ପ୍ରକାର ଉପାୟ କଲି । କିନ୍ତୁ ସେ ସବୁ ଉପାୟ ସନ୍ତୋଷ ଜନକ ହେଲା ନାହିଁ । ତେଣୁ ସେ ଉପାୟ ଗୁଡିକ ବର୍ଣ୍ଣନା କରୁନାହିଁ । ଯେଉଁ ଉପାୟଟି ସନ୍ତୋଷଜନକ ହେଲା ତାହା ପ୍ରକୃତରେ ପୁରୀର ସାମନ୍ତ ଚନ୍ଦ୍ରଶେଖର କଲେଜରେ ଅଧ୍ୟାପକ ଥିବାବେଳେ କାର୍ଯ୍ୟକାରୀ ହୋଇଥିଲା କାରଣ ପୁରୀର ବାୟୁ ମଣ୍ଡଳରେ ବହୁ ପରିମାଣର ଜଳିୟ ବାଷ୍ପ ଥିବାରୁ ଫ୍ରିଜ୍‌ର ଭିତରେ ଦିନେ ଦୁଇ ଦିନ ଖୋଲା ହେବା ପରେ ପ୍ରଚୁର ପରିମାଣରେ ବରଫ ଜମିଯାଏ । ତେଣୁ ଏକ ସୁବିଧା ଉପାୟରେ ଫ୍ରିଜ୍ ଦୁଆର ନ'ଖୋଲି କିପରି ଥଣ୍ଡା ପାଣି ବାହାର କରାଯାଇ ପାରିବ ଚିନ୍ତା କରି ଏହି ବ୍ୟବସ୍ଥା କରିଥିଲି । ସେହି ବ୍ୟବସ୍ଥା ବିଷୟରେ ଏଠାରେ ବର୍ଣ୍ଣନା କରୁଛି ।

ଆମ ଡିପାର୍ଟମେଣ୍ଟର ମେକାନିକ୍ ସାହାଯ୍ୟରେ ଫ୍ରିଜ୍‌ର ଗୋଟିଏ ପାଖରେ ଦୁଇଟି ତମ୍ବା ନଳୀ ଲଗାଇ ଦେଲି । ସେହି ନଳୀ ଦୁଇଟିକୁ ଆରଏଲ୍‌ଡାଇଟ୍ ପେଷ୍ଟ ଦ୍ୱାରା ଫ୍ରିଜ୍ କାନ୍ଥ ଦେହରେ ସଂଯୁକ୍ତ କରିଦେଲି । ଫ୍ରିଜ୍‌ର ଦେହରେ ସେହି ତମ୍ବା ନଳୀ ସହିତ ଦୁଇଟି ପେଟ୍ରୋଲ୍ ନଳୀ ଯୋଗ କରିଦେଲି । ଗୋଟିଏ ରବର ଠିପି ଦେହରେ ଦୁଇଟି କଣା କରି ତା ଭିତରେ ସେହି ପେଟ୍ରୋଲ୍ ନଳୀ ଦୁଇଟି ପୁରାଇ ଦେଲି । ସେ ଠିପିଟିକୁ ଗୋଟିଏ ପ୍ଲାଷ୍ଟିକ୍ ବୋତଲର ମୁହଁରେ ଭଲ ଭାବରେ ଦେଇଦେଲି । ଯେପରି ଗୋଟିଏ ନଳୀର ମୁହଁ ଠିପି ପାଖରେ ଏବଂ ଅନ୍ୟ ନଳୀର ମୁହଁଟି ବୋତଲର ତଳେ ରହିବ । ଯେଉଁ ନଳୀଟି ବୋତଲର ମୁହଁ ପାଖରେ ଅଛି ତାହା ଯେଉଁ ତମ୍ବା ନଳୀରେ ସଂଯୁକ୍ତ ହୋଇଛି, ସେହି ନଳୀରେ ଆଉ ଗୋଟିଏ ପେଟ୍ରୋଲ ନଳୀ ଲଗାଇ ତାର ଅନ୍ୟ ମୁହଁଟି ଗୋଟିଏ ପ୍ଲାଷ୍ଟିକ୍ ବାଲ୍ଟିର ତଳ ଭାଗରେ କଣାକରି ଲଗାଇ ଦେଲି ଏବଂ ବାଲ୍ଟିକୁ ଫ୍ରିଜ୍‌ର ଉପରେ ଥୋଇଦେଲି । ଅନ୍ୟ ତମ୍ବା ନଳୀରେ ଆଉ ଏକ ପେଟ୍ରୋଲ୍ ନଳୀ ସଂଯୁକ୍ତ କଲି । ସେହି ନଳୀର ଆଉ ଗୋଟିଏ ମୁଣ୍ଡରେ ଏକ ୧୮୦ ଡିଗ୍ରି କୋଣ କରୁଥିବା କାଚ କିମ୍ବା ତମ୍ବା ନଳୀ ଯୋଗକରି ବଙ୍କା ନଳୀଟିକୁ ପ୍ଲାଷ୍ଟିକ୍ ବାଲ୍ଟିର ପନ୍ଦରେ ଓହଳାଇ ଦେଲି । ଫ୍ରିଜ୍ ଉପରେ ଥୁଆ ହୋଇଥିବା ବାଲ୍ଟି ଭିତରେ ପାଣି ପୁରାଇ ଦେଲି । ଗୋଟିଏ ଗ୍ଲାସ୍ ପନ୍ଦରେ ବଙ୍କା ନଳୀଟି ଲଗାଇ ଗ୍ଲାସଟି ହାତରେ ଧରି ତଳକୁ ନେଇଗଲେ ଫ୍ରିଜ୍‌ରେ ଥିବା ବୋତଲରୁ ଥଣ୍ଡା ପାଣି ଗ୍ଲାସ୍ ଭିତରେ ପଡିବ । ପୁଣି ଗ୍ଲାସ୍‌କୁ ଟେକି ଦେଲେ ପାଣି ବନ୍ଦ ହୋଇଯିବ । ଯେତିକି ଥଣ୍ଡା ପାଣି ବାହାରୁ ଥିବ ସେତିକି ପାଣି ବୋତଲ ଭିତରେ ପଶୁଥିବ । ଏହି ବ୍ୟବସ୍ଥା ଅବସର ନେବା ପର୍ଯ୍ୟନ୍ତ ବ୍ୟବହାର ହେଉଥିଲା । ଅବସର ନେବା ପରେ ଫ୍ରିଜ୍‌ଟି ବିକ୍ରି କରିଦେଲି । ଭୁବନେଶ୍ୱର ଆସି ଆଉ ଗୋଟିଏ ନୂଆ ଫ୍ରିଜ୍ କିଣିଲି । ସେଥିରେ ଏ ବ୍ୟବସ୍ଥା କରିବା ଦରକାର ପଡିଲା ନାହିଁ । କାରଣ ପିଲାମାନେ ବଡ ହୋଇ ଯାଇଥିଲେ ।

ଏହା ଭିତରେ ମୋ ଥିସିସ୍‌ର ପାଣ୍ଡୁଲିପିଟି ଲେଖା ସରିଯାଇଥାଏ । ତେଣୁ ଥିସିସ୍‌ଟି ଟାଇପ୍ କରିବା ପୂର୍ବରୁ ଲେଖାଗୁଡିକ ତ୍ରିଲୋଚନ ବାବୁଙ୍କ ପାଖକୁଯାଇ ସଂଶୋଧନ କରିବା ନିହାତି ଦରକାର ଭାବି ଦୁଇ ତିନି ଥର ଦୁଇ ତିନି ଦିନ ପାଇଁ କଲିକତା ଯାଇ ସଂଶୋଧନ କରାଇ ଆଣିଥିଲି । ଥରେ ଗୋଟିଏ ଦିନ ରାତିରେ ପୁରୀ ଏକ୍ସପ୍ରେସରେ କଲିକତା ଯିବା ପାଇଁ ଟିକେଟ କରିଥିଲି । ସେହିଦିନ ସକାଳେ ଫିଜିକ୍ସ ଡିପାର୍ଟମେଣ୍ଟର ମୁଖ୍ୟ ଡକ୍ଟର ହରିହର ମିଶ୍ର ମୋତେ କହିଲେ ତମେ ଯାଇ ଶୀଘ୍ର ଶିକ୍ଷାମନ୍ତ୍ରୀ ଶ୍ରୀ ବନମାଳି ପଟ୍ଟନାୟକଙ୍କୁ ଭୁବନେଶ୍ୱର ସଚିବାଳୟର ତାଙ୍କ କୋଠରୀରେ ଦେଖା କର । ସେ ମୋ ହାତରେ ତୁମକୁ ଡକାଇ ପଠାଇଛନ୍ତି । ତେଣୁ ସେହି ଦିନ କଲେଜରୁ ସଚିବାଳୟଯାଇ ସଚିବାଳୟରେ ଶିକ୍ଷା ମନ୍ତ୍ରୀଙ୍କୁ ଦେଖାକଲି । ସେ ଅନୁମତି ଦେବା ପରେ ତାଙ୍କ କୋଠରୀକୁ ଗଲି ସେ କହିଲେ ମୁଁ ତୁମକୁ ଦେଖିବା ପାଇଁ ଡକାଇ ପଠାଇ ଥିଲି । ସେ ମୋର ଗବେଷଣା ବିଷୟରେ ପ୍ରଶ୍ନ କଲେ । ଉତ୍ତର ଦେଇ ସାରିଲା ପରେ ମୁଁ ତାଙ୍କୁ କହିଲି ମୋର ଆଜି ପୁରୀ ଏକ୍ସପ୍ରେସରେ କଲିକତା ଯାଇ ମୋର ଥିସିସ୍‌ର ପାଣ୍ଡୁ ଲିପିଟି ଡକ୍ଟର ତ୍ରିଲୋଚନ ପ୍ରଧାନଙ୍କ ଦ୍ୱାରା ସଂଶୋଧନ କରାଇବି । ତାପରେ ପଚାରିଲେ କାହିଁକି ଫିଜିକ୍ସ ଡିପାର୍ଟମେଣ୍ଟରେ ଅଧିକ ସଂଖ୍ୟକ ଅଧ୍ୟାପକ ଗବେଷଣା କରୁ ନାହାନ୍ତି ? କଣ କରିଲେ ଅଧ୍ୟାପକମାନେ ଗବେଷଣା କରିବାକୁ ଆଗ୍ରହ ପ୍ରକାଶ କରିବେ । ମୁଁ ଉତ୍ତର ଦେଲି ଯଦି କୌଣସି ଅଧ୍ୟାପକ ଗବେଷଣା କରୁଥାଆନ୍ତି ତେବେ ତାଙ୍କର ବଦଳି ହେବ ନାହିଁ ବୋଲି କିଛି ନିୟମ ପ୍ରଣୟନ କରାଯାଏ, ତାହହେଲେ ମୁଁ ଭାବୁଛି ଅଧ୍ୟାପକ ମାନେ ଆଗ୍ରହ ପ୍ରକାଶ କରି ଗବେଷଣାରେ ମନବଳାଇବେ । ମୋର ଆଜି କଲିକତା ଯିବାର ଅଛି ବୋଲି କହି ତାଙ୍କଠାରୁ ଶିଘ୍ର ବିଦାୟ ନେଇ କଟକ ଫେରି ଆସିଲି ।

୧୯୬୮ ମସିହାରେ ଶ୍ରୀ ବିଧୁଭୂଷଣ ଦାସ ନାମକ ଜଣେ ପ୍ରଫେସର ରେଭେନ୍ସା କଲେଜର ଅଧ୍ୟକ୍ଷ ହେଲେ । ସେ ମହାଶୟ ଆଗରୁ ରେଭେନ୍ସା କଲେଜର ଇଂରାଜୀ ପ୍ରଫେସର ଥିଲେ । ଛୁଟିନେଇ ନେପାଳରେ ତ୍ରିଭୁବନ ବିଶ୍ୱବିଦ୍ୟାଳୟରେ କୌଣସି ଗୋଟିଏ କଲେଜର ଅଧ୍ୟକ୍ଷ ଭାବରେ କାର୍ଯ୍ୟ କରୁଥିଲେ । ସେ ଅଧ୍ୟକ୍ଷ ହେବାର କିଛି ଦିନ ପରେ ଗୋଟିଏ ବିଜ୍ଞାପନ ଦେଲେ ଯେ ଯେଉଁ ଅଧ୍ୟାପକ ମାନେ ଛାତ୍ରାବାସର ପରିଚାଳକ ହେବାକୁ ଚାହାଁନ୍ତି । ସେମାନେ ଦରଖାସ୍ତ କରନ୍ତୁ । ମୋର ସ୍ନାତକୋତ୍ତର ଛାତ୍ରାବାସରେ ପରିଚାଳକ ହେବାର ୪ ବର୍ଷ ହୋଇଥାଏ, ତେଣୁ ମୁଁ ଦରଖାସ୍ତ କରିଲି ନାହିଁ । ଶ୍ରୀ ବ୍ରଜସୁନ୍ଦର ମହାନ୍ତି ନାମକ ଜଣେ ଫିଜିକ୍ସ ଅଧ୍ୟାପକ ସ୍ନାତକୋତ୍ତର ଛାତ୍ରାବାସର ପରିଚାଳକ ହେଲେ । ତେଣୁ ମୁଁ ସେ କ୍ୱାଟର ଛାଡି ଗୋଟିଏ ମିନି ଟ୍ରକ୍‌ରେ ମୋର ଜିନିଷ ପତ୍ର ନେଇ ଆସି ଭୁବନେଶ୍ୱରରେ ଥିବା ନିଜ ଘରେ ରହିଲି । ମୁଁ ସେତେବେଳେ ଭୁବନେଶ୍ୱରରୁ କଟକ ଟ୍ରେନର ଫାଷ୍ଟ କ୍ଳାସ୍‌ରେ ମାସିକିଆ ଟିକେଟ କରି ଯିବା ଆସିବା କରୁଥିଲି । ଏହା ଭିତରେ ମୋର ଥିସିସ୍ ଲେଖା ସରିଗଲା । ଏହି ଲେଖାକୁ ସଂଶୋଧନ କରିବା ପାଇଁ ମଝିରେ ମଝିରେ ଦୁଇ ତିନି ଥର କଲିକତା ଯାଇ ତ୍ରିଲୋଚନ ବାବୁଙ୍କ ଠାରୁ ଥିସିସ୍‌ର ପାଣ୍ଡୁଲିପିଟି ସଂଶୋଧନ କରାଇ ଆଣିଲି । ସେହି ବର୍ଷ ପୂଜା ଛୁଟିରେ ଶ୍ରୀ ଗ୍ରହାଚାର୍ଯ୍ୟ ନାମକ ଜଣେ କେମେଷ୍ଟ୍ରିର ଆସିସ୍‌ଟାଣ୍ଟଙ୍କ ଦ୍ୱାରା ଥିସିସ୍ ଟାଇପ୍ କରାଇଲି । ଟାଇପ୍ କରିବା କାମଟି ବଡ ଦିନ ଛୁଟି ପୂର୍ବରୁ ସରିଗଲା । ବଡ ଦିନ ଛୁଟିରେ ଥିସିସ୍‌ରେ ଥିବା ଗାଣିତିକ

ସୂତ୍ର ଗୁଡିକ ମୁଁ ନିଜେ ହାତରେ ଲେଖୁଥିଲି । ବଡ ଦିନ ଛୁଟି ଭିତରେ କାମ ସରିବନି ଜାଣିପାରି ମୁଁ ବଡ ଦିନ ଛୁଟିକୁ ମିଶାଇ ଆଉ ୧୫ ଦିନ ଛୁଟିନେଲି । ଥିସିସ୍ ଲେଖା କାମ ସାରି ୧୯୬୯ ମସିହା ଜାନୁଆରୀ ଶେଷ ସପ୍ତାହରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଦାଖଲ କରି ଦେଲି । ତାପରେ ୨/୩ ମାସ ଶାନ୍ତିରେ ରହିଲି । ଏହିପରି ଭାବରେ କେତେଦିନ କଟିଗଲା ।

ଲେଖୁଥିବା ଥିସିସିରେ ମୁଁ ବିଶେଷ ଭାବରେ ପ୍ଲାଜମା ଭିତରେ ତରଙ୍ଗ ପ୍ରସାରଣ ବିଭିନ୍ନ ପରିସ୍ଥିତିରେ କିପରି ହୁଏ, ତାହା ଉପରେ ଆଲୋଚନା କରିଥିଲି । ଥିସିସି ଲେଖିବା ବେଳେ ମନକୁ ଆସିଲା ତରଙ୍ଗ ପ୍ରସାରଣ କିପରି (୧) ତାତ୍ତ୍ୱିକ ଆପେକ୍ଷିକ ତତ୍ତ୍ୱ (Theory of relativity) ଉପରେ ଗବେଷଣା କରିହେବ । (୨) ଆପେକ୍ଷିକ ତତ୍ତ୍ୱ ଓ ଚୁମ୍ବକ କ୍ଷେତ୍ର ଥିବା ସମୟରେ ଗବେଷଣା କରି ହେବ । ସେହି ଦୁଇଟି ବିଷୟରେ ନୂଆକାମ କରିବା ପାଇଁ ମନକୁ ଆସିଲା । ମନେ ମନେ ଠିକ୍ କଲି ପି.ଏଚଡି ପାଇସାରିଲେ ନୂଆ କାମ ଦୁଇଟି କରିବି ।

## ଅଧ୍ୟାପକ, ସାମନ୍ତ ଚନ୍ଦ୍ର ଶେଖର କଲେଜ

ଦିନେ ମୁଁ ଶୁଣିବାକୁ ପାଇଲି ମୋର ଗଙ୍ଗାଧର ମେହେର କଲେଜକୁ ବଦଳି ହେଉଛି । ବଦଳି ଆଦେଶକୁ ଅପେକ୍ଷା କରିଥାଏ । କିନ୍ତୁ ଆଦେଶ ପାଇଲି ମୋର ପୁରୀ ବଦଳି ହୋଇଛି । ମୁଁ ଯାଇ ପୁରୀ କଲେଜରେ ଯୋଗ ଦେଲି । କଲେଜରେ ଯୋଗ ଦେଲାବେଳେ ଡକ୍ଟର ଶ୍ରୀନିବାସ ସାହୁ ଅଧ୍ୟକ୍ଷ ଥିଲେ । ସେତେବେଳେ ମଧ୍ୟ କୌଣସି କାରଣରୁ ଛାତ୍ର ଆନ୍ଦୋଳନ ଚାଲିଥିଲା । କାହିଁକି ଚାଲିଥିଲା ତାହାର କାରଣ ଭଲ ଭାବରେ ମନେନାହିଁ । ଥରେ ଅଧ୍ୟକ୍ଷଙ୍କ କୋଠରୀରେ ବସିଥିଲି । ପିଲାମାନେ କଲେଜରେ ଗୋଳମାଳ କରୁଛନ୍ତି ବୋଲି ଶିକ୍ଷା ବିଭାଗର ନିର୍ଦ୍ଦେଶକଙ୍କ ସଙ୍ଗେ ଅଧ୍ୟକ୍ଷ ଟେଲିଫୋନ୍‌ରେ କଥାବାର୍ତ୍ତା କରିବାକୁ ଚେଷ୍ଟା କରୁଥିଲେ । କିନ୍ତୁ ନିର୍ଦ୍ଦେଶକ ଉପସ୍ଥି ନ'ଥିଲେ । ତାପରେ ଶିକ୍ଷା ବିଭାଗର ସେକ୍ରେଟାରୀଙ୍କୁ ଫୋନ୍ ଲଗାଇଲେ । ତାଙ୍କୁ ମଧ୍ୟ ପାଇଲେ ନାହିଁ । ଶିକ୍ଷାମନ୍ତ୍ରୀଙ୍କୁ ମଧ୍ୟ ପାଇଲେ ନାହିଁ । ତେଣୁ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଫୋନ୍ ଲଗାଇଲେ । ସେତେବେଳେ ମୁଖ୍ୟମନ୍ତ୍ରୀ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଥିଲେ । ତାଙ୍କୁ ପଚାରିଲେ "ପିଲାମାନେ ଗୋଳମାଳ କରୁଛନ୍ତି । ମୁଁ କଲେଜ ଛୁଟି କରିବି କି ନାହିଁ" ? ମୁଖ୍ୟମନ୍ତ୍ରୀ କହିଲେ ଆପଣ "ଯାହା ଠିକ୍ ବୋଲି ଭାବୁଛନ୍ତି ତାହା କରନ୍ତୁ । ଆପଣ ପରିସ୍ଥିତିକୁ ଭଲଭାବରେ ଜାଣୁଛନ୍ତି । ତେଣୁ ଆପଣ ଆଉ କାହାକୁ ପଚାରିବା ଦରକାର ନାହିଁ । ସରକାର ଆପଣଙ୍କ କାମକୁ ସମର୍ଥନ କରିବେ ।" ଅଧ୍ୟକ୍ଷ କଲେଜକୁ କିଛି ଦିନ ପାଇଁ ଛୁଟି କରିଦେଲେ । ସେତେବେଳେ ମୁଁ ଭୁବନେଶ୍ୱରରୁ ପୁରୀ ସବୁଦିନ ବସ୍‌ରେ ଯିବା ଆସିବା କରୁଥିଲି । ଛୁଟି ହେବାରୁ ମୋତେ ଟିକିଏ ସୁବିଧା ହେଲା । କଲେଜ ଖୋଲିଗଲା ପରେ ପୁରୀର ସମୁଦ୍ର କୂଳରେ ଗୋଟିଏ ଘର ଭଡା ନେଲି । ସେ ଘରର ନାମ ହେଉଛି 'ଜଗନ୍ନାଥ ଧାମ ।' ସେ ଘରଟି ହେଉଛି ସୁବାଷ ବୋଷଙ୍କ ଭାଇଙ୍କର । ସେ ଘରଟିର ମାସିକ ୧୦୫ ଟଙ୍କା ଭଡା ଠିକ୍ ହୋଇଥିଲା । ପିଲାମାନଙ୍କୁ ନେଇ ସେହି ଘରେ ରହିଲି । ସକାଳୁ ମୁଁ ଓ ମୋ ସ୍ତ୍ରୀ ସମୁଦ୍ର କୂଳକୁ ବୁଲି ଯାଉଥିଲୁ । ମୋ ଦୁଇ ଝିଅଙ୍କ ନାମ ସରକାରୀ ବାଳିକା ବିଦ୍ୟାଳୟରେ ଲେଖାଇ ଦେଲି ।

ଦିନେ ବି.ଏସ୍‌ସି ପ୍ରାକ୍ଟିକାଲ୍ କ୍ଲାସ୍ ସକାଳ ୭ଟା ବେଳେ ପ୍ରଥମେ ହୋଇଥିଲା । ମୁଁ ଠିକ୍ ୭ଟା ପୂର୍ବରୁ କ୍ଲାସ୍ ନେବାକୁ ଗଲି । କିନ୍ତୁ ଘର ଖୋଲି ନ'ଥିଲା କି ଛାତ୍ର କେହି ଆସି ନ'ଥିଲେ ।

ଘଣ୍ଟାଏ ପରେ ଘର ଖୋଲିଲା । ଛାତ୍ରମାନେ ଜଣ ଜଣ ହୋଇ ଆସିଲେ । ମୁଁ ପିଲାମାନଙ୍କୁ ପଚାରିଲି "ଏତେ ଡେରିରେ କାହିଁକି ଆସୁଛ" ? ପିଲାମାନେ ସମସ୍ତେ ଏକ ସ୍ୱରରେ କହିଲେ " କେହି ଅଧ୍ୟାପକ କ୍ଲାସ୍‌କୁ ୭ଟା ବେଳେ ଆସନ୍ତି ନାହିଁ । ତେଣୁ ଆମେ କେହି ଆସୁନାହୁଁ"। ତାଙ୍କ ଭିତରୁ ଜଣେ ମୁହଁ ଲୁଚାଇ କହିଲା ଫିଜିକ୍ସ ପ୍ରାକ୍ଟିକାଲ କ୍ଲାସରେ କୌଣସି ପ୍ରାକ୍ଟିକାଲ କରିହୁଏ ନାହିଁ । ଆମେ ସମସ୍ତେ କିଛି ନ ବୁଝି ପ୍ରାକ୍ଟିକାଲ ଖାତାରେ ଲେଖିଦେଉ । ପରୀକ୍ଷାରେ ମଧ୍ୟ ଉଗାରି ଦେଉ । ଏମିତି କଥାବାର୍ତ୍ତା ହେଉ ହେଉ କ୍ଲାସ୍‌ଟି ସରିଗଲା । ମୁଁ ରେଭେନ୍ସା କଲେଜରେ ଥିଲା ବେଳେ ସେଠାରେ ସବୁ ପରୀକ୍ଷା ହେଉଥିଲା । ପିଲାମାନେ ମଧ୍ୟ ସବୁ ପରୀକ୍ଷା କରୁଥିଲେ । ମୋ ମନରେ ପ୍ରଶ୍ନ ଉଠିଲା ଏଠାରେ କାହିଁକି ହେଉନାହିଁ ? ମୁଁ ଜାଣିଲି ପୁରୀରେ ଅଳ୍ପ ଦିନ ହେଲା ବି.ଏସ୍‌ସି ଅନର୍ସ ଖୋଲିଥାଏ ଏବଂ ଉପକରଣ ଗୁଡ଼ିକ ଠିକ୍ ଭାବରେ ସଜଡା ହୋଇନ'ଥାଏ । ମୁଁ ଆସ୍ତେ ଆସ୍ତେ କେତୋଟି ଅନର୍ସ କ୍ଲାସ୍‌ରେ ଲାଗିକରି ସବୁ ଉପକରଣ ଗୁଡ଼ିକ ଠିକ୍ ସଜାଡି ଦେଲି । ପରୀକ୍ଷା ସବୁ କିପରି କରିବାକୁ ହେବ ତାହା ପିଲାଙ୍କୁ ବୁଝାଇ ଦେଲି । ତାପରେ ପିଲାମାନେ ଆସ୍ତେ ଆସ୍ତେ ପରୀକ୍ଷା ସବୁ କରିବାକୁ ଆଗ୍ରହୀ ହେଲେ । ମୁଁ ସବୁ ପରୀକ୍ଷା କରିବାର ପଦ୍ଧତି ମୋର ଶିକ୍ଷକ ଶ୍ରୀ ନାରାୟଣ ମିଶ୍ରଙ୍କ ଠାରୁ ଶିଖିଥିଲି । ପୁରୀ କଲେଜରେ ମୋର ଇଚ୍ଛା ହେଲା ଗୋଟିଏ ଭଲ ପ୍ରାକ୍ଟିକାଲ୍ ବହି ଲେଖିବାକୁ । ଏହି ସମୟରେ ସୁଯୋଗ ମଧ୍ୟ ମିଳିଗଲା । ଓଡିଶା ଟେକ୍‌ଷ୍ଟ ବୁକ୍ ବ୍ୟୁରୋ ଫିଜିକ୍ସ ଅନର୍ସର ଇଲେକ୍‌ଟ୍ରିସିଟି ଓ ମ୍ୟାଗ୍ନେଟିଜିମ୍‌ର ବିଭିନ୍ନ ପରୀକ୍ଷା ଗୁଡ଼ିକୁ ନେଇ ଗୋଟିଏ ବହି ଓଡିଆରେ ଲେଖିବା ପାଇଁ ମୋତେ ଅନୁରୋଧ କରିଥିଲେ । ମୋର ସମ୍ମତି ଜଣାଇଦେଲି । ତା ପୂର୍ବରୁ ଟେକ୍‌ଷ୍ଟ ବୁକ୍ ବ୍ୟୁରୋର ନିର୍ଦ୍ଦେଶରେ ମଡର୍ଣ୍ଣ ଫିଜିକ୍ସ ଉପରେ ଖଣ୍ଡିଏ ବହି ଓଡିଆରେ ଲେଖିଥିଲି ।

୧୯୬୯ ଡିସେମ୍ବର ମାସର ଶେଷ ଆଡକୁ ମୁଁ କୌଣସି କାରଣ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟ ଯାଇଥିଲି । ବିଶ୍ୱବିଦ୍ୟାଳୟର ଗୋପନୀୟ ବିଭାଗକୁ ଯାଇ ମୋ ଥିସିସ୍ ସମ୍ବନ୍ଧରେ ପରୀକ୍ଷକଙ୍କର ମନ୍ତବ୍ୟ ଆସିଲାଣି କି ନାହିଁ ଜାଣିବାକୁ ସେହି ବିଭାଗର ମୁଖ୍ୟଙ୍କୁ ପଚାରିଲି । ତାଙ୍କୁ ଭଲ କରି ଚିହ୍ନି ଥିଲି । ସେ କହିଲେ ଏହା ଗୁପ୍ତ ବିଷୟ ତୁମକୁ କୁହାଯିବ ନାହିଁ । ମୋତେ ବଡ ଖରାପ ଲାଗିଲା । ମୁଁ ଚାଲି ଆସିଲି । ଏହି ସମୟରେ ସେହି ବିଭାଗର ଜଣେ କର୍ମଚାରୀ ବାହାରକୁ ଆସି ମୋତେ କହିଲେ ଆପଣଙ୍କ ଥିସିସ୍ ପାଇଁ ସବୁ ପରୀକ୍ଷକଙ୍କ ଠାରୁ ଭଲ ମନ୍ତବ୍ୟ ଆସିଯାଇଛି । ଭଲ ମନ୍ତବ୍ୟ ଆସିଛି ବୋଲି ଶୁଣି ମୋ ମନ ଭାରି ଖୁସି ହୋଇଗଲା । ତାପରେ କହିଲେ ଡକ୍ଟର ତ୍ରେହାନ ନାମକ ଚଣ୍ଡିଗଡର ଜଣେ ପ୍ରଫେସରଙ୍କୁ ଚତୁର୍ଥ ପରୀକ୍ଷକ ଭାବରେ ନିଯୁକ୍ତି ଦିଆଯାଇଛି । ମୁଁ ଡକ୍ଟର ତ୍ରେହାନଙ୍କୁ ଡେରାଡୁନସି ସମର ସ୍କୁଲ୍‌ରେ ଭଲ ଭାବରେ ଜାଣିଥିଲି । ସେ ମଧ୍ୟ ଡକ୍ଟର ପ୍ରଧାନଙ୍କର ଭଲ ସାଙ୍ଗ ଥିଲେ । ସେତେବେଳର ନିୟମ ଅନୁସାରେ ତିନି ଜଣ ପରୀକ୍ଷକ ନିଯୁକ୍ତି ପାଆନ୍ତି । ସେମାନେ ରାଜି ହେଲେ ତାଙ୍କ ପାଖକୁ ସବୁ ଥିସିସ୍ ପଠାଯାଏ । ପରୀକ୍ଷକଙ୍କ ମଧ୍ୟରୁ ଦୁଇଜଣ ଭାରତୀୟ ଓ ଜଣେ ଅନ୍ୟ ଦେଶର । ସବୁ ପରୀକ୍ଷକ ଭଲ ମନ୍ତବ୍ୟ ଦେଲେ ଚତୁର୍ଥ ଭାରତୀୟ ପରୀକ୍ଷକଙ୍କୁ ନିଯୁକ୍ତି କରାଯାଏ । ତିନି ଜଣ ଭାରତୀୟ ପରୀକ୍ଷକ ମୌଖିକ ପରୀକ୍ଷା ପାଇଁ ଆସନ୍ତି । ମୁଁ ପୁରୀକୁ ଫେରି ମୋ ସ୍ତ୍ରୀକୁ ସବୁ କଥା କହିଲି । ସେ ମଧ୍ୟ ବହୁତ ଖୁସି ହେଲା ଏବଂ କହିଲା ପିଏଚ୍.ଡି ଫଳ

ବାହାରିବା ପରେ ଜଗନ୍ନାଥଙ୍କ ଦେଉଳରେ ଗୋଟିଏ ପତାକା ବନ୍ଧା ହେବ । ସେ ପତାକାଟି ନିଜେ ତମେ ସିଲାଇ କରିବ । ମୁଁ ରାଜି ହେଲି ।

ଏହା ଭିତରେ ଶୁଣାଗଲା, କେତେ ଜଣ ଅଧ୍ୟାପକଙ୍କର ପ୍ରାଧ୍ୟାପକ ପଦବିକୁ ପ୍ରମୋଶନ ହେବ । ମୋର ହେବ ବୋଲି ଜାଣିଲି । ସେତେବେଳେ ଶିକ୍ଷା ବିଭାଗରେ ନିୟମ ଥିଲା ଜଣେ ଅଧ୍ୟାପକ ଥିବା ସମୟରେ ଯଦି ପିଏଚ୍.ଡି ପାଆନ୍ତି, ତେବେ ସେ ଦୁଇ ବର୍ଷର ବୃଦ୍ଧି ଦରମା ପାଇବେ । କିନ୍ତୁ ପ୍ରାଧ୍ୟାପକ ଥାଇ ପିଏଚ୍.ଡି ପାଇଲେ ବୃଦ୍ଧି ଦରମା ପାଇବେ ନାହିଁ । ତେଣୁ ମୁଁ ତ୍ରିଲୋଚନ ବାବୁଙ୍କ ପାଖକୁ ମୋର ମୌଖିକ ପରୀକ୍ଷା ଶୀଘ୍ର କରିଦେବା ପାଇଁ ଲେଖିଲି । ୧୯୭୦ ମସିହା ଜାନୁଆରୀ ୨ ତାରିଖରେ ପ୍ରାଧ୍ୟାପକ ଭାବରେ ଜାନୁଆରୀ ୭ ତାରିଖରେ ଯୋଗ ଦେବା ପାଇଁ ଆଦେଶ ପାଇଲି । ମୁଁ ୬ ତାରିଖରେ ଶିକ୍ଷା ନିର୍ଦ୍ଦେଶକଙ୍କୁ ତାଙ୍କ ଅଫିସ୍‌ରେ ସବୁ କଥା କହିଲି । ସେ ମୋ କଥାର ଗୁରୁତ୍ୱ ବୁଝି ଅନୁମତି ଦେଲେ ଯେ ତୁମେ ପରେ ପ୍ରାଧ୍ୟାପକ ହିସାବରେ ଯୋଗ ଦେଇ ପାରିବ । ଜାନୁଆରୀ ୧୨ ତାରିଖ ଦିନ ତ୍ରିଲୋଚନ ବାବୁଙ୍କ ଠାରୁ ଟେଲିଗ୍ରାମ ପାଇଲି ଯେ ମୋର ପିଏଚ.ଡି. ମୌଖିକ ପରୀକ୍ଷା ଜାନୁଆରୀ ୨୦ ତାରିଖରେ ହେବ । ତୁମେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଯୋଗାଯୋଗ କର । ସେତେବେଳକୁ ଶ୍ରୀ ସାମାନ୍ତଳ ପଣ୍ଡା ପରୀକ୍ଷା ନିୟନ୍ତ୍ରକ ଥିଲେ । ମୁଁ ତାଙ୍କ ସଙ୍ଗେ ଦେଖା କଲି । ସେ କହିଲେ ଆମେ ଟେଲିଗ୍ରାମ୍ ପାଇଛୁ । କିନ୍ତୁ ଅନ୍ୟ ପରୀକ୍ଷକ ମାନେ କିଛି ଜଣାଇ ନାହାଁନ୍ତି । ତେଣୁ ନିୟମ ଅନୁସାରେ ମୌଖିକ ପରୀକ୍ଷା ପାଇଁ ଦିନ ଧାର୍ଯ୍ୟ କରି ପାରିବୁ ନାହିଁ । କିନ୍ତୁ ନିର୍ଦ୍ଦିଷ୍ଟ ଦିନ ଯଦି ସେମାନେ ଆସନ୍ତି, ତାହା ହେଲେ ପରୀକ୍ଷା ହୋଇଯିବ । ତେଣୁ ତୁମେ ସେଦିନ ପରୀକ୍ଷା ପାଇଁ ପ୍ରସ୍ତୁତ ହୋଇ ଆସିଥିବ । ମୁଁ ୨୦ ତାରିଖ ସକାଳେ ପରୀକ୍ଷା ପାଇଁ ବିଶ୍ୱବିଦ୍ୟାଳୟରେ ପହଁଞ୍ଚିଲି । କିନ୍ତୁ ବୁଝିଲି କିଛି ଚିଠି ଆସି ନାହିଁ । ତେଣୁ ୧୨ଟା ପର୍ଯ୍ୟନ୍ତ ଅପେକ୍ଷା କରି ପୁରୀ ଫେରି ଆସିଲି । ପୁରୀରେ ପହଁଞ୍ଚିଲା ପରେ ତ୍ରିଲୋଚନ ବାବୁଙ୍କ ଠାରୁ ଗୋଟିଏ ଜରୁରି ଟେଲିଗ୍ରାମ ପାଇଲି । ସେଥିରେ ଲେଖାଥିଲା ଏହି ମାସ ୨୪ ତାରିଖ ଦିନ ତୁମର ମୌଖିକ ପରୀକ୍ଷା ଦିନ ୨ଟା ବେଳେ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଫିଜିକ୍ସ ବିଭାଗରେ ହେବ । ତମେ ଯଥାଶିଘ୍ର ପରୀକ୍ଷା ପୂର୍ବରୁ ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ପହଁଞ୍ଚିବ । ମୁଁ ସଙ୍ଗେ ସଙ୍ଗେ ପୁରୀ ଷ୍ଟେସନକୁ ଯାଇ ୨୧ ତାରିଖ ଦିନ ରାତିରେ ଦିଲ୍ଲୀ ଯିବା ପାଇଁ ବିନା ସଂରକ୍ଷଣରେ ଖଣ୍ଡିଏ ଟିକେଟ କରିଦେଲି । ତାପରେ ଘରକୁ ଆସି ଅଶୋକ ମିଶ୍ରଙ୍କ ଠିକଣା ତାଙ୍କ ବାପାଙ୍କ ଠାରୁ ବୁଝି ତାଙ୍କ ପାଖକୁ ଗୋଟିଏ ଜରୁରି ଟେଲିଗ୍ରାମ କରିଦେଲି ଯେ ସେ ଦିଲ୍ଲୀ ଷ୍ଟେସନରେ ୨୩ ତାରିଖ ଦିନ ଉତ୍କଳ ଏକ୍ସପ୍ରେସ୍ ପହଁଞ୍ଚିଲା ସମୟରେ ଉପସ୍ଥିତ ହେବେ । ଅଶୋକ ମିଶ୍ର ହେଉଛନ୍ତି ମୋର ସହକର୍ମୀ ଇଂରେଜି ବିଭାଗର ପ୍ରାଧ୍ୟାପକ ଶ୍ରୀ ତ୍ରିଲୋଚନ ମିଶ୍ରଙ୍କ ପୁଅ । ସେ ଫିଜିକ୍ସରେ ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ଏମ୍.ଏସ୍‌ସି ପଢୁଥିଲେ । ପରବର୍ତ୍ତି ସମୟରେ ଆଇ.ଏ.ଏସ୍ ପରୀକ୍ଷାରେ କୃତକାର୍ଯ୍ୟ ହୋଇ ପଞ୍ଜାବ ସରକାରଙ୍କ ଅଧିନରେ କାମ କରୁଥିଲେ । ଦୁଃଖର କଥା ଏହି ଯେ ଉଗ୍ରପନ୍ଥୀ ମାନଙ୍କ ଦ୍ୱାରା ଏହି ପ୍ରତିଭାବାନ ତରୁଣ ମୃତ୍ୟୁ ବରଣ କରିଥିଲେ ।

ପୁରୀଠାରୁ ଦିଲ୍ଲୀ ଯିବା ସମୟରେ ଶ୍ରୀ ଦିବ୍ୟ ସିଂହ ବାବୁ ଓ ତାଙ୍କ ସ୍ତ୍ରୀଙ୍କ ସଙ୍ଗେ ବନ୍ଧୁତା ହୋଇଗଲା । ଶ୍ରୀ ଦିବ୍ୟସିଂହ ବାବୁଙ୍କ ପିତା ରେଭେନ୍ସା କଲେଜରେ ସଂସ୍କୃତ ପ୍ରାଧ୍ୟାପକ ଥିଲେ । ତାଙ୍କ ନାମ ମୋର ମନେ ନାହିଁ । ଦିବ୍ୟସିଂହ ବାବୁଙ୍କ ସ୍ତ୍ରୀ ଶ୍ରୀ ରମାକାନ୍ତ ରଥଙ୍କ ଭଉଣୀ । ମୁଁ

ରେଭେନ୍ସା କଲେଜରେ ଏମ୍.ଏସ୍‌ସି ପଢ଼ିଲା ବେଳେ ଶ୍ରୀ ରମାକାନ୍ତ ରଥ ଏମ୍.ଏ ପଢୁଥିଲେ । ତାପରେ ସେ ଆଇ.ଏ.ଏସ୍ ପାଇଥିଲେ । ସେତେବେଳେ ଭାରତ ସରକାରଙ୍କ ଅଧିନରେ ଡେପୁଟୀ ସେକ୍ରେଟାରୀ ଥିଲେ । ବାଟରେ ଆସିଲା ବେଳେ ଦିବ୍ୟସିଂହ ବାବୁ ବହୁତ ମଜା ଗପ କରୁଥାଆନ୍ତି । ଶୁଣିବାକୁ ବଡ ଭଲ ଲାଗୁଥିଲା । ତେଣୁ ଗାଡିରେ ସମୟଟା ସୁରୁଖୁରୁରେ କଟି ଯାଉଥିଲା । ଆମେ ଦିଲ୍ଲୀରେ ଗାଡିରୁ ଓହ୍ଲାଇଲା ବେଳେ ରମାକାନ୍ତ ବାବୁ ଷ୍ଟେସନରେ ଉପସ୍ଥିତ ଥିଲେ । ମୋତେ ପଚାରିଲେ ଆପଣ କେଉଁଠାରେ ରହିବେ । ମୁଁ କହିଲି ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଏକ ଛାତ୍ରାବାସରେ । ମୋର ଜଣେ ଛାତ୍ର ମୋତେ ନେବାକୁ ଆସିବେ । ଆପଣ କାହିଁକି ଆସିଛନ୍ତି ? ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ମୋର ପିଏଚ୍.ଡିର ମୌଖିକ ପରୀକ୍ଷା କାଲି ଅଛି । ସେହି ସମୟରେ ଅଶୋକ ମିଶ୍ର ସେଠାରେ ପହଁଚିଲେ । ମୁଁ ତାଙ୍କ ସାଙ୍ଗରେ ସୁବିଧାରେ ଗୟାଗହଲ୍‌ର ଅତିଥି ଭବନରେ ରହିଲି । ସେ ପଚାରିଲେ ଆପଣ କଣ ସାଧାରଣତନ୍ତ୍ର ପ୍ୟାରେଡ ଦେଖିବାକୁ ଆସିଛନ୍ତି ? ମୁଁ କହିଲି, ମୋର ପିଏଚ୍.ଡିର ମୌଖିକ ପରୀକ୍ଷା ୨୪ ତାରିଖ ଦିନ ଦୁଇଟା ବେଳେ ଡକ୍ଟର କୋଠାରିଙ୍କ କୋଠରୀରେ ହେବ । ମୁଁ ତାଙ୍କୁ ୨୫ ତାରିଖ ଦିନ ଦିଲ୍ଲୀ ଠାରୁ ହାଓ୍ୱଡା ଦେଇ ପୁରୀ ପର୍ଯ୍ୟନ୍ତ ଗୋଟିଏ ଟିକେଟ କରିଦେବାକୁ କହିଲି । କାରଣ ୨୬ ତାରିଖ ଦିନ ଭାରି ଭିଡ ହେବ ।

ତାପର ଦିନ ପ୍ରାୟ ୧୧ଟା ବେଳକୁ ମୋତେ ଡକ୍ଟର କୋଠାରୀଙ୍କ କୋଠରୀ ପାଖରେ ଛାଡିଦେଲେ ଏବଂ କହିଲେ ମୁଁ ଟିକେଟ କରିବାକୁ ଯାଉଛି । ମୁଁ ସେହିଠାରେ ଅପେକ୍ଷା କରିଥାଏ । ପ୍ରାୟ ଦିନ ଗୋଟାଏ ବେଳେ ତ୍ରିଲୋଚନ ବାବୁଙ୍କୁ ଦେଖିଲି । ସେ ମୋ ସାଙ୍ଗରେ କଥାବାର୍ତ୍ତା ହୋଇ ଡକ୍ଟର କୋଠାରୀଙ୍କ କୋଠରୀକୁ ଗଲେ । ସେତେବେଳେ ଡକ୍ଟର କୋଠାରୀ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଫିଜିକ୍ସ ବିଭାଗର ପ୍ରଫେସର ଓ ମୁଖ୍ୟ ଥାଆନ୍ତି । ପ୍ରାୟ ୨ଟା ବେଳେ ମୋତେ ଡାକିବାରୁ ମୁଁ ଡକ୍ଟର କୋଠାରୀଙ୍କ କୋଠରୀ ଭିତରକୁ ଗଲି । ସେଠାରେ ଡକ୍ଟର କୋଠାରୀ , ଡକ୍ଟର ପ୍ରଧାନ ଓ ଡକ୍ଟର ତ୍ରେହାନ ଉପସ୍ଥିତ ଥିଲେ । ଡକ୍ଟର କୋଠାରୀଙ୍କ ନିର୍ଦ୍ଦେଶ ମତେ ମୁଁ କଳାପଟା ପାଖକୁ ଗଲି । ତିନି ଜଣ ଯାହା ମୋତେ ପଚାରିଲେ ତାହାର ଉତ୍ତର ମୁଁ ଦେଲି । ସେମାନେ ୩୫ ମିନିଟ୍ କାଳ ମୋତେ ପ୍ରଶ୍ନ ପଚାରି ଥିଲେ । ପରୀକ୍ଷା ସରିବାରୁ ମୁଁ ବାହାରକୁ ଆସିଲି । ତ୍ରିଲୋଚନ ବାବୁ ମୋ ପଛେ ପଛେ ବାହାରକୁ ଆସି ମୋତେ ଅଭିନନ୍ଦନ ଜଣାଇଲେ ଏବଂ କହିଲେ ଯେତେ ଶୀଘ୍ର ପାରିବି ଉତ୍କଳ ବିଶ୍ୱବିଦ୍ୟାଳୟର ପରୀକ୍ଷା ନିୟନ୍ତ୍ରକଙ୍କ ପାଖକୁ ପରୀକ୍ଷା ଫଳଟି ପଠାଇ ଦେବି । ଏହି ସମୟରେ ଡକ୍ଟର କୋଠାରୀ ତ୍ରିଲୋଚନ ବାବୁଙ୍କୁ ଓ ମୋତେ ତାଙ୍କ କୋଠରୀକୁ ଡାକିଲେ ଏବଂ ପରୀକ୍ଷାର ଫଳଟା ତାଙ୍କ ହାତରେ ସିଲ୍ କରି ଦେଇ ଦିଅନ୍ତୁ ବୋଲି କହିଲେ । ସେହି ଲଫାପା ଉପରେ ଇଂରାଜୀରେ ଲେଖାଥିଲା 'ପତିତପାବନ ମିଶ୍ରଙ୍କ ପରୀକ୍ଷା ଫଳ' । ଏହି ଲଫାପାଟିକୁ ଜଉମୁଦ ଦିଆଯାଇ ବନ୍ଦକରା ଯାଇଥିଲା । ନିଜ ପରୀକ୍ଷାର ଫଳଟି ନିଜ ହାତରେ ନେଇ ଯାଉଥିବାରୁ ମନଟା ବହୁତ ଖୁସି ଲାଗୁଥିଲା । ମୁଁ ଅଶୋକ ମିଶ୍ରଙ୍କ ସାଙ୍ଗରେ ଯାଇ ସ୍ତ୍ରୀ ପାଇଁ ଗୋଟେ କାର୍ଡିଗନ୍ ଓ ପିଲାଙ୍କ ପାଇଁ କିଛି ଜିନିଷ ପତ୍ର କିଣି ଆଣିଲି । ତାପର ଦିନ ୧୦ଟା ବେଳେ ଅଶୋକ ମିଶ୍ର ମୋ ସାଙ୍ଗରେ ଯାଇ ମୋତେ ତୋଫାନ ଏକ୍ସପ୍ରେସରେ ଗୋଟିଏ ସ୍ଲିପର ବଗିରେ ବସାଇ ଦେଲେ । ୨୬ ତାରିଖ ଦିନ ସଂଧ୍ୟା

ବେଳେ ହାୱ୍ରାତା ଷ୍ଟେସନରେ ପହଁଞ୍ଚିଲି । ମୋତେ ଭାରି କ୍ଳାନ୍ତ ଲାଗୁଥିଲା । ହାୱ୍ରାତା ଷ୍ଟେସନରେ ସ୍ଲିପର ଟିକେଟ ଦେଖାଇ ହାୱ୍ରାତା ଠାରୁ ପୁରୀ ପର୍ଯ୍ୟନ୍ତ ଫାଷ୍ଟ କ୍ଲାସ୍ ଟିକେଟ କରିଦେଲି । ପୁରୀ ଏକ୍ସପ୍ରେସରେ ଚଢ଼ି ଭୁବନେଶ୍ୱରରେ ସକାଳୁ ଓହ୍ଲାଇଲି । ଷ୍ଟେସନରୁ ବୁଧେଶ୍ୱରୀରେ ବଡ ନାନୀ ଘରକୁ ଗଲି । ଜିନିଷ ପତ୍ର ରଖି ଗାଧୋଇ ଖାଇ ଉତ୍କଳ ବିଶ୍ୱବିଦ୍ୟାଳୟ ଗଲି । ସେଠାରେ ଶ୍ରୀ ସୀମାଞ୍ଚଳ ପଣ୍ଡାଙ୍କୁ କହିଲି ମୋର ପିଏଚ୍.ଡି ମୌଖିକ ପରୀକ୍ଷା ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ହୋଇଗଲା । ପରୀକ୍ଷା ଫଳଟା ମୋ ହାତରେ ନେଇ ଆସିଛି । ଆପଣ ରଖିଦେଲେ ଭଲ ନ' ହେଲେ ଡାକ ଘରୁ ଆପଣଙ୍କ ପାଖକୁ ରେଜିଷ୍ଟ୍ରି କରିଦେବି । ସେ ମୋ ଠାରୁ ଚିଠିଟି ନେଲେ ।

## ମୋର ପିଏଚ୍.ଡି ଏବଂ ପ୍ରାଧ୍ୟାପକ ସାମନ୍ତ ଚନ୍ଦ୍ର ଶେଖର କଲେଜ

ସୀମାଞ୍ଚଳ ବାବୁ ସେ ଚିଠିରେ କଣ ଲେଖାଥିଲା ତାକୁ ପଢ଼ିଲେ ଏବଂ ମୋତେ ଅଭିନନ୍ଦନ ଜଣାଇଲେ । ସୀମାଞ୍ଚଳ ବାବୁ କହିଲେ ତୁମର ଫଳ ଦୁଇ ଦିନ ଭିତରେ ବାହାରି ଯିବ । ସେହିଦିନ ସଂଧ୍ୟା ବେଳେ ପୁରୀ ଯାଇ ଘରେ ପହଁଞ୍ଚିଲି । ମୋ ସ୍ତ୍ରୀଙ୍କୁ ସବୁ କଥା କହିଲି । ସେ ବହୁତ ଖୁସି ହୋଇ ସଙ୍ଗେ ସଙ୍ଗେ ଗୋଟିଏ ଗୀତ ଲେଖି ମୋତେ ଦେଲେ । ସେ ଗୀତଟି କେଉଁଠି ରହିଗଲା ଆଉ ମିଳୁନାହିଁ । ୨୯ ତାରିଖ ଦିନ ସକାଳୁ ମୁଁ ଭୁବନେଶ୍ୱର ଗଲି । ସୀମାଞ୍ଚଳ ବାବୁଙ୍କୁ ଦେଖାକଲି । ସେ କହିଲେ ତୁମ ଫଳ ବାହାରି ଯାଇଛି । ପରୀକ୍ଷାରେ ଫଳ ବାହାରି ଥିବା ବିଜ୍ଞାପନରୁ ଗୋଟିଏ କାଗଜ ମୋତେ ଦେଲେ । ସେ କାଗଜ ଖଣ୍ଡିକ ଧରି ଶିକ୍ଷା ନିର୍ଦ୍ଦେଶକଙ୍କୁ ଦେଖାକଲି । ତାଙ୍କୁ ଗୋଟିଏ ଦରଖାସ୍ତ ଦେଲି । ସେଥିରେ ଲେଖାଥିଲା ମୁଁ ପିଏଚ.ଡି ପାଇଗଲି, ମୋତେ ପ୍ରାଧ୍ୟାପକ ହିସାବରେ ୩୦ ତାରିଖରେ ଯୋଗ ଦେବାକୁ ଅନୁମତି ଦିଆଯାଉ । ନିର୍ଦ୍ଦେଶକ ସେହି କାଗଜ ଉପରେ ଅନୁମତି ଦେଇଦେଲେ । ତାପରେ ପୁରୀ ଚାଲି ଆସିଲି ।

ମୁଁ ୧୯୭୧ ମସିହା ଜାନୁୟାରୀ ୩୦ ତାରିଖ ଦିନ ପ୍ରାଧ୍ୟାପକ ଭାବେ ଯୋଗ ଦେଲି । ୩୧ ତାରିଖ ଦିନ ପରୀକ୍ଷା ନିୟନ୍ତ୍ରକଙ୍କ ଠାରୁ ଗୋଟିଏ ଚିଠି ପାଇଲି । ସେଥିରେ ଲେଖାଥିଲା ତମେ ୩ ତାରିଖ ଦିନ ସମାବର୍ତ୍ତନ ଉତ୍ସବରେ ଯୋଗ ଦେଇ ତୁମର ପିଏଚ୍.ଡି ସାର୍ଟିଫିକେଟ କୁଳପତିଙ୍କ ଠାରୁ ଗ୍ରହଣ କର । ସେଥିପାଇଁ ତମେ ୫୦ ଟଙ୍କା ଫିସ୍ ଦେଲେ ତମର ଗାଉନ୍‌ଟି ବିଶ୍ୱବିଦ୍ୟାଳୟ ଅଫିସ୍‌ରୁ ପାଇପାରିବ । ତେଣୁ ୩ ତାରିଖ ଦିନ ସକାଳୁ ଭୁବନେଶ୍ୱର ଯାଇ ବିଶ୍ୱବିଦ୍ୟାଳୟ ଅଫିସ୍‌ରୁ ଗାଉନ୍‌ଟି ସଂଗ୍ରହ କଲି । ଉପର ବେଳା କୁଳପତି ଡକ୍ଟର ସଦାଶିବ ମିଶ୍ରଙ୍କ ଠାରୁ ପିଏଚ୍.ଡି ସାର୍ଟିଫିକେଟ ଗ୍ରହଣ କଲି । ସଂଧ୍ୟା ବେଳେ ମୁଁ ପୁରୀ ଫେରି ଆସିଲି ।

## ଜଗନ୍ନାଥଙ୍କ ଦେଉଳରେ ବାନା

ଯେଉଁ ସିଲେଇ ମେସିନ୍‌ଟି କିଣିଥିଲି ସେଥିରେ ୧୨ ହାତ ଲମ୍ବର ଗୋଟିଏ ବାନା ତିଆରି କଲି । ମୋତେ ତାହା କରିବାକୁ ୪ ଦିନ ଲାଗିଗଲା । ବାନାଟି ଦେଉଳରେ ବାନ୍ଧିବା ପାଇଁ କିଛି ଟଙ୍କା ଜମା କରିବାକୁ ହୁଏ । ଟଙ୍କା ଜମା କଲା ପରେ ମନ୍ଦିର କର୍ତ୍ତୃପକ୍ଷ ବାନା ବାନ୍ଧିବା ପାଇଁ ଅନୁମତି ଦେଲେ । ନିର୍ଦ୍ଦିଷ୍ଟ ଦିନରେ ଆମେ ସମସ୍ତେ ଦେଉଳକୁ ଗଲୁ । ଗୋଟିଏ ସେବାୟତ ଦେଉଳ ଉପରେ ଚଢ଼ି ଦଧିନଉତି ପର୍ଯ୍ୟନ୍ତ ଯାଇ ନୀଳଚକ୍ର ଉପରେ ବାନା ବାନ୍ଧିଲା । ସେ ବାନାଟି ୩/୪ ଦିନ ପର୍ଯ୍ୟନ୍ତ ଉଡୁଥିବାର ଦେଖିଥିଲୁ ।

## ପ୍ରାଧ୍ୟାପକ, ରେଭେନ୍ସା କଲେଜ

ମୁଁ ପୁରୀରେ ଜଗନ୍ନାଥ ଧାମରେ ରହୁଥିବା ସମୟରେ ବିନୟ ବାବୁ ଓ ତାଙ୍କ ସ୍ତ୍ରୀ ତଟିନୀ ପୁରୀ ଆସି ଜଗନ୍ନାଥ ଧାମରେ ଆମ ଘରେ ରହିଥିଲେ । ତାଙ୍କର ଭାରି ଇଚ୍ଛା ହେଲା ସମୁଦ୍ରରେ ଗାଧୋଇବା ପାଇଁ । ସେ ଦିନେ ସକାଳୁ କହିଲେ, ଚାଲ ସମସ୍ତେ ସମୁଦ୍ରରେ ଗାଧୋଇବା । ମୁଁ କେବେ ସମୁଦ୍ରରେ ଗାଧୋଇ ନ'ଥିଲି । କାରଣ ସମୁଦ୍ରରେ ଗାଧୋଇଲେ କାଳେ ଥଣ୍ଡା ହେବ । ବିନୟ ବାବୁ କହିଲେ ସମୁଦ୍ରରେ ଗାଧୋଇଲେ କେବେ ଥଣ୍ଡା ହୁଏନି । କାରଣ ସମୁଦ୍ର ପାଣିର ସାନ୍ଦ୍ରତା ବେଶୀ ଥିବାରୁ ପାଣି ଦେହ ଭିତରକୁ ପଶି ପାରେ ନାହିଁ । ତେଣୁ ଥଣ୍ଡା ହୁଏ ନାହିଁ । ଆମେ ସମସ୍ତେ ସମୁଦ୍ରରେ ଗାଧୋଇବା ପାଇଁ ଗଲୁ । ଗାଧୋଇବା ସମୟରେ ଦୁଇଜଣ ନୋଳିଆଙ୍କୁ ସାଙ୍ଗରେ ରଖିଥିଲୁ । ଗାଧୋଇ ସାରିଲା ପରେ ଆମେ ସମସ୍ତେ ଜଗନ୍ନାଥ ଧାମକୁ ଚାଲି ଆସିଲୁ । ସେଠାରେ କଳ ପାଣିରେ ପୁଣି ଥରେ ଗାଧୋଇଲୁ । ମୋ ସ୍ତ୍ରୀ ଗାଧୋଇ ଯିବା ପୂର୍ବରୁ ରନ୍ଧା ରନ୍ଧି କରି ରଖିଥିଲା । ଖାଇବା ପରେ ସମସ୍ତେ କ୍ଳାନ୍ତ ହୋଇ ଶୋଇପଡିଲୁ । ଦୁଇ ଦିନ ରହି ବିନୟ ବାବୁ ଓ ତାଙ୍କ ସ୍ତ୍ରୀ କଟକ ଚାଲିଗଲେ ।

ଏହା ଭିତରେ ଅଧ୍ୟକ୍ଷ ଶ୍ରୀନିବାସ ସାହୁଙ୍କର ପୁରୀ କଲେଜର ଅଧ୍ୟକ୍ଷ ପଦରୁ ବଦଳି ହୋଇଯାଇ ଥାଏ । ତାଙ୍କ ଜାଗାରେ ଡକ୍ଟର ଫନିନ୍ଦ୍ର ନାଥ ଚାଟାର୍ଜୀ ନାମକ ଜଣେ ପ୍ରାଣୀ ବିଭାଗ ପ୍ରାଧ୍ୟାପକ ପୁରୀ କଲେଜରେ ଅଧ୍ୟକ୍ଷ ଭାବେ ଯୋଗ ଦେଲେ । ସେ ଯୋଗ ଦେବାର କେତେ ଦିନ ପରେ ପ୍ରଥମ ଛାତ୍ରାବାସର ପରିଚାଳକ ପଦ ପାଇଁ ବିଜ୍ଞାପନ ବାହାରିଲା । ମୁଁ ସେଥିପାଇଁ ଦରଖାସ୍ତ କରିଥିଲି । ମୁଁ ପିଏଚ୍.ଡି ପାଇବାର କେତେ ଦିନ ପରେ ପୁଣି ଗବେଷଣା କାମରେ ଆଗେଇ ବାକୁ ଚେଷ୍ଟା କଲି । ସେଥିପାଇଁ କଲେଜରେ ମୋର ଗୋଟିଏ ବସିବା ପାଇଁ କୋଠରୀ ଯୋଗାଡ କଲି । ସେ କୋଠରୀଟିର ଗୋଟିଏ ଝରକା କଲେଜ ପଡିଆ ଆଡକୁ ଥାଏ । ସେ କୋଠରୀରେ ବସିଲେ ଭଲ ପବନ ହୁଏ । ମୁଁ ସକାଳେ ଓ ରାତିରେ କଲେଜ ଯାଇ କୋଠରୀରେ ବସି ପଢାପଢି କରେ । ଦିନେ ପ୍ରାୟ ରାତି ଆଠଟା ବେଳେ ମୁଁ ଗୋଟିଏ ଛୋଟ ପ୍ରୋଜେକ୍ଟର ସାହାଯ୍ୟରେ ମାଇକ୍ରୋଫିଲିମ୍‌ରେ ଲେଖାଥିବା ଗବେଷଣାତ୍ମକ ପ୍ରବନ୍ଧକୁ ବର୍ଦ୍ଧିତ କରି ପଢୁଥିଲି । ସେହି ଦିନେ ଡକ୍ଟର ଚାଟାର୍ଜୀ କେତେବେଳେ ଆସି ମୋ ପଛରେ କୋଠରୀ ଦୁଆର ମୁହଁରେ ମୁଁ ମନୋନିବେଶ କରି ପଢୁଥିବାର ଦେଖି ବହୁତ ଖୁସି ହୋଇଗଲେ । ମୋ କୋଠରୀରେ କିଛି ସମୟ ବସିଲେ । ମୁଁ ପଚାରିଲି, "ଆପଣ କାହିଁକି ରାତିରେ ଆସିଲେ" ? ସେ କହିଲେ "ଏ ଝରକାଟି ମୋ ଘରକୁ ପରିଷ୍କାର ଦେଖାଯାଏ । ମୁଁ ଦେଖେ ଝରକାଟି ସଂଧ୍ୟା ପୂର୍ବରୁ ବନ୍ଦ ଥାଏ । ସଂଧ୍ୟାବେଳେ ଆଲୁଅ ଜଳେ ପୁଣି ୯ଟା ବେଳେ ଲିଭିଯାଏ । ତେଣୁ ମୁଁ ଭାବିଲି କିଏ ବୋଧେ ରାତିରେ କୋଠରୀରେ ରହୁଛି । ମୁଁ ସେଥିପାଇଁ ଦେଖିବାକୁ ଆସିଲି । ସେ ମେତେ ପଢୁଥିବାର ଦେଖି ଭାବିଲେ 'ମୁଁ ଜଣେ କାର୍ଯ୍ୟଦକ୍ଷ ଲୋକ ।' ତେଣୁ ମୋତେ ପଚାରିଲେ ପ୍ରଥମ ଛାତ୍ରାବାସର ପରିଚାଳକ ହେବ ? କହିଲି ମୁଁ ଦରଖାସ୍ତ କରିଛି । ତମେ ଆଗରୁ କେଉଁଠାରେ ପରିଚାଳକ ଥିଲ ? ମୁଁ କହିଲି ପି.ଜି ଛାତ୍ରାବାସର । ଅଧ୍ୟକ୍ଷ କହିଲେ ମୁଁ ଭାବୁଛି ତୁମକୁ ପ୍ରଥମ ଛାତ୍ରାବାସର ପରିଚାଳକ ହିସାବରେ ନିଯୁକ୍ତ କରିବି । ତୁମ ଆଗରୁ ଚାକିରୀ କରିଥିବା ଅଧ୍ୟାପକ ମାନେ ଦରଖାସ୍ତ କରିଛନ୍ତି । ତେଣୁ ମୁଁ ନିୟନ୍ତ୍ରକ ମଣ୍ଡଳୀ (Governing body) ମିଟିଙ୍ଗରେ ପାସ କରାଇ ତୁମକୁ ନିଯୁକ୍ତି ଦେବି ।

## ପରିଚାଳକ, ପ୍ରଥମ ଛାତ୍ରାବାସ

ତାହାର କେତେ ଦିନ ପରେ ମୁଁ ପରିଚାଳକ ହିସାବରେ ଯୋଗ ଦେବା ପାଇଁ ଅଧ୍ୟକ୍ଷଙ୍କ ଠାରୁ ଚିଠି ପାଇଲି ଏବଂ ପରିଚାଳକ ହିସାବରେ ପ୍ରଥମ ଛାତ୍ରାବାସରେ ଯୋଗ ଦେଲି । ଛାତ୍ରାବାସର ଖର୍ଚ୍ଚ ହିସାବ ତନଖି କରି ଦାୟିତ୍ୱ ନେବା ବେଳେ ଜାଣିଲି ହିସାବ ସବୁ ଠିକ୍ ଭାବରେ ଲେଖା ହୋଇନାହିଁ । ମୁଁ ଦେଖିଲି ଛାତ୍ରାବାସର ଜମା ମାତ୍ର ୨ଟଙ୍କା ୨୪ ପଇସା । ତାପରେ ଛାତ୍ରାବାସର କିରାନିକୁ ପଚାରିବାରୁ ସେ କହିଲେ ଆଉ ମଧ୍ୟ କେତେ ପଇସା ଭେଣ୍ଡର ମାନଙ୍କୁ ଦେବାର ଅଛି । ମୁଁ ତାଙ୍କୁ ପଚାରିଲି ଛାତ୍ରାବାସ କଣ ବାକିରେ ଚାଲୁଛି ? ତାହା ହେଲେ ପିଲାମାନଙ୍କର ଦେୟ ଛାତ୍ରାବାସର ଖର୍ଚ୍ଚଠାରୁ କମ୍ । ମୁଁ ତାପରେ ତାଙ୍କଠାରୁ ଦାୟିତ୍ୱ ନେଲି । କିନ୍ତୁ ମୁଁ ପୂର୍ବ ପରିଚାଳକଙ୍କ ଠାରୁ ଦାୟିତ୍ୱ ଗ୍ରହଣ କରିବା କଥା । ନୂଆ ପରିଚାଳକଙ୍କ ନିଯୁକ୍ତି ଡେରି ହେବାରୁ ପୁରୁଣା ପରିଚାଳକ କିରାନିକୁ ଦାୟିତ୍ୱ ଦେଇ ବଦଳି ହୋଇ ଯାଇଥିଲେ । ସେହି ଦିନ ସଂଧ୍ୟା ବେଳେ ଛାତ୍ରାବାସର କିରାନିଙ୍କ ଠାରୁ ତାଙ୍କର ଇସ୍ତଫା ପତ୍ର ପାଇଲି । ସେଥିରେ ଲେଖାଥିଲା 'ମୋର ଦେହ ଅସୁସ୍ଥ । ତେଣୁ ଛାତ୍ରାବାସ ଦାୟିତ୍ୱ ଆଉ ଚଳାଇ ପାରିବେ ନାହିଁ ।' ମୁଁ ପ୍ରଥମେ ଏହି କଥା ଅଧ୍ୟକ୍ଷଙ୍କୁ ଜଣାଇ ଦେଲି । ଅଧ୍ୟକ୍ଷ କହିଲେ ତୁମେ ଲେଖିକରି ଦେଲେ ମୁଁ ତାଙ୍କ ଉପରେ ଶାସ୍ତି ବିଧାନ କରିବି । ଏହା ପରେ ମୁଁ ଚାଲି ଆସିଲି । ମୁଁ ବହୁତ ଚିନ୍ତା କରି ତାପର ଦିନ ଅଧ୍ୟକ୍ଷଙ୍କୁ କହିଲି ପୂର୍ବ ପରିଚାଳକ ସବୁ ଠିକ୍ ଅଛି ବୋଲି ଲେଖିଛନ୍ତି । ତେଣୁ କିରାନିଙ୍କୁ ଦଣ୍ଡ ଦେବା ଠିକ୍ ହେବ ନାହିଁ । ମୋର ପୂର୍ବ ବର୍ଷର ହିସାବ ଦେଖିବା କଥା ନୁହେଁ । ସେ ମୋ କଥାକୁ ସମର୍ଥନ କଲେ । ତେଣୁ ମୁଁ ଚୁପ୍ ରହିଲି । ଦୁଇ ଦିନ ଭିତରେ ଗୋଟିଏ ନୂଆ କିରାନି ନିଯୁକ୍ତି ପାଇଲେ । ସେ ନିଯୁକ୍ତି ପାଇଲା ଭିତରେ ଛାତ୍ରାବାସର ଖର୍ଚ୍ଚ କରିବାର ଗୋଟିଏ ନିୟମ କରିଦେଲି । ତାଙ୍କୁ ଏହି ନିୟମ ଅନୁସାରେ ଖର୍ଚ୍ଚ କରିବାକୁ କହିଲି । ନ'ହେଲେ ଖର୍ଚ୍ଚ ମଞ୍ଜୁର କରିବି ନାହିଁ । ଛାତ୍ରାବାସ ସୁରୁଖୁରୁରେ ଚାଲିଲା ।

ମୁଁ ପିଏଚ୍.ଡି ପାଇବାର କିଛିଦିନ ପରେ ନେପାଳର ତ୍ରିଭୁବନ ବିଶ୍ୱବିଦ୍ୟାଳୟରେ ଗୋଟିଏ ଫିଜିକ୍ସ ପ୍ରଫେସର ପାଇଁ ସର୍ବଭାରତୀୟ ଲୋକସଭା ଆୟୋଗ (Union Public Service Commisson)ଦ୍ୱାରା ବିଜ୍ଞାପନ ବାହାରି ଥିଲା । ମୁଁ ବିଜ୍ଞାପନ ଦେଖି ଚାକିରୀ ପାଇଁ ଦରଖାସ୍ତ କରିଥିଲି । ସେଥିରେ ଲେଖାଥିଲା ଚାକିରୀଟି ଅତି ଶିଘ୍ର ପୁରଣ କରାଯିବ । ମୁଁ ଦରଖାସ୍ତ କରିବାର କେତେଦିନ ପରେ ସର୍ବଭାରତୀୟ ଲୋକସଭା ଆୟୋଗ ସାକ୍ଷାତକାର ପାଇଁ ମୋତେ ଡାକିଥିଲେ । ମୁଁ ଯିବାକୁ ଠିକ୍ କଲି । ସ୍ତ୍ରୀ ମଧ୍ୟ ଯିବାକୁ କହିଲା । ମୁଁ ରାଜି ହେଲି । ସେହି ସମୟରେ ମୋ ଶଳା କିଶୋର ଚନ୍ଦ୍ର ମିଶ୍ର ଓକିଲାତି ପାଶ୍ କରି ଓକିଲାତି କରୁଥାଏ ଏବଂ କଂଗ୍ରେସ୍ ପାର୍ଟିରେ ଯୋଗ ଦେଇ ଥାଏ । ସେ ଶ୍ରୀ ଗଙ୍ଗାଧର ମହାପାତ୍ରଙ୍କ ପାଖରେ ଓକିଲାତି କରୁଥାଏ । ତାର କଂଗ୍ରେସ ନେତା ମାନଙ୍କ ସହିତ ଭଲ ଚିହ୍ନା ପରିଚୟ ଥାଏ । ତାଙ୍କୁ ଏ କଥା କହିବାରୁ ସେ ଦିଲ୍ଲୀରେ ରହିବା ପାଇଁ ଶ୍ରୀ ବନମାଳି ପଟ୍ଟନାୟକଙ୍କ ଘରେ ଫୋନ୍‌ରେ ବନ୍ଦୋବସ୍ତ କରିଦେଲା । ସେ ଦିନେ ରାତିରେ ଶ୍ରୀ ବନମାଳି ପଟ୍ଟନାୟକଙ୍କ ଘରେ ଫୋନ୍‌ରେ ତାଙ୍କ ଘରର

ଠିକଣା ଓ ଅବସ୍ଥିତି ବୁଝି ମୋତେ ଦେଲା ଏବଂ କହିଲା ସେ ତମକୁ ଜାଣିଛନ୍ତି ଏବଂ ବହୁତ ଖୁସି ହେଲେ । ଆମର ଯିବା ଦିନ ନିକଟ ହେବାରୁ ମୋ ଶାଶୁ ଆସି ଆମ ଘରେ ରହିବା ପାଇଁ ମୋ ସ୍ତ୍ରୀ ବନ୍ଦୋବସ୍ତ କରିଦେଲା । ଆମେ ନିର୍ଦ୍ଦିଷ୍ଟ ଦିନ ନୀଳାଚଳ ଏକ୍ସପ୍ରେସରେ ବାହାରିଲୁ । ତାପର ଦିନ ରାତି ୯ଟା ବେଳେ ଦିଲ୍ଲୀରେ ପହଁଞ୍ଚିଲୁ । ଆମେ ଷ୍ଟେସନରୁ ଅଟୋରିକ୍ସା କରି ଠିକଣା ଅନୁସାରେ ରାତି ସାଢେ ୧୦ଟା ସମୟରେ ଶ୍ରୀ ବନମାଳି ପଟ୍ଟନାୟକଙ୍କ ଘରେ ପହଁଞ୍ଚିଲୁ । ସେଠାରେ ପହଁଞ୍ଚିଲା ପରେ ସେ ରହିବାର ଓ ଖାଇବାର ବନ୍ଦୋବସ୍ତ କରିଦେଲେ । ତାପର ଦିନ ଢୋଲପୁର ହାଉସ୍‌ରେ ସାକ୍ଷାତକାର ଥିଲା । ମୁଁ, ମୋର ସ୍ତ୍ରୀ, ସାନ ପୁଅକୁ ସାଙ୍ଗରେ ଧରି ଅଟୋରିକ୍ସା କରି ଢୋଲପୁର ହାଉସ୍‌ରେ ପହଁଞ୍ଚିଲୁ ଓ କମ୍ପାଉଣ୍ଡ ଭିତରେ ଥିବା ପଡିଆରେ ଥିବା ଗଛତଳେ ଅପେକ୍ଷା କଲୁ । ସାକ୍ଷାତକାର ସମୟ ହେବାରୁ ମୁଁ ସ୍ତ୍ରୀକୁ କହିଲି "ଏଠି ପୁଅକୁ ଧରି ବସିଥାଅ । ଆଉ କୁଆଡେ ଯିବ ନାହିଁ ।" ମୋର ସାକ୍ଷାତକାର ସରିଲେ ଆସିବି । ସାକ୍ଷାତକାର ପ୍ରାୟ ଦିନ ଗୋଟାଏ ବେଳେ ସରିଗଲା । ସାକ୍ଷାତକାର ସରିବା ସାଙ୍ଗେ ସାଙ୍ଗେ ମୋ ଯିବା ଆସିବା ଗାଡି ଭଡା ଦେଇ ଦେଲେ । ସେଠାରୁ ଆସି ଆମେ ସର୍ବଭାରତୀୟ ଲୋକସଭା ଆୟୋଗ କ୍ୟାଣ୍ଟିନ୍‌ରେ ଖାଇବାକୁ ଗଲୁ । ତାପରେ ଆମେ ଅଟୋରିକ୍ସା କରି ରାଜଘାଟ, କନଟପ୍ଲେସ୍ ଓ କୁତବ୍‌ମିନାର ପ୍ରଭୃତି ଦେଖି ସଂଧ୍ୟାବେଳକୁ ଘରେ ପହଁଞ୍ଚିଲୁ । ଶ୍ରୀ ବନମାଳି ପଟ୍ଟନାୟକଙ୍କୁ କହି ତାଙ୍କ ଏମ୍.ପି. କୋଟାରୁ ଦୁଇ ଗୋଟି ସଂରକ୍ଷଣ ଟିକେଟ କରିଦେଲୁ । ଦିଲ୍ଲୀରେ ଆଉ ଗୋଟିଏ ଦିନ ରହି ପରଦିନ ସକାଳୁ ବାହାରିଲୁ । ତାପର ଦିନ ଉପର ବେଳା ଆସି ପୁରୀରେ ପହଁଞ୍ଚିଲୁ । ତାର ପ୍ରାୟ ମାସେ ଖଣ୍ଡେ ପରେ ସର୍ବଭାରତୀୟ ଲୋକସଭା ଆୟୋଗରୁ ଚିଠି ଆସିଲା, "ଆମେ ଦୁଃଖର ସହିତ ଜଣାଉ ଅଛୁ ଯେ ତମର ମନୋନୟନ ହୋଇନାହିଁ ।"

ତାର କେତେ ଦିନ ପରେ ମୋର ଇଚ୍ଛା ହେଲା ରିସର୍ଚ୍ଚ ଫେଲୋସିପ୍ ନେଇ କାନେଡା କିମ୍ବା ଆମେରିକା ଯିବା ପାଇଁ । ସେଥିପାଇଁ କାନେଡା ଓ ଆମେରିକାକୁ ଚିଠି ଲେଖି କେତୋଟି ବିଶ୍ୱବିଦ୍ୟାଳୟର ଠିକଣା ସଂଗ୍ରହ କଲି । ତାପରେ ସରକାରଙ୍କୁ ଦରଖାସ୍ତ କଲି ମୋତେ ନିମ୍ନଲିଖିତ ବିଶ୍ୱବିଦ୍ୟାଳୟ ମାନଙ୍କୁ ପୋଷ୍ଟ ଡକ୍‌ଟରେଟ୍ ଫେଲୋସିପ୍ ପାଇଁ ଦରଖାସ୍ତ କରିବାକୁ ଅନୁମତି ଦିଆଯାଉ । ସେତେବେଳର ଶିକ୍ଷା ନିର୍ଦ୍ଦେଶକ ଶ୍ରୀ ବିଧୁଭୂଷଣ ଦାସ ଅନୁମତି ଦେଇ ଦେଲେ । ତେଣୁ ବିଶ୍ୱବିଦ୍ୟାଳୟ ଗୁଡିକରୁ ଫର୍ମ ମଗାଇ ଦରଖାସ୍ତ କରିଦେଲି । ପ୍ରାୟ ଦୁଇ ମାସ ପରେ କାନାଡାର ମଣିଟୋବା ବିଶ୍ୱବିଦ୍ୟାଳୟର ଫିଜିକ୍ସ ପ୍ରଫେସରଙ୍କ ଠାରୁ ଚିଠି ଆସିଲା ତୁମେ ଗୋଟିଏ ଫେଲୋସିପ୍ ପାଇବା ପାଇଁ ମନୋନୀତ ହୋଇଛ । ତେଣୁ ଦିଆଯାଇଥିବା ଫର୍ମ ଗୁଡିକ ପୂରଣ କରି ପଠାଇଲେ ସବିଶେଷ ବିବରଣୀ ଜଣାଇ ଦିଆଯିବ ଏବଂ କେଉଁ ତାରିଖରେ ଏଠାରେ ଆସି ବିଶ୍ୱବିଦ୍ୟାଳୟରେ ଯୋଗ ଦେବ ତାହା ଜଣାଇ ଦିଆଯିବ । ବହୁତ ଖୁସି ହୋଇ ରହିଲି । ୧୫/୨୦ ଦିନ ପରେ ପ୍ରଫେସରଙ୍କ ଠାରୁ ଚିଠି ଆସିଲା ମୁଁ ଦୁଃଖର ସହିତ ଜଣାଉଛି ଯେ ଯେହେତୁ ତମର ବୟସ ୩୫ ବର୍ଷ ଠାରୁ ବେଶୀ ହୋଇ ଯାଇଛି, ତେଣୁ ବିଶ୍ୱବିଦ୍ୟାଳୟର ନିୟମ ଅନୁସାରେ ତୁମକୁ କୌଣସି ଫେଲୋସିପ୍ ମିଳି ପାରିବ ନାହିଁ । କିନ୍ତୁ ଯଦି କୌଣସି

ପ୍ରକାରେ ଚାଲି ଆସିବ ତେବେ ଅନ୍ୟ ବ୍ୟବସ୍ଥା କରାଯାଇ ପାରିବ । ତେଣୁ ମୁଁ ଏପରି ଚିଠି ପାଇ ଚୁପ୍ ହୋଇ ରହିଲି । ପ୍ରଫେସରଙ୍କ ପାଖକୁ ଗୋଟିଏ ଚିଠି ଲେଖିଦେଲି ମୁଁ ଯାଇ ପାରିବି ନାହିଁ ।

ସେହି ସମୟରେ ଭାରତ ସରକାରଙ୍କ ଠାରୁ ଗୋଟିଏ ବିଜ୍ଞାପନ ବାହାରି ଥିଲା ଯେ, ଯେଉଁ ସରକାରୀ କର୍ମଚାରି ମାନେ ବିଦେଶରେ ଚାକିରୀ କରିବା ପାଇଁ ଇଚ୍ଛା କରନ୍ତି, ସେମାନେ ତାଙ୍କର କୃତିତ୍ୱ (Bio-Data) ସହିତ ସରକାରଙ୍କୁ ଦରଖାସ୍ତ କରନ୍ତୁ । ଯଦି କୌଣସି ଦେଶର ସରକାର କୃତିତ୍ୱ ଦେଖି ତୁମକୁ ଚାକିରୀ ଦେବାକୁ ଇଚ୍ଛା କରନ୍ତି, ତାହା ହେଲେ ତୁମକୁ ଚାକିରୀ ଦିଆଯିବ । ମୁଁ ସରକାରଙ୍କ ଠାରୁ ଦରଖାସ୍ତ ଫର୍ମ ମଗାଇ ପୂରଣ କରି ପଠାଇ ଦେଲି । ଯଦି ୫ ବର୍ଷ ଭିତରେ କିଛି ଚାକିରୀ ନ'ପାଅ ଓ ପୁଣି ଯିବାକୁ ଇଚ୍ଛା ଥିବ ତେବେ ସେ ଦରଖାସ୍ତଟି ପୁଣି ଥରେ ଗ୍ରହଣ କରିବାକୁ ଅନୁରୋଧ କରିପାରିବ । ଯେଉଁ ଦରଖାସ୍ତ ଦେଇଥିଲି ତାର ଗୋଟିଏ ନକଲ କରି ରଖିଥିଲି ।

ମୁଁ ଜାଣିବାରେ ଡକ୍ଟର ଚାଟାର୍ଜୀ ଜଣେ କର୍ତ୍ତବ୍ୟ ପରାୟଣ ଓ ସଚ୍ଚୋଟ ଲୋକ ଥିଲେ । ସେହିବର୍ଷ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ପିଲାଙ୍କୁ ଜମା କପି କରିବାର ସୁଯୋଗ ଦେଲେ ନାହିଁ । କିନ୍ତୁ ପରେ ଜଣା ପଡିଲା ଅନ୍ୟ ସବୁ କଲେଜରେ କପି ହୋଇଥିଲା । ଫଳ ବାହାରିବା ପରେ ଦେଖାଗଲା ପୁରୀ କଲେଜର ପରୀକ୍ଷା ଫଳ ବହୁତ ଖରାପ ହୋଇଥିଲା । ତେଣୁ ସପ୍ଲିମେଣ୍ଟାରି ପରୀକ୍ଷାରେ ଅଧ୍ୟାପକମାନେ ଗୋଟିଏ ଆଲୋଚନା ସଭାକରି ସ୍ଥିର କଲେ ଆମେ ଜମା କପି ଧରିବୁ ନାହିଁ କି କାହାକୁ କିଛି କହିବୁ ନାହିଁ । ଅଧ୍ୟକ୍ଷ କିନ୍ତୁ ଅଧ୍ୟାପକ ମାନଙ୍କ ପ୍ରସ୍ତାବରେ ରାଜି ନ'ଥିଲେ । ସେ ଅଧ୍ୟାପକ ମାନଙ୍କର ନିଷ୍ପତ୍ତିକୁ ବିଶ୍ୱବିଦ୍ୟାଳୟକୁ ଜଣାଇ ଦେଲେ । କିନ୍ତୁ ବିଶ୍ୱବିଦ୍ୟାଳୟ ତାହା ଉପରେ କିଛି କାର୍ଯ୍ୟାନୁଷ୍ଠାନ କଲେନାହିଁ । ପରୀକ୍ଷା ଭଲ ଭାବରେ ନ ହେବାରୁ କଲେଜରେ ଗୋଳମାଳ ହେଲା ଏବଂ କ୍ଲାସକୁ ପିଲା ଆସିଲେ ନାହିଁ । ତେଣୁ ଅଧ୍ୟକ୍ଷ ମନେ ମନେ ଠିକ୍ କଲେ ଓ କେତେଜଣ ବରିଷ୍ଠ ଅଧ୍ୟାପକଙ୍କୁ ଡାକି କହିଲେ ଆସନ୍ତା ବର୍ଷ ବାର୍ଷିକ ପରୀକ୍ଷାରେ ଛାତ୍ରମାନଙ୍କୁ ଜମା କପି କରିବାକୁ ଦିଆଯିବ ନାହିଁ । ଏହି ବିଜ୍ଞାପନ ଦିଆଗଲା । ପରେ ପିଲାମାନେ ଉତ୍ତ୍ୟକ୍ତ ହୋଇଗଲେ ଓ ସବୁବେଳେ କଲେଜରେ ଗୋଳମାଳ ଲାଗିରହିଲା । ଏହା ଭିତରେ ହାୟର ସେକେଣ୍ଡାରୀ ବୋର୍ଡର ପରୀକ୍ଷା ହେବାର ଦିନ ପାଖେଇ ଗଲା । ପରୀକ୍ଷା ଦିନ ସକାଳୁ ଅଧ୍ୟକ୍ଷ ଅଧ୍ୟାପକ ମାନଙ୍କୁ କଲେଜର ବିଭିନ୍ନ ଫାଟକ ଓ ପ୍ରଥମ ଛାତ୍ରାବାସରେ କେତେଜଣ ଅଧ୍ୟାପକଙ୍କୁ ଛାତ୍ର ମାନଙ୍କ ଉପରେ ସତର୍କ ଦୃଷ୍ଟି ରଖିବା ପାଇଁ ନିଯୁକ୍ତ କଲେ । ପରୀକ୍ଷାର୍ଥୀଙ୍କ ବ୍ୟତୀତ ଅନ୍ୟ କାହାରିକୁ କଲେଜ ଭିତରକୁ ପ୍ରବେଶ କରିବାକୁ ଦିଆଯିବ ନାହିଁ ।

ପରୀକ୍ଷା ଆରମ୍ଭ ହେବାକୁ ୫ ମିନିଟ୍ ଅଛି । ଅନେକ ପିଲା ଅଧ୍ୟାପକ ମାନଙ୍କ କଥା ନ ମାନି ଜବରଦସ୍ତ ପଶି ଆସିଲେ । ଏହାପରେ ଅଧ୍ୟକ୍ଷ ପୋଲିସ୍‌କୁ ଶାନ୍ତି ରକ୍ଷା କରିବା ପାଇଁ କଲେଜ ଭିତରେ ପ୍ରବେଶ କରିବା ପାଇଁ ଅନୁମତି ଦେଲେ । ପିଲାମାନେ ପରୀକ୍ଷା ଘର ଭିତରେ ନ'ପଶି ଗୋଳମାଳ କଲେ । ପରୀକ୍ଷା ହେଲା ନାହିଁ । ଏହି ସମୟରେ କୌଣସି ପିଲା କଲେଜ

ପଟ୍ଟପଟ୍ଟ ଅଧ୍ୟକ୍ଷଙ୍କ ଉପରକୁ ଗୋଟିଏ କ୍ରାକର ଫୋପାଡ଼ିଲା । ସୌଭାଗ୍ୟ ବଶତଃ ସେଇଟା ଝରକା ଦେହରେ ବାଜି ସେହିଠାରେ ଫୁଟିଗଲା । କିନ୍ତୁ କାହାର କିଛି କ୍ଷତି ହେଲା ନାହିଁ । ସେ ଘଟଣାର କିଛି ସମୟ ପରେ ଗୋଟିଏ ବଡ କ୍ରାକର ଅଧ୍ୟକ୍ଷଙ୍କ ଝରକାର ସାମ୍ନା ଆଡୁ ତାଙ୍କ ଉପରକୁ କିଏ ଫୋପାଡି ଦେଲା । ସେଇଟା ମଧ୍ୟ ଅଧ୍ୟକ୍ଷଙ୍କ ଦୁଆର ମୁହଁରେ ବାଜି ଗୋଟିଏ ୧ ଇଞ୍ଚ ବ୍ୟାସର ଗାତ ହୋଇଗଲା । ସେହି ଗାତ ଦେହରୁ ସିମେଣ୍ଟ ଖଣ୍ଡେ ଛାଟି ହୋଇଯାଇ ମୋ ପାଖରେ ଛିଡା ହୋଇଥିବା କେମେଷ୍ଟ୍ରି ଅଧ୍ୟାପକ ଶ୍ରୀ ବିଜୟ କୁମାର ପଟ୍ଟନାୟକଙ୍କ ଗୋଟିଏ ଆଖିରେ ବାଜିଲା । ତାଙ୍କୁ ସଙ୍ଗେ ସଙ୍ଗେ ଡାକ୍ତରଖାନା ନିଆଗଲା । ତାଙ୍କ ଆଖି ଆଉ ଭଲ ହେଲା ନାହିଁ । ସେ ଗୋଟିଏ ଆଖିରେ ସବୁ କାମ କରିବାକୁ ବାଧ୍ୟ ହେଲେ । ମୁଁ ପି.ଜି ଛାତ୍ରାବାସର ପରିଚାଳକ ଥିବା ସମୟରେ ସେ ସେହି ଛାତ୍ରାବାସର ଅନ୍ତେବାସୀ ଥିଲେ । ପରେ ୨୦୦୧ ମସିହାରେ ସେ ବି.ଜେ.ବି କଲେଜର ଅଧ୍ୟକ୍ଷ ଥିଲେ ।

ଏହି ଘଟଣା ପରେ ଅଧ୍ୟାପକମାନେ ପରୀକ୍ଷା ପରିଚାଳନା କରିବାକୁ ମନା କରିଦେଲେ । ଏଣୁ ପ୍ରଥମ ବର୍ଷ ପରୀକ୍ଷା ଆଉ ହୋଇ ପାରିଲା ନାହିଁ । ୩/୪ ଦିନ ପରେ ଶିକ୍ଷା ନିର୍ଦ୍ଦେଶକ କଲେଜକୁ ଆସିଲେ ଅଧ୍ୟାପକ ମାନଙ୍କୁ ବୁଝାବୁଝି କରି କହିଲେ, ଅନ୍ୟସବୁ ପରୀକ୍ଷା କରିଦେବା ପାଇଁ । ଅଧ୍ୟାପକମାନେ କହିଲେ ଆମେ ପୋଲିସ୍‌ର ସାହାଯ୍ୟ ବିନା ପରୀକ୍ଷା ପରିଚାଳନା କରିପାରିବୁ ନାହିଁ । ସେହି ଅନୁସାରେ ଅନ୍ୟସବୁ ପରୀକ୍ଷା କଡାକଡି ଭାବରେ ହୋଇଗଲା । ପରୀକ୍ଷା ଫଳ ବାହାରିଲା ପରେ ଜଣା ପଡିଲା ପୁରୀ କଲେଜ ଛାତ୍ରମାନଙ୍କର ଫଳ ବହୁତ ଖରାପ ହୋଇଛି । ସେଥିପାଇଁ ଛାତ୍ରମାନେ ଦିନେ ସକାଳୁ ବିଶ୍ୱବିଦ୍ୟାଳୟର ଅଫିସ୍‌ରେ ଗୋଳମାଳ କରିବା ପାଇଁ ଗଲେ । ଅଧ୍ୟକ୍ଷ ଏକଥା ଜାଣି କୁଳପତିଙ୍କୁ ଫୋନ୍‌ରେ ଜଣାଇ ଦେଲେ । ଉପର ବେଳା ଅଧ୍ୟକ୍ଷ ଉପକୁଳପତିଙ୍କ ଠାରୁ ଫୋନ୍‌ରେ ଖବର ପାଇଲେ ଯେ ଏଠୁ ଛାତ୍ରମାନେ ଆପଣଙ୍କ ଘରେ ଗୋଳମାଳ କରିବାକୁ ଯାଉଛନ୍ତି । ତେଣୁ ଆପଣ ପୁରୀ ଛାଡି ଚାଲିଯାଆନ୍ତୁ । ଅଧ୍ୟକ୍ଷ କେତେଜଣ ବରିଷ୍ଠ ଅଧ୍ୟାପକ ଓ ପରିଚାଳକ ମାନଙ୍କୁ ତାଙ୍କ ଘରକୁ ଡକାଇଲେ । ମୁଁ ତାଙ୍କ ଘର ପାଖରେ ଥିବାରୁ ଆଗଯାଇ ପହଁଚିଲି । ମୋତେ ସବୁ କଥା କହିଲେ ଏବଂ ପଚାରିଲେ, "ମୁଁ କଣ ପୁରୀ ଛାଡି ଚାଲିଯିବି ?" ମୁଁ କହିଲି ପୁରୀ ଛାଡି ଚାଲିଗଲେ ଛାତ୍ରଙ୍କୁ ଡରିକରି ଚାଲି ଗଲେ ବୋଲି ଜଣା ପଡିବ । ଆଉ ଥରେ ଆସିବା କଷ୍ଟକର ହେବ । ଅନ୍ୟମାନେ ଆସିଲା ପରେ ଶେଷରେ ଠିକ୍ ହେଲା ଯେ ଆପଣ ପୋଲିସ୍‌କୁ ଖବର ଦିଅନ୍ତୁ । ସେମାନେ ପ୍ରସ୍ତୁତ ହୋଇ ରହନ୍ତୁ । କିନ୍ତୁ ଅଧ୍ୟକ୍ଷଙ୍କର ଘର ପାଖକୁ ଆସିବେ ନାହିଁ । ତାପରେ କେତେ ଜଣ ବରିଷ୍ଠ ଅଧ୍ୟାପକ ଅଧ୍ୟକ୍ଷଙ୍କ ଘରେ କୌଣସି ବିଷୟରେ ଆଲୋଚନା କରୁଥିଲେ । ଛାତ୍ରମାନେ ପୁରୀକୁ ଫେରିଲା ପରେ ଅଧ୍ୟକ୍ଷଙ୍କ ଘର ଆଗ ରାସ୍ତାରେ ପାଟି ତୁଣ୍ଡ କରି ଚାଲିଗଲେ । ତାପରେ ଅବସ୍ଥା ଆସ୍ତେ ଆସ୍ତେ ଶାନ୍ତ ହୋଇଗଲା । ସେହି ବର୍ଷ ଠାରୁ ମୁଁ ପୁରୀରେ ଥିବା ପର୍ଯ୍ୟନ୍ତ ଆଉ କପି ହୋଇ ନାହିଁ ।

## ପ୍ରଥମ ଛାତ୍ରାବାସର ରୌପ୍ୟଜୟନ୍ତୀ ଉତ୍ସବ

ପ୍ରଥମ ଛାତ୍ରାବାସର ରୌପ୍ୟ ଜୟନ୍ତୀ ଉତ୍ସବ୧୯୭୨ ମସିହାରେ ହେବାର ଥିଲା । ପ୍ରଥମ ଛାତ୍ରବାସର ସାଂସ୍କୃତିକ କାର୍ଯ୍ୟକ୍ରମ ପାଇଁ କୌଣସି ଷ୍ଟେଜ ବା ମଞ୍ଚ ନ'ଥିଲା । ତେଣୁ ଛାତ୍ରାବାସର ଅଯଥା ଖର୍ଚ୍ଚ କମାଇ ଗୋଟିଏ ଚିରସ୍ଥାୟୀ ମଞ୍ଚ ନିର୍ମାଣ କରାଇଥିଲି । ଏହି ମଞ୍ଚଟି ରୌପ୍ୟ ଜୟନ୍ତୀ ଉତ୍ସବ ପାଇଁ ନିର୍ମାଣ କରାଯାଇଥିଲା । ୧୯୭୨ ମସିହାରେ ପ୍ରଥମ ଛାତ୍ରାବାସର ରୌପ୍ୟ ଜୟନ୍ତୀ ଉତ୍ସବ ପାଳନ କରିବା ପାଇଁ ସବୁ ପ୍ରକାର ବନ୍ଦୋବସ୍ତ କରାଗଲା । ସେଥିରେ ସେତେବେଳର ମୁଖ୍ୟମନ୍ତ୍ରୀ ମାନ୍ୟବର ଶ୍ରୀ ବିଶ୍ୱନାଥ ଦାସଙ୍କୁ ମୁଖ୍ୟ ଅତିଥି ଓ ବାଣୀବିହାରର ପ୍ରଫେସର ଡକ୍ଟର ମନ୍ମଥନାଥ ଦାସଙ୍କୁ ମୁଖ୍ୟ ବକ୍ତା ରୂପେ ନିମନ୍ତ୍ରଣ କରାଯାଇ ଥିଲା । ଦୁହେଁ ଯାକ ଯୋଗ ଦେବା ପାଇଁ ସ୍ୱୀକୃତି ପ୍ରଦାନ କରିଥିଲେ । ଶେଷରେ ସାଂସ୍କୃତିକ କାର୍ଯ୍ୟକ୍ରମର ପ୍ରଧାନ ଆକର୍ଷଣ ଥିଲା ଗୋଟିଏ ନାଟକ । ସେହି ନାଟକର ନାମ ମୋର ମନେ ନାହିଁ । ତାର ବିଷୟ ବସ୍ତୁ ଥିଲା, ଜଣେ ପ୍ରଭାବଶାଳୀ ଧନୀ ବ୍ୟକ୍ତି ଗୋଟିଏ ଯୁବକ ଲେଖକଙ୍କୁ ତାଙ୍କର ଘରୋଇ ସଚିବ ହିସାବରେ ରଖିଥିଲେ । କିନ୍ତୁ ସେ ଯୁବକ ଗୋଟିଏ ଯୁବତୀ ବେଶରେ ବାଧ୍ୟ ବାଧକତାରେ ତାଙ୍କ ପାଖରେ ରହି ସବୁ ନିଜ ଲେଖାର ପାଣ୍ଡୁ ଲିପି ପ୍ରସ୍ତୁତ କରୁଥିଲେ । ସେ ଧନୀ ବ୍ୟକ୍ତି ତାଙ୍କ ପାଣ୍ଡୁଲିପି ଗୁଡିକ ନେଇ ନିଜ ନାମରେ ପ୍ରକାଶ କରି ଜନ ସମାଜରେ ଗୋଟିଏ ବିଶିଷ୍ଟ ଲେଖକ ହିସାବରେ ନିଜକୁ ପ୍ରତିପାଦିତ କରିଥିଲେ । ଏହି ନାଟକଟି ପୁରୀର ଜଣେ ବିଶିଷ୍ଟ ଓକିଲ ନିର୍ଦ୍ଦେଶନା ଦେଇଥିଲେ । ରୌପ୍ୟ ଜୟନ୍ତୀର ନିର୍ଦ୍ଦିଷ୍ଟ ଦିନରେ ଉତ୍ସବ ଆରମ୍ଭ ହେଲା । ପ୍ରଧାନ ଅତିଥି ଏବଂ ପ୍ରଧାନ ବକ୍ତା ଆସିବା ପରେ ଅଧ୍ୟକ୍ଷ ଡକ୍ଟର ଫନିନ୍ଦ୍ର ନାଥ ଚାଟାର୍ଜୀ ଉତ୍ସବରେ ସଭାପତିତ୍ୱ କରିଥିଲେ । ପରିଚାଳକ ହିସାବରେ ମୋତେ ଅତିଥି ମାନଙ୍କର ପରିଚୟ ପ୍ରଦାନ କରିବାକୁ ପଡିଥିଲା । ପ୍ରଧାନ ବକ୍ତା ଓ ପ୍ରଧାନ ଅତିଥିଙ୍କର ଭାଷଣ ପରେ ସଭାକାର୍ଯ୍ୟ ଶେଷ ହୋଇଥିଲା । ପ୍ରଧାନ ବକ୍ତା ଓ ପ୍ରଧାନ ଅତିଥି ସଙ୍ଗେ ସଙ୍ଗେ ଚାଲି ଯାଇଥିଲେ । ମୁଖ୍ୟମନ୍ତ୍ରୀ ପ୍ରଧାନ ଅତିଥି ଭାବରେ ଆସିଥିବାରୁ କଡା ପୋଲିସ୍ ବ୍ୟବସ୍ଥା ହୋଇଥିଲା । ଯେପରି ପ୍ରଧାନ ଅତିଥି ଓ ପ୍ରଧାନ ବକ୍ତା ଚାଲିଗଲେ, ସାଂସ୍କୃତିକ କାର୍ଯ୍ୟକ୍ରମ ଆରମ୍ଭ ହେବା ପୂର୍ବରୁ ତିନିଟା ହାତ ବୋମା ଛାତ୍ରାବାସର ବିଭିନ୍ନ ସ୍ଥାନରେ ଫୁଟିଲା ଓ ମୋର ଘର ଛାତ ଉପରେ ଗୋଟିଏ ବୋମା ଫୁଟିଲା । ତାପରେ ଦର୍ଶକମାନେ ସଭାସ୍ଥଳ ଛାଡି ଚାଲିଗଲେ । ହାତ ବୋମା ଫୁଟିଲା ପରେ ପୁଣି ପୋଲିସ୍ ସତର୍କ ହୋଇଗଲେ । ତାପରେ ଅଳ୍ପ ଦର୍ଶକଙ୍କ ଉପସ୍ଥିତିରେ ସାଂସ୍କୃତିକ କାର୍ଯ୍ୟକ୍ରମ କରାଗଲା । ସେଦିନ ଆଉ କିଛି ଗୋଳମାଳ ହୋଇ ନାହିଁ ।

ପୂର୍ବ ଦିନ ଛାତ୍ରାବାସରେ ହୋଇଥିବା ଗୋଳମାଳ ଓ ବୋମା ଫୁଟିବା ବିଷୟ ପୋଲିସ୍‌କୁ ଲିଖିତ ଆକାରରେ ଜଣାଇ ଦେଲି । କିନ୍ତୁ କୌଣସି ଛାତ୍ରଙ୍କର ନାମ ଦେଇ ନ'ଥିଲି । ମୁଁ ଖରାବେଳେ ଦିନେ କଲେଜରେ ଥାଏ । ଏହି ସମୟରେ ୬/୭ ଜଣ ଛାତ୍ର ମୋତେ ଘେରି ଯାଇ ଆପଣ କାହିଁକି ଆମ ନାମ ପୋଲିସ୍‌ରେ ଦେଲେ ବୋଲି ଅଭିଯୋଗ କଲେ । ମୁଁ କହିଲି ତମ ନାମରେ ଅଭିଯୋଗ କରିନାହିଁ । ମୁଁ ଖାଲି ବୋମା ଫୁଟିଲା ବୋଲି ପୋଲିସ୍‌କୁ ଜଣାଇ ଦେଇଥିଲି । କାରଣ ସେତେବେଳେ କିଏ ବୋମା ଫୁଟାଇ ଥିଲା ମୁଁ ଜାଣି ନ'ଥିଲି । ମୁଁ ବର୍ତ୍ତମାନ ଜାଣୁଛି ଯେ ତୁମରି ମାନଙ୍କ ଦ୍ୱାରା ବୋମା ଫୁଟିଛି କିମ୍ବା ତୁମେମାନେ ସେଥିରେ ସଂପୃକ୍ତ ଅଛ । ତେଣୁ ଆଜି ପୋଲିସ୍‌କୁ ଜଣାଇ ଦେବି, ଯେ ତୁମେମାନେ ସବୁ ବୋମା ଫୁଟିବା ସହିତ ସଂପୃକ୍ତ ଅଛ । ଏହା କହିଲା ପରେ ସେମାନଙ୍କ ମୁହଁ ଶୁଖିଗଲା ଓ ସେମାନେ ଶାନ୍ତ ହୋଇଗଲେ ।

ତାପରେ ସେମାନେ ନରମ ଗଳାରେ କଥାବାର୍ତ୍ତା କରିବାକୁ ଲାଗିଲେ ଏବଂ ମୋତେ ଅନୁରୋଧ କଲେ ତାଙ୍କ ନାମ ସବୁ ନ'ଜଣାଇବାକୁ । ମୁଁ ମଧ୍ୟ ଆଉ ପୋଲିସ୍‌କୁ କିଛି ଜଣାଇ ନାହିଁ । କଲେଜରେ ବୋମା ଫୁଟି ଶ୍ରୀ ବିଜୟ ପଟ୍ଟନାୟକଙ୍କ ଗୋଟିଏ ଆଖି ନଷ୍ଟହୋଇ ଯାଇଥିଲା ଏବଂ ଛାତ୍ରାବାସରେ ବୋମା ଫୁଟାଇ ଥିବାରୁ ପୋଲିସ୍ କେତେଜଣ ପିଲାଙ୍କ ନାମରେ ମକଦ୍ଦମା କରିଥିଲେ । ୩/୪ ବର୍ଷ ପରେ ମୁଁ ଓ ଡକ୍ଟର ଚାଟାର୍ଜୀ ମକଦ୍ଦମାରେ ସାକ୍ଷୀ ଦେବା ପାଇଁ ପୁରୀ ଆସିଥିଲୁ ।

ମୁଁ ବାର୍ଷିକ ଉତ୍ସବର ଖର୍ଚ୍ଚ ହିସାବ ଦେଖି ସାରିବା ପରେ ଜାଣିଲି, ଛାତ୍ରାବାସ ପାଣ୍ଠିରେ କେତେ ଗୁଡିଏ ଟଙ୍କା ବଳକା ଅଛି । ତେଣୁ ସେ ଟଙ୍କାକୁ ଛାତ୍ରାବାସର ଉନ୍ନତି ପାଇଁ ଖର୍ଚ୍ଚ କରିବାକୁ ଠିକ୍ କଲି । ପିଲାମାନଙ୍କର ମତ ନେଲି । ଶେଷରେ ଠିକ୍ ହେଲା ଛାତ୍ରାବାସରେ ଭଲ ଚୌକି ନାହିଁ । ତେଣୁ ୫୦ ଟଙ୍କା ମୂଲ୍ୟରେ ଚୌକି କିଣିବା ପାଇଁ ଠିକ୍ କଲି । ମୁଁ ହିସାବ କରି ଦେଖିଲି, ବଢେଇ ଡାକି ତିଆରି କଲେ ଶସ୍ତା ପଡିବ । ତେଣୁ କାଠ କିଣି ଗୋଟିଏ ବଢେଇ ଡାକି ସୋଫା ତିଆରି କଲି । ସମୁଦାୟ ୫୪ଟି ସୋଫା ତିଆରି ହେଲା । ପିଲାମାନେ ବହୁତ ଖୁସି ହେଲେ । ସୋଫା ତିଆରି କରି ସାରିବା ପରେ ଆହୁରି ଟଙ୍କା ବଳିଥିଲା ।

ଏହାପର ବର୍ଷ ମୁଁ ଛାତ୍ରାବାସର ନୋଟିସ୍ ବୋର୍ଡରେ ଗୋଟିଏ ବିଜ୍ଞାପନ ଦେଇ ଜଣାଇଲି, ଯଦି ପିଲାମାନେ ୫ ଟଙ୍କା ଜମା ଦେବେ ଓ ମାସକୁ ୧ ଟଙ୍କା ଲେଖାଏଁ ଟିଉବ୍ ଲାଇଟ୍ ପାଇଁ ଦେବାକୁ ରାଜି ହେବେ, ତାହାହେଲେ ମୁଁ ସବୁ କୋଠରୀରେ ଟିଉବ ଲାଇଟ୍ ଓ ଖାଇବା ଘରେ ୨ଟା ପଙ୍ଖା ଲଗାଇ ଦେଇ ପାରିବି । ସେମାନେ ମଝିରେ ମଝିରେ ବଲବ୍ କିମ୍ବା ଟିଉବ୍ କିଣିବେ ନାହିଁ ଓ ସେମାନେ ଛାତ୍ରାବାସରୁ ବିଦାୟ ନେଇ ଗଲା ବେଳେ ଜମା ରଖିଥିବା ୫ ଟଙ୍କା ଫେରସ୍ତ ନେଇ ପାରିବେ । ପିଲାମାନେ ଏଥିରେ ରାଜି ହେଲେ । ତେଣୁ ପ୍ରତି କୋଠରୀରେ ଟିଉବ୍ ଲାଇଟ୍ ଓ ଖାଇବା ଘରେ ୨ଟି ପଙ୍ଖା ଲଗାଇ ଦେଲି । ପୁଣି ଛାତ୍ରମାନେ ଅନୁରୋଧ କଲେ ଖାଇ ସାଇସାରିବା ପରେ ହାତ ଧୋଇବାକୁ ବେଳେ ବେଳେ ପାଣି ରହୁନି ଅସୁବିଧା ହେଉଛି । ତେଣୁ ଗୋଟିଏ ଟିଉବ୍‌ୱେଲ ଖାଇବା ଘର ପାଖରେ ବସାଇ ଦେଲି ଏବଂ ଖାଇବା ଘର ଉପରେ ଗୋଟିଏ ପାଣି ଟାଙ୍କିର ବ୍ୟବସ୍ଥା କରିଦେଲି । ସେହି ଟିଉବ୍‌ୱେଲ୍ ଦ୍ୱାରା ପାଣି ଉଠାଇଲେ ଟାଙ୍କିରେ ପାଣି ଜମା ହୋଇଯିବ । ତାଦ୍ୱାରା ପିଲାଙ୍କୁ ହାତ ଧୋଇବାରେ ଅସୁବିଧା ହେବନାହିଁ । ପିଲାଙ୍କୁ କହିଲି ଆସନ୍ତା ବର୍ଷ ଗୋଟିଏ ଇଲେକ୍‌ଟ୍ରିକ୍ ପମ୍ପ ଲଗାଇ ଦେବି ।

ଏହା ଭିତରେ ମୋର ସ୍ତ୍ରୀ ଗୋଟିଏ ବହିର ପାଣ୍ଡୁଲିପି ସଂପୂର୍ଣ୍ଣ କରିଥିଲା । ସେହି ବହିଟିର ପ୍ରଚ୍ଛଦପଟ ଚିତ୍ର ଛପାଇବା ନିମନ୍ତେ ବୁଝାବୁଝି କରିବା ପାଇଁ ଆମେ ସମସ୍ତେ କଟକ ଯାଇଥିଲୁ । ଡକ୍ଟର ବିନୟ କୁମାର ଦାସଙ୍କ ଘରେ ଯାଇ ରହିଲୁ । ତାଙ୍କ ଘର କଟକ ଛେଳି କଟା ଗଳିରେ । କୌଣସି କାରଣ ଦେଖି ସେ ମୋ ପରିସ୍ରା ପରୀକ୍ଷା କରିବାକୁ କହିଲେ । ପରୀକ୍ଷା କରିସାରି କହିଲେ ତୁମର ବହୁମୂତ୍ର ରୋଗ ହେଲାଣି । ତେଣୁ ମୋତେ ସତର୍କ ରହିବା ପାଇଁ କହିଲେ । ମିଠା ଖାଇବାକୁ ମନା କଲେ । ସେଠାରେ ୨ ଦିନ ରହି ଆମେ ପୁରୀ ଚାଲି ଆସିଲୁ ।

ପ୍ରତିବର୍ଷ ଛାତ୍ରାବାସରେ ବଣଭୋଜିର ଆୟୋଜନ କରାଯାଏ । ଥରେ ଏମିତି ହେଲା ଛାତ୍ରାବାସର ନିର୍ବାଚିତ ପ୍ରତିନିଧି ମାନେ କୌଣସି ଗୋଟିଏ ଜାଗା ଠିକଣା କରି ପାରିଲେ ନାହିଁ ।

ଦୁଇଟି ଜାଗା ମଧ୍ୟରୁ ଯେ କୌଣସି ଗୋଟିଏ ଜାଗାରେ ବଣଭୋଜି ହେବ ବୋଲି ଠିକ୍ କଲେ । କାରଣ ନିର୍ବାଚିତ ସଭ୍ୟମାନେ କୌଣସି ଗୋଟିଏ ଜାଗାକୁ ସମର୍ଥନ କଲେନାହିଁ । ଫଳରେ ଛାତ୍ରାବାସର ପିଲାମାନେ ମଧ୍ୟ ଦୁଇ ଦଳରେ ବିଭକ୍ତ ହୋଇଗଲେ । ମୁଁ ବିଜ୍ଞାପନ ଦେଲି ଯେଉଁ ସ୍ଥାନକୁ ଯିବାକୁ ବେଶୀ ଛାତ୍ରମାନେ ମତ ଦେବେ ସେହି ସ୍ଥାନକୁ ବଣଭୋଜି ପାଇଁ ଠିକଣା କରାଯିବ । ସେତେବେଳେ ମୋତେ ଜଣା ନ'ଥିଲା ଯେ ପିଲାମାନେ ଦୁଇ ଦଳରେ ବିଭକ୍ତ ହୋଇ ଯାଇଛନ୍ତି । ତେଣୁ ଦୁଇ ଦଳର ସଂଖ୍ୟା ପ୍ରାୟ ସମାନ ହୋଇଗଲା । ମୁଁ ଭାବିଥିଲି ପ୍ରକୃତରେ ସମସ୍ତେ ଯିବେ । ତେଣୁ ଦୁଇଟି ବସ୍ କରିବାକୁ ପଡିବ । ମୁଁ ଏହି ସମୟରେ କେତେଜଣ ପିଲାଙ୍କ ଠାରୁ ଖବର ପାଇଲି ଯେଉଁମାନେ ନାମ ଦେଇଛନ୍ତି ସେମାନଙ୍କ ମଧ୍ୟରୁ କେତେଜଣ ଯିବେ ନାହିଁ । ତେଣୁ ପୂର୍ବ ବିଜ୍ଞାପନକୁ ବାତିଲି କରିଦେଲି ଏବଂ ଜଣାଇଲି ନୂଆ ବିଜ୍ଞାପନ ଅନୁସାରେ ନିର୍ବାଚିତ ସଭ୍ୟମାନେ ବାଛିଥିବା ଦୁଇଟି ସ୍ଥାନ ମଧ୍ୟରୁ ଗୋଟିଏ ନୂଆ ବିଜ୍ଞାପନ ଅନୁସାରେ ଠିକ୍ ହେବ :

୧. ପ୍ରତ୍ୟେକ ପିଲା କୌଣସି ଜାଗାକୁ ଯିବାପାଇଁ ମତ ଦେବା ସମୟରେ, ସେମାନଙ୍କୁ ୧୦ ଟଙ୍କା ଜମା କରିବାକୁ ପଡିବ ।

୨.ଯେଉଁମାନେ କୌଣସି ଜାଗାକୁ ଯିବାପାଇଁ ମତ ଦେଇଥିବେ ସେହି ଜାଗାରେ ଯଦି ବଣଭୋଜି ହୁଏ ଓ ସେମାନେ ଯିବେ ନାହିଁ, ତାହାହେଲେ ତାଙ୍କର ଦେଇଥିବା ୧୦ ଟଙ୍କା ବ୍ୟାଜ୍ୟାପ୍ତ ହୋଇଯିବ ।

୩. କୌଣସି ପିଲା ମତ ଦେଇଥିବା ସ୍ଥାନରେ ଯଦି ବଣ ଭୋଜି ନ'ହୁଏ ତେବେ ତାଙ୍କର ୧୦ ଟଙ୍କା ଫେରସ୍ତ ଦିଆଯିବ ।

୪.କୌଣସି ପିଲା ମତ ଦେଇଥିବା ସ୍ଥାନରେ ଯଦି ବଣ ଭୋଜି ହୁଏ ଏବଂ ସେ ଯାଆନ୍ତି ତାହାହେଲେ ତାଙ୍କର ବଣ ଭୋଜି ଦେୟରୁ ୧୦ ଟଙ୍କା କମ୍ ଦେବେ ।

୫.ଯଦି ବସ୍‌ରେ ଜାଗା ଖାଲି ପଡିଲା ତେବେ ଯେ କୌଣସି ପିଲା ଯାଇ ପାରିବେ । କିନ୍ତୁ ଜଣଙ୍କ ବଦଳରେ ଆଉ ଜଣେ ଯାଇ ପାରିବେ ନାହିଁ । ମୋର ଏହି ବିଜ୍ଞାପନ ପରେ ଆଉ କୌଣସି ଅସୁବିଧା ହୋଇ ନାହିଁ ।

ମୁଁ ପି.ଜି. ଛାତ୍ରାବାସରେ ଥିଲାବେଳେ ସାଧାରଣ ସଂପାଦକ ଓ ଅନ୍ୟ କର୍ମକର୍ତ୍ତା ମାନେ ଯେଉଁ ଟଙ୍କା ଖର୍ଚ୍ଚ କରିବା ପାଇଁ ଆଗୁଆ ନିଅନ୍ତି ତାର ହିସାବ ଦେଲା ବେଳେ ମିଛ ରସିଦ ଦିଅନ୍ତି । ତାକୁ ମୁଁ ଜାଣିଲେ ମଧ୍ୟ କିଛି କରିପାରେ ନାହିଁ । କାରଣ ପି.ଜି. ଛାତ୍ରାବାସର କର୍ମକର୍ତ୍ତାମାନେ ସେପରି କିଛି ଖର୍ଚ୍ଚରେ ଗୋଳମାଳ କରୁନଥିଲେ । କିନ୍ତୁ ପ୍ରଥମ ଛାତ୍ରାବାସର କର୍ମକର୍ତ୍ତାମାନେ ମିଛ ରସିଦ ଦେବା ଅସହ୍ୟ ହୋଇ ପଡିଲା । କାରଣ ଅନ୍ୟ ଛାତ୍ରମାନେ ଅଭିଯୋଗ କରନ୍ତି ଯେ ପଇସା ଖର୍ଚ୍ଚ ନହୋଇ ମିଛ ରସିଦ୍ ଦିଆ ହୋଇଛି । ସେ ଅଭିଯୋଗ କଲା ବେଳକୁ ବିଲ୍ ମଞ୍ଜୁର ହୋଇ ହିସାବ ଖାତାରେ ଚଢି ଯାଇଥାଏ । ଜଣେ ଦୁଇ ଜଣ ପିଲାଙ୍କୁ ପଚାରିଲା ପରେ କାରଣ ଜାଣିଲି । ଅଭିଯୋଗ କରୁଥିବା ପିଲା ତାହାର ଭାଗ କର୍ମକର୍ତ୍ତାଙ୍କ ଠାରୁ ପାଇ ନ'ଥିବା ଯୋଗୁଁ ପରେ ଅଭିଯୋଗ କରନ୍ତି । ଏହାକୁ କିପରି ବନ୍ଦ କରିବି ଭାବି ଭାବି ଗୋଟିଏ ପନ୍ଥା ନିର୍ଣ୍ଣୟ କଲି । ସେହି ପନ୍ଥାଟି ନୂଆ ପାଠ୍ୟକ୍ରମ ବର୍ଷ ଠାରୁ ଆରମ୍ଭ କରିବାକୁ ମନସ୍ଥ

କଲି । ନୂଆ ପାଠ୍ୟକ୍ରମ ଆରମ୍ଭର ନୂଆ ନିର୍ବାଚିତ ସଭ୍ୟମାନଙ୍କର କାର୍ଯ୍ୟକାରୀ ସଭାରେ ମୋ ଆଡ଼ୁ ସେହି ପନ୍ଥାଟି ଉପସ୍ଥାପିତ କରି ପାସ୍ କରାଇ ନେଲି । କେହି ତାହାର ପ୍ରତିବାଦ କରିଲେ ନାହିଁ । ସେ ପନ୍ଥାଟି ହେଲା ତୁମେମାନେ କୌଣସି ଖର୍ଚ୍ଚ କଲେ ତାହାର ରସିଦ୍ ଦେବା ଦରକାର ନାହିଁ । କେବଳ ଖର୍ଚ୍ଚର ତାଲିକା ଓ ତାର ଗୋଟିଏ ନକଲ ଦେଇଦେଲେ ଚଳିବ । ଏହା ଦ୍ୱାରା ଆମକୁ ହିସାବ ରଖିବାକୁ ସୁବିଧା ହେବ । ଦୁଇଟି ତାଲିକାରୁ ଗୋଟିଏ ତାଲିକା ଅଫିସ୍‌ରେ ରହିବ, ଅନ୍ୟ ଗୋଟିଏ ତାଲିକା ପିଲାମାନଙ୍କୁ ଦେଖାଯାଇ ପାରିବ । କୌଣସି ଛାତ୍ରାବାସର କାର୍ଯ୍ୟକ୍ରମ ପାଇଁ ହିସାବ ଦେଲା ପରେ ଗୋଟିଏ ନକଲ ମୋ ପାଖରେ ରଖିଲି ଏବଂ ଆଉ ଗୋଟିଏ ନକଲର ତଳେ ଲେଖିଲି ଯଦି କୌଣସି ଛାତ୍ରଙ୍କର ଆପତ୍ତି ଅଭିଯୋଗ ଥାଏ, ତାହାହେଲେ ସେ ମୋତେ ଏହି ନୋଟିସ୍ ବାହାରିବାର ସାତ ଦିନ ଭିତରେ ଲେଖିକରି ଜଣାଇବେ । ତାହାହେଲେ ମୁଁ ସେହି ଖର୍ଚ୍ଚ ଗୁଡିକ ତଦାରଖ କରିବି । ଏହାପରେ ତାଙ୍କର ଅଭିଯୋଗ ଗ୍ରହଣ କରାଯିବ ନାହିଁ ଓ ପଇସା ଠିକ୍ ଭାବରେ ଖର୍ଚ୍ଚ ହୋଇଛି ବୋଲି ଧରି ନିଆଯିବ । ଥରେ ଗୋଟିଏ ତାଲିକା ନୋଟିସ୍ ବୋର୍ଡରେ ବାହାରି ଥିଲା । ସେ ତାଲିକାଟି କିଏ ଚିରି ନେଇଗଲା ବୋଲି ଅଭିଯୋଗ ପାଇଲି । ତେଣୁ ଆଉ ଗୋଟିଏ ତାଲିକାର ନକଲ ନୋଟିସ୍ ବୋର୍ଡରେ ମାରିଦେଲି । ଏହାପରେ କେତେଜଣ କର୍ମକର୍ତ୍ତା କହିଲେ ଏହି ପ୍ରଥା ଅସୁବିଧା ସୃଷ୍ଟି କରୁଛି । ତେଣୁ ଏହାକୁ ବନ୍ଦ କରିଦିଅନ୍ତୁ । ମୁଁ କହିଲି ଏହାକୁ ପରିବର୍ତ୍ତନ କରି ପାରିବି ନାହିଁ । କାରଣ ତାହା ଏକ କାର୍ଯ୍ୟକାରୀ ସଭାରେ ମଞ୍ଜୁର ହୋଇଛି । ମୁଁ ତାପରେ ଦେଖିଲି ଖର୍ଚ୍ଚ ହିସାବ ସବୁ ପିଲାମାନେ ଦେଖୁଥିବାରୁ ଅଭିଯୋଗ କରିବା ଭୟରେ କର୍ମକର୍ତ୍ତାମାନେ ହିସାବରେ ବିଶେଷ କିଛି ଗୋଳମାଳ କରୁ ନାହାଁନ୍ତି ।

କଲେଜର ପରମ୍ପରା ଅନୁସାରେ ସହ-ପରିଚାଳକ ଛାତ୍ରଙ୍କ ଖାଇବା ଖର୍ଚ୍ଚ କଥା ବୁଝନ୍ତି । ମୁଁ ସେଠାରେ ପରିଚାଳକ ଥିବା ସମୟରେ ଶ୍ରୀ ଚନ୍ଦ୍ରଶେଖର ପଦରଞ୍ଜନ ମହାପାତ୍ର ସହ-ପରିଚାଳକ ଥିଲେ । ସେ ହେଉଛନ୍ତି ଇଂରାଜି ବିଭାଗର ପ୍ରାଧ୍ୟାପକ । ସେ ଟିକିଏ କଡା ମିଜାଜ୍‌ର ଲୋକ । ସେ ଦିନେ ଛାତ୍ରମାନେ ଖାଇବସିଲା ସମୟରେ ଖାଇବା ଘରକୁ ବୁଲି ଯାଇଥିଲେ । ଏହି ସମୟରେ ଗୋଟିଏ ପିଲା ଖାଇବା ବିଷୟ ନେଇ ମ୍ୟାନେଜରଙ୍କୁ କଣ କହିଲା, ମ୍ୟାନେଜର ତାକୁ କଣ କହିଲେ । ପିଲାଟି ରାଗିଯାଇ ଖାଇବା ଥାଳିଟା ସହ-ପରିଚାଳକଙ୍କ ସମ୍ମୁଖରେ ଫୋପାଡି ଦେଲା ଏବଂ ନ'ଖାଇ ଚାଲିଗଲା । ସହ-ପରିଚାଳକ ରାଗିଯାଇ ଅଧ୍ୟକ୍ଷଙ୍କ ପାଖକୁ ଛାତ୍ରଟିକୁ ଛାତ୍ରାବାସରୁ ବାହାର କରିଦେବାକୁ ଲେଖିଲେ ଏବଂ ସେ ଲେଖାଟି ମୋତେ ଦେଇ କହିଲେ, ଏହା ଅଧ୍ୟକ୍ଷଙ୍କ ପାଖକୁ ପଠାଇ ଦେବେ । ମୁଁ ସେ ଲେଖାଟିକୁ ଅଧ୍ୟକ୍ଷଙ୍କ ନିକଟକୁ ପଠାଇ ଦେଲି । ଅଧ୍ୟକ୍ଷ ସେ ଛାତ୍ରଙ୍କ ପାଖକୁ ସଙ୍ଗେ ସଙ୍ଗେ ଚିଠି ଲେଖିଦେଲେ " ତୁମର ଖରାପ ବ୍ୟବହାର ଲାଗି ଛାତ୍ରାବାସରୁ ନିର୍ଦ୍ଦିଷ୍ଟ ତାରିଖ ସୁଦ୍ଧା ବାହାରି ଯାଅ ।" ସେ ଚପରାଶି ହାତରେ ଗୋଟିଏ ଚିଟ୍ ମୋ ପାଖକୁ ଲେଖିଦେଲେ । "ମୋତେ ଏକୁଟିଆ ଦେଖାକର ।" ତେଣୁ ଅଫିସ୍ ନ ଯାଇ ତାଙ୍କ ଘରକୁ ଗଲି । ସେ ମୋତେ କହିଲେ ପିଲାଟି ପ୍ରତି ଦଣ୍ଡ ଅଧିକ ହୋଇଗଲା । ସହ-ପରିଚାଳକଙ୍କ କଥା ଅନୁସାରେ ମୁଁ ତାକୁ ଛାତ୍ରାବାସରୁ ବାହାର କରିଦେବା ପାଇଁ ଚିଠି ଲେଖିଦେଲି । କିନ୍ତୁ ତୁମେ ତାକୁ ଶୀଘ୍ର ବାହାର କରିଦେବ ନାହିଁ । ତାର ପିତାଙ୍କୁ କହିବ ମୋ

ସାଙ୍ଗରେ ଦେଖା କରିବାକୁ । ତାଙ୍କ ବାପା ଆସିବାରୁ ତାଙ୍କ ସାମ୍ନାରେ କହିଲି ତମ ଘରେ ଯଦି ଖାଇବା ଖରାପ ହୋଇଥିବ ତମେ କଣ ମାଆଙ୍କ ଉପରେ ରାଗି ଭାତ ଥାଳିଟା ଫୋପାଡି ଦେବ ? ସେ ଉତ୍ତର ଦେଲା ନାହିଁ । ମୁଁ ପଚାରିଲି ତୁମେ କାହିଁକି ଥାଳି ଫୋପାଡିଲ ? ସେ ଉତ୍ତର ଦେଲାନାହିଁ । ତାପରେ ତାକୁ କହିଲି ଯାହାତ ହେବାର ହେଲାଣି । ତମେ ଗୋଟିଏ ଦରଖାସ୍ତ ସହ-ପରିଚାଳକଙ୍କ ପାଖକୁ ଲେଖ ଯେ "ମୋର ଭୁଲ୍ ହୋଇଛି । ମୁଁ ଆଉ ଏମିତି କେବେ କରିବି ନାହିଁ ।" ବାପା ଓ ପୁଅ ଦୁଇ ଜଣ ଯାକ ଚାଲିଗଲେ । ମୁଁ ତାପରେ ସହ-ପରିଚାଳକଙ୍କୁ କହିଲି ଆପଣ ମୋ ପାଖକୁ ତା ଦରଖାସ୍ତ ଉପରେ ଲେଖି ପଠାଇବେ ଯେ 'ସେ ତା ବାପା ଆଗରେ ଭୁଲ୍ ମାଗିଛି, ତେଣୁ ତାକୁ କ୍ଷମା ଦିଆଯାଉ'। ତାପରେ ଅଧ୍ୟକ୍ଷ ତା ଦରଖାସ୍ତ ଉପରେ ୨ ଟଙ୍କା ଜୋରିମାନା କରି ତାଙ୍କ ପୂର୍ବ ନିର୍ଦ୍ଦେଶକୁ ବାତିଲ୍ କରିଦେଲେ । ସେ ଛାତ୍ର ଖୁସି ହୋଇ ୨ ଟଙ୍କା ଜୋରିମାନା ଦେଇ ଛାତ୍ରାବାସରେ ରହିଲା । ମୁଁ ଅଧ୍ୟକ୍ଷଙ୍କର ଏହି ପ୍ରକାର ସିଦ୍ଧାନ୍ତକୁ ମନେ ମନେ ବହୁତ ତାରିଫ୍ କରିଥିଲି । ଏଠାରେ ଅଧ୍ୟକ୍ଷ ନିଜେ ସହ-ପରିଚାଳକଙ୍କ ସୁପାରିଶକୁ ବାତିଲ୍ କରିଦେଇ ପାରି ଥାଆନ୍ତେ । ଏପରି କରିବା ଦ୍ୱାରା ସହ-ପରିଚାଳକଙ୍କ ପ୍ରାଧାନ୍ୟ ଛାତ୍ରାବାସରେ ବଢିଲା ଓ ପରିଚାଳକ ଏବଂ ସହ-ପରିଚାଳକଙ୍କୁ ଛାତ୍ରାବାସରେ ଶାନ୍ତି ପ୍ରତିଷ୍ଠା କରିବା ପାଇଁ ସୁବିଧା ହେଲା ।

ଅଧ୍ୟକ୍ଷ ଡକ୍ଟର ଚାଟାର୍ଜୀ ଅଧିକାଂଶ ସମୟରେ ଆମ ଘରକୁ ଆସନ୍ତି । ମୋ ସାନ ପୁଅ ସାଙ୍ଗରେ କୌତୁକରେ କଥାବାର୍ତ୍ତା କରନ୍ତି । ଆମ ଘରେ ଜନ୍ମାଷ୍ଟମୀ ଦିନ ରାଶି ଲଡୁ ହୁଏ । ସେ ଥରେ ଜନ୍ମାଷ୍ଟମୀ ଦିନ ଆମ ଘରକୁ ଆସିଥିଲେ । ସେହି ଦିନ ରାଶି ଲଡୁ ଖାଇଥିଲେ । ସେହିଦିନ ଠାରୁ ସେ ଆମ ଘରକୁ ଆସିଲେ ମୋ ସ୍ତ୍ରୀଙ୍କୁ ରାଶି ଲଡୁ ଖାଇବା ପାଇଁ କୁହନ୍ତି । ମୋତେ ମଧ୍ୟ ରାଶି ଲଡୁ ଖାଇବାକୁ ଭାରି ଭଲ ଲାଗେ । ତେଣୁ ଜନ୍ମାଷ୍ଟମୀ ବ୍ୟତିତ ଅନ୍ୟ ଦିନ ମାନଙ୍କରେ ମଧ୍ୟ ଆମ ଘରେ ରାଶି ଲଡୁ ହୁଏ । ରାଶି ଲଡୁ ତିଆରି ହେବା ଦିନ ମୁଁ ଡକ୍ଟର ଚାଟାର୍ଜୀଙ୍କୁ ରାଶି ଲଡୁ ଖାଇବା ଲାଗି ଡାକି ଆଣେ । ସେ ମଧ୍ୟ ଆଗ୍ରହରେ ଆସନ୍ତି । ଏହି ସମୟରେ ଦିନେ ଗୋଟିଏ ସରକାରୀ ଘର ଖାଲି ହେଲା । ମୁଁ ଡକ୍ଟର ଚାଟାର୍ଜୀଙ୍କୁ କହିଲି ମୋତେ ପରିଚାଳକ ପଦରୁ ଅବ୍ୟାହତି ଦେଇ ଖାଲି ହୋଇଥିବା ଘରଟି ଦିଅନ୍ତୁ । କାରଣ ମୋର ପରିଚାଳକ ଭାବେ ନିଯୁକ୍ତି ପାଇବାର ୩ ବର୍ଷ ହୋଇ ଗଲାଣି । ଏଥିପାଇଁ ମୁଁ ଗୋଟିଏ ଦରଖାସ୍ତ ମଧ୍ୟ ଦେଇଛି । ସେ ନାହିଁ କଲେ ଏବଂ ଦରଖାସ୍ତ ଉପରେ ଲେଖିଦେଲେ ତୁମେ ଆଉ ୩ ବର୍ଷ ପରିଚାଳକ ରହିବ ।

୧୯୭୪ ମସିହାର ପ୍ରଥମ ଭାଗରେ ଡକ୍ଟର ଚାଟାର୍ଜୀ ପ୍ରଫେସର ହିସାବରେ ପ୍ରମୋଶନ ପାଇ ସମ୍ବଲପୁରରେ ଥିବା ଗଙ୍ଗାଧର ମେହେର କଲେଜକୁ ବଦଳି ହୋଇଗଲେ । ତାଙ୍କ ଜାଗାରେ ଡକ୍ଟର ସତ୍ୟବାଦୀ ମିଶ୍ର ଅଧ୍ୟକ୍ଷ ଭାବରେ ପୁରୀ କଲେଜକୁ ବଦଳି ହୋଇ ଆସିଲେ । ସେହି ସମୟରେ ନରେନ୍ଦ୍ର ପୋଖରୀର ପଙ୍କ ଓଟଳା ହେଉଥିଲା । ଅଧ୍ୟକ୍ଷ କହିଲେ ନରେନ୍ଦ୍ର ପୋଖରୀର ପଙ୍କ ଆଣି ଛାତ୍ରାବାସ ବଗିଚାରେ ପକାଇଲେ ଭଲ ଫୁଲଗଛ ଲାଗି ପାରିବ । ମୁଁ ତାଙ୍କ କଥାରେ ରାଜି ହେଲି ନାହିଁ ଏବଂ କହିଲି ବର୍ଷେ ଦୁଇ ବର୍ଷ ଭିତରେ ପଙ୍କ ବାଲି ଭିତର ଦେଇ ତଳକୁ ଚାଲିଯିବ । ଆମକୁ ପିଲାମାନେ ବଦନାମ କରିବେ । ସେ ମୋତେ ଆଉ ବାଧ୍ୟ

କରି ନାହାନ୍ତି । ତାର କେତେ ଦିନ ପରେ କହିଲେ ଏକ ବସ୍ତା ଭଲ ଚାଉଳ ପଠାଇ ଦେବ । ମୁଁ ଭେଣ୍ଡରକୁ କହି ଏକ ବସ୍ତା ଚାଉଳ ଓ ତାର ବିଲ୍‌ଟି ମଧ୍ୟ ପଠାଇ ଦେଲି । କିଛି ଦିନ ପରେ ସେ ମୋତେ ଜଣାଇଲେ ଚାଉଳ ବସ୍ତାଟି ଭଲ ନୁହେଁ, ଗୋଡି ଅଛି । ମୁଁ କହିଲି ବସ୍ତାଟି ଫେରାଇ ଦିଅନ୍ତୁ, ଆଉ ଗୋଟିଏ ଭଲ ଚାଉଳ ବସ୍ତା ଦେଇଦେବି । ସେ କହିଲେ ଆଉ ଦରକାର ନାହିଁ । ମୁଁ ଚାଉଳ କିଣି ସାରିଲିଣି ।

## ଗୁଣ୍ଡାଶ୍ରେଣୀୟ ବ୍ୟକ୍ତିଙ୍କ ଦ୍ୱାରା ଅନ୍ତେବାସୀଙ୍କ ଠାରୁ ପଇସା ଆଦାୟ

ଏହା ମଧ୍ୟରେ ଗୋଟିଏ ଆଶ୍ଚର୍ଯ୍ୟ ଜନକ ଘଟଣା ଛାତ୍ରାବାସରେ ଘଟୁଥାଏ । କିନ୍ତୁ ଛାତ୍ରମାନେ ମୋତେ କହୁ ନ ଥାଆନ୍ତି । ଘଟଣାଟି ହେଲା ଭଗବାନ ନାମରେ ଜଣେ ଲୋକ ଛାତ୍ରାବାସର ବିଭିନ୍ନ କୋଠରୀରେ ପଶି ନିରୀହ ପିଲାଙ୍କୁ ଡରାଇ ତାଙ୍କ ଠାରୁ ଟଙ୍କା ଆଦାୟ କରୁଥିଲା । ପିଲାଙ୍କୁ ଡରାଏ କାହା ଆଗରେ କିଛି ନ କହିବାକୁ । କେତେ ଜଣ ପିଲାଙ୍କ ଠାରୁ ଏକା କଥା ଶୁଣିଲି । ଆହୁରି ମଧ୍ୟ ଶୁଣିଲି କିଏ ଏହିକଥା ପ୍ରକାଶ କଲେ ତାକୁ ମୋ ଲୋକଙ୍କ ଦ୍ୱାରା ବାଡେଇବି । ଏହି କଥା ସବୁ ଶୁଣି ମୁଁ ପିଲାଙ୍କର ଏକ ସାଧାରଣ ସଭା ଡାକିଲି । ସଭାରେ ମୁଁ ଭଗବାନ କଥା କହିଲି ଓ ପିଲାମାନଙ୍କୁ ଡରକୁଳା ବୋଲି କହିଲି । ଗାଳିଦେଲା ପରେ କିଏ ଜଣେ ଆରମ୍ଭ କରି ସବୁ କଥା କହିଲା । ଆଉ ସମସ୍ତେ ସେହି କଥା ଦୋହରାଇଲେ । ମୁଁ ପିଲାଙ୍କୁ କହିଲି ତୁମ ଭିତରୁ କିଏ ଭଗବାନଙ୍କୁ ସଭା ହୋଇଥିଲା ବୋଲି କହିବ ନାହିଁ । ସଭା ପରେ କେତେ ଜଣ ଉପର କ୍ଲାସ୍ ଛାତ୍ରଙ୍କୁ ମୋ ଘରକୁ ଡାକିଲି । ପଚାରିଲି କେତେବେଳକୁ ସେ ଲୋକ ଛାତ୍ରାବାସକୁ ଆସୁଛି । ଯେଉଁମାନଙ୍କୁ ଘରକୁ ଡାକିଥିଲି ତାଙ୍କୁ ସବୁ ମଶାରି ବାଡ ଖୋଲିକରି ଦୁଆର ମୂହଁରେ ରଖିବାକୁ କହିଲି । ଯେତେବେଳେ ଭଗବାନ ଆସି କୌଣସି କୋଠରୀରେ ଥିବ ସେତେବେଳେ କୋଠରୀ ଭିତରୁ ଯିଏ ଜାଣିବ ସେ ଆସି ମୋତେ ଚୁପ୍ କରି କହିଦେବ । ମୁଁ ଡାକିଲେ ତମେ ସମସ୍ତେ ଡକା ଡକି ହୋଇ ମଶାରି ବାଡ ଧରି ବାହାରକୁ ଚାଲି ଆସିବ । ଦିନେ ଜଣେ ପିଲା ଖବର ଦେଲା ଭଗବାନ ଆସିଛି । ମୁଁ ସଙ୍ଗେ ସଙ୍ଗେ ଆମ ଘରୁ ଗୋଟିଏ ଠେଙ୍ଗା ଧରି ଛାତ୍ରାବାସକୁ ଗଲି । ଜୋରରେ ପାଟି କରି କହିଲି ପିଲାମାନେ ଦୌଡି ଆସ ଭଗବାନ ଆସିଛି । ସବୁପିଲା ବାହାରକୁ ମଶାରିବାଡ ଧରି ଚାଲି ଆସିଲେ । ଭଗବାନ ଭୟରେ ପଳାଇବାର ଆମେ ସମସ୍ତେ ଦେଖିଲୁ । ତାପରେ ମୁଁ କଲେକ୍ଟରଙ୍କ ପାଖକୁ ଏହି ଘଟଣା ଲେଖି ପଠାଇ ଦେଲି । ଏହି ଘଟଣା ପରେ ଭଗବାନ ଆଉ ଛାତ୍ରବାସକୁ କେବେ ଆସିନାହିଁ । ଏହାପରେ ଖରାଛୁଟି ହୋଇଗଲା ପିଲାମାନେ ସବୁ ଘରକୁ ଚାଲିଗଲେ ।

ଏହି ଖରା ଛୁଟିରେ କଲେଜର ଜଣେ କିରାନୀ ମତେ କହିଲେ ଅଧ୍ୟକ୍ଷଙ୍କର ଦରକାର ଅଛି ଚିନି ୨୦ କିଲୋ ଛାତ୍ରାବାସ କୋଟାରୁ ମୋତେ ଦିଅନ୍ତୁ । ମୁଁ କହିଲି ଛାତ୍ରାବାସ ଛୁଟିରେ ଚିନି ଉଠାଇବ ନାହିଁ ବୋଲି ମୁଁ ସିଭିଲ୍ ସପ୍ଲାଇ ଅଫିସରଙ୍କୁ ଚିଠି ଲେଖି ଦେଇଛି । ତେଣୁ ଚିନି ଦେଇ ପାରିବି ନାହିଁ । କଲେଜ ଖୋଲୁ, ଚିନି ଆସିଲେ ମୁଁ ପିଲାଙ୍କ ଠାରୁ ଯୋଗାଡ କରି ଦେଇ ପାରିବି । ଛାତ୍ରାବାସରେ ୧୦୦ ଜଣ ପିଲା ରହନ୍ତି । ଜଣେ ୧ କିଲୋଗ୍ରାମ୍ କରି ଖାତାରେ ଦସ୍ତଖତ କରି ନିଅନ୍ତି । ମୁଁ କେବେ ଛାତ୍ରାବାସରୁ ଚିନି ନେଇନାହିଁ । ମୁଁ ସେ କିରାନୀକୁ କହିଲି

ଚିନି ଆପଣ ନେବେ । କିନ୍ତୁ ଅନ୍ୟମାନେ କହିବେ ପରିଚାଳକ ଚିନିକୁ ଅଧିକ ଦାମ୍‌ରେ ବିକ୍ରିକରି ଟଙ୍କା ଖାଇଦେଲେ । ତାପରେ ସେ କିରାନୀ ଚାଲିଗଲେ ।

୧୯୭୪ ମସିହାର ଅପ୍ରେଲ ଶେଷ ଆଡକୁ ବିଜ୍ଞାପନ ବାହାରିଲା । ଯେଉଁମାନେ ଛାତ୍ରାବାସର ପରିଚାଳକ ହେବାକୁ ଚାହାଁନ୍ତି ସେମାନେ ଦରଖାସ୍ତ କରନ୍ତୁ । ମୁଁ ଦରଖାସ୍ତ କଲି ନାହିଁ । କାରଣ ଅନୁମାନ କରିଥିଲି ମୋତେ ପରିଚାଳକ କରାଯିବ ନାହିଁ । କିନ୍ତୁ ଲେଖିକରି ଜଣାଇଲି ପୂର୍ବ ବର୍ଷ ସେତେବେଳର ଅଧ୍ୟକ୍ଷ ମୋତେ ସରକାରୀ ଘର ନ ଦେଇ ଆଉ ତିନି ବର୍ଷ ରହିବା ପାଇଁ ଲେଖି ଦେଇଥିଲେ । ଯେହେତୁ ଆପଣ ନୂତନ ପରିଚାଳକ ନିଯୁକ୍ତି ପାଇଁ ବିଜ୍ଞାପନ ଦେଇଛନ୍ତି । ତେଣୁ ମୁଁ ଆଉ ଦରଖାସ୍ତ କରୁନାହିଁ । ମୋ ଠାରୁ କନିଷ୍ଠ ପ୍ରାଧ୍ୟାପକମାନେ ସରକାରୀ ଘର ପାଇଛନ୍ତି । ତେଣୁ ମୋତେ ସରକାରୀ ଘରଟିଏ ଦେଇ ପରିଚାଳକ ପଦରୁ ଅବ୍ୟାହତି ଦିଅନ୍ତୁ । ଏଥି ସହିତ ପୂର୍ବତନ ଅଧ୍ୟକ୍ଷଙ୍କ ମନ୍ତବ୍ୟର ନକଲ ଏହି ଦରଖାସ୍ତ ସହିତ ଦେଲି । କିନ୍ତୁ ମୋ ଦରଖାସ୍ତର ଉତ୍ତର ଦିଆ ନ ଯାଇ ମୋତେ ପରିଚାଳକ ପଦରୁ ଅବ୍ୟାହତି ଦିଆଗଲା । ମୋ ଜାଗାରେ ଓଡିଆ ବିଭାଗର ପ୍ରାଧ୍ୟାପକ ଶ୍ରୀ ଚିନ୍ତାମଣି ବେହେରାଙ୍କୁ ପରିଚାଳକ ନିଯୁକ୍ତ କରାଗଲା । ମୋତେ ସରକାରୀ ଘର ଦିଆଗଲା ନାହିଁ । ମୁଁ ଅଧ୍ୟକ୍ଷଙ୍କ କାର୍ଯ୍ୟରେ ବିରୋଧ ନ'କରି ଛାତ୍ରାବାସର ଘର ଛାଡି ଦେବାକୁ ମନସ୍ଥ କରିଲି । ଦିନେ ଅଧ୍ୟକ୍ଷ ଆମ ଘରକୁ ରାତିରେ ଆସିଲେ ମୋତେ ଘର କଥା ପଚାରିଲେ । ମୁଁ ଖାଲି କହିଲି, ଘର ଖୋଜୁଛି । ପାଇଲେ ଏ ଘର ଛାଡିଦେବି । ମୋ ସ୍ତ୍ରୀଙ୍କର ମାମୁଁଙ୍କର ଗୋଟିଏ ଘର ପୁରୀ ବଡ ଦାଣ୍ଡରେ ସବୁବେଳେ ଖାଲି ରହିଥାଏ । ମାମୁଁମାନେ ପୁରୀ ଆସିଲେ ସେହି ଘରେ ରୁହନ୍ତି । ମୁଁ ସ୍ତ୍ରୀର ମାମୁଁଙ୍କୁ କହି ସେ ଘରର ଚାବି ଆଣି କିଛି କାହାକୁ ନ କହି ଗୋଟିଏ ଛୁଟି ଦିନରେ ସରକାରୀ ଘର ଛାଡି ମାମୁଁଙ୍କ ଘରେ ରହିଲି । ଏହି ଘଟଣାରେ ମୋର ସହକର୍ମୀମାନେ ମୋତେ ଅଧ୍ୟକ୍ଷଙ୍କ ବିରୋଧରେ ଉଚ୍ଚ ଶିକ୍ଷା ନିର୍ଦ୍ଦେଶକଙ୍କ ପାଖକୁ ଲେଖିକରି ଜଣାଇବା ପାଇଁ ବହୁତ ପ୍ରବର୍ତାଇଲେ । ମୁଁ ଏଥିରେ ରାଜି ହେଲି ନାହିଁ । କାରଣ ମୋର କାହା ସଙ୍ଗେ କଳି କରିବା ପାଇଁ ଇଚ୍ଛା ହୁଏ ନାହିଁ । ମୁଁ ଜାଣେ କଳି କଲେ ମୋର କ୍ଷତି ହେବ । ମୋର ବନ୍ଧୁମାନଙ୍କୁ ବୁଝାଇଲି । ଅଧ୍ୟକ୍ଷଙ୍କ ବିରୋଧରେ ଲେଖିଲେ ସେ ମୋ ବିରୋଧରେ ମଧ୍ୟ ଲେଖିବେ ଏବଂ ଲେଖିବେ ତାଙ୍କୁ ଏଠାରୁ ଅନ୍ୟ କଲେଜକୁ ବଦଳି କରି ଦିଆଯାଉ । ଯାହାଦ୍ୱାରା ଭବିଷ୍ୟତରେ ମୋର ବହୁତ କ୍ଷତି ହେବ । ସେମାନଙ୍କୁ ଏତିକି କହିଲି ତୁମେମାନେ ଅପେକ୍ଷା କର । ମୁଁ କଣ କରୁଛି ପରେ କହିବି । ଅଳ୍ପ କେତେ ଦିନ ପରେ ମୁଁ ଦିନେ ସକାଳୁ ଅଧ୍ୟକ୍ଷଙ୍କ ଘରକୁ ଗଲି । ସେ ବହୁତ ଦୁଃଖ କଲେ ଏବଂ କହିଲେ "ତୁମେ ମୋତେ ନ କହି ଘର ଛାଡିଦେଲ ।" ମୁଁ କହିଲି ଆଉ ତ ଘର ଖାଲି ହେବାର ନ ଥିଲା । ତେଣୁ ଆପଣଙ୍କ ନିର୍ଦ୍ଦେଶକୁ ମାନି ଘର ଛାଡିଦେଲି । ତାଙ୍କୁ ଅନୁରୋଧ କଲି ମୋତେ ଟିକିଏ ସାହାଯ୍ୟ କରିବା ପାଇଁ । ସେ ସଙ୍ଗେ ସଙ୍ଗେ କହିଲେ ମୁଁ ତୁମକୁ ସବୁ ପ୍ରକାର ସାହାଯ୍ୟ କରିବି ଏବଂ ମୋତେ କଣ କରିବାକୁ ହେବ କୁହ । ମୁଁ କହିଲି ସରକାରଙ୍କୁ ଦରଖାସ୍ତ କରୁଛି ମୋତେ ଗୋଟିଏ ସ୍ନାତକୋତ୍ତର କଲେଜକୁ ବଦଳି କରିଦେବା ପାଇଁ । ଆପଣ ସେହି ଦରଖାସ୍ତଟିକୁ ଭଲକରି ସୁପାରିଶ କରିଦେବେ । ସଙ୍ଗେ ସଙ୍ଗେ ସେ କହିଲେ, ତୁମ ଦରଖାସ୍ତ କାହିଁ ? ମୋ ଦରଖାସ୍ତଟିକୁ ବାହାର କରିଦେଲି । ସେ ମୋ ଦରଖାସ୍ତଟି ପଢିସାରି ଆଉ ଖଣ୍ଡେ କାଗଜରେ ହାତରେ ଲେଖିଦେଲେ

"ଡକ୍ଟର ମିଶ୍ର ଜଣେ ଉଚ୍ଚକୋଟିର ଗବେଷକ । ସେ ଗବେଷଣା ପାଇଁ ଛୁଟି ନ ନେଇ ଚାକିରୀରେ ରହି ପିଏଚ.ଡି ଡିଗ୍ରି ପାଇବାକୁ ସମର୍ଥ ହୋଇଛନ୍ତି । ସେ ବର୍ତ୍ତମାନ ପର୍ଯ୍ୟନ୍ତ ୭ଟି ଗବେଷଣାତ୍ମକ ପ୍ରବନ୍ଧ ଛପାଇ ଅଛନ୍ତି ଏବଂ ଜଣେ ଉତ୍ତମ ଶିକ୍ଷକ । ତେଣୁ ତାଙ୍କର ସ୍ନାତକୋତ୍ତର କଲେଜକୁ ବଦଳି ହେବା ନିହାତି ବାଂଛନୀୟ । ତାଙ୍କର ଏଠାରେ ରହିବା ଦ୍ୱାରା ସ୍ନାତକୋତ୍ତର ଶିକ୍ଷାର କ୍ଷତି ହେଉଛି । ତେଣୁ ତାଙ୍କୁ ସ୍ନାତକୋତ୍ତର କଲେଜକୁ ବଦଳି କରାଯାଉ ।" ତାଙ୍କ ଲେଖାଟି ନେଇ ଅଫିସ୍‌ରେ ଦେବାରୁ ଏବଂ ତାହା ତାଙ୍କ ହାତ ଲେଖା ହୋଇଥିବାରୁ ଅଫିସ୍ ସଙ୍ଗେ ସଙ୍ଗେ ଲେଖାଟିକୁ ଚିଠି ଆକାରରେ ଉଚ୍ଚ ଶିକ୍ଷା ନିର୍ଦ୍ଦେଶକଙ୍କ ପାଖକୁ ଟାଇପ୍ କରିଦେଲେ । ଟାଇପ୍ କାଗଜଟିକୁ ଅଧ୍ୟକ୍ଷଙ୍କୁ ଦେଖାଇବାରୁ ସେ ଦସ୍ତଖତ କରିଦେଲେ । ମୋତେ କହିଲେ ଅଫିସ୍‌ରେ ଦେଇଦିଅ । ତେଣୁ ତାଙ୍କ ଚିଠିଟି ମୋ ଦରଖାସ୍ତ ସହିତ ପଠାଇ ଦିଆଗଲା । ମୁଁ ତାହାର ଗୋଟିଏ ନକଲ ଆଣି ମୋର ବନ୍ଧୁ ଅଧ୍ୟାପକ ମାନଙ୍କୁ ଦେଖାଇଲି । କହିଲି ମୁଁ ଯଦି ତାଙ୍କ ବିପକ୍ଷରେ ଲେଖି ଥାଆନ୍ତି । ସେ ମୋ ବିପକ୍ଷରେ ଲେଖି ଥାଆନ୍ତେ ।

ଏହା ଭିତରେ ଖରାଛୁଟି ହୋଇ ଯାଇଥାଏ । ଛୁଟି ଭିତରେ ଉଚ୍ଚ ଶିକ୍ଷା ନିର୍ଦ୍ଦେଶକଙ୍କୁ ଦେଖାକଲି ଏବଂ ମୋତେ ସ୍ନାତକୋତ୍ତର କଲେଜକୁ ବଦଳି କରିବା ପାଇଁ ଅନୁରୋଧ କଲି । ତାପରେ ଶିକ୍ଷା ବିଭାଗର ସେକ୍ରେଟାରୀଙ୍କୁ ଦେଖାକଲି । ସେ ମୋତେ ଡେପୁଟି ସେକ୍ରେଟାରୀଙ୍କୁ ଦେଖା କରିବା ପାଇଁ କହିଲେ । ମୁଁ ଡେପୁଟି ସେକ୍ରେଟାରୀଙ୍କୁ ଦେଖା କଲି । ସେ ମୋତେ ପଚାରିଲେ କୌଣସି ବେସରକାରୀ କଲେଜରେ ଅଧ୍ୟକ୍ଷ ଭାବରେ ଯୋଗ ଦେବ କି ? ମୋର ପୁରୀ ପ୍ରତି ଏତେ ବିତୃଷ୍ଣା ଆସି ଯାଇଥିଲା ଯେ ମୁଁ ସଙ୍ଗେ ସଙ୍ଗେ ରାଜି ହୋଇଗଲି । ସେ କହିଲେ ସାତ ଦିନ ମଧ୍ୟରେ ତୁମକୁ ନୟାଗଡ଼ କଲେଜରେ ଅଧ୍ୟକ୍ଷଭାବେ ନିଯୁକ୍ତି ପତ୍ର ମିଳିଯିବ । ତୁମେ ପ୍ରସ୍ତୁତ ହୋଇଥାଅ । ଯେପରି ଶିଘ୍ର କାର୍ଯ୍ୟରେ ଯୋଗ ଦେବ । ମୁଁ ତାଙ୍କୁ ମୋର ସମ୍ମତି ଜଣାଇ ପୁରୀ ଚାଲି ଆସିଲି । ସାତ ଦିନ ଭିତରେ କିଛି ଚିଠି ଆସିଲା ନାହିଁ । ପୁଣି ଥରେ ଯାଇ ଡେପୁଟି ସେକ୍ରେଟାରୀଙ୍କୁ ଦେଖା କଲି । ସେ କହିଲେ ତୁମେ ନୟାଗଡ଼ରେ ଅଧ୍ୟକ୍ଷ ନ'ହୋଇ ସୋର କଲେଜରେ ଅଧ୍ୟକ୍ଷ ହୁଅ । କାରଣ ଶିକ୍ଷା ମନ୍ତ୍ରୀ ଚାହୁଁଛନ୍ତି ତାଙ୍କ କଲେଜରେ ଜଣେ ଭଲ ଅଧ୍ୟକ୍ଷ ଦରକାର । ମୁଁ ପୁରୀ ଚାଲି ଆସିଲି । କିନ୍ତୁ ବଦଳି ଚିଠି ଆସିଲା ନାହିଁ । ପ୍ରାୟ ୭ ଦିନ ପରେ ଆଉ ଥରେ ଡେପୁଟି ସେକ୍ରେଟାରୀଙ୍କୁ ଦେଖା କଲି । ତୁମର ଅଧ୍ୟକ୍ଷ ନିଯୁକ୍ତି ପାଇଁ ଶିକ୍ଷା ନିର୍ଦ୍ଦେଶକ ରାଜି ହେଉନାହାଁନ୍ତି । ମୁଁ କହିଲି ତାହାହେଲେ ମୋତେ ସ୍ନାତକୋତ୍ତର କଲେଜକୁ ବଦଳି କରି ଦିଅନ୍ତୁ । ତୁମକୁ ସମ୍ବଲପୁର ବଦଳି କରିବା ପାଇଁ ବ୍ୟବସ୍ଥା ହେଉଛି । ମୁଁ ପୁରୀ ଫେରିଆସି ସମ୍ବଲପୁର କଲେଜରେ ମୋର ଝିଅର ଆଡମିଶନ୍ ପାଇଁ ଡକ୍ଟର ବ୍ରଜସୁନ୍ଦର ମହାନ୍ତିଙ୍କ ପାଖକୁ ଚିଠି ଲେଖିଲି । ସେ ବୋର୍ଡ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପାସ୍ କରିଥାଏ । ସେ ୫/୬ ଦିନ ମଧ୍ୟରେ ଗୋଟିଏ ଜି.ଏମ୍ କଲେଜର ଦରଖାସ୍ତ ଫର୍ମ ପଠାଇ ଦେଲେ । ମୁଁ ସେ ଫର୍ମକୁ ପୁରଣ କରି ତାଙ୍କ ପାଖକୁ ପଠାଇ ଦେଲି । ଦିନେ ରାତିରେ ଭୀଷଣ ବର୍ଷା ହେଉଛି । ମୋର ଜଣେ ସହପାଠୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ର ଆମେ ରହୁଥିବା ଘରେ ପହଁଚି ମୋତେ ଓ ମୋ ସ୍ତ୍ରୀକୁ କହିଲେ, ମୋତେ ମିଠା ଖାଇବାକୁ ଦିଅ । ଗୋଟିଏ ଭଲ ଖବର ଦେବି । ରସଗୋଲା

କିଣା ହୋଇ ଆସିଲା । ପ୍ରଫୁଲ୍ଲ ବାବୁ କହିଲେ ତୁମର ରେଭେନ୍ସା କଲେଜକୁ ବଦଳି ହୋଇ ଯାଇଛି । ମୁଁ ଶିକ୍ଷା ମନ୍ତ୍ରୀଙ୍କ ଘରେ ଫାଇଲ୍‌ରୁ ଦେଖି ଆସିଛି । ତା ପର ଦିନ ସତକୁ ସତ ମହମ୍ମଦ ଆସଫର ନାମକ ଜଣେ ଫିଜିକ୍ସର ପ୍ରାଧ୍ୟାପକ ମୋତେ ସକାଳୁ ଆସି କଲେଜରେ ଭେଟି କହିଲେ, ଆପଣଙ୍କର ରେଭେନ୍ସା କଲେଜକୁ ବଦଳି ହୋଇ ଯାଇଅଛି । ଆପଣ ଆଜି ଅବ୍ୟାହତ ନେଇଯାଆନ୍ତୁ, ନ ହେଲେ ମୁଁ ଭାରି ହଇରାଣ ହେବି । କାରଣ ମୋର ସ୍ଥାନ ପରିବର୍ତ୍ତନ ଛୁଟି (Transit Leave) ଆଜି ସରି ଯାଉଛି । ସେ ତାଙ୍କ ସରକାରୀ ଚିଠି ଦେଖାଇଲେ ଓ ମୋର ଚିଠିର ନକଲ ଦେଇଦେଲେ । ସେ ଚିଠିରେ ମୋର ପୁରୀ କଲେଜରୁ ବଦଳି ଓ ରେଭେନ୍ସା କଲେଜରେ ନିଯୁକ୍ତି ଆଦେଶ ଅଛି । ସେ ଦିନଟି ହେଉଛି ୧୯୭୪ ମସିହା ଜୁଲାଇ ୨୬ ତାରିଖ । ମୁଁ ସେହିଦିନ ପୁରୀ କଲେଜରୁ ଅବ୍ୟାହତି ନେଲି । ପରେ ଜାଣିବାକୁ ପାଇଲି ମୋର ସମ୍ବଲପୁରକୁ ବଦଳି ପାଇଁ ଫାଇଲ୍‌ରେ ସୁପାରିଶ୍ କରାଯାଇଥିଲା । କିନ୍ତୁ ମୁଖ୍ୟମନ୍ତ୍ରୀ ତାକୁ ପରିବର୍ତ୍ତନ କରି ମୋର ରେଭେନ୍ସା କଲେଜ କରି ଦେଇଛନ୍ତି । ସେତେବେଳେ ମୁଖ୍ୟମନ୍ତ୍ରୀ ଥିଲେ ଶ୍ରୀମତୀ ନନ୍ଦିନୀ ଶତପଥି । ମୁଁ ମନେ ମନେ ଭାବିଲି ମୁଁ ତ ନନ୍ଦିନୀ ଶତପଥିଙ୍କୁ ଚିହ୍ନି ନାହିଁ । ସେ ଏପରି କଲେ କାହିଁକି ? ତାପରେ ଜାଣିଲି ଛଅ ମାସ ଆଗରୁ ମୁଁ ରେଭେନ୍ସା କଲେଜର ଅଧ୍ୟକ୍ଷ ଡକ୍ଟର ମହେନ୍ଦ୍ର କୁମାର ରାଉତଙ୍କୁ ଦେଖା କରିଥିଲି ଏବଂ ତାଙ୍କୁ ମୋର ପିଏଚ.ଡି ପାଇବା କଥା କହିଥିଲି । ସେହି ସମୟରେ ଓଡିଶା ସରକାରରେ ମୁଁ ଏକ ମାତ୍ର ପ୍ରାଧ୍ୟାପକ ଯିଏ ପିଏଚ.ଡି ପାଇଥିଲେ । ରେଭେନ୍ସା କଲେଜର ଅଧ୍ୟକ୍ଷ ଜଣେ ଅଧିକ ଯୋଗ୍ୟତା ପ୍ରାପ୍ତ ପ୍ରାଧ୍ୟାପକଙ୍କୁ ନିଯୁକ୍ତି ଦେବା ପାଇଁ ଲେଖିଥିଲେ ଏବଂ ମୋର ନାମ ମଧ୍ୟ ସୁପାରିଶ୍ କରିଥିଲେ । ତା ସାଙ୍ଗକୁ ପୁରୀ କଲେଜର ଅଧ୍ୟକ୍ଷ ମୋତେ ପୋଷ୍ଟ ଗ୍ରାଜୁଏଟ୍ କଲେଜରେ ନିଯୁକ୍ତି ଦେବା ପାଇଁ ମୋ ଦରଖାସ୍ତକୁ ସୁପାରିଶ୍ କରିଥିଲେ । ଏହି ଦୁହିଁଙ୍କ ସୁପାରିଶ୍ ଦ୍ୱାରା ମୋର ସମ୍ବଲପୁର କଲେଜର ନିଯୁକ୍ତି ପରିବର୍ତ୍ତନ ହୋଇ ରେଭେନ୍ସା କଲେଜକୁ ବଦଳି ହେଲା ।

ମୁଁ ପୁରୀରେ ଥିବା ସମୟରେ କେତେ ଗୁଡିଏ ଘଟଣା ଘଟିଥିଲା । ତାହାର ଅନୁମାନିକ ଦିନ ମୋର ମନେ ନାହିଁ । ସେହି ଘଟଣା ଗୁଡିକ ଏଠାରେ ଲେଖୁଛି । ପୁରୀ କଲେଜରେ ଡକ୍ଟର ସତ୍ୟବାଦୀ ମିଶ୍ର ଅଧ୍ୟକ୍ଷ ଥିବା ସମୟରେ ଗୋଟିଏ ବିଜ୍ଞାପନ ଦେଇଥିଲେ ଯେ ଗୋଟିଏ ୭ ବର୍ଷର ଛୋଟ ଝିଅ କଲେଜରେ ୩ଟା ବେଳେ ପ୍ରବଚନ ଦେବେ । ସବୁ ଅଧ୍ୟାପକ ଓ ଛାତ୍ରମାନଙ୍କୁ ପ୍ରବଚନ ଶୁଣିବା ପାଇଁ କୁହାଯାଇ ଥିଲା । ସେହି ଝିଅଟି ଭାରତର ବିଭିନ୍ନ ସ୍ଥାନ ବୁଲି ହିନ୍ଦୁ ଧର୍ମର ମହାତ୍ମ୍ୟ ଉପରେ ବକ୍ତୃତା ଦେଉଥିଲେ । ମୋତେ ତାଙ୍କର ପ୍ରବଚନ ଭାରି ଭଲ ଲାଗିଥିଲା । ସେତେବେଳର ସେ ଝିଅଟି ବର୍ତ୍ତମାନ କିଏ, ପୁରୀରେ ଯାହାକୁ ପଚାରିଲେ କେହି କହି ପାରୁ ନାହାନ୍ତି ।

## ସାଇନ୍ସ ଟାଲେଣ୍ଟ ସର୍ଚ୍ଚର ସାକ୍ଷାତକାର ପାଇଁ ମୋର କଲିକତା ଯାତ୍ରା

ମୁଁ ପୁରୀରେ ଥିବା ସମୟରେ ଦୁଇ ଥର ଓ ରେଭେନ୍ସା କଲେଜରେ ପ୍ରାଧ୍ୟାପକ ଥିବାବେଳେ ଥରେ ସାଇନ୍ସ ଟାଲେଣ୍ଟ ସର୍ଚ୍ଚର ସାକ୍ଷାତକାର ପରୀକ୍ଷାର ସଭ୍ୟ ହିସାବରେ ଓଡିଶା ସରକାରଙ୍କ ଦ୍ୱାରା ମନୋନୀତ ହୋଇଥିଲି । ମୋର କର୍ତ୍ତବ୍ୟ ହେଲା ଯେଉଁ ଓଡିଆ ଛାତ୍ର ମାନେ ଇଂରାଜୀ ପ୍ରଶ୍ନ ବୁଝି ପାରିବେ ନାହିଁ ତାହାର ଓଡିଆ ଅନୁବାଦ କରି ସେମାନଙ୍କୁ କହିବାକୁ ପଡିବ ।

ସେମାନେ ଓଡିଆରେ ଯେଉଁ ଉତ୍ତର ଦେବେ ତାହାର ଇଂରାଜୀ ଅନୁବାଦ କରି ସଭ୍ୟମାନଙ୍କୁ କହିବା । ଏହା ବ୍ୟତିତ ସବୁ ପିଲାମାନଙ୍କୁ ଇଚ୍ଛା ମୁତାବକ ପ୍ରଶ୍ନ ପଚାରି ପାରିବି । ପ୍ରଥମ ଥର ସାକ୍ଷାତକାର ପରୀକ୍ଷା କଲିକତା ବିଶ୍ୱବିଦ୍ୟାଳୟର ରସାୟନ ବିଭାଗରେ ହୋଇଥିଲା । ସେଥିରେ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ନାତି ସାକ୍ଷାତକାର ପାଇଁ ଆସିଥିଲା । ସଭ୍ୟମାନଙ୍କ ଭିତରୁ ଜଣେ କିଏ ପଚାରିଲେ ? ଜଣେ ଭାରତର ବିଶିଷ୍ଟ ବୈଜ୍ଞାନିକଙ୍କର ନାମ କୁହ । ସେ କହି ପାରିଲା ନାହିଁ । ତାକୁ ପୁଣି ପଚରା ଗଲା ଓଡିଶାର ଜଣେ ବିଶିଷ୍ଟ ବୈଜ୍ଞାନିକଙ୍କ ନାମ କୁହ । ସେ କହି ପାରିଲା ନାହିଁ । ତାପରେ ତାକୁ ପଚାରିଲେ ତମେ ପ୍ରାଣକୃଷ୍ଣ ପରିଜାଙ୍କୁ ଜାଣିଛ । ତା ପାଟିରୁ ହଠାତ ବାହାରି ପଡିଲା "ନାହିଁ" । ସଙ୍ଗେ ସଙ୍ଗେ କହିଲା ସେ ମୋ ଜେଜେବାପା । ତାକୁ ପୁଣି ପଚାରିଲେ ସେ କଣ ଜଣେ ବୈଜ୍ଞାନିକ ନୁହନ୍ତି ? "ମୁଁ ଜାଣେ ନାହିଁ ।"

ଦ୍ୱିତୀୟ ଥର ସାକ୍ଷାତକାର ପରୀକ୍ଷା ଯାଦବପୁର ବିଶ୍ୱବିଦ୍ୟାଳୟରେ ହୋଇଥିଲା । ସେହି ସାକ୍ଷାତକାର ପରୀକ୍ଷାରେ ଆମ ଗ୍ରାମର ଉତ୍କଳ ବିଶ୍ୱବିଦ୍ୟାଳୟର ଗଣିତ ବିଭାଗର ପ୍ରଫେସର ଡକ୍ଟର ଶଙ୍କର ପ୍ରସାଦ ମିଶ୍ର ବି ଜଣେ ସଭ୍ୟ ଥିଲେ । ମୁଁ ତାଙ୍କୁ ପଚାରିଲି ତୁମେ କେଉଁଠି ରହୁଛ ? ସେ କହିଲେ ମହାରାଷ୍ଟ୍ର ଅତିଥି ଭବନରେ ରହୁଛି । ମୋତେ ପଚାରିଲେ ତୁମେ କେଉଁଠି ରହୁଛ ? ମୁଁ କହିଲି ଉତ୍କଳ ଭବନରେ । ସେ ପଚାରିଲେ ସେଠାରେ ଆଉ ଜାଗା ଅଛି ? ମୁଁ କହି ପାରିବି ନାହିଁ । ସେଦିନ ସାକ୍ଷାତକାର ସରିବା ପରେ ଆମେ ଦୁହେଁ ମହାରାଷ୍ଟ୍ର ଅତିଥି ଭବନକୁ ଗଲୁ ଏବଂ ସେ ତାଙ୍କ ଜିନିଷ ପତ୍ର ଧରି ମୋ ସାଙ୍ଗେ ଉତ୍କଳ ଭବନକୁ ଆସିଲେ । ମୁଁ ଗବେଷଣା କରିବା ପାଇଁ କଲିକତା ଆସିବା ବେଳେ ପ୍ରାୟ ଉତ୍କଳ ଭବନରେ ରହୁଥିଲି । ଉତ୍କଳ ଭବନର ଜଣେ ଦୁଇ ଜଣ କର୍ମକର୍ତ୍ତାଙ୍କୁ ଚିହ୍ନିଥିଲି । ତାଙ୍କୁ ପଚାରିବାରୁ ସେ କହିଲେ ଯଦି ଆପଣଙ୍କ କୋଠରୀରେ ରହିଯାଇ ପାରିବେ ଆମର କିଛି ଆପତ୍ତି ନାହିଁ । ଶଙ୍କର ବାବୁ କହିଲେ ମୁଁ ଏଇଠି ରହିଯିବି । ଆମେ ତାପର ଦିନ ପୁଣି ସାକ୍ଷାତକାର ପାଇଁ ଯାଦବପୁର ବିଶ୍ୱବିଦ୍ୟାଳୟ ଗଲୁ । ସେହିଦିନ ପୁରୀ ଏକ୍ସପ୍ରେସରେ ଓଡିଶା ପଳାଇ ଆସିଲୁ । ତାର କେତେ ବର୍ଷ ପରେ ଶଙ୍କର ପ୍ରସାଦ ମିଶ୍ର ଏକ ସ୍କୁଟର ଦୁର୍ଘଟଣାରେ ମୃତ୍ୟୁ ବରଣ କଲେ । ଗ୍ରାମରେ ତାଙ୍କ ଘରଟି ଆମ ଘର ଠାରୁ ଦୁଇଟା ଘର ଛାଡି ପଡେ । ମୋର ବ୍ରତଘର ସମୟରେ ସେ ପିତା ମାତାଙ୍କ ସହିତ ନିମାପଡା ଯାଇଥିଲେ । ମୁଁ ତାଙ୍କ ମୃତ୍ୟୁରେ ମର୍ମାହତ ହୋଇଥିଲି । ତୃତୀୟ ସାକ୍ଷାତକାରଟି ଭୁବନେଶ୍ୱରର ରିଜିଓନାଲ କଲେଜ ଅଫ ଏଜୁକେସନ୍‌ରେ ଅନୁଷ୍ଠିତ ହୋଇଥିଲା । ସେଥିରେ ଡକ୍ଟର ମେଘନାଦ ସାହାଙ୍କ ପୁତ୍ର ଡକ୍ଟର ଅଜିତ୍ ସାହା ସାକ୍ଷାତକାର ବୋର୍ଡର ସଭାପତି ହୋଇଥିଲେ । ସେହି ମୌଖିକ ସାକ୍ଷାତକାର ପରୀକ୍ଷାରେ ବହୁ ପ୍ରକାର ଜଟିଳ ପ୍ରଶ୍ନ ପଚରାଯାଏ ।

## ଉଦୟନାଥ ଆଚାର୍ଯ୍ୟଙ୍କ ସଙ୍ଗେ ସାକ୍ଷାତ୍

ମୁଁ ପୁରୀ କଲେଜରେ ଚାକିରୀ କରୁଥିବା ସମୟରେ ଥରେ ଲକ୍ଷ୍ମୀ ଟକିଜ୍ ରାସ୍ତାରେ ବଡଦାଣ୍ଡ ଆଡକୁ ଯାଉଥିଲି । ଠିକ୍ ଲକ୍ଷ୍ମୀ ଟକିଜ୍ ପୂର୍ବରୁ ଜଣେ ଲୋକ ମୋତେ ପଛରୁ ଡାକିଲେ ଏବଂ କହିଲେ, ଆପଣଙ୍କୁ ଉଦୟ ନାଥ ବାବୁ ଡାକୁଛନ୍ତି । ସେତେବେଳେ ଉଦୟନାଥ ବାବୁ କିଏ ମୁଁ ଚିହ୍ନି ପାରି ନ ଥିଲି । ସେ ଲୋକ ତା' ସାଙ୍ଗରେ ଯିବା ପାଇଁ କହିଲେ । ମୁଁ ତା' ସାଙ୍ଗେ ଯାଇ

ଗୋଟିଏ ବଡ ପାଚିରି ଥିବା ଘରେ ପହଁଞ୍ଚିଲି । ଘର ବାରଣ୍ଡାରେ ଉଦୟନାଥ ବାବୁ ଗୋଟିଏ ଚୌକିରେ ବସିଥିଲେ । ତାଙ୍କୁ ଦେଖି ମୋର ମନେ ପଡିଗଲା, ସେ ମୋର ନିମାପଡା ଅପର ପ୍ରାଇମେରୀ ସ୍କୁଲ୍‌ରେ ଧର୍ମଶିକ୍ଷା କ୍ଲାସ୍ ନେଉଥିଲେ । ସେ କହିଲେ, ତତେ ଦେଖି ମୁଁ ଡକାଇ ପଠାଇଲି । ସେ ମୋତେ ବୋଉଙ୍କ ଓ ନାନୀ ମାନଙ୍କ ବିଷୟ ପଚାରିଲେ । ମୁଁ କହିଲି ବୋଉଙ୍କର କାଳ ହୋଇ ଗଲାଣି । ମୋତେ ପଚାରିଲେ ତୁ କଣ କରୁଛୁ ? ମୁଁ ବର୍ତ୍ତମାନ ଏହି କଲେଜରେ ଫିଜିକ୍ସ ପ୍ରାଧ୍ୟାପକ ଅଛି । କେତେ ଦିନ ହେଲା ଏହି କଲେଜକୁ ଆସିଲୁଣି । ପ୍ରାୟ ଦୁଇ ବର୍ଷ ହେଲାଣି । ତାପରେ ମୋର ପିଲାପିଲି ମାନଙ୍କ କଥା, କେଉଁଠି ବିଭା ହୋଇଛୁ, ସବୁ କଥା ପଚାରିଲେ । ତାପରେ ପଚାରିଲେ ତୁ କେଉଁଠାରେ ରହୁଛୁ । ମୁଁ କହିଲି ଆପଣଙ୍କ ଘର ନିକଟରେ ରହୁଛି । ମୁଁ ପ୍ରଥମ ଛାତ୍ରାବାସର ପରିଚାଳକ ଅଛି ଏବଂ ଗୋଟିଏ ଘର ପାଇଛି । ମୋତେ ଥରେ ତୋ ଘରକୁ ଡାକି ନେଇଯିବୁ ଏବଂ ତୁ ତ ପାଖରେ ଅଛୁ ବେଳେ ବେଳେ ଏଠାକୁ ଆସୁଥିବୁ । ମୁଁ ପଚାରିଲି ଆପଣ କଣ କରୁଛନ୍ତି ? ମୁଁ ପ୍ରାଇମେରୀ ଶିକ୍ଷକ ସଙ୍ଘର କର୍ମକର୍ତ୍ତା ଅଛି । ଏମିତି କଥାବାର୍ତ୍ତା ହୋଇ ଘରକୁ ଆସିଲି ।

ଦିନେ ଆମ ଘରକୁ ସେ ଆସିଲେ । ସ୍ତ୍ରୀ ଏବଂ ପିଲାମାନଙ୍କୁ ଦେଖିଲେ । ମୋତେ କହିଲେ ମୁଁ ପ୍ରାଇମେରୀ ଶିକ୍ଷକ ମାନଙ୍କ ଠାରୁ ଚାନ୍ଦା ଆଦାୟ କରିଛି ଏବଂ ସେଥିରେ ମୁଁ ତୁମ ନନାଙ୍କ ନାମରେ ଗୋଟିଏ ପାଠାଗାର ନିର୍ମାଣ କରିବି । ତାର ନାମ ହେବ "ଅଜୀବ ସ୍ମୃତି ପାଠାଗାର ।" ତାହା ନିମାପଡା ଅପର ପ୍ରାଇମେରୀ ସ୍କୁଲ୍‌ର ରାସ୍ତାର ଆରପଟେ ତିଆରି ହେବ । ସେଥିପାଇଁ ଜାଗାର ବନ୍ଦୋବସ୍ତ କରିଦେଇଛି । ମୁଁ ଦିନେ ଶିକ୍ଷାମନ୍ତ୍ରୀଙ୍କୁ ପାଠାଗାରଟି ଶୁଭ ଦେବା ପାଇଁ ନିମାପଡା ଆଣିବି । ସେଥିପାଇଁ ତୁମକୁ ନିମନ୍ତ୍ରଣ ଦେବି । ତୁମେ ନିଶ୍ଚୟ ଆସିବ ।

ତାର କେତେ ଦିନ ପରେ ସେ ମୋତେ ନିର୍ଦ୍ଦିଷ୍ଟ ତାରିଖ ଜଣାଇ ଖବର ଦେଲେ, ଶିକ୍ଷା ମନ୍ତ୍ରୀ ଓ ଆଉ ଜଣେ ମନ୍ତ୍ରୀଙ୍କୁ ସାଙ୍ଗରେ ନେଇ ଯିବି । ତାର କେତେ ଦିନ ପରେ ନିର୍ଦ୍ଦିଷ୍ଟ ତାରିଖର ପୂର୍ବ ଦିନ ସେ ଖବର ଦେଲେ, ପୁରୀର ଏସ୍.ଡି.ଓ ଶ୍ରୀ ମଦନମୋହନ ଖଟୁଆ କାଲି ୨ଟାରୁ ୩ ଟା ଭିତରେ ତାଙ୍କ ଜିପ୍‌ରେ ତୁମକୁ ଘରୁ ନିମାପଡା ନେଇଯିବେ । ରାତି ୯ ଟା ସୁଦ୍ଧା ପୁଣି ଆଣି ଘରେ ଛାଡିଦେବେ । ତୁମେ ପ୍ରସ୍ତୁତ ହୋଇଥିବ । ସେହିଦିନ ଠିକ ୩ ଟା ସମୟରେ ଶ୍ରୀ ମଦନମୋହନ ଖଟୁଆ ଆସି ଆମ ଘରେ ପହଞ୍ଚିଲେ । ମୁଁ ତାଙ୍କୁ ଦେଖି ଚିହ୍ନି ପାରିଲି । ସେ ମୋର ସହାଧ୍ୟାୟୀ । ମୁଁ ବି.ଏସ୍‌ସି. ପଢିଲା ସମୟରେ ସେ ବି.ଏ. ପଢୁଥିଲେ । ଆମେ ନିମାପଡାରେ ପ୍ରାୟ ସାଢେ ଚାରିଟା ବେଳେ ପହଞ୍ଚିଲୁ । ମୁଁ ନିମାପଡା ଡାକ ବଙ୍ଗଳା ଠାରେ ଅପେକ୍ଷା କଲି । ପ୍ରାୟ ୫ ଟା ବେଳକୁ ଶ୍ରୀଯୁକ୍ତ ବନମାଳୀ ପଟ୍ଟନାୟକ, ଶ୍ରୀଯୁକ୍ତ ପବିତ୍ର ମୋହନ ପ୍ରଧାନ ଓ ଶ୍ରୀଯୁକ୍ତ ଉଦୟନାଥ ଆଚାର୍ଯ୍ୟ ଆସି ପହଞ୍ଚିଲେ । ଆମେ ସମସ୍ତେ ୫ ଟା ବେଳେ ସଭାସ୍ଥଳକୁ ଗଲୁ । ପ୍ରଥମେ ଉଦୟନାଥ ବାବୁ ସଭାର ଉଦ୍ଦେଶ୍ୟ ବୁଝାଇ ଦେଲେ । ଅନ୍ୟମାନେ କହି ସାରିବା ପରେ ଉଦୟନାଥ ବାବୁ ମୋତେ କିଛି କହିବା ପାଇଁ ଡାକିଲେ । ମୁଁ ସାମାନ୍ୟ କିଛି କହିଲି ଓ ଉଦୟନାଥ ବାବୁଙ୍କୁ ତାଙ୍କର ଏହି ଚେଷ୍ଟା ପାଇଁ ଧନ୍ୟବାଦ ଦେଲି । ସଭା ଶେଷକୁ କହିଲି ପାଠାଗାର ତିଆରି ସରିଲେ ବହି କିଣିବା ପାଇଁ ଏକହଜାର ଟଙ୍କା ଦାନ କରିବି । ସେହି ସଭାରେ ପ୍ରାଇମେରୀ ସ୍କୁଲର ପ୍ରଧାନ ଶିକ୍ଷକ ଶ୍ରୀ କୁଳମଣି ଦାସ ଉପସ୍ଥିତ ଥିଲେ । ସଭା ସରିଲା

ପରେ ଆଉ କେତେଜଣ ଶିକ୍ଷକ ଯେଉଁମାନେ ମୋତେ ପିଲାବେଳେ ଚିହ୍ନିଥିଲେ, ସେମାନେ ଆସି ମୋ ସାଙ୍ଗେ କଥାବାର୍ତ୍ତା କଲେ ଏବଂ ଭଲ ମନ୍ଦ ବୁଝିଥିଲେ । ତାପରେ ମୁଁ ରାତିରେ ମଦନ ବାବୁଙ୍କ ଜିପ୍‌ରେ ପୁରୀ ଚାଲି ଆସିଲି । ପ୍ରାୟ ଏକ ବର୍ଷ ପରେ ପୁରୀ ଜିଲ୍ଲା ପ୍ରାଇମେରୀ ଶିକ୍ଷକ ମାନଙ୍କର ଗୋଟିଏ ସମ୍ମିଳନୀର ଆୟୋଜନ ନିମାପଡା ହାଇସ୍କୁଲ୍‌ରେ ହୋଇଥିଲା । ମୋତେ ସେଥିରେ ଯୋଗ ଦେବା ପାଇଁ ନିମନ୍ତ୍ରଣ କରାଯାଇ ଥିଲା । ତାଙ୍କ ନିମନ୍ତ୍ରଣ ପତ୍ର ପାଇବା ପରେ ଉଦୟ ନାଥ ବାବୁ ମୋତେ କହିଲେ ତୁ ନନାଙ୍କର ଗୋଟିଏ ବଡ ଫଟୋ ସାଙ୍ଗରେ ନେଇ ଯିବୁ । ସେ ଫଟୋଟି ସେହିଠାରେ ଛାଡିଦେଇ ଆସିବୁ । ସେ ଫଟୋଟି ଅଜୀବ ସ୍ମୃତି ପାଠାଗାରରେ ରହିବ । ତାପରେ ସେ କହିଲେ ମୁଁ ବ୍ୟବସ୍ଥା କରିଦେବି । ଶିକ୍ଷା ବିଭାଗର ପୁରୀ ସର୍କଲ ଇନିସ୍ପେକ୍ଟର ତତେ ତାଙ୍କ ଗାଡିରେ ନେଇଯିବେ । ମୁଁ କହିଲି ମୋ ସାଙ୍ଗରେ ମୋ ସ୍ତ୍ରୀ, ବଡ ଝିଅ ଓ ସାନ ପୁଅ ଯିବେ । ତାଙ୍କ ଗାଡିରେ ଯଦି ଯାଇହେବ ନାହିଁ, ତାହାହେଲେ ଆମେ ବସ୍‌ରେ ଯିବୁ । ସମ୍ମିଳନୀ ଦିନ ଗାଡିରେ ଆମେ ସବୁ ଗଲୁ । ସକାଳ ୧୦.୩୦ ମିନିଟ୍‌ରେ ନିମାପଡା ହାଇସ୍କୁଲ୍‌ରେ ପହଁଞ୍ଚିଲୁ । ସେତେବେଳେ ସଭା କାର୍ଯ୍ୟ ଆରମ୍ଭ ହୋଇ ନ'ଥିଲା । ଆମେ ପହଁଞ୍ଚିଲା ପରେ ସଭାକାର୍ଯ୍ୟ ଆରମ୍ଭ ହେଲା । ଉଦୟ ନାଥ ବାବୁ ପ୍ରାଇମେରୀ ଶିକ୍ଷକ ମାନଙ୍କୁ ଉଦ୍‌ବୋଧନ ଦେଇ କହିଲେ ଅଜୀବ ପଣ୍ଡିତେ ନିମାପଡା ପ୍ରାଇମେରୀ ସ୍କୁଲ୍‌ର ହେଡ ପଣ୍ଡିତ ଥିଲେ । ମୁଁ ସେହି ସ୍କୁଲ୍‌ରେ ଦ୍ୱିତୀୟ ପଣ୍ଡିତ ଭାବେ କାମ କରୁଥିଲି । ମୁଁ ସ୍କୁଲ୍ ସାମ୍ନାରେ ରାସ୍ତା ଆର ପଟେ ଗୋଟିଏ ଅଜୀବ ସ୍ମୃତି ପାଠାଗାର ନିର୍ମାଣ ପାଇଁ ନିମାପଡା ଆଖପାଖ ଶିକ୍ଷକ ମାନଙ୍କ ଠାରୁ କିଛି ଚାନ୍ଦା ସଂଗ୍ରହ କରି ଏବଂ ସରକାରଙ୍କ ଠାରୁ ଗୋଟିଏ ପାଠାଗାର ନିର୍ମାଣ ପାଇଁ ଅନୁମତି ନେଇ ସେ ଜାଗାର ରେଜିଷ୍ଟ୍ରେସନ କରିଥିଲି । ସେ ପାଠାଗାରକୁ ପ୍ରାୟ ଏକ ବର୍ଷ ତଳେ ଶିକ୍ଷାମନ୍ତ୍ରୀ ଶ୍ରୀଯୁକ୍ତ ପବିତ୍ର ମୋହନ ପ୍ରଧାନ, ସାଂସଦ ଶ୍ରୀଯୁକ୍ତ ବନମାଳୀ ପଟ୍ଟନାୟକ ଏବଂ ତାଙ୍କ (ଅଜୀବ ମିଶ୍ର) ପୁତ୍ର ପ୍ରାଧ୍ୟାପକ ଡକ୍ଟର ପତିତପାବନ ମିଶ୍ରଙ୍କ ଉପସ୍ଥିତିରେ ଶିକ୍ଷାମନ୍ତ୍ରୀ ସେହି ପାଠାଗାରର ଶୁଭ ଦେଇଥିଲେ । ଆପଣ ମାନଙ୍କ ମଧ୍ୟରୁ କେତେକ ଅଜୀବ ପଣ୍ଡିତଙ୍କୁ ଦେଖି ନ'ଥିବେ । ତେଣୁ ତାଙ୍କ ପୁତ୍ରଙ୍କୁ କହି ଅଜୀବ ପଣ୍ଡିତଙ୍କର ଗୋଟିଏ ତୈଳ ଚିତ୍ର ଆଣି ସଭା ମଞ୍ଚରେ ରଖିଛି । ତାଙ୍କ ପୁତ୍ର ପାଠାଗାରରେ ଫଟୋଟି ରଖିବା ପାଇଁ ସ୍ୱୀକୃତି ପ୍ରଦାନ କରିଛନ୍ତି । ତାପରେ ସମ୍ମିଳନୀରେ ମୋତେ କିଛି କହିବାକୁ ସଭାପତି ଅନୁରୋଧ କଲେ । ତେଣୁ ମୁଁ ପେଣ୍ଡାଲ ଉପରକୁ ଯାଇ ପ୍ରାଇମେରୀ ଶିକ୍ଷା ବିଷୟରେ କିଛି କହିଲି । ସେଠାରେ ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା ହୋଇଥିଲା । ତାପରେ ଆମେ ଅଜୀବ ସ୍ମୃତି ପାଠାଗାର ଦେଖିବାକୁ ଗଲୁ । ଦେଖିଲୁ ଘରର ମୂଳଦୁଆ ପଡି ଏକ ଫୁଟ ଖଣ୍ଡେ କାନ୍ଥ ଉଠିଯାଇଛି । ଇନିସ୍ପେକ୍ଟର ଫେରି ଆସିବାକୁ ତର ତର ହେଉଥିବାରୁ ଆମେ ତାଙ୍କ ଗାଡିରେ ବସି ପୁରୀ ଚାଲି ଆସିଲୁ ।

ତାର କେତେ ଦିନ ପରେ ନିମାପଡା କଲେଜରେ ପ୍ରାକ୍ଟିକାଲ ପରୀକ୍ଷା କରିବା ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟ ମୋତେ ଆଦେଶ ଦେଲେ । ତେଣୁ ମୋ ସ୍ତ୍ରୀ ଓ ପିଲାମାନେ ବାହାରିଲେ ଏବଂ କୋଣାର୍କ ଠାରେ ଦୁଇ ଦିନ ରହିବାକୁ ଠିକ୍ କଲେ । ତେଣୁ ନିମାପଡା କଲେଜର ପରୀକ୍ଷକଙ୍କ ପାଖକୁ ଚିଠି ଲେଖି ଅଧ୍ୟକ୍ଷଙ୍କୁ କହି କୋଣାର୍କ ସରକାରୀ ଅତିଥି ଭବନରେ ଗୋଟିଏ କୋଠରୀ ମୋ ନାମରେ ସଂରକ୍ଷିତ କରିବା ପାଇଁ ଅନୁରୋଧ କରିଲି । ସେ ସଂରକ୍ଷଣ

କରି ମୋତେ ଜଣାଇ ଦେଲେ । ପରୀକ୍ଷା ପୂର୍ବ ଦିନ ଆମେ ପୁରୀରୁ ବାହାରି ସଂଧ୍ୟା ବେଳେ ନିମାପଡାରେ ପହଁଞ୍ଚିଲୁ ଏବଂ ଯାଇ ଅତିଥି ଭବନରେ ରହିଲୁ । ସକାଳୁ ପରୀକ୍ଷା ସମୟକୁ ଶ୍ରୀ ଦେବରାଜ ଆଚାର୍ଯ୍ୟ ନାମକ ଜଣେ ବ୍ୟକ୍ତି ମୋତେ କଲେଜକୁ ନେବାକୁ ଆସିଲେ । ସେ ହେଉଛନ୍ତି ନିମାପଡା ପ୍ରାଇମେରୀ ସ୍କୁଲ୍‌ର ମୋର ସହପାଠୀ ଓ କଲେଜର ମୁଖ୍ୟ କିରାଣୀ । ସେ ସାଙ୍ଗରେ ପିଲାମାନଙ୍କ ପାଇଁ କିଛି ଛେନା ଝିଲ୍ଲୀ ଆଣିଥିଲେ । ସେ ମୋ ପିଲାମାନଙ୍କର ଖାଇବାର ବ୍ୟବସ୍ଥା କରିଦେଲେ । ମୁଁ ପରୀକ୍ଷା ସାରି ଆସିଲା ବେଳକୁ ୩/୪ ଜଣ ବୟସ୍କ ଲୋକ ମୋର ସ୍ତ୍ରୀ ସଙ୍ଗେ କଥାବାର୍ତ୍ତା ହେଉଛନ୍ତି । ସେମାନେ ସବୁ ନିମାପଡା ଅଞ୍ଚଳର ଲୋକ । ସେମାନେ ସବୁ ମୋତେ ଦେଖିବାକୁ ଆସିଛନ୍ତି ବୋଲି ମୋ ସ୍ତ୍ରୀ କହିଲେ । ସେମାନେ ସବୁ ମୋ ନନାଙ୍କର ଭଲ ଔଷଧ ଦେବା କଥା ମୋ ସ୍ତ୍ରୀକୁ କହୁଥିଲେ । କିଛି ସମୟ ମୋ ସଙ୍ଗେ କଥାବାର୍ତ୍ତା ହୋଇ ଚାଲିଗଲେ । ମୁଁ ପିଲାଙ୍କୁ ନିମାପଡାର ପତିତପାବନ ଦେଉଳ, ଉଚ୍ଚ ଇଂରାଜୀ ବିଦ୍ୟାଳୟ, ହାଟ, ନନାଙ୍କ ସ୍କୁଲ୍, ଆମ ଘର ( ଘରଟିକୁ ବିକ୍ରୀ କରିଦେଇଛି ), ନନାଙ୍କର ଔଷଧ ଘର ପ୍ରଭୃତି ଜାଗା ବୁଲାଇ ଦେଖାଇଲି । ସେହି ସମୟରେ ଅଜୀବ ସ୍ମୃତି ପାଠାଗାରର କାନ୍ଥ ଗଢା ହୋଇ ଲିନ୍‌ଟେଲ ଯାଏ ଉଠିଯାଇ ଥିଲା । ଆମେ ଅତିଥି ଭବନକୁ ଫେରି ଆସିଲୁ । ସେଦିନ ରାତିରେ ଅତିଥି ଭବନରେ ରହିଲୁ ।

ସକାଳୁ ନିତ୍ୟକର୍ମ ସାରି କୋଣାର୍କ ଯିବା ପାଇଁ ନିମାପଡା ବସ୍ ଷ୍ଟାଣ୍ଡକୁ ଗଲୁ । ବସ୍‌ରେ କୋଣାର୍କ ଯାଇ ପ୍ରାୟ ୧୧ ଟା ବେଳେ ପହଁଞ୍ଚିଲୁ । ତାପରେ କୋଣାର୍କ ଅତିଥି ଭବନର ସଂରକ୍ଷିତ କୋଠରୀରେ ଜିନିଷ ପତ୍ର ରଖିଦେଇ କୋଣାର୍କ ମନ୍ଦିରକୁ ଗଲୁ । ସେଠାରେ ଥିବା ଭୋଜନାଳୟରେ ଖାଇ ଆମେ ରାତିରେ ଅତିଥି ଭବନରେ ରହିଲୁ । ଆମେ ଶୋଇଲା ବେଳକୁ ଆମ ପାଖ କୋଠରୀରେ ବହୁତ ପାଟିତୁଣ୍ଡ ହେଲା । ପିଲାମାନେ ଏବଂ ମୋ ସ୍ତ୍ରୀ ଡରିଗଲେ, ତେଣୁ ଲାଇଟ୍ ଲିଭାଇ ଶୋଇ ପଡିଲୁ । ସକାଳୁ ଚନ୍ଦ୍ରଭାଗା ଯିବାପାଇଁ ବାହାରକୁ ଆସିଲା ବେଳେ ମୁଁ ଦେଖିଲି ପୁରୀର ଶ୍ରୀଯୁକ୍ତ ଗଙ୍ଗାଧର ମହାପାତ୍ର ବାରଣ୍ଡାରେ ଠିଆ ହୋଇଛନ୍ତି । ମୁଁ ତାଙ୍କୁ ଭଲ ଭାବରେ ଚିହ୍ନିଥାଏ । ସେ ମଧ୍ୟ ମୋତେ ଚିହ୍ନି ଥାଆନ୍ତି । କାରଣ ମୋ ଶଳା ଗଙ୍ଗାଧର ମାହପାତ୍ରଙ୍କ ପାଖରେ ଓକିଲାତି ଶିଖୁଥିଲେ । ସେ ମୋ ସ୍ତ୍ରୀଙ୍କୁ ପଚାରିଲେ ତୁମେ କୁଆଡେ ଆସିଥିଲ । ମୁଁ କହିଲି ନିମାପଡାରେ ପରୀକ୍ଷା ଥିଲା । ଆମେ ସମସ୍ତେ ଆସିଥିଲୁ ଏବଂ ଏବେ ଆମେ ସୂର୍ଯ୍ୟୋଦୟ ଦେଖିବାକୁ ଯିବୁ । ସେ ସଙ୍ଗେ ସଙ୍ଗେ ତାଙ୍କ ଡ୍ରାଇଭରକୁ ଡାକି କହିଲେ ପିଲାମାନଙ୍କୁ ଚନ୍ଦ୍ରଭାଗାର ସୂର୍ଯ୍ୟୋଦୟ ଦେଖାଇ ନେଇ ଆସ । ତେଣୁ ଆମର ବହୁତ ସୁବିଧା ହେଲା । ତାପରେ ଆମେ କୋଣାର୍କରେ ବୁଲାବୁଲି କରି ଭୋଜନାଳୟରେ ଖାଇ ଅତିଥି ଭବନରେ ବିଶ୍ରାମ ନେଲୁ । ବସ୍ ଛାଡିବା ସମୟ ହେବାରୁ ବସ ଷ୍ଟାଣ୍ଡରେ ପହଁଞ୍ଚି ପୁରୀ ବସ୍‌ରେ ବସିଲୁ । ପୁରୀରେ ପ୍ରାୟ ସଂଧ୍ୟା ବେଳକୁ ପହଁଞ୍ଚିଲୁ ।

## ସ୍ତ୍ରୀ ଓ ପିଲାମାନଙ୍କୁ ସାଙ୍ଗରେ ନେଇ ନନ୍ଦନ କାନନକୁ ବଣଭୋଜି

ପ୍ରଥମ ଛାତ୍ରାବାସର ପରିଚାଳକ ଥିବା ସମୟରେ ମୋତେ ପ୍ରତିବର୍ଷ ଅନ୍ତେବାସୀଙ୍କ ସହିତ ବଣଭୋଜି ପାଇଁ ବିଭିନ୍ନ ସ୍ଥାନକୁ ଯିବାକୁ ପଡୁଥିଲା । କେତୋଟି ସ୍ମରଣୀୟ ବଣଭୋଜିର ଅନୁଭୂତି ବିଷୟରେ ବର୍ଣ୍ଣନା କଲେ ପାଠକ ମାନଙ୍କୁ ଭଲ ଲାଗିବ । ତାହାର ସମୟ ମୋର

ମନେନାହିଁ । ମୁଁ ଥରେ ଅନ୍ତେବାସୀମାନଙ୍କ ଅନୁରୋଧ ରକ୍ଷାକରି ସ୍ତ୍ରୀ ଓ ପିଲାମାନଙ୍କୁ ସାଙ୍ଗରେ ଧରି ନନ୍ଦନ କାନନକୁ ବଣଭୋଜି କରିବାକୁ ଯାଇଥିଲୁ । ସେ ସମୟରେ ପିଲାମାନେ ତାଙ୍କ ମନଇଚ୍ଛା ନନ୍ଦନ କାନନ ଭିତରେ ବୁଲା ବୁଲି କରୁଥିଲେ । ସ୍ତ୍ରୀ ଓ ପିଲାମାନଙ୍କ ସହିତ ନନ୍ଦନ କାନନରେ ଥିବା ହ୍ରଦରେ ବୋଟ୍‌ରେ ବୁଲୁଥିଲୁ । ବୋଟ୍‌ରୁ ଓହ୍ଲାଇବା ପରେ ମୋତେ କେତେ ଜଣ ପିଲା କହିଲେ, ଅନ୍ୟ ପିଲାମାନଙ୍କର ଓ ନନ୍ଦନ କାନନର କର୍ମଚାରୀ ମାନଙ୍କର ବଚସା ହୋଇ ସେମାନେ ପିଲାମାନଙ୍କୁ ବାଡେଇବାକୁ ଆସିଛନ୍ତି । ପିଲାମାନେ ମଧ୍ୟ ମାଡ ଫୌଜଦାରୀ କରିବାକୁ ପ୍ରସ୍ତୁତ ହୋଇଗଲେଣି । ଉଭୟ ପକ୍ଷକୁ ବୁଝାସୁଝା କରି ଯାଇ ନନ୍ଦନ କାନନ ଅଫିସରଙ୍କୁ ସବୁକଥା  କହିଲି । ଅଫିସର୍ ନନ୍ଦନ କାନନର କର୍ମଚାରୀମାନଙ୍କୁ ବୁଝାସୁଝା କରି ଅଟକାଇ ଥିଲେ । କେତେ ଜଣ ପିଲାଙ୍କୁ ନିଭୃତରେ କହିଲି ଯେ, ତୁମେ ପୋଲିସ୍ ଫାଣ୍ଡିରେ ଯାଇ ପ୍ରାଥମିକ ରିପୋର୍ଟ  କରିଦିଅ । ଦୁଇ ତିନି ଜଣ ପିଲା ପୋଲିସ୍ ଫାଣ୍ଡିରେ ଯାଇ ନନ୍ଦନ କାନନ କର୍ମଚାରୀଙ୍କ ବିପକ୍ଷରେ ପ୍ରାଥମିକ ରିପୋର୍ଟ (F.I.R) ଦେଲେ ଯେ ନନ୍ଦନ କାନନର କର୍ମଚାରୀମାନେ ଆମମାନଙ୍କୁ ଫେରିଯିବାକୁ ଛାଡୁ ନାହାନ୍ତି । ପୋଲିସ୍ ଘଣ୍ଟେ ଦୁଇ ଘଣ୍ଟା ପରେ ଆସିଲେ । ପୋଲିସ୍ ଉପସ୍ଥିତିରେ ଆମମାନଙ୍କୁ ବସ୍‌ରେ ବସାଇ ଦେଇ ଛାଡିଦେଲେ । ନନ୍ଦନ କାନନ କର୍ମଚାରୀମାନଙ୍କୁ କଣ କହିଥିଲେ ଆମକୁ ଜଣା ନ'ଥିଲା । ଆମେ ରାତି ୧୧ଟା ଠାରୁ ୧୨ଟାରେ ପୁରୀରେ ପହଞ୍ଚିଲୁ । ସେହି ବିଷୟରେ ତାପର ଦିନ ଅଧ୍ୟକ୍ଷଙ୍କୁ ଗୋଟିଏ ରିପୋର୍ଟ ଦେଇଦେଲି । ତାପରେ ଏହି ନନ୍ଦନ କାନନ ବିଷୟରେ କିଛି ହୋଇନାହିଁ ।

## ବାଲିହରଚଣ୍ଡି ଠାରେ ବଣଭୋଜି

ସେହିପରି ଆଉ ବର୍ଷେ ପିଲାମାନଙ୍କର ଅନୁରୋଧରେ ବାଲିହରଚଣ୍ଡି ଠାରେ ବଣଭୋଜି କରିବାକୁ ଯାଇଥିଲୁ । ପରେ ଆଲୋଚନା କରି ଜାଣିବାକୁ ପାଇଲୁ ବ୍ରହ୍ମଗିରି ଠାରୁ ବାଲିହରଚଣ୍ଡି ପର୍ଯ୍ୟନ୍ତ କଚ୍ଚାରାସ୍ତା ଅଛି ଏବଂ ଏହି କଚ୍ଚା ରାସ୍ତାରେ ବସ୍ ଯାଇ ପାରିବନାହିଁ । ତେଣୁ ମୁଁ ପିଲାମାନଙ୍କୁ ସ୍ଥାନ ପରିବର୍ତ୍ତନ କରିବାକୁ କହିଲି । କିନ୍ତୁ ପିଲାମାନେ କହିଲେ ଦୁଇ କିଲୋମିଟର ବାଟ ଆମେ ଚାଲିକରି ଚାଲିଯିବୁ । ତାପରେ ମୁଁ କହିଲି ମୁଁ ମଧ୍ୟ ତୁମ ମାନଙ୍କ ସାଙ୍ଗରେ ଚାଲିକରି ଯିବି । କିନ୍ତୁ ପିଲାମାନେ ରାଜି ହେଲେ ନାହିଁ । କହିଲେ ଗୋଟିଏ ଟ୍ୟାକ୍ସିର ବନ୍ଦୋବସ୍ତ କରିଦେବା । ସେହି ଟ୍ୟାକ୍ସିରେ ଆପଣ ଏବଂ ଡିକିରେ ଯେତିକି ଅତି ଦରକାରୀ ଜିନିଷ ରଖିଦେବା ଓ ଯଦି ସବୁ ଜିନିଷ ନେବା ସମ୍ଭବ ନୁହେଁ, ତେବେ ଟ୍ୟାକ୍ସି ପୁନର୍ବାର ଆସି ବ୍ରହ୍ମଗିରି ଠାରୁ ସମସ୍ତ ଜିନିଷ ନେଇଯିବ । ଛାତ୍ରାବାସ ନିକଟରେ ରହୁଥିବା ଆଉ ଜଣେ ପ୍ରାଧ୍ୟାପକ ମେଜର ଧିରେନ୍ଦ୍ର କୁମାର ନନ୍ଦଙ୍କୁ ଯିବାପାଇଁ ପିଲାମାନେ ଅନୁରୋଧ କଲେ । ସେ ମଧ୍ୟ ଯିବାପାଇଁ ରାଜି ହୋଇଗଲେ । ତେଣୁ ନିର୍ଦ୍ଦିଷ୍ଟ ଦିନ ମୁଁ ଓ ମେଜର ନନ୍ଦ ଟ୍ୟାକ୍ସିରେ ବସିକରି ଯାଇଥିଲୁ । ବ୍ରହ୍ମଗିରି ଠାରେ ପହଞ୍ଚି ଆମେ ସ୍ଥିରକଲୁ ଫେରିଲା ବେଳେ ଅଲାରନାଥଙ୍କୁ ଦର୍ଶନ କରି ପୁରୀ ଫେରିଯିବା । ପିଲାମାନେ ସବୁ ବ୍ରହ୍ମଗିରି ଠାରୁ ଚାଲି କରି ବାଲି-ହରଚଣ୍ଡିଙ୍କ ଦେଉଳ ପାଖରେ ପହଞ୍ଚିଥିଲେ । ଆମେ ଦୁଇଜଣ ଟ୍ୟାକ୍ସିରେ ଜିନିଷପତ୍ର ଧରି ଗଲୁ । ପୁଣି ଟ୍ୟାକ୍ସି ଫେରି ଅନ୍ୟ କେତେ ଜିନିଷ ନେଇ ବାଲିହରଚଣ୍ଡିଙ୍କ ପାଖରେ ପହଞ୍ଚି ଥିଲା । ହରଚଣ୍ଡିଙ୍କୁ ପ୍ରଥମେ ଦର୍ଶନ

କରି ପିଲାମାନେ ସମୁଦ୍ର କୂଳକୁ ବୁଲିବାକୁ ଯାଇଥିଲେ । ମୁଁ ଓ ମେଜର ନନ୍ଦ ବାଲିହରଚଣ୍ଡିଙ୍କ ଠାରୁ ସମୁଦ୍ର କୂଳ ଆଡକୁ କିଛି ବାଟ ଯାଇଥିଲୁ ଓ ତାପରେ ଫେରି ଆସିଲୁ । ସେତେବେଳକୁ ଦୁଇଟା କିମ୍ବା ତିନିଟା ହୋଇଯାଇ ଥାଏ । ରନ୍ଧା ରନ୍ଧି ସରିଲା ପରେ ଭୋଗ କରାଯାଇ ପିଲାମାନେ ଖାଇଦେଇ ଗୋଟିଏ ଗୋଟିଏ କରି ବ୍ରହ୍ମଗିରି ପର୍ଯ୍ୟନ୍ତ ଚାଲି ଚାଲି ଗଲେ । ବସା ଉଠା କରିବା ପାଇଁ ଛାତ୍ରାବାସର ଗୋଟିଏ ବଡ ଦରି ସାଙ୍ଗରେ ନେଇଥିଲେ । ସଂଧ୍ୟା ହେବା ପରେ ଆମେ ମେଜର ନନ୍ଦ ଓ ମୁଁ ସେଠାରୁ ବାହାରିଲୁ । କିନ୍ତୁ ଭୁଲ ବଶତଃ ବଡ ଦରିଟି ସେଠାରୁ ପିଲାମାନେ ଆଣିବାକୁ ଭୁଲିଯାଇ ଥିଲେ । ତେଣୁ ହରଚଣ୍ଡିଙ୍କ ଠାରୁ କିଛି ବାଟ ଗଲା ପରେ ମନେ ପଡିଲା, ଯେ, ସେହି ଦରିଟି ଛାଡି ଆସିଛୁ । ତେଣୁ ଟ୍ୟାକ୍ସିରେ ଆମ ସାଥିରେ ଆସୁଥିବା ପିଲାମାନେ ଦରିଟିକୁ ଆଣିବା ପାଇଁ ପୁଣି ବାଲିହରଚଣ୍ଡି ଗଲେ । ଦରିଟି ନେଇ ଆସୁଥିବା ବେଳେ ହଠାତ୍ ବର୍ଷା ହେଲା । ଟ୍ୟାକ୍ସି ସେହି କଚ୍ଚା ରାସ୍ତାରେ ଆଗକୁ ଆସି ପାରିଲା ନାହିଁ କିମ୍ବା ପଛକୁ ଯାଇ ପାରିଲା ନାହିଁ । ମେଜର ନନ୍ଦ ଓ ମୁଁ ଗାଡିରେ ସେଠାରେ ରହିଗଲୁ । ଏହା ଭିତରେ ଦୁଇ ତିନି ଘଣ୍ଟା ବିତି ଯାଇଥିଲା । ବର୍ଷା ଛାଡିଲା ପରେ ଟ୍ୟାକ୍ସି ଆସି ବ୍ରହ୍ମଗିରିରେ ପହଁଞ୍ଚିଲା । ଏହିପରି ଭାବରେ ଆମେ ବ୍ରହ୍ମଗିରିରେ ପହଁଞ୍ଚିଲା ବେଳକୁ ପ୍ରାୟରାତି ୧୦ ହୋଇଥିଲା ଓ ବସ୍ ଅପେକ୍ଷା କରି କରି ଚାଲି ଯାଇଥିଲା । ବ୍ରହ୍ମଗିରି ସ୍କୁଲ୍‌ର ପ୍ରଧାନ ଶିକ୍ଷକ ଏବଂ ଅନ୍ୟ ଶିକ୍ଷକ ମାନେ ଆମକୁ ରାତିରେ ଫେରିବାକୁ ମନା କଲେ । ଆମେ ବାଧ୍ୟ ହୋଇ ରହିଗଲୁ । କିନ୍ତୁ ଅଲାରନାଥ ମନ୍ଦିରରେ ଅଲାରନାଥଙ୍କୁ ଦର୍ଶନ କରି ପାରିଲୁ ନାହିଁ । ଅଲାରନାଥ ମନ୍ଦିରର ବିଶେଷତ୍ୱ ରହିଲା ପୁରୀର ଜଗନ୍ନାଥ, ବଳଭଦ୍ର ଓ ମା ସୁଭଦ୍ରା ଦେବସ୍ନାନ ପୂର୍ଣ୍ଣମୀ ଦିନ ସ୍ନାନ କରିବା ପରେ ସେମାନଙ୍କୁ ଜ୍ୱର ହୁଏ । ସେମାନେ ଅନବସର ଘରେ ରହିଥାନ୍ତି । କୌଣସି ଦୂର ଦୂରାନ୍ତରୁ ଆସିଥିବା ଯାତ୍ରୀମାନେ ତାଙ୍କର ଦର୍ଶନ ପାଆନ୍ତି ନାହିଁ । ତେଣୁ ଗୋଟିଏ ପ୍ରବାଦ ଅଛି, ଜଗନ୍ନାଥ, ବଳଭଦ୍ର ଓ ମା ସୁଭଦ୍ରା ଅନବସର ଘରେ ଥିବା ବେଳେ ଯାତ୍ରୀମାନେ ବ୍ରହ୍ମଗିରି ଯାଇ ଅଲାରନାଥଙ୍କୁ ଦର୍ଶନ କଲେ ଜଗନ୍ନାଥ ଦର୍ଶନର ସୁଫଳ ମିଳିଥାଏ । ତାପର ଦିନ ଆମେ ସକାଳ ଆଠଟା କି ନଅଟାରେ ପୁରୀରେ ପହଁଞ୍ଚିଲୁ । ଘରେ ସମସ୍ତେ ବ୍ୟସ୍ତ ଥିଲେ । କାରଣ ଛାତ୍ରାବାସର ଛାତ୍ରମାନେ ଯାଇଥିବା ବସ୍‌ଟି ରାତିରେ ଫେରି ଆସିଥିଲା ।

## ରାତ୍ରିକାଳରେ କୋଣାର୍କ ଠାରେ ବଣଭୋଜି

ପୁଣି ଆଉ ଗୋଟିଏ ବଣଭୋଜିର ଅନୁଭୂତି ବର୍ଣ୍ଣନା କରୁଛି । ମୁଁ ପୁରୀରୁ ବଦଳି ହୋଇ ଆସିବାର ଦୁଇ ତିନି ମାସ ପୂର୍ବରୁ ଅନ୍ତେବାସୀ ମାନେ ମୋତେ ଅନୁରୋଧ କଲେ ଯେ ଚଳିତ ବର୍ଷ ଆମର ବଣଭୋଜି ହୋଇ ପାରିନାହିଁ, ଛାତ୍ରାବାସ ପାଣ୍ଠିରୁ ଯେଉଁ ଟଙ୍କା ବଣଭୋଜି ପାଇଁ ମିଳେ ତାହା ଏପର୍ଯ୍ୟନ୍ତ ଖର୍ଚ୍ଚ ହୋଇନାହିଁ । ତେଣୁ ବରାଦ କରନ୍ତୁ ଆମେ ସେହି ଟଙ୍କାରେ ବଣଭୋଜି କରିବାକୁ ଯିବୁ । ମୁଁ କହିଲି "ଖରାଦିନେ କେଉଁଠାକୁ ବଣଭୋଜି କରିବାକୁ ଯାଇହେବ ନାହିଁ । ତୁମେ ରାତିରେ ବଣଭୋଜି କରିବାକୁ କୋଣାର୍କ ଯାଅ । କୋଣାର୍କରେ ରାତିରେ ଗରମ ଦିନେ ଭଲ ପବନ ବହେ, ଭଲ ଲାଗିବ" । ସେଥିରେ ସମସ୍ତେ ରାଜି ହୋଇଗଲେ । ସେଥିପାଇଁ କୋଣାର୍କ ଯିବା ଠିକ୍ ହୋଇଗଲା । ପ୍ରାୟ ଦିନ ତିନିଟାରେ ଆମେ ସମସ୍ତେ କୋଣାର୍କ ଅଭିମୁଖେ ଯାତ୍ରା କଲୁ । ରାତିରେ ବଣଭୋଜିରେ ରନ୍ଧା ରନ୍ଧି କରି ଖାଇବା

ପରେ ଝାଉଁ ଗଛ ତଳେ ଦରି ପକାଇ ବିଶ୍ରାମ ନେଲୁ । ତାପର ଦିନ ଚନ୍ଦ୍ରଭାଗାରେ ସୂର୍ଯ୍ୟୋଦୟ ଦେଖି ପୁରୀ ଫେରି ଆସିଲୁ ।

ଏହି ବଣଭୋଜି ବ୍ୟତୀତ ପ୍ରତିବର୍ଷ ଛାତ୍ରାବାସ ତରଫରୁ ଓଡିଶାର ଭିନ୍ନ ଭିନ୍ନ ସ୍ଥାନକୁ ବଣଭୋଜିର ଆୟୋଜନ କରାଯାଏ । ଏହି ବଣଭୋଜି ଗୁଡିକ ସବୁବେଳେ ଏକାପ୍ରକାର ଗତାନୁଗତିକ ପନ୍ଥାରେ ପାଳନ କରାଯାଏ । ତେଣୁ ସେହି ସବୁ ବଣଭୋଜି ଗୁଡିକର ପ୍ରାୟ ଏକ ପ୍ରକାର । ତେଣୁ ସବୁ ବଣଭୋଜି ଗୁଡିକର ପୁଙ୍ଖାନୁପୁଙ୍ଖ ଭ୍ରମଣର ସବିଶେଷ ବିବରଣୀ ଦିଆଯାଇ ନାହିଁ ।

## ସ୍ତ୍ରୀ ଏବଂ ପିଲାମାନଙ୍କର ସାଂସ୍କୃତିକ କାର୍ଯ୍ୟକ୍ରମ

ମୁଁ ମନେ କରୁଛି ପୁରୀର ରହଣି କାଳରେ ମୋ ସ୍ତ୍ରୀ ଏବଂ ପିଲାମାନଙ୍କର ସାଂସ୍କୃତିକ କାର୍ଯ୍ୟକ୍ରମ ବିଷୟରେ କିଛି ନ'ଲେଖିଲେ ମୋର ଏହି ଲେଖାଟି ଅସଂପୂର୍ଣ୍ଣ ରହିଯିବ । ପୁରୀରେ ରହିବାର ପ୍ରାୟ ଏକ ବର୍ଷ ପରେ ମୋ ସ୍ତ୍ରୀର ଦ୍ୱିତୀୟ ରୋମାଞ୍ଚକର ବୈଜ୍ଞାନିକ ଉପନ୍ୟାସ 'ଅଦ୍‌ଭୁତ ସେ ଅପରାଧୀ' ପ୍ରକାଶ ପାଇଲା । ବହିଟିକୁ ଦଣ୍ଡତାପଡା ସାହିର ଶ୍ରୀ ଗୋପାଳ ପ୍ରେସ୍ ଛପାଇ ଥିଲେ । ସେ ବହିର ସାମ୍ନାପଟ ଚିତ୍ରଟି ଶ୍ରୀଯୁକ୍ତ ଅସିତ୍ ମୁଖାର୍ଜୀ ଆଙ୍କିଥିଲେ । ବହିର ବିଷୟ ବସ୍ତୁ ହେଲା ଡକ୍ଟର ମିଶ୍ର ନାମକ ଜଣେ ବୈଜ୍ଞାନିକ ଗୋଟିଏ ରଶ୍ମି ଉଦ୍ଭାବନ କରିଥିଲେ । ସେ ରଶ୍ମି ଯେଉଁ ଜୀବନ୍ତ ଜୀବ ଉପରେ ପଡିବ ସେ କିଛି ସମୟ ପାଇଁ ଅଚେତ ହୋଇଯିବ ଏବଂ ନିର୍ଦ୍ଦିଷ୍ଟ ସମୟ ପରେ ପୁଣି ଜୀବନ୍ତ ହୋଇ ଉଠିବ । କିନ୍ତୁ ତାର କିଛି କ୍ଷତି ହେବ ନାହିଁ । ସେହି ରଶ୍ମି ସାହାଯ୍ୟରେ ବୈଜ୍ଞାନିକ ଦେଶରେ ଯେତେ ପ୍ରକାର ସବୁ ଦୁର୍ନୀତି ହେଉଛି, ତାର ମୂଳୋତ୍ପାଟନ କରିବା ପାଇଁ ଚେଷ୍ଟା କରିଥିଲେ । ସେ ତାହାର ନାମ "ଡେଲ୍ଟା ରଶ୍ମି" ରଖିଥିଲେ । ବହିର ଶେଷରେ ଅପରାଧି ସମସ୍ତଙ୍କ ସମ୍ମୁଖରେ କହିଲେ ଦେଶରେ ଅନ୍ୟାୟ, ଚୋରି, ଲାଞ୍ଚ, ଦୁର୍ନୀତି କିପରି ଦୂର ହେବ, ସେଥିପାଇଁ ମୁଁ ସଂଗ୍ରାମ କରି ଆସିଛି । ଅପରାଧି ନାମରେ ଯେତେ ଟଙ୍କା ଲୁଟ ହୋଇଛି ସେ ସବୁ ମୁଁ କରିଛି । କିନ୍ତୁ ଗୋଟିଏ ନୂଆ ପଇସା ମୋ ସ୍ୱାର୍ଥ ପାଇଁ ଖର୍ଚ୍ଚ କରିନାହିଁ । ପ୍ରିୟ ଜନତାର ଏବଂ ଦେଶ ମାତୃକାର ସେବାରେ ସମସ୍ତ ଅର୍ଥକୁ ବ୍ୟୟ କରିଛି । ଯେଉଁ ଟଙ୍କା ଯାହାଠାରୁ ନେଇଛି ସେ ସବୁର କାରଣ ଦର୍ଶାଇ ଚିଠି ତାଙ୍କ ପାଖକୁ ଲେଖି ମୁଁ ଦେଇଛି । କିନ୍ତୁ ସେମାନେ ସେ ଚିଠି ପୋଲିସ୍‌କୁ ଦେଖାଇ ନାହାଁନ୍ତି । କାରଣ ସତ୍ ସାହାସ ସେମାନଙ୍କର ନାହିଁ । ମୁଁ ଯେଉଁ ଡେଲ୍ଟା ରଶ୍ମି ସୃଷ୍ଟି କରିଛି, ତାହାର ପ୍ରକୃତ ତଥ୍ୟ ଭାରତ ସରକାରଙ୍କ ପ୍ରତିରକ୍ଷା ବିଭାଗକୁ ଜଣାଇ ଦେବି । ମୋର ଆଉ କିଛି କହିବାର ନାହିଁ । ତେବେ ଆପଣ ପ୍ରଥମେ କାହାକୁ ଗିରଫ୍ କରିବେ । ମୋତେ ନା ସୁଧାଂଶୁ ମଜୁମଦାର ଓରଫ ପାକିସ୍ଥାନର ଗୁପ୍ତଚର ସୟେଦ୍ ରହିମ୍ ଖାଁଙ୍କୁ ? ସମସ୍ତେ ଏକ ଲୟରେ ଚାହିଁ ରହିଥାଆନ୍ତି, ଏହି ଅପରାଧି କଣ ବିଖ୍ୟାତ ବୈଜ୍ଞାନିକ ଡକ୍ଟର ମିଶ୍ର ? ହଠାତ୍ ଡକ୍ଟର ମିଶ୍ର ସମସ୍ତଙ୍କ ଭାବନାରେ ବାଧା ଦେଇ କହିଲେ ଆସ ସ୍ୱପ୍ନା ଆମେ ଯିବା । ସମାଜ ପାଇଁ ଆମର ଆହୁରି କର୍ତ୍ତବ୍ୟ ଅଛି । ସେ କର୍ତ୍ତବ୍ୟ ସାରିଲେ ପୁଣି ଆଇ.ଜି ସାହେବଙ୍କୁ ଦେଖା କରିବା ।

ତାପର ଦିନ ଖବର କାଗଜ ବିକାଳୀ ରାସ୍ତାରେ ଡାକି ଡାକି ଯାଉଥାଏ ଅପରାଧି

ସାହାଯ୍ୟରେ ପାକିସ୍ତାନୀ ଗୁପ୍ତଚର ସୟେଦ ରହିମ୍ ଖାଁ ଗିରଫ୍ ହୋଇଛି । ଅପରାଧ ଓରଫ ବିଖ୍ୟାତ ବୈଜ୍ଞାନିକ ଡକ୍ଟର ମିଶ୍ର ଓ ମିଶ୍ର ଇନିଷ୍ଟିଚ୍ୟୁଟ୍‌ର ଡିରେକ୍ଟର ସ୍ୱପ୍ନା ଦେବୀ ପୋଲିସ୍ ସାହେବଙ୍କ ଆଗରୁ ଅନ୍ତର୍ଦ୍ଧାନ- - - - - - - -

ତାପରେ ମୋ ସ୍ୱାମୀ ପରବର୍ତ୍ତି ଡିଟେକ୍‌ଟିଭ୍ ଉପନ୍ୟାସର ନାମକରଣ କରିଥିଲେ "ଭୂତର ମୃତ୍ୟୁ" । ତାହାର ବିଷୟ ବସ୍ତୁ ହେଲା ଡକ୍ଟର ମିଶ୍ର ଆଉ ଗୋଟିଏ ଉଦ୍‌ଭାବନ କରିଥିଲେ ଯାହାକି ମନୁଷ୍ୟ ଦେହରେ ପଡିଲେ ସେ ଅଦୃଶ୍ୟ ହୋଇଯାଏ । ସେହି ପୁସ୍ତକଟି ପ୍ରାୟ ଶହେ ପୃଷ୍ଠା ଖଣ୍ଡେ ଲେଖା ହୋଇଥିଲା । କିନ୍ତୁ ସେତେବେଳେ ମିଷ୍ଟର ଇଣ୍ଡିଆ ଚଳଚିତ୍ରର ବିଷୟ ବସ୍ତୁ ସହିତ କେତେକାଂଶରେ ସମାନ ଜଣାପଡିଲା । ମୋର କଟକ ବଦଳି ହେବା ଯୋଗୁଁ ସ୍ୱାମୀ କାର୍ଯ୍ୟରେ ବ୍ୟସ୍ତ ରହିବାରୁ ବହିଟି ଆଉ ଲେଖା ହୋଇ ପାରିଲା ନାହିଁ ।

## ସ୍ୱାମୀଙ୍କ ସାହାର୍ଯ୍ୟରେ ଛୋଟ ପିଲାମାନଙ୍କ ଦ୍ୱାରା ଅପେରା ପରିବେଷଣ

ସ୍ୱାମୀଙ୍କ ଉଦ୍‌ଯୋଗରେ ସେ ଛୋଟ ଛୋଟ ପିଲା ମାନଙ୍କୁ ନେଇ କେତେ ଗୁଡିଏ ଅପେରା ପୁରୀର ବିଭିନ୍ନ ସ୍ଥାନରେ ମଞ୍ଚସ୍ଥ କରିଥିଲେ । ଅପେରା ଗୁଡିକର ନାମ ହେଲା 'ଦକ୍ଷଯଜ୍ଞ' ଏହି ଅପେରାଟି ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍‌ର ରଙ୍ଗ ମଞ୍ଚରେ ଅଭିନୀତ ହୋଇଥିଲା । ସେଥିରେ ମୋର ବଡ ଝିଅ ପ୍ରଭାତୀ ମିଶ୍ର 'ଦକ୍ଷ' ଭୂମିକାରେ ଅଭିନୟ କରିଥିଲା । ଅନ୍ୟ ଗୋଟିଏ ଅପେରାର ନାମ 'ଖାଣ୍ଡବ ଦହନ' । ସେଥିରେ ମୋର ବଡ ଝିଅ ଯୁଧିଷ୍ଠିର ଭୂମିକାରେ ଅଭିନୟ କରିଥିଲା । ସାନ ଝିଅ ପ୍ରଣତି ମିଶ୍ର ଦ୍ରୌପଦୀ ଭୂମିକାରେ ଓ ବଡ ପୁଅ ରଞ୍ଜନ ମିଶ୍ର ନନ୍ଦୀ ରୂପରେ ଅଭିନୟ କରିଥିଲା । ଏହି ଅପେରାଟି ମଧ୍ୟ ଅଲ୍‌ଇଣ୍ଡିଆରେଡିଓ ଷ୍ଟେସନ୍, କଟକ ଦ୍ୱାରା ପ୍ରସାରିତ ହୋଇଥିଲା । ଅନ୍ୟ ଗୋଟିଏ ଅପେରା 'ଭୀଷ୍ମ ଶରଶଯ୍ୟା' ସାମନ୍ତ ଚନ୍ଦ୍ରଶେଖର କଲେଜ ପ୍ରାଙ୍ଗଣରେ ଅଭିନୀତ ହୋଇଥିଲା । ସେଥିରେ ବଡ ଝିଅ ଭୀଷ୍ମ ଚରିତ୍ରରେ ଅଭିନୟ କରିଥିଲା ଏବଂ ମୋର ସାନ ଝିଅ ଦ୍ରୋଣାଚାର୍ଯ୍ୟ ଭୂମିକାରେ ଅଭିନୟ କରିଥିଲା ।

ସେହିପରି ଛୋଟ ପିଲାଙ୍କୁ ନେଇ ମୋର ସ୍ୱାମୀ କଳିଯୁଗ ଶିଶୁଶ୍ରୋତା ମଣ୍ଡଳୀ ଗଠନ କରିଥିଲେ । ସେଥିରେ ଜ୍ୟୋତି ଅପା ହୋଇଥିଲେ ମୋ ସାନ ଝିଅ ପ୍ରଣତି ମିଶ୍ର । ସବୁ ରବିବାର ଦିନ ପିଲାମାନେ ଆମ ଘରେ ଏକତ୍ରିତ ହୋଇ ଶିଶୁ ଶ୍ରୋତା ମଣ୍ଡଳୀର କାର୍ଯ୍ୟକ୍ରମ ଦେଖୁଥିଲେ । ସେଥିରେ ମୋ ସ୍ୱାମୀ ଉପଦେଷ୍ଟା ଥିଲେ ।

ଏହା ବ୍ୟତିତ ଆମ ଘରେ ଗୋଟିଏ ମୀନା ମଣ୍ଡଳୀ ଗଢା ଯାଇଥିଲା । ସେଥିରେ ମୋ ବଡ ଝିଅ ପ୍ରଭାତୀ ମିଶ୍ର ପ୍ରଧାନ ମନ୍ତ୍ରୀ ରୂପେ କାର୍ଯ୍ୟ ଚଳାଉ ଥିଲେ । ସେ ମୀନା ମଣ୍ଡଳୀର ନାମ 'ଟେକିଆନ ମିନାମଣ୍ଡଳୀ' ରଖାଯାଇଥିଲା । ସେ ନାମଟି ମୁଁ ନିଜେ ବାଛିଥିଲି । ଟେକିଆନ ହେଉଛି ଗୋଟିଏ କଣିକା, ଯାହାର ବେଗ ଆଲୋକର ବେଗଠାରୁ ବେଶୀ ବୋଲି କୁହାଯାଏ ।

ସେତେବେଳେ ମୀନାବଜାରର ଜହ୍ନରୀଭାଇ ହେଲେ ପ୍ରଜାତନ୍ତ୍ରର ସହସଂପାଦକ ଶ୍ରୀ ନୃସିଂହ ଚରଣ ସାହୁ । ଟେକିଆନ୍ ମୀନାମଣ୍ଡଳୀ ତଥା ଅନ୍ୟାନ୍ୟ ମୀନାମଣ୍ଡଳୀର ଉତ୍ସବମାନଙ୍କୁ ମୁଖ୍ୟ ଅତିଥିରୂପେ ସେ ପୁରୀ ଆସୁଥିବା ବେଳେ ଆମ ଘରକୁ ଆସୁଥିଲେ, ପିଲାମାନଙ୍କୁ ଖୁବ୍ ସ୍ନେହ ଶ୍ରଦ୍ଧା କରୁଥିଲେ । ମୋ ସ୍ୱାମୀ ମଧ୍ୟ ତାଙ୍କୁ ବେଶ୍ ଆଦର କରୁଥିଲେ । ଆମ ପରିବାର ସହ ଏହି ସ୍ନେହ ଶ୍ରଦ୍ଧାର ସଂପର୍କ ଏ ପର୍ଯ୍ୟନ୍ତ ଅତୁଟ ରହିଛି । ଆମ ସମସ୍ତଙ୍କୁ ସେ ଲେଖାଲେଖିରେ

ତଥା ସଂସ୍କୃତି ସଂପନ୍ନ ଜୀବନ ଯାପନ ନିମନ୍ତେ ପ୍ରେରଣା ଦେଇଛନ୍ତି । ଏହି ଆତ୍ମଜୀବନୀ ଲେଖା ମୂଳରେ ତାଙ୍କର ପରାମର୍ଶ ଓ ପ୍ରେରଣା ମୂଳ କହିଲେ ଭୁଲ୍ ହେବନାହିଁ । ଲେଖାଲେଖି ମାଧ୍ୟମରେ ଅବସର ଜୀବନକୁ କିପରି ବିନା ଉଦ୍‌ବେଗରେ ବଂଚି ହେବ, ସେହି ହିଁ ବତେଇ ଦେଇଛନ୍ତି ।

ମୁଁ ପୁରୀରେ ରହିବା ସମୟରେ ମୋ ସ୍ୱାମୀ ସାହିତ୍ୟ ସମ୍ବନ୍ଧୀୟ କାର୍ଯ୍ୟକ୍ରମରେ ଭାଗ ନେଇଥିଲେ । ଥରେ ରାମନବମୀ ଉତ୍ସବରେ ତାଙ୍କୁ ସହରର କେତେ ଜଣ ବିଶିଷ୍ଟ ଲୋକ ଅନୁରୋଧ କରିଥିଲେ ରାମଙ୍କ ଉପରେ ପିଲାଙ୍କ ପାଇଁ ଗୋଟିଏ ଗୀତ ଲେଖିବାକୁ । ସେ ଗୀତ ଲେଖିଦେଇ ଥିଲେ । ସେ ଗୀତଟି ରାମନବମୀ ଉତ୍ସବ ଦିନ ବୋଲା ଯାଇଥିଲା ଏବଂ ତାର ସତେଇସି ବର୍ଷ ପରେ ମୋର ସାନ ପୁଅ ଶାନ୍ତି ମାର୍ଗ କ୍ୟାସେଟରେ ଇନ୍ଦ୍ରାଣୀ ମିଶ୍ରଙ୍କ ଦ୍ୱାରା ସେହି ଗୀତଟି ବୋଲାଇ ଥିଲେ(ସେହି ଗୀତଟି ପରେ ଲେଖା ଯାଇ ଅଛି) । ଇନ୍ଦ୍ରାଣୀ ମିଶ୍ର ହେଉଛନ୍ତି ମୋ ପିଲା ମାନଙ୍କର ମାଇଁ । ଏହି ସମୟରେ ଯେତେବେଳେ ବାଲାଂଦେଶ ଗଢ଼ାଗଲା ସେତେବେଳେ ଇନ୍ଦିରା ଗାନ୍ଧୀଙ୍କ ଉପରେ ଗୋଟିଏ ଦେଶାତ୍ମବୋଧକ ଗୀତ ମୋ ସ୍ୱାମୀ ଲେଖିଥିଲେ । ସେ ଗୀତଟି କେଉଁଠାରେ ବୋଲା ହୋଇଥିଲା ମୋ ମନେ ନାହିଁ । ଥରେ କଳିଯୁଗ ଶିଶୁସ୍ରୋତା ମଣ୍ଡଳୀର ବାର୍ଷିକ ଉତ୍ସବରେ ମୋ ସ୍ୱାମୀଙ୍କ ଦ୍ୱାରା ଲେଖାଯାଇଥିବା 'ଅତୀତ ଯାଇଛି ହଜି, ଆଣିବାରେ ଆମେ ଖୋଜି' ଗୀତଟି ମିଳିତ ସମବେତ କଣ୍ଠରେ ବୋଲା ଯାଇଥିଲା । ସେ ଗୀତଟି ହେଲା :

ଅତୀତ ଯାଇଛି ହଜି — ଆଣିବାରେ ଆମେ ଖୋଜି
ଆମ ଦେଶ ମାଟି ଶସ୍ୟ ଶ୍ୟାମଳା — ପୃଥିବୀ ପ୍ରସିଦ୍ଧ ଚାରୁ ଚିତ୍ର କଳା
ଗଢ଼ିବାରେ ଆମେ କୋଣାର୍କ ମନ୍ଦିର — ଆମେ ପରା ସେହି ଧରମା ଜାତିର
ଏ ଜାତିର ନାମ ବିଶ୍ୱ ଦରବାରେ — ଲେଖା ରହିଛିରେ ଆଜି
ଏ ଦେଶେ ଜନମି ପଠାଣି ସାଆନ୍ତେ — ବାଉଁଶ କଣିରେ ମାପିଣ ଆକାଶ
ଚମକାଇ ଦେଲେ ଏ ସାରା ଜଗତ — ସେ ପୁଣ୍ୟ ଭୂଇଁର ଆମେ ରେ ଦାୟାଦ
ସେଇ ଗୌରବ ସୌରଭ ନେଇ — ସୁରଭିତ ଆମେ ଆଜି
ଅତୀତ ଯାଇଛି ହଜି — ଆଣିବାରେ ଆମେ ଖୋଜି
ନୀଳାଚଳେ ଆଜି ଆମ ଶିଶୁମେଳା — ସଫଳତା ପାଇଁ ସାଦ୍ଧ୍ୟ ଚକାଡୋଳା
ମିନତି କରୁଛୁ ଆମେ ସବୁ ମିଶି

## ସ୍ୱାମୀଙ୍କୁ ରାମକୃଷ୍ଣ ମିଶନରେ ଭାଷଣ ଦେବାକୁ ଅନୁରୋଧ

ଥରେ ପୁରୀରେ ଥିବାବେଳେ ରାମକୃଷ୍ଣ ମିଶନର କର୍ମକର୍ତ୍ତା ମୋ ସ୍ୱାମୀଙ୍କୁ ଶାରଦା ଦେବୀଙ୍କ ଜୀବନୀ ଉପରେ ଭାଷଣ ଦେବା ପାଇଁ ଅନୁରୋଧ କରିଥିଲେ । ସେ ତାଙ୍କ ଅନୁରୋଧ ରକ୍ଷା କରିଥିଲେ । ମୋତେ ତାପରେ କହିଲେ ଶାରଦା ଦେବୀଙ୍କ ଜୀବନୀ ଉପରେ କିଛି ବହି କଲେଜ ପାଠାଗାରରୁ କିମ୍ବା ରାମକୃଷ୍ଣ ମିଶନ ପାଠାଗାରରୁ ଆଣିଦେବା ପାଇଁ । ମୁଁ ଦୁଇ ଖଣ୍ଡ ବହି ଆଣି ଦେଇଥିଲି । ସେ ବହି ଦୁଇଖଣ୍ଡ ପଢ଼ି ନିର୍ଦ୍ଦିଷ୍ଟ ଦିନରେ ମା ଶାରଦା ଦେବୀଙ୍କ

ଜୀବନ ଦର୍ଶନ ଉପରେ ଆଲୋଚନା କରିଥିଲେ । ମୁଁ ତାଙ୍କ ଭାଷଣ ରାମକୃଷ୍ଣ ପରମହଂସ ପାଠାଗାରର ବାହାରେ ଶୁଣୁଥିଲି । ଏହା ବ୍ୟତିତ ମୋ ସ୍ତ୍ରୀ କେତେ ଗୁଡ଼ିଏ କ୍ଷୁଦ୍ର ଗଳ୍ପ ରଚନା କରିଥିଲେ ଏବଂ ସେଗୁଡ଼ିକ କୌଣସି ନା କୌଣସି ପତ୍ର ପତ୍ରିକାରେ ପ୍ରକାଶିତ ହୋଇଥିଲା । ସେଗୁଡ଼ିକ ମଧ୍ୟରୁ ମୋର କେତେ ଗୁଡ଼ିଏ କ୍ଷୁଦ୍ର ଗଳ୍ପର କଥା ବସ୍ତୁ କିଛି କିଛି ମନେ ଅଛି । ସେଗୁଡ଼ିକ ହେଲା :

**ମିଃ ଜାୟୀ :** ଏହାର ବିଷୟ ବସ୍ତୁ ହେଉଛି, ଜଣେ ରେଭେନ୍ସା କଲେଜର ଅଧ୍ୟାପକ ସବୁବେଳେ ଜାୟୀ 'ξ' ଅକ୍ଷରଟି ବ୍ୟବହାର କରୁଥିଲେ । ସେ ପଢ଼ାଇବାରେ କିଛି ଖିଲାପ କରୁ ନ ଥିଲେ । ସମୟର ସଦୁପଯୋଗ କରି ସେ ସ୍ତ୍ରୀଙ୍କ ପାଇଁ ସମୟ ଦେଇପାରୁ ନ'ଥିବାରୁ ତାଙ୍କର ସ୍ତ୍ରୀଙ୍କ ସାଙ୍ଗରେ ମତାନ୍ତର ହେଉଥିଲା ଏବଂ ବେଳେ ବେଳେ ମଧ୍ୟ ମନାନ୍ତର ହେଉଥିଲା । କିନ୍ତୁ ଏତେ ପରିଶ୍ରମ କରି ସୁଦ୍ଧା ସରକାରଙ୍କ ଠାରୁ କିଛି ସୁବିଧା ପାଇ ନଥିଲେ ଏବଂ ପରିଶେଷରେ ସରକାର ଏକ ମଫସଲ କଲେଜକୁ ବଦଳି କରିଦେଇ ଥିଲେ । ଏଥିରେ ତାଙ୍କ ମନ ଭାଙ୍ଗି ଗଲା ।

**ବିଜୟ ବାବୁଙ୍କ ବଦଳି:** ସେ ଏକ ମଫସଲ କଲେଜରେ ଅଧ୍ୟାପକ ହିସାବରେ ଯୋଗ ଦେଇଥିଲେ । ତାଙ୍କ ପିତା ମାତା ଅସୁସ୍ଥ ଥିବା ଯୋଗୁଁ ସରକାରଙ୍କୁ ବାରମ୍ବାର ଦରଖାସ୍ତ କରିଥିଲେ କୌଣସି ଏକ ସହରର କଲେଜକୁ ବଦଳି କରିବା ପାଇଁ । କିନ୍ତୁ କୃତକାର୍ଯ୍ୟ ହୋଇ ପାରି ନଥିଲେ । ତାଙ୍କର ଜଣେ ସହପାଠୀଙ୍କ ସାଙ୍ଗରେ ଥରେ ଦେଖା ହେଲା । ତାଙ୍କର ସହପାଠୀ ସେତେବେଳେ ବ୍ୟବସାୟ କରି ଏକ ପ୍ରତିଷ୍ଠିତ ବ୍ୟକ୍ତି ହୋଇ ପାରିଥିଲେ । ତାଙ୍କ ସାଙ୍ଗରେ ଥରେ ବିଜୟ ବାବୁଙ୍କର ଦେଖା ହେଲା । ସେ ତାଙ୍କ ସାଙ୍ଗକୁ ନିଜର ଦୁଃଖ ବିଷୟ କହିବାରୁ ସେ କହିଲେ "ମୁଁ ନିଶ୍ଚୟ ତୁମର ବଦଳି କରିଦେବି ।" ତାର ଅଳ୍ପ ଦିନ ପରେ ସେ ତାଙ୍କର ବଦଳି ନିର୍ଦ୍ଦେଶ ପାଇଥିଲେ ।

**ବିଦ୍ରୋହୀ ମନ:** ଏହି ଗଳ୍ପଟି ଗୋଟିଏ ଛୋଟ ପିଲାର ଜୀବନ ବୃତ୍ତାନ୍ତ ଉପରେ ଆଧାରିତ । ପିଲାଟି ଭଲ ପଢୁଥିଲା । କିନ୍ତୁ ସ୍କୁଲର ପ୍ରଧାନ ଶିକ୍ଷକ ତାକୁ କହିଲେ, ତୁ ଭଲ ପଢୁଛୁ । ମୋ ପାଖରେ ଟିଉସନ୍ ହେଲେ ଆହୁରି ଭଲ କରିବୁ ଏବଂ ବୃତ୍ତି ପାଇବୁ । ସେ ଗରିବ ଥିବାରୁ ଟିଉସନ୍ ଖର୍ଚ୍ଚ ଦେଇ ପାରିବ ନାହିଁ ବୋଲି କହିଲା । ତେଣୁ ଟିଉସନ୍ ଗଲା ନାହିଁ । ପ୍ରଧାନ ଶିକ୍ଷକ ପିଲାଟିର ନାମ ବୃତ୍ତି ପରୀକ୍ଷା ଦେବାକୁ ବାଛି ପଠାଇଲେ ନାହିଁ । ତେଣୁ ପିଲାଟି ବୃତ୍ତି ପାଇବାରୁ ବଞ୍ଚିତ ହେଲା । ସେ ପିଲାଟି ପ୍ରଧାନ ଶିକ୍ଷକଙ୍କ ଉପରେ ରାଗି ମନ ମଧ୍ୟରେ ବିଦ୍ରୋହ ଭାବ ସୃଷ୍ଟି କଲା । ତେଣୁ ସେ ଶେଷରେ ପ୍ରଧାନ ଶିକ୍ଷକଙ୍କ ମୁଣ୍ଡକୁ ଏକ ଟେକା ମାରି ଫଟାଇ ଦେଲା । ତାପରେ ସ୍କୁଲରୁ ତଡ଼ା ଖାଇଲା । ତାର ଜୀବନ ବୃତ୍ତାନ୍ତ ପରେ ଜଣେ ଅଚିହ୍ନା ଭଦ୍ରଲୋକଙ୍କୁ କହିଲା ସେହି ଭଦ୍ରଲୋକ ତାର ପଢ଼ାପଢ଼ିର ସମସ୍ତ ବନ୍ଦୋବସ୍ତ କରିଦେଇ ଥିଲେ ।

**ମଧ୍ୟ ରାତ୍ରିର ଅତିଥି :** ଏହାର ବିଷୟ ବସ୍ତୁ ହେଲା ଗୋଟିଏ ବୟସ୍କ ସ୍ତ୍ରୀ ଲୋକ ଜଣେ ଏକା ରହୁଥିବା ଭଦ୍ର ଲୋକଙ୍କ ଘରେ ରାତିରେ ତାଙ୍କ ଦାଣ୍ଡ ବାରଣ୍ଡାରେ ଶୋଇବା ପାଇଁ ଅନୁମତି ମାଗିଲା । ଭଦ୍ରଲୋକ ତାକୁ ତାଙ୍କ ନିଜ ଘରେ ଶୋଇବା ପାଇଁ ଅନୁମତି ଦେଲେ । ସକାଳେ ଭଦ୍ରଲୋକ କୁଆଡେ ଯାଇଥିବା ବେଳେ ତାଙ୍କର ସମସ୍ତ ଦାମୀ ଜିନିଷ ପତ୍ର ନେଇ ଚାଲିଗଲା ଏବଂ ଭଦ୍ର ଲୋକଙ୍କ ନାମରେ ଏକ ଚିଠି ଦେଇଗଲା ଚିଠିରେ ଲେଖା ଥିଲା 'ଏହା ହେଉଛି ମୋର



ରାୟପୁରର 'ଗ୍ରୀଷ୍ମକାଳୀନ ସ୍କୁଲରେ'
ଜୁନ୍ ୦୧.୦୬.୮୭ - ୦୬.୦୬.୮୭ ପର୍ଯ୍ୟନ୍ତ ମୋର ବକ୍ତୃତା




ରେଭେନ୍ସା କଲେଜ ଫିଜିକ୍ସ ବିଭାଗର 'ସ୍ୱଳ୍ପ ବ୍ୟୟରେ ପ୍ଲାଜମା'
ବିଜ୍ଞାନ ପରୀକ୍ଷା ପାଇଁ ଆସିଥିବା ଅଂଶଗ୍ରହଣକାରୀମାନେ ଓ କେତେକ ଅଧ୍ୟାପକ
- ୨୧.୦୬.୧୯୮୭ ଠାରୁ ୧୧.୦୭.୧୯୮୭



ରେଭେନ୍ସା ମହାବିଦ୍ୟାଳୟରେ ଅନୁଷ୍ଠିତ ''ପ୍ଲାଜମା – ଗ୍ରୀଷ୍ମ କାଳୀନ ଶିବିର'ର
''ନନ୍ଦନ କାନନ ପରିଭ୍ରମଣ'' : ମସିହା ୧୯୮୭



ରେଭେନ୍ସା କଲେଜ ଫିଜିକ୍ସ ବିଭାଗରେ 'ଶୀତ କାଳୀନ ସ୍କୁଲ'
ସମୟରେ ଅଂଶଗ୍ରହଣକାରୀମାନେ ନନ୍ଦନ କାନନ ବଣଭୋଜୀ ପାଇଁ ଯାଇଛନ୍ତି,
ତାଙ୍କ ସାଥିରେ ମୁଁ ଓ ମୋର ସ୍ତ୍ରୀ : ୧୭.୦୧.୧୯୮୮



ରେଭେନ୍ସା କଲେଜ ଫିଜିକ୍ସ ବିଭାଗର 'ଶୀତ କାଳୀନ ସ୍କୁଲ' ପାଇଁ ଆସିଥିବା ଅଂଶଗ୍ରହଣକାରୀମାନେ ପରୀକ୍ଷାଗାରରେ ପ୍ରାୟୋଗିକ ପରୀକ୍ଷା କରୁଛନ୍ତି : ୧୧.୦୧.୮୮ ଠାରୁ ୨୪.୦୧.୮୮



ମଦୁରାଇ ଠାରେ ହୋଇଥିବା ଆଇ.ଏ.ପି.ଟି. ସମ୍ମିଳନୀରେ
ଯୋଗ ଦେବା ପାଇଁ ମୁଁ ଓ ମୋର ସ୍ତ୍ରୀ ବିବେକାନନ୍ଦ
ରକ୍‌ର ସମ୍ମୁଖ ସମୁଦ୍ର କୂଳରେ ବସିଅଛୁ




ଶୀତକାଳୀନ ସ୍କୁଲକୁ ଆସିଥିବା ଅଂଶଗ୍ରହଣକାରୀମାନେ ଓ
କେତେକ ଅଧ୍ୟାପକ : ତାରିଖ - ୨୫.୦୧.୮୮



ଅଧ୍ୟକ୍ଷ, ଖଲ୍ଲିକୋଟ ସ୍ୱୟଂ ଶାସିତ ମହାବିଦ୍ୟାଳୟ : ୧୯୮୮-୧୯୯୦

ବ୍ୟବସାୟ ।' ଆଉ କେତୋଟି କ୍ଷୁଦ୍ର ଗଳ୍ପ ମଧ୍ୟ ଲେଖି ଥିଲେ ସେଥିରୁ କେତୋଟି ପ୍ରକାଶ ପାଇଥିଲା ଓ ଆଉ କେତୋଟି ପ୍ରକାଶ ପାଇ ନ'ଥିଲା । ସେଗୁଡ଼ିକର ବିଷୟ ବସ୍ତୁ ମୋର ମନେ ନାହିଁ ।

## ବଡ ଝିଅର ସୁନା ପଦକ ପୁରସ୍କାର ଗ୍ରହଣ

ମୋର ପୁରୀ ବଦଳି ହେବା ପରେ ମୋ ବଡ ଝିଅ ପ୍ରଭାତୀ ମିଶ୍ରଙ୍କୁ ସରକାରୀ ବାଳିକା ବିଦ୍ୟାଳୟର ସପ୍ତମ ଶ୍ରେଣୀରେ ନାମ ଲେଖାଇ ଦେଲି । ସପ୍ତମ ଶ୍ରେଣୀରେ ସେ ପୁରୀ ଜିଲ୍ଲାରେ ବୃତ୍ତି ପାଇଥିଲା । ସେ ଶ୍ରେଣୀରେ ମଧ୍ୟ ଭଲ କରୁଥିଲା । ଏକାଦଶ ଶ୍ରେଣୀରେ ସେ ପୁରସ୍କାର ବିତରଣ ଉତ୍ସବରେ 'ଅଲରାଉଣ୍ଡର' ଛାତ୍ରୀ ହିସାବରେ ଗୋଟିଏ 'ସୁନା ପଦକ' ସ୍କୁଲ୍ ତରଫରୁ ପାଇଥିଲା । ସେହି ପୁରସ୍କାର ବିବରଣୀ ଉତ୍ସବରେ ବିଶିଷ୍ଟ ସାହିତ୍ୟିକ ଶ୍ରୀଯୁକ୍ତ ରାଜକିଶୋର ରାୟ (ଅବସର ପ୍ରାପ୍ତ ଓଡିଆ ପ୍ରାଧ୍ୟାପକ) ତାଙ୍କ ସହଧର୍ମିଣୀଙ୍କ ସହିତ ମୁଖ୍ୟ ଅତିଥି ଭାବରେ ଯୋଗ ଦେଇଥିଲେ ଏବଂ ଶ୍ରୀ ଗୋପାଳ ଚରଣ ପଟ୍ଟନାୟକ (ପୁରୀ ସର୍କଲର ସ୍କୁଲ୍ ଇନିସ୍‌ପେକ୍ଟର) ମୁଖ୍ୟ ବକ୍ତା ରୂପେ ଯୋଗ ଦେଇଥିଲେ । ପୁରସ୍କାର ବିତରଣ ଉତ୍ସବକୁ ମୁଁ ଓ ମୋ ସ୍ତ୍ରୀ ନିମନ୍ତ୍ରିତ ହୋଇଥିଲୁ । ସେହି ପୁରସ୍କାର ବିତରଣ ଉତ୍ସବରେ ଜାତୀୟ ସଂହତି ଉପରେ ଗୋଟିଏ ଏକାଙ୍କିକା ଅଭିନୀତ ହୋଇଥିଲା । ଜଣେ ବ୍ୟକ୍ତିଙ୍କର ପାଞ୍ଚ ପୁଅ ଓ ବିଭିନ୍ନ ଭାଷାଭାଷୀର ପାଞ୍ଚଟି ବୋହୂ ଥିଲେ । ଘରର ମୁରବୀ ସେମାନଙ୍କୁ କିପରି ଭାବରେ ଚଳାଇଥିଲେ ତାହା ସେହି ନାଟକର ପ୍ରଧାନ ବିଷୟ ବସ୍ତୁ ଥିଲା । ମୋର ବଡ ଝିଅ ସେହି ମୁରବୀ ବ୍ୟକ୍ତି ଭୂମିକାରେ ଅଭିନୟ କରିଥିଲା । ତାର ଅଭିନୟ ଅତି ଉଚ୍ଚ କୋଟୀର ହୋଇଥିଲା ।

ଓଡିଶାର ଛାତ୍ର ଓ ଛାତ୍ରୀଙ୍କ ମଧ୍ୟରୁ ବଛା ହୋଇ ମସୋରୀ ଠାରେ ରେଡକ୍ରସ ଦ୍ୱାରା ଆୟୋଜନ କରାଯାଇଥିବା ସର୍ବଭାରତୀୟ ସ୍କୁଲ୍‌ଛାତ୍ର ସମ୍ମିଳନୀରେ ସେ ଯୋଗ ଦେଇଥିଲା । ସମ୍ମିଳନୀ ସରିବା ପରେ ଦିଲ୍ଲୀ, ଲଛମନ ଝୁଲା, ହରଦ୍ୱାର ପ୍ରଭୃତି ସ୍ଥାନ ପରିଭ୍ରମଣ କରି ପ୍ରାୟ ୨୦ ଦିନ ପରେ ପୁରୀ ଫେରି ଆସିଥିଲା । ମୋର ସାନ ଝିଅ ପ୍ରଣତି ମିଶ୍ରର ଦୋଳମଣ୍ଡପ ସାହିର ଆଦର୍ଶ ଉ.ପ୍ରା ବିଦ୍ୟାଳୟରେ ପଞ୍ଚମ ଶ୍ରେଣୀରେ ନାମ ଲେଖାଇ ଦେଇଥିଲି । ସେ ପଞ୍ଚମ ଶ୍ରେଣୀ ପରୀକ୍ଷାରେ ବୃତ୍ତି ପାଇବାକୁ ଯୋଗ୍ୟ ବିବେଚିତ ହୋଇଥିଲା । ସେତେବେଳେ ସେ କଳିଯୁଗ ଶିଶୁ ଶ୍ରୋତା ସମିତି ତରଫରୁ ଲକ୍ଷ୍ନୌ ଠାରେ ଅନୁଷ୍ଠିତ ହୋଇଥିବା ଶିଶୁମେଳାରେ ଯୋଗ ଦେଇଥିଲା । ସେ ପୁଣି ସପ୍ତମ ଶ୍ରେଣୀରେ ପଢ଼ିଲା ସମୟରେ କଳିଯୁଗ ଶିଶୁ ଶ୍ରୋତା ସମିତି ତରଫରୁ ଜାତୀୟ ଶିଶୁ ମେଳାରେ ଯୋଗ ଦେବା ପାଇଁ ଲକ୍ଷ୍ନୌ ଯାଇଥିଲା । ସେତେବେଳେ ମୋର ବଡ ପୁଅ ରଞ୍ଜନ ମିଶ୍ର ପଞ୍ଚମ ଶ୍ରେଣୀରେ ପଢ଼ିବା ସମୟରେ କଳିଯୁଗ ଶିଶୁ ଶ୍ରୋତା ସମିତି ତରଫରୁ ଜାତୀୟ ଶିଶୁ ମେଳାରେ ଯୋଗ ଦେବା ପାଇଁ ପ୍ରଣତି ସହିତ ଯାଇଥିଲା । ମୋ ଝିଅ ବୋର୍ଡ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲା ।

## ବଡ ପୁଅର ବ୍ରତଘର

ପୁରୀରେ ରହଣି କାଳ ଭିତରେ ଏକ ନମ୍ବର ଛାତ୍ରାବାସର ପରିଚାଳକ ଥିବା ସମୟରେ ମୋ ବଡ ପୁଅ ଶ୍ରୀ ରଞ୍ଜନ ମିଶ୍ରଙ୍କର ବ୍ରତଘର ହୋଇଥିଲା । ସେହି ବ୍ରତଘରକୁ ଛାତ୍ରାବାସର

ସମସ୍ତ ପିଲାଙ୍କୁ ମୁଁ ନିମନ୍ତ୍ରଣ କରିଥିଲି । ଶ୍ରୀଯୁକ୍ତ ପ୍ରଫୁଲ୍ଲ କର ଗୀତ ପରିବେଷଣ କରିଥିଲେ । ସେହି ବ୍ରତ ଘରରେ ଛାତ୍ରାବାସର ମାଇକ୍ରୋଫୋନ୍ ଓ ରେକର୍ଡ ପ୍ଲେୟାର ଛାତ୍ରାବାସର ପିଲାମାନେ ଆଣି ବଜାଇ ଥିଲେ । ବ୍ରତ ଘରର ଅଳ୍ପ କେତେ ଦିନ ପରେ ଗୋଟିଏ ଘଟଣା ଘଟିଲା । ଘଟଣାଟି ହେଲା ମୋର ଜଣେ ସହକର୍ମୀ ମୋତେ ଅନୁରୋଧ କଲେ ଛାତ୍ରାବାସର ମାଇକ୍ ଓ ରେକର୍ଡ ପ୍ଲେୟାର ତାଙ୍କୁ ତାଙ୍କ ପୁଅର ବ୍ରତଘର ସକାଶେ ବ୍ୟବହାର କରିବା ପାଇଁ ଦେବାକୁ । ମୁଁ ପିଲାଙ୍କ ପଇସାରୁ କିଣା ଜିନିଷ ତାଙ୍କୁ ଦେଇ ପାରିବି ନାହିଁ ବୋଲି କହିଲି । ସେ ବିରକ୍ତ ଓ ଅସନ୍ତୁଷ୍ଟ ହୋଇ କହିଲେ ତମ ପୁଅ ବ୍ରତ ଘର ବେଳେ ଛାତ୍ରାବାସର ଜିନିଷ ବ୍ୟବହାର କଲ କିନ୍ତୁ ମୋତେ କାହିଁକି ଦେବାକୁ ମନା କରୁଛ ? ମୁଁ ତାଙ୍କୁ ବୁଝାଇଲି । ଯେ ଛାତ୍ରାବାସର ସମସ୍ତ ଛାତ୍ରଙ୍କୁ  ନିମନ୍ତ୍ରଣ କରିଥିବାରୁ ସେମାନେ ଆମୋଦ ପ୍ରମୋଦ ପାଇଁ ଛାତ୍ରାବାସ ଜିନିଷ ଆଣିଥିଲେ । ଆପଣ ଯଦି ଛାତ୍ରାବାସର ସବୁ ପିଲାଙ୍କୁ ନିମନ୍ତ୍ରଣ କରିବେ, ତେବେ ପିଲାମାନେ ମାଇକ୍ ଓ ରେକର୍ଡ ପ୍ଲେୟାର ନେଇ ଆପଣଙ୍କ ବ୍ରତ ଘରେ ବଜାଇବେ । ସେ ମହାଶୟ ମୋତେ ଆଉ କିଛି ନ'କହି ଚୁପ୍ ହୋଇ ଚାଲିଗଲେ । ପୁରୀରେ ମୋର ସାନ ପୁଅ ସେ ପର୍ଯ୍ୟନ୍ତ ପଢା ଆରମ୍ଭ କରି ନ'ଥିଲା । ତାର ପଢା ଆରମ୍ଭ କରିବା ପାଇଁ କାନ ଫୋଡା ଶ୍ରୀଲୋକନାଥଙ୍କ ମନ୍ଦିରରେ ଅନୁଷ୍ଠିତ ହୋଇଥିଲା ।

## ଜଗନ୍ନାଥ ମହାପ୍ରଭୁ ରଥ ଉପରକୁ ଉଠିଲେ ନାହିଁ

ମୁଁ ପୁରୀରେ ଥିବା ସମୟରେ ଜଗନ୍ନାଥଙ୍କ ଦେଉଳ ସମ୍ମୁଖରେ ଗୋଟିଏ ଚିହ୍ନା ଦୋକାନରେ ଆମେ ସ୍ୱାମୀ ସ୍ତ୍ରୀ ଦୁହେଁ ବସି ଜଗନ୍ନାଥଙ୍କର ରଥ ଉପରକୁ ପହଁଣ୍ଡିବିଜେ କରୁଥିବାର ଦେଖୁଥିଲୁ । ଏହି ସମୟରେ ଜଗନ୍ନାଥ ମହାପ୍ରଭୁ ଆଉ ରଥ ଉପରକୁ ଉଠିଲେ ନାହିଁ । ପ୍ରାୟ ଦୁଇ ଘଣ୍ଟା ବିତିଗଲା, କିନ୍ତୁ ଜଗନ୍ନାଥ ସେହି ସ୍ଥାନରେ ଅଟଳ ମହାମେରୁ ପରି ଅଟକି ଗଲେ । ସେବକମାନେ ଝାଳନାଳ ହୋଇ ଜଗନ୍ନାଥଙ୍କୁ ରଥ ଉପରକୁ ନେବାପାଇଁ ଚେଷ୍ଟା କରୁଥାଆନ୍ତି । ଶେଷରେ ଜଗନ୍ନାଥଙ୍କର ପରମ ସେବକ ପୁରୀର ରାଜାଙ୍କୁ ସେବକମାନେ ଖବର ପଠାଇଲେ । ରଜା ଆସିବାପରେ ଜଗନ୍ନାଥଙ୍କୁ ପ୍ରଣାମ କରି କେତେ କାକୁତି ମିନତି ହୋଇ ପ୍ରାର୍ଥନା କରିବା ପରେ ଜଗନ୍ନାଥ ସୁରୁଖୁରୁରେ ରଥ ଉପରକୁ ଯାଇ ତାଙ୍କ ଆସ୍ଥାନରେ ଅବସ୍ଥାନ କଲେ ।

ଏହିକଥା ଅନ୍ୟମାନଙ୍କୁ କହିଲାବେଳେ ସେମାନେ କୁହନ୍ତି ସେବକମାନେ ଇଚ୍ଛାକରି ଜଗନ୍ନାଥଙ୍କୁ ଉଠାଉ ନ'ଥିବେ । କେତେଜଣ ମୋ କଥାକୁ ବିଶ୍ୱାସ କରନ୍ତି ଓ ଅନ୍ୟ କେତେକ ମୋ ସହିତ ଯୁକ୍ତି ବାଢନ୍ତି ।

## ପ୍ରାଧ୍ୟାପକ, ରେଭେନ୍ସା କଲେଜ

୧୯୭୪ ମସିହା ଅଗଷ୍ଟ ମାସ ୩ ତାରିଖରେ ରେଭେନ୍ସା କଲେଜରେ ଯୋଗ ଦେଲି । ସେତେବେଳେ ଡକ୍ଟର ଶ୍ରୀରାମ ମୂର୍ତ୍ତି ଫିଜିକ୍ସର ମୁଖ୍ୟ ଅଧ୍ୟାପକ ଥାଆନ୍ତି । ମୁଁ ପ୍ରଥମେ କଟକ ଯାଇ ଡାକ୍ତର ବିନୟ କୁମାର ଦାସଙ୍କ ଘରେ ରହିଲି । ସେତେବେଳକୁ ପୋଷ୍ଟଗ୍ରାଜୁଏଟ୍ କ୍ଲାସ୍ ଆରମ୍ଭ ହୋଇ ନ'ଥାଏ । ସେ ମୋତେ ପଚାରିଲେ, ତୁମେ ପୋଷ୍ଟଗ୍ରାଜୁଏଟ୍‌ର କେଉଁ କ୍ଲାସ୍ ନେବ ? ମୁଁ କହିଲି ଯେଉଁ କ୍ଲାସ୍ ଦେବେ ତାହା ନେବି ଏବଂ ଟିକିଏ ଆଗରୁ କହି ଦେଲେ ଭଲ

ବୁଝିତା । ସେ ସାଙ୍ଗେ ସାଙ୍ଗେ କହିଲେ ତୁମେ ଷ୍ଟାଟିସ୍‌ଟିକାଲ ମେକାନିକସ୍ (Statistical Mechanics) ସ୍ନାତକୋତ୍ତର କ୍ଲାସରେ ପଢ଼ାଇବ । ପରେ ଅନ୍ୟ କ୍ଲାସ୍ କଥା କହିବି । ଅଳ୍ପ କେତେ ଦିନ ପରେ ବାଦାମବାଡ଼ିରେ ରେଭେନ୍ସା କଲେଜ ଅଧିନରେ ଥିବା କେତେ ଗୁଡ଼ିଏ ଏଲ.ଆଇ.ସିର କ୍ୱାଟର ମଧ୍ୟରୁ ଗୋଟିଏ ଘର ଅଧ୍ୟକ୍ଷ ଡକ୍ଟର ମହେନ୍ଦ୍ର କୁମାର ରାଉତ ମୋତେ ରହିବା ପାଇଁ ଦେଲେ । ଘର ପାଇବାର ୩/୪ ଦିନ ପରେ ପୁରୀ ଯାଇ ମୋ ଜିନିଷ ପତ୍ର ଧରି କଟକ ଆସି ସେହି ଘରେ ରହିଲି । ସେହି ଘରେ ରହିବାର ୩/୪ ମାସ ପରେ ରେଭେନ୍ସା କଲେଜ ହତା ମଧ୍ୟରେ ଗୋଟିଏ ବଡ ଘର ମୋତେ ମିଳିଗଲା । ତେଣୁ ସେ ଘରକୁ ପିଲାମାନଙ୍କୁ ନେଇ ଚାଲି ଆସିଲି । ଗବେଷଣା କରିବା ପାଇଁ ମୋତେ ବହୁତ ସୁବିଧା ହେଲା । ଗବେଷଣା କରିବା ପାଇଁ ମୁଁ ସବୁଦିନ ସକାଳ ୮ଟା ବେଳେ କଲେଜ ଯାଏ ଓ ଗୋଟାଏ ବେଳେ ଖାଇବାକୁ ଘରକୁ ଆସେ । ଖାଇ ଟିକିଏ ବିଶ୍ରାମ ନେଇ ପୁଣି ୨ଟା ବେଳେ କଲେଜ ଯାଏ । ପୁଣି ୫ଟା ବେଳେ ଘରକୁ ଆସି ଜଳଖିଆ ଖାଇ ପୁଣି କଲେଜକୁ ଚାଲିଯାଏ । ପ୍ରାୟ ରାତି ୯ଟା ବେଳେ ଘରକୁ ଆସେ । ସେତେବେଳକୁ ଆଉ ମୋର ୬ ଟି ଗବେଷଣାତ୍ମକ ପ୍ରବନ୍ଧ ପ୍ରକାଶିତ ହୋଇ ସାରିଥିଲା ।

ପୁରୀରେ ଅଧ୍ୟାପକ ଥିବା ସମୟରେ ଭାବିଥିବା ତାତ୍ତ୍ୱିକ ଆପେକ୍ଷିକ ତତ୍ତ୍ୱ (Theory of relativity) ଗବେଷଣା କାମକୁ ଜୋରସୋରରେ କରିବାକୁ ଲାଗିଲି । ସେ ପ୍ରଥମ କାମଟି ପ୍ରାୟ ଛଅ ସାତ ମାସ ଭିତରେ ସରିଗଲା । ସେହି କାମଟି ଛପାଇବା ପାଇଁ ଗ୍ରେଟ୍‌ବ୍ରିଟେନ୍‌ର(Great Britain) କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ଜରନାଲକୁ ପଠାଇ ଦେଲି । କେତେ ମାସ ପରେ କାମଟି ସେହି ଜରନାଲରେ ପ୍ରକାଶିତ ହେବ ବୋଲି ମୋତେ ଜଣାଇ ଦିଆଯାଇ ଥିଲା । ସେହି ପ୍ରବନ୍ଧଟି କେତେଦିନ ପରେ ଛପା ହୋଇଗଲା । ସେହି ପ୍ରବନ୍ଧଟିରେ ଦର୍ଶାଇଥିଲି,୧୯୬୩ରେ ଡକ୍ଟର ବୁଟି ପ୍ରକାଶ କରିଥିବା ପ୍ରବନ୍ଧଟି ତ୍ରୁଟିଯୁକ୍ତ । ଡକ୍ଟର ବୁଟି ମୋ ପ୍ରବନ୍ଧରେ ତ୍ରୁଟିଅଛି ବୋଲି ମୋତେ ଲେଖି ଜଣାଇଲେ । ମୁଁ ତାଙ୍କୁ ମୋ ଚିଠିରେ, ମୋ ପ୍ରବନ୍ଧରେ ତ୍ରୁଟି ନ'ଥିବା ବିଷୟ ବୁଝାଇ ତାଙ୍କୁ ଜଣାଇ ଦେଲି । ସେ ମୋ ପାଖକୁ ଆଉ କିଛି ପତ୍ରାଳାପ କରିନାହାନ୍ତି ।

ସରକାରୀ ଘରେ ରହିବାର କିଛି ଦିନ ପରେ ଦିନେ ରାତି ନଅଟା ବେଳେ ରେଭେନ୍ସା କଲେଜର ଅଧ୍ୟକ୍ଷ ଗୋଟିଏ ଛୋଟ କାଗଜରେ ମୋ ପାଖକୁ ଲେଖି ପଠାଇଲେ, ଯେ ତୁମେ କାଲି ଠାରୁ ନୂଆ ଛାତ୍ରାବାସର ପରିଚାଳକ ହିସାବରେ ଦାୟିତ୍ୱ ନିଅ । ମୋର ପ୍ରାୟ ଦଶ ବର୍ଷ ପରିଚାଳକ ରହି ଆଉ ପରିଚାଳକ ହେବାକୁ ଇଚ୍ଛା ନଥିଲା । କିନ୍ତୁ ବାଧ୍ୟ ହୋଇ ପରିଚାଳକ ଦାୟିତ୍ୱ ନେଲି । ପ୍ରାୟ ମାସେ ଖଣ୍ଡେ ରହିଲା ପରେ ମୋର ରକ୍ତ ଚାପ ବଢ଼ିଗଲା ଓ ମୁଣ୍ଡ ବୁଲାଇଲା । ମୁଁ କେତେ ଦିନ ଛୁଟି ନେଲି । ତାପରେ ଜଣାଇଲି ମୁଁ ଆଉ ପରିଚାଳକ ରହି ପାରିବି ନାହିଁ । ସେ ଅସନ୍ତୁଷ୍ଟ ହେଲେ ଏବଂ ମୋତେ ପରିଚାଳକ କାର୍ଯ୍ୟରୁ ଅବ୍ୟାହତି ଦେଲେ । କିନ୍ତୁ ମୋତେ ଛଅ ମାସ ପର୍ଯ୍ୟନ୍ତ ଆଉ କିଛି କଥା କହିଲେ ନାହିଁ । ଗ୍ରେଟ୍‌ବ୍ରିଟେନ୍‌ରେ ମୋର ଯେଉଁ ଗବେଷଣାତ୍ମକ ପ୍ରବନ୍ଧଟି ପ୍ରକାଶିତ ହୋଇଥିଲା ତାର ରିପ୍ରିଣ୍ଟ ଗୁଡ଼ିକ ଆସି ପହଞ୍ଚିଲା । ମୁଁ ଦିନେ

ସକାଳୁ ସେଇ ରିପ୍ରିଣ୍ଟ୍ ମଧ୍ୟରୁ ଗୋଟିଏ ନେଇ ଅଧ୍ୟକ୍ଷଙ୍କୁ ଦେଲି । ସେ ବହୁତ ଖୁସି ହୋଇଗଲେ । ବିଶେଷ କରି ଗ୍ରେଟ୍‌ବ୍ରିଟେନ୍‌ରେ ପ୍ରକାଶିତ ହୋଇଥିବା ପ୍ରବନ୍ଧକୁ ଦେଖି ତାଙ୍କର ହୃଦ୍‌ବୋଧ ହେଲା ନାହିଁ, ଯେ ମୁଁ ନିଜେ କରିଛି ବୋଲି । ସେ ମୋତେ ପଚାରିଲେ ତମେ କଣ ଏହାକୁ ନିଜେ କରିଛ କିମ୍ବା ତ୍ରିଲୋଚନ ବାବୁଙ୍କ ସଙ୍ଗେ ମିଶି କରି କରିଛ ? ମୁଁ କହିଲି 'ମିଶିକରି କରିଥିଲେ ତାଙ୍କ ନାମ ଏଥିରେ ଲେଖା ହୋଇଥାଆନ୍ତା ।' ସେହି ଦିନ ଠାରୁ ମୋ ସହିତ ଭଲ ଭାବରେ କଥାବାର୍ତ୍ତା କଲେ । ଅଧ୍ୟକ୍ଷ ଡକ୍ଟର ରାଉତ ରାତିରେ ସବୁଦିନ କେମେଷ୍ଟ୍ରି ଡିପାର୍ଟମେଣ୍ଟରେ ଯାଇ ଗବେଷଣା କରନ୍ତି । ରାତିରେ ମୁଁ ଡିପାର୍ଟମେଣ୍ଟରୁ ଫେରିଲା ସମୟରେ ବେଳେ ବେଳେ ତାଙ୍କ ସାଙ୍ଗେ ମୋର ଦେଖା ହୋଇଯାଏ । ସେ ଘରକୁ ଫେରିବା ସମୟରେ ତାଙ୍କ ସାଙ୍ଗେ ଆଉ ୨/୩ ଜଣ କେମେଷ୍ଟ୍ରି ଅଧ୍ୟାପକ ଥାଆନ୍ତି । ସେ ସେମାନଙ୍କ ସାଙ୍ଗରେ କଲେଜ ପଡିଆ ଚାରିପାଖ ଥରେ ଦୁଇଥର ବୁଲନ୍ତି ।

## ଫିଜିକ୍ସ ଡିପାର୍ଟମେଣ୍ଟରୁ ଚୋରି

ଦିନେ ରାତିରେ ମୁଁ କଲେଜକୁ ଯାଇଛି, କଣ ଗୋଟାଏ ଖଡ ଖଡ ଶବ୍ଦ ହେଲା । ମୋତେ ଟିକିଏ ଡର ମଧ୍ୟ ଲାଗିଲା । ତାର କିଛି ସମୟ ପରେ ପୁଣି ଗୋଟିଏ ଦୁମ୍ କରି ଶବ୍ଦ ହେଲା । ସେତେବେଳେ ମୁଁ ଉପର ମହଲାର ଗୋଟିଏ କୋଠରୀରେ ବସି ପଢାପଢି କରୁଥିଲି । ସେ ଘରର ଦୁଆର ଫିଜିକ୍ସ ଡିପାର୍ଟମେଣ୍ଟରେ ଥିବା ଖୋଲା ରଙ୍ଗ ମଞ୍ଚ ଆଡକୁ ଥାଏ । ତେଣୁ ମୁଁ ଉପର ମହଲାର ସିଡି ଦୁଆର ଏବଂ ଡିପାର୍ଟମେଣ୍ଟର ଗ୍ରିଲ୍ ବନ୍ଦ କରି ଘରକୁ ଚାଲି ଆସିଲି । କିଛି ସମୟ ପରେ ଅଧ୍ୟକ୍ଷଙ୍କ ଚପରାସି ମୋତେ ଘରୁ ଡାକି କହିଲା ଅଧ୍ୟକ୍ଷ ଡାକୁଛନ୍ତି, ଆପଣ ଡିପାର୍ଟମେଣ୍ଟର ଚାବି ସାଙ୍ଗରେ ନେଇ ଆସନ୍ତୁ । ମୁଁ ସଙ୍ଗେ ସଙ୍ଗେ ଘରୁ ବାହାରି ଗଲି । ମୁଁ ଦେଖିଲି ଅଧ୍ୟକ୍ଷ ଓ ଆଉ ୨/୩ ଜଣ କେମେଷ୍ଟ୍ରି ଅଧ୍ୟାପକଙ୍କ ସାଙ୍ଗରେ ଆମ ଡିପାର୍ଟମେଣ୍ଟର ଗ୍ରିଲ୍ ଗେଟ ଆଗରେ ଛିଡା ହୋଇଛନ୍ତି । ମୁଁ ସେଠାରେ ପହଁଞ୍ଚିବାରୁ ଅଧ୍ୟକ୍ଷ ପଚାରିଲେ ତୁମେ ଡିପାର୍ଟମେଣ୍ଟ ଯାଇ ନଥିଲ କି ? ମୁଁ ହଁ କଲି କିନ୍ତୁ ଟିକିଏ ଡର ଲାଗିବାରୁ ଚାଲି ଆସିଲି । ଅଧ୍ୟକ୍ଷ କହିଲେ ମୁଁ ଶୁଣିପାରିଲି ଗୋଟିଏ ଲୋକ ମରିଗଲି ମରିଗଲି ପାଟି କରୁଥିଲା । ମୁଁ ଜାଣି ପାରିଲି ନାହିଁ କେଉଁଠାରୁ ପାଟି ଶୁଭୁଛି । କିନ୍ତୁ ମୁଁ ଅନୁମାନ କଲି ଫିଜିକ୍ସ ଡିପାର୍ଟମେଣ୍ଟ ନିକଟରୁ ପାଟି ଆସୁଛି । ଆମେ ଚାବି ଖୋଲି ଫିଜିକ୍ସ ଡିପାର୍ଟମେଣ୍ଟ ଭିତରେ ପଶିଲୁ ଏବଂ ଖୋଜା ଖୋଜି କଲୁ । ଆମେ ଦେଖିଲୁ ଖୋଲା ମଞ୍ଚ ପାଖରେ ଗୋଟିଏ ସିଲିଙ୍ଗ ଫ୍ୟାନ୍ ପଡିଛି ଏବଂ ଗୋଟିଏ ଲୋକ ପଙ୍ଖାର ଅଳ୍ପ ଦୂରରେ ପଡି ବେହୋସ୍ ହୋଇଯାଇଛି । ଅଧ୍ୟକ୍ଷ ଅନ୍ୟ ମାନଙ୍କୁ ଡାକି ତାକୁ ଡାକ୍ତରଖାନା ପଠାଇ ଦେଲେ ଏବଂ ପୋଲିସ୍‌କୁ ଖବର ଦେଇଦେଲେ । ପରେ ଆମେ ଆଲୋଚନା କରି ଜାଣିପାରିଲୁ ମୁଁ ଡିପାର୍ଟମେଣ୍ଟର ଉପର ଦୁଆର ଖୋଲି କିଛି ସମୟ ଗଲା ପରେ ସେ ଲୋକଟି ଡିପାର୍ଟମେଣ୍ଟର ଉପର ମହଲାକୁ ଯାଇଛି ଏବଂ ଇଲେକ୍‌ଟ୍ରୋନିକ୍ସ ଲାବୋରାଟୋରିର ତାଲା ଭାଙ୍ଗିଛି । ତାଲା ଭଙ୍ଗା ଶବ୍ଦ ମୁଁ ଶୁଣିଛି । ସେ ଇଲେକ୍‌ଟ୍ରୋନିକ୍ସ ଲାବୋରାଟୋରିରୁ ଗୋଟିଏ ପଙ୍ଖା ଖୋଲି ସେ ଝରକା ବାଟେ ପକାଇ ଦେଇଛି । ପଙ୍ଖା ପକାଇବା ଶବ୍ଦ ମୁଁ ଶୁଣିଛି । ତେଣୁ ଡରି କରି ଉପର ମହଲା ଦୁଆର ବନ୍ଦ କରିଚାଲି ଆସିଛି । ସେତେବେଳେ ସେ ଇଲେକ୍‌ଟ୍ରୋନିକ୍ସ ଲାବୋରାଟୋରି ଭିତରେ କେଉଁଠି ଲୁଚି ଯାଇଛି, ମୁଁ ଜାଣି

ପାରିଲି ନାହିଁ । ମୁଁ ତାଲା ପକାଇ ଆସିଲା ପରେ ତାର ଉପର ମହଲାରୁ ଓହ୍ଲାଇବା ପାଇଁ ଆଉ ବାଟ ନଥିଲା । ତେଣୁ ଇଲେକ୍ଟ୍ରୋନିକ୍ସ ଲାବୋରାଟୋରିରୁ ବାହାରି ୱେଷ୍ଟ ପାଇପ୍‌କୁ ଧରି ତଳକୁ ଓହ୍ଲାଉଥିଲା । କିନ୍ତୁ ଦୁର୍ଭାଗ୍ୟ ବଶତଃ ସେ ତଳକୁ ଖସି ପଡିଲା ଏବଂ ତାର ଅଣ୍ଟାରେ ଅଘାତ ହେବାରୁ ଉଠି ନ ପାରି ମରିଗଲି ମରିଗଲି ବୋଲି ଚିତ୍କାର କରି ବେହୋସ ହୋଇ ଯାଇଥିଲା । ତା ନାଁରେ ପୋଲିସ୍ କେସ୍ ଚାଲିଲା । ମୁଁ ଥରେ କୋର୍ଟରେ ସାକ୍ଷ୍ୟ ଦେବାକୁ ଯାଇଥିଲି । ତାକୁ ବୋଧେ କେତେ ଦିନ ଜେଲ୍ ହୋଇଗଲା । ଏଇ ଘଟଣା ପରେ ଅଧ୍ୟକ୍ଷଙ୍କ ଧାରଣା ମୋ ଉପରେ ଖୁବ୍ ଭଲ ହୋଇ ଯାଇଥିଲା । ଏହା ଭିତରେ ପ୍ରାୟ ଏକ ବର୍ଷ ବିତି ଯାଇଥିଲା । ସେତେବେଳେ ଡକ୍ଟର ଶ୍ରୀରାମ ମୂର୍ତ୍ତି ମୁଖ୍ୟ ଅଧ୍ୟାପକ ପଦରୁ ବିଦାୟ ନେଇ ଗଙ୍ଗାଧର ମେହେର କଲେଜ ସମ୍ବଲ ପୁରରେ ଅଧ୍ୟକ୍ଷ ଭାବରେ ଯୋଗ ଦେଇଥିଲେ । ଡକ୍ଟର ହରିହର ମିଶ୍ର ଫିଜିକ୍ସ ଡିପାର୍ଟମେଣ୍ଟର ମୁଖ୍ୟ ଅଧ୍ୟାପକ ରୂପେ ଯୋଗ ଦେଇଥିଲେ ।

## ପ୍ରାୟୋଗିକ ପ୍ଲାଜମା ଫିଜିକ୍ସରେ ଗବେଷଣା ଆରମ୍ଭ

ଶ୍ରୀ କୃତିବାସ ମହାନ୍ତି ନାମକ ଅଧ୍ୟାପକ ବଦଳି ହୋଇ ଫିଜିକ୍ସ ଡିପାର୍ଟମେଣ୍ଟରେ ଯୋଗ ଦେଲେ । ସେ ମୋର ଅନର୍ସ ଏବଂ ପୋଷ୍ଟ ଗ୍ରାଜୁଏଟ୍ କ୍ଲାସ୍‌ର ଛାତ୍ର ଥିଲେ । ସେ ବେଳେ ବେଳେ ମୋ କୋଠରୀକୁ ଆସନ୍ତି ଏବଂ ଗବେଷଣା ବିଷୟରେ ଆଲୋଚନା କରନ୍ତି । ସେ ହଠାତ୍ ଦିନେ କହିଲେ, ଆଉ ଏ ବୟସରେ ତାତ୍ତ୍ୱିକ ବିଷୟରେ ଗବେଷଣା କରିହେବ ନାହିଁ । ମୋତେ ପଚାରିଲେ ଆପଣଙ୍କ ଭଲ ପ୍ରୟୋଗାତ୍ମକ ପରୀକ୍ଷା ମୂଳକ କାର୍ଯ୍ୟ କରିବାକୁ ଭଲ ପାଆନ୍ତି । ଆପଣ କାହିଁକି ପ୍ଲାଜମା ଫିଜିକ୍ସରେ ତାତ୍ତ୍ୱିକ ଗବେଷଣା କଲେ ? ମୁଁ କହିଲି ଘଟଣା ଚକ୍ରରେ ପଡି ତାତ୍ତ୍ୱିକ ଗବେଷଣା କଲି । ସେ ମୋତେ ଅନୁରୋଧ କଲେ ଆପଣ ପ୍ଲାଜମା ଫିଜିକ୍ସର ପ୍ରାୟୋଗିକ ଗବେଷଣା କଲେ, ମୁଁ ଆପଣଙ୍କ ପାଖରେ କାମ କରିବି ଏବଂ ସବୁ ଗବେଷଣା ସମ୍ବନ୍ଧୀୟ କାମ ନିଜେ କରିଦେବି । ମୁଁ ତାଙ୍କୁ କହିଲି ପ୍ଲାଜମା ଫିଜିକ୍ସର ପ୍ରାୟୋଗିକ ଗବେଷଣା କେବେ କରିନାହିଁ କିମ୍ବା କେଉଁଠାରେ ହେବାର ମୁଁ ଦେଖିନାହିଁ । ମନକୁ ମନ ମୁଁ ଏହା କିପରି କରିବି ? ତେଣୁ ବହି ପତ୍ର ଦେଖା ଦେଖି କରି ଦୁଇ ତିନି ମାସ ପରେ ମୁଁ ତୁମକୁ କହିବି ।

ଏହି ସମୟରେ ଶୁଭେନ୍ଦୁ ମହାନ୍ତି ନାମକ ମୋର ଜଣେ ଛାତ୍ର ଆମେରିକାରୁ ଓଡିଶା ଆସି ଥାଆନ୍ତି । ତାଙ୍କ ସହିତ ମୋର ଥରେ ଦେଖା ହୋଇଗଲା । ମୁଁ ତାଙ୍କ ଠାରୁ ପ୍ରାୟୋଗିକ ପ୍ଲାଜମା ପରୀକ୍ଷା ବିଷୟରେ କିଛି ଜାଣିବାକୁ ଚାହିଁଲି । ସେ କହିଲେ ମୁଁ ଡକ୍ଟର ତାରାପଦ ଦାସ୍‌ଙ୍କ ତତ୍ତ୍ୱାବଧାନରେ ସଲିଡ ଷ୍ଟେଟ ଫିଜିକ୍ସରେ ଗବେଷଣା କରୁଛି । ତେବେ ମୁଁ ଜାଣିଛି ପ୍ଲାଜମା ଡାଇଗ୍ନୋଷ୍ଟିକ୍ ଟେକ୍‌ନିକ୍ (Plasma Diagnostuc Techniques) ନାମକ ଗୋଟିଏ ବହି ଏକାଡେମିକ୍ ପ୍ରେସ (Academic Press) ଛପାଇଛନ୍ତି । କିନ୍ତୁ ସେ ବହିକୁ ମୁଁ ଦେଖିନାହିଁ । ତାଙ୍କୁ ମୋ ପାଇଁ ଖଣ୍ଡିଏ ବହି ଆମେରିକାରୁ ପଠାଇ ଦେବା ପାଇଁ କହିଲି । ସେତେବେଳକୁ ଇନିଷ୍ଟିଚ୍ୟୁଟ୍ ଅଫ ଫିଜିକ୍ସ ଭୁବନେଶ୍ୱର ଠାରେ ସ୍ଥାପିତ ହୋଇଥିଲା । ମୋର ଗାଇଡ୍ ଡକ୍ଟର ତ୍ରିଲୋଚନ ପ୍ରଧାନ୍ ଇନିଷ୍ଟିଚ୍ୟୁଟ୍ ଅଫ ଫିଜିକ୍ସର ଡାଇରେକ୍ଟର ଥାଆନ୍ତି । ମୁଁ ଦିନେ ଇନିଷ୍ଟିଚ୍ୟୁଟ ଅଫ ଫିଜିକ୍ସ ଆସି ତାଙ୍କ ଲାଇବ୍ରେରୀରେ ପ୍ଲାଜମା ସମ୍ବନ୍ଧୀୟ କୌଣସି

ପ୍ରାୟୋଗିକ ପରୀକ୍ଷା ମୂଳକ ବହି ଅଛି କି ନାହିଁ ଖୋଜିଲି । 'ବିଲେଇ କପାଳକୁ ଶିକା ଛିଣ୍ଡିଲା' ଭଳି ମୁଁ ଗୋଟିଏ ବହି ପାଇଗଲି । ତାର ନାମ ହେଉଛି 'ଇଲେକ୍ଟ୍ରିକାଲ ପ୍ରୋବ ଫର ପ୍ଲାଜମା ଡାଇଗ୍ନୋଷ୍ଟିକ୍' (Electrical Probes for Plasma Diagnostics) । ଡକ୍ଟର ପ୍ରଧାନଙ୍କୁ କହି ତାଙ୍କ ନାମରେ ବହିଟି ନେଇ ଆସିଲି ଏବଂ ସେ ବହିଟିକୁ ପଢା ପଢି କଲି । ସେ ବହିର ଗୋଟିଏ ଜେରକ୍ସ କପି କରି ନିଜ ପାଖରେ ରଖିଲି । ବହିଟିକୁ ଇନିଷ୍ଟିଚ୍ୟୁଟ୍ ଅଫ ଫିଜିକ୍ସରେ ଫେରାଇ ଦେଲି । ସେହି ବହିଟିକୁ ମୁଁ ପ୍ରାୟ ଚାରି ଛଅ ମାସ ପର୍ଯ୍ୟନ୍ତ ପଢାପଢି କରି ଗବେଷଣା କରିବାର ତତ୍ତ୍ୱ ଗୁଡିକ ପରୀକ୍ଷା କରିବା ପାଇଁ ଚେଷ୍ଟା କଲି । ପ୍ଲାଜମା କୋଠରୀରେ ପ୍ଲାଜମା ସୃଷ୍ଟି କରିବା ହେଉଛି ପ୍ରଧାନ କାମ । ଏହି ପ୍ଲାଜମା କୋଠରୀରେ ପ୍ଲାଜମା ସୃଷ୍ଟି କରିବା ପାଇଁ ଗୋଟିଏ ଭ୍ୟାକୁମ୍ କୋଠରୀ ସହିତ ଭ୍ୟାକ୍ୟୁମ୍ ପମ୍ପ ଏବଂ ଉଚ୍ଚ ଭୋଲଟ୍‌ର ଡି.ସି ପାୱାର ସପ୍ଲାଇ ଦରକାର । ଏହା ବ୍ୟତିତ ଆମିଟର, ଭୋଲଟ୍‌ମିଟର ଓ ଅନ୍ୟ କେତେକ ଛୋଟ ଉପକରଣ ଦରକାର ପଡିଲା । ଏହି ସମୟରେ ଡିପାର୍ଟମେଣ୍ଟର ଦରକାର ପଡିବାରୁ ମୁଖ୍ୟ ଅଧ୍ୟାପକ ମୋତେ ଉପର ମହଲାର ଅନ୍ୟ ଗୋଟିଏ କୋଠରୀରେ ଗବେଷଣା କରିବା ପାଇଁ କହିଲେ । ସେହି କୋଠରୀଟି ଡିପାର୍ଟମେଣ୍ଟର ରାସ୍ତା ଆଡକୁ ମୁହଁ କରିଥାଏ । ସେହି କୋଠରୀଟି ମୋ କାମ ପାଇଁ ସୁବିଧା ହେଲା । ପ୍ରଥମେ ପ୍ଲାଜମା କୋଠରୀଟି ଇବୋନାଇଟ୍ ପ୍ଲେଟ ସାହାଯ୍ୟରେ ଗୋଟିଏ ଚାରିକୋଣିଆ ବାକ୍ସ ଅଧ୍ୟାପକ କୃତିବାସ ମହାନ୍ତିଙ୍କ ସଙ୍ଗେ ମିଶି ୱାର୍କ ସପ୍‌ରେ ତିଆରି କଲି । ଏହି ବାକ୍ସ ତିଆରି କରିବା ପାଇଁ ମେକାନିକ୍ ଶ୍ରୀ ଗୋବିନ୍ଦ ଚନ୍ଦ୍ର ମହାନ୍ତି ଓ ମହମ୍ମଦ ନସିମ୍ ଆମକୁ ବହୁତ ସାହାଯ୍ୟ କରିଥିଲେ । ଚ୍ୟାମ୍ବରଟି ତିଆରି ହୋଇଗଲା ପରେ ଡିପାର୍ଟମେଣ୍ଟରୁ ଖୋଜା ଖୋଜି କରି ଗୋଟିଏ କାମରେ ଲାଗୁ ନଥିବା ଭ୍ୟାକୁମ୍ ପମ୍ପ କୋଠରୀକୁ ଆଣିଲି । ତାକୁ ଚ୍ୟାମ୍ବର ସହିତ ଭୂସଂଯୁକ୍ତ କରି ବାୟୁ ଶୂନ୍ୟ କରିବାକୁ ଚେଷ୍ଟା କଲି । ପମ୍ପଟି ଚାଲୁଥାଏ କିନ୍ତୁ ଦରକାର ମୁତାବକ ଭ୍ୟାକୁମ୍ କରି ପାରୁ ନଥାଏ । ତେଣୁ ନସିମ୍‌କୁ ଡାକି ପମ୍ପଟି ଖୋଲା ଖୋଲି କରି ତାକୁ ଠିକ୍ ଭାବରେ କାର୍ଯ୍ୟକ୍ଷମ କରିବାକୁ ଚେଷ୍ଟା କଲୁ । କିନ୍ତୁ ଜାଣିଲି ସେହି ପମ୍ପରେ ବ୍ୟବହୃତ ହେଉଥିବା ତେଲ ଦରକାର ମୁତାବକ ନଥିଲା । ସେହି ପମ୍ପ ତେଲ ଡିପାର୍ଟମେଣ୍ଟ ଷ୍ଟୋରରେ ମଧ୍ୟ ନଥିଲା । କଟକ ସହର ସାରା ଖୋଜା ଖୋଜି କରି ହାତରୁ ପଇସା ଦେଇ କିଛି ତେଲ ଆଣିଲି । ପମ୍ପରେ ନିର୍ଦ୍ଦିଷ୍ଟ ପରିମାଣର ତେଲ ପକାଇ ଦେବାରୁ ପମ୍ପଟି ଠିକ୍ ଭାବରେ ଚାଲିଲା ଏବଂ ପମ୍ପଟି ଦରକାର ମୁତାବକ ଭ୍ୟାକୁମ୍ କରି ପାରୁଛି ବୋଲି ମୋର ମନେ ହେଲା । ଷ୍ଟୋରରେ ଗୋଟିଏ ନିମ୍ନ ଚାପ ମାପିବା ଯନ୍ତ୍ର ଥିଲା । ସେହି ଯନ୍ତ୍ରକୁ କହନ୍ତି ମାକ୍‌ଲଏଡ ଗଜ (Mcleod gauge) । ସେହି ଯନ୍ତ୍ରଟିକୁ ମୋ କୋଠରୀକୁ ଆଣିଲି । ସେଥିରେ ଚାପ ମାପିବାକୁ ଚେଷ୍ଟା କରିବା ସମୟରେ ଜାଣିବାକୁ ପାଇଲି ଯେ ଗଜ୍ ଭିତରେ ଥିବା ପାରଦ ଟକ ମଇଳା ହୋଇଯାଇଛି । ବହୁ କଷ୍ଟରେ ପାରଦ ଟକ ତା ଭିତରୁ ବାହାର କରି ଗୋଟିଏ ଜାଗାରେ ରଖିଲି । ମୁଁ ଜାଣିଥିଲି ପାରଦକୁ ସଫା କରିବା କଷ୍ଟ ସାଧ୍ୟ । ତେଣୁ ସେହି ପାରଦକୁ ଡିପାର୍ଟମେଣ୍ଟ ଷ୍ଟୋରରେ ଫେରାଇ ଦେଇ ନୂଆ ସଫା ପାରଦ ଆଣିଲି ଏବଂ ତାକୁ ଗଜ ଭିତରେ ନିର୍ଦ୍ଦିଷ୍ଟ ଉପାୟରେ ଓ ନିର୍ଦ୍ଦିଷ୍ଟ ପରିମାଣରେ ପୁରାଇଲି । ଦେଖିଲି ଗଜ୍ ଠିକ୍ ଭାବରେ କାମ କରୁଛି । କିନ୍ତୁ ଜାଣିଲି ଏହି ଗଜ୍‌ଟି ମୋ କାମକୁ ଉପଯୁକ୍ତ ନୁହେଁ । କାରଣ ସେହି ଗଜ୍‌ଟି ବହୁତ କମ୍ ଚାପ

ମାପିବା ପାଇଁ ଉପଯୁକ୍ତ । ତେଣୁ କେମେଷ୍ଟ୍ରି ଲାବୋରାଟୋରୀର ଜଣେ ଗ୍ଲାସ ବ୍ଲୋୟାରଙ୍କ (Blower) ସାହାଯ୍ୟରେ ସେହିପରି ଗୋଟିଏ ଛୋଟିଆ ଗଜ୍ ତିଆରି କଲି । ସେଥିପାଇଁ ମୋତେ କିଛି ପାରିଶ୍ରମିକ ହାତରୁ ଦେବାକୁ ପଡିଥିଲା । ସେହି ଗଜ୍‌ଟିରେ ମୋର ଦରକାର ହେଉଥିବା ଚାପ ମାପିବା କାମ ଚଳିଯିବ । ତାପରେ ମୋର କାମ ପାଇଁ ୧୦୦୦ ଭୋଲଟ୍ ବିଶିଷ୍ଟ ପାଓ୍ୱାର ସପ୍ଲାଇ ଦରକାର ପଡିଲା । ସେଭଳି ପାଓ୍ୱାର ସପ୍ଲାଇ ଡିପାର୍ଟମେଣ୍ଟରେ ନ ଥିଲା । ତେଣୁ ମୋ କାମ ପ୍ରାୟ ବନ୍ଦ ହୋଇଗଲା । ଦିନେ ହଠାତ୍ ମୋ ମନକୁ ଆସିଲା ରମ୍‌କୋର୍ଫ୍ ଇଣ୍ଡକ୍‌ସନ୍ କଏଲ (Ruhmkorff's induction coil)ଦ୍ୱାରା ବୋଧେ କାମ ହୋଇ ପାରିବ । ଇଣ୍ଡକ୍‌ସନ୍ କଏଲ ଲାବୋରାଟୋରୀରେ ବହୁତ ଥାଏ । ସେଥିରୁ ଗୋଟିଏ ଆଣି ପରୀକ୍ଷା କରିବାକୁ ଚେଷ୍ଟା କଲି । ପ୍ଲାଜମା ସୃଷ୍ଟି କରି ତାର ଧର୍ମ ମାପିବା ପାଇଁ ଚେଷ୍ଟା କଲି, କିନ୍ତୁ ମାପି ପାରିଲି ନାହିଁ । କାରଣ ଇଣ୍ଡକ୍‌ସନ୍ କଏଲର ଭୋଲଟେଜ୍ ପ୍ରତି ମୁହୂର୍ତ୍ତରେ ପରିବର୍ତ୍ତିତ ହେଉଥାଏ । ଯଦିଓ ମାପି ପାରିଲି ନାହିଁ କିନ୍ତୁ ଜାଣି ପାରିଲି ଯେ ସ୍ଥିର ଭୋଲଟେଜ୍‌ର ଗୋଟିଏ ପାଓ୍ୱାର ସପ୍ଲାଇ ହୋଇଗଲେ ମୁଁ ଗବେଷଣା କରି ପାରିବି । ଡିପାର୍ଟମେଣ୍ଟରେ ଖୋଜା ଖୋଜି କରି ପୁରୁଣା ଉପକରଣ ରହୁଥିବା ସ୍ଥାନରେ ଏକ ଉଚ୍ଚ କ୍ଷମତା ସମ୍ପନ୍ନ ପୋଡା ପାଓ୍ୱାର ସପ୍ଲାଇ ପାଇଲି । ସେହି ସମୟରେ ଡିପାର୍ଟମେଣ୍ଟର ମୁଖ୍ୟଙ୍କୁ କହି ପୋଡା ପାଓ୍ୱାର ସପ୍ଲାଇଟି କୋଠରୀକୁ ଆଣିଲି । ଆମ ଡିପାର୍ଟମେଣ୍ଟର ଓ୍ୱାର୍କସପ୍‌ରେ କାମ କରୁଥିବା ମେକାନିକ୍ ଶ୍ରୀ କେଶବ ମହାରଣାଙ୍କୁ ପାଓ୍ୱାରସପ୍ଲାଇ ତିଆରି କରିବାକୁ କହିଲି । ସେ ତାକୁ ଦେଖି କେତୋଟି ଉପକରଣ କିଣି ଆଣି ଦେବାକୁ ମୋତେ କହିଲେ । ମୁଁ ତାଙ୍କୁ ହାତରୁ କିଛି ପଇସା ଦେଇ ସେହି ସବୁ ଉପକରଣ କିଣି ଆଣିବାକୁ କହିଲି । ଦୁଇ ତିନି ଦିନ ଭିତରେ ପାଓ୍ୱାର ସପ୍ଲାଇଟି ତିଆରି ହୋଇଗଲା । ତା ସାହାଯ୍ୟରେ ମୁଁ ପ୍ଲାଜମା ଧର୍ମ ଜାଣିବା ପାଇଁ ଚେଷ୍ଟା କଲି ।

୧୯୭୬ ମସିହାରେ ଡକ୍ଟର ସେନ୍ ନାମକ ଜଣେ ବେଙ୍ଗଲି ସ୍ତ୍ରୀ ଲୋକ ରେଭେନ୍ସା କଲେଜରେ ଫେଲୋସିପ୍ ପାଇ ଗବେଷଣା କରିବା ପାଇଁ ଡିପାର୍ଟମେଣ୍ଟକୁ ଆସିଲେ । ପ୍ରଫେସର ତାଙ୍କୁ ମୋ କୋଠରୀରେ ତାଙ୍କ ଉପକରଣ ରଖି ଗବେଷଣା କରିବା ପାଇଁ ଅନୁମତି ଦେଲେ । ମୁଁ ସେଥିରେ ରାଜି ହେଲି । ଡକ୍ଟର ସେନ୍ ଦିଲ୍ଲୀଠାରେ ନ୍ୟାସନାଲ ଫିଜିକାଲ ଲାବୋରାଟୋରୀରେ ଫେଲୋସିପ୍ ପାଇ ଗବେଷଣା କରୁଥିଲେ । ତାଙ୍କ ଗବେଷଣାର ବିଷୟ ବସ୍ତୁ ହେଉଛି ଥିନ୍ ଫିଲିମ୍ (Thin Fillm) । ସେ ଏହା ତିଆରି କରି ତାହା ଉପରେ ପରୀକ୍ଷା କରୁଥିଲେ । ତାଙ୍କ ସ୍ୱାମୀ କଟକରେ ଅବସ୍ଥିତ ଧାନ ଗବେଷଣା କେନ୍ଦ୍ରରେ ଚାକିରୀ କରୁଥିଲେ । ତେଣୁ ସେ ଦିଲ୍ଲୀରୁ ଆସି ରେଭେନ୍ସା କଲେଜରେ ଗବେଷଣା କରିବା ପାଇଁ ଠିକ୍ କଲେ । ସେ ମୋ କୋଠରୀରେ କାମ କରିବାରୁ ତାଙ୍କ ଠାରୁ ନିମ୍ନ ଚାପ ସୃଷ୍ଟି କରିବାର କେତେକ କୌଶଳ ମୁଁ ଜାଣି ପାରିଲି । ତାଙ୍କ କହିବା ଅନୁସାରେ କାଚ ନଳୀରେ ପ୍ଲାଜମା ପ୍ରକୋଷ୍ଠଟି କରିବା ପାଇଁ କାଚ ନଳୀ ବ୍ୟବହାର କଲି । ମୁଁ ନିମ୍ନ ଚାପ ପ୍ରସ୍ତୁତ କରି ନିର୍ଦ୍ଦିଷ୍ଟ ଚାପ ସ୍ଥିର ଭାବରେ ରଖିବା ପାଇଁ ଏକ ଲମ୍ବା ଥର୍ମୋମିଟରକୁ ଆଣି ବିଭିନ୍ନ ଲମ୍ବା ବିଶିଷ୍ଟ ଥର୍ମୋମିଟର ନଳୀକୁ ଏକ ରବର ନଳୀରେ ସଂଯୁକ୍ତ କରି ପ୍ରକୋଷ୍ଠର ଚାପ ଭିନ୍ନ ଭିନ୍ନ ପରିମାଣର ସୃଷ୍ଟି କରୁଥିଲି । ସେଥିରେ ମୋର ଅସୁବିଧା ହେଉଥିଲା । ସେ ମୋତେ ପ୍ରବର୍ତ୍ତାଇଲେ ଏକ ନିଡିଲ ଭଲଭ୍ (Needle valve) ପ୍ଲାଜମା

କୋଠରୀରେ ଲଗାଇଲେ କାମ କରିବା ପାଇଁ ସୁବିଧା ହେବ । ନିଡିଲ୍ ଭଲବ୍ ହିନ୍ଦ ହାଇ ଭ୍ୟାକୁମ୍ ପ୍ରସ୍ତୁତ କରୁଛି । ଆହୁରି ଜଣାଇଲେ ବିଭିନ୍ନ ବ୍ୟାସର କେତେ ଗୁଡିଏ 'ନିଓପ୍ରିନ୍ ଓ ରିଙ୍ଗ' (Neoprene 'O' ring) ମଗାଇ ପାଖରେ ରଖିଥିଲେ ପ୍ରକୋଷ୍ଠଟି ତିଆରି କରିବା ପାଇଁ ସୁବିଧା ହେବ । ଆଉ କେତେ ପ୍ରକାରର ଭଲବ୍ (Valve) ମୋତେ କିଣିବାକୁ କହିଲେ । ମୁଁ ତାଙ୍କ ଠାରୁ ଏସବୁ ଶୁଣି ତାଙ୍କୁ କହିଲି ଏସବୁ କିଣିବା ପାଇଁ ବହୁତ ଟଙ୍କା ଦରକାର ହେବ । ତେଣୁ ମୁଁ ଏତେ ଟଙ୍କା ହାତରୁ ଖର୍ଚ୍ଚ କରି ପାରିବି ନାହିଁ । ସେ ମୋତେ ମନ୍ତ୍ରଣା ଦେଲେ ଆପଣ ଇଉନିଭରସିଟି ଗ୍ରାଣ୍ଟ୍ସ କମିଶନଙ୍କୁ ଟଙ୍କା ଅନୁଦାନ ଆକାରରେ ଦେବା ପାଇଁ ଦରଖାସ୍ତ କରନ୍ତୁ । ସେଥିପାଇଁ ଏକ ପରିଯୋଜନା (Project) ପ୍ରସ୍ତୁତ କରି ଆନୁମାନିକ ଖର୍ଚ୍ଚ ଓ ପରିଯୋଜନାର ରେଖାଚିତ୍ର ତିଆରି କରି ଇଉନିଭରସିଟି ଗ୍ରାଣ୍ଟ୍ସ କମିଶନଙ୍କୁ ଦରଖାସ୍ତ କରନ୍ତୁ । ଟଙ୍କା ମିଳିବାରେ କିଛି ଅସୁବିଧା ହେବ ନାହିଁ । ତାଙ୍କ କହିବା ଅନୁସାରେ ମୁଁ ଏକ ପରିଯୋଜନା ତିଆରି କରିବାକୁ ଚେଷ୍ଟା କଲି ।

ଏହି ଗବେଷଣା କରିବା ସମୟରେ ମୁଁ ତାତ୍ତ୍ୱିକ କାମ ମଧ୍ୟ କରୁଥାଏ । ଯେଉଁ କାମଟି ଜିତେନ୍ ବାବୁଙ୍କୁ ଦେବି ବୋଲି ମନସ୍ଥ କରିଥିଲି, ସେ କାମଟିର ସମାଧାନ ହୋଇଗଲା । ମୁଁ ଜିତେନ୍ ବାବୁଙ୍କୁ ସେ କାମଟି ବୁଝାଇ ଦେଲି ଏବଂ ସମାଧାନ କରିବାର ଉପାୟଟି ବତାଇ ଦେଇ ତୁମେ ସମାଧାନ କର ବୋଲି କହିଲି । ସେ ସମାଧାନ କରି ପାରିଲେ ନାହିଁ । ତେଣୁ ମୋତେ ସେଇଟା ସମାଧାନ କରିବାକୁ ପଡିଲା । ସମାଧାନ କରି ତାକୁ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟର ଜରନାଲ ଅଫ ପ୍ଲାଜମା ଫିଜିକ୍ସକୁ (Journal of Plasma Physics) ଛପାଇବା ପାଇଁ ପଠାଇ ଦେଲି । ତାର ତାରିଖ ମୋର ଠିକ୍ ମନେ ନାହିଁ ।

## ପ୍ରାୟୋଗିକ ପ୍ଲାଜମା ଫିଜିକ୍ସରେ ମୋର ପ୍ରଥମ ଗବେଷଣା

ଏହା ଭିତରେ ଏଲ୍.ଡି.ପି ରାଏ ନାମକ ଜଣେ ଇଞ୍ଜିନିୟରିଂ ସ୍କୁଲ୍‌ର ଡେମୋନ୍‌ଷ୍ଟ୍ରେଟର ମୋ ତତ୍ତ୍ୱାବଧାନରେ ପ୍ଲାଜମା ଫିଜିକ୍ସରେ ପ୍ରାୟୋଗିକ ଗବେଷଣା କରିବାକୁ ମୋତେ ଅନୁରୋଧ କଲେ । ସେତେବେଳେ ଆମ ଡିପାର୍ଟମେଣ୍ଟର କେତେକ ଅଧ୍ୟାପକ ମୋତେ ଛିଗୁଲାଇ କହୁଥିବାର ମୁଁ ଶୁଣିଛି, କୁଟା କାଠିରେ କି ପ୍ଲାଜମା ଗବେଷଣା ହୁଏ ? ଆଉ କେତେକ ମୋତେ ଉପଦେଶ ଦେଉ ଥାଆନ୍ତି ତମେ ପ୍ରାୟୋଗିକ କାମରେ ମନ ନ ଦେଇ ତାତ୍ତ୍ୱିକ କାମରେ ମନ ଦିଅ । ମୋର ପ୍ରାୟୋଗିକ କାମ କରିବା ପାଇଁ ଦୃଢ଼ ଇଚ୍ଛା ଶକ୍ତି ଥିବାରୁ ସେ କାମରୁ ନିବୃତ ହେବାକୁ ଇଚ୍ଛା ହେଉ ନ ଥାଏ । କିନ୍ତୁ ଯେଉଁମାନେ ଉପଦେଶ ଦେଉଥାଆନ୍ତି ତାଙ୍କୁ କିଛି କହେ ନାହିଁ । ଏହିଭଳି ଭାବରେ ମୁଁ ମୋର ଗବେଷଣା କରୁଥାଏ । ଗବେଷଣା ସାଙ୍ଗକୁ କଲେଜର ସବୁ ଦାୟିତ୍ୱ ତୁଲାଉ ଥାଏ । ପିଲାଙ୍କ କ୍ଲାସ୍‌ରେ କେବେ ହେଳା କରୁ ନଥାଏ । ସେତେବେଳେ ମୁଁ ପୋଷ୍ଟଗ୍ରାଜୁଏଟ୍‌ର ଷ୍ଟାଟିସ୍‌ଟିକାଲ ମେକାନିକ୍ସ (Statistical Mechanics) ଏବଂ ପ୍ରଥମ ବାର୍ଷିକ କ୍ଲାସ୍‌ରେ ଆଲୋକ ବିଷୟ ପଢାଉ ଥିଲି ।

- ସେହି ସମୟରେ ମୋର ଭୁବନେଶ୍ୱର ଘରର ଉପର ମହଲାରେ ବିକ୍ରମ ଆଚାର୍ଯ୍ୟ ନାମକ ଜଣେ ବ୍ୟକ୍ତି ଭଡା ନେଇ ରହୁଥାଆନ୍ତି ଏବଂ ତଳ ମହଲାର ଡାହାଣ ପଟେ ମୋର ସଢୁ ଶ୍ରୀ ଲୋକନାଥ ମହାପାତ୍ର ରହୁଥିଲେ । ତଳ ଘରର ପୂର୍ବ ପଟେ ପାତ୍ର ବାବୁ ନାମକ ଜଣେ

ବ୍ୟବସାୟୀ ଭଡାରେ ରହୁଥିଲେ । ଏହାର କେତେଦିନ ଆଗରୁ ଭୁବନେଶ୍ୱରର ମୋ ଘରେ ବିକ୍ରମ ଆଚାର୍ଯ୍ୟ ନାମକ ଯେଉଁ ବ୍ୟକ୍ତି ଭଡା ନେଇ ଥିଲେ ମୁଁ ଉପରେ ଅଧିକ ଘର ତିଆରି କରିବା ପାଇଁ ତାଙ୍କୁ ଘର ଛାଡିବା ପାଇଁ ବାରମ୍ବାର ଅନୁରୋଧ କରୁଥିଲି । ବିକ୍ରମ ଆଚାର୍ଯ୍ୟଙ୍କର ଜଣେ ସମ୍ପର୍କୀୟ ମୋ ଘରେ ରହୁଥିଲେ । ସେ କ୍ୟାପିଟାଲ ଥାନାର ସବ୍‌ଇନିସ୍‌ପେକ୍ଟର ଥିଲେ । ସେ କହିଲେ ମୁଁ ନିକଟରେ ଘର ଛାଡିଦେବି । ତେଣୁ କାମ କରିବା ଲୋକ ଯେଉଁ ଦିନ ଆସିବେ ତାଙ୍କୁ ଅନୁମତି ଦେବି । ମୁଁ ଘର ଚାବି ମଧ୍ୟ ଦେଇଦେବି । ମୁଁ ଯେଉଁ ଦିନ ବରାଦ କରିଥିଲି ସେହିଦିନ ମିସ୍ତ୍ରୀ ମୂଲିଆ ସବୁ କାମ କରିବାକୁ ଆସିଥିଲେ । ଗୋଟିଏ ଟିଣ ଛାତ ପଡିଥିବା ବାରଣ୍ଡାର ଛାତଟିକୁ ସମ୍ପୂର୍ଣ୍ଣ ଭାବେ କାଟିଦେଲେ । ଆଚାର୍ଯ୍ୟ ବାବୁ ଖରାବେଳେ ଆସି ଗାଳି ଗୁଲଜ କରି ତାଙ୍କୁ ବାହାର କରିଦେଲେ ଏବଂ ସେ ସବ୍‌ଇନିସ୍‌ପେକ୍ଟରଙ୍କ ପ୍ରରୋଚନାରେ ପଡି ମୋ ନାମରେ ଗୋଟିଏ ପ୍ରାଥମିକ ରିପୋର୍ଟ (F.I.R) ଦେଇଦେଲେ । ତାର ଦୁଇ ଚାରିଦିନ ପରେ ବିକ୍ରମ ଆଚାର୍ଯ୍ୟ ଘର ଛାଡି ଅନ୍ୟ ଆଡେ ଚାଲିଗଲେ । ତାର କେତେ ଦିନପରେ ସେହି ସବ୍‌ଇନିସ୍‌ପେକ୍ଟରଙ୍କ ଠାରୁ ଚିଠି ପାଇଲି ଆପଣଙ୍କ ନାମରେ ବିକ୍ରମ ଆଚାର୍ଯ୍ୟ ଗୋଟିଏ ପ୍ରାଥମିକ ରିପୋର୍ଟ ଦେଇଛନ୍ତି ତେଣୁ ଆପଣ ମୋତେ ଦେଖା କରନ୍ତୁ । କେତେଦିନ ପରେ ମୁଁ ଭୁବନେଶ୍ୱର ଆସିଥିଲି । ସେହିଦିନ ବିକ୍ରମ ଆଚାର୍ଯ୍ୟଙ୍କ ପାଖରେ ରହୁଥିବା ସବ୍‌ଇନିସ୍‌ପେକ୍ଟରଙ୍କୁ ଭୁବନେଶ୍ୱର ପୋଲିସ୍ ଷ୍ଟେସନରେ ଦେଖାକଲି । ସେ ମୋତେ କହିଲେ ପି.ଆର.ବଣ୍ଡରେ ଦସ୍ତଖତ କରି ଆପଣ ଯାଇ ପାରନ୍ତି । ମୁଁ କହିଲି ଆପଣ ପ୍ରାଥମିକ ରିପୋର୍ଟର ନକଲ ନଦେଲେ ମୁଁ ପି.ଆର. ବଣ୍ଡରେ ଦସ୍ତଖତ କରିବି ନାହିଁ । ସବ୍‌ଇନିସ୍‌ପେକ୍ଟର ମୋତେ କହିଲେ ଭବିଷ୍ୟତରେ କିଛି ଅସୁବିଧା ହେଲେ ମୋତେ କହିବେ ନାହିଁ । ତାପରେ ମୁଁ ଚାଲି ଆସିଲି । ଏହି ଘଟଣାର ମାସେ ଖଣ୍ଡେ ପରେ ଭୁବନେଶ୍ୱର ଜୁଡିସିଆଲ ମାଜିଷ୍ଟ୍ରେଟଙ୍କ ଠାରୁ କୋର୍ଟରେ ହାଜର ହେବା ପାଇଁ ସମନ ପାଇଲି । ତେଣୁ ଜଣେ ଓକିଲଙ୍କ ସାଙ୍ଗରେ କଥାବାର୍ତ୍ତା କରି ତାଙ୍କୁ ମୋ ପକ୍ଷରୁ କୋର୍ଟରେ ହାଜର ହେବା ପାଇଁ କହିଲି । କୋର୍ଟ ମୋତେ ସବୁ ତାରିଖ ଦିନ ହାଜର ନ ହେବା ପାଇଁ ଅନୁମତି ଦେଲେ । ମୋ ପାଇଁ ମୋର ଓକିଲ ହାଜର ହେଲେ ଚଳିବ । ତାପରେ ୨/୩ ଥର ତାରିଖ ପଡିଛି । ଶେଷରେ ମୋ ଓକିଲ କହିଲେ ଆପଣ ଥରେ କୋର୍ଟକୁ ଆସନ୍ତୁ, ସେହିଦିନ କେଶ ଫଇସଲା ହୋଇଯିବ ନହେଲେ ବୁଝାମଣା ହୋଇଯିବ । ନିର୍ଦ୍ଦିଷ୍ଟ ଦିନ ମୁଁ କୋର୍ଟରେ ଉପସ୍ଥିତ ହୋଇଥିଲି । ସେହି ଦିନ ବୁଝାମଣା ହୋଇଗଲା । ତାର କେତେ ଦିନ ପରେ ସେହି ମିସ୍ତ୍ରୀକୁ ଡାକି ତା ଉପରେ ଘର କରିବା ଦାୟିତ୍ୱ ଦେଇଦେଲି । ସେ ମିସ୍ତ୍ରୀକୁ କହିଥାଏ ମୋ ସ୍ତ୍ରୀ ପ୍ରାୟ ସବୁଦିନ ଘରକୁ ଆସି କାମ ତଦାରଖ କରିବେ । କିନ୍ତୁ ଦାୟିତ୍ୱ ସବୁ ତୁମର । ପ୍ରାୟ ୩/୪ ମାସ ପରେ ଘରଟି ସଂପୂର୍ଣ୍ଣ ହୋଇଗଲା । ଗୋଟିଏ ବ୍ୟାଙ୍କକୁ ଭଡା ଦେଇଦେଲି ।

୧୯୭୬ ମସିହା ଖରା ଛୁଟି ପରେ ହଠାତ୍ ଶୁଣିବାକୁ ପାଇଲି ମୋର ଦେଓଗଡ କଲେଜକୁ ଅଧ୍ୟକ୍ଷ ହିସାବରେ ବଦଳି ହୋଇ ଯାଇଛି । ନିର୍ଦ୍ଦେଶ ପତ୍ର(Order) ପାଇଲା ପରେ ମୁଁ ଅଧ୍ୟକ୍ଷ ଡକ୍ଟର ମହେନ୍ଦ୍ର କୁମାର ରାଉତଙ୍କୁ ଦେଖାକଲି । ସେ ମୋ ଠାରୁ କିଛି ନ ଶୁଣି ମୋତେ ପଚାରିଲେ ତମେ ଜଣ ଅଧ୍ୟକ୍ଷ ହୋଇ ଯିବାକୁ ଇଚ୍ଛା କରୁଛ ? ମୁଁ ନାହିଁ କଲି । ସେ କହିଲେ ତମେ ଯାଅ ତମ ଗବେଷଣା କାମ କର । ତୁମକୁ ମୁଁ ରେଭେନ୍ସା କଲେଜରୁ ଅବ୍ୟାହତି

ପାଇବାକୁ ଅନୁମତି ଦେବି ନାହିଁ । ମୁଁ ତୁମ ବଦଳି ବନ୍ଦ କରି ଦେବି । ତାପରେ ମୁଁ ଶୁଣିବାକୁ ପାଇଲି ମୋ ବଦଳିରେ ଯିଏ ଆସିଥିଲେ ସେ ରେଭେନ୍ସା କଲେଜରେ ଯୋଗ ଦେବା ପାଇଁ ଅଧ୍ୟକ୍ଷଙ୍କୁ ଦେଖା କଲେ । ତାଙ୍କୁ ଅଧ୍ୟକ୍ଷ କହିଲେ ବର୍ଷ ମଝିରେ ତୁମେ ଯୋଗ ଦେଲେ ଡକ୍ଟର ମିଶ୍ର ଯେଉଁ କ୍ଲାସ୍ ସବୁ ନେଉଛନ୍ତି ତମେ ସେହି କ୍ଲାସ୍ ଗୁଡିକ ନେବ । ମୁଁ ମୁଖ୍ୟ ଅଧ୍ୟାପକଙ୍କୁ କହିଦେବି ବର୍ଷ ମଝିରେ କୌଣସି କ୍ଲାସ୍‌ର ପରିବର୍ତ୍ତନ ହେବ ନାହିଁ । ତାଙ୍କୁ ୨/୩ ଦିନ ପରେ ଆସିବାକୁ କହିଲେ । ଏହି କଥା ଶୁଣି ମୁଁ ତାପର ଦିନ ଅଧ୍ୟକ୍ଷଙ୍କୁ ଦେଖା କଲି । ସେ ମୋ ଉପରେ ଟିକିଏ ବିରକ୍ତ ହୋଇ କହିଲେ, ମୋ କଥାରେ ବିଶ୍ୱାସ ହେଉନି, ମୁଁ କହିଥିଲି ପରା ତମକୁ ଅବ୍ୟାହତି ପାଇବାକୁ ଅନୁମତି ଦେବି ନାହିଁ । ତେଣୁ ମୁଁ ଚାଲି ଆସିଲି । ମୁଁ ତାଙ୍କ କୋଠରୀର ଦୁଆର ମୁହଁରେ ହୋଇଛି ସେ ପୁଣି ଡାକିଲେ ଏବଂ କହିଲେ ବସ । ମୁଁ ବସିଲା ପରେ ସରକାରଙ୍କୁ ମୋ ବଦଳି ବନ୍ଦ କରିବା ପାଇଁ ଯେଉଁ ଚିଠି ଲେଖିଥିଲେ ତାହା ମୋତେ ପଢିବାକୁ ଦେଲେ । ସେ ଚିଠିଟିରେ ଯାହା ଲେଖା ଥିଲା ତାର ଓଡିଆ ଅନୁବାଦ ହେଉଛି, " ଓଡିଶା ସରକାର ଦେଓଗଡ କଲେଜର ଅଧ୍ୟକ୍ଷ ପାଇଁ ୧୦୦ ଜଣ ପ୍ରାଧ୍ୟାପକ ପାଇ ପାରିବେ । କିନ୍ତୁ ପତିତପାବନ ମିଶ୍ରଙ୍କ ଭଳି ଜଣେ ଫିଜିକ୍ସ ପ୍ରାଧ୍ୟାପକ ରେଭେନ୍ସା କଲେଜରେ ନିଯୁକ୍ତି ଦେବା ପାଇଁ ପାଇ ପାରିବେ ନାହିଁ"। Government can get 100 Readers to post as principal in Deogarh college, but can not get one Reader like Patitapaban Misra to post as a Reader in physics, Ravenshaw College) ମୁଁ ପରେ କଲେଜରୁ ଶୁଣିବାକୁ ପାଇଲି ମୋ ବଦଳରେ ଯିଏ ଆସିଥିଲେ ସେ ଡିପାର୍ଟମେଣ୍ଟରୁ ମୁଁ କଣ ପଢାଉଛି ବୁଝାବୁଝି କରୁଥିଲେ । ତାପରେ ସେ ଆଉ କଲେଜରେ ଯୋଗ ଦେବାକୁ ଆସି ନାହାଁନ୍ତି । ଯଦିଓ ଅଧ୍ୟକ୍ଷ ମୋତେ ଜୋର ଦେଇ କହିଥିଲେ ମୁଁ ତୁମକୁ ରିଲିଭ୍ କରିବି ନାହିଁ ତଥାପି ମୋର ସନ୍ଦେହ ହେବାରୁ ଶିକ୍ଷାମନ୍ତ୍ରୀଙ୍କ ସଙ୍ଗେ ଦେଖା କରିବା ପାଇଁ ଭୁବନେଶ୍ୱର ଆସିଥିଲି । ମନ୍ତ୍ରୀ ଶ୍ରୀଯୁକ୍ତ ଗଙ୍ଗାଧର ମହାପାତ୍ରଙ୍କ ସାହାଯ୍ୟରେ ଶିକ୍ଷାମନ୍ତ୍ରୀ ଶ୍ରୀଯୁକ୍ତ ଯଦୁନାଥ ଦାସମହାପାତ୍ରଙ୍କ ସହିତ ଦେଖା କରିବାକୁ ଗଲି । ଶ୍ରୀଯୁକ୍ତ ଗଙ୍ଗାଧର ମହାପାତ୍ର ମୋତେ ଅପେକ୍ଷା ଗୃହରେ ବସାଇ ଦେଇ ତାଙ୍କ କୋଠରୀ ଭିତରକୁ ଗଲେ । ସେ ଦୁଇଜଣଙ୍କ ଭିତରେ କଥାବାର୍ତ୍ତା ହେଉଥିବାର ଶୁଣିଲି ଯେ, ଭୁଲ୍ ବଶତଃ ମୋ ବଦଳିଟା ହୋଇ ଯାଇଛି । ତାପରେ ମୁଁ ମୋ ସାର ମାମୁଁ ଶ୍ରୀଯୁକ୍ତ ଭାସ୍କର ରଥଙ୍କ ଘରକୁ ଗଲି । ସେ ମଧ୍ୟ ମୋତେ ଆଶ୍ୱାସନା ଦେଇ କହିଲେ ଯଦି ଦରକାର ପଡେ ମୁଁ ଶିକ୍ଷାମନ୍ତ୍ରୀଙ୍କୁ କହିବି । ତାର ୫/୬ ଦିନ ପରେ ବଦଳି ବାତିଲ୍ ହୋଇଗଲା ବୋଲି ସରକାରଙ୍କ ଠାରୁ ଚିଠି ପାଇଲି ।

ମୁଁ ଆଗରୁ ଜାଣିଥିଲି ଭୁବନେଶ୍ୱରରେ ଥିବା ଫିଜିକ୍ସ ଇନ୍‌ଷ୍ଟିଚ୍ୟୁଟ୍‌ରେ କରେଣ୍ଟ ଟ୍ରେଣ୍ଡ ଇନ୍ ଫିଜିକ୍ସ (Current trend in physics) ନାମକ ଗୋଟିଏ ସେମିନାର ୧୯୭୬ ମସିହା ଫେବୃୟାରୀ ୨୮ ତାରିଖରୁ ମାର୍ଚ୍ଚ ୨ ତାରିଖ ପର୍ଯ୍ୟନ୍ତ ଅନୁଷ୍ଠିତ ହେଉଛି । ମୁଁ ସେଥିରେ ଯୋଗ ଦେବା ପାଇଁ ମନୋନୀତ ହୋଇଥିଲି ଏବଂ ଯୋଗ ଦେଇଥିଲି । ଭାରତର ବିଭିନ୍ନ ସ୍ଥାନରୁ ବୈଜ୍ଞାନିକ ମାନେ ଆସି ସାର ଗର୍ଭକ ଭାଷଣ ଦେଇଥିଲେ । ୧୯୭୬ ମସିହା ଶେଷ ଆଡକୁ ମୁଁ ଜାଣିବାକୁ ପାଇଲି ପ୍ଲାଜମା ଫିଜିକ୍ସ ସିମ୍ପୋଜିଅମ ଭାବା ଆଟମିକ୍ ଗବେଷଣା କେନ୍ଦ୍ର ଠାରେ

୧୯୭୭ ମସିହା ଫେବୃୟାରୀ ୨୧ରୁ ୨୩ ତାରିଖ ଭିତରେ ଅନୁଷ୍ଠିତ ହେଉଛି । ମୁଁ ସେଥିରେ ଯୋଗ ଦେବା ପାଇଁ ଗୋଟିଏ ତାତ୍ତ୍ୱିକ ଗବେଷଣାତ୍ମକ ପ୍ରବନ୍ଧ ପାଠ କରିବା ପାଇଁ ପଠାଇ ଥିଲି । ତା ସହିତ ମୋର ଯିବା ଆସିବା ଖର୍ଚ୍ଚ ଦେବାକୁ ଅନୁରୋଧ କରିଥିଲି । ସେମାନେ ମୋ ଖର୍ଚ୍ଚ ଦେଇ ପ୍ରବନ୍ଧଟିକୁ ସେଠାରେ ବକ୍ତୃତା ଆକାରରେ କହିବା ପାଇଁ ନିମନ୍ତ୍ରଣ କରିଥିଲେ । ମୁଁ ଯାଇ ବି.ଏ.ଆର.ସି.(B.A.R.C) ଅତିଥି ଭବନରେ ରହିଥିଲି ।

## ବି.ଏ.ଆର.ସିରେ ମୋର ପ୍ରଥମ ବକ୍ତୃତା

ବି.ଏ.ଆର.ସିର ବକ୍ତୃତା କକ୍ଷରେ ଉପସ୍ଥିତ ବୈଜ୍ଞାନିକ ମାନେ ତାଙ୍କର ଗବେଷଣା କରିବା ବିଷୟ ଉପସ୍ଥାପନ କରିଥିଲେ । ବନାରସ୍ ହିନ୍ଦୁ ବିଶ୍ୱବିଦ୍ୟାଳୟର ଡକ୍ଟର ଶକୁନ୍ତଳା ନାମକ ଜଣେ ପ୍ରଫେସର ପ୍ଲାଜମା ସକ୍ ୱେଭ୍ (Shock wave) ସମ୍ବନ୍ଧିୟ ଗୋଟିଏ ପ୍ରବନ୍ଧ ବୁଝାଇ କହୁଥିଲେ । ମୁଁ ସେତେବେଳକୁ ପ୍ରାୟୋଗିକ ପ୍ଲାଜମା ଫିଜିକ୍ସ ଉପରେ ଗବେଷଣା କରିବା ପାଇଁ ଚେଷ୍ଟା କରୁଥିଲି । ତେଣୁ ଡକ୍ଟର ଶକୁନ୍ତଳାଙ୍କ ଠାରୁ  କାମଟିକୁ ଭଲ ଭାବରେ ବୁଝିବା ପାଇଁ ଚେଷ୍ଟା କଲି । ସମସ୍ତଙ୍କ ବକ୍ତୃତା ସରିବା ପରେ ମୁଁ ତାଙ୍କୁ ନିଜେ ଦେଖା କରି କାହିଁକି ଓ କିପରି ପ୍ଲାଜମା ସକ୍ ୱେଭ୍ (Shock wave)ନଳୀ ଭିତରେ ସୃଷ୍ଟି ହୁଏ, ପଚାରିଲି । ସେ ମୋତେ ଭଲଭାବେ ବୁଝାଇ ଦେଇଥିଲେ । ମୋର ସେଠାରେ ଏପରି ଗୋଟିଏ ଉପକରଣ ପ୍ରସ୍ତୁତ କରି ବିଭିନ୍ନ ପରୀକ୍ଷା ନିରୀକ୍ଷା କରିବା ପାଇଁ ମନ ହୋଇଥିଲା । ମୁଁ ସେହି ସେମିନାରରେ ଜାଣିଲି ଇଉ.ଜି. ସି. (U.G.C) ର ଗୋଟିଏ ବିଜ୍ଞାପନ ବାହାରିଛି ଯେ "ଯେଉଁମାନେ କ୍ଷୁଦ୍ରତର ଗବେଷଣା ଅନୁଦାନ (Minor research grant) ପାଇବାକୁ ଇଚ୍ଛା କରନ୍ତି, ସେମାନେ ଅଧ୍ୟକ୍ଷଙ୍କ ଜରିଆରେ ଦରଖାସ୍ତ କରନ୍ତୁ " । ସିମ୍ପୋଜିଅମ୍ ସରିଲା ପରେ କଟକ ଫେରି ଆସିଲି । ମୁଁ ସଙ୍ଗେ ସଙ୍ଗେ ପ୍ଲାଜମା ଫିଜିକ୍ସରେ ପ୍ରାୟୋଗିକ ଗବେଷଣା କରିବା ନିମିତ୍ତ କ୍ଷୁଦ୍ରତର ଗବେଷଣା ଅନୁଦାନ ପାଇବା ପାଇଁ ଦରଖାସ୍ତ କରିଦେଲି ।

## ଇଉନିୟନ୍ ବିଶ୍ୱବିଦ୍ୟାଳୟ ଆୟୋଗରୁ ଅନୁଦାନ

ଭଗବାନଙ୍କ କୃପାରୁ ମୁଁ ୧.୦୪.୧୯୭୭ ତାରିଖ ଠାରୁ ୮୦୦୦ ଟଙ୍କାର ରିସର୍ଚ୍ଚ ଗ୍ରାଣ୍ଟ ପାଇବା ପାଇଁ ଯୋଗ୍ୟ ବିବେଚିତ ହେଲି । ଏହି ଅନୁଦାନଟି ଦୁଇ ବର୍ଷ ଭିତରେ ଅର୍ଥାତ ୧.୦୪.୧୯୭୭ ତାରିଖରୁ ୩୧.୦୩.୭୯ ଭିତରେ ସାରିବାକୁ ପଡିବ । ଏହି କ୍ଷୁଦ୍ରତର ଗବେଷଣା ଅନୁଦାନଟି ମୋର ପ୍ରାୟୋଗିକ ଗବେଷଣାର ମୂଳଦୁଆ ପକାଇଲା ବୋଲି କହିଲେ କିଛି ଅତ୍ୟୁକ୍ତି ହେବ ନାହିଁ । ଏହି ଅନୁଦାନରୁ ଗୋଟିଏ ପାୱାର ସପ୍ଲାଇ, ଗୋଟିଏ ପ୍ରେସର ମାପିବା ଯନ୍ତ୍ର ଏବଂ ଗୋଟିଏ ପ୍ଲାଜମା କୋଠରୀ ନିର୍ମାଣ କରିବା ପାଇଁ ମୋତେ ଅନୁମତି ମିଳିଥିଲା । ତା ବ୍ୟତିତ ଅନ୍ୟାନ୍ୟ ଖର୍ଚ୍ଚ କରିବା ପାଇଁ ମଧ୍ୟ ସେହି ଅନୁଦାନରେ ବ୍ୟବସ୍ଥା ଥିଲା । ମୁଁ ଉପରୋକ୍ତ ଜିନଷ ଗୁଡିକ ଆସ୍ତେ ଆସ୍ତେ କିଣିଦେଲି କିମ୍ବା ତିଆରି କରିବା ପାଇଁ ଚେଷ୍ଟା କଲି । ମୁଁ ଆମ ରେଭେନ୍ସା କଲେଜ ଫିଜିକ୍ସ ଡିପାର୍ଟମେଣ୍ଟର ୱାର୍କସପ୍‌ରେ ଚାକିରି କରୁଥିବା ଶ୍ରୀ ଗୋବିନ୍ଦ ଚନ୍ଦ୍ର ମହାନ୍ତିଙ୍କୁ ଗୋଟିଏ ପ୍ଲାଜମା ପ୍ରକୋଷ୍ଠ ତିଆରି କରିବା ପାଇଁ ଅନୁରୋଧ କଲି । ସେ ତିଆରି କରିବାକୁ ରାଜି ହେଲେ । ମୁଁ ତାଙ୍କୁ ପ୍ଲାଜମା କୋଠରୀର ନକ୍ସା ତିଆରି କରି ଦେଲି

ଏବଂ ଆବଶ୍ୟକୀୟ ଜିନିଷ ପତ୍ର କିଣି କରି ତାଙ୍କୁ ଦେବା ପାଇଁ କହିଲି । ମାସେ ପରେ ସେ ଗୋଟିଏ ପ୍ଲାଜମା ପ୍ରକୋଷ୍ଠ ମୋ କହିବା ମୁତାବକ କ୍ଷୁଦ୍ରତର ଗବେଷଣା ଅନୁଦାନ ସାହାଯ୍ୟରେ ତିଆରି କରିଦେଲେ । ମୋର କୋଠରୀରେ ଡକ୍ଟର ସେନ୍ ନାମକ ଯେଉଁ ସ୍ତ୍ରୀ ଲୋକ ଜଣକ କାମ କରୁଥିଲେ, ସେ କହିଲେ ଆପଣ ଗୋଟିଏ ଉଇଲସନ୍ ସିଲ୍ କିଣନ୍ତୁ । ତା ସାହାଯ୍ୟରେ ପ୍ଲାଜମା ପ୍ରକୋଷ୍ଠ ଭିତରେ ଥିବା କୌଣସି ଜିନିଷର ସ୍ଥାନ ବାହାରୁ ପରିବର୍ତ୍ତନ କରିହେବ । କିନ୍ତୁ ପ୍ରକୋଷ୍ଠର ବାୟୁ ଚାପର କିଛି ପରିବର୍ତ୍ତନ ହେବ ନାହିଁ । ସେ କହିବା ପୂର୍ବରୁ ମୁଁ ଘୁଷାଇବା କାମ ଚୁମ୍ବକ ସାହାଯ୍ୟରେ କରୁଥିଲି । ଏପରି ଭାବରେ ଘୁଷାଇବା ଦ୍ୱାରା ମୋତେ ବହୁତ ଅସୁବିଧା ହେଉଥିଲା । ସେ ଉଇଲ୍‌ସନ୍ ସିଲ୍ କେମିତି ତିଆରି ହୋଇଥାଏ, ତାହା ମୋତେ ବୁଝାଇ ଦେଲେ । ମୁଁ ସାଇକେଲ ଭଲଟ୍ୟୁବ୍ ଓ ଭଲପିନ୍ ଯେଉଁଠାରେ ଲାଗେ ତାହା ସାହାଯ୍ୟରେ ଗୋଟିଏ ଉଇଲସନ୍ ସିଲ୍ ଆମ ଓ୍ୱାର୍କସପ୍ ମେକାନିକ୍ ମହମ୍ମଦ ନସିମ୍‌ଙ୍କ ସାହାଯ୍ୟରେ ତିଆରି କଲି । ତାପରେ ଉଇଲ୍‌ସନ ସିଲ୍‌କୁ ପ୍ଲାଜମା ପ୍ରକୋଷ୍ଠରେ ସଂଯୁକ୍ତ କରିଦେଲି । ପରୀକ୍ଷା କରି ଦେଖିଲି ତାହା ଠିକ୍ ଭାବରେ କାମ କରୁଛି କି ନାହିଁ । ପରୀକ୍ଷାରୁ ଜାଣିଲି ଯେ ଠିକ୍ ଭାବରେ କାମ କରୁଛି । ସେଦିନ ମୋ ଆନନ୍ଦର ସୀମା ରହିଲା ନାହିଁ । ସେଥିରେ କୃତକାର୍ଯ୍ୟ ହୋଇ ପ୍ରକୋଷ୍ଠ ଭିତରେ ପ୍ଲାଜମା ସୃଷ୍ଟି କରି ତାର ଧର୍ମ ସବୁ ମାପି ପାରିଲି । ଭିନ୍ନ ଭିନ୍ନ ଅବସ୍ଥାରେ କିପରି ପ୍ଲାଜମାର ପରିବର୍ତ୍ତନ ଘଟୁଛି ତାହା ମଧ୍ୟ ଜାଣିପାରିଲି ।

## ସିମଳା ପରିଦର୍ଶନ

ଦିନେ ଗୋଟିଏ ଚିଠି ଡକ୍ଟର ଏସ୍.କେ.ତ୍ରେହାନ୍ (ଯିଏ ମୋର ପି.ଏଚ୍.ଡି.ର ମୌଖିକ ପରୀକ୍ଷାର ପରୀକ୍ଷକ ଥିଲେ) ଙ୍କଠାରୁ ପାଇଲି । ସେଥିରେ ଲେଖାଥିଲା ଚଣ୍ଡିଗଡରେ ପ୍ଲାଜମା ଡାଇନାମିକ୍ସ ଆଣ୍ଡ ଏମ୍.ଏଚ୍.ଡି ଉପରେ ଗୋଟିଏ ସେମିନାର ୧୯୭୭ ସେପ୍ଟେମ୍ବର ୨୪ରୁ ୨୯ ତାରିଖ ପର୍ଯ୍ୟନ୍ତ ହେବ । ତମେ ଯଦି ଯୋଗ ଦେବା ପାଇଁ ଇଚ୍ଛା କର ତେବେ ତମ ଗବେଷଣାତ୍ମକ କାମକୁ ସଂକ୍ଷିପ୍ତ ପ୍ରବନ୍ଧ ଆକାରରେ ଲେଖି ପଠାଇବ । ସେ ପ୍ରବନ୍ଧଟି ଉପଯୁକ୍ତ ହେଲେ ତମେ ପ୍ରଥମ ଶ୍ରେଣୀର ଗାଡିଭଡା ସହିତ ରହିବା ଖର୍ଚ୍ଚ ପାଇବ । ମୋ କାମର ସାରକଥା ପ୍ରବନ୍ଧ ଆକାରରେ ଲେଖି ପଠାଇ ଦେଲି । ତାର ମାସେ ପରେ ଚିଠି ପାଇଲି ଯେ ତୁମ ପ୍ରବନ୍ଧ ଉପଯୁକ୍ତ ବିବେଚିତ ହୋଇଛି । ତୁମେ କେତେ ତାରିଖରେ କେତେଟା ସମୟରେ ଚଣ୍ଡିଗଡରେ ପହଁଞ୍ଚିବ ତାହା ଜଣାଅ । ମୋର ବହୁତ ଦିନରୁ କାଶ୍ମୀର୍ ଯିବାକୁ ଆକାଂକ୍ଷା ଥିଲା । ତେଣୁ ମୁଁ ଠିକଣା କରିଦେଲି । ଚଣ୍ଡିଗଡ ଠାରୁ ସିମଲା,ଜାମ୍ମୁ, ଶ୍ରୀନଗର ଦେଇ ପୁଣି ଚଣ୍ଡିଗଡ ଫେରିବି ଏବଂ ଚଣ୍ଡିଗଡରୁ ଦିଲ୍ଲୀ ଓ ବାରାଣାସି ଦେଇ କଟକ ଫେରିବି । ସେହି ଅନୁସାରେ ମୁଁ ଯୋଡିଏ ପ୍ରଥମ ଶ୍ରେଣୀରେ ଯିବା ଓ ଫେରିବା ପାଇଁ ଟିକେଟ କରିଦେଲି । ଏହିପରି କରିବାର କାରଣ ସିମଳାକୁ ଯିବା ଆସିବା ଟିକେଟ୍ ଦୁଇଟିର ଭଡା ୧୨୦୦ ଟଙ୍କା ଯାଗାରେ ସେତେବେଳେ ୯୦୦ ଟଙ୍କା ପଡୁଥିଲା । ମୁଁ ଟିକେଟ କରିସାରି ମୋ ସ୍ତ୍ରୀକୁ କହିଲି । ସେ ଜମା ରାଜି ହେଉ ନ ଥିଲେ । କାରଣ ସାନପୁଅ ବୁବୁକୁ ମୋଟେ ନଅ ବର୍ଷ ବୟସ ହୋଇଥିଲା । ମୋ ଦୁଇ ଝିଅ ଏବଂ ବଡ ପୁଅ ମୋ ସ୍ତ୍ରୀକୁ ବୁଝା ସୁଝି କରିଦେବା ପରେ ସେ ରାଜି ହେଲେ । ସେ ରାଜି ହେବା ପରେ ଆମେ ଦୁହେଁ ମିଶି ଯିବା ଆସିବା ଓ କେଉଁଠି କେତେଦିନ ରହିବା ଠିକ୍ କରିଦେଲୁ ଏବଂ ସେହି

ଅନୁସାରେ ମୁଁ ଯାଇ ଫାଷ୍ଟ କ୍ଲାସ୍‌ରେ ସଂରକ୍ଷଣ କରିବା ପାଇଁ କଟକ ରେଲୱେ ଷ୍ଟେସନରେ ଦରଖାସ୍ତ କରିଦେଲି । ଯେହେତୁ ମୋତେ ୨୪ ତାରିଖରୁ ୨୯ ତାରିଖ ପର୍ଯ୍ୟନ୍ତ ଚଣ୍ଡିଗଡ ବିଶ୍ୱବିଦ୍ୟାଳୟରେ ରହିବାକୁ ପଡିବ । ତେଣୁ ରେଲୱେର ସେତେବେଳେ ଥିବା ନିୟମ ଅନୁସାରେ ଆମେ କଟକ ଠାରୁ ସିମଳା ପର୍ଯ୍ୟନ୍ତ ଯିବା ଭିତରେ କୌଣସି ଯାଗାରେ ଓହ୍ଲାଇ ପାରିବୁ ନାହିଁ । ତେଣୁ ଆମେ ୧୮ ତାରିଖ ଦିନ ଇଷ୍ଟକୋଷ୍ଟ ଏକ୍ସପ୍ରେସ୍‌ରେ ଯାଇ ହାଓ୍ୱଡା ଷ୍ଟେସନ୍‌ରେ ପ୍ରାୟ ସଂଧ୍ୟାବେଳେ ପହଁଞ୍ଚିଲୁ । କାଲକା ମେଲ ପ୍ରାୟ ରାତି ୮ଟାରେ ହାଓ୍ୱଡା ଛାଡୁଥାଏ । ଅନୁସନ୍ଧାନ କାର୍ଯ୍ୟାଳୟରୁ ବୁଝିଲୁ ଆମ ଦୁହିଁଙ୍କ ପାଇଁ ଗୋଟିଏ କୋଠରୀ ସଂରକ୍ଷିତ ହୋଇଯାଇଛି । ସେହି ଅନୁସାରେ ଆମେ ଯାଇ ଗାଡିରେ ଚଢିଲୁ । ଗାଡିରେ ବସିଲା ପରେ ମୋ ସ୍ତ୍ରୀ ବହୁତ ଖୁସି ହେଲେ, କାରଣ କାଲକାରେ ପହଁଞ୍ଚିବା ପର୍ଯ୍ୟନ୍ତ କୌଣସି ଯାତ୍ରୀ ଆମ କୋଠରୀରେ ପଶିପାରିବେ ନାହିଁ । ଆମେ ୨୦ ତାରିଖ ଦିନ ସକାଳୁ କାଲକାରେ ପହଁଞ୍ଚିଲୁ । କାଲକା ଠାରୁ ସିମଳା ଯିବା ପାଇଁ ଯେଉଁ ଗାଡିରେ ଆମର ସଂରକ୍ଷଣ ହୋଇଥିଲା ସେ ଗାଡିଟି ଆମେ ପାଇଲୁ ନାହିଁ । କାରଣ କାଲକାମେଲ କାଲକା ଠାରେ ପହଁଞ୍ଚିବାକୁ ଡେରି ହେଲା । ତେଣୁ ମୁଁ ଯାଇ ଷ୍ଟେସନ୍‌ରେ ପରବର୍ତ୍ତି ଟ୍ରେନ୍‌ରେ ସଂରକ୍ଷଣ ପାଇଁ ଅନୁରୋଧ କଲି । ସେମାନେ ସଙ୍ଗେ ସଙ୍ଗେ ଅନ୍ୟ ଟ୍ରେନ୍‌ରେ ସଂରକ୍ଷଣ କରିଦେଲେ । ପ୍ରାୟ ସାତଟା ବେଳେ ଆମେ କାଲ୍‌କା ଠାରୁ ସିମଲା ମେଲ୍‌ରେ ବସିଲୁ । ବାଟରେ ସିମଲା ମେଲ୍ ଦ୍ରୁତ ଗତିରେ ଚାଲିପାରେ ନାହିଁ । ଗାଡିଟି ଆସ୍ତେ ଆସ୍ତେ ଉଚ୍ଚକୁ ଯାଉଥାଏ । ଗାଡିରେ ଯିବା ବେଳେ ବାହାରର ପ୍ରାକୃତିକ ଶୋଭା ଅତ୍ୟନ୍ତ ମନ ମୁଗ୍ଧକର । ଆମେ ସିମଳାରେ ପ୍ରାୟ ଦିନ ୧୨ଟା ବେଳେ ପହଁଞ୍ଚିଲୁ । ଷ୍ଟେସନ୍ ନିକଟରେ ଗୋଟିଏ ହୋଟେଲ୍‌ରେ ଦୁଇ ଜଣିଆ କୋଠରୀରେ ରହିଲୁ । ପହଁଞ୍ଚିବା ପରେ ହୋଟେଲ୍ ଲୋକ ଆମକୁ ମଧ୍ୟାହ୍ନ ଭୋଜନ ଖାଇବା ପାଇଁ ଆମ କୋଠରୀରେ ଖାଦ୍ୟ ଦେଇଗଲେ । ଖାଇସାରି ସହର ବୁଲିବାକୁ ବାହାରିଲୁ । ସହର ବୁଲିବା ପାଇଁ କୌଣସି ସାଇକେଲ୍ କିମ୍ବା ରିକ୍ସା ସେଠାରେ ମିଳେ ନାହିଁ । ତେଣୁ ପ୍ରାୟ ସମସ୍ତେ ଚାଲିକରି ଯାଉ ଥାଆନ୍ତି । ଆମେ ମଧ୍ୟ ସେହିପରି ଗଲୁ । ବଜାରରୁ ପିଲାଙ୍କ ପାଇଁ କେତୋଟି ଉଲ୍ ପୋଷାକ କିଣିଲୁ । ମୋ ସ୍ତ୍ରୀ ତାଙ୍କ ପାଇଁ ଗୋଟିଏ ସିଲ୍‌କ ଶାଢୀ କିଣିବା ପାଇଁ ଇଚ୍ଛା କଲେ । ତାଙ୍କର ଯେଉଁ ଶାଢୀଟା ପସନ୍ଦ ହେଲା ସେ ଶାଢୀଟାର କିଛି ଦୋଷ ଥିଲା । ତେଣୁ ମୋ ସ୍ତ୍ରୀ କହିଲେ ଏଇଟା ବଦଳାଇ ଦିଅ । କିନ୍ତୁ ସେହିପରି ଶାଢୀ ତାଙ୍କ ଦୋକାନରେ ଆଉ ନଥିଲା । ତା ମାଲିକ କହିଲେ ତିନି ଦିନ ପରେ ଆସିବ । ଆମେ ୨୩ ତାରିଖ ଦିନ ଶାଢୀଟା ନେବା ପାଇଁ କହିଲୁ । କିନ୍ତୁ କୌଣସି କାରଣରୁ ଆମେ ଟ୍ରାଭେଲର୍ସ ଚେକ୍ ଭଙ୍ଗାଇ ପାରିଲୁ ନାହିଁ । ତେଣୁ ଆମେ ୨୩ ତାରିଖ ଦିନ ସକାଳେ ସେହି ଦୋକାନକୁ ଯାଇ କହିଲୁ ଆମେ ଟଙ୍କା ଭଙ୍ଗାଇ ପାରିଲୁ ନାହିଁ । ତେଣୁ ଶାଢୀଟି ନେଇ ପାରିବୁ ନାହିଁ । ଦୋକାନର ମାଲିକ କହିଲେ ଆପଣ ଏ ଶାଢୀ ଜଣରେ ଦସ୍ତଖତ କରି ଦିଅନ୍ତୁ ଏବଂ ୨୦ ଟଙ୍କା ଦିଅନ୍ତୁ । ମୋତେ ମାଲିକ ପୁଣି ପଚାରିଲେ ଆପଣ କେବେ କଟକରେ ପହଁଞ୍ଚିବେ ? କାରଣ ସେହି ଅନୁସାରେ ମୁଁ ଶାଢୀଟିକୁ ଭି.ପି.ପି.ରେ କଟକ ଠିକଣାରେ ପଠାଇ ଦେବି । ମୁଁ ମନେ ମନେ ଭାବୁଥିଲି ଏ କୋଡିଏ ଟଙ୍କାଟା ଗଲା । ଶାଢୀ କଥା ତାପରେ ଆମେ ଭୁଲି ଯାଇଥିଲୁ । ତାପର ଦିନ ସକାଳୁ ଆମେ ହିମାଞ୍ଚଳ ପ୍ରଦେଶର ଫଳ ବଗିଚା ଦେଖିବାକୁ ବସ୍‌ରେ ଗଲୁ । ବଗିଚା ଭିତରେ

ଦେଖିଲୁ ସେଓ ଗୁଡିକ ପେନ୍ଥା ପେନ୍ଥା ହୋଇ ଗଛ ଦେହରେ ଓହଳିଛି । ଗୋଟିଏ ଗୋଟିଏ ସେଓ ଗଛ ଉପରେ ଗୋଟିଏ ବଡ ମଶାରୀ ଟଣା ହୋଇଛି । ମୁଁ ବଗିଚାର ଲୋକଙ୍କୁ ପଚାରିଲି ମଶାରୀ କାହିଁକି ଗଛ ଉପରେ ଟଣା ଯାଇଛି ? ସେ କହିଲେ ଏହା ଦ୍ୱାରା ନିର୍ଦ୍ଦିଷ୍ଟ ପ୍ରକାରର କ୍ରସ୍ ବ୍ରିଡିଙ୍ଗ କରାଯାଉଛି । ଯାହା ଦ୍ୱାରାକି ମଞ୍ଜି ନଥିବା ବଡ ସୁନ୍ଦର ଓ ମିଠା ସେଓ ଫଳି ପାରିବ । ଆଉ ମଧ୍ୟ ଏମାନେ କେତେ ପ୍ରକାରର ବ୍ରିଡିଙ୍ଗ୍ କରାଉ ଥିଲେ, ମୋର ସେକଥା ମନେ ନାହିଁ । ବଗିଚା ଦେଖି ସାରିବା ପରେ ଆମେ ସବୁ ଫେରିଲୁ । ବାଟରେ ବହୁତ ଜାଗାରେ ପୋଲୋ ଖେଳ ହେଉଥିବାର ଆମେ ଦେଖିଥିଲୁ । ତା ପରଦିନ ସିମଳାରେ ଥିବା ବିଶ୍ୱବିଦ୍ୟାଳୟ ଆମେ ବୁଲି ଯାଇଥିଲୁ । ଅନ୍ୟ ଦର୍ଶନୀୟ ସ୍ଥାନ ସବୁ ମଧ୍ୟ ଦେଖିବାକୁ ଯାଇଥିଲୁ । ୨୩ ତାରିଖ ଦିନ ସକାଳୁ ଜିନିଷ ପତ୍ର ବନ୍ଧାବନ୍ଧି କରି ଟ୍ରେନ୍‌କୁ ଯିବା ପାଇଁ ବ୍ୟବସ୍ଥା କଲୁ । ବାରଟା ବେଳେ ଟ୍ରେନ୍ ଥାଏ । ଷ୍ଟେସନକୁ ଯିବା ପାଇଁ ଗୋଟିଏ କୁଲି ହୋଟେଲ ମାଲିକ ବୁଝିଦେଲେ । ଆମେ ସୁବିଧାରେ ଯାଇ ଗାଡିରେ ବସିଲୁ । ଟ୍ରେନ୍ କାଲ୍‌କାରେ ଯାଇ ରହିଲା । ଆମେ ଗାଡିର ପାସେଞ୍ଜରଙ୍କ ଠାରୁ ବୁଝିଲୁ ଚଣ୍ଡିଗଡ ବିଶ୍ୱବିଦ୍ୟାଳୟକୁ ଯିବାପାଇଁ କାଲକା ଠାରୁ ସୁବିଧା ହେବ । କିନ୍ତୁ ବିଶ୍ୱବିଦ୍ୟାଳୟ ଚଣ୍ଡିଗଡ ଷ୍ଟେସନ୍ ଠାରୁ ବହୁତ ବାଟ ।

## ଆଲୋଚନା ଚକ୍ର, ଚଣ୍ଡିଗଡ ବିଶ୍ୱବିଦ୍ୟାଳୟ

କାଲ୍‌କାରେ ଓହ୍ଲାଇ ଗୋଟିଏ ରିକ୍‌ସା କରି ଚଣ୍ଡିଗଡ ବିଶ୍ୱବିଦ୍ୟାଳୟର ଅତିଥି ଭବନକୁ ଗଲୁ । ମୋତେ ଆଗରୁ ଜଣାଇ ଦିଆଯାଇଥିଲା ତୁମ ଦୁଇ ଜଣଙ୍କ ପାଇଁ ବିଶ୍ୱବିଦ୍ୟାଳୟର ଅତିଥି ଭବନରେ ରହିବା ବ୍ୟବସ୍ଥା କରାଯାଇଛି । ଆମେ ଅତିଥି ଭବନରେ ପହଞ୍ଚିଲା କ୍ଷଣି ଅତିଥି ଭବନର ଦାୟିତ୍ୱରେ ଥିବା ଲୋକ ଆମ ନାମ ବୁଝି ଆମ ପାଇଁ ନିର୍ଦ୍ଦିଷ୍ଟ ହୋଇଥିବା କୋଠରୀଟିରେ ରଖାଇ ଦେଲେ ଏବଂ ଆମକୁ କହିଲେ ତୁମର ରାତି ଖାଇବା ବ୍ୟବସ୍ଥା ହୋଇଅଛି । ତମେ ଖାଇବା ହଲକୁ ନଅଟା ଭିତରେ ଯାଇ ଖାଇପାରିବ । ନଅଟା ପରେ ଆଉ ଖାଇବାକୁ ମିଳିବ ନାହିଁ । ସେହି ଅତିଥି ଭବନରେ ଡକ୍ଟର ଆର.କେ ବର୍ମା, ଡକ୍ଟର ବିମଳା ବୃତୀ ଦେଖାହେଲେ । ମୁଁ ଡକ୍ଟର ବର୍ମାଙ୍କୁ କେଉଁଠାରେ ଚିହ୍ନିଥିଲି ତାହା ମୋର ମନେ ନାହିଁ । ଯେତେଦୂର ମନେ ହୁଏ, ମୋର ତାଙ୍କ ସଙ୍ଗେ ବି.ଏ.ଆର.ସି ଠାରେ ହୋଇଥିବା ସେମିନାରରେ ପରିଚୟ ହୋଇଥିଲା । ମୁଁ ୧୯୭୫ ମସିହାରେ ଯେଉଁ ଗବେଷଣାତ୍ମକ ପ୍ରବନ୍ଧଟି ଜର୍ଣ୍ଣାଲ ଅଫ୍ ପ୍ଲାଜମା ଫିଜିକ୍ସରେ ପ୍ରକାଶ କରିଥିଲି, ସେଥିରେ ଡକ୍ଟର ବିମଳା ବୃତୀଙ୍କର ଅନ୍ୟ ଗୋଟିଏ ପ୍ରବନ୍ଧରେ ଭୁଲ ଥିବା ଦର୍ଶାଇ ଥିଲି । ସେଥିପାଇଁ ସେହି ବିଷୟ ନେଇ ତାଙ୍କ ସଙ୍ଗେ ମୋର ଅନେକ ଚିଠି ପତ୍ର ଆଦାନ ପ୍ରଦାନ ହୋଇଥିଲା । ତାପରେ ସେ ଥରେ ଭୁବନେଶ୍ୱର ଆସିଥିଲେ ଏବଂ ମୋ ସଙ୍ଗେ ଦେଖା କରିବା ପାଇଁ ଆମ ଘରକୁ କଟକ ଆସିଥିଲେ । ସେ ମୋ ସ୍ତ୍ରୀଙ୍କ ସାଙ୍ଗରେ ଯାଇ ସୁନା ଦୋକାନରୁ ରୂପା ତାରକସି କାମର କେତେ ଗୁଡିଏ ଜିନିଷ କିଣିଥିଲେ । ତାପର ଦିନ ମୁଁ ସେମିନାରରେ ଯୋଗ ଦେବାପାଇଁ ଗଲି । ମୋ ସ୍ତ୍ରୀ ଅତିଥି ଭବନରେ ରହିଲେ । ଖିରାବେଳେ ଖାଇବାକୁ ଆସିଲା ସମୟରେ ଆମେ ଦୁହେଁ ଅତିଥି ଭବନର ଖାଇବା ଘରକୁ ଗଲୁ । ଖାଇସାରି ମୁଁ ସେମିନାରରେ ଯୋଗ ଦେବାକୁ ଗଲି । ସେଦିନ ରାତିରେ ଡକ୍ଟର ତ୍ରେହାନ ଆମ ଦୁହିଁଙ୍କୁ ଓ ଆଉ କେତେ ଜଣଙ୍କୁ ରାତ୍ରି ଭୋଜନ ପାଇଁ ନିମନ୍ତ୍ରଣ କରିଥିଲେ । ଆମେ ଦୁହେଁ ଏବଂ

ଅନ୍ୟମାନେ ତାଙ୍କ ଘରକୁ ଯାଇଥିଲୁ ଏବଂ ଖାଇସାରି ଫେରି ଆସିଲୁ । ତା ପରଦିନ ପଞ୍ଚିମ ଠାରେ ଥିବା ଗୋଲାପ ବଗିଚାରେ ବଣଭୋଜିର ଆୟୋଜନ କରାଯାଇଥିଲା । ସେ ଜାଗାଟି ଆମ ଦୁହିଁଙ୍କୁ ବହୁତ ଭଲ ଲାଗିଲା । ସେଠାରୁ ଫେରିଲା ପରେ ପୁଣି ସେମିନାରର ବନ୍ଦୋବସ୍ତ ଥିଲା । ତା ପରଦିନ ସେମିନାର ଲଞ୍ଚ ପୂର୍ବରୁ ସରିଗଲା । ଲଞ୍ଚ ପରେ ଚଣ୍ଡିଗଡରେ ଥିବା ପ୍ରସିଦ୍ଧ ପଥର ବଗିଚା ଦେଖିବାକୁ ଯିବାର ଥିଲା ।

## ପଥର ବଗିଚା ପରିଦର୍ଶନ

ଖାଇସାରି ଆମେ ସମସ୍ତେ ବସ୍‌ରେ ପଥର ବଗିଚା ଅଭିମୁଖେ ଯାତ୍ରାକଲୁ । ଏହି ପଥର ବଗିଚାର ବିଶେଷତ୍ୱ ହେଲା ଜଣେ ବ୍ୟକ୍ତି ( ତାଙ୍କର ନାମ ମୋର ମନେ ନାହିଁ ) ଭଙ୍ଗା ପ୍ଲେଟ୍, କପ୍, କାଚ ଓ ହୋଲଡର ଇତ୍ୟାଦି ଅଦରକାରି ଜିନିଷରେ ନାନା ପ୍ରକାର ମୂର୍ତ୍ତି, ପଶୁ, ପକ୍ଷୀ ଓ ଅନ୍ୟାନ୍ୟ  ଦର୍ଶନୀୟ ବସ୍ତୁ ଅନେକ ବର୍ଷ ଲାଗିକରି ନିଜ ହାତରେ ତିଆରି କରିଥିଲେ । ସେ ବଗିଚାର ପାଚେରୀ ଖାଲି ପିଚୁ ଡ୍ରମରେ ତିଆରି କରିଥିଲେ । ତାହା ଭିତରେ ବୁଲି ଦେଖିବାକୁ ଆମକୁ ପ୍ରାୟ ତିନି ଘଣ୍ଟା ଲାଗିଗଲା । ସେ ବଗିଚାଟି ଏତେ ମନୋମୁଗ୍ଧକର ହୋଇଥିଲା ଯେ ମୁଁ ତାହା ବର୍ଣ୍ଣନା କରି ପାରିବି ନାହିଁ । ସେ ବ୍ୟକ୍ତି ପ୍ରଥମେ ତିଆରି କଲାବେଳେ ସେଠାକାର ବାସିନ୍ଦା ତାଙ୍କୁ ପାଗଳ ବୋଲି କହୁଥିଲେ । ଏବେ କେତେ ଦିନ ତଳେ ସେ ବ୍ୟକ୍ତି ଜଣଙ୍କ ପଥର ବଗିଚା ତିଆରି କରିବା ନିମନ୍ତେ ନିମନ୍ତ୍ରଣ ପାଇ ଆମେରିକା ଯାଇଥିଲେ । ଆମେ ପଥର ବଗିଚାରେ ବୁଲିବା ବେଳେ ଭାରତୀୟ ମେଡିକାଲ ଇନ୍‌ଷ୍ଟିଚିଉଟ୍‌ରେ ଓଡିଶାର ଦୁଇଜଣ ମେଡିକାଲ ଛାତ୍ରଙ୍କ ସହିତ ପରିଚିତ ହେଲା । ସେ ଦୁଇ ଜଣ ଛାତ୍ରଙ୍କ ନାମ ମୋର ମନେ ନାହିଁ । ସେମାନେ ଆମ ଦୁହିଁଙ୍କୁ( ମୁଁ ଓ ମୋ ସ୍ତ୍ରୀଙ୍କୁ) ମେଡିକାଲ ଛାତ୍ରାବାସକୁ ନିମନ୍ତ୍ରଣ କରିଥିଲେ । ମୁଁ କହିଲି ଆମେ ଫେରିଲା ବେଳେ, ଚଣ୍ଡିଗଡରୁ ରାତି ଗାଡିରେ କାଲକା ଦିଲ୍ଲୀ ଟ୍ରେନ୍‌ରେ ଯିବୁ । ଆମେ ସେହିଦିନ ସକାଳେ ଚଣ୍ଡିଗଡରେ ପହଞ୍ଚିବୁ । ସେଠାରୁ ମେଡିକାଲ ଇନ୍‌ଷ୍ଟିଚିଉଟ୍‌ରେ ଦିନ ଯାକ ରହି ରାତି ହେଲେ ଚଣ୍ଡିଗଡ ଷ୍ଟେସନ୍‌କୁ ଚାଲି ଯିବୁ । ତାପରେ ଆମେ ଅତିଥି ଭବନକୁ ଫେରି ଆସିଲୁ । କାରଣ ଆମର ସେହି ଦିନ ରାତି ୯ଟା ବେଳେ ଶ୍ରୀନଗର ଯିବାର ଥିଲା ।

## କାଶ୍ମୀର ଭ୍ରମଣ

ପ୍ରାୟ ରାତି ଆଠଟା ବେଳେ ଜିନିଷ ପତ୍ର ଧରି ବସ୍‌ରେ ଶ୍ରୀନଗର ଅଭିମୁଖେ ଯାତ୍ରା କଲୁ । ବଡି ସକାଳୁ ଆମେ ଜାମ୍ମୁରେ ଓହ୍ଲାଇଲୁ । ସେଠାରେ ବୁଝିଲୁ ଜାମ୍ମୁରୁ ସେହି ଟିକେଟରେ ଆଉ ଗୋଟିଏ ବସ୍ ଧରି ଶ୍ରୀନଗର ପର୍ଯ୍ୟନ୍ତ ଯିବାକୁ ପଡିବ । ଶ୍ରୀନଗର ବସ୍ ଘଣ୍ଟାଏ ପରେ ଛାଡିବ ବୋଲି ଆମେ ବୁଝିଲୁ । ଗାଧୋଇବାର ପ୍ରଶ୍ନ ଉଠୁନାହିଁ, ଝାଡା ପରିସ୍ରା କରିବା ପାଇଁ ଆମକୁ ଗୋଟିଏ ଲାଇନ୍‌ରେ ପଚାଶ ଜଣଙ୍କ ପଛରେ ଛିଡା ହେବାକୁ ପଡିଲା । ପାଇଖାନା ସବୁ ଫ୍ଲସ୍ ଲାଟ୍ରିନ୍, କିନ୍ତୁ ଯାତ୍ରୀମାନେ କେହି ଫ୍ଲସ୍ କରି ନ ଥାଆନ୍ତି । ଯାହା ହେଉ କୌଣସି ପ୍ରକାରେ ନିତ୍ୟକ୍ରମ ସରିଗଲା ପରେ ପାଉଁରୁଟି ଓ ବିସ୍କୁଟ୍ ଖାଇ ଶ୍ରୀନଗର ବସ୍‌ରେ ବସିଲୁ । ବସ୍‌ରେ ଗଲାବେଳେ ରାସ୍ତାର ଗୋଟିଏ ପାଖରେ ଉଚ୍ଚ ପର୍ବତମାଳା ଓ ଅନ୍ୟ ପାଖରେ ଏତେ ଗହିରିଆ ଖାଲ ସବୁ ଅଛି ତାହା ଦେଖିଲେ କେଉଁ ମୁହୂର୍ତ୍ତରେ ବସ୍‌ଟି ଖସି ପଡିବା ଭଳି ଜଣା ପଡୁଥାଏ ।

ଏହିପରି କିଛି ବାଟ ଗଲାପରେ ଗୋଟିଏ ସମତଳ ଭୂମିରେ ବସ୍‌ଟି କିଛି ସମୟ ରହିଲା, ଆମେ ବସ୍‌ରୁ ଓହ୍ଲାଇ କିଛି ଖାଇନେଲୁ । ଲୋକଙ୍କ ଠାରୁ ବୁଝିଲୁ ଏହାପରେ ଗୋଟିଏ ବଡ ସୁଡଙ୍ଗ ଭିତର ଦେଇ ଶ୍ରୀନଗର ବସ୍ ସବୁ ପଛକୁ ପଛ ହୋଇ ଯିବ । ଏହି ରହିବା ସମୟରେ ଆମେ ଦେଖିଲୁ ଶ୍ରୀନଗର ଠାରୁ ଜାମ୍ମୁ ପର୍ଯ୍ୟନ୍ତ ଯିବା ବସ୍ ସବୁ ସୁଡଙ୍ଗ ଦେଇ ଆସୁଥାଏ । ଶ୍ରୀନଗର ଠାରୁ ଆସୁଥିବା ବସ୍ ସବୁ ଆସି ସାରିଲେ ଆମକୁ ଯିବାକୁ ଅନୁମତି ଦିଆଯିବ । ବସ୍ ଯେତେବେଳେ ସୁଡଙ୍ଗ ଭିତରେ ଅତିକ୍ରମ କଲା ତା ଭିତରେ ଜମା ଆଲୁଅ ନଥିଲା । କେବଳ ଠାଏ ଠାଏ ଇଲେକ୍ଟ୍ରିକ୍ ବଲ୍‌ବ ଜଳୁଥାଏ । କିଛି ସମୟ ପରେ ଆମେ ସୁଡଙ୍ଗ ଅତିକ୍ରମ କରି ଶ୍ରୀନଗର ଅଭିମୁଖେ ଗଲୁ । ଶ୍ରୀନଗର ପାଖ ହୋଇଗଲାରୁ ଆମେ ଦେଖିଲୁ ବସ୍‌ଟି ଗୋଟିଏ ସମତଳ ଜାଗାରେ କିଛି ବାଟ ଗଲାପରେ ଗୋଟିଏ ଦର୍ଶକ ସଂରକ୍ଷଣ  ଅଫିସ୍‌ରେ ଯାଇ ରହିଲା ଏବଂ ବସ୍ କଣ୍ଡକ୍ଟର ଆମକୁ କହିଲା "ଶ୍ରୀନଗର ହୋଇଗଲା, ଏଠାରେ ଓହ୍ଲାଇ ପଡନ୍ତୁ । କୁଲିମାନେ ପ୍ରତି ପ୍ୟାକେଟ୍‌କୁ ଦୁଇ ଟଙ୍କା ଲେଖାଏଁ ନେବୁ ବୋଲି କହିଲେ । ଆମର ତ କିଛି ଅନ୍ୟ ଉପାୟ ନ'ଥିଲା । ତେଣୁ ଆମେ ଦେବା ପାଇଁ ରାଜି ହେଲୁ । ସେହିଠାରେ ବୁଝିଲୁ କେଉଁଠାରେ ରହିବୁ ଆମକୁ ସଂରକ୍ଷଣ କରିବାକୁ  ପଡିବ । ମୁଁ ସଂରକ୍ଷଣ କରିବାକୁ ଗଲି ଓ ଦେଖିଲି, ଏହା ଗୋଟିଏ କାଶ୍ମିରୀ ସରକାରଙ୍କର ସଂସ୍ଥା । ସରକାରୀ ଅତିଥି ଭବନ ସଂରକ୍ଷଣ କଲେ ଗୋଟିଏ କୋଠରୀକୁ ଦିନକୁ ୩୫ ଟଙ୍କା କିନ୍ତୁ ବେସରକାରୀ ସଂସ୍ଥାରେ ସଂରକ୍ଷଣ କଲେ ଦିନକୁ ୨୦ ଟଙ୍କା । ବେସରକାରୀ ସଂସ୍ଥାଟି କମ୍ ପଇସା ନେବାରୁ ମୁଁ ସେଠାରେ ଗୋଟିଏ କୋଠରୀ ଦୁଇ ଦିନ ପାଇଁ ସଂରକ୍ଷଣ କଲି । ମୋ ସ୍ତ୍ରୀ ମନା କରିଥିଲା, ବୋଟ ହାଉସ୍ ସଂରକ୍ଷଣ କରିବା ପାଇଁ ? ମୁଁ ଯେଉଁଠି ରହିବି ବୋଲି ସଂରକ୍ଷଣ କରିଥିଲି ସେଇଟା ବୋଟ ହାଉସ୍ ନୁହେଁ, କିନ୍ତୁ ହ୍ରଦ ଭିତରେ ଥିବା ଗୋଟିଏ ଟାପୁ । ତେଣୁ ମୋ ସ୍ତ୍ରୀ କହିଲେ, ବୋଟ ହାଉସ୍ ଠାରୁ ଏହା ବେଶୀ ଖରାପ ସ୍ଥାନ । ସେହି ଟାପୁ ପାଖକୁ ଯିବାକୁ ହେଲେ ଛୋଟ ଡଙ୍ଗାରେ ଯିବାକୁ ପଡିବ । ବାଧ୍ୟ ହୋଇ ଆମେ ଯାଇ ସେଠାରେ ପହଁଞ୍ଚିଲୁ । ଗୋଟିଏ ରାତି ରହିଲୁ । ତା ପର ଦିନ ସକାଳୁ ମୋ ସ୍ତ୍ରୀ କହିଲେ ଚାଲ ଏଠାରୁ ଆମେ ଚାଲିଯିବା । ସେହି ହୋଟେଲ୍‌ରେ ଘର ବ୍ୟତୀତ ପାଣି ବାଲଟିକ ପାଇଁ ଭଡା ଦୁଇ ଟଙ୍କା, କମଳ ପାଇଁ ଭଡା ଦୁଇଟଙ୍କା, ଏହିପରି ଚାର୍ଜ ଶୁଣି ଆମକୁ ବଡ ବିରକ୍ତ ଲାଗିଲା । ମୋ ସ୍ତ୍ରୀ କହିଲା ଅନ୍ୟ ସ୍ଥାନରେ ଯାଇ ରହିବା । ସେ ଘରର ଛାତ ବହୁତ ନିଚା । ଗୋଟିଏ ଘଟଣା ଘଟିଲା, ମୁଁ ଟିକିଏ ଅଳସ ଭାଙ୍ଗିବା ପାଇଁ ହାତଟା ଉପରକୁ ଟେକିଦେଲି । ଗୋଟିଏ ଇଲେକ୍‌ଟ୍ରିକ୍ ବଲ୍‌ବରେ ହାତଟା ବାଜି ସେଇଟି ଖସିପଡି ଭାଙ୍ଗିଗଲା । ଆଉ ଗୋଟିଏ ବଲ୍‌ବ ମାଗିବାରୁ ସେ କହିଲେ ନଅ ଟଙ୍କା ପଡିବ । ମୁଁ କହିଲି ହଉ ସଂଧ୍ୟା ବେଳକୁ ଦେବ । ଆମେ ଶ୍ରୀନଗର ସହର ପରିକ୍ରମା କଲୁ । ଗୋଟିଏ ସରକାରୀ ଗେଷ୍ଟ ହାଉସ୍‌କୁ ଗଲୁ । ସେଠି ବୁଝିଲୁ ଦିନକୁ ଭଡା ପଇଁତିରିଶ ଟଙ୍କା । ଗରମ ପାଣି ଅଛି ଏବଂ ଆଉ ସବୁ ମାଗଣା । ଖାଇବାକୁ ଅଲଗା ପଇସା ଦେବାକୁ ପଡିବ । ଆମେ ବୁଝିଲୁ କୋଠରୀ ଖାଲି ଅଛି କି ନାହିଁ । ସେ ହଁ କଲା, ତେଣୁ ଆମେ ଠିକ୍ କଲୁ ଏଇଠି ଆସି ରହିବୁ । ଆମେ ଯାଇ ଟାପୁ ଉପରେ ଥିବା ହୋଟେଲ୍‌ରୁ ସବୁ ଟ୍ରଙ୍କ ଜିନିଷ ପତ୍ରଧରି ଏହି ସରକାରୀ  ଗେଷ୍ଟ ହାଉସ୍‌କୁ ଆସିଲୁ । କିନ୍ତୁ ସେ ଗେଷ୍ଟ ହାଉସ୍‌ରେ ଆମକୁ ରହିବା ପାଇଁ ଦେଲାନି । କହିଲା ବାରଟା ପରେ ରହିବ । କିନ୍ତୁ ତାକୁ ଦଶ ଟଙ୍କା ଦେବାରୁ ସେ

ଗୋଟିଏ କୋଠରୀ ଖୋଲିଦେଲେ ସେଠି ସମସ୍ତ ପ୍ରକାର ସୁବିଧା ଥିଲା । ଆମେ ଖରାବେଳେ ସେଠାରେ ଖାଇଲୁ । ଖାଇବାଟି ଭଲ ସୁସ୍ୱାଦୁ ଥିଲା । ସେ ଖାଇବା ଘରେ ଜଣେ ବଙ୍ଗାଳୀ ଭଦ୍ର ଲୋକ ଏବଂ ତାଙ୍କ ସ୍ତ୍ରୀଙ୍କ ସଙ୍ଗେ ଦେଖାହେଲା । ସେ ମୋତେ ପଚାରିଲେ, ଆପଣ କଣ କରୁଛନ୍ତି ? ମୁଁ କହିଲି ରେଭେନ୍ସା କଲେଜରେ ପ୍ରାଧ୍ୟାପକ ଅଛି । ସେ ବହୁତ ଖୁସି ହୋଇଗଲେ । କାରଣ ତାଙ୍କର ଜଣେ ନିକଟ ସଂପର୍କୀୟ ଲୋକ ରେଭେନ୍ସା କଲେଜରେ ଇତିହାସ ବିଭାଗର ଅଧ୍ୟାପକ ଥାଆନ୍ତି । ଆମେ ତାଙ୍କ ସଙ୍ଗେ ଭଲ ଭାବରେ ଚିହ୍ନା ପରିଚୟ ହୋଇଗଲୁ । ଆମେ ଉପର ବେଳା ସାଙ୍ଗ ହୋଇ ଯାଇ ସହରର ବିଭିନ୍ନ ଜାଗା ବୁଲାବୁଲି କରି ଦେଖିଲୁ । ସହରରେ କିଛି କିଣା କିଣି କଲୁ । ସଂଧ୍ୟାବେଳେ ଅତିଥି ଭବନକୁ ଫେରି ଆସିଲୁ । ସେ ଆମକୁ କହିଲେ କାଲି ଆମେ ଖିଲାଣ ମାର୍ଗ ଯିବୁ । ଆପଣ ଆମ ସାଙ୍ଗରେ ଯିବେ । ଆମେ ମନା କରୁଥିଲୁ । ସେ ଆମକୁ ଅନୁରୋଧ କରିବାରୁ ଆମେ ଯିବାକୁ ରାଜି ହେଲୁ ।

## ଟଟୁ ଘୋଡାରେ ସସ୍ତ୍ରୀକ ଖିଲାଣ ମାର୍ଗ ଗମନ

ତାପର ଦିନ ସକାଳ ଆଠଟାବେଳେ ଖିଲାଣ ମାର୍ଗ ଯିବା ଉଦ୍ଦେଶ୍ୟରେ ଗୋଟିଏ ବସ୍ ଷ୍ଟାଣ୍ଡକୁ ଗଲୁ । ସେଠାରୁ ଖିଲାଣ ମାର୍ଗ ବସ୍‌ରେ ଯାଇ ହେବନାହିଁ । ଚାଲିକରି ଯିବାକୁ ପଡିବ , ନହେଲେ ଟଟୁ ଘୋଡା ପିଠିରେ ବସି ଯିବାକୁ ପଡିବ । ସେ ଆମକୁ ନ ପଚାରି ଚାରିଟା ଘୋଡା ଠିକ୍ କରିଦେଲେ । ଆମେ ଘୋଡାରେ ବସିବାକୁ ଗଲୁ । ମୋତେ ଡର ଲାଗୁ ଥାଏ । ମୋ ସ୍ତ୍ରୀ କହିଲା, ମୁଁ ଯିବିନାହିଁ । ମୋତେ ଡର ମାଡୁଛି, ଆମକୁ ଘୋଡାର ମାଲିକ ମାନେ କହିଲେ କିଛି ହେବ ନାହିଁ । ଆମେ ଠିକ୍ ଭାବରେ ନେଇକରି ଯିବୁ । ତେଣୁ ଆମେ ବାଧ୍ୟ ହୋଇ ଘୋଡାରେ ବସିଲୁ । ଘୋଡାରେ ବସି କିଛି ବାଟ ଗଲାପରେ ଆମର ଡର ଛାଡିଗଲା । ପ୍ରାୟ ଦୁଇ ଘଣ୍ଟା ପରେ ଆମେ ଗୁଲ୍‌ମାର୍ଗରେ ପହଁଚିଲୁ । ସେଠାରେ ଓହ୍ଲାଇ କିଛି ଜଳଖିଆ ଖାଇଲୁ । ଗୁଲ୍‌ମାର୍ଗ ପ୍ରାୟ ସମୁଦ୍ର ପତନ ଠାରୁ ୬୦୦୦ ହଜାର ଫୁଟ ଉଚ୍ଚରେ ଅବସ୍ଥିତ ଏବଂ ଖିଲାଣ ମାର୍ଗ ପ୍ରାୟ ୯୦୦୦ ଫୁଟ ଉଚ୍ଚରେ ଅବସ୍ଥିତ । ତେଣୁ ଆମକୁ ଆଉ ତିନି ହଜାର ଫୁଟ୍ ଯିବାକୁ ପଡିବ । ତାପରେ ଖିଲାଣମାର୍ଗ ଯିବା ପାଇଁ ବାହାରିଲୁ । କିଛି ବାଟ ଗଲାପରେ ରାସ୍ତାର ଚାରିଆଡକୁ ଚାହିଁଲେ ବଡ ଆନନ୍ଦ ଲାଗୁଥାଏ । ଆଉ କିଛିବାଟ ଗଲାପରେ ଆମେ ଦେଖିଲୁ ସୂର୍ଯ୍ୟ କିରଣ ଠାଏ ଠାଏ ପର୍ବତ ଉପରେ ପଡିଥିବା ବରଫ ଉପରେ ପଡି ଚକ୍ ଚକ୍ କରୁଥାଏ । ଖିଲାଣ ମାର୍ଗରେ ପହଁଚିଲା ପରେ ସେଠାରେ ଗଛ ପତ୍ର କିଛି ନ'ଥାଏ, ଚାରିଆଡ ଖୋଲା । ଉପରେ ବରଫ ସବୁ ପଡିଥିବାର ଦେଖାଯାଉଥାଏ । ସେଠାରେ ଆମ ସାଙ୍ଗରେ ଯାଉଥିବା ବଙ୍ଗାଳି ଭଦ୍ର ଲୋକ ଆମ ଚାରିଜଣଙ୍କର ଗୋଟିଏ ଫଟୋ ଉଠାଇଲେ । ସେ ଫଟୋଟି ଏପର୍ଯ୍ୟନ୍ତ ମୋ ପାଖରେ ଅଛି । ସେଠାରେ କିଛି ସମୟ ରହିଲା ପରେ ଆମେ ପୁଣି ଘୋଡାରେ ବସି ବସ୍‌ଷ୍ଟାଣ୍ଡରେ ପ୍ରାୟ ଚାରିଟା ବେଳେ ପହଁଚିଲୁ । ଯିବାବେଳେ ଆମକୁ ପ୍ରାୟ ଚାରି ଘଣ୍ଟା ଲାଗିଥିଲା । କିନ୍ତୁ ଫେରିବାକୁ ମାତ୍ର ଦୁଇ ଘଣ୍ଟା ଲାଗିଲା । ତାପରେ ଆମେ ହୋଟେଲ୍‌ରେ ବିଶ୍ରାମ ନେଇ ସଂଧ୍ୟାବେଳେ ବଜାର ଆଡେ ଗଲୁ । କ୍ଳାନ୍ତ ହୋଇଯାଇଥିବାରୁ ଆଉ ବୁଲିବାକୁ ବେଶୀ ଯାଇପାରିଲୁ ନାହିଁ । ତାପର ଦିନ ଆମେ ମୋଗଲ ଗାର୍ଡେନ୍, ଡାଲ୍ ହ୍ରଦ ପ୍ରଭୃତି ଦର୍ଶନୀୟ ସ୍ଥାନ

ବୁଲି ଦେଖିଲୁ । ଉପର ବେଳା ଘରକୁ ଆସି ଶ୍ରୀନଗର ଛାଡ଼ିକରି ଯିବା ପାଇଁ ଠିକ୍ ଠାକ୍ କରି ରଖିଲୁ । ତାପର ଦିନ ସକାଳେ ବସ୍ ଷ୍ଟାଣ୍ଡ ଯାଇ ଜାମ୍ମୁ ପର୍ଯ୍ୟନ୍ତ ଟିକେଟ୍ କଲୁ ଓ ଜାମ୍ମୁ ଯିବା ପାଇଁ ବସ୍‌ରେ ବସିଲୁ । ଜାମ୍ମୁରେ ପ୍ରାୟ ସଂଧ୍ୟା ବେଳେ ପହଞ୍ଚିଲୁ । ସେତେବେଳେ ଜାମ୍ମୁରେ ମୋର ଜଣେ ଦୂର ସମ୍ପର୍କୀୟ ସଭୁଙ୍କ ପୁଅ ମିଲିଟାରୀ ବାରାକ୍‌ରେ ରହୁଥିଲେ । ତାଙ୍କ ବାପା ରେଭେନ୍ସା କଲେଜରେ ଇତିହାସ ବିଭାଗର ପ୍ରାଧ୍ୟାପକ ଥିଲେ । ଆମେ କଟକରୁ ତାଙ୍କ ପାଖକୁ ଲେଖିଥିଲୁ ଯେ 'ସେ ଯେପରି ଜାମ୍ମୁଠାରୁ ଚଣ୍ଡିଗଡ ପର୍ଯ୍ୟନ୍ତ ଦୁଇଟା ସ୍ଲିପର ସଂରକ୍ଷଣ କରି ଆମକୁ ଜାମ୍ମୁ ଷ୍ଟେସନରେ ଦେବେ ।' ପ୍ରାୟ ରାତି ୯ଟା ବେଳେ ଆମକୁ ଗାଡ଼ିରେ ବସାଇ ଦେଇ ଚାଲିଗଲେ । ଆମେ ଚଣ୍ଡିଗଡରେ ପ୍ରାୟ ସକାଳ ୭ଟା ବେଳେ ପହଞ୍ଚିଲୁ । ଏଠାରୁ ଅଲ ଇଣ୍ଡିଆ ଇନ୍‌ଷ୍ଟିଚ୍ୟୁଟ ଅଫ ମେଡ଼ିକାଲ ସାଇନ୍ସ ଛାତ୍ରାବାସକୁ ଗଲୁ । ଆମର ସାକ୍ଷାତ ହୋଇଥିବା ଛାତ୍ରଙ୍କ କୋଠରୀରେ ଆମେ ଅପେକ୍ଷା କରି ରାତି ଆଠଟା ବେଳେ ଚଣ୍ଡିଗଡ ଷ୍ଟେସନକୁ ଗଲୁ । ଚଣ୍ଡିଗଡରୁ ଗୋଟିଏ ବଗି କାଲାକାରୁ ଟ୍ରେନରେ ଯୋଗ କରାଯାଏ । ଏହି ଟ୍ରେନ୍‌ଟି ଆସି ରାତି ବାରଟାବେଳେ ଚଣ୍ଡିଗଡରେ ପହଞ୍ଚେ । ସେଠାରୁ ଦିଲ୍ଲୀ ଅଭିମୁଖେ ଯାଏ । ମୁଁ ଷ୍ଟେସନ୍ ମାଷ୍ଟରଙ୍କୁ କହି ସେହି ବଗିରେ ଆମ ପାଇଁ ସଂରକ୍ଷଣ ହୋଇଥିବା କୁପେ କୋଠରୀରେ ଯାଇ ନଅଟା ବେଳେ ବସିଲୁ ଏବଂ କୋଠରୀଟି ଭିତରୁ ବନ୍ଦ କରିଦେଇ ଶୋଇପଡ଼ିଲୁ । ଭୋର ହେବାରୁ ଆମ ନିଦ ଭାଙ୍ଗିଲା । ବଗିର କଣ୍ଡକ୍ଟର ଠାରୁ ବୁଝିଲୁ ଦିଲ୍ଲୀରେ ପହଞ୍ଚିବାକୁ ଆଉ ଦୁଇ ଘଣ୍ଟା ଲାଗିବ ।

## ଦିଲ୍ଲୀ ଓ ବନାରସ ଭ୍ରମଣ

ପ୍ରାୟ ସକାଳ ସାତଟାବେଳେ ଦିଲ୍ଲୀରେ ପହଞ୍ଚିଲୁ । ଫାଷ୍ଟକ୍ଲାସ ୱେଟିଂ ରୁମ୍‌କୁ ଯାଇ ନିତ୍ୟକର୍ମ ସବୁ ସାରିଦେଲୁ । ଲେଫଟ୍ ଲଗେଜରେ ଜିନିଷ ପତ୍ର ସବୁ ରଖିଦେଇ ସହର ବୁଲିବାକୁ ଗଲୁ । କେବଳ ରାଜଘାଟ ଯାଇଥିଲୁ । ଆଉ କେତେ ଗୁଡ଼ିଏ ଜିନିଷ ପିଲାମାନଙ୍କ ପାଇଁ ନେଇ ଷ୍ଟେସନକୁ ଆସିଲୁ । ଷ୍ଟେସନ୍ ଅନୁସନ୍ଧାନ କାର୍ଯ୍ୟାଳୟରୁ ବୁଝିଲୁ ଆମର ଗୋଟିଏ କୁପେ ବନାରସ୍ ପର୍ଯ୍ୟନ୍ତ ସଂରକ୍ଷଣ କରାଯାଇଛି । ତେଣୁ ଗାଡ଼ି ଛାଡ଼ିବାର ସମୟ ହେବାରୁ ଆମେ ଯାଇ ସେହି ଡବାରେ ବସିଲୁ । ଗାଡ଼ି ବନାରସ୍‌ରେ ପ୍ରାୟ ଦିନ ବାରଟା ବେଳେ ପହଞ୍ଚିଲା ।

ପ୍ରଫେସର ନନ୍ଦଲାଲ ସିଂ ତାଙ୍କର ଜଣେ ସହକର୍ମୀଙ୍କ ସାଙ୍ଗରେ ଗୋଟିଏ ଗାଡ଼ି ନେଇ ଷ୍ଟେସନକୁ ଆସିଥିଲେ । ସେହି କାରରେ ବସି ଆମେ ତାଙ୍କ ଘରକୁ ଗଲୁ । ତାଙ୍କ ଘର ଲଙ୍କାର ପାଞ୍ଚ ନମ୍ବର ନାଗୁଆ ରୋଡରେ ଅବସ୍ଥିତ । ମୋ ସ୍ତ୍ରୀ ପ୍ରଫେସର ନନ୍ଦଲାଲ୍ ସିଂଙ୍କର ସ୍ତ୍ରୀଙ୍କ ପାଇଁ କଟକରୁ ରୁପା ତାରକସି କାମର ହଳେ କାନଫୁଲ ଆଣିଥିଲା । ତାଙ୍କ ସ୍ତ୍ରୀ ସେହିଟିକୁ ଦେଖି ବହୁତ ଖୁସି ହୋଇଗଲେ । ସେଦିନ କୁଆଡ଼େ ନ ଯାଇ ଆମେ ବିଶ୍ରାମ ନେଲୁ । ଡକ୍ଟର ନନ୍ଦଲାଲ୍ ସିଂ ବନାରସ୍ ହିନ୍ଦୁ ବିଶ୍ୱବିଦ୍ୟାଳୟର ଫିଜିକ୍ସ ଡିପାର୍ଟମେଣ୍ଟର ମୁଖ୍ୟ ଭାବରେ ଅବସର ଗ୍ରହଣ କରିଥିଲେ । ମୁଁ ଆଗରୁ ଲେଖିଛି ପ୍ରଫେସର ନନ୍ଦଲାଲ୍ ସିଂ ରେଭେନ୍ସା କଲେଜର ଏମ୍.ଏସ୍‌ସି ସ୍ପେକ୍‌ଟ୍ରୋସ୍କୋପି ପ୍ରାକ୍ଟିକାଲ୍ ପରୀକ୍ଷାର ବାହ୍ୟ ପରୀକ୍ଷକ ହୋଇ କେତେଥର ଯାଇଥିଲେ ଏବଂ ମୋ ଘରେ ରହିଥିଲେ । ତାଙ୍କ ସ୍ତ୍ରୀ ଏବଂ ତାଙ୍କର ବ୍ୟବହାର ବହୁତ ଭଲ ଲାଗିଲା । ଯଦିଓ ସେ ମୋଠାରୁ କୋଡ଼ିଏ ବର୍ଷ ବଡ ଅଟନ୍ତି । ଆମେ ସବୁ କୁଆଡ଼େ ବୁଲିଯିବୁ ପ୍ରଫେସର ସିଂ ଠିକଣା କରିଦେଲେ ଏବଂ ତାଙ୍କ ଡିପାର୍ଟମେଣ୍ଟରେ ଚାକିରି କରୁଥିବା ଜଣେ ସମ୍ପର୍କୀୟଙ୍କୁ ଡକାଇ

କେତୋଟି ଜାଗା ବୁଲାଇ ନେବାକୁ କହିଲେ । ତାପର ଦିନ ସକାଳୁ ସେ ଭଦ୍ରଲୋକ ନନ୍ଦଲାଲ୍ ସିଂଙ୍କ ଘରକୁ ଆସିଲେ । ଆମେ ସାଙ୍ଗ ହୋଇ ରିକ୍ସାରେ କାଶୀ ବିଶ୍ୱନାଥଙ୍କ ମନ୍ଦିରକୁ ପ୍ରଥମେ ଗଲୁ । ମନ୍ଦିରରେ ଭୋଗ ଲଗାଇଲୁ । ମନ୍ଦିରରୁ ଫେରି ମୁଁ ଯେଉଁ 'ପାଣି ଜାହାଜ' ନନାଙ୍କ ସାଙ୍ଗରେ ଆସି ବନାରସ୍‌ରୁ କିଣିଥିଲି, ସେହିଭଳି ଗୋଟିଏ ଜାହାଜ କିଣିବା ପାଇଁ ସେ ଭଦ୍ର ଲୋକକୁ କହିଲି ଏବଂ ସେଭଳି ଗୋଟିଏ ଜାହାଜ କିଣିକରି ଆଣିଲି । ଆମେ ବାରଟା ଗୋଟାଏ ବେଳକୁ ଘରକୁ ଫେରିଲୁ । ସେତେବେଳେ ବନାରସ୍‌ର ପ୍ରସିଦ୍ଧ ରାମଲୀଳା ଉତ୍ସବ ପାଳନ ହେଉଥିଲା । ସଂଧ୍ୟାବେଳେ ରାମଲୀଳା ଉତ୍ସବ ଦେଖିବାକୁ ଗଲୁ । ଆମକୁ ବଡ ବୋଟରେ ଗଙ୍ଗା ପାରି ହୋଇ ଯିବାକୁ ପଡିଥିଲା । ସେଠାରେ କାଶୀ ରାଜା ଗୋଟିଏ ହାତୀ ଉପରେ ବସି ସେ ଉତ୍ସବ ଦେଖିବାଟା ହେଉଛି ବିଧି । ଆମେ ଘଣ୍ଟାଏ ଦେଖି ଘରକୁ ଫେରି ଆସିଲୁ । ଏହି ଜୀବନୀଟି ଲେଖିଲା ବେଳକୁ ତାଙ୍କ ସ୍ତ୍ରୀ ଓ ତାଙ୍କର ଦେହାନ୍ତ ହୋଇ ଯାଇଥିଲା ।

## ସାରନାଥ ବୌଦ୍ଧ ପୀଠ ପରିଦର୍ଶନ

ତାପର ଦିନ ସାରନାଥ ବୌଦ୍ଧ ପୀଠକୁ ଯିବାର କଥା । ସେହି ଅନୁସାରେ ପ୍ରଫେସର ନନ୍ଦଲାଲ୍ ସିଂ ସାଇକେଲ୍ ରିକ୍ସାବାଲା ଠିକ୍ କରିଦେଲେ । ପ୍ରାୟ ଆଠଟା ବେଳେ ସେ ରିକ୍ସାବାଲା ଆସିଲା ଏବଂ ଆମେ ସାରନାଥ ପୀଠ ଦେଖିବାକୁ ଗଲୁ । ସେହି ଜାଗାଟି ପ୍ରାୟ ବନାରସ୍ ଠାରୁ ସାତ କିମ୍ବା ଆଠ କିଲୋମିଟର ଦୂରରେ ଅବସ୍ଥିତ । ସେଠାରୁ ଫେରି ଆମେ ଗୋଟାଏ ବେଳେ ଘରେ ପହଁଞ୍ଚିଲୁ । ଉପର ବେଳା ସେହି ଭଦ୍ରଲୋକ ପୁଣି ଆସିଲେ । ତାଙ୍କ ସାଙ୍ଗରେ ଯାଇ ନଈପାରି ହୋଇ କାଶୀ ରାଜାଙ୍କ ପୋଷାକ ପତ୍ର, ପେଣ୍ଟିଙ୍ଗ ଓ ପୂର୍ବରୁ ଯୁଦ୍ଧରେ ବ୍ୟବହୃତ ହେଉଥିବା ଅସ୍ତ୍ର ଶସ୍ତ୍ର ସବୁ ଗଚ୍ଛିତ ହୋଇଥିବାର ଦେଖିଲୁ । ସେଠାରେ ଘଣ୍ଟାଏ ଦୁଇ ଘଣ୍ଟା ବୁଲିବା ପରେ ଫେରି ଆସିଲୁ । ତାପର ଦିନ ଆମର ବନାରସ୍ ବିଶ୍ୱବିଦ୍ୟାଳୟ ଯିବାର ବ୍ୟବସ୍ଥା ଥିଲା ।

ସେଠାରେ ମୋର ଫିଜିକ୍ସ ଡିପାର୍ଟମେଣ୍ଟ ଏବଂ ପ୍ରଫେସର ଶକୁନ୍ତଳାଙ୍କୁ ଭେଟିବାର ଥିଲା । କାରଣ ମୁଁ ତାଙ୍କୁ ବମ୍ବେର ସେମିନାରରେ ଭେଟିଥିଲି ଏବଂ ସେ ଗବେଷଣାତ୍ମକ ପ୍ଲାଜମା ଫିଜିକ୍ସ ଉପରେ କାମ କରୁଥିଲେ । ତାପର ଦିନ ଯାଇ ଶକୁନ୍ତଳାଙ୍କ ଦ୍ୱାରା ନିର୍ମିତ ପ୍ଲାଜମା ସକ୍ ଟିଉବ୍‌ର କାର୍ଯ୍ୟକାରିତା ଦେଖିଲୁ । ମୋର ସେହିପରି ଗୋଟିଏ ସକ୍ ଟିଉବ୍ ତିଆରି କରିବା ପାଇଁ ଇଚ୍ଛା ହେଲା । ସକ୍ ଟିଉବ୍‌ର କାର୍ଯ୍ୟକାରିତା ଦେଖିଲା ପରେ ମୁଁ ଜାଣିପାରିଲି କେତେ ଗୁଡିଏ ଧାରକକୁ (Capacitar) ଉଚ୍ଚ ବିଭବରେ (High voltege) ଚାର୍ଜ କରାଯାଏ । ତାପରେ ଧାରକର ସଞ୍ଚିତ ଥିବା ଚାର୍ଜ ସକ୍ ଟିଉବ୍ ଭିତରେ ବିସର୍ଜନ (Discharge) କରାଯାଏ । ସେହି ସମୟରେ ଏକ ଭୟଙ୍କର ଶବ୍ଦ ହୋଇ ଆଲୋକ ବାହାରି ଘରଟି ଉଜ୍ଜ୍ୱଳ କରିଦିଏ । ସେହି ବୈଦ୍ୟୁତିକ ବିସର୍ଜନ ହେବା ସମୟରେ ଏକ ତରଙ୍ଗ ସକ୍ ଟିଉବ୍ ଭିତରେ ପ୍ରବାହିତ ହୁଏ । ଏଥିରେ ଠିକ୍ ବିଜୁଳି ଘଡ ଘଡି ମାରିବାର ଟିକେ ସାମଞ୍ଜସ୍ୟ ଥାଏ । ଏହାର ତୀବ୍ର ଶବ୍ଦ ଶୁଣି ପରୀକ୍ଷକଙ୍କର ପରୀକ୍ଷା କରିବାକୁ ଆଗ୍ରହ ଜମିଯାଏ । ତେଣୁ ମୋର ଇଚ୍ଛା ହେଲା ଏହିପରି ଏକ ସକ୍ ଟିଉବ୍ ପ୍ରସ୍ତୁତ କରି ତା ସାହାଯ୍ୟରେ ପରୀକ୍ଷା ନିରୀକ୍ଷା କରିବା ପାଇଁ । କିନ୍ତୁ ମୁଁ ଭାବିଲି ଯେ ଏହି ଶବ୍ଦଟା କୌଣସି ପ୍ରକାରେ ନ ହୁଅନ୍ତା ତାହାହେଲେ ପର୍ଯ୍ୟବେକ୍ଷଣ କରିବା ପାଇଁ ସୁବିଧା

ହୁଅନ୍ତା । ବିଶ୍ୱବିଦ୍ୟାଳୟ ବୁଲାବୁଲି କରି ତାପରେ ଆମେ ଘରକୁ ଫେରି ଆସିଲୁ । ସେହି ଦିନ ରାତିରେ ଆମର ଡେରାଡୁନ୍ ଏକ୍ସପ୍ରେସ୍‌ରେ ହାଓ୍ୱଡା ପର୍ଯ୍ୟନ୍ତ ଯିବା ପାଇଁ ସଂରକ୍ଷଣ କରାଯାଇଥିଲା । କିନ୍ତୁ ସଂରକ୍ଷଣ ହୋଇଥିଲା ବୋଲି କିଛି ଖବର ପାଇ ନଥିଲୁ । ସଂଧ୍ୟା ହେବାରୁ ଆମେ ଷ୍ଟେସନ୍ ଅଭିମୁଖେ ଯାତ୍ରା କଲୁ । ଗାଡି ଆସିଲା ପରେ ଜାଣିଲୁ ଆମର ଦୁଇଟି ବର୍ଥ ସଂରକ୍ଷଣ ହୋଇଛି । ଆମେ ଯାଇ ସେଥିରେ ବସିଲୁ । ତାପର ଦିନ ହାଓ୍ୱଡା ଷ୍ଟେସନ୍‌ରେ ପହଁଞ୍ଚିଲୁ । ଷ୍ଟେସନ୍‌ରେ କିଛି ସମୟ ଅପେକ୍ଷା କଲାପରେ ଦିନ ଏଗାରଟା ବେଳେ ଇଷ୍ଟକୋଷ୍ଟ ଟ୍ରେନ୍‌ର ଫାଷ୍ଟକ୍ଲାସ୍‌ରେ ବସିଲୁ । କଟକରେ ପ୍ରାୟ ସଂଧ୍ୟା ୬ଟା ବେଳେ ପହଁଞ୍ଚିଲୁ । ଆମକୁ ପାଛୋଟି ନେବା ପାଇଁ ମୋ ପୁଅ, ଝିଅ ସମସ୍ତେ ଆସିଥିଲେ । ଆମ ଘର ବହୁତ ପାଖରେ ହୋଇଥିବାରୁ ଚାଲିକରି ଯିବା ପାଇଁ ପାଞ୍ଚ ମିନିଟ୍ ଲାଗେ । ଆମେ ସବୁ ଚାଲିକରି ଘରକୁ ଫେରିଲୁ ।

୧୯୭୭ ମସିହାରେ ଇଉ.ଜି.ସିରୁ ଯେଉଁ ୮୦୦୦ ଟଙ୍କା ଅନୁଦାନ ଆସିଥିଲା । ସେଥିରେ ସବୁ ଦରକାରୀ ଉପକରଣ କିଣା ହେଇଗଲା । ଯେଉଁଥି ପାଇଁ ଟଙ୍କା ଆସିଥିଲା ସେଥିରେ କିଛି ପରୀକ୍ଷା ନିରୀକ୍ଷା କରିବା ପାଇଁ ମୁଁ ପ୍ରାୟ ୧୯୭୯ ମସିହାଟି କାର୍ଯ୍ୟବ୍ୟସ୍ତ ରହିଗଲି । କଟକରେ ପହଁଞ୍ଚିବାର କେତେ ଦିନ ପରେ ସିମଲା ଠାରେ ମୋ ସ୍ତ୍ରୀଙ୍କର ଶାଢୀ ପାଇଁ ଯେଉଁ ୨୦ ଟଙ୍କା ଦୋକାନରେ ଦେଇ ଆସିଥିଲି, ସେ କଥା ଆମେ ଭୁଲି ଯାଇଥିଲୁ । ଦିନେ ପୋଷ୍ଟମ୍ୟାନ ଆମ ଘରେ ଭି.ପି.ପି. ଦେଇ ବାକି ଟଙ୍କା ନେଇ ଚାଲିଗଲା । ମୁଁ ଦେଖିଲି ଯେଉଁ ଶାଢୀ କଣରେ ଦସ୍ତଖତ କରିଥିଲି ସେହି ଶାଢୀଟା ଆସିଛି କି ନାହିଁ । ଦେଖିଲି ମୋ ଦସ୍ତଖତ ସେଥିରେ ଅଛି । ବିଶ୍ୱାସରେ ବ୍ୟବସାୟ ଚାଲେ । ଏହା ମୁଁ ଅନୁଭବ କଲା ।

## ସସ୍ତ୍ରୀକ ହଟେକେଶ୍ୱର ମହାଦେବ ମନ୍ଦିର ଓ ଅତ୍ରି ଉଷ୍ଣ-ପ୍ରସ୍ରବଣ ପରିଭ୍ରମଣ

୧୯୭୭ ଶେଷ ଭାଗରେ ଚତୁର୍ଥ ବାର୍ଷିକ ଅନର୍ସ ପିଲାମାନେ ଅତ୍ରି ଉଷ୍ଣ-ପ୍ରସବଣ ନିକଟରେ ବଣଭୋଜିର ଆୟୋଜନ କରି ମୋତେ ଅନୁରୋଧ କଲେ ସେମାନଙ୍କ ସାଙ୍ଗରେ ଯିବାପାଇଁ । ମୁଁ କହିଲି ତମେ ଆୟୋଜନ କର, ତମ ସାଙ୍ଗରେ ଯିବି କି ନାହିଁ ଆସନ୍ତା କାଲି କହିବି । ସେହିଦିନ ଘରକୁ ଆସି ମୋ ଝିଅଠାରୁ ବଣଭୋଜି ସମ୍ବନ୍ଧରେ ବୁଝିଲି । ସେ କହିଲା ମୁଁ ଯାଉଛି ମୋ ସାଙ୍ଗ ଅନ୍ୟ ଝିଅମାନେ ମଧ୍ୟ ଯାଉଛନ୍ତି । ଶେଷରେ ମୋ ସ୍ତ୍ରୀ କହିଲେ ମୋର ମଧ୍ୟ ଯିବାକୁ ମନହେଉଛି । ମୋ ସ୍ତ୍ରୀ ଯିବା ଖବରଟି ଝିଅ ତାର ସହପାଠୀଙ୍କୁ ଜଣାଇଦେଲା ।

ନିର୍ଦ୍ଦିଷ୍ଟ ଦିନ ସେମାନେ ଗୋଟିଏ ବସ୍ ଭଡାକରି ସକାଳୁ ଆସି ଆମ ଘରପାଖ ରାସ୍ତା ଉପରେ ବସ୍ ରଖି ଆମକୁ ଡାକିବାକୁ ଆସିଲେ । ଆମେ ସମସ୍ତେ ଯାଇ ବସ୍‌ରେ ବସିଲାପରେ ବସ୍ ଖୋର୍ଦ୍ଧା ଅଭିମୁଖେ ଯାତ୍ରା ଆରମ୍ଭ କରିଦେଲା । ଖୋର୍ଦ୍ଧା ନିକଟରେ ପହଁଞ୍ଚି ଆମେ ଖୋର୍ଦ୍ଧାଠାରୁ ଆଠ କି.ମି ଦୂର ବାଘମାରି ଗଲୁ । ବାଘମାରି ଠାରେ ହଟେକେଶ୍ୱର ମହାଦେବ ମନ୍ଦିର ପାଖରେ ବସ୍ ରଖି ମନ୍ଦିର ପାଖରେ ଥିବା ଉପଯୁକ୍ତ ସ୍ଥାନରେ ଦରି ପକାଇ ବିଶ୍ରାମ ନେଲୁ । କିଛି ସମୟ ପରେ ମୁଁ, ମୋ ସ୍ତ୍ରୀ ଓ ଝିଅ ପିଲାମାନେ ହଟେକେଶ୍ୱର ମହାଦେବଙ୍କୁ ଦର୍ଶନ କରିବାକୁ ଗଲୁ । ବଣଭୋଜି ପୂର୍ବରୁ ପିଲାମାନେ ସାମାନ୍ୟ ଜଳଯୋଗର ବ୍ୟବସ୍ଥା କରିଥିଲେ । ସେଠାରେ ରନ୍ଧାରନ୍ଧି କରିବାକୁ ପିଲାମାନେ ବ୍ୟବସ୍ଥା କଲେ । ମୁଁ କହିଲି ସମସ୍ତେ ଏକ ସମୟରେ

ଉଷ୍ଣପ୍ରସବଣ ସ୍ଥାନକୁ ଯାଅନାହିଁ । କେତେଜଣ ଏଠାରେ ଗୃହ ଓ ଅନ୍ୟ କେତେଜଣ ଯାଅ, ସେମାନେ ଆସିଲେ ଅନ୍ୟମାନେ ଯିବେ । ପିଲାମାନେ ମୋ କଥାରଖି ପ୍ରଥମ ଦଫାରେ ୧୫ଅ ପିଲାମାନଙ୍କ ସହିତ ମୁଁ ଏବଂ ମୋ ସ୍ତ୍ରୀ ଯାଇଥିଲୁ । ବିଲ ମଝିରେ ଏକ ପ୍ରପାତ ଦେଖିଲୁ ଯେ ସେ ଉଷ୍ଣ ପାଣିରେ ଗନ୍ଧକଘଟିତ ଗନ୍ଧ ହେଉଥିଲେ ମଧ୍ୟ କୌଣସି ଗନ୍ଧକର ସରା ନାହିଁ । ଆମେ ଫେରିଲା ପରେ ୧୫ଅ ପିଲାମାନେ ପରିବା ପତ୍ର କଟାକଟି କରିବାରେ ଲାଗିଗଲେ । ରୋଷେୟା ଓ କେତେଜଣ ଛାତ୍ର ରୋଷେଇ କରିବା ପାଇଁ ଯୋଗାଡ କଲେ । ତାପରେ ରୋଷେୟାମାନେ ରୋଷେଇ କରିବାର ବନ୍ଦୋବସ୍ତ କରିଲେ । ଆଉ କେତେଜଣ ଉଷ୍ଣ-ପ୍ରସବଣ ସ୍ଥାନକୁ ବୁଲିବାକୁ ଗଲେ । ଅଟେଶ୍ୱର ମହାଦେବଙ୍କୁ ଦଳ ଦଳ ହୋଇ ଯାଇ ଦେଖିଆସିଲେ । ତାପରେ ସମସ୍ତେ ପ୍ରାୟ ବିଶ୍ରାମ ନେଲେ ।

ରୋଷେଇ ସରିଲା ବେଳକୁ ପ୍ରାୟ ତିନିଟା ବାଜି ସାରିଥିଲା । ତାପରେ ଭୋଗକରି ପ୍ରଥମ ଦଫାରେ ମୁଁ ଓ ମୋ ସ୍ତ୍ରୀ ଏବଂ କେତେକ ପିଲା ଖାଇବସିଲେ । ୧୫ଅ ପିଲାମାନେ ଏବଂ ଅନ୍ୟ କେତେକ ପୁଅ ମିଶି ଆମକୁ ପରସିବାରେ ଲାଗିପଡିଲେ । ଆମେ ଉଠିଲାପରେ ଅନ୍ୟ ପିଲାମାନେ ଏକ ସଙ୍ଗରେ ଖାଇବାକୁ ବସି ପଡିଲେ । ସମସ୍ତେ ଖାଇ ଅଳ୍ପ ବିଶ୍ରାମ ନେଇ ବସ୍‌ରେ ନେଇଥିବା ଜିନିଷ ପତ୍ର ଲଦି କଟକ ଫେରିଆସିଲୁ ।

## ଫିଜିକାଲ ରିସର୍ଚ୍ଚ ଲାବୋରାଟୋରୀ ଅହମଦାବାଦ, ସମର ସ୍କୁଲ୍

ଫିଜିକାଲ ରିସର୍ଚ୍ଚ ଲାବୋରାଟୋରୀ ଅହମଦାବାଦରୁ ମୋ ପାଖକୁ ଗୋଟିଏ ବିଜ୍ଞାପନ ଆସିଲା ଯେ ଗବେଷଣାତ୍ମକ ପ୍ଲାଜମା ଫିଜିକ୍ସର ଗୋଟିଏ ସମର ସ୍କୁଲ୍ ମଇ ୧୪ ତାରିଖରୁ ଜୁନ୍ ୯ ତାରିଖ ପର୍ଯ୍ୟନ୍ତ ଅହମଦାବାଦ, ପି.ଆର.ଏଲ ଠାରେ ଅନୁଷ୍ଠିତ ହେବ । ଯେଉଁମାନେ ସେଥିରେ ଯୋଗ ଦେବାକୁ ଇଚ୍ଛା କରୁଛନ୍ତି ସେମାନେ ଫିଜିକାଲ ରିସର୍ଚ୍ଚ ଲାବୋରାଟୋରୀର ନିର୍ଦ୍ଦେଶକଙ୍କ ପାଖକୁ ଦରଖାସ୍ତ କରନ୍ତୁ । ସେମାନେ ଉପଯୁକ୍ତ ବିବେଚିତ ହେଲେ ସେମାନଙ୍କୁ ଫାଷ୍ଟକ୍ଲାସ୍ ଭଡା ଏବଂ ରହିବା ଖର୍ଚ୍ଚ ଦିଆଯିବ । ତେଣୁ ମୁଁ ସେଠାରେ ଯୋଗ ଦେବା ପାଇଁ ଦରଖାସ୍ତ କଲି ।୧୯୭୮ ମସିହା ଫେବୃଆରୀ ୬ ରୁ ୧୧ ପର୍ଯ୍ୟନ୍ତ 'କରେଣ୍ଟ ଟ୍ରେନ୍ଡ ଇନ୍ ଫିଜିକ୍ସ ନାମକ' ଗୋଟିଏ ସେମିନାର ହେବ । ସେଥିରେ ଯୋଗ ଦେବାକୁ ମୋ ପାଖକୁ ନିମନ୍ତ୍ରଣ ଆସିଥିଲା ଏବଂ ମୁଁ ଯୋଗ ଦେଇଥିଲି ।

କେତେ ଦିନ ପରେ ଗବେଷଣାତ୍ମକ ପ୍ଲାଜମା ଫିଜିକ୍ସର ସମର ସ୍କୁଲ୍‌ରେ ମୋତେ ଯୋଗ ଦେବା ପାଇଁ ଚିଠି ଆସିଥିଲା । ମୁଁ ସେଥିରେ ଯୋଗ ଦେବା ପାଇଁ ସରକାରଙ୍କ ଠାରୁ ଅନୁମତି ମାଗିଲି । ସରକାରଙ୍କ ଠାରୁ ଅନୁମତି ପାଇ ସାରିଲା ପରେ ମୁଁ ହାଓ୍ୱଡା ଅହମଦାବାଦ ଏକ୍ସପ୍ରେସରେ ଭୁବନେଶ୍ୱର ଠାରୁ ଖଡଗପୁର ଦେଇ ଅହମଦାବାଦ ପର୍ଯ୍ୟନ୍ତ ଗୋଟିଏ ଫାଷ୍ଟକ୍ଲାସ୍ ଟିକେଟ କରିଲି । ୧୨ ତାରିଖ ଦିନ ଇଷ୍ଟକୋଷ୍ଟ ଏକ୍ସପ୍ରେସରେ କଟକରୁ ଯାଇ ଖଡଗପୁରରେ ଓହ୍ଲାଇଲି । ଖଡଗପୁରରେ ଅହମଦାବାଦ ଏକ୍ସପ୍ରେସ ଧରିବା ପାଇଁ ରାତି ୧୨ଟା ପର୍ଯ୍ୟନ୍ତ ଅପେକ୍ଷା କଲୁ । ଶ୍ରୀ କେ.ଏନ୍ ମହାନ୍ତି ଯିଏକି ମୋ ତତ୍ତ୍ୱାବଧାନରେ ତାତ୍ତ୍ୱିକ ପ୍ଲାଜମା ଫିଜିକ୍ସରେ ଗବେଷଣା କରୁଥିଲେ । ସେ ମଧ୍ୟ ଅହମଦାବାଦ ଯାଉଥିଲେ । ଦୁର୍ବିପାକ ସାଙ୍ଗହୋଇ

ଅହମ୍ମଦାବାଦ ଗଲୁ । ୧୪ ତାରିଖ ଦିନ ଅହମ୍ମଦାବାଦରେ ଓହ୍ଲାଇ ପି.ଆର.ଏଲ (ଫିଜିକାଲ ରିସର୍ଚ୍ଚ ଲାବୋରାଟୋରୀ) ଅତିଥି ଭବନରେ ରହିଲୁ । ଏହି ସମର ସ୍କୁଲ୍‌ରେ ଆମ ଦୁଇ ଜଣଙ୍କୁ ଛାଡି ଆନ୍ଧ୍ର ଇଉନିଭରସିଟି, ଲକ୍ଷ୍ନୌ ଇଉନିଭରସିଟି, ପଟିଆଲା ଇଉନିଭରସିଟି ରୁ ଜଣେ ଲେଖାଏଁ ଏବଂ ଅହମ୍ମଦାବାଦ ଇଉନିଭରସିଟିରୁ ଦୁଇଜଣ ଯୋଗ ଦେଇଥିଲେ । ଏହି ସ୍କୁଲ୍‌ରେ ସକାଳ ବେଳା ଗବେଷଣାତ୍ମକ ବିଷୟ ବସ୍ତୁ ପଢାଯାଉଥିଲା ଏବଂ ଉପର ବେଳା ଆମକୁ ପରୀକ୍ଷା କରିବା ପାଇଁ ଦିଆଯାଉ ଥିଲା । ସେଠାରେ ଡକ୍ଟର ଆର.କେ ବର୍ମା, ଡକ୍ଟର ପି.ଆଇ.ଜନ ଏବଂ ଡକ୍ଟର ସାକ୍‌ସେନାଙ୍କ ସାଙ୍ଗରେ ମୋର ଦେଖାହେଲା । ମୁଁ ସେଠାରେ ଜାଣିଲି ଗୋଟିଏ ପ୍ଲାଜମା ଉପକରଣ ତିଆରି କରିବା ପାଇଁ ପ୍ରାୟ ୮୦,୦୦୦ ଟଙ୍କା ଖର୍ଚ୍ଚ ହୋଇଥିଲା । ମୁଁ ଯେଉଁ ଗୋଟିଏ ଉପକରଣ ରେଭେନ୍‌ସା କଲେଜରେ ତିଆରି କରିଥିଲି ମୋତେ ମୋଟ ୧୦,୦୦୦ ଟଙ୍କା ଖର୍ଚ୍ଚ କରିବାକୁ ପଡିଥିଲା । ମୋ ଗବେଷଣା ବିଷୟରେ ଆଲୋଚନା ପ୍ରସଙ୍ଗରେ ମୁଁ ଡକ୍ଟର ଜନ୍‌ଙ୍କୁ ଏବଂ ଡକ୍ଟର ସାକ୍‌ସେନାଙ୍କୁ ମୋ ଉପକରଣ ବିଷୟରେ ବୁଝାଇଲି ଏବଂ କହିଲି କମ୍ ଦାମରେ ଉପକରଣ ନ ହେଲେ କୌଣସି ପ୍ଲାଜମା ଫିଜିକ୍ସ ପ୍ରାୟୋଗିକ ଗବେଷଣା ବିଶ୍ୱବିଦ୍ୟାଳୟରେ କରିହେବ ନାହିଁ । ସେମାନେ ମୋତେ କିଛି କହିଲେ ନାହିଁ । କିନ୍ତୁ ମୋ କଥାକୁ ଉପଲବ୍ଧି କଲେ । ଆମ ସାଙ୍ଗରେ ଜଣେ ଝିଅ ପ୍ଲାଜମା ଫିଜିକ୍ସର କର୍ମଶାଳାରେ ଯୋଗ ଦେଇଥିଲେ । ସେ ଜଣେ ଆଇ.ଏ.ଏସ୍‌ଙ୍କ ସ୍ତ୍ରୀ, । ସେ ବୋଧେ ଓଡିଶାର ଥିବା ଜଣେ ଆଇ.ଏ.ଏସ୍‌ଙ୍କୁ ଏ ସବୁ  କଥା କହିଥିଲେ । ତେଣୁ ମୋ ଛାତ୍ର ଜଣକ ସବୁ ଶୁଣି ମୋ ପାଖକୁ ଦେଖା କରିବା ପାଇଁ ଆସିଥିଲେ ଏବଂ ତାଙ୍କ ଘରକୁ ମୋତେ ଏବଂ ଜିତେନ୍ ବାବୁଙ୍କୁ ତାଙ୍କ ଘରେ ରାତ୍ର ଭୋଜନ ପାଇଁ ନିମନ୍ତ୍ରଣ କରି ଯାଇଥିଲେ । ସେହ ଫିଜିକ୍ସ ଛାତ୍ର ଜଣଙ୍କ ଆଇ.ଏ.ସ୍ ପରୀକ୍ଷାରେ କୃତକାର୍ଯ୍ୟ ହୋଇ ସେଠାରେ କଲେକ୍‌ଟର ହିସାବରେ କାମ କରୁଥିଲେ । ତାଙ୍କ ନାମ ମୋର ମନେ ନାହିଁ । ଜିତେନ୍ ବାବୁଙ୍କ ସହିତ ଆମର କଥାବାର୍ତ୍ତା ହୋଇଥିଲା ଯେ ସେ ଯେଉଁ ଆଡେ ଯାଆନ୍ତୁ, ଛଅଟା ବେଳକୁ ଫେରି ଆସିବେ । କିନ୍ତୁ ଜିତେନ୍ ବାବୁ ସାତଟା ସୁଦ୍ଧା ମଧ୍ୟ ଫେରି ପାରିଲେ ନାହିଁ । ପ୍ରାୟ ସାଢେ ସାତଟା ବେଳେ ଅତିଥି ଭବନରେ ପହଁଞ୍ଚି ମୋତେ ଯିବା ପାଇଁ କହିଲେ କିନ୍ତୁ ମୁଁ ଯିବା ପାଇଁ ମନା କଲି । କାରଣ ସେ ଆମକୁ ଛଅଟା ବେଳେ ପହଁଞ୍ଚିବାକୁ କହିଥିଲେ । ମୁଁ ତାଙ୍କୁ କହିଲି ମୁଁ କେବେ ଯିବି ନାହିଁ । ତେଣୁ ମୁଁ ଗଲି ନାହିଁ । ଜୁନ୍ ୯ ତାରିଖ ପର୍ଯ୍ୟନ୍ତ ଆମେ ସେଠାରେ ରହିଲୁ । ସେଠାରେ ରହିବା ଭିତରେ ସେମାନେ ଜାଣିପାରିଲେ ମୁଁ ପ୍ଲାଜମାର ପ୍ରାୟୋଗିକ ପରୀକ୍ଷା ଉପରେ କିଛି ଜାଣିଛି । ମୁଁ ଓ ଜେ.ଏନ୍ ମହାନ୍ତି ଅହମ୍ମଦାବାଦରୁ ଫେରି ଆସିଲୁ । ମହାନ୍ତି ବାବୁ ବାଲେଶ୍ୱରରେ ଓହ୍ଲାଇ ଗଲେ ଏବଂ ମୁଁ କଟକ ଆସିଲି । ଖରାଛୁଟି ସରିଗଲା । ସେତେବେଳେ ଶ୍ରୀ କୃତିବାସ ମହାନ୍ତି ଯିଏ କି ପ୍ଲାଜମା ଫିଜିକ୍ସର ପ୍ରାୟୋଗିକ ଗବେଷଣା ଉପରେ କାମ କରିବା ପାଇଁ ମୋତେ ପ୍ରବର୍ତ୍ତାଇ ଥିଲେ, ସେ ମୋ କାମରେ ସବୁ ସାହାଯ୍ୟ  କରୁଥିଲେ । ବିଶ୍ୱଭାରତୀର  ପ୍ରଫେସର  ଡକ୍ଟର ଦୀପଙ୍କର ଚାଟାର୍ଜୀଙ୍କ ଠାରୁ ଗୋଟିଏ ବିଜ୍ଞାପନ ଆସିଲା ଯେ ଆଟମିକ୍ ଏବଂ ମଲିକୁଲାର ଫିଜିକ୍‌ସ୍‌ରେ ଏକ ସେମିନାର ଅନୁଷ୍ଠିତ ହେବ ।

## ବିଶ୍ୱଭାରତୀ ଶାନ୍ତି ନିକେତନ, ପ୍ଲାଜମା ଫିଜିକ୍ସ ଆଲୋଚନା ଚକ୍ର

ଚିଠିରେ ଲେଖାଥିଲା ଶାନ୍ତିନିକେତନ ଯିବାପାଇଁ ହାୱଡାରୁ ଟ୍ରେନ୍‌ରେ ଯାଇ ବୋଲପୁର ଷ୍ଟେସନ୍‌ରେ ଓହ୍ଲାଇବାକୁ ପଡିବ । ଏଠାରୁ ବସ୍ କିମ୍ବା ଗାଡିରେ ଗଲେ ଶାନ୍ତିନିକେତନରେ ପହଁଚି ପାରିବ । ସେତେବେଳେ ମୋ ଛାତ୍ର ଡକ୍ଟର ଦ୍ୱାରିକା ନାଥ ତ୍ରିପାଠୀ ଡକ୍ଟର ତ୍ରିଲୋଚନ ପ୍ରଧାନଙ୍କ ଅଧୀନରେ ସାହା ଇନଷ୍ଟିଚ୍ୟୁଟ୍‌ରୁ ପିଏଚ୍.ଡି ପାଇ ସେଠାରେ ପ୍ରାଧ୍ୟାପକ ଭାବରେ କାମ କରୁଥିଲେ । ମୋର ଶାନ୍ତିନିକେତନ ଯିବାପାଇଁ ଇଛା ହେଲା । ତେଣୁ ମୁଁ ଗୋଟିଏ ଗବେଷଣାତ୍ମକ ପ୍ରବନ୍ଧ ଲେଖି ପଠାଇ ଦେଲି । କେତେଦିନ ପରେ ମୁଁ ସେଥିରେ ଯୋଗ ଦେବାପାଇଁ ନିମନ୍ତ୍ରଣ ପାଇଲି । ନିମନ୍ତ୍ରଣ ପତ୍ରରେ ଲେଖାଥିଲା, 'ଟ୍ରେନ୍‌ରୁ ଫାଷ୍ଟ କ୍ଲାସ୍‌ରେ ଯିବା ଆସିବା ଖର୍ଚ୍ଚ ସହିତ ରହିବା ଖର୍ଚ୍ଚ ମଧ୍ୟ ଦିଆଯିବ ।' ତେଣୁ ନିର୍ଦ୍ଦିଷ୍ଟ ଦିନରେ ଓ୍ୱାର୍କସପ୍‌ରେ ଯୋଗ ଦେଲି । ଡକ୍ଟର ଦ୍ୱାରିକା ନାଥ ତ୍ରିପାଠୀଙ୍କ ସଙ୍ଗେ ଦେଖାହେଲା ଏବଂ ସେ ମୋତେ ଡକ୍ଟର ଦୀପଙ୍କର ଚାଟାର୍ଜୀଙ୍କ ସାଙ୍ଗରେ ପରିଚୟ କରାଇ ଦେଲେ । ମୁଁ ସେଠାରୁ ଜାଣିବାକୁ ପାଇଲି ଡକ୍ଟର ଦୀପଙ୍କର ଚାଟାର୍ଜୀ ସ୍ପେକ୍‌ଟ୍ରୋସ୍କୋପିରେ ଗବେଷଣା କରୁଛନ୍ତି । ମୁଁ ତାଙ୍କୁ ରେଭେନ୍ସା କଲେଜରେ ସ୍ପେକ୍‌ଟ୍ରୋସ୍କୋପି ପରୀକ୍ଷା କରିବା ପାଇଁ ଅନୁରୋଧ କଲି । ସେ ଆସିବା ପାଇଁ ରାଜି ହେଲେ ।

ସେହିଠାରେ ରହିବା ସମୟରେ ମୁର୍ଶିଦାବାଦ ବୁଲି ଯିବା ପାଇଁ ବ୍ୟବସ୍ଥା ହୋଇଥିଲା । ଆମେ ସବୁ ମୁର୍ଶିଦାବାଦ ଗଲୁ । ସେଠାରେ ଥିବା ମ୍ୟୁଜିଅମ୍ ଦେଖିବା ପାଇଁ ଯାଇଥିଲୁ । ସେଠିକାର ଜଣେ ପଥ ପ୍ରଦର୍ଶକ(Guide) ଆମକୁ ସବୁ ବୁଲି ଦେଖାଉ ଥିଲେ । ମ୍ୟୁଜିଅମ୍ ଭିତରେ ସେ ଆମକୁ ଦେଖାଇଲେ ଯେ ଏ ହେଉଛି ଔରଙ୍ଗଜେବଙ୍କ ଖଣ୍ଡା, ସାହାଜାହାନଙ୍କ ବର୍ଚ୍ଛା ଇତ୍ୟାଦି । ଏତିକି ବେଳେ ଜଣେ ମୁହଁ ଲୁଚାଇ କହିଲା, 'ରାମଙ୍କର ଧନୁଶର କାହିଁ ଏବଂ ଶ୍ରୀକୃଷ୍ଣଙ୍କର ସୁଦର୍ଶନ ଚକ୍ର କାହିଁ ?' ସେ ଜଣଙ୍କ ରାଗିଗଲେ ଏବଂ କହିଲେ, 'ମୁଁ ଆଉ ଦେଖାଇ ପାରିବି ନାହିଁ ।' ଆମେ ସବୁ ମ୍ୟୁଜିଅମ୍ ବୁଲାବୁଲି କରି ଆସିଲୁ । ମୁର୍ଶିଦାବାଦରେ ଯେଉଁ ଘରେ ଅନ୍ଧକୂପ ହତ୍ୟା ହୋଇଥିଲା ବୋଲି ଇତିହାସରେ ବର୍ଣ୍ଣନା କରାଯାଇ ଅଛି, ସେହି ଘର ବୁଲି ଦେଖିଲୁ । ଲର୍ଡ କ୍ଲାଇବ୍ ଯେଉଁ ଘରେ ରହୁଥିଲେ ସେ ଘର ମଧ୍ୟ ଦେଖିଲୁ । ଓ୍ୱାର୍କ ସପ୍ ସରିବା ପରେ ମୁଁ କଟକ ଫେରି ଆସିଲି ।

## ସର୍ବ ଭାରତୀୟ ଆଲୋଚନା ଚକ୍ର -, ପ୍ଲାଜମା ଫିଜିକ୍ସ, ବି.ଏ.ଆର.ସି

୧୯୭୯ରେ ସିମ୍ପୋଜିଅମ୍ ଅନ୍ ପ୍ଲାଜମା ଫିଜିକ୍ସ ବି.ଏ.ଆର.ସିରେ ଫେବୃଆରୀ ୧୯ ରୁ ୨୧ ତାରିଖ ପର୍ଯ୍ୟନ୍ତ ହୋଇଥିଲା । ସେହି ସିମ୍ପୋଜିଅମ୍‌ରେ ଯୋଗ ଦେବା ପାଇଁ ମୁଁ ବମ୍ବେ ଯାଇଥିଲି ଏବଂ ଗୋଟିଏ ପ୍ରାୟୋଗିକ ଗବେଷଣାତ୍ମକ ପ୍ରବନ୍ଧ ଉପସ୍ଥାପନା କରିଥିଲି । ବମ୍ବେରୁ ଫେରିଲା ପରେ ମୁଁ ପ୍ଲାଜମାର ଧର୍ମ ସବୁ ଅଳ୍ପ ସମୟରେ ଜାଣିବା ପାଇଁ ଗୋଟିଏ ଫଟୋଗ୍ରାଫିକ୍ ଉପକରଣ ତିଆରି କରିଥିଲି । ତା'ସାହାଯ୍ୟରେ ପ୍ଲାଜମାର ଧର୍ମ ସବୁ ଏକ

ମିନିଟ୍‌ରେ ଜାଣି ହେଉଥିଲା । ଆଗରୁ ସେହି ଧର୍ମ ସବୁ ଜାଣିବା ପାଇଁ ପ୍ରାୟ ଏକ ଘଣ୍ଟା ସମୟ ଲାଗୁ ଥିଲା ।

୧୯୭୯ ମସିହାରେ ମୁଁ ଜିତେନ୍ ବାବୁଙ୍କୁ ତାଙ୍କ ପିଏଚ୍.ଡି ଥିସିସ୍ ପାଇଁ ଯେଉଁ କାମଟି ଦେଇଥିଲି, ତାହା ସଂପୂର୍ଣ୍ଣ ହୋଇଗଲା ଏବଂ ତାହାକୁ ଗ୍ରେଟ ବ୍ରିଟେନ୍‌ର ଜର୍ଣ୍ଣାଲ ଅଫ ପ୍ଲାଜମା ଫିଜିକ୍ସରେ ପ୍ରକାଶ କରିବା ପାଇଁ ପଠାଇ ଦେଲି । ବହୁତ ଦିନ ପରେ ସେହି ଜର୍ଣ୍ଣାଲ ଅଫ ପ୍ଲାଜମା ଫିଜିକ୍ସର ସମ୍ପାଦକଙ୍କ ଠାରୁ ଚିଠି ପାଇଲି ଯେ ତମ କାମଟି ଡକ୍ଟର ଶିଙ୍କ କାମ ସହିତ କେତେକାଂଶରେ ମିଶି ଯାଉଛି । ତେଣୁ ଆମେ ତୁମ କାମକୁ ଛାପି ପାରୁ ନାହୁଁ । ସେହି ଜର୍ଣ୍ଣାଲର ସମ୍ପାଦକ ଡକ୍ଟର ଶିଙ୍କ ଠିକଣା ମୋ ପାଖକୁ ଲେଖିକରି ଦେଇଥିଲେ ଏବଂ ସେଥିରେ ଲେଖିଥିଲେ, ତାଙ୍କ କାମଠାରୁ ତୁମ କାମଟି କେଉଁ ହିସାବରେ ଭିନ୍ନ ତାହା ଲେଖିକରି ଦିଅ । ତେଣୁ ଡକ୍ଟର ଶିଙ୍କୁ ତାଙ୍କ କାମର ଗୋଟିଏ ପ୍ରବନ୍ଧର ନକଲ ପଠାଇବା ପାଇଁ ଅନୁରୋଧ କଲି । ପନ୍ଦର ଦିନ ପରେ ତାଙ୍କ କାମର ନକଲଟି ପାଇଲି । ତାକୁ ପଢ଼ିକରି ଜାଣିଲି ସେ କାମଟି କମ୍ପ୍ୟୁଟର ସାହାଯ୍ୟରେ ସଂଖ୍ୟାନୁଯାୟୀ କରାଯାଇଛି । ସେଇ ସଂଖ୍ୟା ଆମ ସୂତ୍ରରେ ପକାଇ ଦେଲେ ତାଙ୍କ ଉତ୍ତର ସହିତ ଆମ ଉତ୍ତର ମିଶିଯାଉଛି । ଏହା ଲେଖି ମୁଁ ସମ୍ପାଦକଙ୍କ ପାଖକୁ ପଠାଇ ଦେଲି । ଠିକ୍ ପନ୍ଦର ଦିନ ପରେ ସମ୍ପାଦକ ଚିଠି ଲେଖିଲେ, 'ତମ କାମଟି ଜର୍ଣ୍ଣାଲ ଅଫ୍ ପ୍ଲାଜମା ଫିଜିକ୍ସ'ରେ ଛପା ହେବ ।' ତାର କେତେ ମାସ ପରେ ସେ କାମଟି ଛପା ହୋଇଗଲା ଏବଂ ମୁଁ ଜିତେନ୍ ବାବୁଙ୍କୁ ପିଏଚ୍.ଡି ଥିସିସ୍ ଲେଖିବା ପାଇଁ ମୋର ସ୍ୱୀକୃତି ଦେଲି । ତାର ବର୍ଷକ ପରେ ଜିତେନ୍ ବାବୁ ଉତ୍କଳ ବିଶ୍ୱବିଦ୍ୟାଳୟରେ ତାଙ୍କର ଥିସିସ୍ ଦାଖଲ କରିଦେଲେ । ଦାଖଲ କଲା ସମୟରେ ସେ ଆଉ ଗୋଟିଏ କାମ ମୋ ତତ୍ତ୍ୱାବଧାନରେ କରିଥିଲେ । ସେହି କାମଟି ଛପା ହୋଇ ନ ଥିଲା । କିନ୍ତୁ ସେ କାମଟି ଥିସିସ୍‌ରେ ଲେଖା ହୋଇଥିଲା । ସେ କାମଟି ମଧ୍ୟ ୧୯୮୨ ମସିହାରେ ସେହି 'ଜର୍ଣ୍ଣାଲ ଅଫ୍ ପ୍ଲାଜମା ଫିଜିକ୍ସ'ରେ ଛପା ହୋଇଗଲା । ୧୯୮୩ ମସିହାରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି ପାଇଲେ । ଡକ୍ଟର ଏସ୍.କେ.ରାଏ ନାମକ ଯାଦବପୁର ବିଶ୍ୱବିଦ୍ୟାଳୟର ଜଣେ ପ୍ରଫେସର ତାଙ୍କର ପରୀକ୍ଷକ ହୋଇ ଆସିଥିଲେ ।

୧୯୮୦ ମସିହାରେ ରେଭେନ୍ସା କଲେଜରେ 'ଫ୍ରଣ୍ଟିୟର ଇନ୍ ଫିଜିକ୍ସ' ନାମକ ଗୋଟିଏ ସିମ୍ପୋଜିଅମ୍ ଅନୁଷ୍ଠିତ ହୋଇଥିଲା । ସେଥିରେ ମୁଁ ମୋର ତାତ୍ତ୍ୱିକ କାମ ଉପରେ ବକ୍ତୃତା ଦେଇଥିଲି । ତାର କେତେ ଦିନ ପରେ ଗଙ୍ଗାଧର ମେହେର କଲେଜ, ସମ୍ବଲପୁରରେ ଗୋଟିଏ ପୋଷ୍ଟଗ୍ରାଜୁଏଟ୍ ସେମିନାର ଅନୁଷ୍ଠିତ ହୋଇଥିଲା । ମୁଁ ସେଥିରେ ବକ୍ତୃତା ଦେବା ପାଇଁ ମାର୍ଚ୍ଚ ୬ ରୁ ୯ ପର୍ଯ୍ୟନ୍ତ ଯାଇଥିଲି । ମୋର ବଡ ଝିଅ ପ୍ରଭାତୀ ମିଶ୍ର ଉତ୍କଳ ବିଶ୍ୱବିଦ୍ୟାଳୟରୁ ଏମ୍.ଏସ୍‌ସି 'ଏ' ଗ୍ରେଡରେ(M.Sc. A) ପାସ୍ କଲା । ତାର କେତେ ଦିନ ପରେ ରାଉରକେଲା ମୁନିସିପାଲିଟି କଲେଜରେ ଫିଜିକ୍ସ ଅଧ୍ୟାପିକା ଭାବେ ଯୋଗ ଦେଲା ।

୧୯୮୧ ମସିହାରେ ଚିନ୍ତା ଭାଇନାଙ୍କ ପୁଅ ଶ୍ରୀ ବଲ୍ଲଭଭାଇ ପଟେଲର ବିଭାଘର ମଇ ୨୩ ତାରିଖରେ ହେବାର ଠିକ୍ ହୋଇଥିଲା । କିନ୍ତୁ ତାର ଚାରି ପାଞ୍ଚ ଦିନ ପୂର୍ବରୁ

ଭାଇନାଙ୍କର ଗୋଟିଏ ସ୍କୁଟର ଦୁର୍ଘଟଣା ହେବାରୁ ସେ ଶଯ୍ୟାଶାୟୀ ହୋଇ ପଡିଲେ । ଚିନ୍ତା ଭାଇନା ମୋତେ କହିଲେ, 'ପୁଅର ବାହାଘରଟି ତୁ କରିଦେ ।' ମୋ ଶ୍ୱଶୁର ଘର ଲୋକ ଏ ପ୍ରସ୍ତାବରେ ରାଜି ହେଉ ନଥିଲେ । କିନ୍ତୁ ମୁଁ ସେମାନଙ୍କ କଥା ନ ଶୁଣି ପଟେଲର ବାହାଘର ବରକର୍ତ୍ତା ହିସାବରେ କରିଥିଲି । ବାହାଘର ସମୟରେ ଚିନ୍ତା ଭାଇନା ଆରାମ ଚେୟାରରେ ବାହାଘର ଦେଖୁଥିବାର ମୋର ମନେ ଅଛି । ଯେଉଁ ଦିନ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କର ଦେହାନ୍ତ ହୋଇଥିଲା, ସେହିଦିନ ଭାଇନାଙ୍କର ସେହି ପୁଅଟି ଜନ୍ମ ହୋଇ ଥିବାରୁ ତାର ନାମ ବଲ୍ଲଭଭାଇ ପଟେଲ ଆଚାର୍ଯ୍ୟ ରଖାଯାଇ ଥିଲା । ପ୍ରାୟ ତିରିଶ ବର୍ଷ ତଳେ ମୋର ଦୁଇ ଭଣଜାଙ୍କର ବ୍ରତ ଘର ଏକାଠି ହେଉଥିଲା । ମୋ ଭିଣୋଇ ମୋତେ ଅନୁରୋଧ କଲେ ତାଙ୍କ ସାନ ପୁଅକୁ ବ୍ରତ କରିବା ପାଇଁ । ଅନ୍ୟ ମାନଙ୍କ ମନା ସତ୍ତ୍ୱେ ମୁଁ ତାଙ୍କ ପୁଅର ମଧ୍ୟ ବ୍ରତଘର କରିଥିଲି ।

## ଅଲ ଇଣ୍ଡିଆ ପ୍ଲାଜମା ସାଇନ୍ସ ସିମ୍ପୋଜିଅମ୍, ଦିଲ୍ଲୀ

୧୯୮୧ ମସିହା ସରିବାର ୩/୪ ମାସ ପୂର୍ବରୁ ମୁଁ ଦିଲ୍ଲୀ ଆଇ.ଆଇ.ଟି ର ଜଣେ ପ୍ରଫେସର ଡକ୍ଟର ତିଓ୍ୱାରୀଙ୍କ ଠାରୁ ଗୋଟିଏ ଚିଠି ପାଇଲି ଯେ ଆଇ.ଆଇ.ଟି ଦିଲ୍ଲୀରେ ଅଲ ଇଣ୍ଡିଆ ପ୍ଲାଜମା ସାଇନ୍ସ ସିମ୍ପୋଜିଅମ୍(All India Plasma Science Symposium) ଡିସେମ୍ବର ୧୩ ରୁ ୧୬ ପର୍ଯ୍ୟନ୍ତ ଅନୁଷ୍ଠିତ ହେବ । ତେଣୁ ଗବେଷଣାତ୍ମକ ପ୍ରବନ୍ଧ ପଠାଇବାକୁ ମୋତେ ଅନୁରୋଧ କରାଯାଇ ଥିଲା । ତାର ମାସକ ପରେ ମୋର ପ୍ରବନ୍ଧଟି ଉପଯୁକ୍ତ ବୋଲି ଚିଠି ଆସିଲା ଏବଂ ମୋତେ ପ୍ରଥମ ଶ୍ରେଣୀ ଭଡା ଓ ଗସ୍ତ ଖର୍ଚ୍ଚ ଦିଆଯିବ ଏବଂ ଆଇ.ଆଇ.ଟି ଅତିଥି ଭବନରେ ରହିବାର ବନ୍ଦୋବସ୍ତ କରାଯିବ ବୋଲି ତହିଁରେ ଜଣାଇ ଦିଆଗଲା । ଶ୍ରୀ ଏଲ.ଡି.ପି ରାୟ ଡେମୋନ୍‌ଷ୍ଟ୍ରେଟର, ଓଡିଶା ଇଞ୍ଜିନିୟରିଂ ସ୍କୁଲ୍ ମୋ ପାଖରେ ଆଗରୁ କାମ କରିବା ପାଇଁ ଆସିଥିଲେ । ସେ ମଧ୍ୟ ଯୋଗ ଦେବାପାଇଁ ନିମନ୍ତ୍ରିତ ହୋଇଥିଲେ । ଆମେ ୧୧ ତାରିଖ ଦିନ ଦିଲ୍ଲୀ ଅଭିମୁଖେ ଯାତ୍ରାକଲୁ । ୧୨ ତାରିଖ ଦିନ ସଂଧ୍ୟାବେଳେ ପହଞ୍ଚିଲୁ । ୧୩ ତାରିଖ ଦିନ ସିମ୍ପୋଜିଅମ୍ ଆରମ୍ଭ ହେବା ପୂର୍ବରୁ ଆଲୋଚନା କରାଯାଇ ଏହିପରି ଗୋଟିଏ ସିମ୍ପୋଜିଅମ୍ ପ୍ରତି ଦୁଇ ବର୍ଷରେ ଥରେ କରିବା ପାଇଁ ଠିକ୍ ହେଲା । ପ୍ରଥମ ସିମ୍ପୋଜିଅମ୍‌ରେ ଫିଜିକାଲ ରିସର୍ଚ୍ଚ ଲାବୋରାଟୋରିର ପ୍ରଫେସର ଡକ୍ଟର ଆର.କେ. ବର୍ମାଙ୍କୁ ପ୍ରଥମ ସିମ୍ପୋଜିଅମ୍‌ର ସଭାପତି କରିବା ପାଇଁ ଠିକ୍ କରାଗଲା । ଯେଉଁମାନେ ପ୍ରଥମେ ଆଜୀବନ ସଭ୍ୟହେବେ ତାଙ୍କର ଏକ ତାଲିକା କରାଗଲା । ସିମ୍ପୋଜିଅମ ଆରମ୍ଭ ହେବାରୁ ଡକ୍ଟର ଆର.କେ. ବର୍ମାଙ୍କୁ ସଭାପତି ଆସନ ଗ୍ରହଣ କରିବାକୁ କୁହାଗଲା । ଯେଉଁମାନେ ପ୍ରଥମ ଆଜୀବନ ସଭ୍ୟ ହେବା ପାଇଁ ରାଜି ହୋଇଥିଲେ ତାଙ୍କ ଠାରୁ ଦୁଇ ଶହ ଟଙ୍କା ଆଜୀବନ ସଭ୍ୟ ହିସାବରେ ଆଦାୟ କରାଗଲା । ମୁଁ ପ୍ରଥମ ବର୍ଷ ଆଜୀବନ ସଭ୍ୟ ହିସାବରେ ଦୁଇ ଶହ ଟଙ୍କା ଦେଇଥିଲି । ଉଦ୍‌ଘାଟନ ଉତ୍ସବ ସରିଲା ପରେ ସିମ୍ପୋଜିଅମ୍ ଆରମ୍ଭ ହେଲା । ଭିନ୍ନ ଭିନ୍ନ ପ୍ରଫେସରମାନେ ତାଙ୍କ କାମ ସଂପର୍କରେ ଭାଷଣ ଦେଲେ ।

ମୋ କାମ ସଂପର୍କରେ ବକ୍ତବ୍ୟ ଦେବାକୁ କୁହାଗଲା । ଇଉ.ଜି.ସି ଅନୁଦାନରୁ ମୁଁ ଯେଉଁ ପ୍ଲାଜମା କୋଠରୀଟି ତିଆରି କରାଇଥିଲି, ତାର ଫଟୋଗ୍ରାଫ ସବୁ ସଭ୍ୟମାନଙ୍କୁ ଦେଖାଇଲି । ପ୍ଲାଜମାର ଧର୍ମ ଗୁଡ଼ିକ ଜାଣିବା ପାଇଁ ଯେଉଁ ଫଟୋଗ୍ରାଫିକ୍ ପ୍ରଣାଳୀ ଉଦ୍ଭାବନ କରିଥିଲି ତାକୁ ବର୍ଣ୍ଣନା କଲି । ମୋର ଭାଷଣ ସରିଲା ପରେ ଜଣେ ମୋତେ ପଚାରିଲେ, 'ତମର ଏହି ପ୍ଲାଜମା କୋଠରୀ ତିଆରି କରିବା ପାଇଁ ସମୁଦାୟ କେତେ ଟଙ୍କା ଖର୍ଚ୍ଚ ହେଲା ଏବଂ ସମୁଦାୟ ପରୀକ୍ଷା କରିବା ପାଇଁ କେତେ ଟଙ୍କା ଖର୍ଚ୍ଚ ହେଲା । ମୁଁ କହିଲି, ଆଠ ହଜାର ଟଙ୍କା ଖର୍ଚ୍ଚ ହେଲା । ମୋତେ ପ୍ରଶ୍ନ ହେଲା, ମୋଟା ମୋଟି ଭାବେ କେଉଁଥିରେ କେତେ ଖର୍ଚ୍ଚ ହୋଇଛି । ସଭାକାର୍ଯ୍ୟ ସରିଲା ପରେ କେତେ ଜଣ ସନ୍ଦେହ ପ୍ରକାଶ କରି ମୋତେ କହିଲେ ଏତେ କମ୍ ଟଙ୍କାରେ ପ୍ଲାଜମା ଗବେଷଣା ହୋଇ ପାରିବ ନାହିଁ । ମୁଁ କହିଲି, ମୁଁ କରିଛି ଏବଂ କିପରି କରିଛି ବୁଝାଇ ଦେଲି । ମୋର ସେ ଗବେଷଣାରେ ଷ୍ଟେନ୍‌ଲେସ୍ ଷ୍ଟିଲ୍ ପ୍ଲେଟ ଏବଂ ଗ୍ରୀଡ୍ (ତାର ଜାଲି) ଦରକାର ହୁଏ । ମୋତେ ଜଣେ ପ୍ରଶ୍ନ କଲେ, ଷ୍ଟେନ୍‌ଲେସ୍ ଷ୍ଟିଲ୍ ପ୍ଲେଟ ଓ ତାର ଜାଲି କେଉଁଠୁ ଏବଂ କେତେ ଟଙ୍କାରେ ଆଣିଲେ । ମୁଁ ଉତ୍ତର ଦେଲି, ଗୋଟିଏ ଷ୍ଟେନ୍‌ଲେସ୍ ଷ୍ଟିଲ୍ ଖାଇବା ଥାଳିକୁ କାଟି ଦରକାର ହେଉଥିବା ପ୍ଲେଟ୍ ତିଆରି କରିଲି ଓ ଚା ଛଣାରେ ବ୍ୟବହୃତ ହେଉଥିବା ଷ୍ଟେନ୍‌ଲେସ୍ ଷ୍ଟିଲ୍ ଜାଲିକୁ ବ୍ୟବହାର କଲି । ସେ ଜାଲିର ଦାମ୍ ହେଉଛି ଏକ ଟଙ୍କା । ତାପରେ ମୋତେ ପଚାରିଲେ, ଉଇଲସନସିଲ୍ କେଉଁଠୁ ଆଣିଲ ? ମୁଁ କହିଲି, ତାହା ମୁଁ ସାଇକେଲ୍‌ର ଭଲପିନ୍ ସକେଟ ସାହାଯ୍ୟରେ ୱାର୍କସପ୍‌ର ମିସ୍ତ୍ରୀଙ୍କ ଦ୍ୱାରା ତିଆରି କରିଛି । ସେଥିପାଇଁ ମୋତେ କିଛି ପଇସା ଖର୍ଚ୍ଚ କରିବାକୁ ପଡ଼ିନାହିଁ । ଏହିସବୁ ଆଲୋଚନା ପରେ ଅନ୍ୟମାନଙ୍କର ହୃଦବୋଧ ହେଲା ଯେ ଏତେ କମ୍ ଟଙ୍କାରେ ପ୍ଲାଜମା କୋଠରୀ ତିଆରି କରାଯାଇ ପାରିବ । ମିଟିଙ୍ଗର ବିଦାୟକାଳୀନ ଉତ୍ସବରେ ପ୍ରସ୍ତାବ ହେଲା ପ୍ଲାଜମା ଫିଜିକ୍ସ ଗବେଷଣା କିପରି ପୋଷ୍ଟଗ୍ରାଜୁଏଟ୍ ପିଲାଙ୍କ ପାଠ୍ୟକ୍ରମରେ ରଖାଯାଇ ପାରିବ । ସେଥିପାଇଁ ଗୋଟିଏ କମିଟି ଗଢାଯିବ । ସେ କମିଟି ତାର ବ୍ୟବସ୍ଥା କରିବ । କମିଟିର ସଭ୍ୟମାନଙ୍କୁ ସଭାପତି ମନୋନୀତ କରିବେ । ମିଟିଙ୍ଗ ଶେଷରେ ଡକ୍ଟର ଆର.କେ.ବର୍ମା ସେହି କମିଟିର ସଦସ୍ୟ ମାନଙ୍କ ମଧ୍ୟରେ କେଉଁମାନେ ରହିବେ ସେମାନଙ୍କ ନାମ ଘୋଷଣା କଲେ । ସେ କମିଟିରେ ମୁଁ ମଧ୍ୟ ସ୍ଥାନ ପାଇଥିଲି ।

ମୁଁ ପୁରୀରେ ଥିଲାବେଳେ ଭାରତ ସରକାରଙ୍କୁ ଦରଖାସ୍ତ କରିଥିଲି ଅନ୍ୟ ଦେଶରେ ଚାକିରୀ କରିବା ପାଇଁ ଯଦି କୌଣସି ଦେଶ ଦରକାର କରନ୍ତି ମୁଁ ତାହାହେଲେ ରାଜି ଅଛି । ପ୍ରାୟ ଦଶବର୍ଷ ପରେ ଟେଲିଗ୍ରାମ ଦ୍ୱାରା ମୋତେ ଜଣାଇ ଦିଆଗଲା ଯେ ଇରାକ୍ ସରକାର ଗୋଟିଏ ପ୍ରଫେସର ଚାକିରୀ ଦରକାର କରୁଛନ୍ତି । ତୁମେ ଯଦି ଯିବାକୁ ଇଚ୍ଛା କର ତେବେ ଇରାକ୍ ରାଷ୍ଟ୍ରଦୂତଙ୍କ କାର୍ଯ୍ୟାଳୟରେ ନିର୍ଦ୍ଦିଷ୍ଟ ତାରିଖ ଦିନ ସାକ୍ଷାତ କର । ତେଣୁ ନିର୍ଦ୍ଦିଷ୍ଟ ତାରିଖର ଦୁଇଦିନ ପୂର୍ବରୁ ମୋର ଜଣେ ସହକର୍ମୀଙ୍କ ସାନଭାଇ ସେତେବେଳେ ଜବାହାରଲାଲ ନେହୁରୁ (J.N.U) ବିଶ୍ୱବିଦ୍ୟାଳୟରେ ରହୁଥିଲେ । ତାଙ୍କ ପାଖକୁ ଗୋଟିଏ ଟେଲିଗ୍ରାମ୍ କରିଦେଲି ଯେ

ନିର୍ଦ୍ଦିଷ୍ଟ ତାରିଖର ପୂର୍ବ ଦିନ ରାତିରେ ଦିଲ୍ଲୀ ଷ୍ଟେସନ୍‌ରେ ପହଁଞ୍ଚିବି । ତମେ ଷ୍ଟେସନ୍‌କୁ ଆସି ମୋତେ ଦେଖାକର ଏବଂ ମୋର ରହିବାର ବ୍ୟବସ୍ଥା କରିଦିଅ । ମୋର ଦିଲ୍ଲୀ ଷ୍ଟେସନ୍‌ରେ ତାଙ୍କ ସହିତ ଦେଖାହେଲା । ତାଙ୍କ କହିବା ଅନୁସାରେ ମୁଁ ଯାଇ ଜେ.ଏନ୍.ୟୁ ଛାତ୍ରାବାସର ଅତିଥି ଭବନରେ ରହିଲି । ତାପର ଦିନ ସକାଳୁ ସେ ମୋତେ ନେଇ ଇରାକ୍ ରାଷ୍ଟ୍ରଦୂତଙ୍କ କାର୍ଯ୍ୟାଳୟରେ ଠାରେ ଛାଡିଦେଇ ଆସିଲେ । ଇରାକ୍‌ରୁ ଆସିଥିବା ଦୁଇଜଣ ଶିକ୍ଷାବିତ୍ ମୋତେ କହିଲେ, ଆପଣଙ୍କର ପ୍ଲାଜମା ଫିଜିକ୍ସରେ ବିଶେଷ ଦକ୍ଷତା ଅଛି । କିନ୍ତୁ ଆମେ ଦରକାର କରୁଛୁ ସଲିଡ୍ ଷ୍ଟେଟ୍ ଫିଜିକ୍ସରେ ଦକ୍ଷତା ଥିବା ଜଣେ ବ୍ୟକ୍ତିଙ୍କୁ । ତେଣୁ ଆମେ ତୁମକୁ ଇରାକ୍ ନେଇ ପାରିବୁ ନାହିଁ । ମୁଁ ସେଠାରୁ ମନ ଦୁଃଖରେ ଫେରି ଆସିଲି । ତାପର ଦିନ ଟ୍ରେନ୍‌ରେ କଟକ ଫେରି ଆସିଲି । କିନ୍ତୁ ପନ୍ଦର ଦିନ ପରେ ବଡ ଖୁସି ଲାଗିଲା ଯେ ଇରାକ୍ ଓ ଇରାନ୍ ମଧ୍ୟରେ ଯୁଦ୍ଧ ଲାଗି ଯାଇଛି । ତେଣୁ ଭାବିଲି "ଈଶ୍ୱର ଯାହା କରନ୍ତି ପ୍ରାଣୀର ମଙ୍ଗଳପାଇଁ ।"

୧୯୮୧ ମସିହାରେ ନିମାପଡା ହାଇସ୍କୁଲ୍‌ର ସୁବର୍ଣ୍ଣ ଜୟନ୍ତୀ ଉତ୍ସବକୁ ପ୍ରଧାନ ଅତିଥି ଭାବରେ ଡକ୍ଟର୍ ସଦାଶିବ ମିଶ୍ର ନିମନ୍ତ୍ରିତ ହୋଉଥିଲେ । ସେହି ସ୍କୁଲ୍‌ର ପୁରାତନ ଛାତ୍ର ହିସାବରେ ମୁଁ ମଧ୍ୟ ଯୋଗ ଦେବାକୁ ନିମନ୍ତ୍ରିତ ହୋଇଥିଲି । ଶ୍ରୀ ସୁବାଷ ଚନ୍ଦ୍ର ମିଶ୍ର ରାଜନୀତି ବିଜ୍ଞାନର ପ୍ରାଧ୍ୟାପକ ମୋତେ ନିମନ୍ତ୍ରଣ କାର୍ଡଟି ଦେଇ ଯିବା ପାଇଁ ଅନୁରୋଧ କରିଥିଲେ । ମୁଁ ଡକ୍ଟର ସଦାଶିବ ମିଶ୍ରଙ୍କ ସଙ୍ଗେ ଦେଖାକରି ତାଙ୍କ ସଙ୍ଗେ ନିମାପଡା ଯିବା ପାଇଁ ଅନୁରୋଧ କଲି । ସେ ମୋତେ ନେବା ପାଇଁ ରାଜି ହୋଇଥିଲେ । ସେ କହିଲେ ଯିବା ସମୟ ପୂର୍ବରୁ ତମେ ଆମ ଘରକୁ ଚାଲି ଆସିବ, ଆମେ ଏଠାରୁ ଯିବା । ତାଙ୍କ କହିବା ଅନୁସାରେ ମୁଁ ନିର୍ଦ୍ଦିଷ୍ଟ ସମୟରେ ପହଁଞ୍ଚି ଯାଇଥିଲି ।

ସୁବର୍ଣ୍ଣ ଜୟନ୍ତୀ ଉତ୍ସବରେ ମୋତେ କିଛି କହିବା ପାଇଁ ସ୍କୁଲ୍‌ର ପ୍ରଧାନ ଶିକ୍ଷକ ଅନୁରୋଧ କରିଥିଲେ । ମୁଁ ଭାଷଣ ଦେଲା ବେଳେ ନିମାପଡା ହାଇସ୍କୁଲ୍‌ର ଐତିହ୍ୟ ବିଷୟରେ କିଛି କହିବାକୁ ଯାଇ କହିଲି, ଶ୍ରୀ ମଧୁ ବିଶ୍ୱାଳ ନାମକ ଜଣେ ପ୍ରଧାନ ଶିକ୍ଷକ ନିମାପଡା ସ୍କୁଲ୍‌ରେ ଥିଲେ । ସେତେବେଳେ ଖରା ଛୁଟି ଭିତରେ ନିମାପଡାରେ ଥିବା କୋଠଦେଶ ଷ୍ଟେଟର ମ୍ୟାନେଜର ନିମାପଡା ସ୍କୁଲ୍‌ର ଖେଳ ପଡିଆର ଚାରିପଟେ କଣ୍ଟାବାଡ ପକାଇ ନିଜ ଅକ୍ତିଆରକୁ ନେଇଥିଲେ । ସ୍କୁଲ୍ ଖୋଲିଲା ପରେ ଦିନେ ପ୍ରଧାନ ଶିକ୍ଷକ ପିଲାମାନଙ୍କ ସାହାଯ୍ୟରେ କଣ୍ଟାବାଡ ସବୁ ଉପାଡି ଦେଇ ପିଲାମାନଙ୍କୁ ସେହି ପଡିଆରେ ଖେଳିବା ପାଇଁ ନିର୍ଦ୍ଦେଶ ଦେଲେ । ସେହି ସମୟରୁ ପ୍ରତିବର୍ଷ ନିମାପଡାର ଜନସାଧାରଣଙ୍କ ମଧ୍ୟରୁ କେତେଜଣ ବାସିନ୍ଦା ଏବଂ ସ୍କୁଲ୍ ପିଲାଙ୍କ ମଧ୍ୟରେ ଫୁଟ୍‌ବଲ୍ ଖେଳ ହେଉଥିଲା । ସବୁବେଳେ ସ୍କୁଲ୍ ପିଲାମାନେ ଜିତୁଥିଲେ । ତାପରେ ନିମାପଡାରେ ହୋଇଥିବା ଭାରତର ସ୍ୱାଧୀନତା ସଂଗ୍ରାମ ବିଷୟରେ କିଛି କହିବାକୁ

ଯାଇ କହିଲି ଏହି ସ୍କୁଲର ଛାତ୍ର ଶ୍ରୀ ଭବାନୀ ଚରଣ ପଟ୍ଟନାୟକଙ୍କୁ କାରାବରଣ କରିବାକୁ ପଡିଥିଲା ଏବଂ ଶ୍ରୀ ଉତ୍ସବ ମଲ୍ଲିକ ଶହିଦ ହୋଇଥିଲେ ।

## ପ୍ରଫେସର, ରେଭେନ୍‌ସା କଲେଜ

୧୯୮୨ ମସିହାର ଅଗଷ୍ଟ ୫ ତାରିଖରେ ମୁଁ ରେଭେନ୍‌ସା କଲେଜର ପ୍ରଫେସର ଭାବେ ସରକାରଙ୍କ ଦ୍ୱାରା ନିଯୁକ୍ତ ହେଲି ଏବଂ ମୁଖ୍ୟ ପ୍ରଫେସର ହିସାବରେ କାମରେ ଯୋଗଦେଲି । ପ୍ରଫେସର ହେବାପରେ ମୁଁ ଜାଣିବାକୁ ପାଇଲି ତିରୁପତି ଠାରେ ବିଜ୍ଞାନ କଂଗ୍ରେସର ଅଧିବେଶନ ୧୯୮୩ ଜାନୁଆରୀ ୩ ତାରିଖ ଠାରୁ ୮ ତାରିଖ ପର୍ଯ୍ୟନ୍ତ ହେଉଛି । ମୋର ତିରୁପତିରେ ବାଲାଜୀ ମହାପ୍ରଭୁଙ୍କୁ ଦେଖିବାର ଇଚ୍ଛାଥିଲା ଏବଂ ସେଠାକୁ ଯିବାପାଇଁ ମୁଁ ଠିକ୍ କରିଥିଲି । ସେହିବର୍ଷ ଗୋଟିଏ ପ୍ରାୟୋଗିକ ଗବେଷଣାତ୍ମକ କାମ ପ୍ରବନ୍ଧ ଆକାରରେ ଲେଖି ଏଲ.ଡି.ପି.ରାୟ ଯୁବ ବୈଜ୍ଞାନିକ ପୁରସ୍କାର ପାଇବା ନିମିତ୍ତ ପଠାଇ ଥିଲେ । ତାଙ୍କ ପ୍ରବନ୍ଧ ଉପରେ ଭାଷଣ ଦେବା ପାଇଁ ତିରୁପତିରେ ହେଉଥିବା ସର୍ବଭାରତୀୟ ବିଜ୍ଞାନ କଂଗ୍ରେସରେ ଯୋଗ ଦେବା ପାଇଁ ସେ ନିମନ୍ତ୍ରିତ ହୋଇଥିଲେ । ମୁଁ ମଧ୍ୟ ତାଙ୍କ ସହିତ ଯାଇଥିଲି । କିନ୍ତୁ ଯୁବ ବୈଜ୍ଞାନିକ ପୁରସ୍କାର ସେ ପାଇପାରିଲେ ନାହିଁ ।

## ତିରୁପତିରେ ବାଲାଜୀଙ୍କୁ ଦର୍ଶନ

ତିରୁପତିରେ ଥିବା ବିଶିଷ୍ଟ ବାଲାଜୀ ମନ୍ଦିରକୁ ଦେଖିବା ପାଇଁ ଆମେ ଦୁହେଁ ଦିନେ ଭୋର ଚାରିଟା ବେଳେ ତିରୁମଲ୍ଲା ଅଭିମୁଖେ ଯାତ୍ରାକଲୁ । ସେଠାରେ ପହଁଞ୍ଚି ବାଲାଜୀଙ୍କୁ ଦର୍ଶନ କରିବାପାଇଁ ଧାଡିବାନ୍ଧି ଛିଡାହେଲୁ । ଧୀରେ ଧୀରେ ଧାଡି ଅଗ୍ରଗତି କରୁଥାଏ । ବାଟରେ ଯାତ୍ରୀମାନେ ବିଶ୍ରାମ ନେବା ପାଇଁ ବେଞ୍ଚମାନ ପଡିଥାଏ । କିଛିଦୂର ଗଲାପରେ ଆମେ ଦେଖିଲୁ ଗୋଟିଏ ବଡ କୋଠରୀରେ ଯାତ୍ରୀମାନେ ସବୁ ଧାଡିବାନ୍ଧି ବସିଛନ୍ତି । ସେଠାରେ ଟିଭିର ବ୍ୟବସ୍ଥା ଥାଏ, ଯାତ୍ରୀମାନେ ସମସ୍ତେ ଟିଭି ଦେଖୁଥାଆନ୍ତି । ମଝିରେ ଆମେ ଦେଖିଲୁ ଧନୀ ଲୋକମାନେ ଅଧିକ ଟଙ୍କା ଦେଇ ଧାଡିରେ ଆସି ମଝିରେ ଯୋଗ ଦେଉଥାଆନ୍ତି । ଏହିପରି ଭାବରେ ବେଶୀ ପଇସା ଦେଇ ଟିକେଟ କଲେ ସେମାନେ ଆଗଯାଇ ଦର୍ଶନ କରିପାରିବେ । ଏହିପରି ଭାବରେ ଦର୍ଶନ କରିସାରି ଫେରିଲା ବେଳକୁ ପ୍ରାୟ ବାରଟା ବାଜି ଯାଇଥିଲା । ଏହି ପ୍ରକାର ପ୍ରଥା ପୁରୀ ଜଗନ୍ନାଥଙ୍କ ଦର୍ଶନରେ ଦେଖିବାକୁ ମିଳେନାହିଁ । ଆମେ ସେଠାରେ ଶୁଣିବାକୁ ପାଇଲୁ, ଆମେ ଭାଗ୍ୟବାନ୍ କାରଣ ଏତେ ଶୀଘ୍ର ଦର୍ଶନ କରି ଫେରିଲୁ । ଦିନେ ଦିନେ ସକାଳୁ ଗଲେ ମଧ୍ୟ ଦର୍ଶନ ସାରି ଫେରିଲା ବେଳକୁ ସଂଧ୍ୟା ହୋଇଯାଇ ଥାଏ । ବିଜ୍ଞାନ କଂଗ୍ରେସ ସରିଲା ପରେ ଆମେ ତିରୁପତି ଏକ୍ସପ୍ରେସରେ କଟକ ଆସିଲୁ ।

## ବଡ ଝିଅର ବିଭାଘର ଓ ସାନ ପୁଅର ବ୍ରତଘର

୧୯୮୩ ମସିହା ମାର୍ଚ୍ଚ ମାସରେ ମୋ ବଡ ଝିଅ ପ୍ରଭାତୀର ବିଭାଘର ହୋଇଥିଲା । ତାର ସ୍ୱାମୀ ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର ରାଉରକେଲା ଷ୍ଟିଲ୍‌ପ୍ଲାଣ୍ଟରେ ଚାକିରୀ କରୁଥିଲେ । ଝିଅର ବିଭାଘର ସହିତ ମୋ ସାନ ପୁଅର ବ୍ରତଘର ମଧ୍ୟ ହୋଇଥିଲା । ସେହିଦିନ ଚାରିଟା ସୁଦ୍ଧା

ପୁଅର ମାମୁଁ ଶ୍ରୀ କିଶୋରଚନ୍ଦ୍ର ମିଶ୍ର ଆସି ନଥିଲେ । ତେଣୁ ଶ୍ରୀ ସୁଧିରକାନ୍ତ ମିଶ୍ର ମୋ ସ୍ତ୍ରୀର ମାଉସି ପୁଅ ଭାଇ ଶେଷ ମୁହୂର୍ତ୍ତରେ ଥାଳି ଧରିଲେ । ତାହାର ଦୁଇ ଘଣ୍ଟା ପରେ ମାମୁଁ କିଶୋରଚନ୍ଦ୍ର ମିଶ୍ର ଆସି ପହଁଞ୍ଚିଲେ । ସେଦିନ ମଧ୍ୟ ମୋ ସ୍ତ୍ରୀର ଭଉଣୀମାନେ କେହିଆସି ନ ଥିଲେ । ପ୍ରମୋଦ ମିଶ୍ର ଖାଇବା ପିଇବାର ବ୍ୟବସ୍ଥା କରିଥିଲେ । ସଂନ୍ଧ୍ୟାବେଳକୁ ମୋର ଜ୍ୱାଇଁ ସଚ୍ଚିଦାନନ୍ଦ ମିଶ୍ର, ତାଙ୍କ କକେଇ ଡକ୍ଟର ସୋମନାଥ ମିଶ୍ର ଓ ତାଙ୍କର ଜଣେ ବନ୍ଧୁ ଏକ ବସ୍ ଭଡାକରି ରାଉରକେଲାରୁ ଆସି ପହଁଞ୍ଚିଲେ । ସେ ଦୁଇ ଜଣଙ୍କୁ ମୁଁ କଲେଜରେ ଥିବା ଅତିଥି କୋଠରୀରେ ରହିବାର ବନ୍ଦୋବସ୍ତ କରିଦେଲି । ଯେଉଁ ବରଯାତ୍ରୀମାନେ ଆସିଥିଲେ ତାଙ୍କୁ ରେଭେନ୍ସା କଲେଜର ଏକ ଖାଲିଥିବା ସରକାରୀ ବାସଭବନରେ ରଖିବାର ବନ୍ଦୋବସ୍ତ କରିଦେଲି । ତାପର ଦିନ ସକାଳେ ସୋମନାଥ ମିଶ୍ର, ତାଙ୍କ ବନ୍ଧୁ ଓ ବରଯାତ୍ରୀମାନେ ଆମ ସଜା ହୋଇଥିବା ଗାଡିରେ କଲେଜ ପଡିଆ ପରିକ୍ରମା କରି ଆମ ଘରେ ଆସି ପହଁଞ୍ଚିଲେ । ଆମ ସରକାରୀ ଘର ଆଗରେ ଗୋଟିଏ ବଡ ତୋରଣ ବନ୍ଧା ଯାଇଥିଲା । ତାପରେ ବିଭାଘର ଆରମ୍ଭ ହେଲା । ବରଯାତ୍ରୀମାନଙ୍କର ଖାଇବା ପିଇବାର ବନ୍ଦୋବସ୍ତ ହୋଇଥିଲା । ବରଯାତ୍ରୀମାନେ ଭୋଜି ଖାଇ ତୃପ୍ତ ହୋଇ ଆମର ଖାଇବା ପିଇବାର ବନ୍ଦୋବସ୍ତ ଅତି ଉଚ୍ଚକୋଟୀର ହୋଇଥିଲା ବୋଲି ସନ୍ତୋଷ ଲାଭ କରିଥିଲେ । ତାପରଦିନ ଦିନ ଦଶଟା ବେଳେ ଆମେ ଏକ କାର ଭଡାକରି ଝିଅ,ଜ୍ୱାଇଁ, ତାଙ୍କ କକେଇ ଓ ତାଙ୍କ ବନ୍ଧୁଙ୍କୁ ରାଉରକେଲା ବିଦା କରିଥିଲୁ । ବିଦାୟ ବେଳେ ମୋ ଝିଅ ହାଇସ୍କୁଲରେ ପାଇଥିବା ସୁନା ପଦକଟିକୁ ତାକୁ ଦେଇଥିଲି । ସେତେବେଳେ ମୋ ଆଖିରୁ ଲୁହ ବୋହି ଆସିଥିଲା ।

## ଆଇ.ଏସ୍‌ସି ପ୍ରାକ୍ଟିକାଲ ପରୀକ୍ଷାର ଷ୍ଟୁଆର୍ଟ କଲେଜରେ ବାହ୍ୟ ପରୀକ୍ଷକ

ସେହି ବର୍ଷ ମୁଁ ଷ୍ଟୁଆର୍ଟ କଲେଜକୁ ଆଇ.ଏସ୍‌ସି ପ୍ରାକ୍ଟିକାଲ ପରୀକ୍ଷାର ବାହ୍ୟ ପରୀକ୍ଷକ ହୋଇ ଯାଇଥିଲି । ପରୀକ୍ଷା ସମୟରେ ଗୋଟିଏ ଆଶ୍ଚର୍ଯ୍ୟ ଜନକ ଘଟଣା ଘଟିଥିଲା । ଘଟଣାଟି ହେଲା ଗୋଟିଏ ଗ୍ରୁପ୍‌ରେ ପରୀକ୍ଷା ଆରମ୍ଭ ହେବାବେଳେ ଲଟେରୀ ପାଇଁ ଯେଉଁ ପ୍ରଶ୍ନ ଗୁଡିକ ଖାତା ଉପରେ ଲେଖା ହୋଇଥାଏ, ସେହି ଖାତା ଗୁଡିକର ପଛପଟ ଉପରକୁ ଦେଖାଯାଉ ଥାଏ । ପରୀକ୍ଷାର୍ଥୀ ମାନେ ଏହି ଖାତାରୁ ଗୋଟିଏ ଗୋଟିଏ ଟାଣିନେଇ ପରୀକ୍ଷା ଦେବାକୁ ଯାଆନ୍ତି । ଖାତା ଆଗପଟେ ଯେଉଁ ପ୍ରଶ୍ନ ଲେଖା ହୋଇଥାଏ ସେହି ପ୍ରଶ୍ନ ଅନୁସାରେ ପରୀକ୍ଷା ଦିଅନ୍ତି ଏବଂ ପରୀକ୍ଷାରେ ନମ୍ବର ଦିଆଯାଏ । ଲଟେରୀ ଆରମ୍ଭ ହେବା ପୂର୍ବରୁ ମୁଁ ଦେଖିଲି, ଖାତାର ପଛପଟକୋଣରେ କେତେକ ଚିହ୍ନ ପେନ୍‌ସିଲ୍‌ରେ ଦିଆଯାଇଥିଲା । ମୋର ସନ୍ଦେହ ହେଲା ଯେ ନିର୍ଦ୍ଦିଷ୍ଟ ପିଲାଙ୍କୁ ନିର୍ଦ୍ଦିଷ୍ଟ ପ୍ରଶ୍ନ ଦେବା ପାଇଁ ସେ ଚିହ୍ନ ସବୁ ଦିଆଯାଇଛି । ତେଣୁ ସେ ଖାତା ଉପରେ ଗୋଟିଏ ଟାଉଲିଆ ଘୋଡାଇ ଦେଇ ପିଲାମାନଙ୍କୁ ଖାତା ଉଠାଇବାକୁ କହିଲି । କେତେଜଣ ଖାତା ନେଇଯିବା ପରେ ହଠାତ୍ ଗୋଟିଏ ପିଲା ଖାତା ଉଠାଇବା ବେଳେ ଅଚେତ ହୋଇ ପଡିଗଲା । ତାପରେ କଲେଜ ସାରା ରାଷ୍ଟ୍ର ହୋଇଗଲା ବାହ୍ୟ ପରୀକ୍ଷକ ଖାତା ଉପରେ

ଚଉଲିଆ ପକାଇ ଦେବାରୁ ଗୋଟିଏ ପିଲା ଅଚେତ ହୋଇଗଲା । ସେ ଘଟଣାର ପାଞ୍ଚ ମିନିଟ୍ ପରେ ଷ୍ଟୁଆଟ୍ କଲେଜର ଅଧ୍ୟକ୍ଷ ଆସି ପରୀକ୍ଷା ହଲରେ ଉପସ୍ଥିତ ହେଲେ ଏବଂ ପଚାରିଲେ କଣ ହେଲା ? ମୁଁ ସବୁକଥା କହିଲି ଏବଂ ସେ ବୁଝିଗଲେ । ସେତେବେଳକୁ ପିଲାଟିର ଚେତା ଆସିଯାଇ ଥିଲା । ସେ ଅଧ୍ୟକ୍ଷଙ୍କୁ ନିବେଦନ କଲା, ମୁଁ ଆଜି ଆଉ ପରୀକ୍ଷା ଦେଇ ପାରିବି ନାହିଁ । ମୋତେ ଆଉ ଦିନେ ପରୀକ୍ଷା ଦେବାକୁ ଅନୁମତି ଦିଆଯାଉ । ତାକୁ ଆଉ ଗୋଟିଏ ଦିନ ପରୀକ୍ଷା ଦେବାକୁ ମୁଁ ଏବଂ ଅଧ୍ୟକ୍ଷ ଅନୁମତି ଦେଲୁ ।

ସେହି ୧୯୮୩ ମସିହାରେ +୨ ପାଇଁ ଗୋଟିଏ ଫିଜିକ୍ସ ବହିର କେତେକ ଅଂଶ ମୁଁ ଲେଖିଥିଲି ଏବଂ 'ବିକାଶ ପବ୍ଲିଶିଙ୍ଗ୍ କମ୍ପାନୀ, ନୂଆ ଦିଲ୍ଲୀ' ତାହା ଛପାଇ ଥିଲା । ୧୯୮୨ କିମ୍ବା ୧୯୮୩ ମସିହାରେ ଅଷ୍ଟ୍ରିଆରେ ଥିବା ଇଣ୍ଟରନ୍ୟାସନାଲ୍ ସେଣ୍ଟର ଫର ଥିଓରିଟିକାଲ ଫିଜିକ୍ସକୁ ଏକ ପ୍ଲାଜମା ଫିଜିକ୍ସର ସେମିନାରରେ ଯୋଗଦେବା ପାଇଁ ଦରଖାସ୍ତ କରିଥିଲି । ଦରଖାସ୍ତରେ ନିଜେ କରିଥିବା ଗବେଷଣାତ୍ମକ କାମଟିକୁ ଭଲଭାବରେ ଲେଖି ପଠାଇବା ପାଇଁ କୁହାଯାଇ ଥିଲା । ମୁଁ ଯେଉଁ କାମଟି ୧୯୮୧ ମସିହାରେ ଦିଲ୍ଲୀଠାରେ ଥିବା ପ୍ଲାଜମା ସାଇନ୍‌ସ ସିମ୍ପୋଜିଅମ୍‌କୁ ପଠାଇଥିଲି ଏବଂ ତାହା ବେଶ୍ ଆଦୃତ ହୋଇଥିଲା, ସେହି କାମଟିକୁ ଉନ୍ନତ ମାନର କରିବା ପାଇଁ ଚେଷ୍ଟା କରିଥିଲି । ସେଥିରେ ପ୍ଲାଜମାର ପାରାମିଟରଗୁଡ଼ିକ ବାହାର କରିବା ପାଇଁ ଅଧଘଣ୍ଟାରୁ ବେଶୀ ସମୟ ଲାଗୁଥିଲା । ମୁଁ ତାକୁ ମାପିବାର ପ୍ରଣାଳୀ ପରିବର୍ତ୍ତନ କରି କିପରି ତିରିଶ ସେକେଣ୍ଡରେ ମାପି ହେବ, ତାହା ଗବେଷଣା କରି ବାହାର କରିଥିଲି । ସେହି ପ୍ରଣାଳୀରେ ପ୍ଲାଜମାର ଧର୍ମ ମାପିବା ଦରକାର ପଡେନାହିଁ । କିନ୍ତୁ ତାହା ଫଟୋଗ୍ରାଫିକ୍ ପ୍ରିଣ୍ଟିଙ୍ଗ ପେପରରେ ଆପେ ଆପେ ଚିହ୍ନିତ ହୋଇଯାଏ ।

## ମୋ ପ୍ରବନ୍ଧ ଉପରେ ପ୍ରଫେସର ଡକ୍ଟର ମାକ୍‌ନମେରାଙ୍କ ମନ୍ତବ୍ୟ

ତାର ଦୁଇମାସ ପରେ କାଲିଫର୍ଣିଆ ବିଶ୍ୱବିଦ୍ୟାଳୟରେ ଥିବା ପ୍ରଫେସର ଡକ୍ଟର ମାକ୍ ନମାରାଙ୍କ ଠାରୁ ଗୋଟିଏ ଚିଠି ପାଇଲି । ଚିଠିରେ ଲେଖାଥିଲା, ତମେ ପଠାଇଥିବା ପ୍ରବନ୍ଧଟି ମୋତେ ଖୁବ୍ ଭଲ ଲାଗିଲା । ତେଣୁ ମୁଁ ତୁମକୁ ଆଇ.ସି.ଟି.ପି ସେମିନାରରେ ଯୋଗଦେବା ପାଇଁ ପ୍ରସ୍ତାବ ଦେଉଛି । ଯେତେଦୂର ସମ୍ଭବ ଆଇ.ସି.ଟି.ପି ତୁମକୁ ନିମନ୍ତ୍ରଣ ଦେଇ ପାରନ୍ତି । ସେ ଚିଠିଟି ପାଇ ମୁଁ ବହୁତ ଖୁସି ହୋଇଗଲି । ମୋର ସବୁବେଳେ ଯେ କୌଣସି କାମରେ ବାଧାବିଘ୍ନ ପଡେ । ତେଣୁ ସନ୍ଦେହ କରୁଥିଲି ମୋତେ ମିଳିବ କି ନାହିଁ । ତାର ଦୁଇମାସ ପରେ ମୁଁ ଆଇ.ସି.ଟି.ପି.ରୁ ଚିଠି ପାଇଲି, ଆମେ ଦୁଃଖର ସହିତ ଜଣାଉଛୁ ଯେ ଆମେ ଏଥର ତୁମକୁ ନିମନ୍ତ୍ରଣ କରିପାରୁ ନାହୁଁ । ଏହା ଶୁଣି ମୁଁ ଦୁଃଖରେ ଚୁପ୍ ହୋଇ ରହିଲି ।

## ଦ୍ୱିତୀୟ ସାଇନ୍‌ସ ଆଣ୍ଡ ଟେକ୍‌ନୋଲୋଜିର ଆଲୋଚନା ଚକ୍ର

୧୯୮୩ ମସିହାରେ ବାଙ୍ଗାଲୋରରେ ଦ୍ୱିତୀୟ ନ୍ୟାସ୍‌ନାଲ ସିମ୍ପୋଜିଅମ୍ ଅଫ ସାଇନ୍‌ସ ଆଣ୍ଡ ଟେକ୍‌ନୋଲୋଜି (Second National Symposium of science and

Technology) ନାମକ ଗୋଟିଏ ସିମ୍ପୋଜିଅମ୍ ହୋଇଥିଲା । ମୁଁ ସେ ସିମ୍ପୋଜିଅମ୍‌କୁ ଯୋଗ ଦେବାପାଇଁ ନିମନ୍ତ୍ରଣ ପାଇଥିଲି । ମୁଁ ସେଠାରେ ଅତିଥି ଭବନରେ ଯାଇ ରହିଥିଲି । ସେଠାରେ ଆଲୋଚନା ହୋଇଥିଲା, କିପରି ପ୍ଲାଜମା ଫିଜିକ୍ସକୁ କଲେଜର ପୋଷ୍ଟ ଗ୍ରାଜୁଏଟ୍ କୋର୍ସରେ ଅନ୍ତର୍ଭୁକ୍ତ କରାଯିବ । ସେଥିରେ ସ୍ଥିର କରାଗଲା ଅହମ୍ମଦାବାଦରେ ପ୍ରଫେସର ପି.ଆଇ.ଜନ୍‌ଙ୍କ ତତ୍ତ୍ୱାବଧାନରେ ଫିଜିକାଲ୍ ରିସର୍ଚ୍ଚ ଲାବୋରାଟୋରୀରେ ଗୋଟିଏ "ୱାର୍କସପ୍ ଅନ୍ ପ୍ଲାଜମା ଫିଜିକ୍ସ ଏକ୍ସପେରିମେଣ୍ଟ ଇନ୍ ଇଉନିଭରସିଟିଜ୍" ଅନୁଷ୍ଠିତ ହେବ । ବାଙ୍ଗାଲୋରରେ ନ୍ୟାସ୍‌ନାଲ ସିମ୍ପୋଜିଅମ୍ ତରଫରୁ ବାଙ୍ଗାଲୋର ନିକଟରେ ଥିବା ବିଭିନ୍ନ ଦର୍ଶନୀୟ ସ୍ଥାନ ଦେଖିବା ପାଇଁ ଗୋଟିଏ ଆୟୋଜନ କରାଯାଇଥିଲା । ମୁଁ ସେଥିରେ ଯିବା ପାଇଁ ମୋର ଇଚ୍ଛାପ୍ରକାଶ କରିଥିଲି । ଯେଉଁଦିନ ଯିବା କଥା ସେଦିନ ସକାଳୁ ଗୋଟିଏ ଲକ୍‌ଜୁରୀ ବସ୍‌ରେ ବସି ଆମେ ସବୁ ବାହାରିଲୁ । ବାଟରେ ଗୋଟିଏ ଜାଗାରେ ବସ୍ ରହିଲା । ସବୁ ଲୋକମାନେ ବସ୍‌ରୁ ଓହ୍ଲାଇ ଚା, ଜଳଖିଆ ପ୍ରଭୃତି ଖାଇଲେ । ଅନ୍ୟ କେତେଜଣ କର୍ଣ୍ଣାଟକ ଗଭର୍ଣ୍ଣମେଣ୍ଟର ଗୋଟିଏ ଦୋକାନରୁ ଜିନିଷ ପତ୍ର କିଣିବା ପାଇଁ ଗଲେ । ମୁଁ ମଧ୍ୟ ଯାଇଥିଲି । ସେଠାରେ ଚନ୍ଦନ କାଠର କାମସବୁ ବିକ୍ରି ହେଉଥିଲା । ମୋତେ ଚନ୍ଦନ ଅର୍କ ଭାରି ଭଲ ଲାଗେ । ତେଣୁ ମୁଁ ପଚିଶି ଟଙ୍କା ଦେଇକରି ଗୋଟିଏ ଛୋଟ ବୋତଲ ଚନ୍ଦନ ତେଲ କିଣିଲି । ମୋ ମନେ ମନେ ଭାବିଥିଲି ସେଇଟା ଉଚ୍ଚକୋଟୀର ହୋଇଥିବ ବୋଲି । କିନ୍ତୁ କଟକ ଆସି ଦେଖିଲି ସେଥିରେ ବାସ୍ନା ଫାସ୍ନା କିଛି ନାହିଁ । ମୁଁ ଜାଣିଲି ସେ ନିଶ୍ଚୟ ଠକି ଦେଇଛି ।

## ମହୀଶୂରର ରାଜ ପ୍ରାସାଦ, ୱାଟର ଗେଟ ଓ ଟିପୁ ସୁଲ୍‌ତାନ୍‌ଙ୍କ ଦୁର୍ଗର ଭଗ୍ନାବଶେଷ ପରିଦର୍ଶନ

ବସ୍ ଯାଇ ମହୀଶୂରର ରାଜ ପ୍ରାସାଦ ପାଖରେ ରହିଲା । ରାଜ ପ୍ରାସାଦ ଭିତରକୁ ବୁଲିବାକୁ ଗଲୁ । ସେଠାରେ ପୂର୍ବ ରାଜାମାନଙ୍କର ବଡ ବଡ ଅଏଲ ପେଣ୍ଟ ଚିତ୍ର ରଖାଯାଇ ଥିଲା । ସେହି ସେହିସ୍ଥାନ ଦେଖି ଆମେ ଯାଇ ବସ୍‌ରେ ବସିଲୁ । ବସ୍‌ରେ ଥିବା ପଥପ୍ରଦର୍ଶକ ଭିନ୍ନ ଭିନ୍ନ ଜାଗା ବିଷୟରେ କହି ଚାଲିଥାଏ । ଶେଷରେ ଗୋଟିଏ ଜାଗାରେ ପହଞ୍ଚିଲା । ତାକୁ କହୁଥିଲେ 'ୱାଟରଗେଟ୍' । ଟିପୁ ସୁଲ୍‌ତାନ୍ ଶ୍ରୀରଙ୍ଗପଟ୍ଟମ୍ ଠାରେ ନିଜର ଦୁର୍ଗ ନିର୍ମାଣ କରିଥିଲେ । ସେହି ଦୁର୍ଗରେ ରହୁଥିଲେ । ଯେତେବେଳେ ବ୍ରିଟିଶ୍ ସୈନ୍ୟମାନେ ତାଙ୍କୁ ଆକ୍ରମଣ କଲେ, ସେ ତାଙ୍କ ଆକ୍ରମଣକୁ ଥରେ ଦୁଇଥର ପ୍ରତିରୋଧ କରିଥିଲେ । ଟିପୁସୁଲ୍‌ତାନ୍‌ଙ୍କ ଜଣେ ବିରୋଧୀ ଲୋକ ଇଂରେଜୀ ସୈନ୍ୟ ମାନଙ୍କୁ ଗୋଟିଏ ଗୁପ୍ତ ପଥ ବା 'ୱାଟରଗେଟ୍' ବାଟେ ପଶିବାକୁ ସୁବିଧା ହେବ ବୋଲି ସୂଚନା ଦେଇଥିଲେ । ଇଂରେଜ ସୈନ୍ୟମାନେ ସେହି 'ୱାଟରଗେଟ୍' ବାଟେ ଟିପୁ ସୁଲ୍‌ତାନ୍‌ଙ୍କର ଦୁର୍ଗ ଭିତରେ ପ୍ରବେଶ କରିଥିଲେ । ଟିପୁ ସୁଲ୍‌ତାନ୍‌ଙ୍କର ଯୁଦ୍ଧ କରୁଥିବା ସମୟରେ ମୃତ୍ୟୁ ହୋଇଯିବାରୁ ଇଂରେଜମାନେ ଶ୍ରୀରଙ୍ଗପଟ୍ଟମ୍ ଅଧିକାର କଲେ । ଯେଉଁ ଜାଗାରେ ଟିପୁସୁଲ୍‌ତାନ୍‌ଙ୍କ ଦେହରେ ଗୁଳିବାଜି ମୃତ୍ୟୁ ହୋଇଥିଲା,

ସେ ଜାଗାଟି ଆମ ସାଙ୍ଗରେ ଯାଉଥିବା ପଥପ୍ରଦର୍ଶକ ଆମକୁ ଦେଖାଇ ଦେଲେ । ତାଙ୍କ ଦୁର୍ଗର ଭଗ୍ନାବଶେଷ ଆମେ ଦେଖିବାକୁ ପାଇଲୁ । ତାପରେ ଆମେ ପୁଣି ବସ୍‌ରେ ବସିଲୁ ।

## ଭଗବାନ୍ ବାହୁବଳୀଙ୍କ ମୂର୍ତ୍ତୀ ଦର୍ଶନ ଓ ବୃନ୍ଦାବନ ବଗିଚା ଭ୍ରମଣ

ବସ୍‌ରେ ବସି ଭଗବାନ୍ ବାହୁବଳୀଙ୍କ ମୂର୍ତ୍ତୀ ଦେଖିବାକୁ ଗଲୁ । ବାହୁବଳୀଙ୍କ ପୀଠଟି ବାଙ୍ଗାଲୋର ଠାରୁ ୧୫୦ କି.ମି ଦୂର ଶ୍ରବଣ ବେଲାଗୋଲା ଠାରେ । ବିନ୍ଧ୍ୟ ନଗରୀ ପାହାଡ ଉପରେ ୫୮.୮ ଫୁଟ ଉଚ୍ଚର ଏକ ମୂର୍ତ୍ତୀ ଦେଖିବାକୁ ପାଇଲୁ । ସେହି ମୂର୍ତ୍ତୀଟି ଜୈନ ଧର୍ମାବଲମ୍ବୀଙ୍କ ଦ୍ୱାରା ୧୩୬୮ ସାଲରେ ନିର୍ମାଣ କରାଯାଇ ଥିଲା । ପ୍ରତି ୧୨ ବର୍ଷରେ ଥରେ ବାହୁବଳୀଙ୍କର ଅଭିଷେକ ହୁଏ, ତାହାକୁ ମହାମସ୍ତକ ଅଭିଷେକ ସମାରୋହ କୁହାଯାଏ । ସେଥିରେ ତାଙ୍କୁ ୧୦୦୮ କଳସ ଦୁଧରେ ସ୍ନାନ କରାଯାଏ । ବାହୁବଳୀଙ୍କୁ ଦେଖି ସାରିଲା ପରେ ବିନ୍ଧ୍ୟ ନଗରୀ ପାହାଡ ଉପରେ କିଛି ସମୟ ବୁଲିଲୁ । ତପରେ ପୁଣି ଆସି ବସ୍‌ରେ ବସିଲୁ । ସେତେବେଳକୁ ପ୍ରାୟ ୪ଟା ବାଜିଥାଏ । ଆମେ ବୃନ୍ଦାବନ ଗାର୍ଡେନ୍ ଦେଖିବାକୁ ଗଲୁ । ସେଠାରେ ଦୁଇ ଘଣ୍ଟା ରହି ବୁଲା ବୁଲି କରି ବିଭିନ୍ନ ଦର୍ଶନୀୟ ସ୍ଥାନ ଦେଖି ଆମେ ରାତି ୧୦ଟା ସୁଦ୍ଧା ବାଙ୍ଗାଲୋରରେ ପହଁଞ୍ଚିଲୁ । ସିମ୍ପୋଜିଅମ୍‌ର ଶେଷ ଦିନ ମିଟିଙ୍ଗ ସରିଲା ପରେ ଡକ୍ଟର ପି.ଆଇ.ଜନ୍. ମୋ ସଙ୍ଗେ ପୂର୍ବ ପ୍ରସ୍ତାବ ଅନୁସାରେ କିଛି ଆଲୋଚନା କରିଥିଲେ । ସଭା ଶେଷରେ ସେ ମୋତେ କହିଲେ, ଆପଣଙ୍କୁ ଆମେ ଆଉ ଏକ କର୍ମଶାଳାରେ ଯୋଗ ଦେବା ପାଇଁ ନିମନ୍ତ୍ରଣ କରିବୁ । ମୁଁ ଆପଣଙ୍କୁ ଅନୁରୋଧ କରୁଛି ଆପଣ ଆସି ସେ କର୍ମଶାଳାରେ ଯୋଗ ଦେବେ । ଏହାପରେ ମୁଁ ବାଙ୍ଗାଲୋରରୁ ରାତିରେ ଟ୍ରେନ୍ (ଚେୟାରକାର)ରେ ବସି ବଡି ଭୋରରୁ ଚେନ୍ନାଇରେ ପହଁଞ୍ଚିଲି । ସେତେବେଳେ ସାତଟା ସମୟରେ କରମଣ୍ଡଳ ଏକ୍ସପ୍ରେସ୍ ଓଡିଶା ଦେଇ କଲିକତା ଯାଉଥିଲା । କରମଣ୍ଡଳ ଏକ୍‌ସପ୍ରେସର ଫାଷ୍ଟକ୍ଲାସ୍‌ରେ ଆଗରୁ ସ୍ଥାନ ସଂରକ୍ଷଣ କରିଥିଲି, ତେଣୁ ମୁଁ ନିର୍ଦ୍ଦିଷ୍ଟ ବଗିରେ ବସିଲି । ତାପର ଦିନ ଭୋରରୁ କଟକରେ ଓହ୍ଲାଇଲି ।

୧୯୮୩ ମସିହା ପୂଜା ଛୁଟି ପୂର୍ବରୁ ମୁଁ ରାଜସ୍ଥାନ ବିଶ୍ୱବିଦ୍ୟାଳୟର ଫିଜିକ୍‌ସ ଡିପାର୍ଟମେଣ୍ଟରୁ ଗୋଟିଏ ଚିଠି ପାଇଲି । ସେଥିରେ ଲେଖାଥିଲା, "ଇଂଣ୍ଡର ନାସ୍‌ନ୍ୟାଲ୍ କନ୍‌ଫରେନସ୍ ଅନ୍ ଦି ରୋଲ୍ ଅଫ ଲାବୋରାଟୋରୀ ଇନ୍ ଫିଜିକ୍‌ସ ଏଜୁକେସନ୍" ଜୟପୁରର ରାଜସ୍ଥାନ ବିଶ୍ୱବିଦ୍ୟାଳୟରେ ଡିସେମ୍ବର ୨୯ରୁ ଜାନୁଆରୀ ୨ତାରିଖ ,୧୯୮୪ ମସିହା ପର୍ଯ୍ୟନ୍ତ ଅନୁଷ୍ଠିତ ହେବ । ତେଣୁ ତୁମେ ତୁମର ପ୍ରବନ୍ଧ ପଠାଅ । ମୁଁ ମୋ ପ୍ରବନ୍ଧ ପଠାଇ ଥିଲି ଏବଂ ମୋ ଯିବା ଆସିବା ଓ ରହିବା ଖର୍ଚ୍ଚ ସହିତ ନିମନ୍ତ୍ରିତ ହୋଇଥିଲି । ତେଣୁ ମୋତେ ସରକାରଙ୍କ ଠାରୁ ଅନୁମତି ନେବାକୁ ପଡିଥିଲା । ମୁଁ ସେହି ସମୟର ଶିକ୍ଷା ବିଭାଗର୍ ମୋର ପୂର୍ବତନ ଛାତ୍ର, ସେକ୍ରେଟାରୀ ଓ ଛାତ୍ର ଶ୍ରୀ ସୀତାକାନ୍ତ ମହାପାତ୍ରଙ୍କୁ ଦେଖାକଲି । ସେ ମୋତେ ଅନୁମତି ଦିଆଯିବ ବୋଲି କହିଥିଲେ । କେତେଦିନ ପରେ ସରକାରଙ୍କ ଠାରୁ ଅନୁମତି ପତ୍ରଟି ପାଇଲି । ତାର ମାସେ ପରେ ପି.ଆଇ.ଜନ୍‌ଙ୍କ ଠାରୁ ଗୋଟିଏ ଚିଠି ପାଇଲି, ପୂର୍ବ କଥିତ

କର୍ମଶାଳାଟି ଡିସେମ୍ବର ୧୯ ରୁ ୨୩ ତାରିଖ ମଧ୍ୟରେ ହେବ । ତୁମକୁ ସେଥିରେ ଯୋଗ ଦେବାପାଇଁ ଅନୁରୋଧ କରୁଛି । ଆମେ ତୁମର ଯିବା ଆସିବା ଏବଂ ରହଣି ବାବଦ ସମୁଦାୟ ଖର୍ଚ୍ଚ ବହନ କରିବୁ । ଏହି ଚିଠି ପାଇଲା ପରେ ମୁଁ ତାଙ୍କ ପାଖକୁ ଲେଖିଲି, ଜୟପୁର ଠାରେ ହେବାକୁ ଥିବା "ଇଣ୍ଡର ନ୍ୟାସନାଲ କନ୍‌ଫରେନ୍‌ସରେ" ଯୋଗ ଦେବା ପାଇଁ ଇଚ୍ଛା କରୁଛି । କିନ୍ତୁ ଅହମ୍ମଦାବାଦରୁ କଟକ ଫେରି ଆଉ ଥରେ ଜୟପୁର ଯାଇ ପାରିବି ନାହିଁ । ତେଣୁ ଅନୁରୋଧ କରୁଛି ମୋତେ ଡିସେମ୍ବର ୨୪ ଠାରୁ ୨୮ ତାରିଖ ପର୍ଯ୍ୟନ୍ତ ପି.ଆର.ଏଲ(Physical Research Laboratory) ଅତିଥି ଭବନରେ ରହିବା ପାଇଁ ଅନୁମତି ଦିଆଯାଉ । ପନ୍ଦର କୋଡିଏ ଦିନ ପରେ ମୁଁ ପ୍ରଫେସର ପି.ଆଇ.ଜନ୍‌ଙ୍କ ଠାରୁ ଚିଠି ପାଇଲି । ସେ ଲେଖିଥିଲେ, ତୁମେ ଡିସେମ୍ବର ୨୪ ରୁ ୨୮ ତାରିଖ ପର୍ଯ୍ୟନ୍ତ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ପ୍ଲାଜମା ରିସର୍ଚ୍ଚ ଅତିଥି ଭବନରେ ରହିବାକୁ ଅନୁମତି ପାଇବ । ତେଣୁ ଉଭୟରେ ଯୋଗ ଦେବା ପାଇଁ ନିଷ୍ପତ୍ତି କଲି ।

ଡିସେମ୍ବର ୧୩ ତାରିଖ ଦିନ ରାଉରକେଲାରେ ଥିବା ବଡ ଜୋଇଁଙ୍କ ଠାରୁ ଖବର ପାଇଲି ଯେ ମୋ ବଡ ଝିଅର ଦେହ ଖରାପ ହେବାରୁ ସେ ରାଉରକେଲା ବଡ ଡାକ୍ତରଖାନାରେ ଚିକିତ୍ସା ପାଇଁ ରହିଛି । ସେହିଦିନ ସଂଧ୍ୟାବେଳେ ମୁଁ ଏବଂ ମୋ ସ୍ତ୍ରୀ, ପିଲାମାନଙ୍କୁ କଟକରେ ଛାଡି ବସ୍‌ରେ ରାଉରକେଲା ଗଲୁ । ପହଁଞ୍ଚିଲା ପରେ ଜାଣିଲୁ ଯେ ତା ଦେହ ଟିକିଏ ଭଲ ଅଛି । ଦୁଇ ଦିନ ପରେ ଝିଅ ତାଙ୍କ ରାଉରକେଲା ବାସ ଭବନକୁ ଫେରି ଆସିଲା । କଟକରେ ଅନ୍ୟ ପିଲାମାନେ ଏକୁଟିଆ ଥିବାରୁ ଆମେ କଟକ ଫେରି ଆସିଲୁ । କଟକରେ ପହଁଞ୍ଚିଲା ପରେ ସ୍ତ୍ରୀକୁ କହିଲି, ମୁଁ ଆଉ ଅହମ୍ମଦାବାଦ ଯିବି ନାହିଁ । କିନ୍ତୁ ଯିବା ପାଇଁ ସ୍ତ୍ରୀ ମୋତେ ପ୍ରବର୍ତ୍ତାଇଲେ । ତେଣୁ ମୁଁ ରାଜି ହେଲି । ବୋଧେ ଯାଇ ନ'ଥିଲେ ମୋ ଜୀବନରେ ବହୁତ କିଛି କ୍ଷତି ହୋଇଥାଆନ୍ତା । ମୁଁ ୧୬ ତାରିଖ ଦିନ ସକାଳୁ ନୀଳାଚଳ ଏକ୍ସପ୍ରେସରେ ବସି ଖଡଗପୁର ପର୍ଯ୍ୟନ୍ତ ଗଲି । ସେଠାରୁ ହାଓ୍ଵଡା ଅହମ୍ମଦାବାଦ ଏକ୍ସପ୍ରେସ୍ ଧରି ଅହମ୍ମଦାବାଦରେ ପହଁଞ୍ଚିଲି । ସେଠାରେ ଅତିଥି ଭବନରେ ଗୋଟିଏ କୋଠରୀରେ ରହିବା ପାଇଁ ମୋର ବ୍ୟବସ୍ଥା ହୋଇଥିଲା । ସେହି କୋଠରୀରେ ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ ସାଇନ୍‌ସ, ବାଙ୍ଗାଲୋର,ର ଜଣେ ପ୍ରଫେସର ଆଗରୁ ଆସି ରହିଥିଲେ । ତାଙ୍କ ସଙ୍ଗେ ଅଳ୍ପ ସମୟ ଭିତରେ ଭଲ ଦୋସ୍ତି ହୋଇଗଲା । ସେ ଭାରି ମଜାଳିଆ ଲୋକ । ସେ ପ୍ରତି ଘଣ୍ଟାରେ ଥରେ ବିନା ଦୁଧରେ କଫି ନିଜ ହାତରେ କରି ପିଉଥିଲେ । ମୋତେ ସେହି କଫି ପିଇବାକୁ ବହୁତ କହିବାରୁ ମୁଁ ଥରେ ମାତ୍ର ପିଇଛି । ସେଥିରେ ଜମା ମିଠା ପଡି ନ ଥାଏ । ମୁଁ ସେହି କର୍ମଶାଳାରେ ସ୍କୁଲ୍ ପିଲାଙ୍କୁ ପ୍ଲାଜମା କିପରି ସୃଷ୍ଟି କରି ତା ଉପରେ ପ୍ରାୟ ବିନା ଖର୍ଚ୍ଚରେ ପରୀକ୍ଷା କରିହେବ, ତାହା ଏକ ପ୍ରବନ୍ଧ ମାଧ୍ୟମରେ କହିଥିଲି । ସେହି କର୍ମଶାଳାରେ ନିଷ୍ପତ୍ତି କରାଗଲା ଯେ କଲେଜ ଓ ବିଶ୍ୱବିଦ୍ୟାଳୟର ଅଧ୍ୟାପକମାନେ କମ୍ ଖର୍ଚ୍ଚରେ ପ୍ଲାଜମା ଫିଜିକ୍‌ସ ପ୍ରାୟୋଗିକ ପରୀକ୍ଷା ପାଇଁ କେତେ ଗୁଡିଏ ପରୀକ୍ଷାର ଗୋଟିଏ ପରିଯୋଜନା (Project) ଏକ ବର୍ଷ ଭିତରେ ପଠାଇ ପାରିବେ । ସେହି ପରିଯୋଜନାଟି ଉପଯୁକ୍ତ ବିବେଚିତ ହେଲେ ତାଙ୍କୁ ଡିପାର୍ଟମେଣ୍ଟ ଅଫ ସାଇନ୍‌ସ ଆଣ୍ଡ ଟେକ୍‌ନୋଲୋଜିରୁ

ଟଙ୍କା ଅନୁଦାନ ଆକାରରେ ଦିଆଯିବ । ସେହି ଟଙ୍କା ସାହାଯ୍ୟରେ ଉପକରଣ ସବୁ ତିଆରି କରି ତିନି ବର୍ଷ ଭିତରେ ଦେବାକୁ ପଡିବ । କର୍ମଶାଳା ସରିବା ପରେ ଡକ୍ଟର ଜନ୍ ମୋତେ ଇନ୍‌ଷ୍ଟିଚ୍ୟୁଟ୍ ଅଫ ପ୍ଲାଜମା ରିସର୍ଚ୍ଚ ଅତିଥି ଭବନରେ ମୋର ରହିବାର ବନ୍ଦୋବସ୍ତ କରିଦେଲେ । ସେହି ସମୟରେ ମୁଁ ସାବରମତୀ ଆଶ୍ରମକୁ ବୁଲିବାକୁ ଯାଇଥିଲି । ସେଠାରେ ମହାତ୍ମା ଗାନ୍ଧି କେଉଁଠି ରହୁଥିଲେ, କେଉଁଠି ଉପାସନା କରୁଥିଲେ ତାହା ଦେଖିଲି । ସେ ଆଶ୍ରମରେ ମହାତ୍ମା ଗାନ୍ଧିଙ୍କୁ ନେଇ ବହୁତ ଗୁଡିଏ ଫଟୋ ପ୍ରଦର୍ଶନ କରା ଯାଉଥିଲା । ସେଠାରେ ଗୋଟିଏ ଲାଇଟ୍ ଏବଂ ସାଉଣ୍ଡ ସୋ ରାତିରେ ପ୍ରଦର୍ଶିତ ହେଉଥିଲା । ତାହା ଦେଖିବା ପାଇଁ ମୁଁ ଥରେ ରାତିରେ ଯାଇଥିଲି । ଦେଖିଲା ବେଳେ ମୋ ଲୋମ ଟାଙ୍କୁରି ଉଠୁଥିଲା । ମୁଁ ସେତେବେଳେ ଭାବୁଥିଲି ନେତାମାନେ କେତେ କଷ୍ଟ ସହି ସ୍ୱାଧୀନତା ଆଣିଥିଲେ । ଅଥଚ ବର୍ତ୍ତମାନର ନେତାମାନେ କେତେ ଅୟସରେ ଅଛନ୍ତି ତାହା ଭାବିଲା ବେଳେ ମନଟା ଦୁଃଖ ହୋଇଯାଏ ।

ମୋର ଅହମ୍ମଦାବାଦରୁ ଜୟପୁର ଯିବା କଥା । ତେଣୁ ମୁଁ ୨୮ ତାରିଖ ଦିନ ସଂଧ୍ୟାବେଳେ ମିଡିୟମ୍ ଗେଜ୍ (Medium gauge)ଟ୍ରେନ୍‌ରେ ଫାଷ୍ଟକ୍ଲାସ୍ ଟିକେଟ କାଟି ବସିଲି । ସକାଳ ୭ଟା ବେଳେ ଟ୍ରେନ୍ ଜୟପୁରରେ ପହଁଚିଲା । "ଇଣ୍ଡର ନ୍ୟାସନାଲ କନ୍‌ଫରେନସ୍"ର ସ୍ୱେଚ୍ଛା ସେବକମାନେ ଆମକୁ ସବୁ ଗାଡିରେ ଜୟପୁର ବିଶ୍ୱବିଦ୍ୟାଳୟରେ ଆମ ରହିବା ଜାଗାରେ ପହଞ୍ଚାଇ ଦେଲେ । ବିଶ୍ୱବିଦ୍ୟାଳୟ ଛାତ୍ରାବାସରେ ଆମ ପାଇଁ ରହିବାର ବ୍ୟବସ୍ଥା ହୋଇଥିଲା । ଇଣ୍ଡର ନ୍ୟାସନାଲ୍ କନ୍‌ଫରେନ୍‌ସଟି ପ୍ରଫେସର ଡକ୍ଟର ବି. ସରାଫଙ୍କ ଅବସର କାଳୀନ ଉତ୍ସବ ପାଇଁ ଆୟୋଜନ ହୋଇଥିଲା । ଡକ୍ଟର ସରାଫ ତାଙ୍କ ଜୀବନରେ ଇଉ.ଜି.ସି ଠାରୁ ଅନୁଦାନ ପାଇ ବହୁତ ଗୁଡିଏ ନୂଆ ନୂଆ ଦର୍ଶନୀୟ ପରୀକ୍ଷା ଉଦ୍ଭାବନ କରିଥିଲେ । ତାଙ୍କ ପରୀକ୍ଷାଗାରକୁ ଭାରତର ଭିନ୍ନ ଭିନ୍ନ ଜାଗାରୁ ଗବେଷକମାନେ ଆସ ତାଙ୍କ ପରୀକ୍ଷା ଗୁଡିକ ଦେଖୁଥିଲେ । ସେହି ସରାଫଙ୍କ ଉଦ୍ଦେଶ୍ୟରେ ହୋଟେଲ୍ ମାନସିଂରେ ଗୋଟିଏ ଭୋଜିର ଆୟୋଜନ କରାଯାଇଥିଲା । ମୁଁ ଜୟପୁରରେ ପହଁଚି ଛାତ୍ରାବାସରେ ରହିବାର ଗୋଟିଏ ଦିନ ପରେ ସକାଳ ୪ଟା ସମୟରେ ଏଲ୍.ଡି.ପି ରାୟ(ଲାଲା ଦେବେନ୍ଦ୍ର ପ୍ରସାଦ ରାୟ) ଆସି ମୋ କୋଠରୀର ଦୁଆର ମୂହଁରେ ଡାକିଲେ ଏବଂ ସେହି କୋଠରୀରେ ତାଙ୍କର ରହିବାର ବନ୍ଦୋବସ୍ତ ହୋଇଗଲା । ମୁଁ ଏହା ଭିତରେ ଏଲ୍.ଡି.ପି ରାୟଙ୍କ କଥା ଭୁଲି ଯାଇଥିଲି । ସେ ଗୋଟିଏ କାମ ମୋ ତତ୍ତ୍ୱାବଧାନରେ କରି ଯୁବ ବୈଜ୍ଞାନିକ ପୁରସ୍କାର ପାଇବା ପାଇଁ ପ୍ରବନ୍ଧ ପଠାଇ ଥିଲେ । ତାଙ୍କ ପ୍ରବନ୍ଧଟି ଉତ୍କୃଷ୍ଟ ବିବେଚିତ ହେବାରୁ ସେ ପ୍ରବନ୍ଧଟିକୁ ଉପସ୍ଥାପନ କରିବା ପାଇଁ ନିମନ୍ତ୍ରିତ ହୋଇଥିଲେ । ସେହି ବର୍ଷ ବିଜ୍ଞାନ କଂଗ୍ରେସ ରାଞ୍ଚି ବିଶ୍ୱବିଦ୍ୟାଳୟରେ ଅନୁଷ୍ଠିତ ହୋଇଥିଲା । ସେ ରାଞ୍ଚିଠାରେ ବିଜ୍ଞାନ କଂଗ୍ରେସରେ ଯୋଗ ଦେଇ ତାଙ୍କ ପ୍ରବନ୍ଧଟି ଉପସ୍ଥାପନା କରିଥିଲେ । ଫିଜିକ୍ସରେ ପୁରସ୍କାର ପାଇବା ପାଇଁ ଦୁଇଜଣଙ୍କ ନାମ ସୁପାରିଶ କରାଯାଇ ଥିଲା । ଦୁଇ ଜଣଙ୍କ ମଧ୍ୟରେ ଏଲ୍.ଡି.ପି ରାୟଙ୍କ ନାମ ଥିଲା । ଅନ୍ୟ ଜଣେ ପିଏଚ୍.ଡି ପାଇଥିବାରୁ ତାଙ୍କୁ ଯୁବ ବୈଜ୍ଞାନିକ ପୁରସ୍କାର ଦିଆଗଲା । ଏଲ୍.ଡି.ପି. ରାୟ ମୋତେ ଏହିକଥା କହିବା ସମୟରେ ଦୁଃଖରେ କାନ୍ଦି ପକାଇଲେ ।

ଏଲ୍.ଡି.ପି ରାୟ ପ୍ରଥମେ ଟାଲଚେର ନିକଟରେ ଥିବା ଏକ ଇଞ୍ଜିନିୟରିଙ୍ଗ ସ୍କୁଲ୍‌ରେ ଡିମୋନ୍‌ଷ୍ଟ୍ରେଟର ଭାବରେ ଚାକିରି କରୁଥିଲେ । ସେହି ସମୟରେ ସେ ଆସି ମୋ ତତ୍ତ୍ୱାବଧାନରେ ଗବେଷଣା କରିବା ପାଇଁ ଅନୁରୋଧ କରିଥିଲେ । ମୁଁ ତାଙ୍କୁ ଗବେଷଣା କରିବା ପାଇଁ ସ୍ୱୀକୃତି ପ୍ରଦାନ କରିଥିଲି । କିଛିଦିନ ପରେ ସେ କଟକରେ ଥିବା ଇଞ୍ଜିନିୟରିଙ୍ଗ ସ୍କୁଲ୍‌କୁ ବଦଳି ହୋଇ ଆସିଥିଲେ । ମୁଁ ଖଲ୍ଲିକୋଟ କଲେଜରେ ଅଧ୍ୟକ୍ଷଥିବା ସମୟରେ ମଝିରେ ମଝିରେ ବ୍ରହ୍ମପୁର ଯାଇ ମୋ ସହିତ ଆଲୋଚନା କରି ଗବେଷଣା କରୁଥିଲେ ।

## ଫିଜିକ୍‌ସ ଏଜୁକେସନର୍ କର୍ମଶାଳା, ଜୟପୁର

ଆମେ ଦୁର୍ଦ୍ଦେଯାକ ସମ୍ମିଳନୀରେ ଯୋଗ ଦେଲୁ । ସମ୍ମିଳନୀରେ ୧ ତାରିଖ ଦିନ ରାତିରେ ଜୟପୁର ବିଶ୍ୱବିଦ୍ୟାଳୟର ଉପ କୁଳପତି ଯୋଗ ଦେଇଥିବା ସମସ୍ତ ପ୍ରତିନିଧି ମାନଙ୍କୁ ରାତ୍ର ଭୋଜନରେ ଆପ୍ୟାୟିତ କରିଥିଲେ । ଶେଷ ଦିନ ଭୋଜନ ବେଳେ ଡକ୍ଟର ଖଣ୍ଡେଲ୍‌ୱାଲା ଏବଂ ଅନ୍ୟ ପ୍ରଫେସରମାନେ ଠିକ୍ କଲେ ଭାରତର ଫିଜିକ୍ସ ଶିକ୍ଷକମାନଙ୍କର ଗୋଟିଏ ଅନୁଷ୍ଠାନ ଗଢାଯିବ । ସେଠାରେ ଯେଉଁମାନେ ରାଜି ହେଲେ ସେମାନେ ସମସ୍ତେ ୨୦୦ ଟଙ୍କା ଦେଇ ଆଜୀବନ ସଭ୍ୟ ହୋଇଥିଲେ । ମୁଁ ମଧ୍ୟ ଆଜୀବନ ସଭ୍ୟ ହୋଇଥିଲି । ତାପର ଦିନ ସକାଳୁ ବସ୍‌ରେ ବସି ଜୟପୁରରୁ ଆଗ୍ରା ଅଭିମୁଖେ ଯାତ୍ରା କଲୁ । ସେଠାରୁ ଉତ୍କଳ ଏକ୍ସପ୍ରେସ୍‌ରେ ବସି କଟକରେ ପହଞ୍ଚିଲୁ ।

ମୁଁ କଟକ ଫେରିବା ପରେ ବିଭିନ୍ନ ପରୀକ୍ଷା ସମ୍ବନ୍ଧୀୟ ତତ୍ତ୍ୱ ଭଲ ଭାବରେ ପଢି ବୁଝିବାକୁ ଲାଗିଲି । ତା ସହିତ ଅଳ୍ପ ଖର୍ଚ୍ଚରେ ପ୍ଲାଜମା ଉପକରଣ ସବୁ ତିଆରି କରିବା ପାଇଁ ଭାବି ଠିକ୍ କରିବାରେ ବ୍ୟସ୍ତ ରହିଲି । ମୋର ଉଦ୍ଦେଶ୍ୟ ହେଲା, ବଜାରରେ ମିଳୁଥିବା ଓ ଘରେ ବ୍ୟବହାର ହେଉଥିବା ଜିନିଷକୁ କିପରି ପ୍ଲାଜମା ଫିଜିକ୍ସର ଉପକରଣରେ ପରିବର୍ତ୍ତନ କରିହେବ, ତାହା ଭାବି ଠିକ୍ କରିବା । ତାହାହେଲେ ଖର୍ଚ୍ଚ ବହୁତ କମିଯିବ । ଉଦାହରଣ ସ୍ୱରୂପ ସାଇକେଲରେ ବ୍ୟବହାର ହେଉଥିବା ଭଲ୍‌ପିନ୍ ସକେଟକୁ ଆଗରୁ ଉଇଲ୍‌ସନ୍ ସିଲ୍‌ରେ ପରିଣତ କରିଥିଲି । ସେହିପରି ବଜାରରେ ମିଳୁଥିବା ଇଲେକ୍‌ଟ୍ରିକାଲ୍ ସୁଇଚ୍‌କୁ ବ୍ୟବହାର କରି ଏକ ମୁଖୀ କି, ଦୁଇ ମୁଖୀ କି ଓ କଲିଙ୍ଗ ବେଲ୍ ସୁଇଚ୍‌କୁ ଟ୍ୟାପ୍ କି ଇତ୍ୟାଦିରେ ପରିଣତ କରିବା ପାଇଁ ମନସ୍ଥ କରିଥିଲି । ସେହିପରି ସିଡିଘର ସୁଇଚ୍‌କୁ ବ୍ୟବହାର କରି ମୋରର୍ସ କି ଓ କମ୍ୟୁଟେଟର କରିବା ପାଇଁ ଠିକ୍ କଲି । ସେହିପରି ଅଳ୍ପ ପଇସାରେ ସରୁ କୁପରିବାହୀ ଛଡ ତିଆରି କରିବା ଉଦ୍ଦେଶ୍ୟରେ, ଝଲେଇ ପାଇଁ ବ୍ୟବହାର ହେଉଥିବା ପିତଳ ଛଡକୁ ସରି ଯାଇଥିବା ଡଟ୍ ପେନ୍ ରିଫିଲ୍ ଭିତରେ ପୁରାଇ କୁପରିବାହୀ ଛଡ କରିବା ପାଇଁ ମନେ ମନେ ଭାବିଲି । ଏହା ବ୍ୟତୀତ କେଉଁ ପରୀକ୍ଷାରେ କି ପ୍ରକାର ଉପକରଣ ବ୍ୟବହୃତ ହୋଇ ପାରିବ ସେ ସବୁର ଅତି ପ୍ରାଞ୍ଜଳ ଭାବରେ ଯୋଜନା କଲି । ପରିଯୋଜନାର ସବୁ ଆୟୋଜନ କରିବା ପାଇଁ

ପ୍ରାୟ ଏକ ବର୍ଷ ଲାଗିଗଲା । ୧୯୮୫ ଜାନୁଆରୀ ମାସ ଶେଷ ସୁଦ୍ଧା ପରିଯୋଜନାର ୨୫ କିତା ଜେରକ୍ସ କରି ଡିପାର୍ଟମେଣ୍ଟ ଅଫ ସାଇନ୍‌ସ ଆଣ୍ଡ ଟେକ୍‌ନୋଲୋଜିକୁ ପଠାଇ ଦେଲି ।

## ସର୍ବଭାରତୀୟ ଫିଜିକ୍ସ ପ୍ରୟୋଗଶାଳାର ଆଧୁନିକୀକରଣ ପାଇଁ କର୍ମଶାଳା କାମରାଜ ବିଶ୍ୱବିଦ୍ୟାଳୟ,ମଦୁରାଇ

୧୯୮୫ ମସିହା ମାର୍ଚ୍ଚ ୧୧ ତାରିଖ ଠାରୁ ୧୪ ତାରିଖ ପର୍ଯ୍ୟନ୍ତ ସର୍ବଭାରତୀୟ ଫିଜିକ୍ସ ପ୍ରୟୋଗଶାଳାର ଆଧୁନିକୀକରଣ ପାଇଁ ଗୋଟିଏ କର୍ମଶାଳା ମଦୁରାଇ କାମରାଜ ବିଶ୍ୱବିଦ୍ୟାଳୟରେ ଅନୁଷ୍ଠିତ ହୋଇଥିଲା । ମୁଁ ନିମନ୍ତ୍ରିତ ହୋଇ ସେଠାକୁ ଯୋଗ ଦେବାକୁ ଯାଇଥିଲି । ମୁଁ ତିନି କିମ୍ବା ଚାରୋଟି ପରୀକ୍ଷା ପାଠ୍ୟକ୍ରମରେ ରଖିବା ପାଇଁ କହିଥିଲି । କର୍ମଶାଳାର ଶେଷ ଦିନ ଇଉ.ଜି.ସି.ର ତତ୍କାଳୀନ ଭାଇସ୍ ଚେୟାରମ୍ୟାନ୍ ଉପସ୍ଥିତ ଥିଲେ । ମୋତେ ସେଥିରେ ଭାଷଣ ଦେବାକୁ ପଡିଥିଲା । ସେଠାରୁ ମୁଁ ମଝିରେ କନ୍ୟାକୁମାରୀ ଆଡେ ବସ୍‌ରେ ବୁଲିବାକୁ ଯାଇଥିଲି । ସେମିନାର ସରିଲା ପରେ ମୁଁ ସାଙ୍ଗେ ସାଙ୍ଗେ କଟକ ଫେରି ଆସିଲି । ମଦୁରାଇ କାମରାଜ ବିଶ୍ୱବିଦ୍ୟାଳୟଟି ମଦୁରାଇ ଷ୍ଟେସନ ଠାରୁ ପ୍ରାୟ ୧୨ କିଲୋମିଟର ଦୂରରେ ଅବସ୍ଥିତ । ଏହି ବିଶ୍ୱବିଦ୍ୟାଳୟଟି ସେତେବେଳର ମାଦ୍ରାଜ ପ୍ରଦେଶର ଇଂରାଜୀ ଜାଣି ନ ଥିବା ଜଣେ ଲୋକର ନାମ ଅନୁସାରେ ହୋଇଥିଲା । ତାଙ୍କ ନାମ କାମରାଜ ନାଦର । ସେ କଂଗ୍ରେସର ସଭାପତି ଏବଂ ମାଦ୍ରାଜର ମୁଖ୍ୟମନ୍ତ୍ରୀ ହୋଇଥିଲେ ଏବଂ ସେ ପଲୁଆ ଜାତିର ଲୋକ ଥିଲେ ।

ମାର୍ଚ୍ଚ ୩୦ ତାରିଖରେ ଡକ୍ଟର ପି.ଆଇ.ଜନ୍‌ଙ୍କ ଠାରୁ ଗୋଟିଏ ଟେଲିଗ୍ରାମ୍ ପାଇଲି । ସେଥିରେ ଲେଖାଥିଲା, ତୁମେ ଯେଉଁ ପରିଯୋଜନାଟି ପାଇଁ ଦରଖାସ୍ତ କରିଥିଲ ସେ ବିଷୟରେ ପ୍ଲାଜମା ଫିଜିକ୍ସର ଅଭିଜ୍ଞ ବ୍ୟକ୍ତିମାନଙ୍କ ଦ୍ୱାରା ଗଠିତ କମିଟିରେ ଏପ୍ରିଲ୍ ୨ ତାରିଖରେ ଆସି ସେମାନଙ୍କୁ ବୁଝାଇ ଦିଅ । ତେଣୁ ମୁଁ କଟକରୁ ବମ୍ବେ ଦେଇ ଅହମ୍ମଦାବାଦ ପର୍ଯ୍ୟନ୍ତ ଗୋଟିଏ ଟିକେଟ୍ କଲି । ୩୦ ତାରିଖ ଦିନ ସଂଧ୍ୟାବେଳେ କୋଣାର୍କ ଏକ୍ସପ୍ରେସ୍‌ରେ ବସି ପହିଲା ଦିନ ସକାଳ ନଅଟା ବେଳେ ବମ୍ବେରେ ଡେରିରେ ପହଁଞ୍ଚିଲି । ତେଣୁ ଅହମ୍ମଦାବାଦ ଯିବା ଟ୍ରେନ୍‌ଟି ମୁଁ ଫେଲ୍ ହୋଇଗଲି । ତେଣୁ ଆଉ ଗୋଟିଏ ଟ୍ରେନ୍‌ରେ ବସି ବରୋଦା ପର୍ଯ୍ୟନ୍ତ ଗଲି । ବରୋଦାରୁ ଦୁଇ ଘଣ୍ଟା ପରେ ଟ୍ରେନ୍‌ରେ ବସି ଅହମ୍ମଦାବାଦରେ ରାତି ନଅଟାରେ ପହଁଞ୍ଚିଲି । କିନ୍ତୁ ଅହମ୍ମଦାବାଦରେ ପୋଲିସ୍ ମୋତେ କହିଲା ତୁମେ ପ୍ଲାଟଫର୍ମ ଡେଇଁକରି ଯାଇପାରିବ ନାହିଁ । କାରଣ ହିନ୍ଦୁ ମୁସଲମାନ୍ ଗଣ୍ଡଗୋଳ ଲାଗି କର୍ଫ୍ୟୁ ଜାରି କରାଯାଇଛି । ସେଠାରେ ପୋଲିସ୍ ଅଫିସର ଜଣେ ଆସି ମୋତେ ପଚାରିଲେ, ଆପଣ କେଉଁଠାରୁ ଆସିଛନ୍ତି ଏବଂ କେଉଁଠାକୁ ଯିବେ ? ପୋଲିସ୍ ଗାଡିରେ ମୋତେ ବସାଇ କେଉଁଠାକୁ ନେଇଗଲେ ଏବଂ ମୋତେ କହିଲେ ସେଠାରୁ ଅଟୋରିକ୍ସା କରି ପି.ଆର.ଏଲ୍.କୁ ଚାଲିଯିବେ । ଏପରି ସାହାଯ୍ୟ ମୁଁ ଆଶା କରୁ ନ'ଥିଲି । ପରେ ଭାବିଲି ବୋଧେ ପି.ଆର.ଏଲ୍.ର ଡିରେକ୍ଟର ପୋଲିସ୍‌କୁ ନିର୍ଦ୍ଦେଶ ଦେଇଥିବେ । ମୁଁ ଯାଇ ପି.ଆର.ଏଲ୍.ରେ ରାତି ଦଶଟାରେ ପହଁଞ୍ଚିଲି । ସାଙ୍ଗେ ସାଙ୍ଗେ ଗୋଟିଏ

କାର ଅପେକ୍ଷା କରିଥିଲା । ମୁଁ ସେହି କାରରେ ଆଉ କେତେ ଜଣଙ୍କ ସହିତ ଯାଇ ଗାନ୍ଧିନଗରର ଗୋଟିଏ ହୋଟେଲରେ ପହଞ୍ଚିଲି । ସେଠାରେ ମୋର ଏବଂ ଅନ୍ୟ ମାନଙ୍କର ରହିବା ବ୍ୟବସ୍ଥା ହୋଇଥିଲା । ସେଦିନ ରାତିରେ ଆମକୁ କୁହାଗଲା, ସକାଳ ନଅଟାରେ ତୁମେମାନେ ସବୁ ପ୍ରସ୍ତୁତ ହୋଇଥିବ । ଗୋଟିଏ ବସ୍ ଆସିବ, ସେଥିରେ ସମସ୍ତେ ଗୋଟିଏ ଜାଗାକୁ ଯିବା । ଠିକ୍ ସମୟରେ ବସ୍ ଆସିଲା । ବସ୍‌ରେ ଆମେ ଗୋଟିଏ ଜାଗାକୁ ଗଲୁ ।

## ପରିଯୋଜନା ଉପରେ ବକ୍ତୃତା

ସେଠାରେ ଗୋଟିଏ ବଡ ଲେକ୍‌ଚର ହଲ୍ ଥିଲା । ଆମେ କିଛି ସମୟ ଅପେକ୍ଷା କଲାପରେ ଯେଉଁମାନେ ନିଜ ନିଜ ପରିଯୋଜନା ଉପରେ ବକ୍ତୃତା ଦେବେ ତାଙ୍କ ନାମ ଘୋଷଣା କରିଦିଆ ଗଲା । ସେଥିରେ ମୋ ନାମ ଥିଲା । ପ୍ରତ୍ୟେକ ତାଙ୍କ ପରିଯୋଜନା ଉପରେ ଦେବା ଭାଷଣକୁ ଅଭିଜ୍ଞ ବ୍ୟକ୍ତିମାନଙ୍କ କମିଟି ସହିତ ଅନ୍ୟ ସମସ୍ତେ ମଧ୍ୟ ଶୁଣିବେ ଏବଂ ସମସ୍ତେ ନିଜେ ନିଜର ମତାମତ ମଧ୍ୟ ଦେଇ ପାରିବେ । ସେ ଲେକ୍‌ଚର ହଲ୍‌କୁ ଯିବା ସମୟରେ ମୋର ଜଣେ ପୁରୁଣା ବନ୍ଧୁ ପ୍ରଫେସର ବ୍ରହ୍ମାନନ୍ଦ ଦାସଗୁପ୍ତ ମଧ୍ୟ ସେ କମିଟିରେ ଥାଆନ୍ତି । ସେ ମୋତେ ଚୁପ୍‌କରି କହିଲେ 'ଡକ୍ଟର ମିଶ୍ର ଆପଣ ଗୋଟିଏ ପ୍ରଶଂସା ଯୋଗ୍ୟ କାର୍ଯ୍ୟ କରିଛନ୍ତି'(Dr. Misra you have done a comindable work) ତାଙ୍କ କଥା ଶୁଣି ମୁଁ ଭାବିଲି ମୋ ପରିଯୋଜନାଟି ବୋଧେ ଭଲ ହୋଇଛି । ମୁଁ ଯେଉଁ ୨୫ କିତା ପରିଯୋଜନାର ଜେରକ୍ସ କରିଦେଇ ଥିଲି, ତାହା ସବୁ କମିଟି ସଭ୍ୟଙ୍କ ମଧ୍ୟରେ ବଣ୍ଟା ଯାଇଥିଲା । ମୋ ପାଳି ପଡିବାରୁ ମୋ ପରିଯୋଜନା ଉପରେ ବକ୍ତୃତା ଦେଇଥିଲି । ଅନ୍ୟମାନେ ତାଙ୍କ ବକ୍ତୃତା ଦେଲାପରେ ଆମେ ସମସ୍ତେ ମଧ୍ୟାହ୍ନ ଭୋଜନ କରିଥିଲୁ । ବାକି ରହିଥିବା ଅଧ୍ୟାପକମାନେ ବକ୍ତୃତା ଦେଇଥିଲେ । ଏହିପରି ଦୁଇଦିନ କଟିଗଲା । ଦ୍ୱିତୀୟ ଦିନ ବକ୍ତୃତା ସରିଲା ପରେ ଆୟୋଜକମାନେ ସମସ୍ତଙ୍କୁ ଫାଷ୍ଟକ୍ଲାସ୍ ଟ୍ରେନ୍ ଭଡାଦେଇ କହିଲେ, ତମର ତମେ ସଂରକ୍ଷଣ କରି ଯାଅ । ମୁଁ, ପାଟନାର ଜଣେ ପ୍ରାଧ୍ୟାପକ ଓ ବନାରସ୍‌ର ଆଉ ଜଣେ ଏକାଠି ସାବରମତି ଏକ୍ସପ୍ରେସ୍‌ରେ ଫେରିବା ପାଇଁ ଠିକ୍ କଲୁ । ଗାଡି ପ୍ରାୟ ରାତି ନଅଟା ବେଳକୁ ଯାଏ । ସେ ଦୁଇଜଣ ସାବରମତି ଏକ୍ସପ୍ରେସରେ ବନାରସ୍ ପର୍ଯ୍ୟନ୍ତ ଯିବେ । କିନ୍ତୁ ମୁଁ ସାବରମତି ଏକ୍ସପ୍ରେସରେ ଯାଇ ବିନା ଷ୍ଟେସନରେ ଓହ୍ଲାଇବି ଏବଂ ସେଠାରୁ ରାତିରେ ଉତ୍କଳ ଏକ୍ସପ୍ରେସ ଧରି କଟକ ଯିବି । ଆମେ ତିନି ଜଣ ଅହମଦାବାଦ ଏକ୍ସପ୍ରେସରେ କୌଣସି ସଂରକ୍ଷଣ ସ୍ଥାନ ପାଇଲୁ ନାହିଁ । ଗୋଟିଏ ଲୋକ ଆମଠାରୁ ତିରିଶ ଟଙ୍କା ଲେଖାଏଁ ନେଇ ସ୍ଥାନ ସଂରକ୍ଷଣ କରିଦେବ ବୋଲି କହିଲା ଏବଂ ଟଙ୍କା ନେଇ କୁଆଡେ ଖସିଗଲା ଯେ ଆମେ ତାହାର ପତ୍ତା ପାଇଲୁ ନାହିଁ । ତେଣୁ ବାଧ୍ୟ ହୋଇ ତିନିଜଣ ଯାକ ତୃତୀୟ ଶ୍ରେଣୀର ସାଧାରଣ ବଗିରେ ଯାଇ ବସିଲୁ । ବସିବାକୁ ଜାଗା ନ ଥାଏ । ତେଣୁ ସୁଟକେଶ୍ ଉପରେ ବସିଲୁ । କିଛି ସମୟ ପରେ ଟିକିଏ ଭଲ ଭାବରେ ବସିବାକୁ ଜାଗା ମିଳିଗଲା । ତାପର ଦିନ ଗାଡିଯାଇ ବିନାରେ ପ୍ରାୟ

୧୨ଟା ବେଳେ ପହଁଞ୍ଚିଲା । ବିନା ଷ୍ଟେସନରେ ଓହ୍ଲାଇଲି । ଲେଫ୍ଟ ଲଗେଜରେ ଜିନିଷ ରଖି ସଂରକ୍ଷଣ କାଉଣ୍ଟରକୁ ସ୍ଲିପର ସଂରକ୍ଷଣ କରିବା ପାଇଁ ଗଲି । ଭଗବାନଙ୍କ କୃପାରୁ ମୋତେ ଗୋଟିଏ ସ୍ଲିପର ସଂରକ୍ଷଣ ମିଳିଗଲା । ମୁଁ ମନେ ମନେ ଆଶ୍ୱସ୍ତ ହେଲି । ଷ୍ଟେସନରେ ବୁଲାବୁଲି କରୁଥାଏ, ରାତି ଦଶଟା ସମୟରେ ହଠାତ୍ ରେଭେନ୍‌ସା କଲେଜର ଅଧ୍ୟାପିକା ଶ୍ରୀମତୀ ପ୍ରତିଭା ରାୟଙ୍କୁ ଦେଖିଲି । ସେ ମୋତେ ପଚାରିଲେ ଆପଣ କଣ ସଂରକ୍ଷଣ ସ୍ଥାନ ପାଇଛନ୍ତି ? ମୁଁ ହଁ କହିଲି । ଗାଡି ଆସିବାରୁ ସେମାନେ ଆଉ ଗୋଟିଏ ବଗିରେ ବସିଲେ । ବିନାରୁ ଗାଡି ଛାଡିବାର ୩୬ ଘଣ୍ଟା ପରେ କଟକରେ ପହଁଞ୍ଚିଲି । ପ୍ରାୟ ଏକମାସ ପରେ ପ୍ରଫେସର ପି.ଆଇ.ଜନ୍.ଙ୍କ ଠାରୁ ଗୋଟିଏ ଚିଠି ପାଇଲି, ତମେ ଦେଇଥିବା ପରିଯୋଜନାଟି ଅନୁଦାନ ପାଇବା ନିମନ୍ତେ ଅଭିଜ୍ଞ ବ୍ୟକ୍ତିମାନଙ୍କ କମିଟି ଦ୍ୱାରା ଉପଯୁକ୍ତ ବିବେଚିତ ହୋଇଛି । ତୁମକୁ ଅନୁରୋଧ କରାଯାଉଛି, ତୁମେ ଡକ୍ଟର ୱା.ସି. ସାକସେନାଙ୍କ ସହିତ ପତ୍ରାଳାପ କରି ତୁମର ପରିଯୋଜନାଟି ପରିମାର୍ଜିତ କର । ମୁଁ ସଙ୍ଗେସଙ୍ଗେ ୱାଇ.ସି.ସାକସେନାଙ୍କ ପାଖକୁ ଚିଠି ଲେଖିଲି, କଣ ପରିବର୍ତ୍ତନ କରିବାକୁ ହେବ ?

ଖରାଛୁଟି ଶେଷ ଭାଗ ବେଳକୁ ଏମ୍.ଏସ୍‌ସିର ବ୍ୟାବହାରିକ ପରୀକ୍ଷା ଫିଜିକ୍ସ ବିଭାଗରେ ଚାଲିଥାଏ । ସେହି ସମୟରେ ଶାନ୍ତିନିକେତନର ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟର ପ୍ରଫେସର ଦୀପଙ୍କର ଚାଟାର୍ଜୀ ସ୍ପେକ୍‌ଟ୍ରୋସ୍କୋପି ସ୍ୱତନ୍ତ୍ର ବ୍ୟବହାରିକ ପରୀକ୍ଷା ପାଇଁ ଆସିଥିଲେ ଏବଂ ଇଲେକ୍‌ଟ୍ରୋନିକ୍ସ ସ୍ୱତନ୍ତ୍ର ବ୍ୟବହାରିକ ପରୀକ୍ଷା ପାଇଁ ଆନ୍ଧ୍ର ବିଶ୍ୱବିଦ୍ୟାଳୟର ପ୍ରଫେସର ଡକ୍ଟର ଶ୍ରୀରାମ ରାଓ ଆସିଥିଲେ । ଫିଜିକ୍ସ ବିଭାଗର ମୁଖ୍ୟ ପ୍ରଫେସର ଥିବାରୁ ସେ ମୋ ସାଙ୍ଗରେ ଆସି ଦେଖାକଲେ । ଏହିପରି କିଛି ସମୟ କଥାବାର୍ତ୍ତା ହେବା ପରେ ସେ ପଚାରିଲେ, ଆପଣ କେଉଁ ବିଭାଗରେ ଗବେଷଣା କରୁଛନ୍ତି । ମୁଁ କହିଲି, ପ୍ଲାଜମା ଫିଜିକ୍ସ ତାତ୍ତ୍ୱିକ ବିଷୟରେ ପି.ଏଚ୍‌ଡି ପାଇଛି । ଏହାର କିଛି ଦିନ ପରେ ୧୯୭୪ରୁ ପ୍ଲାଜମା ଫିଜିକ୍ସ ପ୍ରାୟୋଗିକ ପରୀକ୍ଷା ଉପରେ ଗବେଷଣା ଆରମ୍ଭ କରି ପ୍ଲାଜମା ଫିଜିକ୍ସରେ କାମ କରୁଛି । ସେ କାହିଁକି କେଜାଣି ପ୍ରାୟୋଗିକ ପ୍ଲାଜମା ଫିଜିକ୍ସ କାମ କଥା ଶୁଣି ମୋତେ କହିଲେ ପ୍ଲାଜମା ଫିଜିକ୍ସରେ କଣ ସବୁ କାମ କରିଛନ୍ତି, ମୁଁ ଦେଖିବାକୁ ଚାହୁଁଛି । ମୁଁ କହିଲି ଆପଣ ଇଲେକ୍‌ଟ୍ରୋନିକ୍ସ ପରୀକ୍ଷା କରିବା ସମୟରେ ମୁଁ ଆପଣଙ୍କୁ ଡାକିକରି ଦେଖାଇ ଦେବି । ସେହିଦିନ ମଧ୍ୟାହ୍ନ ଭୋଜନ ସାରି ଆସିବା ପରେ ତାଙ୍କୁ ସବୁ ପରୀକ୍ଷା ଗୁଡିକ ଦେଖାଇଲି । ସେ କହିଲେ, ଏ ପ୍ଲାଜମା କୋଠରୀଟି କେଉଁ ଇନ୍‌ଷ୍ଟ୍ରୁମେଣ୍ଟ କମ୍ପାନୀ ଯୋଗାଇଛି । ତାଙ୍କୁ ମୁଁ କହିଲି ମୁଁ ଇଉ.ଜି.ସିରୁ ଅନୁଦାନ ପାଇ ଏ ପ୍ଲାଜମା କୋଠରୀ ଆମ କଲେଜର କର୍ମଶାଳାରେ କାମ କରୁଥିବା ମେକାନିକ୍‌ମାନଙ୍କ ଦ୍ୱାରା ଗଢାଇ ଅଛି । ସେ କହିଲେ, ମୁଁ ଦୁଇଟି ପରୀକ୍ଷା ଆମ ଆନ୍ଧ୍ର ବିଶ୍ୱବିଦ୍ୟାଳୟରେ କରିବାକୁ ଚାହୁଁଛି । ଏହି କଥାପରେ ଦେଖିକରି ଚାଲିଗଲେ । ସେହି ସମୟରେ ଡକ୍ଟର ପ୍ରତିଭା ରାଣୀ ମିଶ୍ର ମୋ ପାଖରେ ସରକାରଙ୍କ ଠାରୁ ଦୁଇବର୍ଷ ଗବେଷଣା ଛୁଟି (Study leave) ନେଇ କାମ କରୁଥିଲେ ।

## ତିନି ବର୍ଷିଆ ଡିଗ୍ରି କୋର୍ସ ପାଇଁ କର୍ମଶାଳା

ରେଭେନ୍ସା କଲେଜରେ ତିନି ବର୍ଷିଆ ଡିଗ୍ରି କୋର୍ସ ନିମନ୍ତେ ଗୋଟିଏ କର୍ମଶାଳା କରିବା ପାଇଁ ଇଉ.ଜି.ସିକୁ ଅନୁଦାନ ଲାଗି ଅନୁରୋଧ କରିଥିଲି । ଇଉ.ଜି.ସି ମୋର ପ୍ରସ୍ତାବକୁ ଅନୁମୋଦନ କରି ୩୫,୦୦୦ ଟଙ୍କା ଅନୁଦାନ ମୂଲ୍ୟ ଖର୍ଚ୍ଚ କରିବା ପାଇଁ ସ୍ୱୀକୃତି ଦେଲେ । ଏହି କର୍ମଶାଳାରେ ଭାରତର ବିଭିନ୍ନ କଲେଜରୁ ଅଧ୍ୟାପକମାନେ ଆସି ଯୋଗ ଦେବେ । ତେଣୁ ଖରା ଛୁଟି ଭିତରେ ଆୟୋଜନ କରିବା ଲାଗି ଇଉ.ଜି.ସି. ମୋତେ ନିର୍ଦ୍ଦେଶ ଦେଇଥିଲେ । ତେଣୁ ଉତ୍କଳ ବିଶ୍ୱବିଦ୍ୟାଳୟ ଅଫିସରୁ ଠିକଣା ଆଣି ଭାରତରେ ଥିବା ବିଶ୍ୱବିଦ୍ୟାଳୟମାନଙ୍କୁ ଚିଠି ପଠାଇ ଦେଲି ଏବଂ ଜଣାଇଦେଲି ଯେ ଯେଉଁ ଅଧ୍ୟାପକମାନେ ଯୋଗ ଦେବେ ତାଙ୍କର ସମସ୍ତ ଖର୍ଚ୍ଚ ଏହି କର୍ମଶାଳା ତରଫରୁ ଦିଆଯିବ । ଏଥିରେ ପଚାଶ ଜଣରୁ ବେଶୀ ଯୋଗ ଦେଇ ପାରିବେ ନାହିଁ ବୋଲି ଇଉ.ଜି.ସି. ନିର୍ଦ୍ଦେଶ ଦେଇଥିଲା । ଯେଉଁମାନେ ଆସିବା ପାଇଁ ଲେଖିଥିଲେ ତାଙ୍କ ଭିତରୁ ପଚାଶ ଜଣଙ୍କୁ ବାଛି ତାଙ୍କୁ ୦୯.୦୬.୧୯୮୫ ମସିହା ଭିତରେ ଯୋଗ ଦେବା ପାଇଁ ଚିଠି ଲେଖିଲି । ଓଡିଶାର କେତେ ଜଣଙ୍କ ପାଖକୁ ଲେଖିଦେଲି । ତମ ନାମ ପ୍ରତୀକ୍ଷା ତାଲିକାରେ ଅଛି । କେହି ନ ଆସିଲେ ତୁମକୁ ୧୦ ତାରିଖ ଦିନ ଟେଲିଗ୍ରାମ୍ ଦ୍ୱାରା ଜଣାଇ ଦିଆଯିବ । ଯେପରି ତମେ ୧୧ ତାରିଖ ଦିନ ସକାଳ ୧୦ଟା ବେଳେ ପହଁଞ୍ଚିବ । ଉଦଘାଟନ୍ ଉତ୍ସବରେ ଅଧ୍ୟକ୍ଷ ସଭାପତିତ୍ୱ କରିଥିଲେ । ଏହି କର୍ମଶାଳାର ଉଦ୍ଦେଶ୍ୟ କଣ ତାହା ମୁଁ ଉପସ୍ଥିତ ଅଧ୍ୟାପକ ମାନଙ୍କୁ ବୁଝାଇ ଥିଲି । ଉପସ୍ଥିତ ଅଧ୍ୟାପକ ମାନଙ୍କର ମତାମତ ସଂଗ୍ରହ କରି ମୁଁ ଗୋଟିଏ ରିପୋର୍ଟ ଇଉ.ଜି.ସିକୁ ପଠାଇ ଦେଲି । କର୍ମଶାଳା ତରଫରୁ ନନ୍ଦନକାନନ ଦେଖିବା ପାଇଁ ବ୍ୟବସ୍ଥା ହୋଇଥିଲା । ବାହାରୁ ଯେତେ ଲୋକ ଆସିଥିଲେ ପ୍ରାୟ ସମସ୍ତେ ଦେଖିବାକୁ ଯାଇଥିଲେ ।

## ୱାଇ.ସି. ସାକ୍ସେନାଙ୍କ ସହିତ ଆଲୋଚନା ପାଇଁ ଅହମ୍ମଦାବାଦ ଯାତ୍ରା

କର୍ମଶାଳା ସରିବାର କେତେ ଦିନ ପରେ ୱାଇ.ସି.ସାକସେନାଙ୍କ ଠାରୁ ଚିଠି ପାଇଲି । ସେଥିରେ ଲେଖାଥିଲା ଗୋଟିଏ ନିର୍ଦ୍ଦିଷ୍ଟ ତାରିଖରେ ତାଙ୍କୁ ଯାଇ ଅହମ୍ମଦାବାଦ୍ ଠାରେ ଦେଖା କରିବାକୁ । ସେଥିପାଇଁ ଡି.ଏସ୍.ଟି (Department of Science and Tecnology) ତରଫରୁ ଯିବା ଆସିବା ଖର୍ଚ୍ଚ ଦିଆଯିବ । ସେତେବେଳେ ଓଡିଶାରେ ବନ୍ୟା ହୋଇ କଟକ ଠାରୁ ଖଡଗପୁର ମଧ୍ୟରେ ରେଳ ଲାଇନ୍ ଭାସିଯାଇ ଗାଡି ଚଳାଚଳ ବନ୍ଦ ହୋଇ ଯାଇଥାଏ ଏବଂ ଅହମ୍ମଦାବାଦରେ ହିନ୍ଦୁ ମୁସଲମାନ୍ ଗଣ୍ଡଗୋଳ ଠାଏ ଠାଏ ହେଉଥାଏ । ତେଣୁ ମୁଁ ଫୋନ୍‌ରେ ଡକ୍ଟର ୱାଇ.ସି.ସାକସେନାଙ୍କୁ କହିଲି, ଏବେ ଯିବାପାଇଁ ସୁବିଧା ନାହିଁ । ଓଡିଶାର ବନ୍ୟା ଯୋଗୁଁ ଟ୍ରେନ୍ ଚଳାଚଳ ବନ୍ଦ ହୋଇଯାଇଛି ଏବଂ ଅହମ୍ମଦାବାଦରେ ହିନ୍ଦୁ ମୁସଲ୍‌ମାନ୍ ଗଣ୍ଡଗୋଳ ଲାଗି ଠାଏ ଠାଏ କର୍ଫ୍ୟୁ ଜାରି ହୋଇଛି । ସେ ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ,

"ତୁମେ ଉଡାଜାହାଜରେ ଆସ ଏବଂ ଚିଠିକୁ ଅପେକ୍ଷା କର ନାହିଁ ।" ସେଦିନ ବୋଧେ ଶନିବାର ହୋଇଥାଏ । କଟକରୁ ମୟୂର ଏଜେନ୍ସି ଦ୍ୱାରା ଭୁବନେଶ୍ୱରରୁ ଦିଲ୍ଲୀ ଦେଇ ଅହମ୍ମଦାବାଦ ପର୍ଯ୍ୟନ୍ତ ଟିକେଟ କରିଦେଲି । ରବିବାର ଦିନ ଭୁବନେଶ୍ୱର ଆସି ପ୍ରାୟ ସଂଧ୍ୟା ୫ଟା ବେଳେ ଉଡାଜାହାଜରେ ବସି ଦିଲ୍ଲୀ ଅଭିମୁଖେ ଯାତ୍ରାକଲି । ପ୍ରାୟ ସାଢେ ସାତଟା ସୁଦ୍ଧା ଦିଲ୍ଲୀରେ ପହଁଞ୍ଚିଲି ଏବଂ ବିମାନ ବନ୍ଦର ଭିତରେ ରହିବା ପାଇଁ ଠିକ୍ କଲି । କାରଣ ତାପର ଦିନ ଭୋର ୪ ଟା ବେଳେ ବିମାନରେ ଅହମ୍ମଦାବାଦ ଯାତ୍ରା କରିବି । ବିମାନ ନିର୍ଦ୍ଦିଷ୍ଟ ସମୟରେ ଛାଡିଲା । ମୁଁ ପ୍ରାୟ ସାଢେ ଛଅଟା ବେଳେ ଅହମ୍ମଦାବାଦରେ ପହଁଞ୍ଚିଲି । ପହଁଞ୍ଚିବା ପୂର୍ବରୁ ଡକ୍ଟର ସାକସେନାଙ୍କୁ ଜଣାଇ ଦେଇଥାଏ , ମୁଁ ସୋମବାର ଦିନ ସକାଳୁ ଅହମ୍ମଦାବାଦରେ ପହଁଞ୍ଚିବି । ବିମାନ ବନ୍ଦରରୁ ଅଟୋରିକ୍ସା କରି ପି.ଆର.ଏଲ୍.ର ଅତିଥି ଭବନରେ ପହଁଞ୍ଚିଲି । ମୋ ନାମ କହିବାରୁ ଅତିଥି ଭବନର ଚୌକିଦାର ଗୋଟିଏ କୋଠରୀ ଖୋଲିଦେଲା । କହିଲା ଆପଣଙ୍କ ପାଇଁ ଏହି କୋଠରୀଟି ସଂରକ୍ଷିତ ହୋଇ ରହିଛି । ମୁଁ ପହଁଞ୍ଚି ଡକ୍ଟର ସାକସେନାଙ୍କ ପାଖକୁ ଫୋନ୍ କଲି । ସେ ଉତ୍ତର ଦେଲେ, ତୁମେ ମୋ ଗବେଷଣା କକ୍ଷରେ ମୋତେ ଦେଖାକର । ମୁଁ ଠିକ୍ ସମୟରେ ଯାଇ ପହଁଞ୍ଚିଲି । ସେ ମୋ ପରିଯୋଜନାଟି ଦେଖାଇ କେତେ ଜାଗାରେ ସାମାନ୍ୟ ପରିବର୍ତ୍ତନ କରିବାକୁ କହିଲେ ଏବଂ କହିଲେ, ତୁମେ କଟକ ଯାଇ ଏହାକୁ ପରିବର୍ତ୍ତନ କରିସାରି ତିନୋଟି ଜେରକ୍ସ କପି ମୋ ପାଖକୁ ପଠାଇବ । ଆମେ କିଛି ସମୟ କଥାବାର୍ତ୍ତା ହେଲୁ । ତାପରେ ଗୋଟିଏ ଲୋକ ମୋର ଅହମ୍ମଦାବାଦରୁ ଭୁବନେଶ୍ୱର ପର୍ଯ୍ୟନ୍ତ ଗୋଟିଏ ଉଡାଜାହାଜ ଟିକେଟ ଆଣି ଦେଇକରି ଗଲା । ମୁଁ ତାଙ୍କ କୋଠରୀରୁ ଆସିଲି । ଉପର ବେଳାଟି ଅତିଥି ଭବନର କୋଠରୀରେ ବିଶ୍ରାମ ନେଲି । ବିଶ୍ରାମ ନେଉଥିବା ସମୟରେ ଡକ୍ଟର ସାକ୍ସେନା ମୋତେ ଫୋନ୍‌ରେ କହିଲେ, ତୁମେ କାଲି ସକାଳେ ବିମାନବନ୍ଦରକୁ କେତେଟା ବେଳେ ଯିବ ସେହି ଅନୁସାରେ ଗୋଟିଏ କାର ତୁମକୁ ନେଇ ବିମାନବନ୍ଦରରେ ଛାଡିଦେଇ ଆସିବ । ଠିକ୍ ସମୟ ଅନୁଷ୍ଠାରେ କାରଟି ଆସି ଅତିଥି ଭବନରେ ପହଁଞ୍ଚିଲା । ମୁଁ ଜିନିଷ ପତ୍ର ଧରି ବିମାନବନ୍ଦରକୁ ଗଲି । ଉଡାଜାହାଜରେ ବସି ପ୍ରାୟ ନଅଟା ବେଳେ ଦିଲ୍ଲୀରେ ପହଁଞ୍ଚିଲି । ଦିଲ୍ଲୀରୁ ଭୁବନେଶ୍ୱର ଉଡାଜାହାଜ ଏଗାରଟା ବେଳେ ଛାଡିବାର ଥାଏ । ମୁଁ ଏଗାରଟା ବେଳେ ଉଡାଜାହାଜରେ ବସିଲି । ପ୍ରାୟ ସାଢେ ଗୋଟାଏ ବେଳେ ଭୁବନେଶ୍ୱରରେ ପହଁଞ୍ଚିଲି । ମୋର ଜଣେ ବନ୍ଧୁଙ୍କୁ ଭୁବନେଶ୍ୱର ବିମାନବନ୍ଦରରେ ଦେଖିଲି । ସେ କଟକ ଆସୁଥିଲେ । ମୁଁ ତାଙ୍କ କାରରେ କଟକ ଆସି ମୋ ରହିବା କ୍ୱାର୍ଟର ପାଖରେ ପହଁଞ୍ଚିଲି । ମୋ ସ୍ତ୍ରୀ ଓ ପିଲାମାନେ ଆଶ୍ଚର୍ଯ୍ୟ ହୋଇଗଲେ ।

ଅହମ୍ମଦାବାଦରୁ ଆସିଲା ପରେ ପ୍ରତିଭା ରାଣୀ ମିଶ୍ର ମୋତେ ପଚାରିଲେ, ଆପଣଙ୍କର ପରିଯୋଜନାଟି ପାଇଁ ଅନୁଦାନ ମିଳିବ କି ନାହିଁ, ମୁଁ ତାଙ୍କୁ କହିଲି, ବୋଧେ ମିଳିବ । ଏହାର କେତେଦିନ ପରେ କଥାଟି ବିଭାଗରେ ଛାତ୍ର ଏବଂ ଅନ୍ୟ ଶିକ୍ଷକମାନଙ୍କ ମଧ୍ୟରେ ପ୍ରଚାର ହୋଇଗଲା । ତେଣୁ କେତେଜଣ ଷଷ୍ଠ ବର୍ଷର ପିଲା ମୋତେ ପ୍ରବର୍ତ୍ତାଇଲେ, ପୋଷ୍ଟ ଗ୍ରାଜୁଏଟ୍‌ରେ ପ୍ଲାଜମା ଫିଜିକ୍ସର ଏକ ସ୍ୱତନ୍ତ୍ର ବିଷୟ ଆରମ୍ଭ କରିବା ପାଇଁ ସରକାରଙ୍କୁ ପ୍ରସ୍ତାବ ଦିଅନ୍ତୁ । କଥାଟି ମୋ ମନକୁ ବେଶ୍ ପାଇଲା ।

ସରକାରଙ୍କୁ ପୋଷ୍ଟ ଗ୍ରାଜୁଏଟ୍‌ରେ ପ୍ଲାଜମା ଫିଜିକ୍ସର ସ୍ୱତନ୍ତ୍ର ବିଷୟ ଖୋଲିବା ପାଇଁ ପ୍ରସ୍ତାବ ଦେଲି । ସେ ପ୍ରସ୍ତାବରେ ଲେଖିଦେଲି ସ୍ୱତନ୍ତ୍ର ବିଷୟ ଖୋଲିବା ପାଇଁ କୌଣସି ଅନୁଦାନ ଦରକାର ନାହିଁ । କାରଣ ସବୁ ଉପକରଣ ଫିଜିକ୍ସ ବିଭାଗ ଷ୍ଟୋରରେ ଅଛି । ଏହି ପ୍ରସ୍ତାବର ଅଳ୍ପ କେତେଦିନ ପରେ ସଚିବଙ୍କ ଠାରୁ ଚିଠି ଆସିଲା, କୌଣସି ବିଭାଗରେ ତିନିଟା ସ୍ୱତନ୍ତ୍ର ବିଷୟରୁ ବେଶୀ ନାହିଁ । ତେଣୁ ଫିଜିକ୍ସ ବିଭାଗରେ ଚାରିଟା ସ୍ୱତନ୍ତ୍ର ବିଷୟ ଖୋଲାଯାଇ ପାରିବ ନାହିଁ । ଏହା କହି ପିଲାଙ୍କୁ ମନା କରିଦେଲି, ଏହା ଖୋଲି ପାରିବ ନାହିଁ, କାରଣ ଶିକ୍ଷା ବିଭାଗର ସଚିବ ମନା କଲେ । ଚିଠିଟି ପାଇ ମୁଁ ଜାଣିଲି ସରକାର ଏକ ଭୁଲ୍ କଥା ଲେଖିଛନ୍ତି । ମୁଁ ଜାଣିବାରେ ରସାୟନ ବିଜ୍ଞାନରେ ଚାରୋଟି ସ୍ୱତନ୍ତ୍ର ବିଷୟ ଅଛି । ପିଲାମାନେ ପ୍ରବର୍ତ୍ତାଇଲେ, ଆପଣ ଆଉ ଗୋଟିଏ ଚିଠି ଲେଖନ୍ତୁ । ଚିଠିରେ ଲେଖନ୍ତୁ ରସାୟନ ବିଜ୍ଞାନ, ଗଣିତ ବିଭାଗରେ ଚାରୋଟିରୁ ଅଧିକ ସ୍ୱତନ୍ତ୍ର ବିଷୟ ଅଛି । ସେହିକଥା ଲେଖି ଆଉଥରେ ପ୍ରସ୍ତାବ ଦେଲି । ଏହି କଥା ପିଲାମାନେ ଜାଣି ଶିକ୍ଷା ମନ୍ତ୍ରୀଙ୍କୁ ଦେଖାକଲେ ଏବଂ କହିଲେ, ଅନ୍ୟ ସବୁ ବିଭାଗରେ ତିନୋଟିରୁ ଅଧିକ ସ୍ୱତନ୍ତ୍ର ବିଷୟ ଅଛି । କିନ୍ତୁ ଫିଜିକ୍ସରେ କାହିଁକି ଚାରୋଟି ସ୍ୱତନ୍ତ୍ର ବିଷୟ ହେବ ନାହିଁ ? ପ୍ରଫେସର ଲେଖିଛନ୍ତି, ଟଙ୍କା ପଇସାର କୌଣସି ଆବଶ୍ୟକତା ନାହିଁ । ଶିକ୍ଷାମନ୍ତ୍ରୀଙ୍କୁ ପିଲାମାନେ କହିଲେ ଆମେ ଜାଣିଛୁ , ମୁଖ୍ୟ ଅଧ୍ୟାପକ ପ୍ଲାଜମା ଫିଜିକ୍ସରେ, 'ଡିପାର୍ଟମେଣ୍ଟ ଆଣ୍ଡ ସାଇନ୍‌ସ ଆଣ୍ଡ ଟେକ୍‌ନୋଲୋଜି'ରୁ ଅନୁଦାନ ପାଇବେ । ତେଣୁ ତାହାରି ଉପରେ ଭିତ୍ତିକରି ସାର୍ ପ୍ରସ୍ତାବଟି ଦେଇଛନ୍ତି । ମନ୍ତ୍ରୀ ମହାଶୟ ସଚିବଙ୍କ ଠାରୁ ଫାଇଲ୍ ମଗାଇ ଦେଖି ପିଲାଙ୍କୁ ଆଉ କିଛି କହିଲେ ନାହିଁ । ପିଲାଙ୍କୁ ବିଦା କରିଦେଲେ । ତାହାର ଦୁଇ କିମ୍ବା ତିନି ଦିନ ପରେ ରେଭେନ୍‌ସା କଲେଜର ଅଧ୍ୟକ୍ଷଙ୍କ ପାଖକୁ ସଚିବଙ୍କ ଠାରୁ ଗୋଟିଏ ଚିଠି ଆସିଲା ଯେ ଏମ୍.ଏସ୍‌ସିର କେଉଁ ବିଭାଗରେ କେତୋଟି ସ୍ୱତନ୍ତ୍ର ବିଷୟ ଅଛି. ତାହାର ଗୋଟିଏ ତାଲିକା ଦିଅନ୍ତୁ । ଅଧ୍ୟକ୍ଷ ସେ ଚିଠିଟା ପାଇଲା ପରେ କେଉଁ କେଉଁ ବିଭାଗରେ ଚାରିଟା ସ୍ୱତନ୍ତ୍ର ବିଷୟ ଅଛି ତାହା ଶିକ୍ଷା ସଚିବଙ୍କ ପାଖକୁ ଲେଖି ଜଣାଇଦେଲେ । ଶିକ୍ଷାସଚିବ 'ରେଭେନ୍‌ସା କଲେଜରେ ପ୍ଲାଜମା ଫିଜିକ୍ସରେ ସ୍ୱତନ୍ତ୍ର ବିଷୟ ଖୋଲା ଯିବ' ବୋଲି ଲେଖିଦେଲେ । ତାହାର ଦୁଇ ତିନି ଦିନ ପରେ ମୋ ପାଖକୁ ଚିଠି ଆସିଲା ପ୍ଲାଜମା ଫିଜିକ୍ସରେ ସ୍ୱତନ୍ତ୍ର ବିଷୟ ଖୋଲିବ । କିନ୍ତୁ ଆମ ବିଭାଗରୁ କିଛି ଅଧିକ ଟଙ୍କା ଦିଆଯିବ ନାହିଁ । ତେଣୁ ପ୍ଲାଜମା ଫିଜିକ୍ସ ସ୍ୱତନ୍ତ୍ର ବିଷୟ ଖୋଲିଗଲା ।

## ତୃତୀୟ ଜାତୀୟ ଆଲୋଚନା ଚକ୍ର
## ଅଫ୍ ସାଇନ୍‌ସ ଆଣ୍ଡ ଟେକ୍‌ନୋଲୋଜି ଅଫ ପ୍ଲାଜମା ୧୯୭

କଟକରେ ପହଞ୍ଚିବାର କେତେ ଦିନ ପରେ ୧୯୮୫ ମସିହାରେ ମୁଁ ଗୋଟିଏ ବିଜ୍ଞାପନ ପାଇଲି ଯେ ଜୟପୁରର ରାଜସ୍ଥାନ ବିଶ୍ୱବିଦ୍ୟାଳୟରେ "ଥାର୍ଡ ନ୍ୟାସନାଲ ସିମ୍ପୋଜିଅମ୍ ଅଫ୍ ସାଇନ୍‌ସ ଆଣ୍ଡ ଟେକ୍‌ନୋଲୋଜି ଅଫ୍ ପ୍ଲାଜମା" ଅକ୍ଟୋବର ୨୮ ରୁ ୩୧ ତାରିଖ ମଧ୍ୟରେ ଅନୁଷ୍ଠିତ ହେବ । ପ୍ରବନ୍ଧଟିଏ ପଠାଇବାକୁ ମୋତେ ଅନୁରୋଧ କରା

ଯାଇଥିଲା । ସେହି ଅନୁସାରେ ଦୁଇଟି ପ୍ରବନ୍ଧ ପଠାଇ ଥିଲି ଏବଂ ତାହା ଅନୁମୋଦିତ ହୋଇଥିଲା । ମୁଁ ଯିବାକୁ ଠିକ୍ କରିଥିଲି । ମୁଁ ୨୬ ତାରିଖ ଦିନ ବାହାରିଲି । ୨୮ ତାରିଖ ଦିନ ସକାଳେ ଜୟପୁରରେ ପହଁଞ୍ଚିଲି । କନ୍‌ଫରେନ୍‌ସ ଦିନ ଗୁଡିକ ବିଶ୍ୱବିଦ୍ୟାଳୟର ଛାତ୍ରାବାସରେ ରହିବାର ବ୍ୟବସ୍ଥା ହୋଇଥାଏ । ମୁଁ ଯେଉଁ ପ୍ରବନ୍ଧ ଦେଇଥିଲି, ତା ଉପରେ ୨୯ ତାରିଖ ଦିନ ଭାଷଣ ଦେଇସାରିଲା ପରେ ଗୋଟିଏ ଘୋଷଣା କରାଗଲା ଯେ ୩୧ ତାରିଖ ଦିନ କ୍ଲାସ୍ ରୁମ୍ ଏକ୍ସପେରିମେଣ୍ଟ ଅନ୍ ପ୍ଲାଜମା ଫିଜିକ୍ସ ଉପରେ ଗୋଟିଏ, ପ୍ୟାନେଲ୍ ଆଲୋଚନା ହେବ । ସେଥିରେ କେଉଁମାନେ ରହିବେ ସେମାନଙ୍କ ନାମ ଘୋଷଣା କରାଗଲା । ସେଥିରେ ମୋ ନାମ ଥିଲା ।

## ପ୍ୟାନେଲ ଆଲୋଚନା

୩୧ ତାରିଖ ଦିନ ମଧ୍ୟାହ୍ନ ଭୋଜନ ପରେ ପ୍ୟାନେଲ୍ ଆଲୋଚନାର ସମୟ ଠିକଣା ହୋଇଥିଲା । ସେ ଆଲୋଚନାରେ କଲ୍ୟାଣୀ ବିଶ୍ୱବିଦ୍ୟାଳୟର ପ୍ରଫେସର ଡକ୍ଟର ପଦ୍ମନାଭ ଦାସଗୁପ୍ତ ଚେୟାରମ୍ୟାନ୍ ଥିଲେ । ସେ ପ୍ୟାନେଲ୍ ଆଲୋଚନାର ବିଷୟ ବସ୍ତୁ ସଂପର୍କରେ ସୂଚନା ଦେଇସାରିଲା ପରେ ଡକ୍ଟର ପି.କେ.କଅ.( ଡିରେକ୍ଟର ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ପ୍ଲାଜମା ରିସର୍ଚ୍ଚ) କହିଲେ, ପ୍ଲାଜମା ଫିଜିକ୍ସରେ ରିସର୍ଚ୍ଚ କରିବା ଲୋକଙ୍କ ସଂଖ୍ୟା ଖୁବ୍ କମ୍ । ବିଶ୍ୱବିଦ୍ୟାଳୟରେ ମଧ୍ୟ ପ୍ରାୟୋଗିକ ପ୍ଲାଜମା ଫିଜିକ୍ସରେ ଗବେଷଣା କରିବା ଲୋକଙ୍କ ସଂଖ୍ୟା ଏତେ ନାହିଁ । କେତେକ ବିଶ୍ୱବିଦ୍ୟାଳୟରେ ତାତ୍ତ୍ୱିକ ପ୍ଲାଜମା ଫିଜିକ୍ସ ପଢାଯାଉଛି ଏବଂ କୌଣସି ବିଶ୍ୱବିଦ୍ୟାଳୟରେ ପ୍ଲାଜମା ଫିଜିକ୍ସର ସ୍ୱତନ୍ତ୍ର ପାଠ୍ୟକ୍ରମ ନାହିଁ ।

ତେଣୁ କମ୍ ଖର୍ଚ୍ଚରେ ପ୍ଲାଜମା ଫିଜିକ୍ସ ଏକ୍ସପେରିମେଣ୍ଟ କିପରି ହୋଇପାରିବ, ସେଥିପାଇଁ 'ଡିପାର୍ଟମେଣ୍ଟ ଅଫ୍ ସାଇନ୍ସ ଆଣ୍ଡ ଟେକ୍‌ନୋଲୋଜି' ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଡକ୍ଟର ପି. ମିଶ୍ରଙ୍କ ପ୍ରସ୍ତାବକୁ ଗ୍ରହଣ କରି ତାଙ୍କୁ ପ୍ରାୟ ୩ ଲକ୍ଷ ଟଙ୍କା ଅନୁଦାନ ଦେବାକୁ ନିଷ୍ପତ୍ତି କରିଛି । ମୁଁ ଡକ୍ଟର ମିଶ୍ରଙ୍କୁ ଅନୁରୋଧ କରୁଛି ଏକ୍ସପେରିମେଣ୍ଟ ଉପରେ ଗୋଟିଏ କର୍ମଶାଳା ଆୟୋଜନ କରିବେ । ସେଥିପାଇଁ ସରକାରୀ ଅନୁଦାନ ମଧ୍ୟ ଦିଆଯିବ । ମୁଁ ଖୁସି ଯେ ଓଡିଶା ସରକାର ରେଭେନ୍‌ସା କଲେଜରେ ପ୍ଲାଜମା ଫିଜିକ୍ସ ସ୍ୱତନ୍ତ୍ର ବିଷୟ ଖୋଲିବା ପାଇଁ ସ୍ୱୀକୃତି ପ୍ରଦାନ କରିଛନ୍ତି । ତାପରେ ଆଲୋଚନା ହେଲା । ଅନ୍ୟ ଅଧ୍ୟାପକମାନେ ନାନା ପ୍ରକାର ପ୍ରଶ୍ନ କଲେ । ପ୍ୟାନେଲ୍‌ର ସଭ୍ୟମାନେ ତାଙ୍କୁ ସବୁ ବୁଝାଇଦେଲେ । ଏହା ପ୍ରାୟ ଦୁଇ ଘଣ୍ଟା ପର୍ଯ୍ୟନ୍ତ ଚାଲିଲା । ସଭା ଭାଙ୍ଗିଲା ପରେ ମୁଁ ପ୍ରଫେସର ପି.କେ.କଅଙ୍କୁ କହିଲି, ସବୁ ହେଲା ଯେ ଯଦି ସରକାର ମୋତେ ଅନ୍ୟ ଜାଗାକୁ ବଦଳି କରି ଦିଅନ୍ତି ତାହେଲେ କାମ ସବୁ ଅସଂପୂର୍ଣ୍ଣ ରହିଯିବ । ସେ ମୋତେ ପଚାରିଲେ, ଓଡିଶାର ମୁଖ୍ୟମନ୍ତ୍ରୀ କିଏ ଅଛନ୍ତି । ମୁଁ କହିଲି, ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ । ତାପର ଦିନ ସକାଳେ ଜୟପୁରରୁ ବସ୍‌ରେ ବସି ମୁଁ ଆଗ୍ରା ଗଲି । ଆଗ୍ରାରେ ଉତ୍କଳ ଏକ୍ସପ୍ରେସ୍ ଧରି କଟକ ଆସିଲି ।

ନଭେମ୍ବର ଶେଷ ଆଡକୁ ପ୍ରଫେସର ଏସ୍.ଶ୍ରୀରାମ ରାଓ ଶିକ୍ଷା ବିଭାଗର ସଚିବଙ୍କ ପାଖକୁ ଲେଖିଥିବା ଚିଠିର ଗୋଟିଏ ନକଲ ପାଇଲି । ସେ ଚିଠିର ସାରମର୍ମ ହେଲା । "ଆନ୍ଧ୍ର ବିଶ୍ୱବିଦ୍ୟାଳୟକୁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ୍ ୨୦ ହଜାର ଟଙ୍କା ବର୍ଷକ ପାଇଁ ଅନୁଦାନ ଦେବା ପାଇଁ ସ୍ୱୀକୃତି ଦେଇଅଛନ୍ତି । ସେହି ଅନୁଦାନ ସାହାଯ୍ୟରେ କୌଣସି ବ୍ୟକ୍ତିଙ୍କୁ ଚାରି ସପ୍ତାହ ପାଇଁ ପରିଦର୍ଶକ ପ୍ରଫେସର ହିସାବରେ ଡାକି ପାରିବେ । ସେଥିପାଇଁ ରେଭେନ୍‌ସା କଲେଜର ପ୍ରଫେସର ପି.ମିଶ୍ରଙ୍କୁ ପରିଦର୍ଶକ ପ୍ରଫେସର ହିସାବରେ ଚାରି ସପ୍ତାହ ପର୍ଯ୍ୟନ୍ତ ଛୁଟି ପ୍ରଦାନ କରିବା ପାଇଁ ଅନୁମତି ଦିଅନ୍ତୁ । ମୁଁ ଏମ୍.ଏସ୍‌ସି ପରୀକ୍ଷା କରିବାକୁ ଯାଇଥିବା ସମୟରେ ତାଙ୍କର ଗବେଷଣାଗାର ବୁଲି ଦେଖିବାକୁ ଯାଇଥିଲି । ସେଠାରେ ପରୀକ୍ଷା ଗୁଡିକ ବୁଦ୍ଧିମତ୍ତାର ସହିତ ନିଜସ୍ୱ ଉପାୟରେ ପ୍ରସ୍ତୁତ ହୋଇଛି, ଯାହା ସାହାଯ୍ୟରେ ପ୍ଲାଜମାର ଧର୍ମ ସବୁ ମାପକରା ଯାଇପାରେ । ସେଥିପାଇଁ ସର୍ବଭାରତୀୟ ସ୍ତରରେ ଡକ୍ଟର ମିଶ୍ର ସ୍ୱୀକୃତି ମଧ୍ୟ ପାଇ ଅଛନ୍ତି । ସେ ଏଠାକୁ ଆସି ପ୍ଲାଜମା ଫିଜିକ୍ସର ଗୋଟିଏ ଦୁଇଟି ପରୀକ୍ଷା କରିବା ଦରକାର ଉପକରଣ ପ୍ରସ୍ତୁତ କରିଦେଇ ପାରିବେ । ଏ ଚିଠିଟି ପାଇ ମୁଁ ଶିକ୍ଷା ସଚିବଙ୍କ ପାଖକୁ ଦରଖାସ୍ତ କରିଥିଲି ।

ଡିସେମ୍ବର ମାସର ଶେଷ ଆଡକୁ ମୁଁ ଆଉ ଗୋଟିଏ ଚିଠି ପ୍ରଫେସର ପି.କେ.କଅଙ୍କ ଠାରୁ ଓଡିଶାର ସମ୍ମାନାସ୍ପଦ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକି ବଲ୍ଲଭ ପଟ୍ଟନାୟକଙ୍କ ପାଖକୁ ଲେଖା ଯାଇଥିଲା । ସେହି ଚିଠିଟିର ଇଂରାଜୀ ନକଲ ମୋ ପାଖକୁ ମଧ୍ୟ ପଠାଇ ଥିଲେ । ସେ ଚିଠିଟିର ସାର ମର୍ମ ଓଡିଆରେ ହେଲା :

ପ୍ରଫେସର ପି.କେ.କଅ,
ଡାଇରେକ୍ଟର ଡିସେମ୍ବର ୨୬,୧୯୮୫

ଶ୍ରୀ ଜେ.ବି. ପଟ୍ଟନାୟକ
ସମ୍ମାନାସ୍ପଦ ମୁଖ୍ୟମନ୍ତ୍ରୀ, ଓଡିଶା ।
ଭୁବନେଶ୍ୱର:
ସମ୍ମାନନୀୟ ସାର:

ଭବିଷ୍ୟତରେ ଶକ୍ତି ସଂଗ୍ରହ ଉତ୍ସ ଉପରେ ଅହମ୍ମଦାବାଦ ଏବଂ ଇନ୍ଦୋରରେ ମୁଖ୍ୟ ପରିଯୋଜନାର ଗବେଷଣା କରାଯାଉଛି । ଏହି ପ୍ରକାର ଗବେଷଣାରେ ମୁଖ୍ୟ ଶକ୍ତି ଉତ୍ସର ଗୁରୁତ୍ୱ ଉପଲବ୍ଧି କରି ପ୍ରବୀଣ ପ୍ରାୟୋଗିକ ପ୍ଲାଜମା ଫିଜିକ୍ସରେ ଅଭିଜ୍ଞ ବ୍ୟକ୍ତି ମାନଙ୍କର ଯଥେଷ୍ଟ ପ୍ରୟୋଜନ ଅଛି । ସେଥିପାଇଁ ଦକ୍ଷବ୍ୟକ୍ତି ସୃଷ୍ଟି କରିବା ନିମନ୍ତେ ବିଭିନ୍ନ ବିଶ୍ୱବିଦ୍ୟାଳୟରେ ବ୍ୟବହାରିକ ପ୍ଲାଜମା ଫିଜିକ୍ସର ପାଠ୍ୟକ୍ରମ ପ୍ରସ୍ତୁତ କରାଯାଇ ଶିକ୍ଷା ଦିଆଯିବା ବାଂଛନୀୟ । କିନ୍ତୁ ଭାରତରେ କୌଣସି ବିଶ୍ୱବିଦ୍ୟାଳୟରେ ଏପରି ପାଠ୍ୟକ୍ରମ ନାହିଁ । ମୁଁ ଅତ୍ୟନ୍ତ ଖୁସିର ସହିତ ଜଣାଇବାକୁ ଚାହେଁ ଯେ ଓଡିଶା ସରକାର ରେଭେନ୍‌ସା କଲେଜରେ ପ୍ଲାଜ୍‌ମା ଫିଜିକ୍ସର ସ୍ୱତନ୍ତ୍ର ପାଠ୍ୟକ୍ରମ ପ୍ରସ୍ତୁତ କରି ଶିକ୍ଷାଦାନ ଦେବାକୁ ଚେଷ୍ଟା କରିଛନ୍ତି ।

ରେଭେନ୍ସା କଲେଜର ପ୍ରଫେସର ଡକ୍ଟର ପି. ମିଶ୍ର ଗୋଟିଏ ପରିଯୋଜନା ପ୍ରସ୍ତୁତ କରି (କମ ଖର୍ଚ୍ଚରେ ପ୍ଲାଜମା ଫିଜିକ୍ସର ପରୀକ୍ଷା ସବୁ କରିବା) ପଠାଇଥିଲେ । ସେହି ପରିଯୋଜନା ପାଇଁ 'ଡିପାର୍ଟମେଣ୍ଟ ଅଫ ସାଇନ୍ସ ଆଣ୍ଡ ଟେକ୍ନୋଲୋଜି ଅଫ ଇଣ୍ଡିଆ' ଅନୁଦାନ ଆକାରରେ ୩ ଲକ୍ଷ ଟଙ୍କା ଦେବା ପାଇଁ ନିଷ୍ପତ୍ତି ନେଇଛନ୍ତି ଏବଂ ତାହା ରେଭେନ୍ସା କଲେଜର ଅଧ୍ୟକ୍ଷଙ୍କ ଜରିଆରେ ଡକ୍ଟର ମିଶ୍ରଙ୍କୁ ଦିଆଯିବ । ତାପରେ ଏକ୍ସପେରିମେଣ୍ଟର ପରୀକ୍ଷା ଗୁଡିକର କାର୍ଯ୍ୟକାରିତା ଅନ୍ୟ ବିଶ୍ୱବିଦ୍ୟାଳୟ ଗ୍ରହଣ କରି ପାରିବେ ।

"ଥାର୍ଡ ନେସନ୍ୟାଲ ସିମ୍ପୋଜିୟମ୍ ସାଇନ୍ସ ଆଣ୍ଡ ଟେକ୍ନୋଲୋଜି ଅଫ ପ୍ଲାଜମା"ରେ ପ୍ରସ୍ତାବ ଗ୍ରହଣ କରାଗଲା ଯେ ଏକ କର୍ମଶାଳା ରେଭେନ୍ସା କଲେଜରେ ଆୟୋଜନ କରି ଅନ୍ୟ କଲେଜର ଶିକ୍ଷକ ମାନଙ୍କୁ ପ୍ରଶିକ୍ଷଣ ଦିଆଯିବ । ଯେପରି ପ୍ରବୀଣ ଶିକ୍ଷକମାନେ ଏହି ପ୍ଲାଜମା ଫିଜକ୍ସ ପଢାଇବା ପାଇଁ ଉପଯୁକ୍ତ ହୋଇପାରିବେ । ଏହି କର୍ମଶାଳାଟି ଆୟୋଜନ କରିବାପାଇଁ ଡକ୍ଟର ମିଶ୍ର ସରକାରଙ୍କର ଅନୁମତି ନେଇ ସ୍ୱୀକୃତି ପ୍ରଦାନ କରିଅଛନ୍ତି । ଆମେମାନେ କର୍ମଶାଳା କରିବା ପାଇଁ ଦରକାର ଥିବା ଅନୁଦାନ ଦେବା ପାଇଁ ବ୍ୟବସ୍ଥା କରୁଛୁ । ଭାରତର ପ୍ରବୀଣ ପ୍ଲାଜମା ଫିଜିକ୍ସର ବ୍ୟକ୍ତି ମାନେ କର୍ମଶାଳାକୁ ନିମନ୍ତ୍ରିତ ହେବେ ।

ଏହି କାର୍ଯ୍ୟକ୍ରମକୁ ପ୍ରାଧାନ୍ୟ ଦେଇ ମୁଁ ଅନୁରୋଧ କରୁଛି ଯେ ଓଡିଶା ସରକାର ସମସ୍ତ ପ୍ରକାର ସାହାଯ୍ୟ ଯୋଗାଇ ଦେଲେ ସମୁଦାୟ କାର୍ଯ୍ୟକ୍ରମଟି ଫଳପ୍ରଦ ହେବ ।

## ପି.କେ. କଅଙ୍କ ଜେ.ବି. ପଟନାୟକଙ୍କ ପାଖକୁ ଚିଠି

ସମ୍ମାନର ସହିତ
ପି.କେ.କଅ .

**PROF.P.K.KAW PHYSICAL RESEARCLABORATORY**
**DIRECTOR NAVRANGPURA, AHMEDABAD 380009 (INDIA)**
**PHONE: 460357 CABLE: RESEARCH TELEX:0121397**

**December 26,1985**
**Shri J.B.Pattnaik**
**Hon'ble Chief Minister of Orissa**
**Bhubaneswar.**
**Respected sir:**

**Major projects on fusion research have recently been established at Ahmedabad and Indore keeping in view the importance of this field as a major future source of energy. A programme of such importance and dimension requires trained manpower with the necessary expertise and exposure to practical experience. To fullfil the requirement it is widely felt that**

teaching of plasma physics in educational institutions should be introduced. Experimental support for the same is practically nonexistent in India. I am extremely happy to know that Government of Orissa had given permission to open plasma physics as a special paper with experimental support in Ravenshaw College, which now happens to be an important center of this kind in India.

Dr.P.Misra, professor of Physics, Ravenshaw College had submitted a proposal entitled 'Low cost class room experiments on plasma physics' to the Department of Science & Technology, Government of India. The proposal has been accepted and a sum of about Rs.3.00 lakhs will be placed at the disposal of Dr.Misra through the Principal, Ravenshaw College,Cuttack. Subsequently the techniques of the experiments will be adopted by other Universities and centers of study on plasma physics.

It was suggested in the 'third National Symposium on Science &Technologies of plasmas' to organize a workshop on plasma physics for the teachers of other institutions at Ravenshaw College for about two weeks, so as to create a body of trained personnel for teaching the subjects. In the symposium Dr.Misra agreed to organize the workshop subject to the approval of the Government of Orissa and financial assistance. We are planning to provide funds for the workshop Eminent plasma physicists will be invited to act as resource persons for the programme.

In view of the national importance of the programme I request you to be kind and gracious enough to extend all possible Government support for the successful completion of the programmes.

With reards,
Yours sincerely,
P.K.Kaw

--------0---------

୧୯୮୫ ମସିହାରେ ମୁଁ ସରକାରଙ୍କୁ ଯେଉଁ ଚିଠି ଲେଖିଥିଲି ପରିଦର୍ଶକ ପ୍ରଫେସର ହିସାବରେ ଆନ୍ଧ୍ର ବିଶ୍ୱବିଦ୍ୟାଳୟକୁ ଯିବା ପାଇଁ, ସରକାରଙ୍କ ଠାରୁ କିଛି ଉତ୍ତର ଆସିଲା ନାହିଁ । ସଚିବଙ୍କ କାର୍ଯ୍ୟାଳୟକୁ ଯାଇ ଯୁଗ୍ମ ସଚିବଙ୍କ ଠାରୁ ବୁଝାବୁଝି କଲି । ସେ କହିଲେ କିଛି ନିର୍ଦ୍ଦେଶ ଆସିନାହିଁ । ତାହାର କେତେ ଦିନ ପରେ ଆଉ ଥରେ ଯାଇ ତାଙ୍କୁ ପୁଣି ଦେଖା କଲି । ସେ କହିଲେ ଫାଇଲ୍ ମନ୍ତ୍ରୀଙ୍କ ପାଖକୁ ଯାଇଛି ଫେରି ନାହିଁ ।

୩୦.୧.୧୯୮୬ ମସିହାରେ ଡିପାର୍ଟମେଣ୍ଟ ଅଫ୍ ସାଇନ୍ସ ଆଣ୍ଡ ଟେକ୍ନୋଲୋଜିର ହିସାବ ନିରୀକ୍ଷକ ଠାରୁ ଚିଠି ପାଇଲି । ଚିଠିଟିର ସାରକଥା ହେଉଛି ଡକ୍ଟର ପି.ମିଶ୍ରଙ୍କୁ ଆଇ.ଆର.ଏଚ୍.ପି.ଏ. (Intense Rearch in High Priorite Area)ର ପରିକଳ୍ପନା(Scheme) ଅନୁସାରେ "ଲୋ କଷ୍ଟ କ୍ଲାସ୍ ରୁମ୍ ଏକ୍ସପେରିମେଣ୍ଟ ଅନ୍ ପ୍ଲାଜମା ଫିଜିକ୍ସ"ର ପରିଯୋଜନା ପାଇଁ ରେଭେନ୍ସା କଲେଜର ଅଧ୍ୟକ୍ଷଙ୍କ ପାଖକୁ ୨,୯୧,୬୦୦ ଟଙ୍କା ଅନୁଦାନ ରାଶି ଅନୁମୋଦନ କରାଗଲା । କିନ୍ତୁ ପ୍ରଥମ କିସ୍ତିରେ ତାଙ୍କୁ ୧,୭୦,୦୦୦ ଟଙ୍କା ଦିଆଯିବ । ତାଙ୍କୁ ଅନୁରୋଧ କରାଯାଇଛି ସମୁଦାୟ ରାଶିକୁ ନିମ୍ନଲିଖିତ ପ୍ରକାରେ ସେ ଖର୍ଚ୍ଚ କରିବେ ।

| | | |
|---|---|---|
| ୧) କର୍ମଚାରୀଙ୍କ ଦରମା : | ୭୨,୬୦୦ | ଟଙ୍କା |
| ୨) ସ୍ଥାୟୀ ଉପକରଣ : | ୧,୫୦,୦୦୦ | ଟଙ୍କା |
| ୩) ଅନ୍ୟାନ୍ୟ ଅସ୍ଥାୟୀ ଉପକରଣ: | ୨୦,୦୦୦ | ଟଙ୍କା |
| ୪) ଗମନା ଗମନ ଖର୍ଚ୍ଚ : | ୧୮, ୦୦୦ | ଟଙ୍କା |
| ୫) ଅନ୍ୟାନ୍ୟ ପରିଯୋଜନା ଖର୍ଚ୍ଚ : | ୨୪,୦୦୦ | ଟଙ୍କା |
| ୬) ଅତିରିକ୍ତ ଖର୍ଚ୍ଚ : | ୭,୦୦୦ | ଟଙ୍କା |
| | ୨,୯୧,୬୦୦ | ଟଙ୍କା |

## ପରିଦର୍ଶକ ପ୍ରଫେସର ଆନ୍ଧ୍ର ବିଶ୍ୱବିଦ୍ୟାଳୟ, ଓ୍ୟାଲଟିୟର

କିଛି ଉତ୍ତର ନ ଆସିବାରୁ ମୁଁ ଶିକ୍ଷା ମନ୍ତ୍ରୀଙ୍କୁ ପୁଣି ଦେଖା କଲି । ସେତେବେଳେ ଶିକ୍ଷା ମନ୍ତ୍ରୀ ଥିଲେ ଶ୍ରୀଯୁକ୍ତ ଯଦୁନାଥ ଦାସମହାପାତ୍ର । ସୋର କଲେଜକୁ ଅଧ୍ୟକ୍ଷ ହୋଇ ଯିବା ସମୟରେ ତାଙ୍କ ସଙ୍ଗେ ପରିଚୟ ହୋଇଥିଲା । ସେ ମୋତେ କହିଲେ, ତୁମେ ଆନ୍ଧ୍ର ବିଶ୍ୱବିଦ୍ୟାଳୟକୁ ପରିଦର୍ଶକ ପ୍ରଫେସର ହିସାବରେ ଯାଅ, ମୁଁ ସେ ଫାଇଲ୍‌ରେ ସ୍ୱୀକୃତି ଦେଇଦେବି । ତେଣୁ ମୁଁ ସେଠାରୁ ଚାଲି ଆସିଲି ଓ ଆନ୍ଧ୍ର ବିଶ୍ୱବିଦ୍ୟାଳୟକୁ ୨୬ ତାରିଖ ଠାରୁ ଚାରି ସପ୍ତାହ ପର୍ଯ୍ୟନ୍ତ ପୁରା ଦରମାରେ ଛୁଟି ପାଇଁ ଦରଖାସ୍ତ କରିଦେଇ ୨୫ ତାରିଖ ରାତିରେ ଯାତ୍ରା କଲି । ଯିବା ପୂର୍ବରୁ ଆନ୍ଧ୍ର ବିଶ୍ୱବିଦ୍ୟାଳୟର ପ୍ରଫେସରଙ୍କ ଘରକୁ ଫୋନ କରିଥିଲ । ତେଣୁ ସେ ମହାଶୟ ଗାଡି ନେଇ ଓ୍ୱାଲଟିୟର ଷ୍ଟେସନ୍‌କୁ ଆସିଥିଲେ । ତେଣୁ ମୁଁ ଯାଇ ୨୬

ତାରଖ ସକାଳୁ ସୁବିଧାରେ ପହଁଞ୍ଚିଲି ଓ ସ୍ୱାମୀ ଜ୍ଞାନାନନ୍ଦଙ୍କ ଅତିଥି ଭବନରେ ମୋର ଖାଇବା ଓ ରହିବାର ସୁବିଧା କରିଦେଲେ । ସେହି ଅତିଥି ଭବନଟି ସ୍ୱାମୀ ଜ୍ଞାନାନନ୍ଦଙ୍କ ନାମରେ ନାମିତ ହୋଇଥିଲା । ମୁଁ ଏମ୍.ଏସ୍‌ସି ପଢିଲା ବେଳେ ସ୍ୱାମୀ ଜ୍ଞାନାନନ୍ଦ କଟକ ଆସିଥିଲେ । ସେ କେଉଁଠାରେ ଚାକିରି କରୁଥିଲେ ତାହା ମୋତେ ଜଣା ନାହିଁ । କିନ୍ତୁ ସେ କେତେ ବର୍ଷ ପାଇଁ ଯାଇ ତପସ୍ୟା କରିଥିଲେ । ସେତେବେଳେ ତାଙ୍କ ଦ୍ୱାରା ଲିଖିତ ଗୋଟିଏ ବହି ତାହାର ନାମ ହେଉଛି "ହାଇଭାକୁଓ୍ୱା" ସେ ବହିଟି ରେଭେନ୍‌ସା କଲେଜ ପାଠାଗାରରୁ ଆଣି ମୋ ପାଖରେ ରଖିଥିଲି । ସେ ବହିରେ ମୋ ଗବେଷଣା ପାଇଁ ବହୁତ ଗୁଡିଏ ବିଷୟ ଥିଲା ।

ମୁଁ ଓ୍ୱାଲଟିଅରରେ ରହିବା ସମୟରେ ନିର୍ଦ୍ଦିଷ୍ଟ ତାରିଖରେ ମୋର ସ୍ତ୍ରୀଙ୍କୁ ଏକୁଟିଆ ଓ୍ୱାଲ୍‌ଟିଅର ଯିବା ପାଇଁ କହିଥିଲି । କିନ୍ତୁ ସେ ଗଲେ ନାହିଁ । ମନ ଟିକିଏ ଦୁଃଖ ହେଲା । ତାଙ୍କ ଠାରୁ କିଛି ଖବର ମଧ୍ୟ ପାଇଲି ନାହିଁ । ଦିନେ ଦରକାର ପଡିବାରୁ ମୋତେ ଆନ୍ଧ୍ର ବିଶ୍ୱବିଦ୍ୟାଳୟର କାମରେ କଟକ ଆସିବାକୁ ପଡିଥିଲା । କଟକରେ ଶୁଣିଲି ଯେ ମୋର ବଡ ଭିଣୋଇଙ୍କର ଦେହାନ୍ତ ହୋଇଯାଇଛି । ତେଣୁ ମୋ ସ୍ତ୍ରୀ ଯାଇ ପାରିଲେ ନାହିଁ । ମୁଁ ଦୁଇଦିନ ରହି ପୁଣି ଓ୍ୱାଲଟିଅର ଚାଲି ଆସିଲି । ଆସିବା ପୂର୍ବରୁ ମୋ ସ୍ତ୍ରୀ କହିଥିଲେ ଭିଣୋଇଙ୍କ ଶ୍ରାଦ୍ଧ ସରିଗଲା ପରେ ସେ ଯିବେ । ଯେଉଁ ଦିନ ଯିବେ ତାପୂର୍ବରୁ ଫୋନ୍ କରିବି । ସେ ଯେଉଁଦିନ ଯିବେ, ତା ପୂର୍ବରୁ ମୋତେ ଫୋନ୍ ଦ୍ୱାରା ଜଣାଇ ଦେଲେ ।

## ସ୍ତ୍ରୀଙ୍କର ଏକା ଏକା ଓ୍ୱାଲଟିୟର ଯାତ୍ରା

ସେ ପହଁଞ୍ଚିବା ବେଳେ ମୁଁ ବିଶ୍ୱବିଦ୍ୟାଳୟ ଗାଡି ନେଇ ତାଙ୍କୁ ଅପେକ୍ଷା କରି ଷ୍ଟେସନରେ ଥିଲି । ସେ ଗାଡିରୁ ଓହ୍ଲାଇବା ପରେ ତାଙ୍କୁ ନେଇ ସ୍ୱାମୀ ଜ୍ଞାନାନନ୍ଦଙ୍କ ଅତିଥି ଭବନକୁ ଗଲି । ସ୍ୱାମୀ ଜ୍ଞାନାନନ୍ଦ ଅତିଥି ଭବନରେ ନିତ୍ୟକର୍ମ ସାରି ଆମେ ବିଶ୍ୱବିଦ୍ୟାଳୟ ଗାଡିରେ ଓ୍ୱାଲ୍‌ଟିଅର ସହରର ଭିନ୍ନ ଭିନ୍ନ ସ୍ଥାନକୁ ଗଲୁ । ଆଉ ଦିନେ ବିଶ୍ୱବିଦ୍ୟାଳୟ ଗାଡିରେ ଆମେ ସୀମାଞ୍ଚଳ ଯାଇଥିଲୁ । ମୋର ସ୍ତ୍ରୀ ସେଠାରେ ଦୁଇ ଦିନ ରହି କଟକ ଏକା ଏକା ଫେରିଲେ । ଫେରିଲା ଦିନ ମୁଁ ତାଙ୍କୁ ଟ୍ରେନ୍‌ରେ ବସାଇ ଦେଇ ଆସିଲି । ତାର ପର ସପ୍ତାହକୁ ମୁଁ ମଧ୍ୟ କଟକ ଫେରି ଆସିଲି । କଟକ ଫେରିଲା ପରେ ମୁଁ ଜାଣିଲି, ଡିପାର୍ଟମେଣ୍ଟ ଅଫ୍ ସାଇନ୍‌ସ ଆଣ୍ଡ ଟେକ୍‌ନୋଲୋଜି "ଲୋ କଷ୍ଟ ଗ୍ଲାସ୍ ରୁମ୍ ଏକ୍‌ସପେରିମେଣ୍ଟ ଅନ୍ ପ୍ଲାଜମା ଫିଜିକ୍ସ" ପରିଯୋଜନା ପାଇଁ ୨,୯୧,୬୦୦ ଟଙ୍କାରୁ ପ୍ରଥମ କିସ୍ତିରେ ୧,୬୦,୦୦୦ ଟଙ୍କାର ଗୋଟିଏ ଡ୍ରାଫ୍‌ଟ ପ୍ରିନ୍‌ସପାଲଙ୍କ ପାଖକୁ ଆସିଥିଲା । ମୁଁ ସେ ଟଙ୍କାକୁ ବ୍ୟାଙ୍କରେ ଜମା କରି ସେଥିରୁ ଖର୍ଚ୍ଚ କରିବା ପାଇଁ କିଛି ଟଙ୍କା ପାଖରେ ରଖିଲି । ଦରକାର ହେଉଥିବା ଉପକରଣ ଗୁଡିକ ଭାରତର ବିଭିନ୍ନ କମ୍ପାନୀରୁ ସରକାରୀ ନିୟମ ଅନୁସାରେ ମଗାଇଲି ।

୧୯୮୬ ମସିହା ମେ ମାସରେ ଡକ୍ଟର ଏସ୍.କେ ତ୍ରେହାନ୍‌ଙ୍କ ଠାରୁ ମୁଁ ଗୋଟିଏ ଚିଠି ପାଇଲି । ସେ ଲେଖିଥିଲେ, ତୁମେ ଗୋଟିଏ ଏକ୍‌ସପେରିମେଣ୍ଟାଲ ପ୍ଲାଜମା ଫିଜିକ୍‌ସର ସମର ସ୍କୁଲ୍‌ର ଆୟୋଜନ କର । ଯଦି କରିବାକୁ ତୁମେ ରାଜି ଅଛ ତାହାହେଲେ ଚିଠି ଲେଖି ଜଣାଅ ।

ମୁଁ ତାଙ୍କ ଚିଠି ପାଇ ସଙ୍ଗେ ସଙ୍ଗେ ଲେଖି ଦେଲି ମୁଁ ଡି.ଏସ୍.ଟିରୁ ଟଙ୍କା ଏବେ ପାଇଲି । ତେଣୁ ମୁଁ ସାଙ୍ଗେ ସାଙ୍ଗେ 'ସମର ସ୍କୁଲ'କରି ପାରିବି ନାହିଁ । କିନ୍ତୁ ମୁଁ ୧୯୮୮ ମସିହାରେ ଗୋଟିଏ କର୍ମଶାଳା କରିବା ପାଇଁ ପ୍ରସ୍ତାବ ଦେବି ।

୧୯୮୬ ଜୁଲାଇ ମାସରେ ଉତ୍କଳ ବିଶ୍ୱବିଦ୍ୟାଳୟର ପରୀକ୍ଷା ନିୟନ୍ତ୍ରକ ମୋତେ ଜଣାଇଲେ ଏମ୍.ଏସ୍‌ସି ପ୍ରାକ୍‌ଟିକାଲ ପରୀକ୍ଷା ଜୁଲାଇ ମାସରେ ସମ୍ପୂର୍ଣ୍ଣ କରି ପରୀକ୍ଷାର ଫଳାଫଳ ଜଣାଇବାକୁ ହେବ । ୧୯୮୫ ମସିହାରେ ପ୍ଲାଜମା ଫିଜିକ୍ସର ପାଠ୍ୟକ୍ରମ ଆରମ୍ଭ ହୋଇଥିଲା । ତେଣୁ ଏହି ବର୍ଷ ପ୍ଲାଜମା ଫିଜିକ୍ସର ପ୍ରାକ୍ଟିକାଲ ପରୀକ୍ଷା ହେବା କଥା । ଯେହେତୁ ଆଇ.ପି.ଆର ପ୍ରଫେସରମାନେ ପ୍ଲାଜମା ଫିଜିକ୍ସ ରେଭେନ୍ସା କଲେଜରେ ଖୋଲିବା ପାଇଁ ଉଦ୍ୟମ କରିଥିଲେ, ତେଣୁ ମୁଁ ଆଇ.ପି.ଆରର ଜଣେ ପ୍ରଫେସରଙ୍କୁ ବାହ୍ୟ ପରୀକ୍ଷକ ହିସାବରେ ଡାକିବା ପାଇଁ ମନସ୍ଥକରି ଡକ୍ଟର ୱାଇ.ସି ସାକ୍‌ସେନାଙ୍କୁ ପରୀକ୍ଷା ନିମନ୍ତେ କଟକ ଆସିବା ପାଇଁ ଅନୁରୋଧ କଲି ।

## ପ୍ଲାଜମା ପ୍ରାକ୍‌ଟିକାଲ ପରୀକ୍ଷା ପାଇଁ ୱାଇ.ସି. ସାକ୍‌ସେନାଙ୍କ କଟକ ଆଗମନ

ମୋର ଅନୁରୋଧ ରକ୍ଷାକରି ସେ ନିର୍ଦ୍ଦିଷ୍ଟ ଦିନରେ ତାଙ୍କ ସହଧର୍ମିଣୀଙ୍କ ସହିତ କଟକରେ ସକାଳେ ପହଞ୍ଚିବେ ବୋଲି ମୋତେ ଫୋନ୍‌ରେ ଜଣାଇଲେ । ତେଣୁ ମୁଁ ଛାତ୍ରମାନଙ୍କୁ ଜଣାଇଦେଲି । ନିର୍ଦ୍ଦିଷ୍ଟ ଦିନରେ ପରୀକ୍ଷା ଆରମ୍ଭ ହେଲା । ପରୀକ୍ଷା ପାଇଁ ପ୍ରସ୍ତୁତ ଉପକରଣ ଗୁଡିକୁ ଦେଖି ସେ ଉପକରଣ ସଂପର୍କରେ ମୋ ସହିତ ଆଲୋଚନା କଲେ । ମୁଁ ତାଙ୍କ କଥାବାର୍ତ୍ତାରୁ ଜାଣିଲି ଯେ ଉପକରଣ ଗୁଡିକ ଉପରେ ଗଭୀର ସନ୍ତୋଷ ଲାଭ କରିଛନ୍ତି । ପରୀକ୍ଷା ଚାଲିଥିବା ସମୟରେ ତାଙ୍କର ମଧ୍ୟାହ୍ନ ଭୋଜନ ପାଇଁ ଖାଇବାଦ୍ରବ୍ୟ ସବୁ ଆମ ଘରୁ ଆସିଥିଲା । ପରୀକ୍ଷା ସରିଲାପରେ ଆମେ ଦୁହେଁଯାକ ଆମ ବସାକୁ ଗଲୁ । କଥାବାର୍ତ୍ତା ହେବା ସମୟରେ ସେ ଚିଲିକା ହ୍ରଦ ଦେଖିବା ପାଇଁ ଇଚ୍ଛା ପ୍ରକାଶ କଲେ । ସେଥିପାଇଁ ମୁଁ, ମୋ ସହଧର୍ମିଣୀ ଓ ମୋ ନାତୁଣୀକୁ ସାଙ୍ଗରେ ଧରି ଏକ ଟ୍ୟାକ୍ସି ଭଡାକରି ଚିଲିକା ଗଲୁ । ବରକୁଳ ଡାକବଙ୍ଗଳାରେ ପହଞ୍ଚି ଟିକିଏ ବିଶ୍ରାମ ନେଇ ଗୋଟିଏ ପାୱାର ବୋଟ ଭଡାକରି ସେମାନେ ଦୁଇଜଣ ଏବଂ ଆମେ ତିନିଜଣ କାଳୀଜାଇ ମନ୍ଦିର ପର୍ଯ୍ୟନ୍ତ ଯାଇଥିଲୁ । ସେଠାରେ କିଛି ସମୟ ବୁଲାବୁଲି କରି ପାୱାର ବୋଟରେ କୂଳକୁ ଫେରି ଆସିଲୁ । ତାପରେ ବରକୁଳରୁ ଟ୍ୟାକ୍ସିଧରି କଟକ ଚାଲି ଆସିଲୁ । ଡକ୍ଟର ସାକ୍‌ସେନା ଓ ତାଙ୍କ ସହଧର୍ମିଣୀ ଚିଲିକାର ଦୃଶ୍ୟ ଅତୀବ ମନୋରମ ବୋଲି ପ୍ରକାଶ କଲେ । ସେମାନେ ତାପର ଦିନ ଚାଲିଗଲେ ।

ମୁଁ ନିଜେ ଏବଂ ମୋର ପିଲାମାନେ ଅନେକ ଥର ବଣଭୋଜି ନିମନ୍ତେ କଲେଜ ଛାତ୍ରମାନଙ୍କ ସଙ୍ଗେ ଚିଲିକା ଆସିଛୁ । ତେଣୁ ଚିଲିକା ଯାତ୍ରା ସଂପର୍କରେ ଆଉ ଥରେ ଏହି ବହିରେ ଲେଖିବା ପାଇଁ ଉଚିତ୍ ମନେକରୁ ନାହିଁ ।

୧୯୮୭ ମସିହା ଜାନୁଆରୀ ମାସରେ ଇଣ୍ଡିଆନ୍ ଆସୋସିଏସନ୍ ଅଫ ଫିଜିକ୍ସ ଟିଚର୍ସର ଏକ୍‌ଜିକ୍ୟୁଟିଭ୍ ମେମ୍ବର ହିସାବରେ ଦୁଇବର୍ଷ ପାଇଁ ନିର୍ବାଚିତ ହୋଇଥିଲି ଏବଂ ଆହୁରି ମଧ୍ୟ ପ୍ଲାଜମା ସାଇନ୍‌ସ ସୋସାଇଟି ଅଫ୍ ଇଣ୍ଡିଆର କାଉନ୍‌ସିଲର ହିସାବରେ ୧.୧.୮୬ ଠାରୁ ୩୧.୧୨.୮୭ ପର୍ଯ୍ୟନ୍ତ ନିର୍ବାଚିତ ହୋଇଥିଲି । ଏହା ବ୍ୟତୀତ ବିଜ୍ଞାନ ପ୍ରଚାର ସମିତିର

କୋଷାଧ୍ୟକ୍ଷ ଦାୟିତ୍ୱ ବହୁତ ଆଗରୁ ତୁଲାଇ ଆସୁଥିଲି । କିନ୍ତୁ ଡି.ଏସ୍.ଟି ପରିଯୋଜନା ପାଇଁ କାମ ଅତ୍ୟଧିକ ହେବାରୁ ମୋ ଅନୁରୋଧରେ ମୋତେ ସେଥିରୁ ଅବ୍ୟାହତି ମିଳିଥିଲା । ସେହି ବର୍ଷ ଶ୍ରୀ ବିମଲ୍ କୁମାର ଦାସ ଏବଂ ବୀଣା ମହାପାତ୍ର ମୋ ତତ୍ତ୍ୱାବଧାନରେ ଏମ୍.ଫିଲ୍ ଡିଗ୍ରୀ ପାଇ ଥିଲେ ।

## ନୀଳମାଧବ ପରିଦର୍ଶନ

୧୯୮୭ ମସିହାରେ ଶ୍ରୀ ବିମଳକୃଷ୍ଣ ଦାସ ଏମ୍.ଫିଲ୍ ପାସ୍ କଲାପରେ ଆଠଗଡ କଲେଜରେ ଯୋଗଦେଲେ । ସେଠାରେ ଥିବାବେଳେ ମୋତେ ଅନୁରୋଧ କଲେ, ଆପଣ ପିଲାମାନଙ୍କୁ ନେଇ ଥରେ ଆଠଗଡ ଆସନ୍ତୁ, ଆମେ ସେଠାରୁ କଣ୍ଟିଲୋ ଯାଇ ନୀଳମାଧବଙ୍କ ଦର୍ଶନ କରିବା । ତାଙ୍କ କଥାରେ ରାଜିହୋଇ ଆମେ ଯିବାର ଦିନ ଠିକ୍ କରି ଜଣାଇ ଦେଲୁ । ଆମେ କହିଲୁ ଆଠଟା କିମ୍ବା ସାଢେ ଆଠଟା ସୁଦ୍ଧା ଆମେ ଗାଡିରେ ଯାଇ ଆଠଗଡରେ ପହଁଚିବୁ । ନିର୍ଦ୍ଦିଷ୍ଟ ଦିନ ନଅଟା ବେଳେ ଆଠଗଡରେ ପହଁଚିଲୁ । ଆଠଗଡ ଠାରୁ ସେ ଆମ ଗାଡିରେ ଗଲେ ଓ କଣ୍ଟିଲୋ ଠାରେ ପହଁଚିଲୁ । କଣ୍ଟିଲୋ ଠାରୁ କିଛି ବାଟ ଗଲାପରେ ରାସ୍ତା ଖରାପ ଥିବାରୁ ଆଉ ଗାଡି ଯାଇ ପାରିଲାନାହିଁ । ତେଣୁ ଆମେ ଗାଡିରୁ ଓହ୍ଲାଇ ଚାଲି ଚାଲି ଏକ ଛୋଟ ପାହାଡ ନିକଟରେ ପହଁଚିଲୁ । ସେଠାରୁ ପାହାଚରେ ଚଢି ପର୍ବତ ଶିଖରକୁ ଯାଇ ନୀଳମାଧବଙ୍କୁ ଦର୍ଶନ କରି ଫେରିଆସିଲୁ । ତାପରେ ଗାଡିରେ ବସି ଆଠଗଡରେ ଓହ୍ଲାଇଲୁ । ବିମଳ ଆଠଗଡ ଠାରେ ଆମର ଖାଇବାର ବ୍ୟବସ୍ଥା କରିଥିଲେ । ଏହାର କିଛି ସମୟପରେ ଆମେ କଟକ ଚାଲି ଆସିଲୁ ।

ଏହି ସମୟରେ ଡିପାର୍ଟମେଣ୍ଟକୁ ପରିଯୋଜନା କାମ କରିବା ପାଇଁ ପ୍ରାୟ ୭ଟାରେ ଯାଉଥିଲି । ଖରାବେଳେ ଘଣ୍ଟାକ ପାଇଁ ଖାଇବାକୁ ଆସୁଥିଲି । ରାତି ଦଶଟା ପର୍ଯ୍ୟନ୍ତ ସେଠାରେ ରହି କାମ କରୁଥିଲି । ମୋତେ ପରିଯୋଜନାରେ ସାହାଯ୍ୟ କରିବା ପାଇଁ ଶ୍ରୀମତୀ ପ୍ରତିଭା ରାଣୀ ମିଶ୍ରଙ୍କୁ ମୁଁ ରିସର୍ଚ୍ଚ ଆସିଷ୍ଟାଣ୍ଟ ଭାବରେ ନିଯୁକ୍ତ କରିଥିଲି । ସେଥିପାଇଁ ସେ ଏଜୁକେସନ ଡିପାର୍ଟମେଣ୍ଟରୁ ଦୁଇବର୍ଷ ଛୁଟି ନେଇଥିଲେ । ଏହି ସମୟରେ ଡିପାର୍ଟମେଣ୍ଟରେ କିଏ ପ୍ରଚାର କଲା ଯେ ମୋର ଏବଂ ମୋ ସ୍ତ୍ରୀଙ୍କର ଭଲ ପଡୁନାହିଁ ବୋଲି । କାରଣ ମୁଁ ସବୁବେଳେ ଡିପାର୍ଟମେଣ୍ଟରେ ରହୁଥିଲି । ମୁଁ ଏକଥା ଘରେ କହିବାରୁ ଆମେ ଦୁହେଁ ଏତେ ହସିଥିଲୁ ଯେ ତାହାର କଳ୍ପନା କରିହେବ ନାହିଁ ।

## ସ୍ୱଳ୍ପ ବ୍ୟୟରେ ପ୍ଲାଜମା ବିଜ୍ଞାନ ପରୀକ୍ଷା

୧୯୮୭ ମସିହା ଅପ୍ରେଲ ମାସରେ ଇଉ.ଜି.ସିରୁ ଗୋଟିଏ ଚିଠି ପାଇଲି । ସେଥିରେ ଲେଖାଥିଲା, ଇଉ.ଜି.ସି. ସଂପର୍କରେ କର୍ମଶାଳା କରିବା ପାଇଁ ପଠାଇଥିବା ପ୍ରସ୍ତାବ । 'ଲୋ କଷ୍ଟ କ୍ଲାସ୍‌ରୁମ୍ ଏକ୍ସପେରିମେଣ୍ଟ ଅନ୍ ପ୍ଲାଜମା ଫିଜିକ୍ସ' ଇଉ.ଜି.ସି. ଦ୍ୱାରା ମଞ୍ଜୁର ହୋଇଛି । ତେଣୁ କର୍ମଶାଳା ପାଇଁ ୮୩,୧୪୦ ଟଙ୍କା ଅନୁଦାନ ରାଶି ମଞ୍ଜୁର କରା ଯାଇଛି । ତୁମେ କେଉଁ ତାରିଖ ଠାରୁ କେଉଁ ତାରିଖ ପର୍ଯ୍ୟନ୍ତ କର୍ମଶାଳାର ଆୟୋଜନ କରୁଛ, ତାହା ଲେଖି ପଠାଇଲେ, ଅନୁଦାନ ଟଙ୍କା ତୁମ ପାଖକୁ ରେଭେନ୍‌ସା କଲେଜର ଅଧ୍ୟକ୍ଷଙ୍କ ନାମରେ ପଠାଇ ଦିଆଯିବ । ମୁଁ

ଉତ୍ତର ଦେଲି ଯେ ୨୧.୬.୧୯୮୭ ଠାରୁ ୧୧.୭.୧୯୮୭ ପର୍ଯ୍ୟନ୍ତ ରେଭେନ୍ସା କଲେଜରେ ଫିଜିକ୍ସ ଡିପାର୍ଟମେଣ୍ଟରେ କର୍ମଶାଳା ଅନୁଷ୍ଠିତ ହେବ ଏବଂ ନିମ୍ନଲିଖିତ ମତେ ଖର୍ଚ୍ଚ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ ।

| | |
|---|---|
| ୧) ସମୁଦାୟ ଅଂଶୀ ଦାରଙ୍କ ସଂଖ୍ୟା - | ୫୦ଜଣ |
| ୨) ଯୋଗ ଦେଇଥିବା ଶିକ୍ଷକ ସଂଖ୍ୟା - | ୧୪ ଜଣ |
| ୩) କର୍ମଶାଳା ୧୦.୬.୮୭ ଠାରୁ ୩୦.୬.୮୭ | ୨୧ ଦିନ |
| ୪) ଅଂଶୀଦାରଙ୍କର ରହିବା ଖର୍ଚ୍ଚ - | ୨୫,୬୦୦ ଟଙ୍କା |
| ୫) ସ୍ଥାନୀୟ ଅଂଶଗ୍ରହଣ କାରି ସହଯୋଗୀଙ୍କ ଖର୍ଚ୍ଚ | ୫,୦୦୦ ଟଙ୍କା |
| ୬) ସମୁଦାୟ ଅଂଶୀଦାରଙ୍କର ଯିବା ଆସିବା ଖର୍ଚ୍ଚ | ୩୦, ୦୦୦ ଟଙ୍କା |
| ୭) ଡିରେକ୍ଟର, ଶିକ୍ଷକଙ୍କ ପ୍ରାପ୍ୟ ଓ ଅନ୍ୟାନ୍ୟ ଖର୍ଚ୍ଚ | ୧୫,୫୦୦ ଟଙ୍କା |
| ସମୁଦାୟ | ୮,୩୧୪୦ ଟଙ୍କା |

ଏ ଚିଠିଟି ପାଇ ସାରିବା ପରେ ଇଉ.ଜି.ସି ଦେଇଥିବା ଅନୁଦାନ ଅନୁସାରେ ମୁଁ ଭାରତର ସମସ୍ତ ପୋଷ୍ଟ ଗ୍ରାଜୁଏଟ୍ କଲେଜର ଫିଜିକ୍ସ ବିଭାଗର ମୁଖ୍ୟ ପ୍ରଫେସରମାନଙ୍କୁ ବିଜ୍ଞାପନ ପଠାଇ ଥିଲି । ଯେଉଁମାନେ ଯୋଗ ଦେବାକୁ ଇଚ୍ଛା କରନ୍ତି ସେମାନେ ମୋତେ ଶୀଘ୍ର ଜଣାଇବାକୁ ଏବଂ ସେମାନଙ୍କ ଦରଖାସ୍ତ ସହିତ ବାୟୋଡାଟା ପଠାଇବାକୁ ଅନୁରୋଧ କରିଥିଲି । ଏହି ହିସାବରେ ୭୦/୮୦ ଜଣ ଭାରତର ବିଭିନ୍ନ ସ୍ଥାନରୁ ଦରଖାସ୍ତ କରିଥିଲେ । ସେମାନଙ୍କ ଭିତରୁ ୫୦ ଜଣଙ୍କୁ ବାଛି ଯୋଗଦେବା ପାଇଁ ନିମନ୍ତ୍ରଣ କରିଦେଲି ଏବଂ ଲେଖିଦେଲି, ଯେଉଁମାନେ ଫେରିବା ସମୟରେ ଟ୍ରେନ୍‌ରେ ଫେରିବାକୁ ଚାହାଁନ୍ତି ଟିକେଟ କରିବା ପାଇଁ ସେମାନେ ୫୦ ଟଙ୍କାର ବ୍ୟାଙ୍କ ଡ୍ରାଫଟ୍ ପଠାଇଲେ ତାଙ୍କ ପାଇଁ କଟକରୁ ତାଙ୍କ ଫେରିବା ସ୍ଥାନକୁ ସଂରକ୍ଷଣ କରିଦିଆ ଯିବ । ଯେଉଁମାନେ ବ୍ୟାଙ୍କ ଡ୍ରାଫ୍‌ଟ୍ ପଠାଇ ଆସିବେ ନାହିଁ, ସେମାନେ ୫୦ ଟଙ୍କା ଫେରି ପାଇବାକୁ ହକ୍‌ଦାର ହେବେ ନାହିଁ । ଆଉ ୨୦ ଜଣ ଓଡିଶାର ଅଧ୍ୟାପକଙ୍କ ନାମ ପ୍ରତୀକ୍ଷା ତାଲିକାରେ ରଖିଦେଲି ଏବଂ ତାଙ୍କ ପାଖକୁ ମଧ୍ୟ ଲେଖିଦେଲି, ତୁମର ନାମ ପ୍ରତୀକ୍ଷା ତାଲିକାରେ ଅଛି । ମୋ ଠାରୁ ଚିଠି କିମ୍ବା ଫୋନ୍ ପାଇଲେ ତୁମେ ୨୫.୬ ତାରିଖ ପୂର୍ବରୁ ଆସି କଟକରେ ପହଞ୍ଚିବ । ଏହା ବ୍ୟତୀତ ୭/୮ ଜଣ ପ୍ଲାଜମା ଫିଜିସିଷ୍ଟଙ୍କ ପାଖକୁ ଶିକ୍ଷାଦାତା ହିସାବରେ ଯୋଗ ଦେବାକୁ ଅନୁରୋଧ କରିଥିଲି । ଯେଉଁମାନେ ଆସିବା ପାଇଁ ରାଜି ହେଲେ ସେମାନେ କେଉଁ ବିଷୟରେ ବକ୍ତୃତା ଦେବେ ତାହା ମଧ୍ୟ ଲେଖି ଜଣାଇ ଦେଲି ।

## ପ୍ଲାଜମା ଫିଜିକ୍ସ ଉପରେ ଅନୁଷ୍ଠିତ କର୍ମଶାଳାରେ ଯୋଗଦାନ

ରବିଶଙ୍କର ବିଶ୍ୱବିଦ୍ୟାଳୟର ପ୍ରାଧ୍ୟାପକ ଡକ୍ଟର ଏସ୍.ଗୁହଙ୍କ ଠାରୁ ଗୋଟିଏ ଚିଠି ପାଇଲି, ରବିଶଙ୍କର ବିଶ୍ୱବିଦ୍ୟାଳୟ ରାୟପୁରରେ ଫିଜିକ୍ସ ଡିପାର୍ଟମେଣ୍ଟରେ ଗୋଟିଏ ସମର ସ୍କୁଲ୍ ପ୍ଲାଜମା ଫିଜିକ୍ସ ଉପରେ ଅନୁଷ୍ଠିତ ହେଉଅଛି । ମୁଁ ଆପଣଙ୍କୁ ଅନୁରୋଧ କରୁଛି, ଆପଣ

ଜୁନ୍ ୧ ତାରିଖରୁ ୬ ତାରିଖ ମଧ୍ୟରେ ଉପସ୍ଥିତ ହୋଇ ପ୍ଲାଜମା ଫିଜିକ୍ସ ଏକ୍ସପେରିମେଣ୍ଟ ଉପରେ କେତେ ଗୁଡିଏ ବକ୍ତୃତା ଦେବେ । ଆପଣ ରାଜି ହେବେ ବୋଲି ମୁଁ ଆଶା କରୁଛି । ଆପଣଙ୍କ ଉତ୍ତର ଅପେକ୍ଷାରେ ରହିଲି । ତାଙ୍କ ଚିଠି ପାଇ ମୁଁ ଯିବା ପାଇଁ ମୋ ସ୍ୱୀକୃତି ପ୍ରଦାନ କରିଦେଲି ।

ଏହି କର୍ମଶାଳାରେ ମୋର ଝିଅ ପ୍ରଭାତୀ ମିଶ୍ର ଯୋଗ ଦେବାର ଥିଲା । ଏହି କର୍ମଶାଳାଟି ଜୁନ୍ ୧ ଠାରୁ ୩୦ ପର୍ଯ୍ୟନ୍ତ ପ୍ରାୟ ଏକ ମାସ ହେବାର ଥିଲା । ମୁଁ ଯିବା ପାଇଁ ଉଡାଜାହାଜ ଭଡା ମଞ୍ଜୁର କରାଯାଇ ଥିଲା । ମୁଁ କର୍ମଶାଳାରେ ଯୋଗ ଦେବା ପାଇଁ ଉଡାଜାହାଜରେ ଭୁବନେଶ୍ୱର ଠାରୁ ରାୟପୁର ଯିବା ପାଇଁ ବ୍ୟବସ୍ଥା କରିଥିଲି । ତେଣୁ ମୋ ଝିଅ ମୋ ସାଙ୍ଗରେ ଯିବ ବୋଲି କହିଲା । ଆମେ ଦୁହେଁ ଉଡାଜାହାଜରେ ଯାଇଥିଲୁ । ରାୟପୁରରେ ଓହ୍ଲାଇଲା ପରେ ଡକ୍ଟର ଗୁହ ମୋତେ ନେବା ପାଇଁ ବିମାନ ବନ୍ଦରରେ ଉପସ୍ଥିତ ଥିଲେ । ମୁଁ ଅତିଥି ଭବନରେ ରହିଲି ଏବଂ ଝିଅ ଛାତ୍ରାବାସରେ ରହିଲା । ରାୟପୁରରେ ଥିବା ବେଳେ ଡକ୍ଟର ଏସ୍.ଗୁହ ମୋତେ ଅନୁରୋଧ କଲେ ଯେ 'ମୁଁ ତୁମର ପ୍ଲାଜମା ଫିଜିକ୍ସ ବିଜ୍ଞାନାଗାର ଦେଖିବାକୁ ଇଚ୍ଛା କରୁଛି ।" ମୁଁ କହିଲି ପ୍ଲାଜମା ଫିଜିକ୍ସ ପ୍ରାକ୍ଟିକାଲ ପରୀକ୍ଷକ ହିସାବରେ ମୁଁ ଆପଣଙ୍କୁ ଡକାଇ ନେବି । ଆପଣ ସେତେବେଳେ ଯାଇ ଦେଖି ନେବେ । ତାପରେ ମୁଁ ସେଠାରେ ସାତ ଦିନ ରହି ଫେରି ଆସିଲି । ରେଭେନ୍ସା କଲେଜରେ ହୋଇଥିବା "ଲୋ କଷ୍ଟ କ୍ଲାସ ରୁମ୍ ଏକ୍ସପେରିମେଣ୍ଟ ଅନ ପ୍ଲାଜମା ଫିଜିକ୍ସ" କର୍ମଶାଳାରେ ନିମ୍ନ ଲିଖିତ ସାତ ଜଣ ପ୍ରଫେସର ଶିକ୍ଷକ ହିସାବରେ ଯୋଗ ଦେଇଥିଲେ । ସେମାନେ ହେଲେ -

୧) ଡି.ପି.ତିୱାରି , ଆଇ.ଆଇ.ଟି ଦିଲ୍ଲୀ

୨) ଡକ୍ଟର ଏମ୍. ଶକୁନ୍ତଳା, ପରିଦର୍ଶକ ବୈଜ୍ଞାନିକ, ଆନ୍ଧ୍ର ବିଶ୍ୱବିଦ୍ୟାଳୟ( ଡକ୍ଟର ଶକୁନ୍ତଳାଙ୍କ ଗବେଷଣାଗାରରେ ପ୍ଲାଜମା ଶକ୍ ୱେଭ୍ର ଏକ୍ସପେରିମେଣ୍ଟଟି ଦେଖିଥିଲି) ।

୩) ଏଚ୍.ସି ପନ୍ତ, ଲେଜର ଡିଭିଜନ, ଭାବା ଆଟୋମିକ୍ ରିସର୍ଚ୍ଚ ସେଣ୍ଟର ବମ୍ବେ ।

୪) ଡକ୍ଟର ବ୍ରହ୍ମାନନ୍ଦ ଦାସଗୁପ୍ତ, ସାହା ଇନିଷ୍ଟିଚ୍ୟୁଟ୍ ଅଫ ନିଉକ୍ଲିଆର ଫିଜିକ୍ସ (ତାଙ୍କ ସହିତ ମୁଁ କଲିକତାରେ ଗବେଷଣା କରୁଥିଲି ।)

୫) ଡକ୍ଟର ପି.ସି ମହାନ୍ତି, ରିଜିଓନାଲ ରିସର୍ଚ୍ଚ ଲାବୋରାଟୋରୀ ଭୁବନେଶ୍ୱର ।

୬) ଡକ୍ଟର ଆର.ପି ଧାୟା , ଆଇ.ଆଇ.ଟି ଦିଲ୍ଲୀ ।

୭) ଡକ୍ଟର ଏମ୍.ଏସ୍ ତିୱାରି, ସାଗର ବିଶ୍ୱବିଦ୍ୟାଳୟ ।

ଏହା ବ୍ୟତୀତ ଯୋଗଦେଇ ପରାମର୍ଶ ଦେଇଥିଲେ ଡକ୍ଟର ତ୍ରିନାଥ ରଥ ପୂର୍ବତନ ଉପ କୁଳପତି ବ୍ରହ୍ମପୁର ଏବଂ ମଣିପୁର ବିଶ୍ୱବିଦ୍ୟାଳୟ ଏବଂ ଡ୍କଟର ତ୍ରିଲୋଚନ ପ୍ରଧାନ, ଡାଇରେକ୍ଟର ଇନିଷ୍ଟିଚ୍ୟୁଟ ଅଫ ଫିଜିକ୍ସ ଭୁବନେଶ୍ୱର । ଏହି 'ଲୋ କଷ୍ଟ କ୍ଲାସ୍ ରୁମ୍ ଏକ୍ସପେରିମେଣ୍ଟ'ର କର୍ମଶାଳା ପାଇଁ ମୁଁ ଡକ୍ଟର ନାଗ୍ ଚୌଧୁରୀଙ୍କୁ ପ୍ରଧାନ ବକ୍ତା ହିସାବରେ ଯୋଗ ଦେବା ପାଇଁ, ତାଙ୍କର ଟେଲିଫୋନ୍ ନମ୍ବର ଡକ୍ଟର ତ୍ରିଲୋଚନ ପ୍ରଧାନଙ୍କ ଠାରୁ ଆଣି

ତାଙ୍କ ଘରକୁ ଟେଲିଫୋନ୍ କରିଥିଲି । ସେ ନିଜେ ଫୋନ୍‌ରେ ପଚାରିଲେ "ମୁଁ ତୁମକୁ ଚିହ୍ନି ପାରୁନାହିଁ ।" ମୁଁ ତାଙ୍କ ପ୍ରଶ୍ନର ଉତ୍ତର ଦେଇ କହିଲି, ଆପଣ ସାହା ଇନିଷ୍ଟିଚ୍ୟୁଟ୍‌ର ଡାଇରେକ୍ଟର ଥିବାବେଳେ ମୁଁ ଡକ୍ଟର ତ୍ରିଲୋଚନ ପ୍ରଧାନଙ୍କ ପାଖରେ ଗବେଷଣା କରିବାକୁ ଶାହା ଇନିଷ୍ଟିଚ୍ୟୁଟ୍‌କୁ ଯାଇଥିଲି । ଆପଣ ମୋତେ ଦେଖିଲେ ଚିହ୍ନି ପାରିବେ । ମୁଁ ତାଙ୍କୁ କହିଲି, "ଇଉ.ଜି.ସିରୁ ଅନୁଦାନ ପାଇ ଲୋ କଷ୍ଟ କ୍ଲାସ୍ ରୁମ୍ ଏକ୍ସପେରିମେଣ୍ଟ ଇନ୍ ପ୍ଲାଜମା ଫିଜିକ୍ସର ଏହି କର୍ମଶାଳାଟି ଆୟୋଜନ କରୁଛି । କର୍ମଶାଳା ଜୁନ୍ ୨୧ ତାରିଖରୁ ହେବ ।" ସେ କହିଲେ, ମୁଁ ଯିବି । କିନ୍ତୁ ମୋତେ ଯିବା ଆସିବା ପାଇଁ ଶୀତ ତାପନିୟନ୍ତ୍ରଣର ଫାଷ୍ଟ କ୍ଲାସ ଟିକେଟ୍ ଦେଲେ ମୁଁ ଯିବି ଏବଂ ତୁମ ଉଦ୍‌ଘାଟନ ସଭା ସରିଗଲା ପରେ ସଂଧ୍ୟାବେଳେ ପୁଣି ପୁରୀ ଏକ୍ସପ୍ରେସରେ ଫେରି ଆସିବି । ମୁଁ କହିଲି, "ଆପଣଙ୍କ କହିବା ଅନୁସାରେ ସେ ସବୁ ସୁବିଧା କରିଦେବି ।" "ତାହାହେଲେ ମୁଁ ନିଶ୍ଚୟ ଯିବି । ୨୧ ତାରିଖ ଦିନ ସକାଳେ ତୁମେ ପୁରୀ ଏକ୍ସପ୍ରେସରୁ ମୋତେ ନେଇ କେଉଁଠାରେ ସୁବିଧା କରି ରଖିବ । ସେହିଦିନ ରାତିରେ ମୋତେ ପୁଣି ପୁରୀ ଏକ୍ସପ୍ରେସରେ ପଠାଇ ଦେବ ।" ତାଙ୍କୁ କେଉଁଠାରେ ରଖାଇବି ସେହି କଥା ଚିନ୍ତା କରୁ କରୁ ଜଣେ କେହି କହିଲେ, ତୁମେ ଜିଲ୍ଲାପାଳଙ୍କ ପାଖକୁ ଯାଇ ତାଙ୍କ ଠାରୁ ଦୁଇଟି କୋଠରୀ ସର୍କିଟ ହାଉସ୍‌ରେ ସଂରକ୍ଷଣ କରି ଦିଅ । ସେହିଠାରେ ଅନ୍ୟ ଅତିଥିମାନେ ଆସିଲେ ତାଙ୍କୁ ସେଠାରେ ରଖିବ । ତାଙ୍କ କହିବା ମୁତାବକ ମୁଁ ଦିନେ ସକାଳୁ ଜିଲ୍ଲାପାଳଙ୍କୁ ଦେଖା କରିବାକୁ ଗଲି । ତାଙ୍କୁ ଦେଖା କରିବା ସମୟରେ ପୁରୀ କଲେଜର ମୋର ଜଣେ ସହପାଠୀ ସେଠାରେ ଉପସ୍ଥିତ ଥିଲେ । ମୁଁ ତାଙ୍କୁ ପଚାରିଲି, ବର୍ତ୍ତମାନ କିଏ ଜିଲ୍ଲାପାଳ ଅଛନ୍ତି । ସେ କହିଲେ ଅକ୍ଷୟ କୁମାର ଦାଶ । ସେ ମୋ ଚିଟ୍ ପାଇ ମୋତେ ତାଙ୍କ କୋଠରୀକୁ ଡାକିଲେ । ସେ ମୋତେ ଚିହ୍ନି ପାରିଲେ । ମୁଁ ତାଙ୍କୁ ସବୁକଥା କହିଲି । ସେ ସଙ୍ଗେ ସଙ୍ଗେ ଦୁଇଟି କୋଠରୀ ସର୍କିଟ୍ ହାଉସ୍‌ରେ ସଂରକ୍ଷଣ ପାଇଁ ନିର୍ଦ୍ଦେଶ ଦେଇଦେଲେ । ଅକ୍ଷୟ କୁମାର ଦାଶ ପୁରୀ କଲେଜରେ ଆଇ.ଏସ୍‌ସି ପଢିଲା ବେଳେ ଏକ ନମ୍ବର ଛାତ୍ରାବାସର ସହାଧ୍ୟାୟୀ ଥିଲେ । ତାପରେ ମୁଁ ସାଙ୍ଗେ ସାଙ୍ଗେ ଚାଲି ଆସିଲି । ୨୧ ତାରିଖ ଦିନ କଟକ ଷ୍ଟେସନକୁ ଯାଇ ଡକ୍ଟର ନାଗଚଉଧୁରୀଙ୍କୁ ସାଙ୍ଗରେ ଧରି କଟକ ସର୍କିଟ ହାଉସ୍‌ରେ ରଖାଇ ଦେଲି । ମୁଁ କହିଲି, ସଭାକାର୍ଯ୍ୟ ଆରମ୍ଭ ହେଲେ ମୁଁ ଆପଣଙ୍କୁ ଗାଡି ପଠାଇ ସର୍କିଟ୍ ହାଉସ୍‌ରୁ ନେଇଯିବି । ସେ ଠିକ୍ ସମୟ ଅନୁସାରେ ଆସି ପହଁଚି ଥିଲେ ।

ସମ୍ମାନସ୍ପଦ ମନ୍ତ୍ରୀ ନିରଞ୍ଜନ ପଟ୍ଟନାୟକ ଏକ ପ୍ଲାଜମା କୋଠରୀରେ ପ୍ଲାଜମା ପ୍ରସ୍ତୁତ କରି କର୍ମଶାଳାଟି ଉଦଘାଟନ କରିଥିଲେ । ତାପରେ ଡକ୍ଟର ନାଗ୍‌ଚଉଧୁରୀ ବକ୍ତା ହିସାବରେ ପ୍ଲାଜମା ଫିଜିକ୍ସ ଉପରେ ସାରଗର୍ଭକ ଭାଷଣ ଦେଇଥିଲେ । ଡକ୍ଟର ତ୍ରିଲୋଚନ ପ୍ରଧାନ ମୁଖ୍ୟ ଅତିଥି ରୂପେ ଆସିଥିଲେ । ମୁଖ୍ୟ ବିଚାରପତି ଆର.କେ ଦାସ ରେଭେନ୍ସା କଲେଜର ଗର୍ଭର୍ଣ୍ଣିଙ୍ଗ୍ ବଡିର ସଭାପତି ଭାବେ ସଭାପତିତ୍ୱ କରିଥିଲେ । ସଭାକାର୍ଯ୍ୟ ସରିଲା ପରେ ଗାଡିରେ ଡକ୍ଟର ଚଉଧୁରୀଙ୍କୁ ସର୍କିଟ ହାଉସରେ ଛାଡି ଦେଇଥିଲି ଓ ସେହିଦିନ ସଂଧ୍ୟା ବେଳକୁ ଆମଘରେ ରାତ୍ର

ଭୋଜନ ପାଇଁ ନିମନ୍ତ୍ରଣ କରିଥିଲି । ସଭାକାର୍ଯ୍ୟ ପରେ ମୁଁ ତାଙ୍କୁ ଆଣିବା ପାଇଁ ଗୋଟିଏ ଗାଡିନେଇ କଟକ ସର୍କିଟ୍ ହାଉସ୍‌କୁ ଯାଇଥିଲି । ସେ ମୋତେ ବିଅର ପିଇବା ପାଇଁ ଯାଚିଥିଲେ । ମୁଁ ମନାକଲି । ତାପରେ ସାଙ୍ଗ ହୋଇ ଆସିବା ପାଇଁ ବସିଲୁ କିନ୍ତୁ ଡ୍ରାଇଭରଟି କେଉଁଆଡେ ଗଲା ଆଉ ଆସିଲା ନାହିଁ । ମୁଁ ବଡ ବ୍ୟସ୍ତ ହୋଇ ପଡିଲି । ପଚାରିଲେ ଗାଡି କାହାର । ମୁଁ କହିଲି ଗାଡି ମୋର । ଚାବି ତ ଦେଇଛି ମୁଁ ଚଳାଇକରି ନେଇଯିବି । ମୁଁ ରାଜି ହୋଇଗଲି । ଆମେ ଦୁଇଜଣ ଗାଡିରେ ବସି ଘରେ ପହଁଞ୍ଚିଲୁ । ଘରେ ରାତ୍ର ଭୋଜନ କରି ସାରି ଷ୍ଟେସନ୍ ଗଲୁ । ତାଙ୍କୁ ଗାଡିରେ ବସାଇ ଦେଇ ଆସିଲି ।

ଶେଷଦିନ ମେଜର ପି.କେ ଦାସ ଉତ୍କଳ ବିଶ୍ୱବିଦ୍ୟାଳୟର ଉପକୁଳପତି ସଭାପତିତ୍ୱ କରିଥିଲେ ଏବଂ ପ୍ରଫେସର ମହେନ୍ଦ୍ର କୁମାର ରାଉତ୍ ପୂର୍ବ ଉପ-କୁଳପତି ପ୍ରଧାନ ଅତିଥି ଭାବେ ଯୋଗ ଦେଇଥିଲେ । ସେହି କର୍ମଶାଳାରେ ଯୋଗ ଦେଇଥିବା ସମସ୍ତ ଅଂଶୀଦାରମାନେ ଭିନ୍ନ ଭିନ୍ନ ପ୍ରକାର ଆକୃତିର ପ୍ଲାଜମା କୋଠରୀ, ପାୱାର ସପ୍ଲାଇ, ସ୍ୱିଚ୍, କମ୍ପ୍ୟୁଟେଟର, ପ୍ରୋବ୍ ଏବଂ ଫଟୋଗ୍ରାଫିକ୍ ଚାମ୍ବର ପ୍ରଭୃତି ପ୍ରସ୍ତୁତ କରିବା କାର୍ଯକ୍ରମ ଥିବା କର୍ମଶାଳାର ନିର୍ଦ୍ଦେଶକଙ୍କୁ ପ୍ଲାଜମା ଫିଜିକ୍ସ ପଢାଇବା ନିମନ୍ତେ ବହୁତ ଗୁଡିଏ ଉପାଦେୟ ଶସ୍ତା ଉପକରଣ ପ୍ରସ୍ତୁତ କରି ଥିବାରୁ ଅଂଶୀଦାର ମାନେ ଧନ୍ୟବାଦ ଦେଇଥିଲେ । ସେହିବର୍ଷ ପ୍ଲାଜମା ଫିଜିକ୍ସର ପ୍ରାକ୍‌ଟିକାଲ ପରୀକ୍ଷା ଚଳାଇବା ପାଇଁ ମୁଁ ଡକ୍ଟର ଗୁହଙ୍କୁ ନିମନ୍ତ୍ରଣ କରିଥିଲି ଏବଂ ସେ ମଧ୍ୟ ଆସିଥିଲେ । ପ୍ଲାଜମା ଫିଜିକ୍ସର ପରୀକ୍ଷା ଗୁଡିକ ଦେଖି ତାଙ୍କର ମନ ହେଲା ପ୍ଲାଜମା ଫିଜିକ୍ସ ଏକ୍ସପେରିମେଣ୍ଟଗୁଡିକ ରବିଶଙ୍କର ବିଶ୍ୱବିଦ୍ୟାଳୟରେ କରାଇବା ପାଇଁ । ସେ ମୋତେ କହିଲେ, ମୁଁ ଗୋଟିଏ ମେକାନିକ୍ ରେଭେନ୍‌ସା କଲେଜକୁ ଦୁଇମାସ ପାଇଁ ପଠାଇବି । ସେ ତୁମର ମେକାନିକ୍ ସାଙ୍ଗରେ ସବୁ ଉପକରଣ କିପରି ତିଆରି ହେଉଛି ତାହା ଦେଖି ଆସିବ ଏବଂ ଏଠାରେ ତିଆରି କରିବ । ମୁଁ ତାଙ୍କୁ କହିଲି, ଆପଣ ଅଫିସିଆଲ ଚିଠି ଦେବେ । ସେ ରାଜିହେଲେ । ତାପରେ ମୋ କହିବା ଅନୁସାରେ ମୋ ପାଖକୁ ତାଙ୍କ ହେଡ ଅଫ୍ ଦି ଡିପାର୍ଟମେଣ୍ଟ ଜରିଆରେ ଚିଠି ଦେଇଥିଲେ । ମୁଁ ତାଙ୍କୁ ନିର୍ଦ୍ଦିଷ୍ଟ ତାରିଖରେ ଆସିବା ପାଇଁ ଲେଖିଥିଲି । ସେ ମେକାନିକ୍ ଜଣଙ୍କ ନିର୍ଦ୍ଦିଷ୍ଟ ତାରିଖରେ ଆସିଥିଲେ ଏବଂ ଦୁଇମାସ କଟକରେ ଆମ ବିଭାଗରେ ରହି କାମ ଶିଖିଥିଲେ । ସେ ରାୟପୁର ଫେରିଯାଇ କେତେକ ଉପକରଣ ତିଆରି କରିଥିଲେ । ପରେ ମୋତେ ଡକ୍ଟର ଗୁହ ତାଙ୍କର ଗୋଟିଏ ପି.ଏଚ୍‌ଡି ଛାତ୍ର ଏବଂ ଦୁଇଟି ଏମ୍.ଫିଲ୍ ଛାତ୍ରଙ୍କର ମୌଖିକ ପରୀକ୍ଷା ପାଇଁ ବାହ୍ୟ ପରୀକ୍ଷକ ହେବାକୁ ଲେଖିଥିଲେ । ମୁଁ ମଧ୍ୟ ଯାଇଥିଲି । ସେ ଛାତ୍ରଙ୍କୁ ମୁଁ ପି.ଏଚ୍‌ଡି ମୌଖିକ ପରୀକ୍ଷାରେ କୃତକାର୍ଯ୍ୟ କରାଇ ଥିଲି ।

୧୯୮୭ମସିହାରେ ଗୋଟିଏ ସମର ସ୍କୁଲ୍‌ର ଆୟୋଜନ କରିବା ପାଇଁ 'ଡିପାର୍ଟମେଣ୍ଟ ଅଫ ସାଇନ୍‌ସ ଆଣ୍ଡ ଟେକ୍‌ନୋଲୋଜି'କୁ କିଛି ଟଙ୍କା ଅନୁଦାନ ଆକାରରେ ଦେବାପାଇଁ ଲେଖିଥିଲି । ସେହିବର୍ଷ ଜୁନ୍ ମାସରେ ଡିପାର୍ଟମେଣ୍ଟ ଅଫ୍ ସାଇନ୍‌ସ ଆଣ୍ଡ ଟେକ୍‌ନୋଲୋଜି ମୋର ପ୍ରସ୍ତାବ ଅନୁମୋଦନ କରିଛନ୍ତି ବୋଲି ମୋ ପାଖକୁ ଚିଠି ଆସିଲା ଏବଂ ସେଥିରେ

ଲେଖାଥିଲା, ତୁମେ ସମୁଦାୟ ଖର୍ଚ୍ଚର ହିସାବ ଲେଖିକରି ଜଣାଅ । ମୁଁ ଉତ୍ତର ଦେଲି ଜୁନ୍ ମାସରେ ହୋଇ ପାରିବ ନାହିଁ । କାରଣ ଜୁନ୍ ମାସରେ ମୁଁ ଗୋଟିଏ ସମର ସ୍କୁଲ୍ ପାଇଁ ଇଉ.ଜି.ସି ଠାରୁ ଗ୍ରାଣ୍ଟ ପାଇ ଆୟୋଜନ କରୁଛି । ତେଣୁ ମୁଁ ଏହି ସମର ସ୍କୁଲ୍‌କୁ ଉଇଣ୍ଟର ସ୍କୁଲ୍ ନାମରେ ନାମକରଣ କରି ଜାନୁଆରୀ ମାସରେ ଆୟୋଜନ କରିବାକୁ ଚାହୁଁଛି । ସେ ଚିଠିର ଉତ୍ତର ଡିସେମ୍ବର ମାସରେ ଆସିଗଲା ଏବଂ ୧ ଲକ୍ଷ,୪୦୦ ଟଙ୍କା ଅନୁଦାନ ମଞ୍ଜୁର । ମୋର କାମ ବହୁତ ବଢିଗଲା । ମୁଁ ଡି.ଏସ୍.ଟିକୁ ଜଣାଇ ଦେଲି, ଉଇଣ୍ଟର ସ୍କୁଲ୍‌ଟିକୁ ୧୦.୧.୧୯୮୮ ଠାରୁ ୨୫.୧.୧୯୮୮ ପର୍ଯ୍ୟନ୍ତ ଆୟୋଜନ କରିବି । ସେହି ଅନୁସାରେ ଗୋଟିଏ ବିଜ୍ଞାପନ ଭାରତର ସବୁ ବିଶ୍ୱବିଦ୍ୟାଳୟ ଏବଂ ରିସର୍ଚ୍ଚ ଇନିଷ୍ଟିଚ୍ୟୁଟ୍‌ର ଫିଜିକ୍ସ ଡିପାର୍ଟମେଣ୍ଟର ମୁଖ୍ୟ ମାନଙ୍କ ପାଖକୁ ପଠାଇ ଦେଲି । ତାଙ୍କୁ ଲେଖିଦେଲି ଆପଣ ଡିପାର୍ଟମେଣ୍ଟରୁ ଜଣେ ଅଧ୍ୟାପକଙ୍କ ନାମ ତାଙ୍କ ବାୟୋଡାଟା ସହିତ ମୋ ପାଖକୁ ପଠାଇ ଦିଅନ୍ତୁ । ଯଦି ସେ କୌଣସି କାରଣରୁ ଆସିପାରିବେ ନାହିଁ ତାହେଲେ ତୁମେ ଆଉ ଗୋଟିଏ ନାମ ସୁପାରିସ କରି ମୋ ଉତ୍ତରକୁ ଅପେକ୍ଷା ନ କରି ନିର୍ଦ୍ଦିଷ୍ଟ ଦିନରେ ପଠାଇ ଦେବେ ।

## ଜାତୀୟ ଆଲୋଚନା ଚକ୍ର, ସାଇନ୍ସ ଆଣ୍ଡ ଟେକ୍‌ନୋଲୋଜି ଗାନ୍ଧି ନଗର

୧୯୮୭ ମସିହା ଡିସେମ୍ବର ୨୮ରୁ ଡିସେମ୍ବର ୩୧ ତାରିଖ ମଧ୍ୟରେ ୪ର୍ଥ "ନେସନାଲ୍ ସିମ୍ପୋଜିଅମ୍ ଅନ୍ ସାଇନ୍ସ ଆଣ୍ଡ ଟେକ୍‌ନୋଲୋଜି ଅଫ୍ ପ୍ଲାଜମା" ଗାନ୍ଧୀ ନଗରରେ ଅନୁଷ୍ଠିତ ହେବ । ତୁମେ ଏକ ପ୍ରବନ୍ଧ ପଠାଇ ସିମ୍ପୋଜିଅମ୍‌ରେ ଯୋଗ ଦେବାକୁ ଅନୁରୋଧ କରୁଛି ବୋଲି ଚିଠି ପାଇଲି । ତେଣୁ ମୁଁ ଗୋଟିଏ ପ୍ରବନ୍ଧ ପଠାଇ ମୋତେ ପ୍ରଥମ ଶ୍ରେଣୀ ଟ୍ରେନ୍ ଭଡା ଦେବାପାଇଁ ଅନୁରୋଧ କରିଥିଲି । ଏହି ଚିଠିଟି ପଠାଇବାର କେତେ ଦିନ ପରେ ଡକ୍ଟର ପି.ଆଇ.ଜନ୍‌ଙ୍କ ଠାରୁ ଗୋଟିଏ ଚିଠି ଆସିଲା । ସେଥିରେ ଲେଖାଥିଲା ତୁମେ ପ୍ଲାଜମା ଫିଜିକ୍ସର ସିମ୍ପୋଜିଅମ୍ ସମୟରେ ଦୁଇବର୍ଷ ଭିତରେ କଅଣ କଅଣ ପ୍ଲାଜମା ଫିଜିକ୍ସର ଶସ୍ତା ଉପକରଣ ପ୍ରସ୍ତୁତ କରିଛ ତାହାର ରେଖାଚିତ୍ର ସ୍ୱଚ୍ଛ(Transparent) କାଗଜରେ ଲେଖି, ପ୍ଲାଜମା ଫିଜିକ୍‌ସର ଅଭିଜ୍ଞ ସଭ୍ୟମାନଙ୍କ ଆଗରେ ତୁମେ କରିଥିବା କାମ ଗୁଡିକ ଉପରେ ଗୋଟିଏ ବକ୍ତୃତା ଦିଅ । ତୁମକୁ ସିମ୍ପୋଜିଅମ୍‌କୁ ଆସିବା ପାଇଁ ପ୍ରଥମ ଶ୍ରେଣୀ ରେଳଭଡା ଦିଆଯିବ ନାହିଁ । କିନ୍ତୁ ଡି.ଏସ୍.ଟି.ରୁ ପାଇଥିବା ଅନୁଦାନ ଟଙ୍କାରେ ଗମନା ଗମନ ବାବଦରୁ ଖର୍ଚ୍ଚ କରି ଆସିବ । ତମ କାମ ଉପଯୁକ୍ତ ହୋଇ ନ ଥିଲେ ତୁମକୁ ଆଉ ଅବଶିଷ୍ଟ ଅନୁଦାନ ମିଳିବ ନାହିଁ । ଏହି ଚିଠିଟି ପାଇଲା ପରେ ଯିବାପାଇଁ ବାଧ୍ୟ ହେଲି । ତେଣୁ ମୁଁ ଠିକ୍ କଲି ଉଡାଜାହାଜରେ ଯିବି । ତାହାହେଲେ ମୋର କିଛି ସମୟ ନଷ୍ଟ ହେବ ନାହିଁ । ୨୪ ତାରିଖ ଦିନ ମୟୂର ଏଜେନ୍‌ସିରୁ ବମ୍ବେ ଦେଇ ଅହମ୍ମଦାବାଦ ପର୍ଯ୍ୟନ୍ତ ଗୋଟିଏ ମିତବ୍ୟୟ (Economy) କ୍ଲାସ୍‌ର ଉଡାଜାହାଜରେ ଟିକେଟ୍ କରି ଏବଂ ଅହମ୍ମଦାବାଦ ଠାରୁ ଦିଲ୍ଲୀ ଓ ରାୟପୁର ଦେଇ ଭୁବନେଶ୍ୱର ପର୍ଯ୍ୟନ୍ତ ଆସିବା ପାଇଁ ଟିକେଟ୍ କରିଦେଲି । ୨୭ ତାରିଖ ଦିନ ବମ୍ବେରେ ୪ଟା ବେଳେ ଓହ୍ଲାଇଲି । ତାର ଦୁଇ ଘଣ୍ଟା ପରେ ବମ୍ବେରୁ ଅହମ୍ମଦାବାଦ ଗଲି ।.

ଅହମ୍ମଦାବାଦ ବିମାନବନ୍ଦରରେ ସ୍ୱେଚ୍ଛା ସେବକ ମାନେ ମୋତେ ଏବଂ ଆଉ କେତେ ଜଣଙ୍କୁ ଗୋଟିଏ କାରରେ ନେଇ ଗାନ୍ଧୀନଗର ଠାରେ ତୋଳାଯାଇଥିବା ଅତିଥି ଭବନରେ ରଖାଇଲେ । ସେହି କୋଠରୀରେ ଡକ୍ଟର ଏସ୍.ଗୁହ ମଧ୍ୟ ରହିଥିଲେ । ୨୮ ତାରିଖ ଦିନ ଉଦ୍‌ଘାଟନ ଉତ୍ସବ ସରିଗଲା ପରେ ଯେଉଁମାନେ ସବୁ ଡି.ଏସ୍.ଟିରୁ ଅନୁଦାନ ପାଇଥିଲେ ସେମାନଙ୍କୁ ଅନ୍ୟ ଗୋଟିଏ କୋଠରୀରେ ଉପସ୍ଥିତ ରହିବାପାଇଁ କୁହାଯାଇଥିଲା । ସେଥିରେ ମୋତେ ଏବଂ ଅନ୍ୟ ମାନଙ୍କୁ ଜଣ ଜଣ କରି ଡାକି ଆମେ କରିଥିବା କାମ ଉପରେ ବକ୍ତୃତା ଦେବା ପାଇଁ କହିଥିଲେ । ମୁଁ ମଧ୍ୟ କରିଥିବା କାମର ଏକ ସଂକ୍ଷିପ୍ତ ବିବରଣୀ ସ୍ୱଚ୍ଛ କାଗଜ ସାହାଯ୍ୟରେ ପ୍ରଦାନ କରିଥିଲି । ସେମାନଙ୍କ ଭିତରେ ଜଣେ ନୂତନ ସଭ୍ୟ ମୋତେ ବହୁତ ଗୁଡ଼ିଏ ପ୍ରଶ୍ନ ପଚାରି ଥିଲେ । ତାଙ୍କ ନାମ ହେଉଛି ଡକ୍ଟର ଭେଙ୍କଟରମଣୀ । ତାଙ୍କର ସମସ୍ତ ପ୍ରଶ୍ନର ଉତ୍ତର ଦେଇଥିଲି । ତାପରେ ଡକ୍ଟର ଗୁହଙ୍କୁ ପ୍ରବର୍ତ୍ତାଇଲି ଆପଣ ଆସନ୍ତୁ ଉଡାଜାହାଜରେ ରାୟପୁର ପର୍ଯ୍ୟନ୍ତ ଯିବେ । ସେ ରାଜି ହେଉ ନ ଥିଲେ । କିନ୍ତୁ ଶେଷରେ ସାଙ୍ଗ ହୋଇ ଆମେ ଉଡାଜାହାଜରେ ଆସିଲୁ । ଡକ୍ଟର ଗୁହ ରାୟପୁର ଠାରେ ଓହ୍ଲାଇ ଯାଇଥିଲେ । ମୁଁ ପହିଲା ଦିନ ଉପର ବେଳା ଆସି କଟକରେ ପହଞ୍ଚିଲି ।

## ଶୀତକାଳୀନ ସ୍କୁଲ

ଗାନ୍ଧୀ ନଗରରୁ ଫେରିବା ପରେ ମୁଁ ଶୀତକାଳୀନ ସ୍କୁଲଟି (Winter School) ୧୯୮୮ ଜାନୁଆରୀ ୧୦ ତାରିଖରେ ଆୟୋଜନ କରିଥିଲି । ଶୀତ କାଳୀନ ସ୍କୁଲ୍ ପାଇଁ ଯେଉଁ ପ୍ରଫେସରମାନେ ଶିକ୍ଷକ ରୂପେ ଆସିବା ପାଇଁ ସ୍ୱୀକୃତି ପ୍ରଦାନ କରିଥିଲେ, ସେମାନଙ୍କ ପାଖକୁ ସଙ୍ଗେ ସଙ୍ଗେ ଜଣାଇ ଦେଲି, ସେମାନେ କେତେ ତାରିଖ, କେତେଟା ବେଳେ, କେଉଁ ଟ୍ରେନ୍‌ରେ କିମ୍ବା ଉଡାଜାହାଜରେ ଆସୁଛନ୍ତି, ତାହା ଜଣାଇଲେ ସେମାନଙ୍କୁ ନିର୍ଦ୍ଦିଷ୍ଟ ସ୍ଥାନରୁ ଆଣି ଉପଯୁକ୍ତ ଜାଗାରେ ରଖାଇବାର ବନ୍ଦୋବସ୍ତ କରିବି । ଯେଉଁମାନେ ଶୀତକାଳୀନ ସ୍କୁଲ୍‌ରେ ତାଲିମ୍ ନେବାପାଇଁ ଯୋଗ ଦେବାକୁ ସମ୍ମତି ଜଣାଇଛନ୍ତି ସେମାନେ ମଧ୍ୟ କେତେବେଳେ କଟକ ଷ୍ଟେସନରେ ପହଞ୍ଚିବେ ମୋତେ ଶୀଘ୍ର ଜଣାନ୍ତୁ । ତାହାହେଲେ ତାଙ୍କୁ ଷ୍ଟେସନରୁ ଆଣି ନିର୍ଦ୍ଦିଷ୍ଟ ଜାଗାରେ ରଖାଇବାର ବନ୍ଦୋବସ୍ତ କରିବି । ସେମାନଙ୍କ ରହିବା ପାଇଁ କଲେଜ ଛକ ପାଖରେ ଥିବା ଦୁଇ ତିନୋଟି ହୋଟେଲକୁ ଯାଇ କଥାବାର୍ତ୍ତା କରିଲି । ଶେଷରେ କଲେଜ ଛକ ନିକଟରେ ଏସିଆନ୍ ହୋଟେଲ୍‌ରେ ସମସ୍ତ ଯୋଗଦାନ କାରି ଏବଂ ଶିକ୍ଷକ ମାନଙ୍କୁ ରଖିବା ପାଇଁ ବ୍ୟବସ୍ଥା କଲି । ସେମାନଙ୍କ ଖାଇବା ପିଇବା ପାଇଁ ସମୁଦାୟ କେତେ ଲୋକ ଆସିବେ ତାହା ଦିନେ ଦୁଇଦିନ ପୂର୍ବରୁ କହିବି । ଶୀତକାଳୀନ ସ୍କୁଲ ସରିବା ପର୍ଯ୍ୟନ୍ତ ସେମାନେ ସେହି ହୋଟେଲରେ ଖାଇବା ଓ ରହିବାର ବ୍ୟବସ୍ଥା କରିଦେଲି । ହୋଟେଲ୍‌ର କର୍ମକର୍ତ୍ତା କହିଲେ କୌଣସି ଯୋଗଦାନକାରୀ ଯଦି ନ ଖାଇବେ ତାହାହେଲେ ତାଙ୍କ ପାଇଁ ମଧ୍ୟ ଆମକୁ ପଇସା ଦେବେ । ଶେଷରେ ମୁଁ ତାଙ୍କ କଥାରେ ରାଜିହୋଇ କହିଲି ଯଦି କୌଣସି ଦିନ ବା କୌଣସି ବେଳା ସମସ୍ତ ଯୋଗଦାନକାରି କେହି ନ ଖାଇବେ ତାହାହେଲେ ସେହି ବେଳାର ପଇସା ଆପଣଙ୍କୁ

ଦେବି ନାହିଁ । ସେଥିରେ ସେ ରାଜି ହୋଇଥିଲେ । ୯ ତାରିଖ ଦିନ ସଂଧ୍ୟା ବେଳକୁ ପ୍ରାୟ ଅଧିକାଂଶ ଯୋଗଦାନକାରୀ ଏବଂ ଡକ୍ଟର ଆର.କେ. ବର୍ମା ଉଡାଜାହାଜରେ ଆସି ଭୁବନେଶ୍ୱରରେ ପହଞ୍ଚିବେ ବୋଲି ଲେଖିଥିଲେ । ସେହି ଅନୁସାରେ ଭୁବନେଶ୍ୱର ଉଡାଜାହାଜ ପଡିଆକୁ ଗାଡି ପଠାଇ ଥିଲି । ସେ ଆସିଲା ପରେ ତାଙ୍କୁ ନେଇ ସେହି ହୋଟେଲରେ ବିଶିଷ୍ଟ ବ୍ୟକ୍ତି ମାନଙ୍କ କୋଠରୀରେ ରଖାଇଲି ।

ଏହି ଶୀତକାଳୀନ ସ୍କୁଲ୍‌ରେ ପ୍ରଫେସର ଘନଶ୍ୟାମ ଦାସ (ଡାଇରେକ୍ଟର ଅଫ ହାୟରର ଏଜୁକେସନ) ସଭାପତିତ୍ୱ କରିଥିଲେ ଏବଂ ରେଭେନ୍ସା କଲେଜର ଅଧ୍ୟକ୍ଷ ଡକ୍ଟର ଉମାକାନ୍ତ ମହାପାତ୍ର ସମ୍ମାନୀୟ ଅତିଥି ଭାବରେ ଯୋଗ ଦେଇଥିଲେ । ୨୦ ଜଣ ଅଧ୍ୟାପକ ଓ ରିସର୍ଚ୍ଚ ସ୍କଲାର ଯୋଗ ଦେଇଥିଲେ । ଏହି ଶୀତକାଳୀନ ସ୍କୁଲ୍‌ରେ ଶିକ୍ଷାଦାତା ହିସାବରେ ମୋତେ ମିଶାଇ ୭ ଜଣ ଯୋଗ ଦେଇଥିଲେ । ସେମାନେ ହେଲେ :-

୧). ରାଜସ୍ଥାନ ବିଶ୍ୱବିଦ୍ୟାଳୟର ଡକ୍ଟର ଏସ୍.ଆର.ଶର୍ମା ।
୨). ଦିଲ୍ଲୀ ଆଇ.ଆଇ.ଟିର ଡକ୍ଟର ଏ.ଚନ୍ଦ୍ରା ।
୩). ପି.ଆର.ଏଲ୍.ର ଡିରେକ୍ଟର ଡକ୍ଟର ଆର୍.କେ.ବର୍ମା ।
୪). ବି.ଏ.ଆର.ସି.ର ଡକ୍ଟର ଭି.କେ.ରୋହାତଗୀ ।
୫). ରବିଶଙ୍କର ବିଶ୍ୱବିଦ୍ୟାଳୟର ଡକ୍ଟର ଏସ୍.ଗୁହ ।
୬). ଦିଲ୍ଲୀ ଆଇ.ଆଇ.ଟି.ର ଡକ୍ଟର ଭି.କେ.ତ୍ରିପାଠୀ ।

ଏହି ଶୀତକାଳୀନ ସ୍କୁଲ୍‌ର ସମସ୍ତ ଅଂଶଗ୍ରହଣକାରୀମାନଙ୍କୁ କେତୋଟି ଗ୍ରୁପ୍‌ରେ ବିଭକ୍ତ କରାଯାଇଥିଲା ଏବଂ ପ୍ରତ୍ୟେକ ଗ୍ରୁପ୍ ଗୋଟିଏ ଦିନ ଗୋଟିଏ ଏକ୍ସପେରିମେଣ୍ଟ କରୁଥିଲେ । ତାଙ୍କ ଏକ୍ସପେରିମେଣ୍ଟର ସବୁଦିନର ଖାତା ମୋ ପାଖରେ ଜମା କରୁଥିଲେ । ଶୀତକାଳୀନ ସ୍କୁଲ୍‌ର ଶେଷରେ ପ୍ରତ୍ୟେକ ଦିନର ଖାତା ପରୀକ୍ଷା କରି ଡକ୍ଟର ଭି.କେ ରୋହତଗୀ ଓ ପ୍ରଫେସର ଏସ୍.ଆର.ଶର୍ମା ଭଲ ଭାବରେ ପରୀକ୍ଷା କରି ଥିବା ଦୁଇଟି ଗ୍ରୁପ୍‌କୁ ବାଛିଥିଲେ । ପ୍ରଥମ ଗ୍ରୁପ୍‌ରେ ଥିଲେ ଆହ୍ଲାବାଦ ବିଶ୍ୱବିଦ୍ୟାଳୟର ଡକ୍ଟର ଆଇ.ଏମ୍.ଏଲ୍. ଦାସ ଓ ମଗଧ ବିଶ୍ୱବିଦ୍ୟାଳୟର ଡକ୍ଟର ଏସ୍.ଏନ୍.ସିଂ, ଦ୍ୱିତୀୟ ଗ୍ରୁପ୍‌ରେ ଥିଲେ ଏମ୍.ଏସ୍ କଲେଜର ଡକ୍ଟର ଇଉ.ଏସ୍.ସିହ୍ନା, ଏନ୍.ଡି କଲେଜର ଶ୍ରୀ ଡି. ମଜୁମଦାର ଓ କର୍ଣ୍ଣାଟକ ବିଶ୍ୱବିଦ୍ୟାଳୟର ଶ୍ରୀ ଏସ୍. ଦାନାରେଡି । ବିଦାୟ କାଳୀନ ଉତ୍ସବରେ ରେଭେନ୍‌ସା କଲେଜର ଅଧ୍ୟକ୍ଷ ଉମାକାନ୍ତ ମହାପାତ୍ର ସଭାପତିତ୍ୱ କରିଥିଲେ ଏବଂ ଭି.କେ.ରୋହାତଗୀ ପ୍ରଧାନ ଅତିଥି ଓ ଏସ୍.ଆର.ଶର୍ମା ପ୍ରଧାନ ବକ୍ତା ହିସାବରେ ଯୋଗ ଦେଇଥିଲେ । ପରୀକ୍ଷାରେ ଭଲ କରିଥିବାରୁ ପ୍ରଥମ ଓ ଦ୍ୱିତୀୟ ଗ୍ରୁପ୍‌କୁ ଡକ୍ଟର ରୋହତାଗୀ ପୁରସ୍କାର ଦେଇଥିଲେ । ଏହିପରି ଭାବରେ ୨୫ ତାରିଖ ଦିନ ଶୀତକାଳୀନ ସ୍କୁଲ୍ ଶେଷ ହୋଇଥିଲା । ଏହା ଭିତରେ ସରକାର ମୋତେ ହାୟର ସେକେଣ୍ଡାରୀ ବୋର୍ଡର ସଭ୍ୟ ହିସାବରେ ମନୋନୀତ କରିଥିଲେ ଏବଂ ମୁଁ ଏକାଡେମିକ୍ କମିଟିର ସଭ୍ୟ ହିସାବରେ ନିର୍ବାଚିତ ହୋଇଥିଲି ।

ସେମାନେ ଯେଉଁ ହୋଟେଲରେ ଥିଲେ ରହିବାର ୧୨/୧୩ ଦିନ ପରେ ହୋଟେଲ୍‌ର ଖାଇବା ବଡ ନିମ୍ନମାନର ହୋଇଗଲା । ତେଣୁ ସମସ୍ତେ ମୋ ପାଖରେ ଅଭିଯୋଗ କରିଥିଲେ । ସେଥିପାଇଁ ଆମ ଘରେ ସମସ୍ତଙ୍କ ପାଇଁ ଖାଇବାର ବନ୍ଦୋବସ୍ତ କରିଦେଲି । ସମସ୍ତେ ଆମ ଘରେ ହୋଇଥିବା ଖାଇବା ପିଇବାରେ ସନ୍ତୋଷ ପ୍ରକାଶ କରିଥିଲେ । ଶେଷ ବେଳକୁ ଆମ ଘରେ ଗୋଟିଏ ଛୋଟିଆ ସାଂସ୍କୃତିକ କାର୍ଯ୍ୟକ୍ରମର ଆୟୋଜନ ହୋଇଥିଲା । ସେଥିରେ ମୋ ସ୍ତ୍ରୀ ନିଜ ଲେଖା ଗୋଟିଏ ଗୀତ ପରିବେଷଣ କରିଥିଲେ ଏବଂ ଡକ୍ଟର ଆର.କେ ତ୍ରିପାଠୀ ନିଜେ ଦୁଇ ତିନୋଟି ହିନ୍ଦି ଗୀତ ବୋଲିଥିଲେ ଓ ଆହ୍ଲାବାଦ ବିଶ୍ୱବିଦ୍ୟାଳୟର ଡକ୍ଟର ଆଇ.ଏମ୍.ଏଲ୍. ଦାସ ମଧ୍ୟ ହିନ୍ଦି ଗୀତ ବୋଲିଥିଲେ । ସେହି ସମୟରେ ଆମ ଘରେ ଓଡିଶାର ଘରୋଇ ଖାଦ୍ୟ ସବୁ ପରିବେଷଣ କରାଯାଇଥିଲା । ସେଠାରେ ଅଂଶଗ୍ରହଣ କାରୀମାନେ ଓଡିଶାର ଏହି ଖାଦ୍ୟ ଖାଇ ଆନନ୍ଦ ପ୍ରକାଶ କରିଥିଲେ ।

ଫେବୃଆରୀ ମାସ ଶେଷ ବେଳକୁ ମୁଁ କଲେଜରେ ଶୁଣିଲି ମୋର ଜି.ଏମ୍. କଲେଜ ସମ୍ବଲପୁରକୁ ପ୍ରିନ୍‌ସିପାଲ୍ ହିସାବରେ ବଦଳି ହେଉଛି । ତାର ଚାରି ପାଞ୍ଚ ଦିନ ପରେ ମୁଁ ଡି.ପି.ଆଇ.ଙ୍କ ଠାରୁ ଗୋଟିଏ ଚିଠି ପାଇଲି । ସେଥିରେ ଲେଖାଥିଲା ଓଡିଶା ସରକାର ଭାବୁଛନ୍ତି ତୁମକୁ ଜି.ଏମ୍. କଲେଜ ସମ୍ବଲପୁରରେ ଅଧ୍ୟକ୍ଷ ଭାବରେ ନିଯୁକ୍ତି ଦେବା ପାଇଁ । ତୁମେ କେତେ ଦିନ ଭିତରେ ଯୋଗ ଦେଇ ପାରିବ ସଙ୍ଗେ ସଙ୍ଗେ ଲେଖି ଜଣାଅ । ଏପରି ଚିଠି ମୁଁ ଜାଣିବାରେ କାହାରି ପାଖକୁ କେବେ ଆସିନାହିଁ । ଯେଉଁମାନେ ସେଠାରେ ଥିଲେ ଏ ଚିଠିଟି ଦେଖି ସମସ୍ତେ ବିସ୍ମୟ ପ୍ରକାଶ କଲେ । ଯେହେତୁ ଏପରି ଗୋଟିଏ ଚିଠି ଆସିଥିଲା ମୋତେ ତାର ଉତ୍ତର ଦେବାକୁ ପଡିବ । ତେଣୁ ମୁଁ ଲେଖିଲି ଡି.ଏସ୍.ଟି.ରୁ ଯେଉଁ ପରିଯୋଜନା ପାଇଥିଲି ତାହା ଆସନ୍ତା ବର୍ଷ ସରିବ । ତେଣୁ ଏହା ଭିତରେ ମୁଁ ସମ୍ବଲପୁରରେ ଯୋଗ ଦେଇ ପାରିବି ନାହିଁ । ଡି.ଏସ୍.ଟି.ର ନିୟମ ଅନୁସାରେ ଯେଉଁ ଅଧ୍ୟାପକଙ୍କୁ କୌଣସି ପରିଯୋଜନା ପାଇଁ କିଛି ଟଙ୍କା ଅନୁଦାନ ଆକାରରେ ଦିଆଯାଇ ଥାଏ, ପରିଯୋଜନା ସରିବା ପୂର୍ବରୁ ଯଦି ସରକାର ତାଙ୍କୁ ବଦଳି କରି ଦିଅନ୍ତି, ତାହାହେଲେ ସରକାରଙ୍କୁ ଅନୁଦାନ ଆକାରରେ ମିଳିଥିବା ଟଙ୍କା ଡି.ଏସ୍.ଟି.କୁ ଫେରାଇ ଦେବାକୁ ପଡିବ । ଏହା ଲେଖି ସରକାରଙ୍କୁ ଜଣାଇ ଦେଲି । ତାର କେତେଦିନ ପରେ ସରକାରଙ୍କ ଠାରୁ ଗୋଟିଏ ଚିଠି ପାଇଲି ଯେ ତୁମେ ଶୀଘ୍ର ରେଭେନ୍‌ସା କଲେଜରୁ ଅବ୍ୟାହତି ନେଇ ଖଲ୍ଲିକୋଟ କଲେଜ ବ୍ରହ୍ମପୁରରେ ଅଧ୍ୟକ୍ଷ ଭାବରେ ଯୋଗ ଦିଅ । ଏ ଚିଠିଟି ପାଇବା ପରେ ମୁଁ ଯାଇ ଶିକ୍ଷା ବିଭାଗର ସଚିବଙ୍କୁ ଦେଖାକରି ମୋର ପରିଯୋଜନା ବିଷୟରେ କହିଲି । ସେ ମୋତେ କହିଲେ ଆମେ ତୁମ ପରିଯୋଜନାର ଅସୁବିଧା କଥା ବିଚାର କରି ତୁମକୁ ସମ୍ବଲପୁରରେ ଅଧ୍ୟକ୍ଷ ଭାବରେ ନିଯୁକ୍ତି ନ ଦେଇ ଖଲ୍ଲିକୋଟ କଲେଜରେ ଅଧ୍ୟକ୍ଷ ଭାବରେ ନିଯୁକ୍ତ କରୁଅଛୁ । ତୁମର ଯାହା ଅସୁବିଧା ସେ ବିଷୟରେ ଲେଖି ସରକାରଙ୍କୁ ଜଣାଅ । ସେ ତୁଣ୍ଡରେ ମୋତେ କହିଲେ ତୁମ ଗବେଷଣା କୋଠରୀର ଚାବିଟି ତୁମ ପାଖରେ ରଖିବ । ଆଉ ସବୁ ସୁବିଧା କରି ଦିଆଯିବ । ତୁମେ ଯାଇ ଶୀଘ୍ର କାର୍ଯ୍ୟରେ ଯୋଗ ଦିଅ ଏବଂ

ପରେ ସୁବିଧା ହେଲେ ତୁମକୁ ରେଭେନ୍ସା କଲେଜର ଅଧ୍ୟକ୍ଷ ଭାବରେ ନିଯୁକ୍ତି ଦିଆଯିବ । ମୁଁ ରେଭେନ୍ସା କଲେଜରୁ ୨୩.୦୩.୧୯୮୮ ତାରିଖରେ ଅବ୍ୟାହତି ନେଲି ।

ମୁଁ ପୁରୀ କଲେଜରୁ ଆସି ରେଭେନ୍ସା କଲେଜରେ ଯୋଗ ଦେଲାପରେ ସେତେବେଳର ମୁଖ୍ୟ ଅଧ୍ୟାପକ ଡକ୍ଟର କେ.ଏସ୍.ଆର. ମୂର୍ତ୍ତିଙ୍କ ନିର୍ଦ୍ଦେଶରେ ପଞ୍ଚମ ବାର୍ଷିକ ବିଜ୍ଞାନରେ ଷ୍ଟାଟିସଟିକାଲ ମେକାନିକସ୍ ପଢାଇବା ଆରମ୍ଭ କରିଥିଲି । ପ୍ରାୟ ୧୧ ବର୍ଷ କାଳ ଷ୍ଟାଟିସ୍‌ଟିକାଲ୍ ମେକାନିକ୍ସ ପଢାଉଥିଲି । ମଝିରେ ମଝିରେ ଅନର୍ସ କ୍ଲାସ୍‌ରେ ଇଲେକ୍ଟ୍ରିସିଟି, ମ୍ୟାଗ୍ନେଟିଜିମ୍ କେତେ ବର୍ଷ, ଲାଇଟ୍ କେତେ ବର୍ଷ ଏବଂ ପ୍ରଥମ ବାର୍ଷିକ ବିଜ୍ଞାନରେ କେତେବର୍ଷ ପଢାଉ ଥିଲି । ଏହା ବ୍ୟତିତ ସ୍ନାତକୋତ୍ତର କ୍ଲାସ୍‌ରେ କେତେ ବର୍ଷ ମଡର୍ଣ୍ଣ ଫିଜିକ୍ସ ଓ କେତେ ବେଳେ ଅପ୍‌ଟିକ୍ସ୍‌ର ପ୍ରାକ୍ଟିକାଲ କ୍ଲାସ୍ ନେଉଥିଲି । ୧୯୮୫ ମସିହାରେ ରେଭେନ୍ସା କଲେଜରେ ଷଷ୍ଠ ବାର୍ଷିକ ଶ୍ରେଣୀରେ ପ୍ଲାଜମା ଫିଜିକ୍ସ କ୍ଲାସ୍ ଆରମ୍ଭ ହେବାରୁ ଥିଓରି ୪ ପିରିୟଡ ଓ ପ୍ରାକ୍‌ଟିକାଲ୍ ୬ ପିରିୟଡ କ୍ଲାସ ନେଉଥିଲି । ରେଭେନ୍ସା କଲେଜରୁ ଅବ୍ୟାହତି ନେବା ପର୍ଯ୍ୟନ୍ତ ପଢାଉଥିଲି । ରେଭେନ୍ସା କଲେଜରେ ୨/୩ ବର୍ଷ ଧରି ସାଇନ୍ସ ସୋସାଇଟିର ଉପସଭାପତି କାର୍ଯ୍ୟ ତୁଲାଇଥିଲି । ଏହା ବ୍ୟତିତ ଅଧ୍ୟକ୍ଷ ଯେତେବେଳେ ଯେଉଁ ଦାୟିତ୍ୱ ଦିଅନ୍ତି , ତାହା ମଧ୍ୟ ତୁଲାଉ ଥାଏ ।

## ଆଇ.ଏ.ପି.ଟିର କାର୍ଯ୍ୟନିର୍ବାହୀ ସଭ୍ୟ

୧୯୮୭ ମସିହାରେ ଆଇ.ଏ.ପି.ଟିର କାର୍ଯ୍ୟନିର୍ବାହୀ (Excucative) ସଭ୍ୟ ହିସାବରେ ନିର୍ବାଚିତ ହେବାପରେ, ସେହି ବର୍ଷ ମୋତେ କାର୍ଯ୍ୟନିର୍ବାହୀ ବୈଠକ ପାଇଁ ଆଗ୍ରା ଯିବାକୁ ପଡିଥିଲା । ନିର୍ଦ୍ଦିଷ୍ଟ ଦିନର ଆଗରୁ ଉତ୍କଳ ଏକ୍ସପ୍ରେସରେ କଟକରୁ ବସି ଆଗ୍ରାରେ ପ୍ରାୟ ସନ୍ଧ୍ୟା ବେଳକୁ ପହଁଞ୍ଚିଲି । ସେତେବେଳେ ଦୁଇ ଜଣ ସ୍ୱେଚ୍ଛା ସେବକ ପ୍ଲାଟଫର୍ମର ଗେଟ ପାଖରେ ଏକ ପୋଷ୍ଟରରେ ମୋ ନାମ ଲେଖି ଧରି ଛିଡା ହୋଇଥିଲେ । ତାଙ୍କ ସାଙ୍ଗରେ ଯାଇ ଆଗ୍ରାର ଗୋଟିଏ ହୋଟେଲ୍‌ରେ ରହିବା ପାଇଁ ମୋର ବନ୍ଦୋବସ୍ତ ହୋଇଥିଲା । ମୁଁ ସେଠାରେ ରହିଲି । ସେତେବେଳେ ମୁଁ କେବଳ ଡକ୍ଟର ଖଣ୍ଡେଲ୍‌ୱାଲାଙ୍କୁ ଚିହ୍ନିଥିଲି । ଡକ୍ଟର ଖଣ୍ଡେଲ୍‌ୱାଲା ଆଇ.ଏ.ପି.ଟିର ପ୍ରଥମ ସଂପାଦକ ଥିଲେ । ସେ ସେହି ହୋଟେଲରେ ରହୁଥିଲେ । ତାପର ଦିନ କାର୍ଯ୍ୟନିର୍ବାହୀ ସଭାରେ ଆଲୋଚନା ହେଲା । +୨ ପିଲାଙ୍କର ଫିଜିକ୍ସରେ ଗୋଟିଏ ପରୀକ୍ଷା ସର୍ବ ଭାରତୀୟ ସ୍ତରରେ କରାଯିବ । ସେହି ପରୀକ୍ଷାରେ ସବୁଠାରୁ ବେଶୀ ନମ୍ବର ରଖିଥିବା ୨୫ ଜଣ ପିଲାଙ୍କୁ ବଛା ଯାଇ ପ୍ରତ୍ୟେକଙ୍କୁ ଗୋଟିଏ ଲେଖାଏଁ ସ୍ୱର୍ଣ୍ଣ ପଦକ ଭାରତର ରାଷ୍ଟ୍ରପତିଙ୍କ ଦ୍ୱାରା ପ୍ରଦାନ କରାଯିବ ବୋଲି ନିଷ୍ପତ୍ତି ନିଆଗଲା । ସେହିଦିନ ଉପର ବେଳା ଆଇ.ଏ.ପି.ଟିର ସଭାପତି ଓ ମୁଁ ସାଙ୍ଗ ହୋଇ ଏକ ଲକ୍ଜ୍ୟୁରୀ ବସ୍‌ରେ ଦିଲ୍ଲୀ ଯାତ୍ରା କଲୁ । ଦିଲ୍ଲୀରେ ଗୋଟିଏ ହୋଟେଲ୍‌ରେ ରାତିରେ ରହିଲି । ତାପର ଦିନ ଡିପାର୍ଟମେଣ୍ଟ ଅଫ୍ ସାଇନ୍ସ ଆଣ୍ଡ ଟେକ୍‌ନୋଲୋଜିର କାର୍ଯ୍ୟାଳୟକୁ ଯାଇ ରେଭେନ୍ସା କଲେଜରେ ଗୋଟିଏ ଏକ୍ସପେରିମେଣ୍ଟାଲ ପ୍ଲାଜମା ଫିଜିକ୍ସ ଉପରେ ୱାର୍କସପ୍ କରିବା ପାଇଁ ଦେହାନ୍ ଦେଉଥିବା ଚିଠି ଉପରେ

ଆଲୋଚନା କରିବା ପାଇଁ ସାଇଣ୍ଟିଫିକ୍ ଅଫିସର ଡକ୍ଟର ସୁଲଭା ଗୁପ୍ତାଙ୍କ ସଙ୍ଗେ ଦେଖା କଲି ଏବଂ ମୋ ଅନୁଦାନର ଦ୍ୱିତୀୟ କିସ୍ତି କେବେ ପଠାଯିବ ସେ ସମ୍ବନ୍ଧରେ ଆଲୋଚନା କଲି । ତାପରେ ଡକ୍ଟର ସୁଲଭା ଗୁପ୍ତା ଆଉ ଜଣେ ସାଇଣ୍ଟିଫିକ୍ ଅଫିସରଙ୍କ ପାଖକୁ ୱାର୍କସପ୍ ଅନ୍ ପ୍ଲାଜମା ଫିଜିକ୍ସ ଉପରେ କଥା ବାର୍ତ୍ତା କରିବା ପାଇଁ ପଠାଇ ଦେଲେ । ତାଙ୍କ ନାମଟି ମୋର ମନେ ନାହିଁ । ସେ କହିଲେ ତୁମ ଫାଇଲ୍ ଯାଇଛି, କିନ୍ତୁ ଫେରି ନାହିଁ । ଫେରିବା ସଙ୍ଗେ ସଙ୍ଗେ ମୁଁ ଆପଣଙ୍କୁ ଚିଠି ଲେଖି ପଠାଇ ଦେବି । ତାପର ଦିନ ପୁଣି ଉତ୍କଳ ଏକ୍ସପ୍ରେସ୍‌ରେ ବସି କଟକ ଚାଲି ଆସିଲି ।

## ଆଇ.ଏ.ପି.ଟି. କାର୍ଯ୍ୟନିର୍ବାହି ଅଧିବେଶନରେ ଦୁଇଥର ଯୋଗଦାନ

୧୯୮୮ ମସିହା ସୁଦ୍ଧା ଆଉ ଦୁଇ ଥର କାର୍ଯ୍ୟନିର୍ବାହୀ ଅଧିବେଶନ ଥରେ ନାଗପୁରରେ ଏବଂ ଆଉଥରେ ରାୟପୁରରେ ହୋଇଥିଲା । ଏହି ଦୁଇ ଅଧିବେଶନରେ ଯୋଗଦେବା ପାଇଁ ମୁଁ ଯାଇଥିଲି । ନାଗପୁର ଅଧିବେଶନରୁ ଫେରିଲା ବେଳେ ମୁଁ ଜାଣିଲି ଯେ ଗାଡି ରାଉରକେଲାରେ ପହଞ୍ଚିବାକୁ ଡେରି ହେବ । ତେଣୁ ମୁଁ ନାଗପୁରରୁ ବାହାରିବା ପୂର୍ବରୁ ମୋର ଝିଅ ପ୍ରଭାତୀ ପାଖକୁ ଫୋନ୍ କରିଦେଇ ଥିଲି ଯେ ଗାଡି ଡେରି କରୁଛି ତେଣୁ ରାଉରକେଲାରେ ପହଞ୍ଚିବାରେ ରାତି ବେଶୀ ହୋଇଯିବ । ତେଣୁ ସନ୍ତିଙ୍କୁ କହିବୁ ଗାଡି ସମୟ ବୁଝି ମୋତେ ନେବା ପାଇଁ ଷ୍ଟେସନ୍ ଆସିବେ । ରାୟପୁର ଠାରେ ଜଣାପଡିଲା ବିଳାସପୁର ଠାରେ କୌଣସି ଅସୁବିଧା ଥିବାରୁ ଗାଡି ସେ ବାଟେ ନ ଯାଇ ଟିଟିଲାଗଡ ଦେଇ ସମ୍ବଲପୁର ବାଟେ ରାଉରକେଲାରେ ପହଞ୍ଚିବ । ରାଉରକେଲାରେ ପହଞ୍ଚିଲା ବେଳକୁ ରାତି ପ୍ରାୟ ଦୁଇଟା ଘଣ୍ଟେ ହୋଇ ଯାଇଥିଲା । ସନ୍ତି ଷ୍ଟେସନକୁ ଆସି ମୋତେ ଘରକୁ ନେଇଥିଲେ । ରାୟପୁରରେ କାର୍ଯ୍ୟନିର୍ବାହୀ ଅଧିବେଶନରେ ମୁଁ ମଧ୍ୟ ଯୋଗ ଦେଇଥିଲି । ସେଠାରେ ଏକ "କୌତୂହଳ" ନାମକ ବିଜ୍ଞାନ ସମ୍ବନ୍ଧୀୟ ଅନୁଷ୍ଠାନ ଥିଲା । ସମସ୍ତ କାର୍ଯ୍ୟନିର୍ବାହୀ ସଭ୍ୟ ଏହି ଅନୁଷ୍ଠାନକୁ ଦେଖିବାକୁ ଯାଇଥିଲେ । ସେ ଅନୁଷ୍ଠାନରେ କେତେ ଗୁଡିଏ ବିଜ୍ଞାନ ସମ୍ବନ୍ଧୀୟ ଛୋଟ ଛୋଟ ପରୀକ୍ଷା କରାଯାଇ ଦର୍ଶକ ମାନଙ୍କୁ ପ୍ରଦର୍ଶିତ ହେଉଥିଲା । ସେଠାରୁ ଫେରିଲା ବେଳକୁ ମୁଁ ଆଉ ଟ୍ରେନ୍‌ରେ ନ ଆସି ବଡି ସକାଳୁ ରାୟପୁରରୁ କଟକ ଆସୁଥିବା ଏକ ବସ୍‌ରେ ବସି ସମ୍ବଲପୁରରେ ପ୍ରାୟ ଦିନ ଦୁଇଟା ବେଳେ ପହଞ୍ଚିଲି । ସମ୍ବଲପୁରରୁ ବାଟରେ ଆସିଲା ବେଳେ ବସ୍ ଖରାପ ହୋଇଗଲା । କଣ୍ଡକ୍ଟର କହିଲା, ଗାଡି ଆଉ ଯାଇପାରିବ ନାହିଁ । ତାପରେ ଗାଡିର କଣ୍ଡକ୍ଟର ପାସେଞ୍ଜର ମାନଙ୍କୁ ଅଧା ପଇସା ଫେରାଇ ଦେଲା । ସେଦିନ ଯୋଗକୁ ସମ୍ବଲପୁରରୁ ଗୋଟିଏ ମୋଟର କାର କଟକ ପର୍ଯ୍ୟନ୍ତ ଆସୁଥିଲା । ସେ ଗାଡିରେ ମୋର ଜଣେ ଚିହ୍ନା ଲୋକ ବସିଥିଲେ । ଗାଡି ଅଟକାଇ ତାଙ୍କ ସାଙ୍ଗରେ କଟକ ସୁବିଧାରେ ଚାଲି ଆସିଲି ।

ଏହି ସମୟ ଭିତରେ ମୋର ପିଲାମାନଙ୍କ ବିଷୟରେ କିଛି ଲେଖିନାହିଁ । ମୋର ବଡ ଝିଅ ପ୍ରଭାତୀ ମିଶ୍ର ୧୯୭୪ ମସିହାରେ ରେଭେନସା କଲେଜରେ ପ୍ରଥମ ବର୍ଷ ବିଜ୍ଞାନ କ୍ଲାସ୍‌ରେ ନାମ ଲେଖାଇ ଥିଲା ଏବଂ ୧୯୭୬ ରେ ପ୍ରଥମ ଶ୍ରେଣୀରେ ଆଇ.ଏସ୍‌ସି ପାସ୍

କରିଥିଲା । ତାପରେ ଫିଜିକ୍ସ ଅନର୍ସ ନେଇ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସ୍ନାତକରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲା । ୧୯୮୧ ମସିହାରେ ବାଣୀ ବିହାରରୁ ସ୍ନାତକୋତ୍ତର ଶ୍ରେଣୀରେ (ଏ⁺) ଗ୍ରେଡରେ କୃତକାର୍ଯ୍ୟ ହୋଇଥିଲା । ତାର କେତେ ମାସ ପରେ ଶ୍ରୀ ପ୍ରଶନ୍ନ ମିଶ୍ର ନାମକ ଗଙ୍ଗାଧର ମେହେର କଲେଜର ଜଣେ ଫିଜିକ୍ସ ଅଧ୍ୟାପକ କଟକରେ ମୋ ବସାକୁ ଆସି ମୋତେ ଅନୁରୋଧ କଲେ ଆପଣଙ୍କ ଘରର ଆଉଟ୍ ହାଉସ୍‌ରେ ମୋ ଭଉଣୀ ଶ୍ରୀମତୀ ବିଷ୍ଣୁ ମିଶ୍ରଙ୍କୁ ଦୟାକରି ରହିବାର ବନ୍ଦୋବସ୍ତ କରିଦିଅନ୍ତୁ । ମୋ ଭଉଣୀ ରେଭେନ୍‌ସା କଲେଜରେ ଗ୍ରନ୍ଥ ତତ୍ତ୍ୱାବଧାରିକା (Librarian) ଭାବରେ ଚାକିରି ପାଇଛନ୍ତି । ସେ ଝିଅ ପିଲା ହୋଇଥିବାରୁ ଅନ୍ୟ କେଉଁଠାରେ ରହିବାର ସୁବିଧା ନାହିଁ । ମୁଁ କହିଲି ଆଉଟ୍ ହାଉସ୍ ତ ଖାଲି ନାହିଁ । ତେଣୁ ଅଳ୍ପ କେତେଦିନ ପାଇଁ ମୋ ଅତିଥି କୋଠରୀରେ ରହିଯାଆନ୍ତୁ । ଆଉଟ୍ ହାଉସ୍ ଖାଲି ହେଲେ ତାହାଙ୍କୁ ସେଠାରେ ରଖାଇ ଦେବି । ତାର ଦୁଇ ତିନି ଦିନ ପରେ ବିଷ୍ଣୁ ମିଶ୍ର ଏବଂ ତାଙ୍କର ବଡ଼ ଭଉଣୀ ବିଜୟା ମିଶ୍ର ଆସି ଆମଘରେ ମୋ ସ୍ତ୍ରୀଙ୍କ ସାଙ୍ଗରେ କଥାବାର୍ତ୍ତା କଲେ । ବିଜୟା ମିଶ୍ର ରାଉରକେଲା ପଲିଟେକ୍‌ନିକ୍ ସ୍କୁଲ୍‌ରେ ଫିଜିକ୍ସ ଅଧ୍ୟାପକ ଥିଲେ । କଥା ପ୍ରସଙ୍ଗରେ ମୋ ସ୍ତ୍ରୀ ତାଙ୍କୁ କହିଲେ ରାଉରକେଲା ମ୍ୟୁନିସ୍‌ପାଲ୍ କଲେଜରେ ଗୋଟିଏ ଫିଜିକ୍ସ ଅଧ୍ୟାପକ ପାଇଁ ବିଜ୍ଞାପନ ବାହାରିଛି । ତାପରେ ସେ କହିଲେ, ରାଉରକେଲା ମ୍ୟୁନିସ୍‌ପାଲ କଲେଜଟି ଭଲ କଲେଜ ଏବଂ ସେମାନେ ଇଉ.ଜି.ସି ହାରରେ ଦରମା ଦିଅନ୍ତି । ଆପଣଙ୍କ ଝିଅ ସେଠାକୁ ଦରଖାସ୍ତ କରନ୍ତୁ । ସେ କହିଲେ, ସେ ରାଉରକେଲା ଫେରିଗଲେ ଆପଣଙ୍କ ଘରକୁ ତାଙ୍କଦ୍ୱାରା ଅଧ୍ୟାପକ ନିଯୁକ୍ତି ବିଷୟରେ ଅନ୍ୟାନ୍ୟ ବିଷୟ ଲେଖି ପଠାଇବି । ତାର ଦୁଇ ଦିନପରେ ସେ ସମ୍ବଲପୁର ଚାଲି ଗଲେ । ତାଙ୍କ ସାନ ଭଉଣୀ ସେହିଦିନ ଠାରୁ ଆମ ଘରେ ରହିଲେ । ତାର ପାଞ୍ଚ ଛଅ ଦିନ ପରେ ମ୍ୟୁନିସ୍‌ପାଲ୍ କଲେଜ ବିଷୟରେ ସବୁ ଟିକ୍ ନିଖ୍ ଖବର ଚିଠିରେ ଲେଖି ପଠାଇଲେ । ତା ସହିତ ମ୍ୟୁନିସ୍‌ପାଲ୍ କଲେଜରେ ଚାକିରୀ କରିବା ପାଇଁ ଦରଖାସ୍ତ ଫର୍ମର ନକଲ ପଠାଇ ଥିଲେ । ତାପରେ ମୋ ଝିଅ ଚାକିରୀ ପାଇଁ ଦରଖାସ୍ତ କଲା । ସେହି ସମୟରେ ମୋ ସାନ ଭିଣୋଇଙ୍କ ଝିଅର ଦିଅର ଶ୍ରୀ ଗୁରୁପଦ ନନ୍ଦ ରାଉରକେଲାର ଏମ୍.ଏଲ୍.ଏ ଥିଲେ । ତାଙ୍କ ଘରର ମୁରବି ଶ୍ରୀ ମାୟାଧର ନନ୍ଦଙ୍କ ଘର ସହିତ ଆମର ଯିବା ଆସିବା ଥିଲା । ତେଣୁ ଆମେ ଶ୍ରୀ ମାୟାଧର ନନ୍ଦଙ୍କ ଘରୁ ଫୋନ ନମ୍ବର ଆଣି ଗୁରୁପଦଙ୍କ ସହିତ ଫୋନ୍‌ରେ କଥା ହେଲୁ । ଗୁରୁପଦ କହିଲେ କଲେଜ ମ୍ୟାନିଜିଙ୍ଗ୍ କମିଟିରେ ମୁଁ ଜଣେ ସଦସ୍ୟ ଅଛି । ତେଣୁ ମୁଁ ସବୁ ଖବର ଆପଣଙ୍କୁ ଦେଇ ପାରିବି । ଆପଣଙ୍କ ଝିଅ ବିଷୟରେ ସବିଶେଷ ବିବରଣୀ ଦିଅନ୍ତୁ । ମୁଁ ବୁଝାବୁଝି କରିବି । ତାର କେତେ ଦିନ ପରେ ଝିଅର ସାକ୍ଷାତକାର ପାଇଁ ଚିଠି ଆସିଲା । ମୋ ସ୍ତ୍ରୀ ଏବଂ ମୋ ଝିଅ ରାଉରକେଲା ଯାଇ ଭାଣିଜୀ ଘରେ ରହିଲେ । ସାକ୍ଷାତକାର ପରେ ସେ ଆଉ କିଛି ଖବର ଦେଇ ନ ଥିଲେ । ତାପରେ ଆମର ଧାରଣା ହେଲା, ବୋଧେ ତାର ହେଲାନାହିଁ । କିନ୍ତୁ ଅଳ୍ପ କେତେ ଦିନ ପରେ ତା ନିକଟକୁ ନିଯୁକ୍ତି ପତ୍ର ଆସିଗଲା । ସେତେବେଳେ ସେହି ବିଜୟା ମିଶ୍ର ମ୍ୟୁନିସ୍‌ପାଲ କଲେଜ ନିକଟବର୍ତ୍ତୀ

ଘରେ ରହୁଥିଲେ । ତେଣୁ ମୋ ଝିଅ ପ୍ରଭାତୀ ମିଶ୍ର ସେଠାରେ ରହିବା ପାଇଁ ଠିକ୍ କଲା କାରଣ ମୋ ଭାଣିଜୀର ଘର କଲେଜ ଠାରୁ ବହୁତ ଦୂର । ସେହି ବର୍ଷ ଖରା ଛୁଟିରେ ମୁଁ ଏବଂ ମୋ ସ୍ତ୍ରୀ, ଝିଅ କେଉଁଠାରେ କିପରି ଅଛି ବୁଝିବା ପାଇଁ ଯାଇଥିଲୁ । ଆମ ମନକୁ ସେହି ଜାଗାଟି ପାଇଲା ନାହିଁ । କାରଣ ତାହା ଏକ ନିଛାଟିଆ ଜାଗା ହୋଇଥିବାରୁ, ମୋ ଝିଅକୁ ମୋ ଭାଣିଜୀ ଘରେ ରଖିବାର ବନ୍ଦୋବସ୍ତ କଲୁ । ତାପରେ ଚାଲି ଆସିଲୁ । ସେ ରାଉରକେଲା ମ୍ୟୁନିସିପାଲ କଲେଜରେ ଅଧ୍ୟାପିକା ଭାବରେ ଯୋଗ ଦେଇଥିଲା । ତାର ବିବାହ ୧୯୮୩ ମସିହା ମାର୍ଚ୍ଚ ୧୦ ତାରିଖରେ ହୋଇଥିଲା ।

ମୋର ଦ୍ୱିତୀୟ ଝିଅ ଡକ୍ଟର ପ୍ରଣତୀ ମିଶ୍ର ୧୯୭୭ ରେ ହାଇସ୍କୁଲ୍ ପରୀକ୍ଷା ପାସ୍ କଲା ଏବଂ ୧୯୭୯ ରେ ରେଭେନ୍ସା କଲେଜରୁ ଆଇ.ଏସ୍‌ସି ପାସ୍ କଲା । ୧୯୮୧ରେ ଭୂଗୋଳ ଅନର୍ସ ନେଇ ସ୍ନାତକ ଶ୍ରେଣୀରୁ ପ୍ରଥମ ଶ୍ରେଣୀରେ ପାସ୍ କଲା । ରେଭେନ୍ସା କଲେଜରେ ସ୍ନାତକୋତ୍ତର କ୍ଲାସ୍‌ରେ ଆପ୍ଲାଏଡ୍ ଜୋଗ୍ରାଫି (Applied Geography) ରେ ଏମ୍.ଏସ୍‌ସି ପଢି ଉତ୍କଳ ବିଶ୍ୱବିଦ୍ୟାଳୟରୁ ୧୯୮୩ ମସିହାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ବିଶ୍ୱବିଦ୍ୟାଳୟର ସ୍ୱର୍ଣ୍ଣ ପଦକ ପାଇଥିଲା । ତାର କେତେଦିନ ପରେ ଢେଙ୍କାନାଳର "ପ୍ଲାନିଂ ଆଣ୍ଡ କୋଅର୍ଡିନେସନ୍ ଡିପାର୍ଟମେଣ୍ଟରେ" ଯୋଗ ଦେଇଥିଲା । ତାପରେ ୧୯୮୮ ମସିହା ମଇ ମାସରେ ସରକାରଙ୍କ ଠାରୁ ଉଚ୍ଚ ଶିକ୍ଷା ପାଇଁ ଛୁଟି ନେଇ ବନାରସ୍‌ରେ ପିଏଚ୍.ଡି କରିବାକୁ ଯାଇଥିଲା । ସେହି ବର୍ଷ ୧୯୮୮ ମସିହାରେ ଝିଅକୁ ଦେଖିବା ପାଇଁ ଜୁନ୍ ମାସରେ ମୁଁ ଏବଂ ମୋ ସ୍ତ୍ରୀ ବନାରସ୍ ଯାଇଥିଲୁ । ଆମେ ବନାରସ୍‌ରେ ଓହ୍ଲାଇ ପୁଣି ଯାଇ ଡକ୍ଟର ନନ୍ଦଲାଲ ସିଂଙ୍କ ଘରେ ରହିଲୁ । କୁନିର ଛାତ୍ରାବାସକୁ ଯାଇ ତା ସାଙ୍ଗରେ କଥା ବାର୍ତ୍ତା କଲୁ । କୁନିର ଯେ ଉପଦେଷ୍ଟା(Guide) ହରପ୍ରିୟା ଦେବିଙ୍କ ସଙ୍ଗେ ଦେଖା କଲୁ ଏବଂ ତାଙ୍କୁ ଅନୁରୋଧ କଲୁ ତାର ସୁବିଧା ଅସୁବିଧା ଦୟାକରି ବୁଝିବେ । ଡକ୍ଟର ନନ୍ଦଲାଲ ସିଂଙ୍କ ଘରକୁ ସେତେବେଳର ଥିବା ଫିଜିକ୍ସ ପ୍ରଫେସର ଡକ୍ଟର ଡି.କେ ରାୟ ଆସିଥିଲେ । ତାଙ୍କ ସଙ୍ଗେ ଚିହ୍ନା ପରିଚୟ ହେବାପରେ ତାଙ୍କୁ ମୁଁ ମଧ୍ୟ ଅନୁରୋଧ କଲି ଝିଅର ସୁବିଧା ଅସୁବିଧା ବୁଝିବା ପାଇଁ । ଆମେ ଦିନେ ଦୁଇଦିନ ରହି ଫେରିବା ପାଇଁ ଟିକେଟ କରିବାକୁ ଯାଇଥିଲୁ । କିନ୍ତୁ ଟିକେଟ୍ ମିଳିଲା ନାହିଁ । ବନାରସ୍ ଠାରୁ ଆଦ୍ରା ପର୍ଯ୍ୟନ୍ତ ଟିକେଟ୍ ମିଳିଲା । ଯାହା ହେଉ ଆମେ ସ୍ଲିପରେ ଦୁଇଖଣ୍ଡ ଟିକେଟ୍ କରିଦେଇ ଆସିଲୁ । ସଂଧ୍ୟା ବେଳେ ଟ୍ରେନ୍‌ରେ ବସି ଆଦ୍ରା ଷ୍ଟେସନରେ ସକାଳେ ପହଁଞ୍ଚିଲୁ । ସେଠାରୁ ଗୋଟିଏ ବସ୍ ଧରି ଜାମସେଦ୍‌ପୁର ଅଭିମୁଖେ ଯାତ୍ରାକଲୁ ଏବଂ ଜାମସେଦ୍‌ପୁରରେ ଓହ୍ଲାଇ ମୋର ସାନନାନୀ ଘରେ ପ୍ରାୟ ଦୁଇଟାରେ ପହଁଞ୍ଚିଲୁ । ସେଠାରେ ଦୁଇଦିନ ରହି ତାପର ଦିନ ସକାଳୁ ଟାଟା ନଗର ଠାରୁ କଟକ ପର୍ଯ୍ୟନ୍ତ ବସ୍‌ରେ ଟିକେଟ୍ କରି ଆସିଲୁ । ସେଦିନ ବସ୍ ଅଧିକ ଭିଡ ହୋଇଥାଏ । କାରଣ ସେହିଦିନ ବାରିପଦାରେ ରଥଯାତ୍ରା ଉତ୍ସବ ପାଳନ କରାଯାଉ ଥାଏ । ବାରିପଦାରେ ବସ୍ ବଦଳାଇ ଅନ୍ୟ ବସ୍‌ରେ ସେହି ଟିକେଟରେ ଆସି ସଂଧ୍ୟା ପରେ ପହଁଞ୍ଚିଲୁ ।

ମୋର ବଡ ପୁଅ ରଞ୍ଜନ ମିଶ୍ର ହାଇସ୍କୁଲ ସାର୍ଟିଫିକେଟ ପରୀକ୍ଷାରେ ଆଇ.ଏସ୍‌ସି ଏବଂ ବି.ଏସ୍‌ସି ପାସ୍ କରି ବମ୍ବେରେ ଏ.କେ.ବୀରଙ୍କ ତତ୍ତ୍ୱାବଧାନରେ ସିନେମା ସୁଟିଂ କରିବା ପାଇଁ ଟ୍ରେନିଂ ନେଲା । ସାନ ପୁଅ ପ୍ରଜମନ୍ ମିଶ୍ର କଟକର ରେଲୱେ ହାଇସ୍କୁଲ୍‌ରୁ ବୋର୍ଡ ସାର୍ଟିଫିକେଟ ପରୀକ୍ଷାରେ ପାସ୍ କରି ୧୯୮୭ ମସିହାରେ ରେଭେନ୍‌ସା କଲେଜରେ କେମେଷ୍ଟ୍ରି ଅନର୍ସ ନେଇ ବି.ଏସ୍‌ସି ପଢୁଥିବା ସମୟରେ ଓଡିଶା ଇଞ୍ଜିନିୟରିଂ କଲେଜରେ ନାମ ଲେଖାଇଲା ।

## ଏଲ.ଡି.ପି. ରାୟ ଦୋକାନରେ ଛାଡିଆସିଥିବା କାଲ୍‌କୁଲେଟର ମିଳିଲା

ଏହି ସମୟରେ ଆଉ ଗୋଟିଏ କୌତୂହଳ ଘଟଣା ଘଟିଲା । ଘଟିଣାଟି ହେଲା କଟକରେ ଥିବା ବେଳେ ଶ୍ରୀ ଏଲ୍.ଡି.ପି. ରାୟ(ତାଙ୍କ ନାମ ଲାଲା), ମୋ ପାଖରେ ଗବେଷଣା କରୁଥିବା ସମୟରେ ମୋ ଠାରୁ ଗୋଟିଏ କାଲ୍‌କୁଲେଟର (ହିସାବ ଗଣନା ଯନ୍ତ୍ର) ମାଗିକରି ଘରକୁ ନେଇଥିଲେ । ତାପର ଦିନ ଆସିଲା ବେଳେ ଗୋଟିଏ ଛୋଟ ପାନ ଦୋକାନରେ ପାନ କିଣି ଅନ୍ୟମନସ୍କ ଭାବରେ କାଲକୁଲେଟରଟି ସେହି ଦୋକାନରେ ଛାଡିଦେଇ ଚାଲି ଆସିଲେ । ଡିପାର୍ଟମେଣ୍ଟ କୋଠରୀରେ ପହଁଞ୍ଚିଲା ପରେ ତାଙ୍କର ମନେ ପଡିଲା ଯେ ସେ ଦୋକାନରେ କାଲକୁଲେଟରଟି ଛାଡି ଦେଇ ଆସିଛନ୍ତି । ସେ ଦୋକାନକୁ ଦୌଡିକରି ଗଲେ । ଦୋକାନରେ ପିଲାଟିଏ ବସିଥାଏ । ସେ ମନାକଲା, କହିଲା ଆପଣ ଏଠାରେ ଛାଡି ନାହାଁନ୍ତି । ସେ ମୋ ପାଖକୁ ଆସି ବହୁତ ଦୁଃଖ କରି କହିଲେ । ମୁଁ କହିଲି ତମେ ତାକୁ ଟଙ୍କା ଦେବି ବୋଲି କହି ଖୋସାମତ କର । ଆମ ଘରୁ ଗୋଟିଏ ଟେପ୍ ରେକର୍ଡର ତାଙ୍କୁ ଦେଲି ଏବଂ କହିଲି ତାକୁ ଖୋସାମତ୍ କଲାବେଳେ ଟେପ୍‌ରେକର୍ଡଟି ଅନ୍ କରିଦେବ । ସେ ତାହା ମଧ୍ୟ କରିଥିଲେ । ସେ ପିଲାଟି କହିଲା ଆଉଜଣେ ଲୋକ ଆସିଥିଲେ, ସେ କାଳେ ନେଇ ଯାଇଥିବେ ମୁଁ ତାଙ୍କୁ ପଚାରେ । ଆପଣ ଅଧଘଣ୍ଟା ଛାଡି ଆସନ୍ତୁ । ସେ ତାକୁ ପୁଣି ଖୋସାମତ କରି କହିଲେ, ମୋ ଚାକିରି ଚାଲିଯିବ ମୁଁ ତୁମକୁ ହଜାର ଟଙ୍କା ଦେବି । ତୁମେ ଆଣିକରି ଦିଅ । ଆମେ ଟେପ୍‌ରେକର୍ଡରୁ ଦୁହିଁଙ୍କର କଥା ଶୁଣିଲୁ । ସବୁ କଥା ଠିକ୍ ଭାବରେ ହୋଇଥିଲା । ଅଧଘଣ୍ଟାଏ ପରେ ପୁଣି ଥରେ ଯିବାରୁ ସେ ପିଲାଟି କହିଲା ବାବୁ ପଇସା ଆଣିଛନ୍ତି ? ମୁଁ ସେ ଲୋକ ଠାରୁ ଟଙ୍କା ଦେଇକରି କଲକୁଯେର ଆଣିଛି । ଆପଣ ଟଙ୍କା ଦେଲେ ମୁଁ ଦେଇଦେବି, ନ ହେଲେ ମୁଁ ତାଙ୍କୁ ଫେରାଇ ଦେବି । ଲାଲା ସେ ପିଲାକୁ କହିଲା ମୁଁ ଆଠଶହ ଟଙ୍କା ଦଉଛି । କାଲି ବାକି ଆଉ ଦୁଇଶହ ଟଙ୍କା ଦେଇଦେବି । ମୋତେ କାଲକୁଲେଟରଟି ଆଜି ଦିଅ । ନୋଟର ନମ୍ବର ଗୁଡିକ ଆଗରୁ ଟିପିକରି ରଖିଥିଲି । ତାକୁ ଟଙ୍କା ଦେବାରୁ ସେ କାଲକୁଲେଟର ଦେଇଦେଲା ତାପରେ ଲାଲାର ଜଣେ ସାଙ୍ଗଙ୍କୁ ସେହି ସମୟରେ ପହଁଞ୍ଚିବାକୁ କହିଥିଲେ । ତା ପାଖରେ ଟେପ୍‌ରେକର୍ଡଟି ଥୋଇ ଦେଲେ । ସେ କହିଲେ ମୁଁ ତତେ ଯେଉଁ ଟଙ୍କା ଦେଇଛି ସେ ନୋଟର ନମ୍ବର ମୋ ପାଖରେ ଅଛି । ପୁଲିସ୍ ଆସିଲେ ମାମୁଁ ଘରକୁ ଯିବୁ । ସାଙ୍ଗେ ସାଙ୍ଗେ ତାର ସ୍ୱର ବଦଳି ଗଲା । ସେ କହିଲା ମୁଁ ଟଙ୍କା ଫେରାଇ ଦେଉଛି ମୋତେ ଛାଡି ଦିଅନ୍ତୁ । ତାପରେ ତାକୁ ଛାଡି କାଲ୍‌କୁଲେଟର ନେଇ ପଳାଇ ଆସିଲେ ।

ରେଭେନ୍ସା କଲେଜରେ ଥିବାବେଳେ ଶ୍ରୀ ଅଜିତ୍ କୁମାର ମହାନ୍ତି ନାମକ ଜଣେ ଛାତ୍ର ଯେଉଁଦିନ ଏମ୍.ଏସ୍‌ସି ପ୍ରାକ୍ଟିକାଲ ପରୀକ୍ଷା ଦେଉଥିଲେ ସେଦିନ ମୋ ଦେହ ଟିକିଏ ଖରାପ ଥିବାରୁ ମୁଁ କଲେଜ ଯାଇ ନ ଥିଲି । ପ୍ରାୟ ୧୨ଟା ବେଳେ ସେ ଆସି ଆମ ଘରେ ପହଞ୍ଚିଲେ । ମୋତେ କହିଲେ ମୋର "ହଲ ଇଫେକ୍ଟ"(Hall effect) ପରୀକ୍ଷାରେ ପଡିଛି । କିନ୍ତୁ ପରୀକ୍ଷାଟି ହେଉନାହିଁ । ସେ ବ୍ୟତିବ୍ୟସ୍ତ ହୋଇ କହିଲେ, ମୁଁ ପରୀକ୍ଷାରେ ଫେଲ୍ ହୋଇଯିବି । ପଇସା ପତ୍ର ବହୁତ ଅଭାବ, ଟିକିଏ ସାହାଯ୍ୟ କରନ୍ତୁ । ମୁଁ ତାଙ୍କ ଠାରୁ ସବୁ କଥା ଶୁଣିଲା ପରେ ଜାଣି ପାରିଲି ତାଙ୍କର କ'ଣ ଅସୁବିଧା ହୋଇଛି । ପରୀକ୍ଷାଟି କାହିଁକି ହେଉନାହିଁ । ତାଙ୍କୁ କଣ କରିବାକୁ ହେବ, ମୁଁ ତୁରନ୍ତରେ ବତାଇ ଦେଲି । ପରୀକ୍ଷା ସରିଲା ପରେ ସେ ମୋତେ କହିଲେ ଆପଣଙ୍କ ସାହାଯ୍ୟରୁ ମୋର ପରୀକ୍ଷାରେ ଭଲ ହୋଇଗଲା । ସେ ଏମ୍.ଏସ୍‌ସିରେ ଫାଷ୍ଟକ୍ଲାସ ପାଇ ବି.ଏ.ଆର.ସି ରେ ଗବେଷଣା କରିବା ପାଇଁ ଯୋଗ୍ୟ ବିବେଚିତ ହୋଇଥିଲେ । ସେ କଟକରେ ମୋ ସାଙ୍ଗରେ ଦେଖା କରି ମୋତେ କହିଲେ ଆପଣ ମୋତେ ସାହାଯ୍ୟ କଲେ ମୁଁ ବି.ଏ.ଆର.ସି.ରେ ଗବେଷଣା କରି ପାରିବି । ମୁଁ ତାଙ୍କୁ ପଚାରି ବୁଝିବାରୁ ସେ କହିଲେ, ମୁଁ ତାଙ୍କ ପାଇଁ ଦାୟୀ (Security) ରହିବି । ଦାୟୀ ରହିବା ପାଇଁ ମୋତେ ଅନୁରୋଧ କଲେ । ସେ ବହୁତ ଗରିବ ପିଲା, ତେଣୁ ସାହାଯ୍ୟ କରିବା ପାଇଁ କହିଲେ । ମୁଁ ଦାୟୀ ରହିବା ପାଇଁ ରାଜି ହେଲି । ସେ ଯାଇ ବମ୍ବେରେ ଗବେଷଣା କଲେ । କେତେ ଦିନ ପରେ ମୁଁ ଖବର କାଗଜରୁ ଜାଣିଲି ଯୁବ ବୈଜ୍ଞାନିକ ଭାବରେ ସେ ଯୋଗ୍ୟ ବିବେଚିତ ହୋଇ ଏକ ପୁରସ୍କାର ପାଇଛନ୍ତି ।

## ଅଧ୍ୟକ୍ଷ, ଖଲ୍ଲିକୋଟ କଲେଜ

୧୯୮୮ ମସିହା ମାର୍ଚ୍ଚ ୨୫ ତାରିଖରେ ଖଲ୍ଲିକୋଟ କଲେଜର ଅଧ୍ୟକ୍ଷ ଭାବରେ ଯୋଗ ଦେଲି । ତାର ମାସେ ପରେ ସରକାରଙ୍କ ଠାରୁ ଗୋଟିଏ ଚିଠି ପାଇଲି । ସେଥିରେ ଲେଖାଥିଲା, "ପତିତପାବନ ମିଶ୍ର ପ୍ରିନ୍‌ସିପାଲ, ଖଲ୍ଲିକୋଟ କଲେଜ, ରେଭେନ୍ସା କଲେଜର ଗବେଷଣା କୋଠରୀକୁ ନିଜ ଦାୟିତ୍ୱରେ ରଖିପାରିବେ ଏବଂ ସେ ପନ୍ଦର ଦିନରେ ଥରେ ବ୍ରହ୍ମପୁରରୁ କଟକ ଆସି ତାଙ୍କ ଗବେଷଣା ସମ୍ବନ୍ଧୀୟ କାମ ତଦାରଖ କରିପାରିବେ ।" ସରକାରଙ୍କର ସେହି ଚିଠି ଅନୁସାରେ ମୁଁ ଚାକିରୀରୁ ଅବସର ନେବା ପର୍ଯ୍ୟନ୍ତ ପନ୍ଦର ଦିନରେ ଥରେ କଟକ ଆସୁଥିଲି ଏବଂ ମୋ ଗବେଷଣା କାମ ତଦାରଖ କରୁଥିଲି । ମୁଁ ଖଲ୍ଲିକୋଟରେ ପ୍ରଫେସର ଥିବା ସମୟରେ ଦୁଇଜଣ ପିଲା ଶ୍ରୀମତୀ ତପସ୍ୱିନୀ ମିଶ୍ର ଓ କୁମାରୀ ସୁଚିସ୍ମିତା ମହାନ୍ତି ମୋ ତତ୍ତ୍ୱାବଧାନରେ ଗବେଷଣା କରି ଏମ୍.ଫିଲ୍. ଡିଗ୍ରୀ ପାଇବା ପାଇଁ ଯୋଗ୍ୟ ବିବେଚିତ ହୋଇଥିଲେ ।

ଖଲ୍ଲିକୋଟ କଲେଜରେ ଶୁଣିଲି ଯେଉଁ ଭଲ ପିଲାମାନେ ଖଲ୍ଲିକୋଟ କଲେଜକୁ ଦୂରରୁ ପଢିବା ପାଇଁ ଆସନ୍ତି, ସେମାନଙ୍କୁ ସ୍ଥାନୀୟ ପିଲାମାନେ ନାମ ଲେଖାଇବାକୁ ଦିଅନ୍ତି ନାହିଁ । ଏହି ବିଷୟ ସଂପର୍କରେ ଅନ୍ୟ ପ୍ରଫେସରମାନଙ୍କ ସଙ୍ଗେ କଥାବାର୍ତ୍ତା କରି ଜାଣିଲି, ସେ କଲେଜରେ ଡାକ ଦ୍ୱାରା ଆଡମିଶନ୍ ହୁଏ । ମୁଁ ପଚାରିଲି, କିପରି ତାହା କରାଯାଏ ? ପିଲାମାନେ ସରକାରଙ୍କ ତିଆରି ପ୍ରସ୍‌ପେକ୍‌ଟସ୍ ଅନୁସାରେ ନିର୍ଦ୍ଦିଷ୍ଟ ତାରିଖ ପୂର୍ବରୁ ଡାକ ଦରଖାସ୍ତ ଦେବେ । ନିର୍ଦ୍ଦିଷ୍ଟ ତାରିଖ ପରେ ଦରଖାସ୍ତ ଗୁଡିକରୁ ଯେଉଁମାନଙ୍କୁ ଆଡମିଶନ୍ ଦିଆଯିବ, ସେମାନଙ୍କର ଦରଖାସ୍ତ ଫର୍ମକୁ ଅଲଗା କରି ଦିଆଯାଏ ଏବଂ ତାଙ୍କ ପାଖକୁ ଚିଠି ରେଜିଷ୍ଟ୍ରି ଡାକରେ ପଠାଯାଏ "ତୁମେ ଆଡମିଶନ ନେବାପାଇଁ ଯୋଗ୍ୟ ବିବେଚିତ ହୋଇଛ । ଏଣୁ ତୁମେ ନିର୍ଦ୍ଦିଷ୍ଟ ପରିମାଣର ବ୍ୟାଙ୍କ ଡ୍ରାଫ୍ଟ ଅଧ୍ୟକ୍ଷଙ୍କ ନାମରେ କରି ତା ସହିତ ତୁମର କଲେଜ ଲିଭିଙ୍ଗ ସାର୍ଟିଫିକେଟ, ଡିଗ୍ରୀ ପରୀକ୍ଷାର ପ୍ରୋଭିଜ୍‌ନାଲ ସାର୍ଟିଫିକେଟ ଓ ମାର୍କସିଟ୍ ରେଜିଷ୍ଟ୍ରି ଡାକରେ ପଠାଇ ଦେବ । ଯଦି ତୁମ ସାର୍ଟିଫିକେଟରେ କିଛି ଭୁଲ୍ ଥାଏ କିମ୍ବା ମିଥ୍ୟା ସାର୍ଟିଫିକେଟ ହୋଇଥାଏ, ତେବେ ତୁମର ଆଡମିଶନ ହେବ ନାହିଁ ଏବଂ ତୁମକୁ ଜଣାଇ ଦିଆଯିବ । ତୁମ ବ୍ୟାଙ୍କ ଡ୍ରାଫ୍‌ଟ ତୁମେ ପରେ କଲେଜରୁ ଆସିନେଇ ଯିବ ।" ଯେଉଁ ମାନଙ୍କର ଆଡମିଶନ ହୋଇଗଲା ସେମାନଙ୍କର ପ୍ରକୃତ(Original) ମାର୍କସିଟ୍ କଲେଜରେ ଫେରାଇ ଦିଆଯିବ । ତେଣୁ ସେମାନଙ୍କୁ ଜଣାଇ ଦିଆଯାଉଛି ଯେ ସେମାନେ ନିର୍ଦ୍ଦିଷ୍ଟ ତାରିଖର ବହୁ ଆଗରୁ ବ୍ୟାଙ୍କ ଡ୍ରାଫ୍ଟ ଏବଂ ଅନ୍ୟାନ୍ୟ ସବୁ କାଗଜ ପତ୍ର ରେଜିଷ୍ଟ୍ରି କରିଦେବେ । ତାପରେ ଆଡମିଶନ୍ ସୁରୁଖୁରୁରେ ହୋଇଯିବ । ନାମଲେଖାର କେତେଦିନ ପରେ କଲେଜ ନିର୍ବାଚନ ପାଇଁ ବିଜ୍ଞାପନ ଦିଆଗଲା । ବିଜ୍ଞାପନରେ ପିଲାଙ୍କୁ ସତର୍କ କରାଇ ଦିଆଗଲା, କଲେଜ କାନ୍ଥରେ କୌଣସି ଲେଖା ବା ପୋଷ୍ଟର ମାରିବ ନାହିଁ । ନିର୍ବାଚନ ମଧ୍ୟ ସୁରୁଖୁରୁରେ ହୋଇଗଲା । ତାପରେ ପୋଷ୍ଟ ଗ୍ରାଜୁଏଟ୍ ପରୀକ୍ଷା ଆସିଲା । ପିଲାମାନେ ଦାବିକଲେ ପରୀକ୍ଷା କେତେ ଦିନ ଘୁଞ୍ଚାଇ ଦିଆଯାଉ । ଏହା କହି ପରୀକ୍ଷା ବର୍ଜନ କଲେ । ଦିନେ ହଠାତ୍ ଶୁଣିଲୁ ପିଲାମାନଙ୍କ କଥାରେ ପରିଚାଳକ (Administrator) ପରୀକ୍ଷା ଘୁଞ୍ଚାଇ ଦେବାକୁ ରାଜି ହୋଇଛନ୍ତି । ତେଣୁ କଲେଜ ଶାନ୍ତ ପଡିଗଲା । କିନ୍ତୁ ପରିଚାଳକ ପରୀକ୍ଷାକୁ ପ୍ରାୟ ଛଅ ମାସ ଘୁଞ୍ଚାଇ ଦେଲେ । ପରୀକ୍ଷାର୍ଥୀ ବହୁତ ଅସନ୍ତୁଷ୍ଟ ହେଲେ । ବହୁତ ଚେଷ୍ଟା କଲେ ପରୀକ୍ଷା ଆଗକୁ ଆଣିବାକୁ, କିନ୍ତୁ ପରିଚାଳକ ମନା କଲେ । ବିଶ୍ୱବିଦ୍ୟାଳୟ ନିୟମ ଅନୁସାରେ କୌଣସି ପରୀକ୍ଷା ଆଗୁଆ ହୋଇପାରିବ ନାହିଁ ।

## ଓଡଗାଁର ରଘୁନାଥ ମନ୍ଦିର ଓ ଶରଣକୁଳର ଲଡୁବାବା ମନ୍ଦିର ପରିଦର୍ଶନ

ଖଲ୍ଲିକୋଟ କଲେଜରେ ଅଧ୍ୟକ୍ଷ ଥିବାବେଳେ ମୋତେ ଥରେ ଆସିକା କଲେଜକୁ ପରୀକ୍ଷା କରିବାପାଇଁ ଯିବାକୁ ପଡିଥିଲା । ସେଠାରେ ପରୀକ୍ଷା ସରିବାପରେ ମୁଁ ପଚାରିଲି, ଏଠାରୁ କିପରି କଟକ ଯାଇହେବ । ସେମାନେ କହିଲେ ଏଠାରୁ ସିଧା କଟକ ଯାଇହେବ ନାହିଁ । ଆପଣ ବ୍ରହ୍ମପୁର ଯାଇ ସେଠାରୁ ଯାଇପାରିବେ । କିନ୍ତୁ ଆପଣ କଟକରେ ପହଁଞ୍ଚିଲା ବେଳକୁ ରାତି

ହୋଇଯାଇ ପାରେ । ତେଣୁ ସେମାନେ କହିଲେ ରାତିରେ ରହିଯାଆନ୍ତୁ, କାଲି ସକାଳେ ଯିବେ । ମୁଁ ତାଙ୍କୁ ପଚାରିଲି, ଓଡଗାଁ ଦେଇ କଟକ ଯାଇହେବ କି ନାହିଁ ? ଜଣେ କହିଲେ, ଯାଇହେବ ଏବଂ ଆପଣଙ୍କୁ ବସ୍ ଦୁଇ ସ୍ଥାନରେ ବଦଳାଇବାକୁ ପଡିବ । ସେମାନେ କହିଲେ, ଆସିକାରୁ ସକାଳୁ ଗୋଟିଏ ବସ୍ ବୁଗୁଡା ଦେଇ ଅନ୍ୟ କେଉଁ ଆଡେ ଯାଏ (ମୋର ତାହା ମନେନାହିଁ) । ଆପଣ ବୁଗୁଡା ଠାରେ ଓହ୍ଲାଇ ପଡିବେ ଏବଂ ଅନ୍ୟ ଗୋଟିଏ ବସ୍‌ଧରି ଓଡଗାଁ ଠାରେ ପହଁଞ୍ଚିବେ । ଓଡଗାଁ ଠାରୁ ଆପଣ କଟକ ବସ୍‌ରେ ଯାଇପାରିବେ । ମୋର ଓଡଗାଁଠାରେ ରଘୁନାଥଙ୍କୁ ଦର୍ଶନ କରିବାର ଇଚ୍ଛା ଥାଏ । ତେଣୁ ମୁଁ ଆସିକା ଠାରୁ ବୁଗୁଡା ଗଲି ଓ ବୁଗୁଡାରୁ ଗାଡି ବଦଳାଇ ଓଡଗାଁ ଗଲି । ଓଡଗାଁରୁ ଓହ୍ଲାଇ ରଘୁନାଥଙ୍କ ଦର୍ଶନ କରି କିଛି ପ୍ରସାଦ ନେଇ ଶରଣକୁଳ ବସ୍ ପାଇଁ ଅପେକ୍ଷା କରି ରହିଲି । ଓଡଗାଁଠାରେ ବସ୍‌ରେ ବସି ପୁଣି ଶରଣକୁଳ ଠାରେ ଓହ୍ଲାଇଲି । ଶରଣକୁଳରେ ଲଡୁବାବାଙ୍କ ଦର୍ଶନ କରି ପୁଣି ବସ୍‌ରେ ବସି କଟକ ଆସିଲି ।

## ଖଲ୍ଲିକୋଟ କଲେଜ ଇଉନିୟନ୍‌ର ବାର୍ଷିକ ଅଧିବେଶନ

ଛାତ୍ର ଇଉନିୟନର ନିର୍ବାଚିତ ସଭ୍ୟମାନେ ଟଙ୍କା ଦାବି କଲେ କଲେଜର ବାର୍ଷିକ ଉତ୍ସବ କରିବା ପାଇଁ । କଲେଜ ଇଉନିଅନ୍‌ର (Union) ସଭାପତି (President) ଓ ସେକ୍ରେଟାରୀ ମୋତେ କହିଲେ, କେତେ ଗୁଡିଏ ଚିଠି ଲେଖିକରି କାହା ନାମ ନ ଲେଖି ଖାଲି ଛାଡି ଦିଅନ୍ତୁ ଏବଂ ଆପଣ ଦସ୍ତଖତ କରି ଆମକୁ ଦେଇ ଦିଅନ୍ତୁ । ଆମେ ନାମଟା ପଛରେ ପୂରଣ କରିଦେବୁ । ମୁଁ ତାଙ୍କୁ ବୁଝାଇ ଦେଲି । କେଉଁମାନଙ୍କୁ ଡକା ହେବ ତାହା କାର୍ଯ୍ୟକାରୀ ସଭାରେ ନିର୍ଣ୍ଣୟ କରାଯିବ । ସେହିମାନଙ୍କ ପାଖକୁ ମୁଁ କେବଳ ଚିଠି ଲେଖିବି । ସେହି ଚିଠି ମଧ୍ୟ ତୁମକୁ ଦେଇପାରେ । କିନ୍ତୁ ଅନ୍ୟ କୌଣସି ନାମରେ ଚିଠି ଲେଖିବି ନାହିଁ । ସେ ରାଜି ହୋଇଗଲେ । କଲେଜ ଅଫିସରୁ ଟଙ୍କା ନେଇ ଅତିଥିମାନଙ୍କୁ ନିମନ୍ତ୍ରଣ କରିବା ପାଇଁ ଦିଲ୍ଲୀ ଗଲେ । ତାଙ୍କ କହିବା ଅନୁସାରେ କେହି ଅତିଥି ରାଜି ହେଲେନାହିଁ । ତେଣୁ କହିଲେ, ଆଉ କେତେ ଜଣଙ୍କ ନାମରେ ଚିଠି ଦିଅନ୍ତୁ । ମୁଁ କହିଲି, କାର୍ଯ୍ୟକାରୀ ସଭାରେ ନିଷ୍ପତ୍ତି ନ ହେଲେ ମୁଁ ଦେବି ନାହିଁ । ଶେଷରେ କାର୍ଯ୍ୟକାରୀ ସଭା ବସିଲା । କେତେ ଗୁଡିଏ ନାମ ନିର୍ଣ୍ଣୟ କରାଗଲା । ସେଥିରେ ସ୍ଥାନୀୟ ଏମ୍.ଏଲ୍.ଏଙ୍କ ନାମ ମଧ୍ୟ ଥିଲା । ସବା ଶେଷରେ ସ୍ଥାନୀୟ ଏମ୍.ଏଲ.ଏ ପ୍ରଧାନ ଅତିଥି ଭାବେ କଲେଜର ବାର୍ଷିକ ଉତ୍ସବକୁ ଆସିଲେ । ତାପରେ ମନୋରଞ୍ଜନ ବିଭାଗର (Entertainment) ସମ୍ପାଦକ ମୋତେ କହିଲେ ଡ୍ରାମା ପାଇଁ ଟଙ୍କା ଦେବାକୁ । ଡ୍ରାମା ଦାୟିତ୍ୱରେ ଯେଉଁ ଅଧ୍ୟାପକ ଥିଲେ ତାଙ୍କଠାରୁ ବୁଝିଲି ଏହି କଲେଜର ଡ୍ରାମା ଖରାବେଳେ ହୁଏ । ତାର କାରଣ ହେଉଛି କଲେଜ ପଢୁ ନ ଥିବା କେତେକ ପିଲା ଡ୍ରାମା ସେକ୍ରେଟାରୀଙ୍କ ଠାରୁ ପଇସା ଦାବି କରନ୍ତି (ଦାଦା ବଟି ଆଦାୟ କରନ୍ତି) । ଏପରି ହୁଏ ଯେ ଲାଇଟ୍ କଟିଯିବା କିମ୍ବା ବୋମା ଫୁଟିବାର ଉଦାହରଣ ଅଛି । ଏଣୁ ଡ୍ରାମାଟି ଖରାବେଳେ ହେବ । ତାହାହିଁ ହେଲା ।

## କଳାହାଣ୍ଡି ପରିଭ୍ରମଣ

ମୁଁ ଆଗରୁ ଲେଖିଛି ମୋ ଝିଅ ପ୍ରଣତୀ ମିଶ୍ର ବନାରସ୍ ଯାଇ ସେଠାରେ ଗବେଷଣା କରୁଥିଲା । ତାର ଗବେଷଣାର ବିଷୟ ବସ୍ତୁ ହେଲା, ଅନୁନ୍ନତ କଳାହାଣ୍ଡି ଜିଲ୍ଲାର କିପରି ଉନ୍ନତି କରାଯାଇ ପାରିବ । ତେଣୁ ତାହାର ଉପଦେଷ୍ଟା (Guide) ତାକୁ ଉପଦେଶ ଦେଲେ, ତୁମେ ଓଡିଶାର କଳାହାଣ୍ଡି ଯାଇ ସେଠାର ଲୋକମାନଙ୍କ ବିଷୟରେ କିଛି ତଥ୍ୟ ଏବଂ କିଛି ଫଟୋ ସଂଗ୍ରହ କରିଆସ । ତାହାହେଲେ ତୁମର ଥିସିସ୍‌ଟି ସଂପୂର୍ଣ୍ଣ ହେବ । ତେଣୁ ମୋତେ ସେ ଚିଠି ଲେଖିଲା, ମୁଁ ଥରେ କଳାହାଣ୍ଡି ଯିବି । ତୁମେ ଯେଉଁଦିନ କହିବ ମୁଁ ତା ଆଗରୁ କଟକରେ ପହଁଞ୍ଚିବି । ମୋର ଯେତେଦୂର ମନେଅଛି ଖଲ୍ଲିକୋଟ କଲେଜର ନିର୍ବାଚନ ପରେ ମୋର କଳାହାଣ୍ଡିରେ ଆଇ.ଏସ୍‌ସି ପ୍ରାକ୍‌ଟିକାଲ ପରୀକ୍ଷା ପାଇଁ ଚିଠି ଆସିଥିଲା । ମୁଁ ତାର ଦିନେ ଦୁଇଦିନ ପରେ କୁନି(ପ୍ରଣତୀ)କୁ ଏକ ନିର୍ଦ୍ଦିଷ୍ଟ ତାରିଖ ଦିନ କଳାହାଣ୍ଡି ଯିବା ପାଇଁ ଲେଖିଥିଲି । ସେ ଦିନଟି ମୋର ମନେ ନାହିଁ । ତାକୁ ଚିଠି ଦେବାପରେ କଟକରୁ ବୁଝାବୁଝି କଲି କଳାହାଣ୍ଡିରେ କିଏ ଜିଲ୍ଲାପାଳ ଅଛନ୍ତି । ଜାଣିଲି ଶ୍ରୀ ଅରବିନ୍ଦ ବେହେରା କଳାହାଣ୍ଡିର ଜିଲ୍ଲାପାଳ ଅଛନ୍ତି । ତାପରେ ଜାଣିଲି ତାଙ୍କ ଭଉଣୀ ଭାରତୀ ବେହେରା ରେଭେନ୍‌ସା କଲେଜର ଉଦ୍ଭିଦ ବିଜ୍ଞାନରେ ଅଧ୍ୟାପକ ଅଛନ୍ତି । ସେ ହେଉଛନ୍ତି ଜଣେ ସନନ୍ଦ ପ୍ରାପ୍ତ ହିସାବ ନିରୀକ୍ଷକ (Chartered Accountant) ଶ୍ରୀ ଜୟନ୍ତ ବାବୁଙ୍କ ପତ୍ନୀ । ସେ ସନନ୍ଦ ପ୍ରାପ୍ତ ହିସାବ ନିରୀକ୍ଷକ ମୋର ଆୟକରର (Income Tax) ହିସାବ ବୁଝୁଥିଲେ । ତେଣୁ ମୁଁ ତାଙ୍କୁ ଆଗରୁ ଚିହ୍ନି ଥିଲି । ସେହି ସମୟର କେତେଦିନ ଆଗରୁ ଡି.ଏସ୍.ଟିରୁ ଗୋଟିଏ ଚିଠି ଆସିଥିଲା, ତୁମେ ୧୯୮୭/୧୯୮୮ର ତୁମର ପରିଯୋଜନା ପାଇଁ ଖର୍ଚ୍ଚ କରିଥିବା ସମସ୍ତ ଟଙ୍କାର ହିସାବ ଜଣେ ବେସରକାରୀ ସନନ୍ଦ ପ୍ରାପ୍ତ ହିସାବ ନିରୀକ୍ଷକଙ୍କ ଠାରୁ ସାର୍ଟିଫିକେଟ ନେଇ ପଠାଇଲେ ତୁମର ଦ୍ୱିତୀୟ କିସ୍ତି ଅନୁଦାନ ମିଳିବ । ସେଥିପାଇଁ ମୋର ତାଙ୍କ ସଙ୍ଗେ ଭଲ ଚିହ୍ନା ପରିଚୟ ହୋଇ ଯାଇଥିଲା । ତେଣୁ ତାଙ୍କ ପାଖକୁ ଯାଇ ଶ୍ରୀ ଅରବିନ୍ଦ ବେହେରାଙ୍କ ପାଖକୁ ଫୋନ୍ କରିବା ପାଇଁ ଅନୁରୋଧ କଲି । ଅରବିନ୍ଦ ବାବୁ କହିଲେ, ଅଧ୍ୟକ୍ଷଙ୍କ ପାଇଁ କଳାହାଣ୍ଡି ସର୍କିଟ ହାଉସ୍‌ରେ ଏକ ବଡ଼ କୋଠରୀରେ ରହିବାର ବନ୍ଦୋବସ୍ତ କରିଦେବି । କଳାହାଣ୍ଡିରେ କେମିତି ପହଁଞ୍ଚିବାକୁ ହେବ ତାଙ୍କଠାରୁ ବୁଝି କଟକରୁ କେସିଙ୍ଗା ପର୍ଯ୍ୟନ୍ତ ତିନୋଟି ଟିକେଟ କରିଦେଲି । ଆମେ ନିର୍ଦ୍ଦିଷ୍ଟ ଦିନ ରାତି ୧୦ଟାରେ କଟକରୁ କେସିଙ୍ଗା ଅଭିମୁଖେ ଯାତ୍ରା କଲୁ । ସକାଳେ କେସିଙ୍ଗାରେ ପହଁଞ୍ଚି ବୁଝିଲୁ, ଗୋଟିଏ ସରକାରୀ ବସ୍ କେସିଙ୍ଗାରୁ ଭବାନୀପାଟଣା ପର୍ଯ୍ୟନ୍ତ ଯାଏ । ଏହି ବସ୍‌ରେ ବସି ଆମେ ଭବାନୀପାଟଣାରେ ପହଁଞ୍ଚିଲୁ । ମୁଁ ଆଗରୁ କଲେଜର ଅଧ୍ୟକ୍ଷଙ୍କ ପାଖକୁ ଲେଖିଥିଲି ମୁଁ ନିର୍ଦ୍ଦିଷ୍ଟ ଦିନରେ କେସିଙ୍ଗାରୁ ଭବାନୀପାଟଣାରେ ପହଁଞ୍ଚିବି । ସେହି ଅନୁସାରେ ଅଧ୍ୟକ୍ଷ ଜଣେ ଲାବୋରାଟୋରୀ ଆସିଷ୍ଟାଣ୍ଟ ଓ ଜଣେ ପିଅନକୁ ବସ୍ ଷ୍ଟାଣ୍ଡ ପାଖକୁ ପଠାଇ ଥିଲେ । 'ସେହି ଲାବୋରାଟୋରୀ ଆସିଷ୍ଟାଣ୍ଟ କହିଲେ, ଅଧ୍ୟକ୍ଷ କହିଛନ୍ତି ଯେ

ତାଙ୍କ ଘରେ ଆପଣ ମାନଙ୍କର ରହିବା ବନ୍ଦୋବସ୍ତ ହୋଇଛି । ମୁଁ ତାଙ୍କୁ କହିଲି, ଆମେ ଭବାନୀପାଟଣା ସର୍କିଟ୍ ହାଉସ୍‌ରେ ରହିବୁ । ମୁଁ ତାଙ୍କୁ ପଚାରିଲି, ଅଧ୍ୟକ୍ଷ କିଏ ଅଛନ୍ତି ? ସେ କହିଲେ ଶ୍ରୀ କୃଷ୍ଣଚନ୍ଦ୍ର ପଟ୍ଟନାୟକ ଅଛନ୍ତି । ତେଣୁ ମୁଁ ତାଙ୍କୁ କହିଲି, ଅଧ୍ୟକ୍ଷଙ୍କୁ କହିଦେବେ ଆମେ ସର୍କିଟ୍ ହାଉସ୍‌ରେ ରହିବୁ ଏବଂ ତାଙ୍କ ଘରେ ଖାଇବୁ । ଏପରି କହିବାର କାରଣ ମୁଁ ଶ୍ରୀ କୃଷ୍ଣଚନ୍ଦ୍ର ପଟ୍ଟନାୟକଙ୍କୁ ଭଲ ଭାବରେ ଜାଣିଥାଏ । ମୁଁ ଏବଂ ସେ ଏମ୍.ଏସ୍‌ସି ଏକ ସମୟରେ ପାସ କରିଥିଲୁ । ସାଙ୍ଗ ହୋଇ ଇଉ.ପି.ଏସ୍.ସିକୁ ସାକ୍ଷାତକାର ପରୀକ୍ଷା ଦେବାକୁ ଯାଇଥିଲୁ ଏବଂ ସର୍ବେଶ୍ୱର ଆଚାର୍ଯ୍ୟ ଛାତ୍ରାବାସରେ ରହିବାର ବନ୍ଦୋବସ୍ତ କରି ଦେଇଥିଲେ । ପ୍ରଥମ ଦିନ ଉପର ବେଳା ଜିଲ୍ଲାପାଳଙ୍କ ଠାରୁ ଗୋଟିଏ ଜିପ୍ ନେଇ କଳାହାଣ୍ଡି ପାଖରେ ଥିବା ଗ୍ରାମ ଗୁଡିକୁ ବୁଲିବାକୁ ଯାଇଥିଲୁ ଏବଂ କେତେ ଗୁଡିଏ ଫଟୋ ମଧ୍ୟ ଉଠାଇ ଥିଲୁ । ତାଙ୍କ ଠାରୁ ମୋ ଝିଅ ସବୁ ଆନୁସଙ୍ଗିକ ଖବର ବୁଝିଥିଲା । ତାପର ଦିନ ପରୀକ୍ଷା ଥିବାରୁ ମୁଁ ତାଙ୍କ ସାଙ୍ଗରେ ଯାଇ ପାରିଲି ନାହିଁ । ମୋ ସ୍ତ୍ରୀ ଓ ମୋ ଝିଅ ଜିଲ୍ଲାପାଳ ଠିକ୍ କରି ଦେଇଥିବା ଗାଡିରେ ଭିନ୍ନ ଭିନ୍ନ ସ୍ଥାନର ଅନୁସନ୍ଧାନ କରି ଆସିଥିଲେ ଓ କୁନି ତାର ତଥ୍ୟ ସଂଗ୍ରହ କରି ସାରିଥିଲା । ଏହି ଦିନ ଭିତରେ ଆମେ ସମସ୍ତେ କୃଷ୍ଣ ପଟ୍ଟନାୟକଙ୍କ ଘରେ ଖାଇଥିଲୁ । ଆସିବାଦିନ ଆମେ ତିନି ଜଣ ବସ୍‌ରେ ବସି ଭବାନୀପାଟଣାରୁ ବାହାରି କଟକରେ ପହଞ୍ଚିଲୁ । କଟକରେ ପହଞ୍ଚିବା ପରେ ମୁଁ ବ୍ରହ୍ମପୁର ଚାଲି ଗଲି । କୁନି କେତେ ଦିନପରେ ପୁଣି ବନାରସ୍ ଚାଲିଗଲା ।

## ଖଲ୍ଲିକୋଟ ରାଜାଙ୍କର ମୂର୍ତ୍ତି କଲେଜ ସମ୍ମୁଖରେ ସ୍ଥାପନ

ଓଡିଶା ସରକାର ଖଲ୍ଲିକୋଟ ରାଜାଙ୍କର ଗୋଟିଏ ମୂର୍ତ୍ତି ସ୍ଥାପନ କରିବା ପାଇଁ କିଛି ଅନୁଦାନ ଦେଇଥିଲେ । ସେହି ଅନୁଦାନକୁ ଭିତ୍ତି କରି ଭୁବନେଶ୍ୱରରେ ଗୋଟିଏ ବ୍ରୋଞ୍ଜ ମୂର୍ତ୍ତି ତିଆରି କରିବା ପାଇଁ ମୁଁ ଅଧ୍ୟକ୍ଷ ହେବା ଆଗରୁ ବରାଦ ଦିଆ ହୋଇଥିଲା । କିନ୍ତୁ ସେ ଅନୁଷ୍ଠାନ ମୂର୍ତ୍ତି ଦେଇ ନ ଥିଲା । ପିଲାମାନେ ଦାବିକଲେ ନିର୍ଦ୍ଦିଷ୍ଟ ତାରିଖ ଭିତରେ ମୂର୍ତ୍ତିଟି ଆଣି କଲେଜରେ ସ୍ଥାପନ କରିବାକୁ ପଡିବ । ମୁଁ ନିଜେ ଅଫିସ୍ ସୁପରିଣ୍ଟେଣ୍ଡେଣ୍ଟଙ୍କୁ ସାଙ୍ଗରେ ଧରି ମୂର୍ତ୍ତିଟି କେତେ ଦୂର ଆଗେଇଛି ଅନୁଧ୍ୟାନ କରିବା ପାଇଁ ଭୁବନେଶ୍ୱର ଆସିଲି । ବୁଝିଲି ମୂର୍ତ୍ତିଟି ତିଆରି କରିବାକୁ ଆଉ ତିନି ମାସ ଲାଗିବ । ମୁଁ ମୂର୍ତ୍ତି ତିଆରି କରୁଥିବା ଲୋକଙ୍କୁ କହିଲି, ପିଲାମାନେ ଦାବି କରୁଛନ୍ତି ଗୋଟିଏ ନିର୍ଦ୍ଦିଷ୍ଟ ତାରିଖରେ ମୂର୍ତ୍ତିଟି ସ୍ଥାପନ କରିବାକୁ । ସେ ମୋତେ ଗୋଟିଏ ଉପାୟ ବତାଇ ଦେଲେ । ଆମର ପ୍ଲାଷ୍ଟର ଅଫ ପ୍ୟାରିସ୍‌ରେ ଗୋଟିଏ ଅବିକଳ ମୂର୍ତ୍ତି ତିଆରି ହୋଇଛି, ଆପଣ ତାହାକୁ ନେଇ ସ୍ଥାପନ କରି ଦିଅନ୍ତୁ । ତାପରେ ମୂର୍ତ୍ତି ତିଆରି ସରିଲେ ଏଇଟାକୁ ବାହାର କରିଦେବେ । ତାପରେ କହିଲେ ପ୍ଲାଷ୍ଟର ଅଫ ପ୍ୟାରିସ୍‌ରେ ବ୍ରୋଞ୍ଜ ରଙ୍ଗ ଦେଇ ଦେଉଛି, ତାହାକୁ କେହି ଜାଣି ପାରିବେ ନାହିଁ । ମୂର୍ତ୍ତିଟି କଲେଜ ସମ୍ମୁଖରେ ଗୋଟିଏ ଛୋଟ ପେଣ୍ଡାଲ କରି ସ୍ଥାପନ କରାଗଲା । ମୁଁ କଲେଜରୁ ଅବସର ନେବା ପୂର୍ବରୁ

ପିଲାମାନେ ଏବଂ କାର୍ଯ୍ୟକାରୀ ସଭାର ସଦସ୍ୟମାନେ କୌଣସି ପ୍ରକାରେ ଜାଣି ପାରିଲେ ଏବଂ ମୋତେ କହିଲେ ଆପଣ ଆମକୁ ଠକି ଦେଲେ । ମୁଁ କହିଲି, ଏହା ହେବାରୁ ଏହି ବର୍ଷର ପ୍ରେସିଡେଣ୍ଟ ଓ ସେକ୍ରେଟାରୀଙ୍କର ନାମ ମାର୍ବଲ ପଥରରେ ସବୁଦିନ ପାଇଁ ରହିଗଲା । ମୁଁ ଆସନ୍ତା ବର୍ଷ ଅବସର ନେବି । ତେଣୁ ମୋ ନାମ ମଧ୍ୟ ମାର୍ବଲ ପଥରରେ ସବୁଦିନ ପାଇଁ ରହିଗଲା । ତେଣୁ ସେମାନେ ଖୁସି ହୋଇ ଚାଲିଗଲେ ।

## ଦିଗପହଣ୍ଡି କଲେଜ ତଦାରଖ ଓ ତପ୍ତପାଣି ପରିଦର୍ଶନ

ଖଲ୍ଲିକୋଟ କଲେଜରେ ଅଧ୍ୟକ୍ଷ ଥିବାବେଳେ ମୁଁ ଥରେ ଦିଗପହଣ୍ଡି କଲେଜ ଏବଂ ଆଉ ଗୋଟିଏ କଲେଜକୁ ତଦାରଖ କରିବାକୁ ଯିବାକୁ ପଡିଥିଲା । ସେଦିନ ମୁଁ ସକାଳୁ ନିତ୍ୟକର୍ମ ସାରି ଦିଗପହଣ୍ଡି ଉଦ୍ଦେଶ୍ୟରେ ବସ୍‌ରେ ବସି ଯିବାକୁ ବାହାରିଲି । ଦିଗପହଣ୍ଡି ବସ୍‌ଷ୍ଟାଣ୍ଡ ଠାରେ ଓହ୍ଲାଇ ମୁଁ ଜାଣିବାକୁ ପାଇଲି ଦିଗପହଣ୍ଡି କଲେଜକୁ ଯିବାକୁ ହେଲେ ଆଉ ଗୋଟିଏ ବସ୍ ଧରି ଯିବାକୁ ପଡେ । କିନ୍ତୁ ଦିଗପହଣ୍ଡିକୁ କଲେଜ ଯିବା ବସ୍‌ଟି ଆସିଲା ନାହିଁ । ତେଣୁ ବସ୍ ସମୟକୁ ଅପେକ୍ଷା ପରେ ଗୋଟିଏ ରିକ୍ସା ଧରି ଦିଗପହଣ୍ଡି କଲେଜକୁ ଗଲି । କଲେଜର ତଦାରଖ ସରିବାକୁ ପ୍ରାୟ ଚାରିଟା ବାଜିଗଲା । ତାପରେ ଅନ୍ୟ କଲେଜକୁ ଯିବାପାଇଁ ଦିଗପହଣ୍ଡି କଲେଜର ଜଣେ ଅଧ୍ୟାପକଙ୍କୁ ଅନୁରୋଧ କରି ତାଙ୍କ ସ୍କୁଟରେ ପଛପଟେ ବସି ଅନ୍ୟ କଲେଜରେ ପହଁଚିଲି । ସେତେବେଳକୁ ପ୍ରାୟ ସନ୍ଧ୍ୟା ହୋଇଯାଇ ଥାଏ । ମୁଁ ଆସିଲି ନାହିଁ ବୋଲି କଲେଜର କର୍ମ କର୍ତ୍ତାମାନେ ଯିବାକୁ ବାହାରି ଥିଲେ । ମୋତେ ଦେଖି କର୍ମଚାରୀମାନେ ସବୁ କାଗଜ ପତ୍ର ଦେଖାଇଲେ । ମୁଁ ତଦାରଖ କରିସାରିଲା ବେଳକୁ ପ୍ରାୟ ସଂଧ୍ୟା ସାତଟା ବାଜିଯାଇଥିଲା । ମୁଁ କହିଲି, ବର୍ତ୍ତମାନ ମୁଁ ବ୍ରହ୍ମପୁର ଯାଇପାରିବି ନାହିଁ, କେଉଁଠାରେ ରହିବି । କଲେଜର କାର୍ଯ୍ୟକାରୀ ଅଧ୍ୟକ୍ଷ ମୋତେ କହିଲେ, ଆମ କଲେଜରେ ରହିବାର ସୁବିଧା ନାହିଁ । ତେଣୁ ଆପଣ ତପ୍ତପାଣି ଠାରେ ଥିବା ଏକ ଡାକବଙ୍ଗଳାରେ ରହିଯାଇ ପାରନ୍ତି । ସେ ପୁଣି କହିଲେ, ମୁଁ ଜଣେ ଅଧ୍ୟାପକଙ୍କୁ ସ୍କୁଟରେ ସହ ପଠାଉଛି । ସେ ଆପଣଙ୍କ ପାଇଁ ଡାକବଙ୍ଗଳାରେ ସବୁ ଖାଇବା ପିଇବାର ସୁବିଧା କରିଦେଇ ଆସିବେ । ସେ ଅଧ୍ୟାପକ ମହାଶୟ ଡାକବଙ୍ଗଳାରେ ଗୋଟିଏ କୋଠରୀରେ ମୋର ରହିବା ଏବଂ ଖାଇବାର ସୁବିଧା କରିଦେଲେ । ମୋ ଠାରୁ ଡାକବଙ୍ଗଳାର ପ୍ରାପ୍ୟ ନେଲେନାହିଁ । ମୁଁ ସେତେବେଳେ ଏତେ କ୍ଲାନ୍ତ ହୋଇଯାଇ ଥାଏ ଯେ ତାପର ଦିନ ବ୍ରହ୍ମପୁର ଫେରିବାକୁ ଇଚ୍ଛାହେଲା ନାହିଁ । ମୁଁ ପଚାରିଲି, ଏଠାରୁ କିପରି କଟକ ଯାଇହେବ । ସେ କହିଲେ, କାଲି ସକାଳ ନଅଟା ବେଳେ ଗୋଟିଏ ବସ୍ ପାରଳାଖେମୁଣ୍ଡିରୁ ଆସି ତପ୍ତପାଣି ରାସ୍ତା ଦେଇ ଭୁବନେଶ୍ୱର ଯାଏ । ଆପଣ ସେହି ବସ୍‌ରେ ଗଲେ ଭୁବନେଶ୍ୱରରେ ପ୍ରାୟ ଚାରିଟା ବେଳେ ପହଁଚିବେ । ଏହି ଡାକବଙ୍ଗଳା ଆଗରେ ଯେଉଁରାସ୍ତାଟି ଯାଇଛି, ସେହି ରାସ୍ତାଦେଇ ବସ୍‌ଟି ଯିବ । ତାପରେ କହିଲେ, ଆପଣ ସକାଳୁ ଉଠି ତପ୍ତପାଣିରେ ଗାଧୋଇ ଜାମାପଟା ପିନ୍ଧି ରାସ୍ତା

କଡରେ ବସିଥିବା ସ୍ତ୍ରୀ ଲୋକମାନଙ୍କ ଠାରୁ ଖଜୁରି ରସ ପିଇ ବସ୍‌କୁ ଅପେକ୍ଷା କରିବେ । ଏହା କହି ସେ ଚାଲିଗଲେ । ତାପର ଦିନ ସକାଳୁ ତାଙ୍କ କହିବା ଅନୁସାରେ ମୁଁ ଟପପାଣିରେ ଗାଧୋଇ ଜାମାପଟା ପିନ୍ଧି ଡାକବଙ୍ଗଳା କୋଠରୀ ଛାଡି ରାସ୍ତାରେ ଖଜୁରୀ ରସ ପିଇ ବସ୍‌କୁ ଅପେକ୍ଷା କଲି ଓ ବସ୍ ଆସିବାରୁ ସେଥିରେ ଉଠିଲି । ସେ ବସ୍‌ଟି କେଉଁ ବାଟ ଦେଇ ଆସିଲା ମୁଁ ତାହା ଜାଣି ପାରିଲି ନାହିଁ । ବସ୍‌ଟି ପ୍ରାୟ ଚାରିଟା ବେଳେ ଭୁବନେଶ୍ୱର ବସ୍‌ଷ୍ଟାଣ୍ଡରେ ପହଁଚିବାର ଠିକ୍ ପୂର୍ବରୁ ମୋର ଭାଗ୍ୟଭଲ ଥିବାରୁ ମୋ ସ୍ତ୍ରୀକୁ ଗାଡିରେ ଧରି ମୋ ବଡ ପୁଅ ଯାଉଥିବାର ଦେଖିଲି । ବସ୍‌ରୁ ଓହ୍ଲାଇପଡି ହାତ ଦେଖାଇଲି । ମୋର ବଡ ପୁଅ ଗାଡିରଖି ଗାଡିରେ ମୋତେ ବସାଇ ବଙ୍କି ବାବୁଙ୍କ ଘରେ ଗାଡି ରଖିଲା । ତାର କିଛି ସମୟପରେ ଆମେ କଟକ ଚାଲି ଆସିଲୁ ।

## କଲେଜ ଅଫିସ୍‌ର ପରିଚାଳକଙ୍କୁ ଛାତ୍ରଙ୍କ ଘେରାଉ

୧୯୮୯ ମସିହାରେ ଗୋଟିଏ "ଇଣ୍ଟରନ୍ୟାସନାଲ କନ୍‌ଫରେନସ୍ ଅନ୍ ପ୍ଲାଜମା ଫିଜିକ୍‌ସ" ନୂଆ ଦିଲ୍ଲୀରେ ନଭେମ୍ବର ୨୨ତାରିଖ ଠାରୁ ୨୮ ତାରିଖ ପର୍ଯ୍ୟନ୍ତ ହେବାର ଥିଲା । ମୁଁ ମଧ୍ୟ ଯିବାକୁ ନିମନ୍ତ୍ରଣ ପାଇଥିଲି । ତାର ଦୁଇ ତିନି ଦିନ ପୂର୍ବରୁ କଲେଜରେ ଗୋଟିଏ ଅସୁବିଧା ପରିସ୍ଥିତି ହଠାତ ସୃଷ୍ଟି ହୋଇଗଲା । ଘଟଣାଟି ହେଲା, ଖରାବେଳେ ମଧ୍ୟାହ୍ନ ଭୋଜନ ପାଇଁ ଖାଇବାକୁ ଆସିଥିଲି । ଖାଇସାରି ଟିକିଏ ବିଶ୍ରାମ ନେଇଛି । ଏହି ସମୟରେ କଲେଜର ପିଅନ ମୋତେ ଖଣ୍ଡିଏ ହାତ ଲେଖା କାଗଜ ଦେଲା । ସେଥିରେ ଲେଖା ହୋଇଛି, ଅଫିସ୍ ସୁପରିଟେଣ୍ଡେଣ୍ଟଙ୍କୁ ପିଲାମାନେ ଘେରାଉ କରି ରଖିଛନ୍ତି । ଆପଣ ଆସିଲେ ଆପଣଙ୍କୁ ଘେରାଉ କଲେ ତାଙ୍କୁ ଛାଡି ଦିଆଯିବ । ମୁଁ ପିଅନକୁ କହିଲି, ଚୁପ୍ କରି ଷ୍ଟେନୋକୁ ଡାକିଦିଅ । ଷ୍ଟେନୋ ଆସିବାରୁ ମୁଁ ତାଙ୍କୁ ପଚାରିଲି ଏସବୁ ଘଟଣା କଣ ? ଷ୍ଟେନୋ ମୋତେ କହିଲେ, ଏଠାର ପିଲାମାନଙ୍କର ଅଭ୍ୟାସ ଅଧ୍ୟକ୍ଷଙ୍କୁ ଘେରାଉ କରିବା । ଏହି ପ୍ରକାର ଉଦାହରଣ ଆଗରୁ ଅଛି । ଜଣେ ଅଧ୍ୟାପକଙ୍କୁ ଘେରାଉ କରିଥିଲେ ଏବଂ କହିଲେ ଅଧ୍ୟକ୍ଷଙ୍କୁ ଘେରାଉ କଲେ ଆମେ ଅଧ୍ୟାପକଙ୍କୁ ଛାଡିଦେବୁ । ମୁଁ ତାଙ୍କୁ କହିଲି, ଏ ଅଭ୍ୟାସ ତାଙ୍କର ଭାଙ୍ଗିଦେବି । ଷ୍ଟେନୋଙ୍କୁ ଗୋଟିଏ ଚିଠି କଲେକ୍ଟରଙ୍କ ପାଖକୁ ଲେଖିବାକୁ କହିଲି । ଚିଠିର ମର୍ମ ହେଲା, "କଲେଜ ପିଲାମାନେ ଅଫିସ୍ ସୁପରିଟେଣ୍ଡେଣ୍ଟଙ୍କୁ ତାଙ୍କ କୋଠରୀରେ ଘେରାଉ କରି ରଖିଛନ୍ତି । ତାଙ୍କ କୋଠରୀରେ ବହୁତ ଗୁଡିଏ ଦରକାରି ଫାଇଲ୍ ଅଛି । ଆପଣ କାର୍ଯ୍ୟାନୁଷ୍ଠାନ କରନ୍ତୁ ଯେପରି ଘେରାଉ ଭାଙ୍ଗିଯିବ ଏବଂ କଲେଜ ସମ୍ପତ୍ତି ଓ କାଗଜ ପତ୍ର ନଷ୍ଟ ହେବ ନାହିଁ । ଏଥିପାଇଁ ପୁଲିସ୍‌କୁ କଲେଜ ହତା ଭିତରେ ପଶିବା ପାଇଁ ମୁଁ ଅନୁମତି ଦେଉଛି । ଯଦି କଲେଜ ସମ୍ପତ୍ତି କିଛି ନଷ୍ଟ ହୁଏ ମୁଁ ସେଥିପାଇଁ ଦାୟୀ ହେବିନାହିଁ । "ଏହି ଚିଠିର ନକଲ ଏସ୍.ଡି.ଓ ଏବଂ ପୁଲିସ୍ ଇନସ୍‌ପେକ୍ଟରଙ୍କ ପାଖକୁ ପଠାଇ ଦିଅ । ସେ ଅଧ୍ୟକ୍ଷଙ୍କ ରହିବା ଘର ଅଫିସ୍‌ରେ ଥିବା ଟାଇପ୍ ମେସିନ୍‌ରେ ଚିଠି ଗୁଡିକ ତିଆରି କରି ସିଲ୍ କରି ବିଭିନ୍ନ ସ୍ଥାନକୁ ପଠାଇ ଦେଲେ । ଷ୍ଟେନୋଙ୍କୁ ଯିବାପାଇଁ କହିଲି । ପାଞ୍ଚ ମିନିଟ୍ ପରେ ନିକଟତମ ପୁଲିସ୍ ଷ୍ଟେସନର ଇନିସ୍‌ପେକ୍ଟର ମୋ ପାଖରେ ଆସି ପହଁଚିଲେ । ଆପଣ ଏମିତି କଣ ଲେଖିଦେଲେ ବୋଲି ପଚାରିଲେ ? ମୁଁ ଉତ୍ତର

ଦେଲି, ତୁମେ ଯାହା କରୁଛ କର । ମୁଁ ତ ଲେଖି ଦେଇଛି । ସେ କହିଲେ, ଆମେ ପାଞ୍ଚଟା ବେଳେ କଲେଜ ଛୁଟି ହେଲେ ବ୍ୟବସ୍ଥା କରିବୁ । ତାପରେ ସେମାନେ ଚାଲିଗଲେ । ତାପରେ ପୁଣି ଜଣେ ପିଅନ ଆସି କହିଲା ଆପଣଙ୍କୁ ପିଲାମାନେ ଯିବାକୁ ଡାକୁଛନ୍ତି । ମୁଁ ପିଅନକୁ କହିଲି, ମୁଁ ଘେରାଉ ହେବାକୁ ଯିବି ନାହିଁ । ତୁମେ ଯାହା କରୁଛ କର । ଘଣ୍ଟାଏ ପରେ ଅଫିସ୍ ସୁପରିଟେଡେଣ୍ଟ ନିଜେ ମୋ ଘରକୁ ଆସିଲେ । ମୁଁ ପଚାରିଲି ଆପଣ କେମିତି ଆସିଲେ ? ସେ କହିଲେ ପିଲାମାନେ ଘେରାଉ ଭାଙ୍ଗି ଚାଲିଗଲେ । ମୁଁ ସୁପରିଟେଣ୍ଡେଣ୍ଟଙ୍କୁ ଗୋଟିଏ ଚିଠି ଡ୍ରାଫ୍ଟ କରିବାକୁ କହିଲି । ତାର ମର୍ମ ହେଲା, କଲେଜର ସିନିଅର ଅଧ୍ୟାପକମାନେ କାଲି ଦିନ ୧୦ଟା ବେଳେ ଅଧ୍ୟକ୍ଷଙ୍କ ଅଫିସ୍‌ରେ ଗୋଟିଏ ମିଟିଙ୍ଗ ହେବ, ସେଠାକୁ ଆସିବେ । ମୁଁ ଆଉ ସେଦିନ ବାହାରକୁ ଯାଇନାହିଁ । ସେଦିନ ରାତି ୧୦ଟା ବେଳେ ୮/୧୦ ଜଣ ପିଲା ପିଅନକୁ ଗେଟ ଖୋଲିବାକୁ କହିଲେ । ମୁଁ ପିଅନକୁ କହିଲି, କହିଦିଅ ଅଧ୍ୟକ୍ଷଙ୍କ ଦେହ ଭଲନାହିଁ । ସେ ଆଜି ଦେଖା କରି ପାରିବେ ନାହିଁ । ପିଲାମାନେ କହିଲେ, ଆମେ ଗେଟ ଡେଇଁକରି ଯିବୁ । ସାଙ୍ଗେ ସାଙ୍ଗେ ଘରୁ ମୁଁ ପୁଲିସ୍ ଷ୍ଟେସନକୁ ଫୋନ୍ କଲି ଯେ ପିଲାମାନେ ଗେଟ୍ ଡେଇଁ ମୋ ହତା ଭିତରେ ପଶିବାକୁ ଚେଷ୍ଟା କରୁଛନ୍ତି । ପାଞ୍ଚ ମିନିଟ୍ ପରେ ଗୋଟିଏ ପୁଲିସ୍ ଗାଡି ମୋ ଗେଟ୍ ପାଖରେ ପହଁଞ୍ଚିଲା । ପିଲାମାନେ ସେଠାରୁ ଚାଲିଗଲେ । ଇନିସ୍‌ପେକ୍ଟର ପଚାରିଲେ, କିଏ ଭିତରକୁ ଆସିଥିଲେ ? ମୁଁ କହିଲି ସେମାନେ ଗେଟ୍ ଡେଇଁବାକୁ ଉଦ୍ୟତ ହେଉଥିଲେ । ଆପଣ ଆସି ପହଁଞ୍ଚି ଗଲେ । ତାପର ଦିନ ମୁଁ ମୋ ଅଫିସ କୋଠରୀକୁ ଯିବାବେଳେ ଅଧ୍ୟାପକମାନେ ମୋ ଅଫିସ୍ କୋଠରୀରେ ମୋତେ ଅପେକ୍ଷା କରି ବସିଥିଲେ । ସେମାନଙ୍କୁ ଗତ କାଲିର ଘଟଣା ସବୁ କହିଲି ଏବଂ ସାବଧାନ ରହିବାକୁ ଜଣାଇ ଦେଲି । ମୋର ଆସନ୍ତା କାଲି ସକାଳୁ ଦିଲ୍ଲୀ ଯିବାର ଅଛି । ମୁଁ ପାଞ୍ଚ ସାତ ଦିନ ପର୍ଯ୍ୟନ୍ତ କଲେଜରେ ଅନୁପସ୍ଥିତ ରହିବି ବୋଲି ଜଣାଇ ଦେଲି । ଅଫିସ୍ ସୁପରିଟେଣ୍ଡେଣ୍ଟଙ୍କୁ ଡାକି ପଚାରିଲି ସେମାନେ କାହିଁକି ଘେରାଉ କରିଥିଲେ ? ସେ କହିଲେ ମୋତେ କିଛି କହି ନାହାଁନ୍ତି । ସେଦିନ କଲେଜର ଦାୟିତ୍ୱ ଆଉ ଜଣଙ୍କୁ ଦେଇ ସଂଧ୍ୟା ବେଳେ ମୁଁ କଟକ ଆସିଲି ।

## ପ୍ଲାଜମା ଫିଜିକ୍ସ ଉପରେ ଆନ୍ତଃର୍ଜାତୀୟ ସମ୍ମିଳନୀ, ନୂଆଦିଲ୍ଲୀ

କଟକରେ ପହଁଞ୍ଚି ଗୋଟିଏ ଚିଠି ପାଇଲି । ସେହି ଚିଠିଟି "ଓ୍ୱାର୍କସପ ଅନ୍ ଲେଜର ପ୍ଲାଜମା ଇଣ୍ଟରାକ୍ସନ୍"ର ସମ୍ପାଦକ ଡକ୍ଟର ସୁନ୍ଦର ଶର୍ମା ସେଣ୍ଟର ଫର ଆଡଭାନସ୍‌ଡ ଟେକ୍ନୋଲୋଜିରୁ ଦେଇଥିଲେ । ସେ ଲେଖିଥିଲେ ଯେ ଆମେ ଆପଣଙ୍କୁ ନିମନ୍ତ୍ରଣ କରୁଛୁ ସମ୍ମିଳନୀରେ ଯୋଗ ଦେବା ପାଇଁ । ସମସ୍ତ ଯିବା ଆସିବା ଓ ରହିବା ଖର୍ଚ୍ଚ ମିଳିବ । ସେହି ସମ୍ମିଳନୀଟି ୩୦ ନଭେମ୍ବରରୁ ୦୫ ଡିସେମ୍ବର ପର୍ଯ୍ୟନ୍ତ ହେବ । ମୋର ଆନ୍ତଃର୍ଜାତୀୟ ସମ୍ମିଳନୀରେ ୨୨ ନଭେମ୍ବରରୁ ୨୮ ନଭେମ୍ବର ପର୍ଯ୍ୟନ୍ତ ଦିଲ୍ଲୀରେ ରହିବାର ଥିଲା । ଏହି ସମ୍ମିଳନୀ ପାଇଁ ମୋତେ ୨୯ ନଭେମ୍ବରରେ ଇନ୍ଦୋରରେ ପହଁଞ୍ଚିବାକୁ ପଡିବ । ତେଣୁ ମୁଁ ସଙ୍ଗେ ସଙ୍ଗେ ଯାଇ ଉଡାଜାହାଜ ଟିକେଟ ଭୁବନେଶ୍ୱରରୁ ଦିଲ୍ଲୀ ୨୧ ତାରିଖରେ, ଦିଲ୍ଲୀରୁ ଭୋପାଳ ୨୯

ତାରିଖରେ ଏବଂ ଭୋପାଳରୁ ଭୁବନେଶ୍ୱର ୬ ତାରିଖରେ କରିଦେଲି । ୨୧ ତାରିଖ ଦିନ ଗୋଟିଏ କାରରେ ଭୁବନେଶ୍ୱର ଯାଇ ଦିଲ୍ଲୀ ଅଭିମୁଖେ ଯାତ୍ରା କଲି । ଦିଲ୍ଲୀରେ ପ୍ରାୟ ଦିନ ଗୋଟାଏ ବେଳେ ପହଁଞ୍ଚିଲି । ଆନ୍ତର୍ଜାତୀୟ ସମ୍ମିଳନୀ ବ୍ୟବସ୍ଥା ଅନୁସାରେ ମୁଁ ଯାଇ ଅଶୋକା ହୋଟେଲରେ ରହିଲି । ଦୁଇଦିନ ଆନ୍ତର୍ଜାତୀୟ ସମ୍ମିଳନୀରେ ଯୋଗ ଦେବା ପରେ ଜାଣିବାକୁ ପାଇଲି ଉଡାଜାହାଜ ସବୁ ବନ୍ଦ ହୋଇ ଯାଇଛି । ତେଣୁ ମୁଁ ବାଧ୍ୟ ହୋଇ ଇନ୍ଦୋରରେ ଯୋଗ ଦେବାକୁ ଥିବା ନିମନ୍ତ୍ରଣ ବାତିଲ୍ କରି ସିଧା କଟକ ଆସିବା ପାଇଁ ସ୍ଥିର କଲି ଏବଂ ଉଡାଜାହାଜ ଟିକଟ ଫେରାଇ ଦେଇ ନିଜାମୁଦ୍ଦିନ୍ ଷ୍ଟେସନ ଠାରୁ ଉତ୍କଳ ଏକ୍ସପ୍ରେସରେ କଟକ ଫେରିବା ପାଇଁ ଗୋଟିଏ ଫାଷ୍ଟକ୍ଲାସ୍ ଟିକେଟ କଲି । ଭଗବାନଙ୍କ କୃପାରୁ ସଂରକ୍ଷଣ ମିଳିଗଲା । ଇଣ୍ଟରନ୍ୟାସନାଲ କନଫରେନ୍ସର ତିନି ଚାରି ମାସ ପୂର୍ବରୁ ଡିପାର୍ଟମେଣ୍ଟ ଅଫ ସାଇନ୍ସ ଆଣ୍ଡ ଟେକ୍ନୋଲୋଜି ମୋତେ ଜଣାଇଥିଲା, ଆପଣଙ୍କର ପରିଯୋଜନା ୧୯୯୦ ମସିହାରେ ସରିଯିବ । ତେଣୁ ଡି.ଏସ୍.ଟିରୁ ମିଳିଥିବା ଅନୁଦାନ ଦ୍ୱାରା କଣ ସବୁ କାମ କରିଛନ୍ତି ତାକୁ ଲେଖି ଗୋଟିଏ ପୁସ୍ତକ ଆକାରରେ ଦୁଇଟି ବହି ପଠାଇବେ । ତାହା ପ୍ଲାଜମା ଫିଜିକ୍ସର ପ୍ରବୀଣ କମିଟିରେ ଉପସ୍ଥାପନ କରାଯିବ । ଏହି ୱାର୍କସପ୍ ଚାଲିଥିଲା ବେଳେ ଏନ୍. ଭେଙ୍କଟରମଣୀ ନାମକ ଜଣେ ପ୍ଲାଜମା ଫିଜିସିଷ୍ଟ ମୋତେ ଖୋଜୁଥିବାର ଜଣେ ଦୁଇ ଜଣ ମୋତେ କହିଲେ । ମୁଁ ତ ତାଙ୍କୁ ଚିହ୍ନି ନ ଥାଏ । ଯେଉଁମାନେ ମୋତେ କହିଲେ ତାଙ୍କୁ କହିଲି,ମୋତେ ତାଙ୍କ ସଙ୍ଗେ ଦେଖା କରାଇ ଦିଅନ୍ତୁ । କାରଣ ମୁଁ ତାଙ୍କୁ ଚିହ୍ନି ନାହିଁ । ତାଙ୍କୁ ଦେଖା କଲାପରେ ସେ ମୋତେ ମୋ ପରିଯୋଜନାପାଇଁ ବହୁତ ପ୍ରଶଂସା କଲେ ଏବଂ କହିଲେ,ଆପଣ ସବୁ ଏକ୍ସପେରିମେଣ୍ଟ ଗୁଡିକ ବହୁତ କମ୍ ଖର୍ଚ୍ଚରେ କରିପାରିଛନ୍ତି । ଆମେ ଚେଷ୍ଟା କରୁଛୁ, ବହିଟି ଛପାଇ କରି ଭାରତର ବିଭିନ୍ନ ବିଶ୍ୱବିଦ୍ୟାଳୟର ପ୍ରଫେସର ମାନଙ୍କୁ ବିନା ମୂଲ୍ୟରେ ପ୍ରଦାନ କରିବୁ । ଅନ୍ୟ କେତେ ଜଣ ମଧ୍ୟ ପ୍ରଶଂସା କରିଥିଲେ । ଆନ୍ତର୍ଜାତୀୟ ସମ୍ମିଳନୀ ସରିବା ପରେ ମୁଁ ସିଧା କଟକ ଫେରି ଆସିଲି । କଟକ ଫେରି ତା'ପର ଦିନ ବ୍ରହ୍ମପୁର ଚାଲିଗଲି ।

## ଅନ୍ ବିମସ୍ ଆଣ୍ଡ ପ୍ଲାଜମା ସଂପର୍କରେ କର୍ମଶାଳା ଓ ଆଲୋଚନା ଚକ୍ର

ବ୍ରହ୍ମପୁରରେ ୨୫ ଦିନ ରହିବା ପରେ ବଡଦିନ ଛୁଟିରେ ପୁଣି କଟକ ଆସିଲି । କଟକରେ ପହଁଞ୍ଚିଲା ପରେ ଚିଠି ପାଇଲି "ୱାର୍କସପ୍ କମ୍ ସିମ୍ପୋଜିଅମ୍ ଅନ୍ ବିମସ୍ ଆଣ୍ଡ ପ୍ଲାଜମା" ଭାବା ଆଟମିକ୍ ସେଣ୍ଟରରେ ଜାନୁଆରୀ ୩୧ରୁ ୨ ଫେବୃଆରୀ ୧୯୯୦ ପର୍ଯ୍ୟନ୍ତ ଅନୁଷ୍ଠିତ ହେବ । ତେଣୁ ମୁଁ ସେଠାକୁ ସସ୍ତ୍ରୀକ ଯିବା ପାଇଁ ଲେଖିଦେଲି । ତାର କେତେ ଦିନ ପୂର୍ବରୁ ମୋର ବଡ ପୁଅ ରଞ୍ଜନ ମିଶ୍ର ସିନେମା ଫଟୋଗ୍ରାଫିରେ ଟ୍ରେନିଂ ନେବା ପାଇଁ ଶ୍ରୀ ଅପୂର୍ବ କୁମାର ବୀରଙ୍କ ପାଖରେ କାମ କରୁଥିଲା । ସେ ବମ୍ବେରେ କେତେ ଜଣଙ୍କ ସାଙ୍ଗରେ ମିଶିକରି ରହୁଥିଲା ଏବଂ ବିନା ପଇସାରେ କାମ ଶିଖୁଥିଲା । ମୋ ପୁଅ ବମ୍ବେରେ ରହୁଥିବାରୁ ମୋ ସ୍ତ୍ରୀ ଚାହୁଁଥିଲେ ତା ପାଖକୁ ଯିବା ପାଇଁ । ତେଣୁ ଆମେ ଦୁହେଁ ୨୮ ତାରିଖ ଦିନ କୋଣାର୍କ ଏକ୍ସପ୍ରେସରେ ବମ୍ବେ ଅଭିମୁଖେ ଯାତ୍ରା କଲୁ ଏବଂ ଦାଦର ଷ୍ଟେସନରୁ ଓହ୍ଲାଇ ବି.ଏ.ଆର.ସି.

ଅତିଥି ଭବନରେ ରହିଲୁ । ବି.ଏ.ଆର.ସି. ଅତିଥି ଭବନରେ ଡକ୍ଟର ଗୁହଙ୍କ ସହିତ ଦେଖା ହୋଇଥିଲା । ତାର କେତେ ଦିନ ପରେ ମୁଁ ରବିଶଙ୍କର ବିଶ୍ୱବିଦ୍ୟାଳୟର ହେଡ ଅଫ ଦି ଡିପାର୍ଟମେଣ୍ଟଙ୍କ ଠାରୁ ଗୋଟିଏ ଚିଠି ପାଇଲି । ସେଥିରେ ଲେଖାଥିଲା ଡକ୍ଟର ଗୁହ ହୃଦରୋଗରେ ଆକ୍ରାନ୍ତ ହୋଇ ଶେଷ ନିଶ୍ୱାସ ତ୍ୟାଗ କରିଛନ୍ତି । ତେଣୁ ସେ ଆରମ୍ଭ କରିଥିବା ପ୍ଲାଜମା ଫିଜିକ୍ସର ଲାବୋରାଟୋରୀ ଏବଂ ପ୍ଲାଜମା ଫିଜିକ୍ସ କ୍ଲାସ୍ ସବୁ ବନ୍ଦ କରି ଦିଆଯାଇଛି ।

ସେଠାରେ ରହିବା ଭିତରେ ଅଜିତ୍ କୁମାର ମହାନ୍ତି ନାମକ ମୋର ଜଣେ ଛାତ୍ର ଦେଖାହେଲେ । ସେ ରେଭେନ୍ସା କଲେଜରେ ପଢୁଥିଲେ । ମୁଁ ଏଠାରେ ପାଠକ ମାନଙ୍କୁ ମନେ ପକାଇ ଦେବାକୁ ଚାହୁଁଛି ସେହି ଅଜିତ୍ କୁମାର ମହାନ୍ତିଙ୍କର ବି.ଏ.ଆର.ସିରେ ଗବେଷଣା କରିବା ପାଇଁ ମୁଁ ଦାୟୀ ରହିଥିଲି । ସେଠାରେ କଥା ପ୍ରସଙ୍ଗରେ ମୁଁ କହିଲି, ପୁଅର ରହିବା ପାଇଁ ଟିକେ ସୁବିଧା କରି ଦେବାକୁ । ସଙ୍ଗେ ସଙ୍ଗେ ସେ କହିଲେ ବି.ଏ.ଆର.ସି. ଛାତ୍ରାବାସରେ ମୋ କୋଠରୀରେ ରହିଯିବାକୁ ଏବଂ କହିଲେ,ମୋର କିଛି ଅସୁବିଧା ହେବନି କି ତାଙ୍କର କିଛି ଅସୁବିଧା ହେବନି । ତେଣୁ ମୋ ପୁଅ ତାଙ୍କ ପାଖରେ ରହିବାର ଠିକ ହେଲା ।

## ହାତୀ ଗୁମ୍ଫା ପରିଦର୍ଶନ

ବମ୍ବେରେ ଥିବା ସମୟରେ ମୁଁ ଓ ମୋ ସ୍ତ୍ରୀ ହାତୀ ଗୁମ୍ଫା ଦେଖିବାକୁ ଯାଇଥିଲୁ । ହାତୀ ଗୁମ୍ଫା ବମ୍ବେ ସମୁଦ୍ର ଭିତରେ ଦଶ କିଲୋମିଟର ଦୂରରେ ଅବସ୍ଥିତ । ସେଠାକୁ ଯିବାକୁ ହେଲେ ପାୱାର ବୋଟ୍ ସାହାଯ୍ୟରେ ବମ୍ବେ ଠାରୁ ଯିବାକୁ ହୁଏ । ଏହି ଦ୍ୱୀପକୁ ପ୍ରଥମେ ପର୍ତ୍ତୁଗୀଜମାନେ ଆସିଥିଲେ । ସେମାନେ ହାତୀକୁ ଏଲିଫ୍ୟାଣ୍ଟ ବୋଲି କହୁଥିଲେ । ସେମାନେ ଗୋଟିଏ ବିରାଟ ହାତୀର ପଥର ମୂର୍ତ୍ତି ଦେଖି ତାହାର ନାମ ଏଲିଫ୍ୟାଣ୍ଟ ଗୁମ୍ଫା ନାମ ଦେଇଥିଲେ । ଆଗରୁ ଏହାର ନାମ "ଘାରାପୁରୀ" ଥିଲା । ସେ ଯେଉଁ ବଡ ହାତୀର ପଥର ମୂର୍ତ୍ତି ଦେଖିଥିଲେ, ଏବେ ସେ ମୂର୍ତ୍ତି ଆଉ ନାହିଁ । ଆମେ ସେଠାରେ ଲୋକମାନଙ୍କ ଠାରୁ ଶୁଣିଲୁ ବଡ ହାତୀ ମୂର୍ତ୍ତିଟିକୁ ପର୍ତ୍ତୁଗୀଜ୍‌ମାନେ ଭାଙ୍ଗି ନଷ୍ଟ କରିଦେଇ ଥିଲେ । ହାତରେ ସେଗୁଡ଼ିକ ଭାଙ୍ଗିବା ସହଜ ନ ହେବାରୁ ତୋପ ସାହାଯ୍ୟରେ ଗୁଳି ମାରି ସେଗୁଡିକ ଭାଙ୍ଗି ଦେଇଥିଲେ । ଏହା ଭିତରେ କେତେକ ଗୁମ୍ଫାରେ ଦେବ ମୂର୍ତ୍ତି ଗୁଡିକ ମଧ୍ୟ ଥିଲା । ସେ ମୂର୍ତ୍ତି ଗୁଡିକ ଦେଖି ସେମାନେ ଏହି ମୂର୍ତ୍ତି ସ୍ତମ୍ଭ ଗୁଡିକ ଭାଙ୍ଗି ଦେଇଥିଲେ । ଏହି ଦ୍ୱୀପରେ ଛଅଗୋଟି ମନ୍ଦିର ଅଛି । ଗର୍ଭ ଗୃହରେ ୧୯ ଫୁଟ ଉଚ୍ଚର ଶିବ ମୂର୍ତ୍ତି ଅଛି । ସେ ମୂର୍ତ୍ତି ଗୁଡିକ ସବୁ ବିକଳାଙ୍ଗ ହୋଇଯାଇଛି । ସେଠାକାର ଲୋକମାନେ କୁହନ୍ତି ସେଗୁଡିକ କାଳକ୍ରମେ ବିକଳାଙ୍ଗ ହୋଇନାହିଁ । ପର୍ତ୍ତୁଗୀଜ ମାନେ ଧର୍ମାନ୍ଧତା ଯୋଗୁଁ ହିନ୍ଦୁ ମୂର୍ତ୍ତି ଗୁଡିକ ବିକଳାଙ୍ଗ କରିଦେଇ ଥିଲେ ।

ସେଠାରୁ ମେରାଇନ୍ ଡ୍ରାଇଭ୍‌ରେ ଥିବା 'ମାଛ ରଖିବାର କାଚ ନିର୍ମିତ ପାତ୍ର (ଆକ୍ୱାରିୟମ୍) ଦେଖିବାକୁ ଗଲୁ । ଆକ୍ୱାରିୟମ୍‌ରେ ବଡ ବଡ କାଚ ପାତ୍ରରେ ପାଣି ରଖାଯାଇ ବିଭିନ୍ନ ପ୍ରକାରର ମାଛ ସବୁ ରଖାଯାଇଥାଏ । କାଚ ପାତ୍ର ଗୁଡିକରେ ଛୋଟ ଛୋଟ ଗଛ ସବୁ ଥାଏ । ମାଛ ମାନଙ୍କର ଖାଇବା ଜିନିଷ ମଧ୍ୟ ଥାଏ । ସେହି ପାଣି ଭିତରକୁ ଅମ୍ଳଜାନ ସବୁବେଳେ

ଛଡା ଯାଉଥାଏ । ପାଣି ଅପରିଷ୍କାର ହୋଇଗଲେ ଥରକୁ ଥର ବଦଳ କରା ଯାଉଥାଏ । ବମ୍ବେରେ ଥିବା ଗୋଟିଏ ଠାକୁରାଣୀ ମନ୍ଦିର ଏବଂ ସିଦ୍ଧ ବିନାୟକ ମନ୍ଦିର ଦେଖିବାକୁ ଯାଇଥିଲୁ । ମୋ ପୁଅ ରଞ୍ଜନ ମିଶ୍ର ଅଜିତ୍ ମହାନ୍ତିଙ୍କ ପାଖରେ ରହିଲା ପରେ ଆମେ ବମ୍ବେରୁ ବାହାରି ସିକନ୍ଦରାବାଦରେ ଓହ୍ଲାଇଲୁ ।

ଆମ ସାଙ୍ଗରେ ଡକ୍ଟର ଆକାଶ ସାହୁ ମଧ୍ୟ ବମ୍ବେରୁ ଫେରୁ ଥାଆନ୍ତି । ଆମେ ସିକନ୍ଦରାବାଦରେ ଓହ୍ଲାଇ ଗୋଟିଏ ହୋଟେଲର ଦୁଇ ଜଣିଆ କୋଠରୀ ଭଡା ନେଇ ସେଥିରେ ଆମେ ତିନି ଜଣ ରହିବୁ ବୋଲି ହୋଟେଲ୍ ମ୍ୟାନେଜରଙ୍କ ଠାରୁ ଅନୁମତି ନେଇ ରହିଥିଲୁ । ରହିବାଟା ବେଶ୍ ଆନନ୍ଦ ଦାୟକ ହେଲା । ଖାଇବାଟା ଆମ ସମସ୍ତଙ୍କ ପକ୍ଷରେ ଅସୁବିଧା ହେଲା ଏବଂ ମୁଁ ଜମା ଅତ୍ୟଧିକ ରାଗ ଯୋଗୁଁ ଖାଇ ପାରିଲି ନାହିଁ । ମୁଁ ଖାଲି ଦହି ଭାତ ଖାଉଥିଲି

## ସାଲରଜଙ୍ଗ ମ୍ୟୁଜିଅମ୍ ପରିଦର୍ଶନ

ଦିନେ ୧୦ଟା ବେଳକୁ ଆମେ "ସାଲରଜଙ୍ଗ" ମ୍ୟୁଜିଅମ୍ ଦେଖିବାକୁ ଗଲୁ । ଏହି ମ୍ୟୁଜିଅମ୍‌ଟି ହାଇଦ୍ରାବାଦର ନିଜାମ ତିଆରି କରିଥିଲେ । ତାଙ୍କ ନାମ ଅନୁସାରେ ସାଲରଜଙ୍ଗ ମ୍ୟୁଜିଅମ୍ ହୋଇଛି । ସାଲରଜଙ୍ଗ ମ୍ୟୁଜିଅମ୍‌ରେ ପ୍ରତ୍ୟେକ ଲୋକଙ୍କର ଦେଖିବା ପାଇଁ ବହୁତ ଜିନିଷ ଅଛି, ଯାହାକି ଏଠାରେ ବର୍ଣ୍ଣନା କରିହେବ ନାହିଁ । ସବୁ ଦର୍ଶନୀୟ ବସ୍ତୁରୁ ଯେଉଁଟି ମୋତେ ଅତି ଭଲ ଲାଗିଲା ସେଇଟି ବର୍ଣ୍ଣନା କରୁଛି । ସେହିଟା ଦିନ ଏଗାରଟା କିମ୍ବା ବାରଟା ବେଳେ ଦେଖିଲେ ଭଲ ଲାଗିବ । ଗୋଟିଏ ବଡ ଘଣ୍ଟା ଅଛି । ଘଣ୍ଟା ଦେହରେ ଏପରି ବ୍ୟବସ୍ଥା କରାଯାଇଛି ଯେ ପ୍ରତି ଘଣ୍ଟାରେ ଗୋଟିଏ ଛୋଟ କଣ୍ଢେଇ ଘଣ୍ଟା ଭିତରୁ ବାହାରି ଆସି ଗୋଟିଏ କାଠ ହାତୁଡାରେ ଝୁଲୁଥିବା ଘଣ୍ଟାକୁ ବାଡେଇବ । ଯେତେବେଳେ ଦଶଟା ବାଜିଥିବ ଦଶ ଥର ବାଡେଇବ, କିମ୍ବା ବାରଟା ବାଜିଥିଲେ ବାର ଥର ବାଡେଇବ । ସେହିପରି ଗୋଟାଏ ବାଜିଲା ବେଳେ ଥରେ ବାଡେଇବ । ତାର ଠିକ୍ ଅଧ ଘଣ୍ଟା ପରେ କଣ୍ଢେଇଟି ବାହାରି ଆସି ହାତୁଡାରେ ଗୋଟାଏ ଘଣ୍ଟା ବାଡେଇ ଦେଇ ତା ଯାଗାକୁ ଚାଲିଯିବ । ଏହା ବ୍ୟତିତ ବହୁତ ପ୍ରକାର ମୂର୍ତ୍ତି, ନବାବ ମାନଙ୍କ ପିନ୍ଧିବା ପୋଷାକ ସବୁ ରଖା ଯାଇଛି । ସେମାନେ ବ୍ୟବହାର କରୁଥିବା ଅସ୍ତ୍ର ଶସ୍ତ୍ର, ଓ ନବାବ ମାନଙ୍କର ତୈଳ ଚିତ୍ର ସବୁ ରହିଛି । ସେ ମ୍ୟୁଜିଅମ୍‌ଟି ଭଲ ଭାବରେ ଗୋଟାଏ ଦିନରେ ମଧ୍ୟ ଦେଖି ହେବ ନାହିଁ । ଆମେ ଦୁଇ ଘଣ୍ଟା ଭିତରେ ଯାହା ପାରିଲୁ ତାହା ଦେଖି ପଳାଇ ଆସିଲୁ । ସେହିଭଳି ଭାବରେ ଦୁଇ ଦିନ କୌଣସି ପ୍ରକାରେ କଟାଇ ଦେଇ ତାପର ଦିନ ସହରରୁ କିଛି ଜିନିଷ କିଣା କିଣି କରି କଟକ ଫେରି ଆସିଲୁ । କଟକ ଫେରି ମୁଁ ବ୍ରହ୍ମପୁର ଫେରି ଯାଇ ମୋ କାମରେ ଯୋଗ ଦେଲି ।

ଫେବୃଆରୀ ୮ ତାରିଖରେ ମୋ ସାନ ଝିଅ ଫୋନ୍ କରି ମୋତେ କହିଲା ରେଭେନ୍‌ସା କଲେଜର ପ୍ରିନ୍ସିପାଲ୍ ହିସାବରେ ଡକ୍ଟର ଅନନ୍ତ ସାହୁ ନିଯୁକ୍ତ ହୋଇଛନ୍ତି । ଏହି ଖବର ଶୁଣି ମୋ ମନ ବହୁତ କଷ୍ଟ ହେଲା । ମୋର ବହୁତ ଦିନ ପର୍ଯ୍ୟନ୍ତ ଛୁଟି ଥାଏ । ତେଣୁ ମୁଁ ଖରାଛୁଟି ପର୍ଯ୍ୟନ୍ତ ଛୁଟି ନେଇ କଟକ ପଳାଇ ଆସିଲି । କଟକରେ ରହିବାର ୨/୩ ଦିନ ପରେ

ଆମେ ଦୁହେଁ ବସି ଠିକ୍ କଲୁ ରେଭେନ୍ସା କଲେଜ କ୍ୱାର୍ଟର ଛାଡି ଦେଇ ଆସି ଭୁବନେଶ୍ୱରରେ ରହିବୁ । କାରଣ ଫେବୃଆରୀ ମାସ ଶେଷ ସୁଦ୍ଧା ମୋର ପରିଯୋଜନାଟି ସରିଯିବ । ଆଉ ମଧ୍ୟ ରେଭେନ୍ସା କଲେଜର ଅଧ୍ୟକ୍ଷ ହିସାବରେ ଚାକିରୀ କରିବା ସମ୍ଭବ ହେବ ନାହିଁ, ତେଣୁ ଫେବୃଆରୀ ୦୯ ତାରିଖ ଦିନ କଟକରୁ ସବୁ ଜିନିଷ ପତ୍ର ଟ୍ରକରେ ଧରି ମୋ କ୍ୱାର୍ଟର ଖାଲିକରି ଭୁବନେଶ୍ୱର ପଳାଇ ଆସିଲୁ । ମୁଁ ଫେବୃଆରୀ ମାସର ଶେଷ ଆଡକୁ ଗୋଟିଏ ଚିଠି ପାଇଲି । ସେ ଚିଠିଟି ଡକ୍ଟର ରାୟଚୌଧୁରୀ ଦେଇଥିଲେ । ଗୋଟିଏ ନ୍ୟାସନାଲ ସେମିନାର ଅନ୍ ପ୍ଲାଜମା ସାଇନ୍ସ୍ ଆସନ୍ତା ଡିସେମ୍ବର ୦୪ ତାରିଖରୁ ୦୮ ତାରିଖ ମଧ୍ୟରେ ଯାଦବପୁର ବିଶ୍ୱବିଦ୍ୟାଳୟରେ ହେବ । ରାୟଚୌଧୁରୀଙ୍କୁ ମୁଁ ଆଗରୁ ଚିହ୍ନିଥାଏ । ସେ ଡକ୍ଟର ଜେ.ଏନ୍.ମହାନ୍ତିଙ୍କ ପିଏଚ୍.ଡି ଥିସିସ୍‌ର ପରୀକ୍ଷକ ଥିଲେ ଏବଂ ମୌଖିକ ପରୀକ୍ଷା ପାଇଁ ଭୁବନେଶ୍ୱର ଆସିଥିଲେ ଏବଂ ଜଣାଇଥିଲେ, ଆପଣ ପରିଚାଳନା ସମିତିର ଜଣେ ସଭ୍ୟରୂପେ ମନୋନୀତ ହୋଇଛନ୍ତି । ଯାଦବପୁର ବିଶ୍ୱବିଦ୍ୟାଳୟର କୁଳପତି ଆପଣଙ୍କୁ ମନୋନୀତ କରିଛନ୍ତି । ଏହା ଅପ୍ରେଲ ୧୨ ତାରିଖରେ ଯାଦବପୁର ବିଶ୍ୱବିଦ୍ୟାଳୟରେ ଅନୁଷ୍ଠିତ ହେବ । ତେଣୁ ଆପଣ ୧୨ ତାରିଖରେ ଏହି ପରିଚାଳନା ସମିତିର ସଭାରେ ଯୋଗ ଦିଅନ୍ତୁ ।

ମାର୍ଚ୍ଚ ପ୍ରଥମ ସପ୍ତାହରେ ବିକ୍ରମ ବିଶ୍ୱବିଦ୍ୟାଳୟ, ଉଜ୍ଜୟିନୀର ଫିଜିକ୍ସ ପ୍ରଫେସର ଡକ୍ଟର ଏସ୍.ସି.ଭାଣ୍ଡଙ୍କ ଠାରୁ ଗୋଟିଏ ଚିଠି ପାଇଲି । ସେଥିରେ ମୋତେ ଅନୁରୋଧ କରାଯାଇ ଥିଲା, ଆପଣ ଇଉ.ଜି.ସି ଭିଜିଟିଙ୍ଗ୍ ପ୍ରଫେସର ଭାବରେ ମାର୍ଚ୍ଚ ୧୫ ତାରିଖରୁ ମାର୍ଚ୍ଚ ୩୧ ପର୍ଯ୍ୟନ୍ତ ୧୫ ଦିନ ପାଇଁ ଆସି ପ୍ଲାଜମାର କେତୋଟି ପରୀକ୍ଷା କରି ପିଲାଙ୍କୁ ଦେଖାଇ ଦେବ । ସେଥିପାଇଁ ଡକ୍ଟର ଛେଦଲାନୀ ସାହାଯ୍ୟ କରିବେ ଏବଂ ଆପଣଙ୍କର ଯିବା ଆସିବା ଖର୍ଚ୍ଚ ବ୍ୟତିତ ଆପଣଙ୍କୁ ଦିନକୁ ଦୁଇ ଶହ ଟଙ୍କା ଲେଖାଏଁ ଭତ୍ତା ଦିଆଯିବ । ଆପଣ କେବେ ଆସିବେ ଟେଲିଗ୍ରାମ୍ କରି ଜଣାଇବେ । ମୁଁ ସାଙ୍ଗେ ସାଙ୍ଗେ ତାଙ୍କୁ ଜଣାଇ ଦେଲି,. ମୁଁ ୧୫ ତାରିଖରେ ଭୁବନେଶ୍ୱରରୁ ଉତ୍କଳ ଏକ୍ସପ୍ରେସରେ ବାହାରିବି ଏବଂ ୧୭ ତାରିଖ ଦିନ ସକାଳେ ଉଜ୍ଜୟିନୀରେ ପହଞ୍ଚିବି । ତାପରେ ସାଙ୍ଗେ ସାଙ୍ଗେ ଯାଇ ଗୋଟିଏ ଫାଷ୍ଟକ୍ଲାସ ଟିକେଟ୍ ଉଜୟିନୀ ପର୍ଯ୍ୟନ୍ତ କରିଦେଲି ।

## ଉପର ମହଲାରେ ଥାଇ ତଳ ମହଲାର ଦାଣ୍ଡ ଦୁଆର ଖୋଲିବାର ଉପାୟ

ଭୁବନେଶ୍ୱରରେ ଆମେ ପିଲାମାନେ ସମସ୍ତେ ଯାଇ ଉପରେ ମହଲାରେ ରହିଥିଲୁ । ୮/୧୦ ଦିନ ପରେ ଆମେ ପିଲାମାନେ ସମସ୍ତେ ଅନୁଭବ କଲୁ ଉପର ମହଲାରୁ ତଳକୁ ଯାଇ ଦୁଆର ଖୋଲିବା ଏବଂ ବନ୍ଦ କରିବାରେ ଆମ ସମସ୍ତଙ୍କୁ କଷ୍ଟ ହେଉଛି । ମୋ ସ୍ତ୍ରୀ କହିଲେ,ତୁମେ ଗୋଟିଏ ଏପରି ବ୍ୟବସ୍ଥା କର ଯେପରି ଦୁଆରଟା ଉପରୁ ଖୋଲିଯିବ ଏବଂ ତଳୁ ଘର ଲୋକ ଗଲାବେଳେ ବନ୍ଦ କରିଦେଇ ପାରିବେ । ଏଇ ବ୍ୟବସ୍ଥାଟି ଭାବି ଠିକ୍ କରିବା ପାଇଁ ମୋତେ ପ୍ରାୟ ୧୫ ଦିନରୁ ବେଶୀ ସମୟ ଲାଗିଗଲା । ତାପରେ ସେହି ଅନୁସାରେ ମୁଁ ସବୁ ବ୍ୟବସ୍ଥା କରିଦେଲି

ଏବଂ ଦୁଆର ଦେହରେ ଖଞ୍ଜି ଦେଲି । ଉପରୁ ଗୋଟିଏ ଦଉଡି ଅଛି ତାକୁ ଭିଡି ଦେଲେ ଦୁଆରଟି ଖୋଲିଯାଏ ଓ ଓହ୍ଲାଇ କରି ଗଲାବେଳେ ଯେକୌଣସି ଲୋକକୁ କହିଦେଲେ ସେ ଦୁଆରଟି ଭିତରୁ ବନ୍ଦ କରିଦେଇ ପାରନ୍ତି । ଏହି ବ୍ୟବସ୍ଥା ହେଲା ପରେ ମୋର ସମ୍ପର୍କୀୟ ଜଣେ ଦୁଇଜଣ କଲିଂ ବେଲ୍ ବଜାଇବା ପରେ ଦୁଆର ମନକୁ ମନ ଖୋଲିଯାଏ । ସେମାନେ ଡରି କରି ଘର ଭିତରକୁ ଯାଆନ୍ତି ନାହିଁ । ଏହି ପରିସ୍ଥିତି ଦୂର କରିବା ପାଇଁ ଗୋଟିଏ ବଡ ଦର୍ପଣ ଦୁଆରର ବିପରୀତ ଦିଗରେ କାନ୍ଥ ସହିତ ନିର୍ଦ୍ଦିଷ୍ଟ କୋଣ କରି ଲଗାଇ ଦେଲି । କୌଣସି ଲୋକ ଆସିଲେ ଦୁଆର ଖୋଲି ଦେଲାପରେ ଘର ଲୋକ ତାଙ୍କୁ ଦେଖି ପାରନ୍ତି ଏବଂ ଆଗନ୍ତୁକ ମଧ୍ୟ ଆମକୁ ଦେଖିପାରନ୍ତି । ବହୁ ଲୋକ ଏ ବ୍ୟବସ୍ଥାର ବହୁତ ତାରିଫ କରି କହିଛନ୍ତି, ଆମ ଘରେ ମଧ୍ୟ ଏହିପରି ବ୍ୟବସ୍ଥା କରି ଦିଅନ୍ତୁ । ମୁଁ 'ହଁ' କରିଛି ଏବଂ 'ତୁମ ଦୁଆରର ଅବସ୍ଥିତି ଦେଖିଲେ କରି ଦେବି' ବୋଲି କହିଛି । କିନ୍ତୁ କେହି ଆସି ମୋତେ ତାଙ୍କ ଦୁଆରର ଅବସ୍ଥିତି ଦେଖିବା ପାଇଁ କହି ନାହାନ୍ତି ।

ତାର ଅଳ୍ପ କେତେ ଦିନ ପରେ ମୁଁ ଡକ୍ଟର ବି.ଭଟ୍ଟାଚାର୍ଯ୍ୟ ନାମକ ବ୍ୟକ୍ତିଙ୍କ ଠାରୁ ଚିଠି ପାଇଲି । ସେଥିରେ ଲେଖାଥିଲା,ଆଇ.ଏ.ପି.ଟିର ବାର୍ଷିକ ଅଧିବେଶନ ଶିଲଂର ସେଣ୍ଟ ଜୋସେଫ୍ କଲେଜରେ ଅନୁଷ୍ଠିତ ହେବ । ଏହା ୦୩ ଅପ୍ରେଲରୁ ଆରମ୍ଭ ହେବ । ତେଣୁ ବାର୍ଷିକ ଅଧିବେଶନରେ ଆପଣଙ୍କୁ ଯୋଗ ଦେବାକୁ ଅନୁରୋଧ କରୁଛି । ଶିଲଂ ଯିବାକୁ ମୋର ମନ ହେଲା । କାରଣ ସେଠାକୁ ଆଗରୁ କେବେ ଯାଇ ନ ଥିଲି । ସେତେବେଳକୁ ମୋ ଝିଅ ପ୍ରଭାତୀ ମିଶ୍ର ରାଉରକେଲା ମ୍ୟୁନିସିପାଲ୍ କଲେଜରେ ଫିଜିକ୍ସ ଅଧ୍ୟାପିକା ଥିଲା । ସେ ମଧ୍ୟ ଆଇ.ଏ.ପି.ଟି.ର କାର୍ଯ୍ୟ ନିର୍ବାହୀ ମଣ୍ଡଳୀର ସଭ୍ୟା ନିର୍ବାଚିତ ହୋଇଥିଲା । ସେ ଯିବା ପାଇଁ ନିମନ୍ତ୍ରିତ ହୋଇଥିଲା । ସେ ମଧ୍ୟ ଯିବା ପାଇଁ ଇଚ୍ଛୁକ୍ ଥିଲା । କିନ୍ତୁ ମୋର ଯିବାପାଇଁ ଟିକେ ଅସୁବିଧା ହେଲା, କାରଣ ଉଜ୍ଜୟିନୀରୁ ଫେରି ୨ ତାରିଖରେ କେବେ ଶିଲଂରେ ପହଞ୍ଚି ହେବ ନାହିଁ । ତେଣୁ ମୁଁ ଝିଅକୁ ପଚାରି ୨ ତାରିଖ ଦିନ ବାୟୁ ଦୂତରେ କଲିକତାର ଦମ୍‌ଦମ୍ ବିମାନ ବନ୍ଦରରୁ ଶିଲଂ ବିମାନ ବନ୍ଦରକୁ ଯୋଡିଏ ଟିକେଟ୍ ସଂରକ୍ଷିତ କରିଦେଲି । ସେହି ଅନୁସାରେ ଆମ ଦୁଇ ଜଣଙ୍କର ଯିବାର ବ୍ୟବସ୍ଥା କରିଦେଲି ।

୧୫ ତାରିଖ ଦିନ ଉତ୍କଳ ଏକ୍ସପ୍ରେସ୍‌ରେ ଉଜ୍ଜୟିନୀ ଯିବା ପାଇଁ ଭୁବନେଶ୍ୱର ଷ୍ଟେସନକୁ ଗଲି । ଷ୍ଟେସନ୍‌ରେ ବୁଝିଲି ଉତ୍କଳ ଏକ୍ସପ୍ରେସ୍ ୩ ଘଣ୍ଟା ବିଳମ୍ବ ଅଛି । ତେଣୁ ଘରକୁ ଫେରି ଆସିଲି । ୩ ଘଣ୍ଟା ପରେ ପୁଣି ଷ୍ଟେସନ୍‌କୁ ଗଲି, ବୁଝିଲି ଅନିର୍ଦ୍ଦିଷ୍ଟ ସମୟ ପାଇଁ ଉତ୍କଳ ଏକ୍ସପ୍ରେସ୍ ଡେରି ହେବ । ତେଣୁ ମୁଁ ଜାଣି ପାରିଲି ବିନା ଠାରୁ ଉଜ୍ଜୟିନୀ ଯିବା ପାଇଁ ସଂଯୋଗ କାରୀ ଟ୍ରେନ୍ ପାଇବି ନାହିଁ । ତେଣୁ ଟିକେଟ୍‌ଟି ଷ୍ଟେସନ୍‌ରେ ଫେରସ୍ତ କରିଦେଇ ପଇସା ଆଣି ଘରକୁ ଆସିଲି । ତାପର ଦିନ ସକାଳେ ପୁଣି ଯିବା ପାଇଁ ଠିକ୍ କଲି । ତେଣୁ ଆମେ ସମସ୍ତେ ଗୋଟିଏ କାର ଭଡା କରି ପୁରୀ ପର୍ଯ୍ୟନ୍ତ ଗଲୁ । ଯଦି ପୁରୀରେ ସଂରକ୍ଷିତ ସ୍ଥାନ ମିଳିବ ତାହାହେଲେ ଉଜ୍ଜୟିନୀ ଯିବି'ନ ହେଲେ ଫେରି ଆସିବି । କାରଣ ବିକ୍ରମ ବିଶ୍ୱବିଦ୍ୟାଳୟର



କଲିକତାର ପ୍ଲାଜମା ବକ୍ତବ୍ୟ ପ୍ରଦାନ ସମୟରେ
ଅତିଥିମାନଙ୍କ ଗ୍ରହଣରେ : ୦୪.୧୨.୨୦୦୦ ଠାରୁ ୮.୧୨.୨୦୦୦



କଲିକତା ଠାରେ ଅନୁଷ୍ଠିତ ପ୍ଲାଜମାର ବାର୍ଷିକ ଉତ୍ସବରେ ଡକ୍ଟର ମିଶ୍ର
ବକ୍ତାମାନଙ୍କର ବକ୍ତବ୍ୟ ଶୁଣୁଛନ୍ତି । ତାରିଖ ୦୪.୧୨.୨୦୦୦



ଗୌହାଟି ପ୍ଲାଜମା ଫିଜିକ୍ସ କେନ୍ଦ୍ରର ୨୦୦୧ ମସିହା ବାର୍ଷିକ ଉତ୍ସବରେ
ସମ୍ବର୍ଦ୍ଧନା ପ୍ରଦାନ ଓ ଡକ୍ଟର ମିଶ୍ରଙ୍କ ଦ୍ୱାରା ସୋଭେନିୟର ଉନ୍ମୋଚନ ।
ପାର୍ଶ୍ୱରେ ମାନ୍ୟବର ରାଜ୍ୟପାଳ ଓ ଡକ୍ଟର ପଣ୍ଡ : ତାରିଖ ୧୮.୧୨.୨୦୦୧



୨୦୦୨ ମସିହା ନିମନ୍ତେ ବରିଷ୍ଠ ବୈଜ୍ଞାନିକ ଭାବେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ
ଦ୍ୱାରା ସମ୍ବର୍ଦ୍ଧିତ, ସ୍ଥାନ - ଇଡ୍‌କଲ ଅଡିଟୋରିୟମ୍ : ତାରିଖ ୨୦.୦୧.୦୫



ରେଭେନ୍ସା ମହାବିଦ୍ୟାଳୟ ପଦାର୍ଥ ବିଜ୍ଞାନ ବିଭାଗ ପକ୍ଷରୁ ସମ୍ବର୍ଦ୍ଧନା ଓ ମାନପତ୍ର ପ୍ରଦାନ : ପାର୍ଶ୍ୱରେ ତିନି ଛାତ୍ରୀଛାତ୍ର - ଡକ୍ଟର ପ୍ରତିଭା ମିଶ୍ର, ଡକ୍ଟର ଅଭିମନ୍ୟୁ ମିଶ୍ର ଓ ଡକ୍ଟର ଆକାଶ ସାହୁ : ୨୭.୧୧.୨୦୦୬



ସିମଳା ବିଶ୍ୱବିଦ୍ୟାଳୟରେ ଆୟୋଜନ କରାଯାଇଥିବା IAPT ସମ୍ମେଳନରେ ଡ଼କ୍ଟର ମିଶ୍ରଙ୍କ ସହିତ ମେଦିନ୍‌ପୁର ବିଶ୍ୱବିଦ୍ୟାଳୟର ଅବସରପ୍ରାପ୍ତ ଡ଼କ୍ଟର ସାମନ୍ତ ଓ ତାଙ୍କ ସହଧର୍ମିଣୀଙ୍କ ସହିତ ଦୁଇ ଜଣ ସ୍ୱେଚ୍ଛାସେବକ : (୨୪.୧୦.୨୦୦୭)



ଡକ୍ଟର ମିଶ୍ରଙ୍କର ଜ୍ୟେଷ୍ଠ ଜାମାତା (ରାଉରକେଲା ଷ୍ଟିଲ୍‌ପ୍ଲାଣ୍ଟର ଡେପୁଟି ମ୍ୟାନେଜର)
ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର ଇଂଲଣ୍ଡର ଏକ ସ୍ଥାନରେ ବସିଛନ୍ତି ।



ବାଙ୍ଗାଲୋରରେ ଡକ୍ଟର ମିଶ୍ରଙ୍କର କନିଷ୍ଠ ଜାମାତା
ଶ୍ରୀ ଜୟଶଙ୍କର ରଥ ଏବଂ ଝିଅ ପ୍ରଣତି

ଫିଜିକ୍ସ ପ୍ରଫେସର ଡକ୍ଟର ଭାଣ୍ଡ ଲେଖିଥିଲେ, ଆପଣ ନ ଆସିଲେ ଟଙ୍କା ଆଉ ମିଳିବ ନାହିଁ । କାରଣ ଅପ୍ରେଲ ପହିଲା ଠାରୁ ନୂଆ ବର୍ଷ ଆରମ୍ଭ ହୋଇଯିବ । ପୁରୀରେ ପହଁଚି ଆଗ ଷ୍ଟେସନ୍‌କୁ ଗଲୁ । ଭଗବାନ୍‌ଙ୍କ କୃପାରୁ ପୁରୀଠାରୁ ଭୋପାଳ ଯାଏ ସଂରକ୍ଷିତ ଟିକେଟ୍ ମିଳିଗଲା । ତାପରେ ଜଗନ୍ନାଥ ଦର୍ଶନ କରି ପୁରୀ ଷ୍ଟେସନ୍ ଗଲୁ ।

## ପରିଦର୍ଶକ ବୈଜ୍ଞାନିକ, ଉଜ୍ଜୟିନୀ
## ଏବଂ ଆଇ.ଏ.ପି.ଟିର ବାର୍ଷିକ ଅଧିବେଶନ ଶିଲଂ

ମୁଁ ସେଠାରୁ ଉଜ୍ଜୟିନୀ ଗଲି ଏବଂ ପିଲାମାନେ ଫେରି ଆସିଲେ । ବିନା ଠାରେ ପ୍ରାୟ ସକାଳ ୫ଟା ବେଳେ ପହଁଚିଲି । ସାଙ୍ଗେ ସାଙ୍ଗେ ଭୋପାଳ ଯିବା ପାଇଁ ଟ୍ରେନ୍ ପାଇଗଲି । ଭୋପାଳରେ ଦିନ ୧୦ଟା ବେଳେ ପହଁଚିଲି । ସେ ଟ୍ରେନ୍‌ଟି ଉଜ୍ଜୟିନୀ ପର୍ଯ୍ୟନ୍ତ ଯାଏନାହିଁ । ତେଣୁ ଭୋପାଳ ଷ୍ଟେସନରେ ଗାଡିରୁ ଓହ୍ଲାଇ ଭୋପାଳ ବସ୍‌ଷ୍ଟାଣ୍ଡ ଠାରୁ ବସ୍‌ରେ ଉଜ୍ଜୟିନୀ ଗଲି । ଉଜ୍ଜୟିନୀ ବସ୍‌ଷ୍ଟାଣ୍ଡରେ ପ୍ରାୟ ଦିନ ଗୋଟାଏ ବେଳେ ପହଁଚିଲି । ସେଠାରୁ ଅଟୋରିକ୍ସାରେ ବସି ଡକ୍ଟର ଝେଦ୍‌ଲାନୀଙ୍କ ଘରକୁ ଗଲି । ସେ ମୋତେ ଅପେକ୍ଷା କରିଥିଲେ । କାରଣ ପୁରୀ ଛାଡିବା ପୂର୍ବରୁ ମୁଁ ସ୍ତ୍ରୀଙ୍କୁ କହିଥିଲି ତୁମେ ଝେଦଲାନୀଙ୍କ ପାଖକୁ ଗୋଟିଏ ଟେଲିଗ୍ରାମ କରିଦେବ ଯେ ମୁଁ ୧୭ ତାରିଖ ଦିନ ନ ପହଁଚି ୧୮ ତାରିଖ ଦିନ ପହଁଚିବି । ଝେଦ୍‌ଲାନୀଙ୍କ ଘରେ ପହଁଚି ଜାଣିଲି ମୁଁ ପଠାଇଥିବା ଟେଲିଗ୍ରାମ ସେ ପାଇଛନ୍ତି । ଝେଦ୍‌ଲାନୀ ମୋ ସାଙ୍ଗରେ ଯାଇ ଅତିଥି ଭବନରେ ମୁଁ ରହିବା ପାଇଁ ଗୋଟିଏ କୋଠରୀର ବ୍ୟବସ୍ଥା କରିଦେଲେ । ସେ ମୋତେ କହିଲେ, ଆପଣ ଗାଧୁଆ ପାଧୁଆ ସାରି ଦିଅନ୍ତୁ । ଏହା ଭିତରେ ମୁଁ ଆପଣଙ୍କ ପାଇଁ ଖାଇବାକୁ ପଠାଇ ଦେଉଛି । ପ୍ରାୟ ଏକ ଘଣ୍ଟା ପରେ ସେ ପୁଣି ଆସିଲେ ଏବଂ ତାଙ୍କ ଘରକୁ ଖାଇବା ପାଇଁ ଡାକିନେଲେ । ତାଙ୍କ ଘରଟି ଅତିଥି ଭବନରୁ ଅଳ୍ପ ଦୂରରେ ଅବସ୍ଥିତ । ଖାଇସାରି ଆସି ମୁଁ ଅତିଥି ଭବନରେ ବିଶ୍ରାମ ନେଲି । ପୁଣି ଚାରିଟା ବେଳେ ଝେଦ୍‌ଲାନୀ ଅତିଥି ଭବନକୁ ଆସିଲେ ଏବଂ ମୋତେ ଡିପାର୍ଟମେଣ୍ଟକୁ ନେଇଗଲେ । ସେ ତାଙ୍କ କଲେଜର ମୁଖ୍ୟ ପ୍ରଫେସର ଡକ୍ଟର ଭାଣ୍ଡଙ୍କ ସଙ୍ଗେ ଦେଖା କରାଇଲେ । ପ୍ଲାଜମା କୋଠରୀ ତିଆରି କରିବା ପାଇଁ ତାଙ୍କ ବିଶ୍ୱବିଦ୍ୟାଳୟର ମୁଖ୍ୟ ମିସ୍ତ୍ରୀଙ୍କୁ ମୋ ପାଖକୁ ଡାକି ଆଣିଲେ । ମୁଖ୍ୟ ମିସ୍ତ୍ରୀଙ୍କୁ ବଜାରରୁ କଣ ସବୁ ଜିନିଷ ଆଣିବାକୁ ହେବ, ବୁଝାଇ ଦେଲି । ତାପରେ ସେ ଚାଲିଗଲେ । ତାପର ଦିନଠାରୁ ୱାର୍କସପ୍‌କୁ ଯାଇ ମୋର କହିବା ଅନୁସାରେ ପ୍ଲାଜମା କୋଠରୀଟି ତିଆରି କରିବାକୁ ଲାଗିଲେ । ମୁଁ ଯାହା କହୁଥାଏ ସେମାନେ ସେହିପରି ଭାବରେ କରୁଥାଆନ୍ତି । ପ୍ଲାଜମା କୋଠରୀଟି ତିଆରି କରିବା ପାଇଁ ପ୍ରାୟ ଆଠଦିନ ଲାଗିଲା । ଏହା ଭିତରେ ମୁଁ ଥରେ ଉଜ୍ଜୟିନୀରେ ଥିବା ଶିବ ମନ୍ଦିରକୁ ଯାଇଥିଲି । ଗୋଟିଏ ଛୋଟ ଶିବ ଲିଙ୍ଗ ଓ ଶକ୍ତି କିଣି ଆଣିଥିଲି । ତାହା ଏ ପର୍ଯ୍ୟନ୍ତ ଆମ ଘରେ ପୂଜା ପାଉଛନ୍ତି । ଦିନେ ରାତିରେ ମୁଁ କାଳିଦାସ ସମାରୋହ ଦେଖିବାକୁ ନିମନ୍ତ୍ରଣ ପାଇଥିଲି ଏବଂ ଝେଦଲାନୀଙ୍କ ସାଙ୍ଗରେ ସମାରୋହ ଦେଖିବାକୁ ଯାଇଥିଲି । ଆଉ ଦିନେ ଡକ୍ଟର ଝେଦଲାନୀଙ୍କ ସାଙ୍ଗରେ ଇନ୍ଦୋର ବୁଲିବାକୁ ଯାଇଥିଲି । ସେଠାରେ ସେଣ୍ଟର ଅଫ୍ ଆଡଭାନସ୍

ଟେକ୍‌ନୋଲୋଜି ଦେଖିବାକୁ ଯାଇଥିଲି । ମୁଁ ଦେଖିବାକୁ ଗଲାବେଳେ ପ୍ଲାଜମା ଏକ୍ସପେରିମେଣ୍ଟ ଉପରେ ଯେଉଁ ପାଣ୍ଡୁଲିପିଟି ପ୍ରସ୍ତୁତ କରିଥିଲି ତାର ଏକ କପି ସାଙ୍ଗରେ ନେଇଥିଲି । ତାହାକୁ ଡାଇରେକ୍ଟରଙ୍କୁ ଦେଖାଇ ଥିଲି । ଡାଇରେକ୍ଟରଙ୍କ ନାମ ମୋର ମନେ ନାହିଁ । ସେ କହିଲେ ଏକ୍ସପେରିମେଣ୍ଟର ପରୀକ୍ଷା ଗୁଡ଼ିକ ଅତି ସରଳ ଭାବରେ ଏବଂ ପରୀକ୍ଷା ଉପକରଣ ଗୁଡ଼ିକ ଶସ୍ତାରେ ଏବଂ ନୂଆ ପ୍ରକାରରେ ତିଆରି କରାଯାଇଛି । ଏହି ସମୟ ଭିତରେ ପ୍ଲାଜମା କୋଠରୀଟି ତିଆରି ସରିଯାଇ ଥାଏ । କୋଠରୀ ସାହାଯ୍ୟରେ ପରୀକ୍ଷା ନିରୀକ୍ଷା କରିବା ପାଇଁ କୋଠରୀଟି ନେଇ ପରୀକ୍ଷା ଗାରରେ ରଖିଲୁ । ଦିନେ ଦୁଇଦିନ ଲାଗି ପରୀକ୍ଷା କଲାପରେ ଆମେ ଜାଣିଲୁ ଯେ କୋଠରୀଟି ଠିକ୍ ଭାବରେ କାମ କରୁଛି । ଦିନେ ମୁଖ୍ୟ ପ୍ରଫେସର ଡକ୍ଟର ଭାଣ୍ଡ ଓ ଛେଦଲାନୀ କୋଠରୀଟି ଠିକ୍ ଭାବରେ କାମ କରୁଥିବାର ଦେଖି ବହୁତ ଖୁସି ହେଲେ । ମୁଁ ଉଜ୍ଜୟିନୀ ଛାଡ଼ିବା ପୂର୍ବଦିନ ପ୍ରଫେସର ଭାଣ୍ଡ ସାମ୍ବାଦିକ ମାନଙ୍କୁ ଡାକି ମୁଁ ତିଆରି କରିଥିବା ପ୍ଲାଜମା କୋଠରୀଟି ଆଣି ଦେଖାଇଲେ ଏବଂ ଗୋଟିଏ ସାମ୍ବାଦିକ ସମ୍ମିଳନୀର ଆୟୋଜନ କରିଥିଲେ । ସେହି ସମ୍ମିଳନୀରେ ସାମ୍ବାଦିକମାନେ ମୋତେ ସବୁ ଉପକରଣ ଗୁଡ଼ିକ ତିଆରି କରିବା ସମ୍ବନ୍ଧରେ କେତେକ ପ୍ରଶ୍ନ ପଚାରିଥିଲେ । ତାପର ଦିନ ସାମ୍ବାଦିକମାନେ ସମ୍ମିଳନୀର କାର୍ଯ୍ୟସୂଚୀ ନିମ୍ନଲିଖିତ ମତେ ଖବର ଛାପି ଥିଲେ । ଏହି ଖବର ଉଜ୍ଜୟିନୀର 'ଦୈନିକ ଭାସ୍କର' ଓ 'ଚଉଥା ସଂସାର' ଦୈନିକ ସଂବାଦ ପତ୍ରରେ ପ୍ରକାଶିତ ହୋଇଥିଲା ।

'କମ୍ ଖର୍ଚ୍ଚରେ କିଭଳି ଭାବରେ ବଜାରରୁ ଶସ୍ତା ଉପକରଣ କିଣାଯାଇ ପ୍ଲାଜମା ଉପକରଣ ତିଆରି ହୋଇ ପାରୁଛି' ତାହା ଡକ୍ଟର ପି.ମିଶ୍ର ଦେଖାଇ ଥିଲେ । ଏହାକୁ ସ୍ୱୀକୃତି ସାଇନ୍‌ସ ଆଣ୍ଡ ଟେକ୍‌ନୋଲୋଜି ବିଭାଗ ମଧ୍ୟ ଦେଇ ସାରିଛି । ଡକ୍ଟର ପି.ମିଶ୍ର ୧୦ ବର୍ଷ ହେଲା ଏଥିରେ ଲାଗିଛନ୍ତି । ତାଙ୍କ କହିବା ଅନୁସାରେ ବଜାରରେ ଏମିତି ସବୁ ଜିନିଷ ଅଛି ଯାହାର ଦାମ୍ ବହୁତ କମ୍ ଏବଂ ତାହାର ଉପଯୋଗ କରି ଡିଗ୍ରୀ ଏବଂ ପୋଷ୍ଟ ଗ୍ରାଜୁଏଟ୍ କ୍ଲାସ୍ ପାଇଁ ପ୍ରାକ୍‌ଟିକାଲ୍‌ର ଅନେକ ବୈଜ୍ଞାନିକ ଉପକରଣ ତିଆରି ହୋଇ ପାରିବ । ଉଜ୍ଜୟିନୀରେ ସେ ନିଜ ଚେଷ୍ଟାରେ ଏବଂ ଜଣେ ମିସ୍ତ୍ରୀଙ୍କ ସହାୟତାରେ ପ୍ଲାଜମା କୋଠରୀ ନିର୍ମାଣ କରିଥିଲେ । ଏଥିରେ ବଜାରରେ ମିଳୁଥିବା ସାଇକେଲ୍ ଭଲ୍‌ବ, ତାଟୀ, ଲୁହା ବକେଟ, ରିଙ୍ଗ, ସୋଲଡରିଙ୍ଗ ତାର ଇତ୍ୟାଦିର ବ୍ୟବହାର କରି ପ୍ଲାଜମା କକ୍ଷ ତିଆରି ହୋଇଥିଲା । ଆଗରୁ ଏହି ଉପକରଣ କିଣା ଯାଉଥିଲା । ମାତ୍ର ଏବେ ଏହା ଏଠିଠାରେ ତିଆରି ହୋଇପାରୁଛି । ଡକ୍ଟର ମିଶ୍ରଙ୍କ କାମ ବିଷୟରେ ଆମେମାନେ ଛେଦଲାନୀଙ୍କ ଠାରୁ ବୁଝିଲୁ ଏବଂ କାମ ମଧ୍ୟ ଦେଖିଲୁ ।'

ତାପର ଦିନ ମୁଁ ଉଜ୍ଜୟିନୀରୁ ଫେରିବା ପାଇଁ ମୋ ଜିନିଷ ପତ୍ର ବନ୍ଧାବନ୍ଧି କଲି । ଗୋଟିଏ ଚା ଭୋଜିର ଆୟୋଜନ ସଂଧ୍ୟାବେଳେ ହୋଇଥିଲା । ମୁଁ ସେଥିରେ ନିମନ୍ତ୍ରିତ ହୋଇଥିଲି । ସେଠାରୁ ଫେରିଲା ବେଳକୁ ପ୍ରାୟ ରାତି ସାତଟା ହୋଇଗଲା । ମୋ ଗାଡ଼ି ଥାଏ ରାତି ୯ଟା ବେଳେ । ତେଣୁ ମୁଁ ସଙ୍ଗେ ସଙ୍ଗେ ସେମାନଙ୍କଠାରୁ ବିଦାୟ ନେଇ ଉଜ୍ଜୟିନୀ ଷ୍ଟେସନ୍‌କୁ ଗଲି । ଷ୍ଟେସନ୍‌ରେ ବୁଝିଲି ଗାଡ଼ି ଦୁଇ ଘଣ୍ଟା ବିଳମ୍ବ ଅଛି । ତେଣୁ ମୋର ଆଶଙ୍କା

ହେଲା, ମୁଁ ନାଗପୁର ଠାରୁ ଗୀତାଞ୍ଜଳି ଏକ୍ସପ୍ରେସ୍ ପାଇବି କି ନାହିଁ । ଗାଡି ଏଗାରଟା ବେଳକୁ ଆସିଲା । ମୁଁ ଗାଡିରେ ବସିଲା ପରେ ଶୋଇଗଲି । ମୋ ନିଦ ଭାଙ୍ଗିଲା ବେଳକୁ ପ୍ରାୟ ଭୋର ହୋଇଯାଇ ଥାଏ । ମୁଁ ପଚାରି ବୁଝିଲି,କେତେ ସମୟ ପରେ ଗାଡି ନାଗପୁରରେ ପହଁଞ୍ଚିବ । ମୁଁ ସେ କଣ୍ଡକ୍ଟର ଠାରୁ ବୁଝିଲି ଗୀତାଞ୍ଜଳି ଏକ୍ସପ୍ରେସଟି ଉଜ୍ଜୟିନୀ ଠାରୁ ଆସୁଥିବା ଗାଡିଟିର ସଂଯୋଗକାରୀ ଟ୍ରେନ୍ ହୋଇଥିବାରୁ ଅପେକ୍ଷା କରି ରହିଥିଲା । ଗାଡି ପହଁଞ୍ଚିଲା ପରେ ମୁଁ ଦେଖିଲି ଗୀତାଞ୍ଜଳି ସୁପରଫାଷ୍ଟ ଏକ୍ସପ୍ରେସ ଠିଆ ହୋଇଛି ଏବଂ ଗାଡି ପାଖରେ ପହଁଞ୍ଚିଲା କ୍ଷଣି ଶୀତତାପ ନିୟନ୍ତ୍ରଣ ଡବାର କଣ୍ଡକ୍ଟର ମୋତେ ପଚାରିଲା,ଆପଣଙ୍କ ନାମ କଣ ? ମୁଁ ନାମଟି କହିବାରୁ ସେ ସଙ୍ଗେ ସଙ୍ଗେ ମୋତେ ଡାକିନେଇ ମୋର ସଂରକ୍ଷଣ ହୋଇଥିବା ସିଟ୍‌ରେ ବସାଇ ଦେଲା । ଗୀତାଞ୍ଜଳି ଏକ୍ସପ୍ରେସରେ ବସିଲାରୁ ମୁଁ ଶାନ୍ତିରେ ନିଶ୍ୱାସ ମାରିଲି । କିଛି ସମୟ ପରେ ଶୋଇ ଗଲି । ଗାଡିଟି ରାଉରକେଲାରେ ପ୍ରାୟ ରାତି ନଅଟା ବେଳେ ପହଁଞ୍ଚିଲା । ମୋ ଝିଅ ଜ୍ୱାଇଁ ମୋତେ ପାଛୋଟି ନେବାକୁ ଷ୍ଟେସନ୍ ଆସିଥିଲେ । ତାଙ୍କ ଘରକୁ ଯାଇ ରାତିଟି ରହିଲି ।

ତାପର ଦିନ ସଂଧ୍ୟା ବେଳେ ମୁଁ ଓ ମୋ ଝିଅ ହାୱଡା ଅଭିମୁଖେ ଯାତ୍ରା କଲୁ । ହାୱଡାରେ ସକାଳେ ପହଁଞ୍ଚି ଆମେ ଗୋଟିଏ ଟ୍ୟାକ୍ସି କରି ଦମ୍‌ଦମ୍ ବିମାନ ବନ୍ଦରରେ ପହଁଞ୍ଚିଲୁ । ଆମର ବାୟୁଦୂତ ଉଡାଜାହାଜଟି ଦିନ ଏଗାରଟା ବେଳେ ଛାଡିବା କଥା । ସେହି ବିମାନ ବନ୍ଦରରେ ଆମେ ଦୁଇଜଣ ଜଣ ଜଣ ହୋଇ ନିତ୍ୟକର୍ମ ସାରି ଟିକିଏ ଜଳଖିଆ ଖାଇ ଅପେକ୍ଷା କଲୁ ଉଡାଜାହାଜ ଛାଡିବା ପର୍ଯ୍ୟନ୍ତ । ବାୟୁଦୂତ ଛାଡିବାର ସମୟ ହେବାରୁ ଆମେ ଯାଇ ଟିକେଟ ଚେକ୍ କରାଇ ନେଲୁ । ଚେକ୍ ହେବା ପରେ ସିକ୍ୟୁରିଟି ଚେକ୍ ପାଇଁ ଗଲୁ । ତାର କିଛି ସମୟ ପରେ ବାୟୁଦୂତ ଉଡାଜାହାଜରେ ଯାଇ ବସିଲୁ । ସେ ବାୟୁଦୂତ ଉଡାଜାହାଜରେ ବସିବା ଅନୁଭୂତି ଭିନ୍ନ ଅଟେ । ଅନ୍ୟ ଉଡାଜାହାଜ ବାୟୁମଣ୍ଡଳରେ ସ୍ଥିର ଭାବରେ ନିର୍ଦ୍ଦିଷ୍ଟ ଗତିରେ ଯାଉଥାଏ । ବାୟୁଦୂତଟି ସବୁବେଳେ ଉପର ତଳ ହେଉଥାଏ । ବସିଲା ବେଳେ ମୋତେ ଏବଂ ମୋ ଝିଅକୁ ଭାରି ଡର ଲାଗିଲା । ଝିଅ କହିଲା,ଆଉ ବାୟୁଦୂତରେ ବସିବା ନାହିଁ । ଯାହା ହେଉ କୌଣସି ମତେ ଆମେ ସିଲଂ ବିମାନ ବନ୍ଦରରେ ପ୍ରାୟ ଦୁଇ ଘଣ୍ଟା ପରେ ପହଁଞ୍ଚିଲୁ । ପହଁଞ୍ଚିବା ସଙ୍ଗେ ସଙ୍ଗେ ଗୋଟିଏ ମିନି ବସ୍ ବିମାନ ବନ୍ଦରରୁ ଶିଲଂ ସହର ଅଭିମୁଖେ ଯାଉଥିଲା । ସେଥିପାଇଁ ସମସ୍ତଙ୍କୁ ୨୦ ଟଙ୍କା ଲେଖାଏଁ ବସ୍ ଭଡା ଦେବାକୁ ପଡିଲା । ଶିଲଂରେ ପହଁଞ୍ଚି ଆମ ପାଇଁ ବନ୍ଦୋବସ୍ତ ହୋଇଥିବା ଅତିଥି ଭବନକୁ ଗଲୁ । ଅତିଥି ଭବନରେ ମୁଁ ଆଉ ଜଣଙ୍କ ସାଙ୍ଗରେ ରହିଲି । ମୋ ଝିଅ ଆଉ କେତେ ଜଣ ଝିଅ ପିଲାଙ୍କ ସାଙ୍ଗରେ ରହିଲା । ସେହିଦିନ ଆଇ.ଏ.ପି.ଟି ମିଟିଙ୍ଗ ଆରମ୍ଭ ହେଲା । ମିଟିଙ୍ଗରେ ସବୁ ଆଲୋଚନା ହେଲା । ଖାଇବା ବ୍ୟବସ୍ଥା ସେଣ୍ଟ ଜୋସେଫ ଛାତ୍ରାବାସରେ ହୋଇଥାଏ । ଖାଇ ସାରିଲା ପରେ ଆମକୁ ସେମାନେ ପିଇବାକୁ ଗରମ ପାଣି ଦେଲେ । ମୁଁ ପଚାରିଲି ଗରମ ପାଣି କାହିଁକି ଦେଉଛ ? ସେ କହିଲେ, ଗରମ ପାଣି ନ ପିଇଲେ ଥଣ୍ଡା ଧରିଯିବ । ଦିନେ ଟ୍ୟାକ୍ସି ଭଡାକରି ଫଙ୍କସନ୍‌ର ଉଦ୍ୟୋକ୍ତା ଆମ ସମସ୍ତଙ୍କୁ ଶିଲଂର ବିଭିନ୍ନ ଜାଗା ସବୁ ବୁଲି ଦେଖାଇଲେ । ଯେଉଁ ଜାଗାଟିରେ ଭାରତର ସବୁଠାରୁ

ଅଧିକ ବର୍ଷା ହୁଏ ସେ ସ୍ଥାନଟିର ନାମ ହେଲା ଚେରାପୁଞ୍ଜି । ସେ ସ୍ଥାନଟି ଶିଲଂ ଠାରୁ କିଛି ଉଚ୍ଚରେ ଅବସ୍ଥିତ ଏବଂ ସେଠାକୁ ଟ୍ୟାକ୍ସି ଯାଇ ପାରିଲା । ତା ଉପରେ ଛିଡା ହେଲେ ସମୁଦାୟ ଶିଲଂ ସହର ଦେଖାଯାଏ । ସେ ସ୍ଥାନଟି ଅତି ରମଣୀୟ ଅଟେ । ଉପରବେଳା ଆମେ ଦୁହେଁ ଯାଇ ବଜାରରୁ ତିନୋଟି ଫୁଲ୍ ସୁଏଟର କିଣିଲୁ । ଆଉ କିଛି ଜିନିଷ କିଣି ଆମେ ଘରକୁ ଆସିଲୁ । ସେହିଦିନ ରାତିରେ ଆମର କଲିକତା ଅଭିମୁଖେ ଯିବା ପାଇଁ ଗୌହାଟୀ ଷ୍ଟେସନକୁ ଗୋଟିଏ ବସ୍‌ରେ ଆସିଲୁ ।  ସମୟ ହେବାରୁ ଗାଡିରେ ବସିଲୁ । ଗାଡିଟି ପ୍ରାୟ ୨୪ ଘଣ୍ଟା ପରେ ହାୱଡା ଷ୍ଟେସନରେ ପହଁଞ୍ଚିଲା । ସେହିଠାରୁ ଗାଡି ବଦଳ କରି ଆମେ ପୁଣି ରାଉରକେଲା ଗଲୁ । ରାଉରକେଲାରେ ସକାଳେ ପହଁଞ୍ଚିଲୁ ଏବଂ ସେହିଦିନ ରାତିରେ ମୁଁ ରାଉରକେଲାରୁ ଭୁବନେଶ୍ୱର ଅଭିମୁଖେ ଉତ୍କଳ ଏକ୍ସପ୍ରେସରେ ଦ୍ୱିତୀୟ ଶ୍ରେଣୀ ଶୀତତାପ ନିୟନ୍ତ୍ରଣ ଡବାରେ ବସିଲି । ଏହି ଟିକେଟଟି ଉଜ୍ଜୟିନୀ ଠାରୁ ଭୁବନେଶ୍ୱର ପର୍ଯ୍ୟନ୍ତ ହୋଇଥିଲା । ରେଲୱେର ନିୟମ ଅନୁସାରେ ମୁଁ ରାଉରକେଲାରେ ବ୍ରେକ୍ ଜର୍ଣି କରିଥିଲି । ତାପର ଦିନ ସକାଳୁ ଭୁବନେଶ୍ୱରରେ ଆସି ପହଁଞ୍ଚିଲି । ମୋତେ ପାଛୋଟି ଆଣିବାକୁ ମୋ ସ୍ତ୍ରୀ ଓ ଅନ୍ୟମାନେ ଷ୍ଟେସନକୁ ଯାଇଥିଲେ ।

## ଉଚ୍ଚ ମାଧ୍ୟମିକ ଶିକ୍ଷା ପରିଷଦର କର୍ମଚାରୀ ମାନଙ୍କ ଅଶାନ୍ତି

ମୁଁ ଅସୁସ୍ଥତା ବଶତଃ ଛୁଟି ନେବାର କେତେ ଦିନ ଆଗରୁ ଉଚ୍ଚ ମାଧ୍ୟମିକ ଶିକ୍ଷା ପରିଷଦର ଅଧ୍ୟକ୍ଷ (ଚେୟାରମ୍ୟାନ) କୌଣସି କାରଣରୁ ଜଣେ ଅସ୍ଥାୟୀ କର୍ମଚାରୀଙ୍କୁ ବାହାର କରିଦେବାରୁ ମାଧ୍ୟମିକ ଶିକ୍ଷା ପରିଷଦର ଅନ୍ୟ କର୍ମଚାରୀମାନେ ଦାବିକଲେ ଯେ ସେ କର୍ମଚାରୀଙ୍କୁ ପୁନଃନିଯୁକ୍ତି ଦିଆଯାଉ । ସେଥିରେ ଚେୟାରମ୍ୟାନ ରାଜି ନ ହେବାରୁ ଉଚ୍ଚ ମାଧ୍ୟମିକ ଶିକ୍ଷା ପରିଷଦରେ ଅଶାନ୍ତି ସୃଷ୍ଟି ହେଲା । କର୍ମଚାରୀମାନେ ପରିଷଦ ଅଫିସକୁ ଘେରାଉ କଲେ । ପରିସ୍ଥିତି ଏପରି ହେଲା ଯେ ପୁଲିସ୍‌ର ସାହାଯ୍ୟ ନିଆଗଲା ଏବଂ ଅଧ୍ୟକ୍ଷ କେତେ ଜଣ କର୍ମଚାରୀଙ୍କୁ ନିଲମ୍ବିତ କରି ତାଙ୍କ ଉପରେ କାର୍ଯ୍ୟାନୁଷ୍ଠାନ କରିବା ପାଇଁ କୈଫିୟତ ମାଗିଲେ । ସେତେବେଳେ ମୁଁ ବ୍ରହ୍ମପୁର ଠାରେ ଖଲ୍ଲିକୋର୍ଟ କଲେଜର ଅଧ୍ୟକ୍ଷ ହିସାବରେ କାମ କରୁଥାଏ । ଏହି ଘଟଣା ପରେ ଏକ୍‌ଜିକ୍ୟୁଟିଭ କାଉନ୍‌ସିଲ୍‌ର ବୈଠକ ଡକାଇଲେ । ସେଥିରେ ଉଚ୍ଚଶିକ୍ଷା ନିର୍ଦ୍ଦେଶକ ଶ୍ରୀ ଘନଶ୍ୟାମ ଦାଶ ମୋତେ ଏହି ଗୋଳମାଳର ତଦନ୍ତକାରୀ ଅଫିସର ହିସାବରେ ନିଯୁକ୍ତ କରିବା ପାଇଁ ପ୍ରସ୍ତାବ ଦେଲେ । ତାହା ସର୍ବସମ୍ମତି କ୍ରମେ ଗୃହିତ ହୋଇଗଲା । ତାପରେ ମୁଁ ଛୁଟିରେ ରହିବାରୁ ତଦନ୍ତକାରୀ ଅଫିସର୍ ହିସାବରେ କାମ କରିପାରିଲି ନାହିଁ । ମୁଁ ଖରାଛୁଟି ପୂର୍ବରୁ କାର୍ଯ୍ୟରେ ଯୋଗ ଦେବାରୁ ମୋତେ ଘଟଣାଟି ତଦନ୍ତ କରିବା ପାଇଁ ନିର୍ଦ୍ଦେଶକ ଶ୍ରୀ ଘନଶ୍ୟାମ ଦାଶ ଅନୁରୋଧ କଲେ । ଖରାଛୁଟି ହୋଇଗଲା ପରେ ତଦନ୍ତ କରିବା ପାଇଁ ମୁଁ ନିର୍ଦ୍ଦିଷ୍ଟ ତାରିଖରେ କେତେକ କର୍ମଚାରୀଙ୍କୁ କ୍ରମାଗତ ଭାବରେ ଡକାଇ ଘଟଣା ବିଷୟରେ ତାଙ୍କର ବକ୍ତବ୍ୟ ଲିଖିତ ଆକାରରେ ମୋ ଉପସ୍ଥିତିରେ ଦେବା ପାଇଁ କହିଲି । ବିଭିନ୍ନ କର୍ମଚାରୀଙ୍କୁ ମୋ ସମ୍ମୁଖରେ ଉପସ୍ଥିତ ହୋଇ ବୟାନ ଦେବାକୁ ନିର୍ଦ୍ଦେଶ ଦେଲି । ସେତେବେଳେ ଡକ୍ଟର ଫଣୀ ଭୂଷଣ ଦାସ ମାଧ୍ୟମିକ ଶିକ୍ଷା ବୋର୍ଡର ଅଧ୍ୟକ୍ଷ  ଥାଆନ୍ତି ।

ପୂର୍ବତନ ଅଧ୍ୟକ୍ଷ ଡକ୍ଟର ଗିରିଶବାଳା ମହାନ୍ତିଙ୍କ କାର୍ଯ୍ୟକାଳ ଭିତରେ ଗୋଳମାଳଟିର ସୂତ୍ରପାତ ହୋଇଥିଲା । ତଦନ୍ତ ସମୟରେ ଜଣେ ଟାଇପିଷ୍ଟ ଦୁଇଜଣ କର୍ମଚାରୀ ମୋତେ ସାହାଯ୍ୟ କରିବା ପାଇଁ ନିଯୁକ୍ତ ହୋଇଥାଆନ୍ତି । ଏହି ତଦନ୍ତ ଚାଲିଥିଲା ବେଳେ ହଠାତ୍ ଦିନେ ମୁଁ ଜାଣି ପାରିଲି କେତେକ କର୍ମଚାରୀଙ୍କ ବକ୍ତବ୍ୟ ଫାଇଲ୍‌ରୁ କେଉଁଆଡେ ଅର୍ନ୍ତଧ୍ୟାନ ହୋଇ ଯାଇଛି । ତେଣୁ ମୁଁ ଅନୁସନ୍ଧାନ ବନ୍ଦକରି ସଂପୃକ୍ତ କର୍ମଚାରୀଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବା ପାଇଁ ଚେୟାରମ୍ୟାନଙ୍କୁ ଜଣାଇଲି । କେତେ ଦିନ ପରେ ମୁଁ ବୁଝିଲି ତାଙ୍କ ବକ୍ତବ୍ୟ ଗୁଡିକ ମିଳିଲା ନାହିଁ କି ସେମାନଙ୍କ ବିରୁଦ୍ଧରେ କିଛି କାର୍ଯ୍ୟାନୁଷ୍ଠାନ କରାଗଲା ନାହିଁ । ତେଣୁ ମୁଁ କୌଣସି କର୍ମଚାରୀଙ୍କୁ ଦୋଷୀ ବୋଲି ସାବ୍ୟସ୍ତ ନ କରି ସେମାନଙ୍କ ଉପରେ କାର୍ଯ୍ୟାନୁଷ୍ଠାନ କରିବା ପାଇଁ ପ୍ରମାଣ ଅଭାବରୁ ସେମାନେ ନିର୍ଦୋଷ ବୋଲି ମନ୍ତବ୍ୟ ଦେଲି । ଏହି ମନ୍ତବ୍ୟ ଦେଲା ବେଳକୁ ମୁଁ ଚାକିରୀରୁ ଅବସର ନେଇଯାଇ ଥାଏ ।

## ଆଇ.ଏ.ପି.ଟି. ପରୀକ୍ଷାରେ ପଚିଶି ଜଣ ଛାତ୍ରଙ୍କୁ ରାଷ୍ଟ୍ରପତିଙ୍କ ସ୍ୱର୍ଣ୍ଣ ପଦକ ବିତରଣ

୧୯୯୦ ମସିହାରେ ଆଇ.ଏ.ପି.ଟି.ର ସଭାପତି ଡକ୍ଟର ଖଣ୍ଡେଲୱାଲ ଲେଖିଥିଲେ "ରେଭେନ୍‌ସା କଲେଜରୁ ଦୁଇଜଣ ଛାତ୍ର ଆଇ.ଏ.ପି.ଟି.ର ଫିଜିକ୍‌ସ ପରୀକ୍ଷାରେ ୨୫ ଜଣଙ୍କ ଭିତରେ ଅଛନ୍ତି ସେମାନେ ରାଷ୍ଟ୍ରପତିଙ୍କ ପାଖରୁ ସ୍ୱର୍ଣ୍ଣ ପଦକ ପାଇବା ପାଇଁ ଯୋଗ୍ୟ ବିବେଚିତ ହୋଇଛନ୍ତି । ତେଣୁ ରେଭେନ୍‌ସା କଲେଜର ଏହି ଦୁଇଜଣ ପିଲାଙ୍କର ଅଭିଭାବକଙ୍କ ଠାରୁ ବୁଝାବୁଝି କରି ସେମାନେ ନିର୍ଦ୍ଦିଷ୍ଟ ତାରିଖରେ ଆସିବାର ବନ୍ଦୋବସ୍ତ କର । ଯଦି ସେମାନଙ୍କର ଅଭିଭାବକ କେହି ଆସୁ ନ ଥାଆନ୍ତି, ତେବେ ଆପଣ ତାଙ୍କୁ ସାଙ୍ଗରେ ନେଇ ନିର୍ଦ୍ଦିଷ୍ଟ ତାରିଖରେ ଦିଲ୍ଲୀ ଆସିବେ । ଏହା ବ୍ୟତିତ ସେହିଦିନ ଗୋଟିଏ କାର୍ଯ୍ୟନିର୍ବାହୀ ଅଧିବେଶନ ଦିଲ୍ଲୀ ଠାରେ ଅବସ୍ଥିତ ଏନ୍.ସି.ଆର.ଟି ଅଫିସ୍‌ରେ ହେବ । ତେଣୁ ଆପଣଙ୍କୁ ସେହି ଅଧିବେଶନରେ ଯୋଗ ଦେବା ପାଇଁ ଅନୁରୋଧ କରୁଛୁ । ଆପଣ କେଉଁଦିନ ଓ କେଉଁ ଗାଡିରେ ଆସିବେ ଆମକୁ ଲେଖି ଜଣାଇଲେ ଆମେ ଆପଣଙ୍କର ରହିବା ପାଇଁ ଏନ୍.ସି.ଆର.ଟି ଅଫିସ୍‌ର ଅତିଥି ଭବନରେ ବ୍ୟବସ୍ଥା କରିବୁ ।" ଏହି ଚିଠିଟିର ବିଷୟ ବସ୍ତୁ ମୁଁ ଘରେ କହିବାରୁ ମୋ ସ୍ତ୍ରୀ କହିଲେ ତୁମେ ବନାରସ୍ ଯାଇ ଝିଅ ସାଙ୍ଗରେ କଥାବାର୍ତ୍ତା କରି ତାର ସୁବିଧା ଅସୁବିଧା ବୁଝି ଦିଲ୍ଲୀ ଯିବ । ଏହି ଚିଠି ପାଇବାର କେତେ ଦିନ ଆଗରୁ ଇଉ.ଜି.ସି. ଅଫିସ୍‌ରୁ ଏକ ଚିଠି ଆସିଥିଲା । ସେଥିରେ ଲେଖାଥିଲା ଆପଣ ଦେଇଥିବା ପରିଯୋଜନା "ଷ୍ଟଡିଜ୍ ଅନ୍ ଡିଓଟୋରିୟମ୍ ପ୍ଲାଜମା" ଟିର ରେଫରି ଆପଣଙ୍କୁ ଅନୁଦାନ ପାଇବା ପାଇଁ ଯୋଗ୍ୟ ବିବେଚିତ କରିଛନ୍ତି । ଆପଣଙ୍କ ପରିଯୋଜନାରେ କେଉଁଥିରେ କେତେ ଟଙ୍କା ଦରକାର ହେବ ତାର ଆନୁମାନିକ ଖର୍ଚ୍ଚ ବିଷୟରେ ଆମକୁ ଶୀଘ୍ର ଜଣାନ୍ତୁ । ତେଣୁ ଏହି ତିନୋଟି କାମ ଏକାଠି କରିବି ବୋଲି ମନସ୍ଥ କଲି । କେଉଁଦିନ ଦିଲ୍ଲୀରେ ପହଁଞ୍ଚିବାକୁ ହେବ ସେ ଦିନଟି ମୋର ମନେ ନାହିଁ । ଚିଠି ଅନୁସାରେ ନିର୍ଦ୍ଦିଷ୍ଟ ଦିନର ତିନି ଚାରି ଦିନ ପୂର୍ବରୁ ଖରାଛୁଟି ଭିତରେ ଗୋଟିଏ ଫାଷ୍ଟକ୍ଲାସ୍ ଟିକେଟ୍

ବନାରସ୍ ଦେଇ ଦିଲ୍ଲୀ ପର୍ଯ୍ୟନ୍ତ କରିଦେଲି । ନିର୍ଦ୍ଦିଷ୍ଟ ଦିନର ତିନି ଚାରି ଦିନ ପୂର୍ବରୁ ଭୁବନେଶ୍ୱରରୁ ବାହାରି ବନାରସ୍‌ରେ ସକାଳେ ପହଁଞ୍ଚିଲି । ସକାଳେ ବନାରସ୍‌ରେ ଓହ୍ଲାଇ ଝିଅ ରହୁଥିବା ଛାତ୍ରୀ ନିବାସକୁ ଗଲି । ତାକୁ ଡକାଇବାରୁ ସେ ଆସିଲା ଏବଂ କହିଲା ତୁମେ କେଉଁଠାରେ ରହିବ? ଶ୍ରୀ ନନ୍ଦଲାଲ ସିଂ ନାହାଁନ୍ତି । ତେଣୁ ମୋର ସାଙ୍ଗ ଶୈଳଜାର ଘର ବିଶ୍ୱବିଦ୍ୟାଳୟ ପାଖରେ । ମୁଁ ତାଙ୍କ ଘରେ ରହିବା ବନ୍ଦୋବସ୍ତ କରିଦେବି । ତୁମର ହୋଟେଲ୍‌ରେ ରହିବା ଦରକାର ନାହିଁ । ସେ ତାଙ୍କ ଘରକୁ ନେଇଗଲା । ତାଙ୍କ ଘରେ ଜଣ କଥା ହେବାରୁ ସେମାନେ ରହିବାର ସମସ୍ତ ବନ୍ଦୋବସ୍ତ କରିଦେଲେ । ତାଙ୍କ ଘରେ ଦୁଇଦିନ ରହିଲି । ଦ୍ୱିତୀୟ ଦିନ ଉପର ବେଳା ବନାରସ୍ ଷ୍ଟେସନକୁ ଗଲି । ଷ୍ଟେସନରୁ ବୁଝିଲି ପ୍ରଥମ ଶ୍ରେଣୀ ବଗିଟି ଖରାପ ହୋଇ ଯାଇଥିବାରୁ ଆମେ ଫାଷ୍ଟକ୍ଲାସ୍ ବର୍ଥ ଦେଇ ପାରିବୁ ନାହିଁ । ତେଣୁ ଆପଣ ସ୍ଲିପର କୋଚରେ ଯାଇ ବସନ୍ତୁ ଏବଂ ଦିଲ୍ଲୀରେ ଓହ୍ଲାଇ ଦିଲ୍ଲୀ ଷ୍ଟେସନରୁ କିଛି ପଇସା ଫେରସ୍ତ ନେଇଯିବେ । ସେଥିରେ ମୋର କିଛି କହିବାର ନ ଥିଲା । ତାପର ଦିନ ଦିଲ୍ଲୀ ଷ୍ଟେସନରେ ପହଁଞ୍ଚି ଗୋଟିଏ କାଉଣ୍ଟରରେ ଟିକେଟ୍ ଦେଖାଇ ୬୦ ଟଙ୍କା ଫେରସ୍ତ ପାଇଲି । ପ୍ଲାଟଫର୍ମରୁ ବାହାରକୁ ଆସିବା ପରେ ଜାଣିଲି ଦିଲ୍ଲୀର ସମସ୍ତ ଟ୍ୟାକ୍ସି ବାଲା ଧର୍ମଘଟ କରିଛନ୍ତି । ତେଣୁ ଯିବାର ଉପାୟ ନ ଥିଲା । ଏହି ସମୟରେ ଏକ ଟ୍ୟାକ୍ସି ଚାଳକ ମୋତେ ପଚାରିଲା, ଆପଣ କେଉଁଠାକୁ ଯିବେ? ମୁଁ କହିଲି ଏନ୍.ସି.ଆର.ଟି ଅଫିସ୍‌କୁ ଯିବି । ସେ କହିଲା ମୁଁ ସେଠାରେ ଆପଣଙ୍କୁ ଛାଡିଦେବି, ଆପଣ ୮୦ ଟଙ୍କା ଦେବେ । ତେଣୁ ସେ ପ୍ରାଇଭେଟ୍ ଟ୍ୟାକ୍ସିରେ ୯ଟା କିମ୍ବା ୧୦ଟାରେ ପହଁଞ୍ଚି ଏନ୍.ସି.ଆର.ଟି ଅତିଥି ଭବନରେ ରହିଲି । ସେହିଦିନ ସଂଧ୍ୟାରେ କାର୍ଯ୍ୟନିର୍ବାହୀ ସମିତିର ଅଧିବେଶନ ଥିଲା । ସେହି ଅଧିବେଶନରେ ଆଲୋଚନା ହେଲା କିପରି ଆଇ.ଏ.ପି.ଟି ଫିଜିକ୍ସ ପରୀକ୍ଷାରେ ପ୍ରାୟୋଗିକ ପରୀକ୍ଷା କରାଯିବ । ବହୁ ଆଲୋଚନା ପରେ ଠିକ୍ ହେଲା ଯେ ପରୀକ୍ଷାର ପ୍ରଶ୍ନପତ୍ର କେମିତି ହେବ, ତାହା ଡକ୍ଟର ଖଣ୍ଡେଲୱାଲଙ୍କ ପାଖକୁ ଲେଖିକରି ସମସ୍ତେ ପଠାଇବେ । ଯାହାର ପ୍ରଶ୍ନପତ୍ର ଉପଯୁକ୍ତ ବିବେଚିତ ହୋଇଥିବ, ତାହାକୁ କାର୍ଯ୍ୟନିର୍ବାହୀ ସଦସ୍ୟ ସ୍ୱୀକୃତି ପ୍ରଦାନ କରିବେ । ପ୍ରଶ୍ନପତ୍ରର ଏକ ନମୁନା ଆଇ.ଏ.ପି.ଟି ବୁଲେଟିନ୍‌ରେ ଛପାହେବ । ଯେଉଁଥିରୁ କି ପିଲାମାନେ ଜାଣିପାରିବେ କି ପ୍ରକାରର ପ୍ରଶ୍ନ ପଡିବ । ତାପର ଦିନ ୯ଟା ବେଳକୁ ସ୍ୱର୍ଣ୍ଣ ପଦକ ପ୍ରଦାନ କରିବାର ବ୍ୟବସ୍ଥା ହୋଇଥିଲା । କିନ୍ତୁ ସେଦିନ ଭାରତର ରାଷ୍ଟ୍ରପତି ଆସି ନ ପାରିବାରୁ ଡକ୍ଟର କେ.ଆର. ନାରାୟଣ ଆସିଥିଲେ । ଡକ୍ଟର କେ.ଆର. ନାରାୟଣ କେତେ ବର୍ଷ ପରେ ଭାରତର ରାଷ୍ଟ୍ରପତି ହୋଇଥିଲେ । ମିଟିଙ୍ଗ ସରିଲା ପରେ ସେହିଦିନ ମୁଁ ପୁଣି ଡି.ଏସ୍.ଟି ଅଫିସ୍‌କୁ ଗଲି ଏବଂ ଡକ୍ଟର ସୁଲଭା ଗୁପ୍ତଙ୍କୁ ଦେଖାକଲି । ତାଙ୍କୁ କହିଲି ମୋତେ ଡକ୍ଟର ଭେଙ୍କଟ ରମଣୀ ସୂଚନା ଦେଇଥିଲେ, ଆହୁରି କିଛି ଅନୁଦାନ ଦେବାକୁ । ସେହି ଅନୁଦାନ ସାହାଯ୍ୟରେ ପାଣ୍ଡୁଲିପିଟି ପରିମାର୍ଜିତ କରି ୧୦୦ ଖଣ୍ଡ ବହି ଛପାଇ ଭାରତର ଭିନ୍ନ ଭିନ୍ନ ପ୍ରଫେସରଙ୍କ ପାଖକୁ ଗୋଟିଏ ଲେଖାଏଁ ପଠାଇ ଦିଆଯିବ । ଯେଉଁ ପ୍ରଫେସର ମାନଙ୍କ ପାଖକୁ ପଠାଯିବ ତାହାର ଏକ

ତାଲିକା ଡି.ଏସ୍.ଟି ଅଫିସ୍‌କୁ ପଠାଇ ଦେବେ । ମୋ କଥା ଶୁଣି ସେ କହିଲେ ସେହିଭଳି ଏକ ପ୍ରସ୍ତାବ ମୋ ପାଖକୁ ଆସିଛି । କିନ୍ତୁ ପ୍ଲାଜମା ଫିଜିକ୍ସର ପ୍ରବୀଣ ପ୍ରଫେସର ମାନଙ୍କର ଆସନ୍ତା ମିଟିଂଟି ସେପ୍ଟେମ୍ବର ମାସରେ ହେବ । ସେହି ମିଟିଙ୍ଗରେ ଯାହା ସ୍ଥିର ହୋଇଥିବ ତାହା ମୁଁ ଆପଣଙ୍କୁ ଲେଖି ଜଣାଇବି ।

ତାପର ଦିନ ଉତ୍କଳ ଏକ୍ସପ୍ରେସରେ ଭୁବନେଶ୍ୱର ଆସିଲି । ଭୁବନେଶ୍ୱରରେ ପହଁଞ୍ଚି ଡକ୍ଟର ଖଣ୍ଡେଲୱାଲଙ୍କ କହିବା ମୁତାବକ ଏକ ପ୍ରଶ୍ନପତ୍ରର ନମୁନା ତିଆରି କରି ପଠାଇ ଦେଲି । ଦୁଇତିନି ମାସ ପରେ ମୋର ପ୍ରଶ୍ନପତ୍ରଟି ସାମାନ୍ୟ ପରିବର୍ତ୍ତନ କରି ଆଇ.ଏ.ପି.ଟିର ବୁଲେଟିନ୍‌ରେ ପ୍ରକାଶ କରାଯାଇଥିଲା । ସେଥିରେ ମୋ ନାମଟି ଲେଖା ହୋଇଥିଲା ।

## ଅବସର ଜୀବନ

୩୦ ଜୁନ୍, ୧୯୯୦ ମସିହାରେ କାର୍ଯ୍ୟରୁ ଅବସର ନେବା ପାଇଁ ସକାଳ ୧୦ଟା ବେଳେ ମୁଁ ଖଲ୍ଲିକୋଟ କଲେଜରେ ପହଁଞ୍ଚିଲି । ମୋ ସ୍ଥାନରେ କେହି ଅଧ୍ୟକ୍ଷ ନିଯୁକ୍ତ ହୋଇ ନ ଥିବାରୁ ମୁଁ ଉଚ୍ଚ ଶିକ୍ଷା ନିର୍ଦ୍ଦେଶକଙ୍କ ଠାରୁ ଅନୁମତି ନେଇ ଡକ୍ଟର ବିଶ୍ୱମୋହନ ମିଶ୍ରଙ୍କୁ କଲେଜର ଦାୟିତ୍ୱ ଦେଇ ଅବସର ନେଲି । ଅବ୍ୟାହତି ନେଇ ଭୁବନେଶ୍ୱର ଫେରି ଆସିବା ପାଇଁ ସେହିଦିନ ଠିକ୍ କଲି । କିନ୍ତୁ କେତେକ ଅଧ୍ୟାପକ ମୋତେ ଅନୁରୋଧ କଲେ, ଆପଣ ଆଉ ଦିନେ ବ୍ରହ୍ମପୁର ଆସି ଆମମାନଙ୍କ ଠାରୁ ବିଦାୟ ନେବେ । କାରଣ ବର୍ତ୍ତମାନ କଲେଜ ଛୁଟି ହୋଇଥିବାରୁ କେହି ଅଧ୍ୟାପକ ନାହାନ୍ତି । ମୁଁ ସେଥିରେ ରାଜି ହେଲି । କଲେଜ ଖୋଲିବା ପରେ ଖଲ୍ଲିକୋଟ କଲେଜର ଜଣେ ଅଧ୍ୟାପକ ଆମ ଘରକୁ ଆସି ମୋତେ ଗୋଟିଏ ନିର୍ଦ୍ଦିଷ୍ଟ ଦିନରେ କଲେଜ ଯିବା ପାଇଁ ଅନୁରୋଧ କଲେ । ମୁଁ ତାଙ୍କ ଅନୁରୋଧ ରକ୍ଷା କରି ସେହିଦିନ ପ୍ରାୟ ୧୦ଟା ବେଳେ ଯାଇ ଖଲ୍ଲିକୋଟ କଲେଜରେ ପହଁଞ୍ଚିଲି । ମୁଁ ସେହିଦିନ ସଂଧ୍ୟା ସୁଦ୍ଧା ଭୁବନେଶ୍ୱର ଫେରି ଆସିବି ବୋଲି ମନେ ମନେ ଠିକ୍ କରି ଯାଇଥିଲି । କିନ୍ତୁ ଅଧ୍ୟାପକମାନେ ମୋତେ ଗୋଟିଏ ରାତି ରହିବା ପାଇଁ ଅତିଥି ଭବନରେ ଗୋଟିଏ କୋଠରୀର ବ୍ୟବସ୍ଥା କରିଥିଲେ । ସେହିଦିନ ଉପର ବେଳା ମୋ ବିଦାୟ ସମ୍ବର୍ଦ୍ଧନା ପାଇଁ ଗୋଟିଏ ସଭାର ଆୟୋଜନ କରାଯାଇଥିଲା । ସଭାରେ କଲେଜର ପ୍ରତ୍ୟେକ କର୍ମଚାରୀ ଉପସ୍ଥିତ ଥିଲେ । ସଭା ସରିବା ପରେ ମୋତେ ସେମାନେ ତିନିଗୋଟି ଉପହାର ଓ ଗୋଟିଏ ମାନପତ୍ର ଦେଇଥିଲେ । ଉପହାର ଗୁଡିକ ହେଲା ଗୋଟିଏ ଛତା, ଗୋଟିଏ ଉଲେନ୍ ସାଲ୍ ଏବଂ ଗୋଟିଏ ଖାଦ୍ୟ ଗରମ ରଖିବା ଟିଫିନ୍ କ୍ୟାରିଅର । ଏହିସବୁ ଜିନିଷରୁ କେବଳ ଛତାଟି କାଳକ୍ରମେ ଭାଙ୍ଗି ଯାଇଛି । ସେହି ଦିନ ରାତିରେ ଗୋଟିଏ ବିଦାୟ ଭୋଜିର ଆୟୋଜନ କରାଯାଇ ଥିଲା । ତାପର ଦିନ ସକାଳେ ମୁଁ ବସ୍‌ରେ ଭୁବନେଶ୍ୱର ଆସିଲି । ମୋ ସାଙ୍ଗରେ ଜଣେ ଅଧ୍ୟାପକ ସେହି ଜିନିଷ ଗୁଡିକ ଧରି ଭୁବନେଶ୍ୱର ଆସି ଜିନିଷ ଗୁଡିକ ଆମ ଘରେ ଦେଇଗଲେ ।

ସେତେବେଳକୁ ଖରାଦିନ ହୋଇ ଯାଇଥାଏ । ଆଗରୁ ଆମ ଘରେ ଯେଉଁ ପାଣି ବ୍ୟବସ୍ଥା ଥିଲା, ସେ ପାଣି ଆମକୁ କମା ଅଣ୍ଟିଲା ନାହିଁ । ସେତେବେଳେ ଭୁବନେଶ୍ୱରରେ ରାତି

ଚାରିଟା ବେଳକୁ ଘଣ୍ଟାଏ ଲେଖାଏଁ ପାଣି ଆସୁଥାଏ । ସେହି ଏକ ଘଣ୍ଟା ମଧ୍ୟରେ ପାଣି ଯଦି ଉପରକୁ ଉଠାଇ ଦିଆଯାଏ , ତେବେ କୌଣସି ପ୍ରକାରରେ ଚଳିଯାଏ । କିନ୍ତୁ ଯଦି ସେହି ସମୟ ମଧ୍ୟରେ ପାଣି ରଖା ନ ଯାଏ, ତେବେ ପାଣି ତଳ କୁଣ୍ଡରେ ପୁରି ବାହାରକୁ ବୋହିଯାଏ । ସେତେବେଳକୁ ଅବସର କାଳୀନ ପ୍ରାପ୍ୟ ମିଳି ନ ଥାଏ । ଯାହା ଦ୍ୱାରା କି କୁଣ୍ଡର ଆକାର ବଡ କରିବା କିମ୍ବା ଅନ୍ୟ କୌଣସି ସୁବିଧା କରି ହେଉ ନ ଥାଏ । ଚଳିବାକୁ ବହୁତ ଅସୁବିଧା ହେଲା । ରାତି ଚାରିଟାରୁ ଆଲାରାମ୍ ଦେଇ ଜଣେ କେହି ଉଠିବାକୁ ପଡୁଥିଲା । ଅସୁବିଧା ଦୂର କରିବା ପାଇଁ ଗୋଟିଏ କଲିଂ ବେଲ ସୁଇଚ୍‌ର ବ୍ୟବସ୍ଥା କରି ତା ଦେହରେ ଗୋଟିଏ ରସି ବାନ୍ଧି ଗୋଟିଏ ପ୍ଲାଷ୍ଟିକ୍ ଡବା ଝୁଲାଇ ଦେଲି । ପାଣି ଆସିଲା ବେଳେ କଳରୁ ପାଣି ପଡି ଡବାଟା ପୁରିଗଲେ କଲିଂ ବେଲ୍ ସୁଇଚ୍‌ଟି ଟିପି ହୋଇଯାଏ ଏବଂ ଉପରକୁ ପାଣି ଉଠିବା ମୋଟରଟି ଚାଲେ । ତେଣୁ ପାଣିର ଅସୁବିଧା କିଛି ପରିମାଣରେ ସମାଧାନ ହୋଇଗଲା । କିନ୍ତୁ ଯେତେବେଳେ କୌଣସି କାରଣରୁ ତଳକୁଣ୍ଡ ନ ପୁରି ଯଦି ପାଣି ସପ୍ଲାଇ ବନ୍ଦ ହୋଇଯାଏ, ତାହାହେଲେ ଉପର ପମ୍ପଟି ଚାଲୁଥାଏ, ଯାହାଦ୍ୱାରା କି ମୋଟରଟି ଖରାପ ହେବାର ସମ୍ଭାବନା ଥାଏ । ତେଣୁ ସେ ଡବାର ପଛପଟେ ଗୋଟିଏ ଛୋଟ କଣା କରିଦେଲି । ଯାହା ଫଳରେ ଡବାରୁ ପାଣି ଖାଲି ହୋଇଗଲେ ତାହା ହାଲୁକା ହୋଇଯାଏ । ତେଣୁ ବେଲ୍ ସୁଇଚ୍‌ଟି ଆପେ ଆପେ ବନ୍ଦ ହୋଇଯାଏ ଓ ମୋଟରଟି ବନ୍ଦ ହୋଇଯାଏ । ଏହିପରି ବ୍ୟବସ୍ଥା ପ୍ରାୟ ୨/୩ ବର୍ଷ ପର୍ଯ୍ୟନ୍ତ ଚାଲିଥିଲା । ଟଙ୍କା ମିଳିଲା ପରେ ତଳେ ଗୋଟିଏ ବଡ ଟାଙ୍କି କରି ଦେବାରୁ ଏ ବ୍ୟବସ୍ଥାଟି ବନ୍ଦ କରିଦେଲି ।

ଏହା ଭିତରେ ଡି.ଏସ୍.ଟିରୁ ୨୧ହଜାର ଟଙ୍କାର ଅନୁଦାନ ଚିଠି ମୋ ପାଖକୁ ଆସି ଯାଇଥାଏ ଓ କଲେଜର ଅଧ୍ୟକ୍ଷଙ୍କ ପାଖକୁ ଅନୁଦାନ ରାଶି ମଧ୍ୟ ଆସି ଯାଇଥାଏ । ତେଣୁ ମୁଁ କଟକରେ ଥିବା ତ୍ରିପାଠୀ ଜେରକ୍ସଙ୍କ ପାଖକୁ ମୋର ପାଣ୍ଡୁଲିପିଟି ଦେଇ ଛପାଇ ଦେବାକୁ କହିଲି । ଆହୁରି ମଧ୍ୟ କହିଲି ଏ ପୁସ୍ତକ ପାଇଁ ମୁଁ ୨୧ ହଜାର ଟଙ୍କାରୁ ବେଶୀ ଦେଇ ପାରିବି ନାହିଁ । ସେ ମନା କଲେ, କହିଲେ ଏ ପାଣ୍ଡୁଲିପିରେ ଏତେ ଗୁଡ଼ିଏ ଚିତ୍ର ଅଛି, ସେଗୁଡ଼ିକ ସ୍କାନିଂ କରିବାକୁ ମେସିନ୍ କଟକରେ ନାହିଁ । କିନ୍ତୁ କଲିକତାରେ ଅଛି, ସ୍କାନିଂ କରି ପ୍ରିଣ୍ଟ କରିବା ପାଇଁ ବହୁତ ଟଙ୍କା ଲାଗିଯିବ । ତେଣୁ ୨୧ ହଜାର ଟଙ୍କାରେ ମୁଁ ୧୦୦ ଖଣ୍ଡ ପୁସ୍ତକ ଛପାଇ ପାରିବି ନାହିଁ । ସେ ମୋତେ କହିଲେ ସବୁ ଫଟୋ ଗୁଡିକର ୧୦୦ ଲେଖାଏଁ ଫଟୋକପି ଫଟୋର ନେଗେଟିଭ୍ ସାହାଯ୍ୟରେ କରିଦିଅନ୍ତୁ । ବହିର ବିଭିନ୍ନ ପୃଷ୍ଠାରେ ଖାଲିଥିବା ଜାଗାରେ ଫଟୋ ଗୁଡିକ ଅଠା ଲଗାଇ ମାରିଦିଅନ୍ତୁ । ତାହାହେଲେ ୧୦୦ ଖଣ୍ଡ ମୁଁ ମାସେ ଭିତରେ ବହି ଭଳିଆ ପ୍ରସ୍ତୁତ କରି ଦେଇଦେବି । ସେଥିପାଇଁ ମୋତେ ୧୫ ହଜାର ଟଙ୍କା ଦେବେ । ମୁଁ କିନ୍ତୁ ଆପଣଙ୍କୁ ୨୧ ହଜାର ଟଙ୍କାର ରସିଦ୍ ଦେବି । ତାଙ୍କର ପରାମର୍ଶ ଅନୁସାରେ ମୋର ବଡ ପୁଅ ରଞ୍ଜନ ହାତରେ ସବୁ ଫଟୋ ଗୁଡିକ ବମ୍ବେ ପଠାଇ ଦେଲି । ବମ୍ବେରୁ ପ୍ରତି ଫଟୋର ୧୦୦ ଖଣ୍ଡ ଫଟୋକପି କରି ମୋ ପାଖକୁ ପଠାଇବାକୁ କହିଲି । ଫଟୋଗୁଡିକ ବମ୍ବେରୁ ଆସିଲା ପରେ ସେ ଗୁଡିକ ଯଥା ସ୍ଥାନରେ ମାରି ୧୦୦ ଖଣ୍ଡ ବହି ପ୍ରସ୍ତୁତ କରି ଭାରତର ବିଭିନ୍ନ ବିଶ୍ୱବିଦ୍ୟାଳୟ

ଏବଂ ଗବେଷଣା କେନ୍ଦ୍ରର ପ୍ରଫେସରମାନଙ୍କ ପାଖକୁ ଡାକ ଦ୍ୱାରା ପଠାଇ ଦେଲି । ଯେଉଁମାନଙ୍କ ପାଖକୁ ପଠାଇଲି ତାହାର ଗୋଟିଏ ତାଲିକା କରି ମୁଁ ଡି.ଏସ୍.ଟି ଅଫିସ୍‌କୁ ପଠାଇ ଦେଲି । ଏହି ସବୁ କାମ କରିବା ପାଇଁ ମୋତେ ପ୍ରାୟ ଏକ ବର୍ଷ ଲାଗିଗଲା ।

ଅନୁଦାନ ରାଶି ଆସିବା ପର୍ଯ୍ୟନ୍ତ ମୁଁ ରେଭେନ୍‌ସା କଲେଜର ରିସର୍ଚ୍ଚ କୋଠରୀଟିକୁ ଛାଡି ନ ଥାଏ । କାରଣ ମୁଁ ଇଉ.ଜି.ସିରୁ ଚାକିରୀରେ ଥିବା ସମୟରେ ଗୋଟିଏ ଚିଠି ପାଇଥିଲି ଯେ ଗୋଟିଏ ମେଜର ଗବେଷଣା ପରିଯୋଜନା " ଷ୍ଟଡିଜ୍ ଅନ୍ ଡିଓଟୋରିୟମ୍ ପ୍ଲାଜମା" ପାଇଁ ମୋ ସପକ୍ଷରେ ଅନୁଦାନ ଦିଆଯିବ । ଏହି ଚିଠିର ଉତ୍ତରରେ ମୁଁ ଇଉ.ଜି.ସି.କୁ ଜଣାଇଥିଲି, ଯେ ଏହି ପରିଯୋଜନାଟି ଗ୍ରହଣ କରିବାକୁ ରାଜି ଅଛି । କିନ୍ତୁ ମୁଁ ୧୯୯୦ ଜୁନ୍ ୩୦ ତାରିଖରେ ଚାକିରୀରୁ ଅବ୍ୟାହତି ନେଉଥିବାରୁ ମୋତେ ଏହି ପରିଯୋଜନାଟି ନିମନ୍ତେ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ କାର୍ଯ୍ୟ କରିବା ପାଇଁ ଅନୁମତି ୧.୪.୯୧ ଠାରୁ ଦିଆଯାଉ । ମୁଁ ଡି.ଏସ୍.ଟିକୁ ଅନୁରୋଧ କରିଥାଏ, ତାଙ୍କ ଠାରୁ ପାଇଥିବା ପରିଯୋଜନାର କେତେକ ଉପକରଣ ଉତ୍କଳ ବିଶ୍ୱବିଦ୍ୟାଳୟକୁ ସ୍ଥାନାନ୍ତର କରିବା ପାଇଁ ମୋତେ ଅନୁମତି ଦିଆଯାଉ । କେତେ ଦିନପରେ ଡି.ଏସ୍.ଟିରୁ ଚିଠି ପାଇଲି, ଉପକରଣ ଗୁଡିକ ବିଶ୍ୱବିଦ୍ୟାଳୟକୁ ସ୍ଥାନାନ୍ତର କରିବା ପାଇଁ ତୁମକୁ ଅନୁମତି ଦିଆଗଲା । ଏହି ଅନୁମତି ପାଇଲା ପରେ ଉପକରଣ ଗୁଡିକର ଗୋଟିଏ ନକଲ ଅଧ୍ୟକ୍ଷଙ୍କୁ ଦେଇ ସେହି ଜିନିଷ ଗୁଡିକ କଟକ ରେଭେନ୍ସା କଲେଜରୁ ନେଇଆସି ଉତ୍କଳ ବିଶ୍ୱବିଦ୍ୟାଳୟର ଫିଜିକ୍‌ସ ଡିପାର୍ଟମେଣ୍ଟର ଗୋଟିଏ କୋଠରୀରେ ମୁଖ୍ୟ ପ୍ରଫେସରଙ୍କ ଠାରୁ ଅନୁମତି ନେଇ ରଖିଦେଲି । କାରଣ ସେହି କୋଠରୀରେ ପ୍ରାୟ ୧୨ ବର୍ଷ ହେଲା ମୁଁ ଗବେଷଣା କରୁଥିଲି । ଜିନିଷ ଆଣିଲା ପରେ ମୁଁ ସବୁଦିନ ବିଶ୍ୱବିଦ୍ୟାଳୟ ଯିବାପାଇଁ ଅସୁବିଧା ହେଲା, ତେଣୁ ମୁଁ ଗୋଟିଏ କାଇନେଟିକ୍ ହୋଣ୍ଡା ଗାଡି କିଣିଲି । ତା ପୂର୍ବରୁ ମୁଁ କେବେ ସ୍କୁଟର ଚଢି ନ ଥାଏ । ୨/୩ ଦିନ ଅଭ୍ୟାସ କଲାପରେ ମୁଁ ସ୍କୁଟରରେ ସବୁଦିନ ଯାଇ ପୁଣି ଗବେଷଣା କାମ ଆରମ୍ଭ କରିଦେଲି ।

## ଜାତୀୟ ଆଲୋଚନା ଚକ୍ର ଅନ୍ ପ୍ଲାଜମା ସାଇନ୍‌ସ, ଯାଦବପୁର ବିଶ୍ୱବିଦ୍ୟାଳୟ

ଏହା ଭିତରେ ୩/୪ ମାସ ବିତିଗଲା । ମୁଁ ଯାଦବପୁରରେ ହେଉଥିବା "ନ୍ୟାସନାଲ୍ ସେମିନାର ଅନ୍ ପ୍ଲାଜମା ସାଇନ୍‌ସ"ରେ ଯୋଗ ଦେବା ପାଇଁ ଠିକ୍ କରି କଲିକତା ପର୍ଯ୍ୟନ୍ତ ଯିବା ଏବଂ ଆସିବା ଟିକେଟ୍ କରିଦେଲି । ୩ ତାରିଖ ଦିନ ରାତିରେ ପୁରୀ ଏକ୍ସପ୍ରେସ୍‌ରେ କଲିକତା ଅଭିମୁଖେ ଯାତ୍ରା କଲି ଏବଂ ଯାଦବପୁର ବିଶ୍ୱବିଦ୍ୟାଳୟର ଅତିଥି ଭବନରେ ରହିଲି । ଅଳ୍ପ ଖର୍ଚ୍ଚରେ ତିଆରି କରିଥିବା ପ୍ଲାଜମା ଫିଜିକ୍ସର ଉପକରଣଗୁଡିକ ବିଷୟରେ ମୋତେ ଭାଷଣ ଦେବାକୁ ପଡିଥିଲା । ଉପକରଣ ଗୁଡିକର ସ୍ଲାଇଡ୍ ତିଆରି କରି ନେଇଥିଲି ଏବଂ ତାହା ସାହାଯ୍ୟରେ ଦର୍ଶକ ମାନଙ୍କୁ ସବୁ ଦେଖାଇ ଥିଲି । ମୋର ଉପକରଣ ଗୁଡିକ ବହୁତ ଆଦୃତ ହୋଇଥିଲା । କଲ୍ୟାଣୀ ବିଶ୍ୱବିଦ୍ୟାଳୟର ଜଣେ ପ୍ରଫେସର ଡକ୍ଟର ଡି.ସି

ସରକାର ରେଭେନ୍ସା କଲେଜକୁ ପ୍ଲାଜମା ଫିଜିକ୍ସ ପରୀକ୍ଷା କରିବା ପାଇଁ ବାହ୍ୟ ପରୀକ୍ଷକ ହିସାବରେ ଆସିଥିଲେ । ସେ ମୋତେ ଅନୁରୋଧ କଲେ ତାଙ୍କ ଘରକୁ ଯିବା ପାଇଁ । ମୋର ଯେଉଁଦିନ ଫେରିବାର ଥାଏ ସେହିଦିନ ଖରାବେଳେ ତାଙ୍କ ସଙ୍ଗେ ତାଙ୍କ ଘରକୁ ଯିବା ପାଇଁ ଠିକ୍ କଲି ଏବଂ ଖରାବେଳେ ମୋ ଜିନିଷ ପତ୍ର ଧରି ତାଙ୍କ ସଙ୍ଗେ ହାଓ୍ୱଡା ଷ୍ଟେସନ୍‌ରେ ପହଁଞ୍ଚିଲି । ଷ୍ଟେସନ୍‌ରେ ମୋ ଜିନିଷ ପତ୍ର ଲେଫଟ୍ ଲଗେଜ୍ କୋଠରୀରେ ରଖି ତାଙ୍କ ସଙ୍ଗେ ତାଙ୍କ ଘରକୁ ଗଲି । ତାଙ୍କ ଘର ହାଓ୍ୱଡା ଷ୍ଟେସନ୍ ଠାରୁ ଅଳ୍ପ କେତୋଟି ଷ୍ଟେସନ୍ ପରେ ପଡେ । ତାଙ୍କ ଘର ଷ୍ଟେସନ ପାଖରେ । ତେଣୁ ଚାଲି ଚାଲି ତାଙ୍କ ଘରକୁ ଗଲୁ । ତାଙ୍କ ଘରେ ରାତ୍ରୀ ଭୋଜନ କରି ଲୋକାଲ ଟ୍ରେନ୍‌ରେ ମୁଁ ଏକା ହାଓ୍ୱଡା ଷ୍ଟେସନକୁ ଆସିଲି । ଲେଫଟ୍ ଲଗେଜ କୋଠରୀରୁ ଜିନିଷ ପତ୍ର ଆଣି ପୁରୀ ହାଓ୍ୱଡା ଏକ୍ସପ୍ରେସରେ ଭୁବନେଶ୍ୱରରେ ପହଁଞ୍ଚିଲି ।

## ଫିଜିକ୍ସ ଡିପାର୍ଟମେଣ୍ଟ କର୍ମଶାଳା, ପୁନା ବିଶ୍ୱବିଦ୍ୟାଳୟ

୧୯୯୦ ମସିହା ନଭେମ୍ବର ମାସ ୭ ତାରିଖ ଦିନ ମୁଁ ଡକ୍ଟର ଭି.ଭି ଆଗାସିଙ୍କ ଠାରୁ ଗୋଟିଏ ଚିଠି ପାଇଲି । ସେଥିରେ ଲେଖାଥିଲା ଯେ ପୁନା ବିଶ୍ୱବିଦ୍ୟାଳୟର ଫିଜିକ୍ସ ଡିପାର୍ଟମେଣ୍ଟରେ ଗୋଟିଏ ୱାର୍କସପ୍ ଜାନୁଆରୀ ୨୧ ରୁ ୨୫ ତାରିଖ ଭିତରେ ଅନୁଷ୍ଠିତ ହେବ ଏବଂ ସେଥିରେ ଯଦି ଅନ୍ୟମାନେ କେହି ଯୋଗ ଦେବାକୁ ଇଚ୍ଛା କରନ୍ତି, ତାହେଲେ ଆପଣ ତାଙ୍କ ନାମ ସୁପାରିଶ କରିପାରିବେ ଏବଂ ଆପଣ ନିଜେ ମଧ୍ୟ ଆସିବେ । ତେଣୁ ମୁଁ ଡକ୍ଟର ଅଭିମନ୍ୟୁ ମିଶ୍ରଙ୍କ ନାମ ସୁପାରିଶ କଲି । ସେ ଏବଂ ମୁଁ ମିଶିକରି ଗୋଟିଏ ପ୍ରବନ୍ଧ ପଠାଇଥିଲୁ । ନିର୍ଦ୍ଦିଷ୍ଟ ତାରିଖରେ ମୁଁ ଏବଂ ଅଭିମନ୍ୟୁ ବାବୁ ମିଶିକରି ପୁନା ଅଭିମୁଖେ ଯାତ୍ରା କଲୁ । କୋଣାର୍କ ଏକ୍ସପ୍ରେସରେ ୨୧ ତାରିଖ ଦିନ ରାତି ୩ ଟା ବେଳେ ପୁନାରେ ପହଁଞ୍ଚିଲୁ ଏବଂ ଷ୍ଟେସନରେ ଅପେକ୍ଷା କଲୁ । ଡକ୍ଟର ଆଗାସୀ ଆମକୁ ନେବା ପାଇଁ ଗୋଟିଏ ଗାଡି ପଠାଇ ଥିଲେ । ସେଥିରେ ଯାଇ ପ୍ରାୟ ଭୋର ବେଳକୁ ଆମ ରହିବା ସ୍ଥାନରେ ପହଁଞ୍ଚିଲୁ । ପହଁଞ୍ଚିଲା ପରେ ଡକ୍ଟର ଆଗାସୀ ମୋତେ ଅନୁରୋଧ କଲେ, ଆପଣ ପ୍ଲାଜମା ଉପକରଣ ଏବଂ ଏକ୍ସପେରିମେଣ୍ଟ ଉପରେ ଆଉ ଗୋଟିଏ ବକ୍ତୃତା ଦେବେ । ମୁଁ ସେଥିରେ ରାଜିହେଲି । ପ୍ଲାଜମା ଏକ୍ସପେରିମେଣ୍ଟ ଉପରେ ବହୁତ ସ୍ଥାନରେ ମୋତେ ବକ୍ତୃତା ଦେବାକୁ ପଡୁଥିବାରୁ ମୁଁ ସବୁ ଉପକରଣ ଏବଂ ଏକ୍ସପେରିମେଣ୍ଟ ସ୍ଲାଇଡ୍ କରି ରଖିଥିଲି ଏବଂ ଓଭର ହେଡ ପ୍ରୋଜେକ୍ଟର ଦ୍ୱାରା ଟ୍ରାନ୍ସପରେଣ୍ଟ ପେପରରେ ମୋର ବକ୍ତବ୍ୟକୁ କଲର ସ୍କେଚ୍ ପେନ୍‌ରେ ଲେଖି ରଖିଥିଲି । ତାହା ସାହାଯ୍ୟରେ ବକ୍ତୃତା ଦେଲେ ଅନ୍ୟମାନେ ଭଲ ବୁଝିପାରନ୍ତି । ମୁଁ ତାରି ସାହାଯ୍ୟରେ ମୋ ବକ୍ତୃତାଟିକୁ ନିର୍ଦ୍ଦିଷ୍ଟ ସମୟ ଏବଂ ଦିନରେ ଦେଲି । ଏହା ବ୍ୟତିତ ମୁଁ ଦେଇଥିବା ପ୍ରବନ୍ଧ ଉପରେ ମଧ୍ୟ ଗୋଟିଏ ବକ୍ତୃତା ଦେଲି । ଏଠାରେ ଅଧ୍ୟାପକ ମାନେ ମୁଁ ଯେଉଁ ଉପକରଣ ସବୁ ବଜାରରେ ମିଳୁଥିବା ଘରୋଇ ଉପକରଣରୁ ତିଆରି କରିଥିଲି, ସେଗୁଡିକ ଦେଖି ମୋର ବହୁତ ପ୍ରଶଂସା କଲେ । ମିଟିଂ ସରିଲା ପରେ ବମ୍ବେ ଯାଇ ପୁଅକୁ ଦେଖା କରିବା ପାଇଁ ବସ୍‌ରେ ଗଲି ଏବଂ ତାପରେ ଟ୍ରେନ୍‌ରେ ଭୁବନେଶ୍ୱର ଫେରି ଆସିଲି ।

## ମୋ ସହଧର୍ମିଣୀଙ୍କର ସ୍କୁଟର ଦୁର୍ଘଟଣା

ସେହି ୧୯୯୧ ମସିହାର ପ୍ରଥମ ଭାଗରେ ମୋ ବଡ ପୁଅ ରଞ୍ଜନ ମିଶ୍ର ଶ୍ରୀମତୀଙ୍କୁ ନେଇ ଜଣେ ବନ୍ଧୁଙ୍କ ଘରକୁ ଯାଇଥିଲା । ଫେରିଲା ବେଳେ ରାସ୍ତାରେ ଗୋଟିଏ ହମ୍ପସ୍ ଉପରେ ଆସିବା ସମୟରେ ମୋର ସ୍ତ୍ରୀ ସ୍କୁଟରରୁ ଖସିପଡି ମୁଣ୍ଡରେ ଆଘାତ ପାଇ ଅଚେତ ହୋଇଗଲେ । ମୁଁ ଖବର ପାଇଲା ବେଳକୁ କଟକର ଗୋଟିଏ ନର୍ସିଂହୋମ୍‌ରେ ମୋର ପୁଅ ଆଡମିଶନ କରିଦେଇ ଥିଲା । ମୁଁ ରାତିରେ କଟକରେ ପହଁଞ୍ଚିଲା ବେଳକୁ ତାଙ୍କ ଚେତା ଆସିଯାଇ ଥିଲା । ମୁଁ ପରେ ବୁଝିଲା ବେଳକୁ ସେ ନର୍ସିଂହୋମ୍‌ଟି ମୋର ଜଣେ ଛାତ୍ରଙ୍କର ଥିଲା । ମୋର ଜଣାଶୁଣା ଜଣେ ଡାକ୍ତରଙ୍କୁ ଆଣି ଦେଖାଇଲି । ସେ କହିଲେ, ବ୍ରେନ୍ ଡ଼ାମରେଜ୍ ହୋଇନାହିଁ । କିନ୍ତୁ ଆମେ ଥରେ ବ୍ରେନ୍ ସ୍କାନିଂ କରିଦେବା । ତାର ଦିନେ ଦୁଇ ଦିନ ପରେ ବ୍ରେନ୍ ସ୍କାନିଂ କଟକ ମେଡିକାଲ କଲେଜ ହସପିଟାଲ୍‌ରେ କରିଦିଆ ଗଲା । ସ୍କାନିରୁ ଜଣା ପଡିଲା ଯେ ବ୍ରେନ୍‌ର କୌଣସି ଜାଗାରେ ରକ୍ତ ଜମାଟ ବାନ୍ଧି ନାହିଁ । ସେ ୬/୭ ଦିନ ନର୍ସିଂହୋମ୍‌ରେ ରହିବା ପରେ ଆମେ ତାଙ୍କୁ ଟ୍ୟାକ୍ସି କରି ଭୁବନେଶ୍ୱର ନେଇ ଆସିଲୁ । ସେ ନର୍ସିଂହୋମ୍‌ରେ ରହିବା ବେଳେ ବୁବୁର ସାଙ୍ଗ ଆଲୋକ ଦାସ ମୋ ସ୍ତ୍ରୀଙ୍କ କଥା ବହୁତ ବୁଝୁଥିଲେ ଏବଂ ନର୍ସିଂହୋମ୍‌ରେ ଦିନେ ଦିନେ ମଧ୍ୟ ରାତିରେ ରହି ଯାଉଥିଲେ । କିନ୍ତୁ ମୁଁ ଦୁଃଖର ସହିତ ଜଣାଉଛି ଯେ ବର୍ତ୍ତମାନ ସେ ଆଉ ଇହ ଜଗତରେ ନାହାଁନ୍ତି । ତାଙ୍କୁ କେହି ଜଣେ ଲୋକ ଛୁରିମାରି ହତ୍ୟା କରିଦେଇଥିଲା । ମୋ ସ୍ତ୍ରୀଙ୍କ ଦେହ କ୍ରମେ ଭଲ ହୋଇଗଲା ।

## ବୃହତ୍ତର ଗବେଷଣା ପରିଯୋଜନା, ଷ୍ଟଡିଜ୍ ଅନ୍ ଡିଉଟୋରିଅମ୍ ପ୍ଲାଜମା, ଉତ୍କଳ ବିଶ୍ୱବିଦ୍ୟାଳୟ

ସେହିବର୍ଷ ଅପ୍ରେଲ ମାସରେ ମୁଁ ଇଉ.ଜି.ସି.ରୁ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ମୋର ବୃହତ୍ତର(Major) ଗବେଷଣା ପରିଯୋଜନା 'ଷ୍ଟଡିଜ୍ ଅନ୍ ଡିଉଟୋରିଅମ୍ ପ୍ଲାଜମା' ର ଅନୁଦାନ ପାଇବି ବୋଲି ଚିଠି ପାଇଲି । ସେଥିରେ ଲେଖାଥିଲା, ଆପଣ କେଉଁ ତାରିଖରୁ ପରିଯୋଜନା କାମ ଆରମ୍ଭ କଲେ ତାହା ଉତ୍କଳ ବିଶ୍ୱବିଦ୍ୟାଳୟର ରେଜିଷ୍ଟ୍ରରଙ୍କ ମାଧ୍ୟମରେ ଆମକୁ ଜଣାନ୍ତୁ । ତାହାପରେ ଆମେ ଆପଣଙ୍କୁ ଟଙ୍କା ଅନୁଦାନ ଆକାରରେ ଦେବୁ । ସେହି ପରିଯୋଜନାରେ କାମ କରିବା ସମୟରେ ଯଦି କାର୍ଯ୍ୟରୁ ଅବସର ନିଅନ୍ତି । ତାହାହେଲେ ଆପଣଙ୍କୁ ମାସିକ ୨ହଜାର ଟଙ୍କା ପାରିଶ୍ରମିକ (Honorarium) ଦିଆଯିବ । ଆପଣ ଜଣେ ସେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ବ୍ୟକ୍ତିଙ୍କୁ ଆପଣଙ୍କର ଗବେଷଣା ସହକର୍ମୀ ହିସାବରେ ନିଯୁକ୍ତି ଦେଇ ପାରିବେ । ସେ ଲୋକ ଯଦି ନେଟ୍ ପାସ୍ କରିଥିବେ ତାଙ୍କୁ ଇଉ.ଜି.ସି ହାରରେ ଦରମା ଦେବେ । ଯଦି ପାସ୍ କରି ନ ଥିବେ ତାଙ୍କୁ ପରିଯୋଜନାର ସହକାରୀ କର୍ମଚାରୀ

ଦରମା ଦେବେ । ଯଦି ପାସ୍ କରି ନ ଥିବେ ତାଙ୍କୁ ପରିଯୋଜନାର ସହକାରୀ କର୍ମଚାରୀ ହିସାବରେ ନିଯୁକ୍ତି ଦେବେ ଏବଂ ତାଙ୍କୁ ମାସିକ ୧୨୦୦ ଟଙ୍କା ଲେଖାଏଁ ଦରମା ଦେବେ । ନିଯୁକ୍ତି ଦେବା ପୂର୍ବରୁ ଆପଣ ଖବର କାଗଜରେ ବିଜ୍ଞାପନ ଦେବେ । ବିଶ୍ୱବିଦ୍ୟାଳୟର ପ୍ରଫେସର ମାନଙ୍କୁ ନେଇ ଗୋଟିଏ କମିଟି କରିବେ । କମିଟି ଯାହାକୁ ନିଯୁକ୍ତି ଦେବା ପାଇଁ ସୁପାରିଶ୍ କରିବେ, ତାଙ୍କୁ ନିଯୁକ୍ତି ଦେବେ । ଏହି ନିୟମ ଅନୁସାରେ ନେଟ୍ ପାସ୍ କରିଥିବା କୌଣସି ଦରଖାସ୍ତ ନ ଥିବାରୁ ଶ୍ରୀ ଆକାଶ ସାହୁଙ୍କୁ ପରିଯୋଜନାର ସହକାରୀ କର୍ମଚାରୀ ହିସାବରେ ନିଯୁକ୍ତି ଦେଲି । ତାଙ୍କ ସାହାଯ୍ୟ ନେଇ ମୋ ଗବେଷଣା କାମରେ ଲାଗିଗଲି ।

ସେପ୍ଟେମ୍ବର ପ୍ରଥମ ସପ୍ତାହରେ ଇଣ୍ଡିଆନ୍ ଫିଜିକାଲ ସୋସାଇଟ୍ ତରଫରୁ ଗୋଟିଏ ଚିଠି ଡକ୍ଟର ଚିତ୍ତଲ ପୁଡିଙ୍କ ଠାରୁ ପାଇଲି । ତାର ବିଷୟବସ୍ତୁ ହେଲା "ମୁଁ ପଠାଇଥିବା 'ଏକ୍ସପେରିମେଣ୍ଟ ଅନ୍ ପ୍ଲାଜମା ଫିଜିକ୍ସ' ବହିରେ ବର୍ଣ୍ଣିତ ହୋଇଥିବା ପରୀକ୍ଷା ଗୁଡିକ ଇଣ୍ଡିଆନ୍ ଫିଜିକାଲ୍ ସୋସାଇଟ୍ ତରଫରୁ ଆୟୋଜିତ ହୋଇଥିବା ବାର୍ଷିକ ଉତ୍ସବରେ ବୈଜ୍ଞାନିକମାନଙ୍କୁ ଦେଖାଇବା ପାଇଁ ସମସ୍ତ ସଭ୍ୟମାନେ ଆଗ୍ରହ ପ୍ରକାଶ କରିଥିଲେ । ସେଥିପାଇଁ ଡକ୍ଟର ମିଶ୍ରଙ୍କୁ ସମସ୍ତ ପ୍ରକାର ସୁବିଧା ଦିଆଯିବା ପାଇଁ ବ୍ୟବସ୍ଥା କରାଯିବ" । ଏ ଚିଠିଟି ପାଇଁ ମୁଁ ବହୁତ ଖୁସି ହେଲି । କାରଣ ଏଭଳିଆ ପରୀକ୍ଷା ଗୁଡିକ ପୂର୍ବରୁ ଜୟପୁରର ପ୍ରଫେସର ଡକ୍ଟର ବି. ସରାଫ୍ କେବଳ ଦେଖାଇବାକୁ ଯାଇଥିଲେ । ମୁଁ ତାଙ୍କ ଚିଠିର ଉତ୍ତର ଦେଇ ଲେଖିଲି, ମୋ ସାଙ୍ଗରେ ମୋର ଦୁଇ ଜଣ ଛାତ୍ର ନ ଗଲେ ସମୁଦାୟ ପରୀକ୍ଷା ଦେଖାଇବା ଏକା ମୋ ପକ୍ଷେ କଷ୍ଟକର ହେବ, ଯେହେତୁ ମୁଁ ଅବସର ନେଇଗଲିଣି । ଆପଣ ଯେଉଁଦିନ ଠିକ୍ କରିବେ ତାର ମାସକ ଆଗରୁ ମୋତେ ଜଣାଇଲେ ଆମେ ତିନି ଜଣ ନିର୍ଦ୍ଦିଷ୍ଟ ଦିନର ୨/୩ ଦିନ ପୂର୍ବରୁ ଗାଡିରେ ଜିନିଷ ପତ୍ର ଲଦି ନେଇ କଲିକତା ଯିବୁ । ଏଥିପାଇଁ ଆପଣ ଫିଜିକାଲ୍ ସୋସାଇଟି ତରଫରୁ ଗୋଟିଏ ଚିଠି ମୋତେ ଦିଅନ୍ତୁ ଯେ ମୁଁ ଯେଉଁ ପରୀକ୍ଷା ସମ୍ବନ୍ଧୀୟ ଜିନିଷ ଗୁଡିକ ନେବି, ତାହା ବିକ୍ରି ଉଦ୍ଦେଶ୍ୟରେ ନୁହେଁ ଏବଂ ସେଗୁଡିକ ପୁଣି ଭୁବନେଶ୍ୱର ଫେରାଇ ନେବି ।

ସେହି ବର୍ଷ ମୋତେ ଧରୱାଡ ବିଶ୍ୱବିଦ୍ୟାଳୟରୁ ଗୋଟିଏ ପି.ଏଚ୍.ଡି ଥେସିସ୍ ପରୀକ୍ଷା ପାଇଁ ନିଯୁକ୍ତି ମିଳିଥିଲା । ମୁଁ ମୋର ସମ୍ମତି ଦେଲାପରେ ବିଶ୍ୱବିଦ୍ୟାଳୟ ମୋ ପାଖକୁ ସେ ଛାତ୍ରଟିର ଥେସିସ୍ ପଠାଇ ଦେଇଥିଲେ । ସେ ପିଲାଟିର ନାମ ଶ୍ରୀ ମରିହାଲ । ତାଙ୍କ ପୁରା ନାମଟି ମୋର ମନେ ନାହିଁ । ତାଙ୍କର ଥେସିସ୍‌ଟି ଥିଓରିଟିକାଲ ପ୍ଲାଜମା ଫିଜିକ୍ସ ଉପରେ ପର୍ଯ୍ୟବେସିତ । ମୁଁ ତାଙ୍କ ଥେସିସ୍‌ଟି ପି.ଏଚ୍.ଡି ପାଇବାକୁ ଉପଯୁକ୍ତ ବୋଲି ଲେଖି ପଠାଇ ଦେଲି । ତାର ୧୫/୨୦ ଦିନ ପରେ ଗୋଟିଏ ନିର୍ଦ୍ଦିଷ୍ଟ ତାରିଖରେ ମୌଖିକ ପରୀକ୍ଷା ନିମନ୍ତେ ଧରୱାଡ ବିଶ୍ୱବିଦ୍ୟାଳୟ ମୋତେ ଡକାଇ ଥିଲା । ମୋର ତାରିଖଟି ମନେନାହିଁ । ତାର ଦୁଇଦିନ ପୂର୍ବରୁ ଯିବା ପାଇଁ ସଂରକ୍ଷଣ ଟିକେଟ କରିଦେଲି ।

## ଧରଓ୍ୱାଡ ବିଶ୍ୱବିଦ୍ୟାଳୟରେ ପିଏଚ୍.ଡି ପରୀକ୍ଷା

ଧରଓ୍ୱାଡ ବିଶ୍ୱବିଦ୍ୟାଳୟ ହୁବ୍ଲି ରେଲଓ୍ୱ ଷ୍ଟେସନ ଠାରୁ ପ୍ରାୟ ୨୦ କିଲୋମିଟର ଦୂରରେ ଅବସ୍ଥିତ । ତେଣୁ ପରୀକ୍ଷାର ଦୁଇଦିନ ପୂର୍ବରୁ ଇଷ୍ଟକୋଷ୍ଟରେ ସିକନ୍ଦରାବାଦ ଦେଇ ହୁବ୍ଲି ଯିବାକୁ ମୁଁ ଟିକେଟ ସଂରକ୍ଷଣ କରିଥିଲି । ସେହି ଅନୁସାରେ ମୁଁ ହାଓ୍ୱଡା ସିକନ୍ଦରାବାଦ ଏକ୍ସପ୍ରେସରେ ଭୁବନେଶ୍ୱରରୁ ସଂଧ୍ୟାବେଳେ ଟ୍ରେନ୍‌ରେ ବସିଲି । ପ୍ରାୟ ଦିନ ୧୧/୧୨ଟା ବେଳେ କାଜିପଟ୍ ରେଲଓ୍ୱେ ଷ୍ଟେସନର କିଛି ବାଟ ପୂର୍ବରୁ ଗାଡିଟି ଅଟକିଗଲା । ବୁଝା ବୁଝି କରିବାରୁ ରାସ୍ତାରେ ଗୋଟିଏ ମାଲଗାଡି ଦୁର୍ଘଟଣା ଗ୍ରସ୍ତ ହୋଇଥିବାରୁ ଗାଡିଟି ସେଠାରେ ଅଟକି ଯିବା ଜଣାଗଲା । କାଜିପଟ୍ ଷ୍ଟେସନ୍‌ରେ ଆମର ମଧ୍ୟାହ୍ନ ଭୋଜନ କରିବାର ଥିଲା । ଅନ୍ୟ ପାସେଞ୍ଜର ମାନେ ବହୁତ ହଇରାଣ ହେଲେ । ମୁଁ ସବୁବେଳେ ସାଙ୍ଗରେ ଭଜାଚୁଡା ଗୁଣ୍ଡ ଏବଂ ଅମୁଲ୍ ପାଉଡର ନେଇଥାଏ । ତେଣୁ ମୋର କିଛି ଅସୁବିଧା ହେଲାନାହିଁ । ଟ୍ରେନ୍ ଛାଡିଲା ବେଳକୁ ପ୍ରାୟ ୩ ଘଣ୍ଟା ଡେରି ହୋଇଗଲା । ସିକନ୍ଦରାବାଦରେ ରାତି ୧୦ଟା ବେଳେ ପହଁଚିଲି । ସେତେବେଳକୁ ସିକନ୍ଦରାବାଦ ହୁବ୍ଲି ଏକ୍ସପ୍ରେସ୍ ଛାଡିଦେଇ ଥିଲା । ମୁଁ ଷ୍ଟେସନ୍‌ରେ ବୁଝାବୁଝି କରିବାରୁ ଜାଣିଲି, ସିକନ୍ଦରାବାଦରୁ ଅନ୍ୟ ଗୋଟିଏ ଟ୍ରେନ୍ କୁର୍ନୁଲ ପର୍ଯ୍ୟନ୍ତ ଯାଉଛି ଏବଂ ଗୁଣ୍ଟୁର ଠାରୁ ଆସୁଥିବା ଗୋଟିଏ ଟ୍ରେନ୍ କୁର୍ନୁଲ୍ ଦେଇ ହୁବ୍ଲି ପର୍ଯ୍ୟନ୍ତ ଯାଉଛି । ସେହି ଟ୍ରେନ୍‌ଟି ସକାଳ ୮ଟା ବେଳେ କୁର୍ନୁଲ ଛାଡୁଛି । ତେଣୁ ମୁଁ ରାତି ୧୧/୧୨ଟା ଭିତରେ କୁର୍ନୁଲ୍ ଯିବାପାଇଁ ଗୋଟିଏ ଟ୍ରେନ୍‌ରେ ବସିଲି । ସକାଳ ୬ଟା ବେଳେ ଯାଇ କୁର୍ନୁଲ୍‌ରେ ପହଁଚିଲି । ୮ଟା ବେଳେ ଟ୍ରେନ୍‌ରେ ବସି ସଂଧ୍ୟା ୫ଟା ବେଳେ ହୁବ୍ଲି ଷ୍ଟେସନରେ ପହଁଚିଲି । ହୁବ୍ଲି ଷ୍ଟେସନ୍‌ରୁ ବୁଝିଲି ଧରଓ୍ୱାଡ ବିଶ୍ୱବିଦ୍ୟାଳୟରେ ପହଁଚିବା ପାଇଁ ଗୋଟିଏ ବସ୍ ରାତି ୧୦ଟା ବେଳେ ଯାଏ ଏବଂ ଧରଓ୍ୱାଡ ବିଶ୍ୱବିଦ୍ୟାଳୟର ଅତିଥି ଭବନ ଆଗରେ ରହେ । ସେଥିପାଇଁ ମୁଁ ହୁବ୍ଲି ବସ୍ ଷ୍ଟାଣ୍ଡକୁ ଗଲି । ବସ୍ ଷ୍ଟାଣ୍ଡକୁ ଯିବା ସମୟରେ ବସ୍‌ର ଜଣେ ପାସେଞ୍ଜର ମୋତେ ବହୁତ ସାହାଯ୍ୟ କଲେ ଏବଂ ସେ ମୋ ସୁଟ୍‌କେଶଟି ଧରିଲେ ବସ୍ ଷ୍ଟାଣ୍ଡ ପର୍ଯ୍ୟନ୍ତ ଗୋଟିଏ ରିକ୍ସାରେ ଗଲୁ । ସେ ଭଦ୍ରଲୋକ ମୋତେ କହିଲେ, ମୁଁ ଆପଣଙ୍କ ସୁଟକେଶ ଧରୁଛି ଆପଣ ଧରଓ୍ୱାଡ ବିଶ୍ୱବିଦ୍ୟାଳୟ ଯିବା ପାଇଁ ଧାଡିରେ ଛିଡା ହୋଇ ଯାଆନ୍ତୁ । ଛିଡା ହେବାର ପାଞ୍ଚ ମିନିଟ୍ ପରେ ମୋ ମନରେ କାହିଁକି ପାପ ଛୁଇଁଲା ଯେ ସେ ଭଦ୍ରଲୋକ ଜଣକ ମୋ ସୁଟ୍‌କେଶଟି କାଳେ ନେଇଯିବେ ? ତେଣୁ ମୁଁ ଆସି ତାଙ୍କ ଠାରୁ ସୁଟ୍‌କେଶଟି ନେଇଗଲି ଏବଂ ତାଙ୍କୁ ତାଙ୍କ କାମରେ ଯାଆନ୍ତୁ ବୋଲି କହିଲି । ସୁଟ୍‌କେଶଟି ମୁଁ ନିଜେ ଧରି ଧାଡିରେ ଠିଆ ହେଲି । ଟିକେଟ୍ କରି ଧରଓ୍ୱାଡ୍ ବସ୍‌ରେ ବସିଲି । ଘଣ୍ଟାଏ ପରେ ବସ୍‌ଟି ଧରଓ୍ୱାଡ ବିଶ୍ୱଦ୍ୟାଳୟର ଅତିଥି ଭବନରେ ପହଁଚିଲା । ଅତିଥି ଭବନରେ ପଚାରି ମୋ ନାମ କହିବାରୁ ସେ କୋଠରୀଟି ଦେଖାଇ ଦେଲେ । ମୁଁ କୋଠରୀରେ ଯାଇ ରହିଲି । କିଛି ସମୟ ପରେ ରାତ୍ରି ଭୋଜନ ପାଇଁ ଗୋଟିଏ ମିଲ୍ ଆଣିଦେଲେ । ଦୁଇ ଦିନ ଗାଡିରେ ଯିବା ଆସିବା କରି ମୁଁ ବହୁତ କ୍ଳାନ୍ତ ହୋଇ ପଡିଥିଲି । ତେଣୁ ମୁଁ ଶୋଇପଡିଲି । ସକାଳୁ ଶ୍ରୀ ମରିହାଲ ଏବଂ ତାଙ୍କ ଉପଦେଷ୍ଟା ଡକ୍ଟର ବି.ଜି ଜ୍ୟୋତି ଆସି ଡାକିବାରୁ ମୁଁ ଉଠି ଦୁଆର

ଖୋଲିଲି । ତାଙ୍କୁ ମୋର ଆସିବା ଯାତ୍ରାର ଅସୁବିଧା ସବୁ ବର୍ଣ୍ଣନା କଲି । ଯାହାହେଉ ସେମାନେ ବହୁତ ଖୁସି ହେଲେ । ତାପରେ ୧୦ ଟା ବେଳକୁ ବିଶ୍ୱବିଦ୍ୟାଳୟ ଗଲୁ । ଶ୍ରୀ ମଗିହାଲଙ୍କ ମୌଖିକ ପରୀକ୍ଷା ସରିଗଲା । ଉପର ବେଳା ସେମାନେ ଅନୁରୋଧ କରିବାରୁ ମୁଁ ଗୋଟିଏ ବକ୍ତୃତା ଦେଲି । ସେଦିନ ରାତିରେ ସେଠାରେ ରହିଲି ଏବଂ ସେହି ରାତିରେ ମଗିହାଲଙ୍କ ଉପଦେଷ୍ଟା ମୋତେ ତାଙ୍କ ଘରେ ରାତ୍ରି ଭୋଜନ ପାଇଁ ନିମନ୍ତ୍ରଣ କରିଥିଲେ । ତାଙ୍କୁ ଖାଇବା ବେଳେ କହିଲି ମୁଁ ଭୁବନେଶ୍ୱରକୁ ଗୋଟିଏ ଭଲ ଜିନିଷ କିଣି ନେବାକୁ ଚାହୁଁଛି । ସେ ଉତ୍ତର ଦେଲେ ମୁଁ କାଲି ସକାଳେ ଆଣିଦେବି । ତାଙ୍କ ସାଙ୍ଗରେ ବିଶ୍ୱବିଦ୍ୟାଳୟର ପରିସର ବୁଲାବୁଲି କରି ଫେରିଲୁ । ସେ ମୋତେ ସକାଳୁ ଯୋଡିଏ ପ୍ୟାକେଟ୍ ଆଣିଦେଲେ । ମୁଁ ପଚାରିଲି ସେ କଣ ? ସେ କହିଲେ ଧାରୱାଡ ପେଡା । ଏହାର ବିଶେଷତ୍ୱ ହେଲା ଏହା ବଂଶାନୁକ୍ରମରେ ଏହିଠାରେ ବିକ୍ରି ଚାଲିଛି । ପେଡା କିଣିବାକୁ ଏତେ ଲୋକ ହୁଅନ୍ତି ଯେ ରାତିରୁ ଧାଡିରେ ଛିଡା ହେବାକୁ ପଡେ ଏବଂ ଜଣେ ଲୋକଙ୍କୁ ୧ କିଲୋରୁ ଅଧିକ ଦିଆଯାଏ ନାହିଁ । ତେଣୁ ସେ ଦୁଇଟି ଲୋକ ପଠାଇ ୨ କିଲୋ ପେଡା ଆଣିଦେଲେ ଏବଂ ରାତିରେ ହୁବ୍ଲି ଷ୍ଟେସନ୍‌ରେ ମୋତେ ଛାଡିଦେଲେ । ମୁଁ ସେଠାରେ ଗଣ୍ଟୁର ପର୍ଯ୍ୟନ୍ତ ଆସି, ଗୁଣ୍ଟୁରରୁ ଟ୍ରେନ୍‌ରେ ଭୁବନେଶ୍ୱର ଆସିଲି । ପ୍ରକୃତରେ ଦେଖିଲି ସେ ପେଡାର ସ୍ୱାଦ ଅନ୍ୟ ପେଡାଠାରୁ ଭିନ୍ନ ଅଟେ ।

## ଭାରତୀୟ ଫିଜିକ୍ସ ଶିକ୍ଷକମାନଙ୍କର ବାର୍ଷିକ ସମ୍ମେଳନ, ମଦୁରାଇ

ଏହା ଭିତରେ ଇଣ୍ଡିଆନ୍ ଆସୋସିଏସନ୍ ଅଫ ଫିଜିକ୍ସ ଟିଚର୍ସର ବାର୍ଷିକ ଉତ୍ସବ ମଦୁରାଇ ଠାରେ ହେବ ବୋଲି ମୁଁ ଚିଠି ପାଇଥିଲି ଏବଂ ମୋ ବଡ ଝିଅ ପ୍ରଭାତୀ ମିଶ୍ର ସେହି ମିଟିଂକୁ ଯିବା ପାଇଁ ମୋତେ ଜଣାଇଲା । ତେଣୁ ମୁଁ, ମୋ ସ୍ୱୀ ଏବଂ ମୋ ବଡ ଝିଅ ମଦୁରାଇ ଯିବା ପାଇଁ ଠିକ୍ କଲୁ ଏବଂ ମଦୁରାଇ ପର୍ଯ୍ୟନ୍ତ ଯିବା ପାଇଁ ରେଲୱେ ଟିକେଟ୍ ସଂରକ୍ଷଣ କରିଦେଲୁ । ଏହି ସମୟରେ ମୁଁ ଇନ୍‌ଷ୍ଟ୍ରୁମେଣ୍ଟ ସୋସାଇଟ୍ ଅଫ୍ ଇଣ୍ଡିଆର ବାର୍ଷିକ ଉତ୍ସବରେ କୋଚିନ୍ ଯିବା ପାଇଁ ଏବଂ କୌଣସି ପ୍ରବନ୍ଧ ପଠାଇବା ପାଇଁ ଚିଠି ପାଇଲି । ସେହି ଉତ୍ସବଟି ମଦୁରାଇରେ ହେଉଥିବା ବାର୍ଷିକ ଉତ୍ସବର ୬/୭ ଦିନ ପରେ କୋଚିନ୍ ଠାରେ ହେବାର ଥିଲା । ଏହି ସମୟରେ ଭରଟିଆ ବିଶ୍ୱବିଦ୍ୟାଳୟର ଫିଜିକ୍ସ ପ୍ରଫେସର ଡକ୍ଟର ବାଲସୁବ୍ରମନ୍ୟମ୍‌ଙ୍କ ଠାରୁ ଗୋଟିଏ ଅନୁରୋଧ ପାଇଲି ଯେ ଆପଣ କେତୋଟି ବକ୍ତୃତା ମାଧ୍ୟମରେ ପ୍ଲାଜମା ଏକ୍ସପେରିମେଣ୍ଟସ୍ ଆଣ୍ଡ ଇନ୍‌ଷ୍ଟ୍ରୁମେଣ୍ଟେସନ୍ ଉପରେ ଆମ ପୋଷ୍ଟ ଗ୍ରାଜୁଏଟ୍ ଡିପାର୍ଟମେଣ୍ଟର ଅଧ୍ୟାପକ ଏବଂ ଛାତ୍ର ମାନଙ୍କୁ ବୁଝାଇବେ । ମୁଁ ଏହି ଚିଠି ପାଇ ମଦୁରାଇର ତାରିଖ ଏବଂ କୋଚିନ୍ ତାରିଖ ମଧ୍ୟରେ ଥିବା ୨୧.୧୧.୯୧ ଏବଂ ୨୨.୧୧.୯୧ ଏହି ଦୁଇ ଦିନ ଭାଷଣ ଦେବି ବୋଲି ଜଣାଇ ଦେଲି । ମୁଁ, ମୋ ଶ୍ରୀମତୀ, ମୋ ବଡ ଝିଅ ଓ ତା ଝିଅ ଏହିପରି ଆମେ ଚାରିଜଣ ୧୬ ତାରିଖ ଦିନ ସକାଳେ ମଦୁରାଇ ଯିବା ଉଦ୍ଦେଶ୍ୟରେ ଇଷ୍ଟକୋଷ୍ଟ ଏକ୍ସପ୍ରେସ୍‌ରେ ବସିଲୁ । ଚେନ୍ନାଇରେ ପହଁଞ୍ଚିଲା ବେଳକୁ ଜାଣିଲୁ ଯେ ଟ୍ରେନ୍‌ଟି ୧ ଘଣ୍ଟା ୨୫ ମିନିଟ୍ ଲେଟ୍ ହୋଇଯାଇଛି । ତେଣୁ ମଦୁରାଇ ଯିବାପାଇଁ ଚେନ୍ନାଇରୁ ଯେଉଁ ଟ୍ରେନ୍‌ରେ

ଟିକେଟ୍ ହୋଇଥିଲା ତାହା ଆମେ ଧରି ପାରିଲୁ ନାହିଁ । ତେଣୁ ଆମେ ଚେନ୍ନାଇରେ ଥିବା ଗୋଟିଏ ବସ୍ ଷ୍ଟାଣ୍ଡକୁ ଯାଇ ବସ୍‌ରେ ଯିବା ପାଇଁ ମଦୁରାଇ ଟିକେଟ୍ କରି ଗୋଟିଏ ଲକ୍‌ଜ୍ୟୁରୀ କୋଚ୍‌ରେ ଯାଇ ବସିଲୁ । ସେତେବେଳକୁ ରାତି ୧୦ଟା ହୋଇଯାଇ ଥିଲା । ପ୍ରାୟ ଭୋର ପାଞ୍ଚଟା ବେଳେ ତ୍ରିଚୀ ପାଖରେ ଗୋଟିଏ ଜାଗାରେ ବସ୍ ଡ୍ରାଇଭର କହିଲା, ବସ୍ ଆଉ ଆଗକୁ ଯାଇ ପାରିବ ନାହିଁ । ଆପଣମାନେ ଗାଡ଼ିରୁ ଓହ୍ଲାଇ ଯାଆନ୍ତୁ । ଆମେ ଗାଡ଼ିରୁ ଓହ୍ଲାଇଲୁ ଏବଂ କଣ୍ଡକ୍ଟରଙ୍କୁ ପଇସା ଫେରାଇ ଦେବା ପାଇଁ କହିଲୁ । କଣ୍ଡକ୍ଟର ପଇସା ଫେରାଇ ଦେଲାନାହିଁ । ଆମକୁ ନେଇ ମଦୁରାଇ ଯାଉଥିବା ଆଉ ଗୋଟିଏ ସାଧାରଣ ବସ୍‌ରେ ମାଗଣାରେ ବସାଇ ଦେଲା । ଆମେ ବାଧ୍ୟ ହୋଇ ବସିଲୁ । ଦିନ ୧୦ଟା ବେଳେ ମଦୁରାଇରେ ପହଁଞ୍ଚିଲୁ । ଆଇ.ଏ.ପି.ଟି.ର ବାର୍ଷିକ ସେମିନାରଟି ମଦୁରାଇର ଆମେରିକାନ୍ କଲେଜରେ ଅନୁଷ୍ଠିତ ହେଉଥିଲା । ଆମେ ଯାଇ ଗୋଟିଏ ଛାତ୍ରାବାସରେ ରହିଲୁ । ଖାଇବା ବ୍ୟବସ୍ଥା ସବୁ ସେଠାରେ ହୋଇଥିଲା । ସେଠାରେ ଥିବା ସମୟରେ ମୋ ନାତୁଣୀର ଦେହ ଅସୁସ୍ଥ ହୋଇଗଲା । ମଦୁରାଇର ଜଣେ ଫିଜିକ୍ସ ଅଧ୍ୟାପକଙ୍କୁ ମୋ ଇଉ.ଜି.ସି. ଅନୁଦାନର ଆୟୋଜନ କରିଥିବା ୱାର୍କସପ୍ 'ଲୋ କଷ୍ଟ କ୍ଲାସ୍ ରୁମ୍ ଏକ୍ସପେରିମେଣ୍ଟ ଅନ୍ ପ୍ଲାଜମା ଫିଜିକ୍ସରେ' ତାଙ୍କୁ ଯୋଗ ଦେବା ପାଇଁ ନିମନ୍ତ୍ରଣ କରିଥିଲି ଏବଂ ସେ ମଧ୍ୟ ଆସିଥିଲେ । ତେଣୁ ତାଙ୍କ ସାଙ୍ଗରେ ମୋର ଭଲ ପରିଚୟ ଥିଲା । ମୁଁ ତାଙ୍କୁ ମୋ ନାତୁଣୀର ଦେହ ଖରାପ ଥିବାରୁ କିଛି ଔଷଧ ଆଣିବାକୁ କହିଲି । ସେ ସଙ୍ଗେ ସଙ୍ଗେ ଔଷଧ ଆଣିବାକୁ ଗଲେ ଏବଂ ପ୍ରାୟ ଅଧ ଘଣ୍ଟାଏ ପରେ ହୋମିଓପାଥିକ୍ ଔଷଧ ନେଇ ଆସିଲେ । ତାକୁ ଖାଇବାରୁ ୩/୪ ଘଣ୍ଟା ପରେ ସେ ସୁସ୍ଥ ହୋଇଗଲା । ମୁଁ ତାଙ୍କୁ ମୋର କୃତଜ୍ଞତା ଜଣାଇଲି । ସେ ମୋତେ କହିଲେ ମୁଁ ଆପଣଙ୍କୁ ଗୋଟିଏ ବହି ଦେବି ଯାହା ଆପଣଙ୍କର ବହୁତ କାମରେ ଆସିବ । ତାଙ୍କ ନାମ ହେଉଛି ଟି.ଆର. ଶଙ୍କରନାରାୟଣ । ଆଇ.ଏ.ପି.ଟି.ର ବାର୍ଷିକ ସେମିନାର ସରିଗଲା ପରେ ଆମେ ସବୁ କନ୍ୟାକୁମାରୀ ଯିବା ପାଇଁ ଠିକ୍ କରିଥିଲୁ । ମୁଁ ଟି.ଆର. ଶଙ୍କରନାରାୟଣଙ୍କୁ ଅନୁରୋଧ କଲି ଆପଣ ଟିକିଏ ସୁବିଧା କରିଦିଅନ୍ତୁ । ସେ ପଚାରିଲେ କେଉଁଦିନ ଯିବେ । ମୁଁ କହିଲି କାଲି ସକାଳୁ ଯିବୁ । ମୁଁ ତାଙ୍କୁ ଅନୁରୋଧ କଲି ଆପଣ ଆମ ସାଙ୍ଗରେ ଚାଲନ୍ତୁ । ସେ ରାଜି ହେଲେ ଓ କହିଲେ ଆମେ ଗୋଟିଏ କାର କରି ଯାଇ ସେହି ଗାଡ଼ିରେ ଫେରି ଆସିବା ଏବଂ ମୁଁ ଗାଡ଼ିଟା ଶସ୍ତାରେ କରାଇ ଦେବି । ତାପର ଦିନ ସକାଳେ ନିର୍ଦ୍ଦିଷ୍ଟ ସମୟରେ ସେଗାଡ଼ି ନେଇକରି ଆସିଲେ ।

## ସସ୍ତ୍ରୀକ କନ୍ୟାକୁମାରୀ ପରିଦର୍ଶନ

ଆମେ ସମସ୍ତେ ଗାଡ଼ିରେ ବସି କନ୍ୟାକୁମାରୀ ଗଲୁ । ପ୍ରାୟ ୪/୫ ଘଣ୍ଟା ପରେ କନ୍ୟା କୁମାରୀରେ ପହଁଞ୍ଚିଲୁ । ଏକାଠି ସମସ୍ତେ କନ୍ୟାକୁମାରୀରେ ବିଭିନ୍ନ ଜାଗା ବୁଲି ବିବେକାନନ୍ଦ ରକ୍ ଦେଖିବାକୁ ଗଲୁ । ଗୋଟିଏ ଛୋଟିଆ ପାହାଡ଼ ସମୁଦ୍ର କୂଳଠାରୁ ଅଳ୍ପ ଦୂରରେ ଅବସ୍ଥିତ । ସେ ରକ୍‌ଟି ବିବେକାନନ୍ଦଙ୍କ ନାମରେ ନାମିତ କରାଯାଇଛି । ବୁଲା ବୁଲି କରି ଦେଖି ଆସିଲା ପରେ ଗୋଟିଏ ମନ୍ଦିର ଭିତରକୁ ଯିବା ପାଇଁ ଠିକ୍ କଲୁ । ସେ ମନ୍ଦିରରେ

ପୁରୁଷ ଲୋକମାନେ ଲୁଗାପିନ୍ଧି ଦେହରୁ ସାର୍ଟ ଖୋଲି ମନ୍ଦିର ଭିତରକୁ ଯାଇ ପାରିବେ । କିନ୍ତୁ ସ୍ତ୍ରୀ ଲୋକମାନେ ଲୁଗା ପିନ୍ଧି ଯାଇ ପାରିବେ । ତେଣୁ ତାଙ୍କ କହିବା ଅନୁସାରେ ଲୁଗାପଟା ପିନ୍ଧି ବିଗ୍ରହଙ୍କୁ ଦେଖିବାକୁ ଗଲୁ । ଏହି ସମୟରେ ମୋର ସ୍ତ୍ରୀଙ୍କର ମାଇଗ୍ରିନ୍ ରୋଗ ପକାଶେ ମୁଣ୍ଡ ବ୍ୟଥା ହେଲା । ସେ ଖାଲି ଆଇସ୍‌କ୍ରିମ୍ ଟିକିଏ ଖାଇଲେ ଆଉ ସମୁଦ୍ର କୂଳରେ ଘଣ୍ଟାଏ ଦୁଇଘଣ୍ଟା ବସି ଗଲାପରେ ତାଙ୍କର ମୁଣ୍ଡ ବ୍ୟଥା ଛାଡିଗଲା । ତାପରେ ଆମେ ସବୁ ଜାଗା ଦେଖି ସାରିଲା ପରେ ସେହି ଗାଡିରେ ବସି ପୁଣି ମଦୁରାଇ ଫେରିଆସିଲୁ । କନ୍ୟାକୁମାରୀ ଯିବା ଆଗରୁ ଆମେ ଠିକ୍ କରିଥିଲୁ ମୋ ବଡ ଝିଅ ଭୁବନେଶ୍ୱର ଫେରି ଆସିବ । ସେହି ଅନୁସାରେ ସକାଳୁ ଆମେ ତାକୁ ମଦୁରାଇ ଷ୍ଟେସନ୍‌ରେ ଗାଡିରେ ବସାଇ ଦେଇ ଆସିଲୁ । ମୋ ବଡ ଝିଅ ଏବଂ ସା ଝିଅ ଆଉ ଜଣେ ଆଇ.ଏ.ପି.ଟି.ର ସଭ୍ୟ ଡକ୍ଟର ସିହ୍ନାଙ୍କ ସାଙ୍ଗରେ ଭୁବନେଶ୍ୱର ଆସିଲେ । ତାପର ଦିନ ସକାଳୁ ମୋ ସ୍ତ୍ରୀ ଏବଂ ମୁଁ ଆମ ଜିନିଷ ପତ୍ର ଧରି ମଦୁରାଇ ବସ୍ ଷ୍ଟାଣ୍ଡକୁ ଗଲୁ । ସେଠାରୁ କୋଏମ୍ବାଟୁର ଯାଉଥିବା ଗୋଟିଏ ଲକ୍‌ଜ୍ୟୁରୀ ବସ୍‌ରେ ବସି କୋଏମ୍ବାଟୁର ଯାତ୍ରା କଲୁ । ବିଶ୍ୱବିଦ୍ୟାଳୟରୁ କୋଏମ୍ବାଟୁର ବସ୍‌ଷ୍ଟାଣ୍ଡଟି ବହୁତ ଦୂର । ତେଣୁ ବସ୍ ଷ୍ଟାଣ୍ଡକୁ ଡକ୍ଟର ସେଲ୍‌ଭେରାଜନ୍ ଓ ଆଉ ଦୁଇଜଣ ଛାତ୍ର ଆସିଥିଲେ । ମୁଁ ଏବଂ ଶ୍ରୀମତୀ ଆଉ ଗୋଟିଏ ବସ୍‌ରେ ଛାତ୍ର ମାନଙ୍କ ସାଙ୍ଗରେ ବସି ବିଶ୍ୱବିଦ୍ୟାଳୟ ଅଭିମୁଖେ ଯାତ୍ରା କଲୁ ଏବଂ ଡକ୍ଟର ସେଲଭେରାଜନ ସ୍କୁଟରରେ ବିଶ୍ୱବିଦ୍ୟାଳୟ ଆସିଲେ ।

## ପ୍ଲାଜମା ପରୀକ୍ଷା ଏବଂ ଉପକରଣ ଉପରେ ବକ୍ତୃତା

ବିଶ୍ୱବିଦ୍ୟାଳୟରେ ପହଁଞ୍ଚିଲା ବେଳକୁ ପ୍ରାୟ ଦିନ ଦୁଇଟା ବାଜି ଯାଇଥିଲା । ବିଶ୍ୱବିଦ୍ୟାଳୟର ଅତିଥି ଭବନର ଗୋଟିଏ କୋଠରୀରେ ଆମ ଦୁଇ ଜଣଙ୍କ ପାଇଁ ରହିବା ବ୍ୟବସ୍ଥା ହୋଇଥିଲା । କୋଠରୀରେ ପହଁଞ୍ଚିଲା ପରେ କୋଠରୀକୁ ଦୁଇଟା ମିଲ୍ ପିଲା ଆଣିକରି ଦେଲେ । ଆମେ ଦୁଇ ଜଣ ମିଶି ଗୋଟିଏ ମିଲ୍ ମଧ୍ୟ ଖାଇ ପାରିଲୁ ନାହିଁ । ସେଠାରେ ଆମେ ଜାଣିଲୁ ଏମାନେ ବେଶୀ ପରିମାଣରେ ଭାତ ଖାଆନ୍ତି । ତାଙ୍କର ସେ ଖାଦ୍ୟ ଆମକୁ ରୁଚିକର ହେଲା ନାହିଁ । କିନ୍ତୁ ପିଲାଙ୍କର ଆତିଥ୍ୟରେ ଆମେ ଖୁସି ହୋଇ କୌଣସି ପ୍ରକାରେ ଅଳ୍ପ ଅଳ୍ପ ଖାଇଦେଲୁ । ସେଦିନ ଉପର ବେଳା ମୋର ଲେକ୍‌ଚର ଥିଲା । ଯେଉଁଭଳି ଭାବରେ ଲେକ୍‌ଚର ପୁନାରେ ଦେଇଥିଲି ସେଭଳି ଲେକ୍‌ଚର ମଧ୍ୟ ସେଠାରେ ଦେଲି । ବିଶେଷତ୍ୱ ହେଉଛି ଯେ ଏଠାରେ ତିନିଟା ଲେକ୍‌ଚର ଦେବାକୁ ପଡିବାରୁ ସବୁ ବିଷୟ ଗୁଡିକ ଅଧିକ ପ୍ରାଞ୍ଜଳ ଭାବେ ଦର୍ଶକ ମାନଙ୍କୁ ବୁଝାଇବାକୁ ପଡିଲା । ଏଠାରେ ଦର୍ଶକ ମାନେ ମଧ୍ୟ ଉପକରଣ ଗୁଡିକର ତିଆରି ଦେଖି ବହୁତ ଖୁସି ହେଲେ । ତାପର ଦିନ ଦୁଇଟି ଲେକ୍‌ଚର ଦେଇ ରାତିରେ କୋଚିନ୍ ଯିବା ପାଇଁ ଟ୍ରେନ୍‌ରେ ଦୁଇଟା ଟିକେଟ୍ କରିବାକୁ ବହୁତ ଆଗରୁ ଚିଠିରେ ଲେଖିଥିଲି । ସେମାନେ କୋଚିନ୍ ଯିବାଲାଗି ଟିକେଟ୍ କରିଦେଇ ଥିଲେ । ସେଦିନ ରାତି ପ୍ରାୟ ୯/୧୦ଟା ବେଳକୁ କେତେକ ଛାତ୍ରଙ୍କ ସାଙ୍ଗରେ ଯାଇ ଆମେ କୋଏମ୍ବାଟୁର ଷ୍ଟେସନ୍‌ରେ ଟ୍ରେନ୍‌ରେ ବସି କୋଚିନ୍ ଅଭିମୁଖେ ଯାତ୍ରାକଲୁ । ପ୍ରାୟ ସକାଳ ୭ଟା ବେଳକୁ ଗାଡି ଯାଇ ଏର୍ଣ୍ଣାକୁଲମ୍‌ରେ ପହଁଞ୍ଚିଲା ।

ଗାଡିର ସହଯାତ୍ରୀ ମାନେ ମୋତେ କହିଲେ ଏଠାରେ ଓହ୍ଲାଇ ପଡନ୍ତୁ, ଏଠାରୁ କୋଚିନ୍ ବିଶ୍ୱବିଦ୍ୟାଳୟ ଯିବାକୁ ସୁବିଧା ଜନକ । ତେଣୁ ଆମେ ସେଠାରେ ଓହ୍ଲାଇ ପଡି ଷ୍ଟେସନ୍ ବାହାରେ ଗୋଟିଏ ଅଟୋରିକ୍ସାରେ ବସିଲୁ । ଅଟୋରିକ୍ସା ଷ୍ଟାଣ୍ଡ ପାରି ହେବା ସମୟରେ ଦୁଇଜଣ ପୁଲିସ୍ ଆମକୁ ପଚାରିଲେ କେଉଁଠାକୁ ଯିବେ ? ଆମେ କହିଲୁ କୋଚିନ୍ ବିଶ୍ୱବିଦ୍ୟାଳୟ ଯିବୁ । ତାପରେ ଅଟୋରିକ୍ସା ଡ୍ରାଇଭରର ଲାଇସେନ୍ସ ଓ ଅଟୋରିକ୍ସା ନମ୍ବର ଲେଖି ରଖି ଛାଡିଦେଲେ । ଏପରି କାହିଁକି ଲେଖିଲେ ମୁଁ ଜାଣି ପାରିଲି ନାହିଁ । ପୁଲିସ୍ ଇନ୍‌ସପେକ୍ଟରଙ୍କୁ ମୁଁ ଇଂରାଜୀରେ ପଚାରିବାରୁ ସେ ମଧ୍ୟ ଇଂରାଜୀରେ ଉତ୍ତର ଦେଲେ । ସମୟ ସମୟରେ ରିକ୍ସା ଡ୍ରାଇଭର ମାନେ ଅନ୍ୟ ଆଡେ ନେଇ ନିର୍ଦ୍ଦିଷ୍ଟ ଜାଗାରେ ପହଁଞ୍ଚନ୍ତି । ଯାହା ଦ୍ୱାରା କି ତାଙ୍କର ମିଟର ବେଶୀ ଉଠେ । ଯାତ୍ରୀମାନେ ବହୁତ ଖର୍ଚ୍ଚାନ୍ତ ହୁଅନ୍ତି କିମ୍ବା ବେଳେ ବେଳେ ନିଛାଟିଆ ଜାଗାକୁ ନେଇ ଯାତ୍ରୀ ମାନଙ୍କର ଜିନିଷ ପତ୍ର ଲୁଟି ନେଇ ତାଙ୍କୁ ସେଇ ନିଛାଟିଆ ଜାଗାରେ ଛାଡିଦେଇ ଚାଲି ଯାଆନ୍ତି । ଏହିଭଳି ଲେଖି ରଖିବା ଦ୍ୱାରା କୌଣସି ଯାତ୍ରୀ ପୁଲିସ୍ ଷ୍ଟେସନ୍‌ରେ ରିପୋର୍ଟ କଲେ ଆମେ ସହଜରେ ସେହି ରିକ୍ସା ବାଲାକୁ ଧରି ପାରିବୁ । ଏହି ବ୍ୟବସ୍ଥାଟି ମୋତେ ବହୁତ ଭଲ ଲାଗିଲା ।

## ଭାରତର ଉପକରଣ ସୋସାଇଟ୍‌ର ବାର୍ଷିକ ଉତ୍ସବରେ ଯୋଗଦାନ

ଆମେ କୋଚିନି ବିଶ୍ୱବିଦ୍ୟାଳୟରେ ଯାଇ ପହଁଞ୍ଚିଲୁ । ଆମର ରହିବା ବ୍ୟବସ୍ଥା ମଧ୍ୟ ହୋଟେଲରେ ହୋଇଥାଏ । ହୋଟେଲଟିର ଦିନକୁ ଭଡା ୯୦ ଟଙ୍କା । ହୋଟେଲରେ ଜିନିଷ ପତ୍ର ରଖି ଆମେ ବସ୍‌ରେ ବିଶ୍ୱବିଦ୍ୟାଳୟକୁ ଗଲୁ । ଉଦ୍‌ଘାଟନ ସଭା ପରେ ସବୁ ଅଧ୍ୟାପକଙ୍କର ଲେକ୍‌ଚର ଥାଏ ଅନ୍ୟ କେତେ ଜଣଙ୍କର ପୋଷ୍ଟର ପ୍ରେଜେନ୍‌ଟେସନ୍ ଥାଏ । ପୋଷ୍ଟର ପ୍ରେଜେନ୍‌ଟେସନ୍ କରୁଥିବା ବ୍ୟକ୍ତିଙ୍କୁ ସବୁବେଳେ ପୋଷ୍ଟର ପାଖରେ ରହିବାକୁ ପଡେ । କାରଣ ଯେଉଁମାନେ କୌଣସି ପ୍ରଶ୍ନ ପଚାରନ୍ତି ସେମାନେ ତାର ଉତ୍ତର ଦିଅନ୍ତି । ଯେଉଁମାନେ ମଞ୍ଚରୁ ଭାଷଣ ଦେଉଥାଆନ୍ତି ଓଭର ହେଡ ପ୍ରୋଜେକ୍ଟର ସାହାଯ୍ୟରେ ସେମାନଙ୍କୁ ସବୁ ବୁଝାଇବାକୁ ପଡିଥାଏ । ସେମିନାର ମଧ୍ୟରେ ପ୍ରତିନିଧିଙ୍କ ପାଇଁ ଉପର ବେଳା କୌଣସି ମିଟିଙ୍ଗ ନ କରି ବନ୍ଦର ଦେଖିବା ବ୍ୟବସ୍ଥା ରଖିଥିଲେ ।

## କୋଚିନ ବନ୍ଦର ପରିଦର୍ଶନ

ଆମେ ଗୋଟିଏ ବୋଟରେ ଯାଇ କୋଚିନ୍ ବନ୍ଦରରେ ପହଁଞ୍ଚିଲୁ । ଯେଉଁଠାରେ ଭାସ୍କୋଡାଗାମା ଭାରତ ଆବିଷ୍କାର କରିଥିଲେ । ସର୍ବ ପ୍ରଥମେ ଭାରତରେ ଯେଉଁ ଚର୍ଚ୍ଚ ନିର୍ମାଣ କରାଯାଇ ଥିଲା, ତାହା ଆମେ ଦେଖିବାକୁ ଗଲୁ । ତା ଭିତରେ ବହୁତ ପୁରୁଣା କାଳର ଦର୍ଶନୀୟ ବସ୍ତୁ ସବୁ ସଂରକ୍ଷିତ କରି ରଖାଯାଇ ଥିଲା । କୋଚିନ୍‌ର ବିଭିନ୍ନ ଜାଗା ବୁଲି ସାରିଲା ପରେ ସମୁଦ୍ର କୂଳରେ ଗୋଟିଏ ଜାଗାରେ ଜଳଖିଆର ବ୍ୟବସ୍ଥା କରାଯାଇ ଥିଲା । କୋଚିନ୍ ସମୁଦ୍ର କୂଳରେ ମାଛ ଧରିବାର ପ୍ରଣାଳୀ ଅଲଗା ପ୍ରକାରର । ଏହି ପ୍ରଣାଳୀ ଅନୁସାରେ ଗୋଟିଏ ବଡ କାଠକୁ ଟେକା ହୋଇ ରଖା ଯାଇଥାଏ । କାଠ ଆଗରେ ଗୋଟିଏ ବଡ ଜାଲ ଖଞ୍ଜା ଯାଇଥାଏ ।

କାଠକୁ ଚଳକୁ ଖସାଇ ଦେଲେ ଜାଲଟି ପାଣିତଳେ ଲାଗିଯାଏ । ଏହି ଜାଲ ଉପରେ ଥିବା ପାଣିରେ ମାଛ ମାନଙ୍କୁ ଆକୃଷ୍ଟ କରିବା ପାଇଁ କିଛି ଖାଦ୍ୟ ପକାଯାଏ । କିଛି ସମୟ ପରେ ମାଛମାନେ ଖାଦ୍ୟ ଖାଇବାକୁ ଆସିଗଲା ପରେ ସଙ୍ଗେ ସଙ୍ଗେ ସେ କାଠଟି ଉପରକୁ ଟେକି ଦିଆଯାଏ । ଯେଉଁ ମାଛମାନେ ତା ଉପରେ ଖାଦ୍ୟ ଖାଉ ଥାଆନ୍ତି, ସେମାନେ ଧରା ପଡି ଯାଆନ୍ତି । ଏଭଳି ମାଛମରା ପ୍ରଣାଳୀ ମୁଁ କେବେ ପୂର୍ବରୁ କେଉଁଠାରେ ଦେଖିନାହିଁ । ଏହି ଇନ୍‌ଷ୍ଟ୍ରୁମେଣ୍ଟେସନ୍ ସେମିନାରରେ ଯୋଗ ଦେବା ପାଇଁ ଡକ୍ଟର ମହିପାଲଙ୍କ ଉପଦେଷ୍ଟା ଡକ୍ଟର ବି.କି.ଜ୍ୟୋତି ମଧ୍ୟ ଆସିଥାଆନ୍ତି । ନଭେମ୍ବର ୩୦ ତାରିଖ ଦିନ ଉପର ବେଳା କୌଣସି ସେମିନାରର କାର୍ଯ୍ୟକ୍ରମ ନଥିଲା । ଆମର ଭୁବନେଶ୍ୱର ଗାଡିଟି ଏର୍ଣ୍ଣାକୁଲମ୍‌ରୁ ପ୍ରାୟ ପାଞ୍ଚଟା ବେଳେ ଭୁବନେଶ୍ୱର ଅଭିମୁଖେ ଯାତ୍ରାକରେ । ଆମର ସେହି ଗାଡିରେ ଟିକେଟ୍ ହୋଇଥିଲା । ଆମେ ପ୍ରାୟ ଦୁଇଟା ବେଳେ ହୋଟେଲ୍‌ରୁ ବାହାରିଲୁ । ଜାଣିଲୁ ଏର୍ଣ୍ଣାକୁଲମ୍ ଷ୍ଟେସନ୍‌କୁ କୌଣସି ଅଟୋରିକ୍ସା ସେଦିନ ଯାଉ ନ ଥାଆନ୍ତି । ପଚାରି ବୁଝିଲୁ କମ୍ୟୁନିଷ୍ଟ ମାନଙ୍କର କୌଣସି ପ୍ରସେସନ୍ ଯାଉଛି । ଯାହାକୁ ଅତିକ୍ରମ କରି କୋଣସି ଅଟୋରିକ୍ସା ଯାଇ ପାରିବ ନାହିଁ । ଆମେ ଦୁଇ ଜଣ ବଡ ଚିନ୍ତାରେ ପଡିଲୁ । ହୋଟେଲ୍‌ର ଜଣେ କର୍ମଚାରୀ ଆମକୁ କହିଲା, ମୁଁ ବ୍ୟବସ୍ଥା କରିଦେଉଛି । ସେ ଗୋଟିଏ ଅଟୋରିକ୍ସା ମାଲିକଙ୍କୁ କହିବାରୁ ସେ କହିଲା ମୁଁ ଦୁଇଗୁଣ ଭଡା ନେବି । ଆମେ ବାଧ୍ୟ ହୋଇ ରାଜି ହୋଇଗଲୁ । ସେ ଅଟୋରିକ୍ସା ସହରର କେଉଁ କେଉଁ ଗଳି କନ୍ଦିରେ ନେଇ ଷ୍ଟେସନ୍‌ରେ ଘଣ୍ଟାଏ ପରେ ପହଁଞ୍ଚାଇ ଦେଲା । ଆମେ ପ୍ରଧାନ ରାସ୍ତାରେ ଆସିଥିଲେ ଆମକୁ ୧୫/୨୦ ମିନିଟ୍ ଲାଗିଥାଆନ୍ତା । ଷ୍ଟେସନ୍‌ରେ ପହଁଞ୍ଚିଲା ପରେ ଗାଡି ପ୍ରାୟ ଠିକ୍ ସମୟରେ ଛାଡିଲା । ଗାଡିର ନାମ ହେଉଛି 'କୋଚିନ୍ ଗୌହାଟୀ ଏକ୍ସପ୍ରେସ୍ ।' ଆମେ ଡିସେମ୍ବର ଦୁଇ ତାରିଖରେ ଭୁବନେଶ୍ୱରରେ ଆସି ପହଁଞ୍ଚିଲୁ ।

## ଷଷ୍ଠ ନ୍ୟାସନାଲ ସିମ୍ପୋଜିୟମ୍ ଅନ୍ ସାଇନ୍ସ ଆଣ୍ଡ ଟେକ୍‌ନୋଲୋଜି ଅଫ ପ୍ଲାଜମା, ଇନ୍ଦୋର ବିଶ୍ୱବିଦ୍ୟାଳୟ

ଭୁବନେଶ୍ୱରରେ ପହଁଞ୍ଚିଲା ପରେ ମୁଁ ଜାଣିବାକୁ ପାଇଲି ମୋତେ ଷଷ୍ଠ ନ୍ୟାସନାଲ ସିମ୍ପୋଜିୟମ୍ ଅନ୍ ସାଇନ୍ସ ଆଣ୍ଡ ଟେକ୍‌ନୋଲୋଜି ଅଫ ପ୍ଲାଜମା, ଦେବୀ ଅହଲ୍ୟା ବାଇ ବିଶ୍ୱବିଦ୍ୟାଳୟ ଇନ୍ଦୋରରେ ଡିସେମ୍ବର ୧୭ ଠାରୁ ୧୯ ତାରିଖ ପର୍ଯ୍ୟନ୍ତ ହେବ । ଯିବାପାଇଁ ଡକ୍ଟର ମାହେଶ୍ୱରୀ ନିମନ୍ତ୍ରଣ କରିଛନ୍ତି । ତେଣୁ ଯିବା ପାଇଁ ସଂରକ୍ଷଣ ଟିକେଟ୍ କଲି । ଫେରିବା ଦିନ ପାଇଁ ଟିକେଟ୍ କରି ନ ଥାଏ । ଡକ୍ଟର ମାହେଶ୍ୱରୀଙ୍କୁ ମୁଁ ଆଗରୁ ଜାଣିଥାଏ । ସେ ଓ ମୁଁ ଥରେ ଅହମଦାବାଦ ଠାରେ ଗୋଟିଏ ହୋଟେଲ୍‌ରେ ଗୋଟିଏ କୋଠରୀରେ ଥିଲୁ । ୧୫ ତାରିଖଦିନ ସଂଧ୍ୟା ବେଳେ ଉତ୍କଳ ଏକ୍ସପ୍ରେସ୍‌ରେ ବସି ବିନା ପର୍ଯ୍ୟନ୍ତ ଗଲି । ମୋ ସାଙ୍ଗରେ ଶ୍ରୀ ଅଭିମନ୍ୟୁ ମିଶ୍ର ଓ ଶ୍ରୀ ଅକାଶ ସାହୁ ମଧ୍ୟ ଯାଇଥିଲେ । ସେ ଦୁଇ ଜଣ ଭୋପାଳ ପର୍ଯ୍ୟନ୍ତ ଟିକେଟ୍ କରିଥିଲେ । କିନ୍ତୁ ମୁଁ ଇନ୍ଦୋର ପର୍ଯ୍ୟନ୍ତ ଟିକେଟ୍ କରିଥିଲି । ତେଣୁ ସେମାନେ ଭୋପାଳରେ ଓହ୍ଲାଇ ଟିକେଟ୍‌ଟିକୁ ଇନ୍ଦୋର ପର୍ଯ୍ୟନ୍ତ ବଢାଇ ଦେଲେ । ଆମେ ତିନି ଜଣଯାକ

ସାଙ୍ଗ ହୋଇ ଇନ୍ଦୋର ପର୍ଯ୍ୟନ୍ତ ଗଲୁ । ଇନ୍ଦୋରରେ ଦିନ ଗୋଟାଏ ବେଳେ ପହଁଞ୍ଚିଲୁ । ସ୍ୱେଚ୍ଛାସେବକ ମାନେ ଆମକୁ ପାଛୋଟି ନେଇ ଗୋଟିଏ ବସ୍‌ରେ ବସାଇ ଦେଲେ । ସେ ବସ୍‌ରେ ଅନ୍ୟ ଯାତ୍ରୀମାନେ ସେହି କନ୍‌ଫରେନ୍‌ସରେ ଯୋଗ ଦେବା ପାଇଁ ଯାଉଥାଆନ୍ତି । ଇନ୍ଦୋର ବିଶ୍ୱବିଦ୍ୟାଳୟରେ ଡକ୍ଟର ଗଣେଶ୍ୱର ମିଶ୍ର ନାମକ ଜଣେ ଓଡ଼ିଆ ଫିଜିକ୍ସ ଡିପାର୍ଟମେଣ୍ଟରେ ଅଧ୍ୟାପକ ଭାବରେ କାମ କରୁଥାଆନ୍ତି । ସେ ରେଭେନ୍ସା କଲେଜରୁ ଫିଜିକ୍ସରେ ଏମ୍.ଏସ୍‌ସି ପାସ୍ କରି ଦିଲ୍ଲୀ ଆଇ.ଆଇ.ଟି.ରୁ ପି.ଏଚ୍.ଡି କରି ଅଧ୍ୟାପକ ଭାବରେ ଯୋଗ ଦେଇ ଥାଆନ୍ତି । ସେହି ବିଶ୍ୱବିଦ୍ୟାଳୟର ପ୍ରଫେସର ଡକ୍ଟର କେ.ସି ମାହେଶ୍ୱରୀ ମୋ ସହିତ ଆଗରୁ ପରିଚିତ ହୋଇଥିଲେ । ଯେଉଁ ବର୍ଷ ମୋର ପରିଯୋଜନା ଡି.ଏସ୍.ଟି ଦ୍ୱାରା ମଞ୍ଜୁର ହେଲା, ତାଙ୍କର ମଧ୍ୟ ଗୋଟିଏ ପରିଯୋଜନା ସେହି ବର୍ଷ ମଞ୍ଜୁର ହୋଇଥିଲା । ମୁଁ ଯେଉଁ ଏକ୍ସପେରିମେଣ୍ଟ ଅନ୍ ପ୍ଲାଜମା ଫିଜିକ୍ସ ବହିଟି ଛପାଇ ଥିଲି ସେଠାରେ କେତେଜଣ ପ୍ରଫେସରଙ୍କୁ ତାହା ଉପହାର ଦେଲି । ସିମ୍ପୋଜିୟମ୍ ସରିଲା ପରେ ଆମେ ତିନି ଜଣ ଇନ୍ଦୋରରୁ ବିନା ଦେଇ ଉତ୍କଳ ଏକ୍ସପ୍ରେସରେ ଆସିବା ପାଇଁ ଟିକେଟ୍ କରିଥିଲୁ । କିନ୍ତୁ ବିନାରେ ଓହ୍ଲାଇ ଆମେ ଉତ୍କଳ ଏକ୍ସପ୍ରେସରେ ସଂରକ୍ଷଣ ଥାଇ ସୁଦ୍ଧା ଆମ ସଂରକ୍ଷଣ ସ୍ଲିପରରେ ବସି ପାରିଲୁନି । ବିନାଠାରୁ କେତେ ବାଟ ଆସିଲା ପରେ ସାଗର ଷ୍ଟେସନରେ୍ କଣ୍ଡକ୍ଟର ଆମକୁ ନେଇ ବିଭିନ୍ନ ସ୍ଥାନରେ ଶୋଇବାକୁ ସ୍ଥାନ ଦେଲେ । ଆମେ ଟିକିଏ ଶାନ୍ତିରେ ବସିଲୁ । ତାପର ଦିନ ସକାଳେ ଆସି ଭୁବନେଶ୍ୱରରେ ଓହ୍ଲାଇଲୁ ।

ତାର କିଛି ଦିନ ପରେ ୧୯୯୨ ମସିହା ଫେବୃଆରୀ ଦ୍ୱିତୀୟ ସପ୍ତାହରେ ମୁଁ ପୁଣି ଡକ୍ଟର ଚିତ୍ତଲ ପୁଡିଙ୍କ ଠାରୁ ଗୋଟିଏ ଚିଠି ପାଇଲି । ସେଥିରେ ସେ ଲେଖିଥିଲେ, ପ୍ଲାଜମା ଫିଜିକ୍ସ ଏକ୍ସପେରିମେଣ୍ଟ ଡେମୋନ୍‌ଷ୍ଟ୍ରେସନ୍ ପାଇଁ ମାର୍ଚ୍ଚ ୨୭ ତାରିଖରୁ ଅପ୍ରେଲ୍ ୮ ତାରିଖ ପର୍ଯ୍ୟନ୍ତ ବ୍ୟବସ୍ଥା କରା ଯାଇଛି । ତା ପୂର୍ବରୁ ଆମକୁ ନିମ୍ନଲିଖିତ ବିଷୟ ଜଣାନ୍ତୁ: ଆପଣ ଯେଉଁ ଏକ୍ସପେରିମେଣ୍ଟ ଦେଖାଇବେ ସେଥିପାଇଁ କେଉଁ ଉପକରଣ ସବୁ ଏଠାକୁ ଆଣିବେ । ଉପକରଣ ନେବା ଆଣିବା ପାଇଁ କେତେ ଖର୍ଚ୍ଚ ପଡିବ ତାର ଗୋଟିଏ ଆନୁମାନିକ ହିସାବ ଜଣାଇବେ । ମୁଁ ଚିଠିର ଉତ୍ତରରେ ଲେଖିଲି ମୁଁ ପନ୍ଦରଟି ଏକ୍ସପେରିମେଣ୍ଟ ଦେଖାଇବି । ସବୁ ଏକ୍ସପେରିମେଣ୍ଟ ଗୁଡିକ ଠିକ୍ ଭାବରେ କାମ କରୁଛି, କିନ୍ତୁ ଜଣେ ଲୋକ ପନ୍ଦରଟି ଏକ୍ସପେରିମେଣ୍ଟ ଦର୍ଶକ ମାନଙ୍କୁ ଦେଖାଇ ବୁଝାଇ ପାରିବ ନାହିଁ । ତେଣୁ ମୋ ସହିତ ମୋର ଦୁଇ ଜଣ ଛାତ୍ର ଶ୍ରୀ ଅଭିମନ୍ୟୁ ମିଶ୍ର ଓ ଶ୍ରୀ ଆକାଶ ସାହୁଙ୍କୁ ଯିବା ପାଇଁ ଅନୁରୋଧ କରୁଛି । ଆପଣ ଗୋଟିଏ ସାର୍ଟିଫିକେଟ୍ ଦିଅନ୍ତୁ ଯେ ଏସବୁ ଉପକରଣ ଗୁଡିକ ପିଲାଙ୍କୁ ଓ ଅଧ୍ୟାପକ ମାନଙ୍କୁ ଦେଖାଇବାକୁ ଆଣୁଛି ଏବଂ ଏହି ଉପକରଣ ଗୁଡିକ ପୁଣି ଭୁବନେଶ୍ୱର ଫେରାଇ ନେଇଯିବି । ଏହି ଉପକରଣ ଗୁଡିକ କୌଣସି ଲାଭ ଜନକ ବ୍ୟବସାୟରେ ବ୍ୟବହାର କରାଯିବ ନାହିଁ । ଚିଠି ଲେଖିବାର ଅଳ୍ପ ଦିନ ପରେ ମୁଁ ତାଙ୍କ ଠାରୁ ମୋ କହିବା ମୁତାବକ ଉତ୍ତର ପାଇଲି ।

ତେଣୁ ମୁଁ ମାର୍ଚ୍ଚ ୨୬ ତାରିଖ ଦିନ ରାତିରେ ଗୋଟିଏ ଗାଡି ଭଡା କରି ଭୁବନେଶ୍ୱରରୁ ବାହାରିବା ପାଇଁ ଠିକ୍ କଲି । ସେହି ଅନୁସାରେ ଶ୍ରୀ ଆକାଶ ସାହୁ ଓ ଶ୍ରୀ ଅଭିମନ୍ୟୁ ମିଶ୍ରଙ୍କୁ ଜଣାଇ ଦେଲି । ବାହାରି ବାର ତିନି ଚାରି ଦିନ ପୂର୍ବରୁ ଡକ୍ଟର ଚିତ୍ତଲ ପୁତିଙ୍କ ଠାରୁ ଫୋନ୍ ଦ୍ୱାରା ଖବର ପାଇଲି, ଏକ୍ସପେରିମେଣ୍ଟ ଗୁଡିକ ଦେଖାଇବା ଓ ବୁଝାଇବାର ସ୍ଥାନ ପରିବର୍ତ୍ତନ ହୋଇ ଯାଇଛି । ତେଣୁ ଆପଣ ୨୭ ତାରିଖ ଦିନ ସକାଳେ ଯାଦବ୍‌ପୁର ପରିବର୍ତ୍ତେ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରୋଡରେ ଥିବା ବୋଷ ଇନ୍‌ଷ୍ଟିଚ୍ୟୁଟ୍‌ରେ ଆସି ପହଁଞ୍ଚିବେ । ସେଠାରେ ପହଁଞ୍ଚିଲା ପରେ ଅନ୍ୟ ସବୁ ବିଷୟ ଜଣାଇ ଦିଆଯିବ ।

୨୬ ତାରିଖ ଦିନ ରାତି ନଅଟା ବେଳକୁ ଗୋଟିଏ ଗାଡିରେ ସମସ୍ତ ଉପକରଣ ଲଦି ଆମେ ବାଣୀବିହାର ଠାରୁ ବାହାରିଲୁ ଏବଂ ରାତି ବାରଟା କିମ୍ବା ଗୋଟାଏ ବେଳେ ଓଡିଶା ସୀମାରେ ଥିବା ଜାମ୍‌ଶେଳା ଚେକ୍ସ ଫାଟକ ପାଖରେ ପହଁଞ୍ଚିଲୁ । ପୁଲିସ୍‌ର ଅନୁରୋଧ କ୍ରମେ ଆମେ ସେଠାରେ ଘଣ୍ଟାଏ ଖଣ୍ଡେ ଅପେକ୍ଷା କଲୁ ଏବଂ ଢାବାରେ କିଛି ଖାଇଲୁ । ୨୦/୨୫ ଖଣ୍ଡ ଗାଡି ଜାମ୍‌ଶେଳା ପାଖରେ ପହଁଞ୍ଚିଲା ପରେ ପୁଲିସ୍ ଆମକୁ ଯିବା ପାଇଁ ଅନୁମତି ଦେଲା । ଆମେ ପଚାରି ବୁଝିଲୁ ଜାମଶେଳା ଗେଟ୍ ପରେ ରାସ୍ତା ନିଛାଟିଆ ଥିବାରୁ ଦୁର୍ବୃତ୍ତ ମାନଙ୍କ ଦ୍ୱାରା ଜିନିଷପତ୍ର ଲୁଟି ହୋଇଯାଏ । ତେଣୁ ୨୦/୨୫ ଖଣ୍ଡ ଗାଡି ଏକା ସାଙ୍ଗରେ ଗୋଟିଏ ପରେ ଗୋଟିଏ ଯାଆନ୍ତି । ଭୋର ଚାରିଟା ବେଳେ କଲିକତା ନିକଟରେ ପହଞ୍ଚିଲୁ । ସେଠାରେ ଆମକୁ ପ୍ରାୟ ଘଣ୍ଟାଏ ଅପେକ୍ଷା କରିବାକୁ ପଡିଲା । ଆମେ ଫାଟକ ପାଖର ବ୍ୟକ୍ତିଙ୍କୁ ଅନୁରୋଧ କରିବାରୁ ଏବଂ ଚିତ୍ତଲ ପୁତିଙ୍କ ଚିଠି ଦେଖାଇବାରୁ ସେ ଆମକୁ ଭିତରକୁ ଛାଡିଦେଲା । ଆମେ ଦିନ ସାତଟା ବେଳେ ବୋଷ ଇନ୍‌ଷ୍ଟିଚ୍ୟୁଟ୍‌ରେ ପହଞ୍ଚିଲୁ । ସେଠାରେ ପହଞ୍ଚି ଆମ ଜିନିଷ ପତ୍ର ଗାଡିରୁ ଓହ୍ଲାଇ ଗୋଟିଏ ଘରେ ରଖି ଚାବି ପକାଇ ଦେଲୁ । ପ୍ରାୟ ଦଶ କିଲୋମିଟର ଦୂରରେ ଥିବା ବୋଷ ଇନ୍‌ଷ୍ଟିଚ୍ୟୁଟ୍‌ର ଗୋଟିଏ ଅତିଥି ଭବନରେ ଆମର ରହିବାର ବ୍ୟବସ୍ଥା ହୋଇଥାଏ । ବୋଷ ଇନ୍‌ଷ୍ଟିଚ୍ୟୁଟ୍‌ର ଗୋଟିଏ ଗାଡି ଆମକୁ ନେଇ ସେଠାରେ ପହଞ୍ଚାଇ ଦେଲା । ଆମର ଖାଇବା ପିଇବା ଓ ରହିବା ବ୍ୟବସ୍ଥା ବୋଷ ଇନ୍‌ଷ୍ଟିଚ୍ୟୁଟ୍ ବହନ କରିଥିଲା । କେବଳ ଯିବା ଆସିବା ବସ୍ ଭଡା ଇଣ୍ଡିଆନ୍ ଫିଜିକାଲ୍ ସୋସାଇଟି ବହନ କରିବାର ବ୍ୟବସ୍ଥା ହୋଇଥିଲା । ସେହିଦିନ ଉପର ବେଳା ଆମେ ବୋଷ ଇନ୍‌ଷ୍ଟିଚ୍ୟୁଟ୍‌କୁ ଗଲୁ । ସେଠାକୁ ଯାଇ ଉପକରଣ ସବୁ ସଜାଡିଲୁ, ଯେପରି ସେଗୁଡିକ ଦର୍ଶକମାନଙ୍କୁ ଦେଖାଇ ହେବ । ଏହି ସବୁ ଉପକରଣ ଗୁଡିକ ଠିକ୍ ଭାବରେ ସଜାଡିବାକୁ ଆମକୁ ପ୍ରାୟ ଦୁଇ ଦିନ ଅକ୍ଳାନ୍ତ ପରିଶ୍ରମ କରିବାକୁ ପଡିଲା । ପ୍ଲାଜମାର ସବୁ ପରୀକ୍ଷା ପାଇଁ ଗୋଟିଏ ଗୋଟିଏ ଭାକ୍ୟୁମ୍ ପମ୍ପ ଦରକାର ହୁଏ । କିନ୍ତୁ ମୁଁ ମୋଟେ ଚାରୋଟି ପମ୍ପ ନେଇଥିଲି । ସେମାନଙ୍କୁ ଯୋଡିଏ ଭାକ୍ୟୁମ୍ ପମ୍ପ ଦେବା ପାଇଁ କହିଥିଲି । ସେମାନେ ତାହା ମଧ୍ୟ ଯୋଗାଇ ପାରିଲେ ନାହିଁ । ତେଣୁ ବାଧ୍ୟ ହୋଇ ଗୋଟିଏ ପମ୍ପ ସାହାଯ୍ୟରେ ଦୁଇଟି ଏକ୍ସପେରିମେଣ୍ଟ ଦେଖାଇବା ପାଇଁ ବନ୍ଦୋବସ୍ତ କରିଦେଲି । ସମୁଦାୟ ବାରଟି ଏକ୍ସପେରିମେଣ୍ଟରୁ ଆମେ ତିନି ଜଣ ଚାରୋଟି ଲେଖାଏଁ ଏକ୍ସପେରିମେଣ୍ଟ ବାଣ୍ଟି ନେଲୁ ।

ଯେଉଁ ଦର୍ଶକମାନେ ଆସିଲେ ତାଙ୍କୁ ଏକ୍ସପେରିମେଣ୍ଟ ଦେଖାଇ ତାର ମୂଳ ତତ୍ତ୍ୱ ବୁଝାଇ ଦେଲୁ। ପ୍ରଥମ ଦିନ ବହୁ କମ୍ ସଂଖ୍ୟାରେ ଦର୍ଶକ ଆସିଥିଲେ । କିନ୍ତୁ ଆସ୍ତେ ଆସ୍ତେ ଦର୍ଶକମାନଙ୍କ ସଂଖ୍ୟା ବଢ଼ିବାକୁ ଲାଗିଲା । ଶେଷ ଦିନ ବୋଷ ଇନ୍‌ଷ୍ଟିଚ୍ୟୁଟ୍‌ର ପ୍ଲାଟିନମ୍ ଜୁବୁଲି ଉତ୍ସବର ଆୟୋଜନ କରାଯାଇ ଥିଲା । ବୋଷ୍ ଇନ୍‌ଷ୍ଟିଚ୍ୟୁଟ୍‌ର ଡିରେକ୍ଟର ସଭାପତିତ୍ୱ କରିଥିଲେ । ସେଥିରେ ବକ୍ତାମାନେ ଆମ ପରୀକ୍ଷା ଉପକରଣ ଗୁଡ଼ିକ ଉପରେ ମତ ଦେଇ କହିଲେ ବଜାରରେ ମିଳୁଥିବା ଦୈନିକ ବ୍ୟବହାର କରାଯାଉଥିବା ଜିନିଷ ସବୁକୁ ଉପକରଣ ଭାବେ ରୂପାନ୍ତରିତ କରି ବ୍ୟବହାର କରାଯାଇଥିଲା । କେତେକ ବକ୍ତା ଏହି ପ୍ରକାର ପରୀକ୍ଷା ସବୁ ସାର୍ ଜଗଦୀଶଚନ୍ଦ୍ର ବୋଷଙ୍କ ପରୀକ୍ଷା ସହ ତୁଳନୀୟ ବୋଲି କହିଥିଲେ । ମୋତେ ଏବଂ ମୋର ସାହାଯ୍ୟକାରୀ ଦୁଇଜଣଙ୍କୁ ଧନ୍ୟବାଦ ଦେଇଥିଲେ ।

ଉତ୍ସବ ପରେ ପରେ ଆମେ ସବୁ ଭୁବନେଶ୍ୱର ଅଭିମୁଖେ ବାହାରିବା ପାଇଁ ଗାଡ଼ିରେ ଜିନିଷ ପତ୍ର ରଖିଲୁ । ଆମ ବାହାରିବା ଜାଗାରୁ ଜିନିଷ ପତ୍ର ଧରି ଆମେ ଭୁବନେଶ୍ୱର ଅଭିମୁଖେ ଯାତ୍ରା କଲୁ । କଲିକତା ସହର ଛାଡ଼ିବା ପରେ ଗୋଟିଏ ଅଘଟଣ ଘଟିଲା । ଆମ ଗାଡ଼ିର ଡ୍ରାଇଭର ଯେଉଁ ରାସ୍ତାରେ ଗାଡ଼ି ନ ଚଳାଇବା କଥା ସେହି ରାସ୍ତାରେ ଗାଡ଼ି ଚଳାଇ ଦେଲା । ତେଣୁ ପୋଲିସ୍ କେତେ ଜଣ ଆମ ଗାଡ଼ିକୁ ଅଟକାଇବାକୁ କହିଲେ । ମୁଁ ତାଙ୍କୁ ବହୁତ ଅନୁରୋଧ କରିବାରୁ ଓ ଚିଠିପତ୍ର ଗୁଡ଼ିକ ଲେଖା ଦେଖାଇବାରୁ ତାଙ୍କର ହୃଦୟ ପରିବର୍ତ୍ତନ ହେଲା । ସେ କହିଲେ, ଆପଣଙ୍କର ଘର ଠିକଣା ଓ ନାମ ଇତ୍ୟାଦି ଲେଖି ଦିଅନ୍ତୁ । ଆମ ଅଫିସର୍ ଯଦି ଛାଡ଼ିଦେବେ ତାହା ହେଲେ ଭଲ କଥା । ନ ହେଲେ ଆପଣଙ୍କ ନାମରେ କୋର୍ଟରେ କେସ୍ ହେବ । ଆମେ ଭୁବନେଶ୍ୱରରେ ପହଁଚି ବିଶ୍ୱବିଦ୍ୟାଳୟର ଫିଜିକ୍ସ ଡିପାର୍ଟମେଣ୍ଟରେ ମୋତେ ଦିଆଯାଇଥିବା କୋଠରୀରେ ଉପକରଣ ଗୁଡ଼ିକ ରଖି ଘରକୁ ଫେରିଲି । କଲିକତାରେ ଏକ୍ସପେରିମେଣ୍ଟ ଗୁଡ଼ିକ ବୋଷ ଇନ୍‌ଷ୍ଟିଚ୍ୟୁଟ୍‌ରେ ଦେଖାଇ ଆସିଲା ପରେ ଦର୍ଶକମାନଙ୍କର ମନ୍ତବ୍ୟ ପଢ଼ିବାକୁ ମୁଁ ସମୟ ପାଇ ନ ଥିଲି । କିନ୍ତୁ ଆଜି (ମାର୍ଚ୍ଚ୯ ତାରିଖ ୨୦୦୧ ମସିହା, ଦୋଳ ପୂର୍ଣ୍ଣମୀ ଦିନ) ମୋ ଆତ୍ମ ଜୀବନୀ ଲେଖିବା ସମୟରେ ଏହାକୁ ପଢ଼ିଲି ଏବଂ ପଢ଼ିଲା ପରେ ମୋ ମନରେ ବହୁତ ଆନନ୍ଦ ଜାତ ହେଲା ଏବଂ ଦର୍ଶକମାନେ ମୋତେ ସୁନ୍ଦର ଭାବରେ ମତାମତ ଦେଇଥିଲେ । ଦର୍ଶକମାନଙ୍କର ମନ୍ତବ୍ୟ ପଢ଼ି ମନେ ମନେ ଭାବିଲି ଈଶ୍ୱରଙ୍କ ଆଶୀର୍ବାଦ ନ ଥିଲେ ଏହି ପରୀକ୍ଷା ସବୁ କଲିକତାରେ ଦେଖାଇବା ସମ୍ଭବ ହୋଇ ନ ଥାନ୍ତା । କିନ୍ତୁ ବହୁତ ଦୁଃଖ ଲାଗିଲା, ଯେ ମୋର ଏହି ଆନନ୍ଦ ସମୟରେ ମୋ ସ୍ତ୍ରୀ ନାହାନ୍ତି ଆନନ୍ଦର ଭାଗିଦାର ହେବାକୁ । କାରଣ ତାଙ୍କର ପ୍ରେରଣା, ସାହାଯ୍ୟ ଓ ସହାନୁଭୂତି ପାଇ ନ ଥିଲେ ମୁଁ କେବେ ହେଲେ ଏସବୁ କାମ କରି ପାରି ନ ଥାଆନ୍ତି । ମୁଁ ରେଭେନ୍‌ସା କଲେଜରେ ଏହିସବୁ ଏକ୍ସପେରିମେଣ୍ଟ କଲେଜ ମେକାନିକ୍‌ମାନଙ୍କ ସାହାଯ୍ୟରେ ତିଆରି କରିଥିଲି । କେବଳ ମୋର ତିନି ଜଣ ଛାତ୍ର ଡକ୍ଟର ପ୍ରତିଭା ରାଣୀ ମିଶ୍ର, ଡକ୍ଟର ଅଭିମନ୍ୟୁ ମିଶ୍ର ଓ ଡକ୍ଟର ଆକାଶ ସାହୁଙ୍କ ବ୍ୟତୀତ ଆଉ ଜଣେ କେହି ହେଲେ ମୋତେ

ଏକ୍ସପେରିମେଣ୍ଟ ବିଷୟରେ ପଚାରି ନାହାଁନ୍ତି କି ଦେଖି ମଧ୍ୟ ନାହାଁନ୍ତି । ବରଂ ମୋ ପଛରେ ଥଟ୍ଟା ଚୁଗୁଲି କରି ଅନେକ କଥା କହିଛନ୍ତି । "ଠିକ୍ ଯେପରି ଆମର ଓଡିଆରେ ଢଗ ଅଛି-ଗାଆଁ ଜନିଆଁ ସିଙ୍ଘାଣି ନାକି" । ବହୁତ ଖୁସି ଲାଗିଲା, ଯେ ବାହାର ପ୍ରଦେଶର ଲୋକମାନେ ମୋ ପରୀକ୍ଷା ଗୁଡିକର ମନ୍ତବ୍ୟ ଅତି ଭଲ ଭାବରେ ଦେଇଥିଲେ ।

## ବୋଷ୍ ଇନ୍‌ଷ୍ଟିଚ୍ୟୁଟରେ ଦର୍ଶକମାନଙ୍କର ମତ

ନାମ ଓ ଠିକଣା→ଇଂରାଜୀ ମନ୍ତବ୍ୟର ଓଡିଆ ଅନୁବାଦ(**Opinion in English**).

୧. ଶ୍ରୀ ଗୁରୁପ୍ରସାଦ ମହାନ୍ତି, ସି – ୩୯ ରବିନ୍ଦ୍ରପଲ୍ଲି, ବାଘା ଜତୀନ ରୋଡ, ୮୬→ ଯଦିଓ ମୁଁ ଏହି ବିଷୟରେ ଅଜ୍ଞ, ତଥାପି ଖୁସିର ସହିତ କହୁଛି, ଏହି ପରୀକ୍ଷା ଗୁଡିକ ଆନନ୍ଦ ଦାୟକ ହୋଇଛି । ଏଥିପାଇଁ ଆଶ୍ଚର୍ଯ୍ୟ ହେଉଛି । (Although I am not a technical person yet these experiments had given much more pleasure to write it as really good . I have been astonished) ।

୨. ଶ୍ରୀ ବିପ୍ଳବ ବାନାର୍ଜୀ, ଟେକ୍‌ନିକାଲ ଅଫିସର, ପ୍ରଫେସନାଲ ଆଡ୍‌ଭାନ୍‌ସମେଣ୍ଟ ସେଣ୍ଟର, କଲିକତା । → ଚମତ୍କାର (Excellent)

**୩. ଡକ୍ଟର ଅରୁଣ କୁମାର ଚାଟାର୍ଜୀ, ଫିଜିକ୍ସ ଡିପାର୍ଟମେଣ୍ଟ, ବୋଷ୍ ଇନଷ୍ଟିଚ୍ୟୁଟ୍, କଲିକତା ।**

→ ମୁଁ ପ୍ରଦର୍ଶନୀରେ ଦେଖା ଯାଇଥିବା ପ୍ଲାଜମା ଫିଜିକ୍ସର ଏକ୍ସପେରିମେଣ୍ଟ ଗୁଡିକ ଦେଖିଲି । ଏଗୁଡିକ ଅତି ଦକ୍ଷତାର ସହିତ କରାଯାଇ ଅଛି । ଏହାଦ୍ୱାରା ପ୍ଲାଜମାର ଧର୍ମ ଗୁଡିକ ଉପରେ ପରୀକ୍ଷା କରାଯାଇ ପାରିବ । ପରୀକ୍ଷା ଗୁଡିକ ଅତି ଭଲ , ଛାତ୍ର ଓ ବୈଜ୍ଞାନିକ ମାନଙ୍କୁ ବହୁତ ସାହାଯ୍ୟ କରିବ । (I saw the experiments shown in the exhibition of plasma physics . They are designed in a ingenious ways to study the plasma parameters in gaseous system, in a way they are very good and helpful to young students and scientists )

୪. ଡକ୍ଟର ଜି. ରାୟ, ଶ୍ରୀ ବରୁଣ କୁମାର ଚାଟାର୍ଜୀ ଓ ଶ୍ରୀ ଲାଲଦ୍ୱୀପ ରାଏ, ଫିଜିକ୍ସ ଡିପାର୍ଟମେଣ୍ଟ, ବୋଷ ଇନିଷ୍ଟିଚ୍ୟୁଟ୍ କଲିକତା । → ପରୀକ୍ଷା ଗୁଡିକ ଅତି ସୁନ୍ଦର ହୋଇଛି । (Nice experiments.)

୫. ଭି ରବିନ୍ଦ୍ରାଚାର୍ଯ୍ୟ, ମହିଶୁର ବିଶ୍ୱବିଦ୍ୟାଳୟ, ମହିଶୁର । → ଅତି ଭଲ । (**Very good.**)

୬. ଏମ୍.ସେନ୍‌ଗୁପ୍ତା, ଯାଦବପୁର ବିଶ୍ୱବିଦ୍ୟାଳୟ, କଲିକତା । → ପରୀକ୍ଷା ପ୍ରଣାଳୀ ଅତି ସରଳ ଭାବରେ ଏବଂ ଅତି କମ୍ ଖର୍ଚ୍ଚରେ କରାଯାଇଛି । (Experimental set up is done in a simple , satisfactory manner keeping due economy in mind)

୭. ଶ୍ରୀ ତିମିର ବରେନ୍ ବିଶ୍ୱାସ, ବୋଷ୍ ଇନ୍‌ଷ୍ଟିଚ୍ୟୁଟ୍, କଲିକତା । → ପରୀକ୍ଷା ଗୁଡିକ ଅତି ଭଲ ଏବଂ ସହଜ ଭାବରେ ବୁଝି ହେଉଛି । (The experimental set up is very good. It is easy to understand )

୮. ଡକ୍ଟର ଏସ୍.ବାନାର୍ଜୀ ଏବଂ ଛାତ୍ରୀମାନେ, ବିଦ୍ୟାସାଗର ମହିଳା ବିଦ୍ୟାଳୟ ।→ ପରୀକ୍ଷା ଗୁଡ଼ିକ ଅତ୍ୟନ୍ତ ଚିତ୍ତାକର୍ଷକ ହୋଇଛି । ପରୀକ୍ଷା ଗୁଡ଼ିକ କମ୍ ଖର୍ଚ୍ଚରେ କରିବା ପାଇଁ ବଜାରରେ ମିଳୁଥିବା ଜିନିଷକୁ ଉପକରଣରେ ପରିଣତ କରାଯାଇ ବ୍ୟବହାର କରାଯାଇଛି । ତେଣୁ ମୋ ଛାତ୍ରୀମାନେ ଏଗୁଡ଼ିକ ବିଷୟରେ ଅଧିକ ଜାଣିବାକୁ ଆଗ୍ରହୀ ।(Experiments are found to be very interesting . I and our students are very much interested to know more . The entire things had been made from low cost available material . I have taken a great interest in understanding them )

୯. ଏମ୍.ଏସ୍.ସି. ପଦାର୍ଥ ବିଜ୍ଞାନ ଛାତ୍ରମାନେ, ବିଜ୍ଞାନ ମହାବିଦ୍ୟାଳୟ, କଲିକତା । → ଆମେ ପରୀକ୍ଷା ଗୁଡ଼ିକର ତତ୍ତ୍ୱ ଭଲ ଭାବରେ ବୁଝିଲୁ । (Understood the principles of the experiments )

୧୦. ଡକ୍ଟର ଡି.କେ.ରାଏ, ଦାର୍ଜିଲିଂ ସରକାରୀ କଲେଜ, ଦାର୍ଜିଲିଂ । → ପରୀକ୍ଷା ଗୁଡ଼ିକ ଅତି ଭଲ ହୋଇଛି । (Experiments are very good )

୧୧. ଡକ୍ଟର ଜେ.ପି. ଶର୍ମା, ବଟନୀ ଡିପାର୍ଟମେଣ୍ଟ, ବୋଷ୍ ଇନ୍‌ଷ୍ଟିଚ୍ୟୁଟ୍ । →ଆଗ୍ରହ ଦାୟକ ପରୀକ୍ଷା ( Interesting Experiments .)

୧୨.ନନ୍ଦିନୀ ରାହା, ବେଥୁନ କଲେଜ । → ଉତ୍ସାହ ଦାୟକ ପରୀକ୍ଷା(Inspiring Experiments.)

୧୩. ପ୍ରଫେସର ଏସ୍.ସି ରାୟ ।→ ପରୀକ୍ଷା ଗୁଡ଼ିକ ପ୍ରକୃତରେ ଭଲ । ଏହା ଛାତ୍ର ଓ ଶିକ୍ଷକ ଉଭୟଙ୍କ ପାଇଁ ଶିକ୍ଷଣୀୟ ଅଟେ । ମୁଁ ଜାଣି ନ ଥିଲି ଏ ସରଳ ପରୀକ୍ଷା ଗୁଡ଼ିକ ଦ୍ୱାରା ପ୍ଲାଜମା ଫିଜିକ୍ସ ସହଜରେ ବୁଝିହେବ । (The experiments are really good and instructive for students and teachers. I never knew such simple experiments could be done to make plasma physics understandable)

୧୪. ଡକ୍ଟର ପି. ନନ୍ଦୀ ଓ ଏ.ଭଟ୍ଟାଚାର୍ଯ୍ୟ, ।→ଏ ପରୀକ୍ଷା ଗୁଡ଼ିକ ଅତ୍ୟନ୍ତ ସୁନ୍ଦର ହୋଇଛି । ( Experiments are very Beautiful)

୧୫. ଡକ୍ଟର ଶ୍ୟାମ, କିଶନ ନଗର ସରକାରୀ କଲେଜ, କ୍ଷିଦିର୍‌ପୁର, ପଶ୍ଚିମ ବଙ୍ଗ ।→ ପରୀକ୍ଷା ଗୁଡ଼ିକ ଭଲ ଭାବରେ ଚିନ୍ତା କରାଯାଇଛି ଏବଂ ଶିକ୍ଷଣୀୟ ହୋଇଛି । (Experiments are well conceived and very instructive )

୧୬. ଡକ୍ଟର ପି.କେ. ଦାଶ ଏବଂ ଆର.ଏନ୍ ମୁଖାର୍ଜୀ, ସାହା ଇନ୍‌ଷ୍ଟିଚ୍ୟୁଟ୍ ଅଫ ନ୍ୟୁକ୍ଲିୟର ଫିଜିକ୍ସ, କଲିକତା । →ପରୀକ୍ଷା ଗୁଡ଼ିକ ଭଲ ଭାବରେ ଚିନ୍ତା କରାଯାଇଛି ଏବଂ ଶିକ୍ଷଣୀୟ ହୋଇଛି । (Experiments are well conceived and very instructive)

୧୭. ଡକ୍ଟର ଋତୁପ୍ରିୟା ଚକ୍ରବର୍ତ୍ତୀ, ପ୍ରେସିଡେନ୍‌ସି କଲେଜ । → ପରୀକ୍ଷା ଗୁଡ଼ିକ ପ୍ରକୃତରେ ମୋହିତ କଲା ପରି ହୋଇଛି । (The experiments are really fascinating )

୧୮. ଡକ୍ଟର ରୂପା ଚକ୍ରବର୍ତ୍ତୀ, ପ୍ରେସିଡେନ୍‌ସି କଲେଜ । → ପରୀକ୍ଷା ଗୁଡ଼ିକ ଅତ୍ୟନ୍ତ ଆଗ୍ରହ ଦାୟକ ଏବଂ ଛାତ୍ର ମାନଙ୍କ ପାଇଁ ଶିକ୍ଷଣୀୟ ଅଟେ । (Delightlly interesting and Instructive experiments for students of science)

୧୯.ଡକ୍ଟର ଅରୁନ୍ଧତୀ ଦାସଗୁପ୍ତା, ପ୍ରେସିଡେନ୍‌ସି କଲେଜ । → କମ୍ ଖର୍ଚ୍ଚରେ ହୋଇଥିବା ଏହି ପରୀକ୍ଷା ଗୁଡ଼ିକ ବହୁତ ପ୍ରଶଂସନୀୟ ଅଟେ । ମୁଁ ଜଣେ ବିଜ୍ଞାନ ଛାତ୍ରୀ ହୋଇଥିବାରୁ ପରୀକ୍ଷାର ଉପକରଣ ଏବଂ ପରୀକ୍ଷା ଗୁଡ଼ିକ ମୋ ପାଇଁ ଆଗ୍ରହ ଦାୟକ ଅଟେ । (The available materials are used to built up these experiments is commendeble. Being an undergraduate science student, more information about the experiments would have proved highly interesting to me.)

୨୦. ଶ୍ରୀ ଜୟଦୀପ ମିତ୍ର । → ଗୁରୁ ତତ୍ତ୍ୱ ଗୁଡ଼ିକ ଅତି ସରଳ ଭାଷାରେ ବୁଝି ହେଉଛି । ତେଣୁ ମନରେ ଉତ୍ସାହ ସୃଷ୍ଟି କରୁଛି । (Big things dealt in a highly simplified manner Very encouraging )

୨୧. ସ୍ମୃତି ବିଶ୍ୱାସ । → ପରୀକ୍ଷା ଗୁଡ଼ିକ ଆଗ୍ରହ ଦାୟକ ଓ ବୁଝି ହେଉଛି । (The experiments are interesting as well as understandable.)

୨୨. ଶ୍ରୀ ବିକ୍ରମ ଗୁପ୍ତା । → ପରୀକ୍ଷା ଗୁଡ଼ିକ ଆଗ୍ରହ ଦାୟକ ଏବଂ ଛାତ୍ର ମାନଙ୍କ ପାଇଁ ଅତ୍ୟନ୍ତ ଉପଯୋଗୀ ଅଟେ । ମୁଁ ପରୀକ୍ଷା ଗୁଡ଼ିକ ବିଜ୍ଞାନ ଛାତ୍ରଙ୍କ ପାଇଁ ସୁପାରିଶ କରୁଛି । (Interesting experiments, highly recommended for student of science)

୨୩. ପୁଷ୍ପମ୍ ମଜୁମଦାର ।→ ପରୀକ୍ଷା ଗୁଡ଼ିକ ଅଭିନବ କୌଶଳରେ ପ୍ରବର୍ତ୍ତନ କରାଯାଇଛି । (Highly innovative )

୨୪. ଶ୍ରୀନିବାସ ରାୟ ।→ ଅତ୍ୟନ୍ତ ଆଗ୍ରହ ଦାୟକ । (Highly interesting)

୨୫. ଶ୍ରୀ ଗୌତମ୍ ସାହା । → ଆଶା କରୁଛି ଏହିପରି ପରୀକ୍ଷା ଗୁଡ଼ିକ ଭବିଷ୍ୟତରେ ଦେଖିପାରିବି । (Hope to see more interesting experiments in future)

୨୬. ଡକ୍ଟର ସୁଭଦ୍ରା ରାୟଚୌଧୁରୀ → ପରୀକ୍ଷା ଗୁଡ଼ିକ ଅତି ଆଗ୍ରହ ଦାୟକ ଏବଂ ଏଭଳି ପରୀକ୍ଷା ଆମ ପରୀକ୍ଷାଗାରରେ ନାହିଁ । (Experiments are very interesting, which are not present in our laboratory)

୨୭. ଡକ୍ଟର ଅପଟିରାମ୍ ଚାଟର୍ଜୀ । → ପିଲାଙ୍କ ଆଗ୍ରହ ସୃଷ୍ଟି କରିବା ପାଇଁ ପରୀକ୍ଷା ଗୁଡ଼ିକ ଅତି ପ୍ରଶଂସନୀୟ । (Highly commendable effort to increase interests of science student in the physics laboratory )

୨୮. ଡକ୍ଟର .ଅବିନ ଦେ । → ଅତି ପ୍ରଶଂସନୀୟ ଏବଂ ନୂତନ ଉପାୟରେ ପରୀକ୍ଷା କରାଯାଇଛି । (Highly commendable and innovative )

୨୯. ଅରିନ୍ଦମ କୁନ୍ଦଗ୍ରାମ । → ମନୋହର (Splendid )

୩୦. ଏମ. ଚାଟର୍ଜି, ପ୍ରେସିଡେନ୍ସି କଲେଜ । → ଏହି ପରୀକ୍ଷା ଗୁଡ଼ିକ ଭଲ, ଆଗ୍ରହ ଦାୟକ, ଉତ୍ସାହ ପୂର୍ଣ୍ଣ ଏବଂ ନୂତନ ଉପାୟରେ ତିଆରି କରାଯାଇଛି । (Good, interating, encourging and innovative too)

୩୧. ଜୟଦୀପ୍ ମଜୁମ୍‌ଦାର, ପ୍ରେସିଡେନ୍ସି କଲେଜ । → ଏହି ପରୀକ୍ଷା ଗୁଡ଼ିକ ଆଗ୍ରହ ଦାୟକ ଉତ୍ସାହ ପୂର୍ଣ୍ଣ ଏବଂ ନୂତନ ଉପାୟରେ ତିଆରି କରାଯାଇଛି । (Interesting, encouraging and innovative too)

୩୨. ସମୀର ଦତ୍ତ, ବୋଷ ଇନ୍‌ଷ୍ଟିଚ୍ୟୁଟ୍ । → ଅତି ଆଗ୍ରହ ପୂର୍ଣ୍ଣ । (Very interesting)

୩୩. ନିହାର ରଞ୍ଜନ ରାୟ, ଏସ୍.ଆଇ.ଏନ୍.ପି, କଲିକତା । →ଏହି ପରୀକ୍ଷା ଗୁଡ଼ିକ ପଶ୍ଚିମ ବଙ୍ଗ ପିଲାମାନେ ତିଆରି କଲେ ଏହା ସେମାନଙ୍କ ପାଇଁ ଅତ୍ୟଧିକ ଉତ୍ସାହ ଦାୟକ ଓ ଶିକ୍ଷଣୀୟ ହୋଇପାରିବ । (Highly encouraging for setling of plasma experiment in undergraduate college .)

୩୪. ଶ୍ରୀ ରତ୍ନେଶ୍ୱର ରାୟ,ଏସ୍.ଆଇ.ଏନ୍.ପି, କଲିକତା । → ପରୀକ୍ଷା ଗୁଡ଼ିକ ଶିକ୍ଷଣୀୟ ଏବଂ ପ୍ରକୃତରେ କମ୍ ଦାମ୍‌ର ଉପକରଣ ଦ୍ୱାରା କରାଯାଇଛି । (Really low cost experiments and educative as well.)

୩୫. ଡକ୍ଟର ରବିନ୍ଦ୍ରନାଥ ପାଲ, ଏସ୍.ଆଇ.ଏନ୍.ପି, କଲିକତା । →ଏହି ପରୀକ୍ଷା ବହୁତ ଉତ୍ସାହ ପୂର୍ଣ୍ଣ ଏବଂ ନିଶ୍ଚିତ ଆଗ୍ରହ ଦାୟକ । (Very encouraging experiment and definitely interesting )

୩୬. ପ୍ରଫୁଲ୍ଲ ଚାଟର୍ଜୀ, ଏସ୍.ଆଇ.ଏନ୍.ପି, କଲିକତା । → ସହଜ ଉପାୟରେ ଦିଆ ଯାଇଥିବା ପ୍ଲାଜମା ଏକ୍ସପେରିମେଣ୍ଟ ଗୁଡ଼ିକ ଅତୀବ ଆଗ୍ରହ ଦାୟକ । (Interesting and find demonstration of plasma experiment in Easy way)

୩୭. ଡକ୍ଟର ଜେ. ବସୁ, ଏସ୍.ଆଇ.ଏନ୍.ପି, କଲିକତା । → ପରୀକ୍ଷା ଗୁଡ଼ିକ ଶିକ୍ଷଣୀୟ ଏବଂ କମ୍ ଖର୍ଚ୍ଚରେ ତିଆରି । (Very interesting experiment for college student of low cost)

୩୮. ଏ.କେ. ହୁଇ,ଏସ୍.ଆଇ.ଏନ୍.ପି, କଲିକତା । → ଗଭୀର ଭାବରେ ପ୍ରଭାବିତ କରୁଛି । (Very impressed )

୩୯. ସାମନ୍ତ ରାୟଚୌଧୁରୀ,ଏସ୍.ଆଇ.ଏନ୍.ପି, କଲିକତା । → ଗଭୀର ଭାବରେ ପ୍ରଭାବିତ କରୁଛି । (Very impressive)

ଶ୍ରୀମତୀ ପ୍ରତିଭା ରାଣୀ ମିଶ୍ର ମୋ ତତ୍ତ୍ୱାବଧାନରେ ପି.ଏଚ୍.ଡି ପାଇବା ପାଇଁ ଥେସିସ୍ ଦାଖଲ କରିଥିଲେ । ତାଙ୍କର ମୌଖିକ ପରୀକ୍ଷା ମାର୍ଚ୍ଚ ପ୍ରଥମ ସପ୍ତାହରେ କରିବା ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟର ପରୀକ୍ଷା ନିୟନ୍ତ୍ରକ ପରୀକ୍ଷକ ଡକ୍ଟର ଭି.କେ.ରୋହତାଗୀ ଏବଂ ଡକ୍ଟର ଏଚ୍.ପି ପନ୍ତଙ୍କ ସହିତ ଯୋଗାଯୋଗ କରି ମୌଖିକ ପରୀକ୍ଷାର ଦିନ ନିର୍ଦ୍ଦିଷ୍ଟ କରିବା ପାଇଁ ମୋତେ ନିର୍ଦ୍ଦେଶ ଦେଇଥିଲେ । ମୁଁ ସେହି ଅନୁସାରେ ତାଙ୍କ ପାଖକୁ ଟେଲିଗ୍ରାମ୍ ଏବଂ ଫୋନ୍‌ରେ କଥାବାର୍ତ୍ତା କରି ଦିନ ଠିକଣା କଲି । ସେହିଦିନ ପ୍ରତିଭା ରାଣୀ ମିଶ୍ରଙ୍କ ମୌଖିକ ପରୀକ୍ଷା ହୋଇଗଲା ଏବଂ ୬ ତାରିଖରେ ପ୍ରତିଭା ରାଣୀ ମିଶ୍ର ପିଏଚ୍.ଡି ପାଇଲେ ବୋଲି ନିୟନ୍ତ୍ରକ ଘୋଷଣା କଲେ । ଡକ୍ଟର ପ୍ରତିଭା ରାଣୀ ମିଶ୍ରଙ୍କର ଯେଉଁ ବାହ୍ୟ ପରୀକ୍ଷକ ଆସିଥିଲେ ସେମାନଙ୍କୁ ମୁଁ ରାତ୍ରି ଭୋଜନରେ ଆପ୍ୟାୟିତ କରିବା ପାଇଁ ନିମନ୍ତ୍ରଣ କରିଥିଲି । ସେମାନେ ରାତ୍ର ଭୋଜନ କରିଥିଲେ ଓ ମୋର ସ୍ତ୍ରୀଙ୍କୁ ଭଲ ରାନ୍ଧି ଥିବାରୁ ଧନ୍ୟବାଦ ଦେଇଥିଲେ ।

ତାର କେତେଦିନ ପରେ ପୁଣି ପରୀକ୍ଷା ନିୟନ୍ତ୍ରକଙ୍କ ଠାରୁ ଚିଠି ପାଇଲି, ଶ୍ରୀ ଅକାଶ ସାହୁଙ୍କର ମୌଖିକ ପରୀକ୍ଷା କରିବା ପାଇଁ ବାହ୍ୟ ପରୀକ୍ଷକଙ୍କ ସାଙ୍ଗରେ ଆଲୋଚନା କରି ଦିନ ଧାର୍ଯ୍ୟ କରିବାକୁ । ଠିକ୍ ସେହିଦିନ ନିୟନ୍ତ୍ରକ ଲେଖିଥିଲେ, କଲ୍ୟାଣୀ ବିଶ୍ୱବିଦ୍ୟାଳୟର ଡକ୍ଟର ପଦ୍ମନାଭ ଦାସଗୁପ୍ତା ଏବଂ ଧରୱାଡ ବିଶ୍ୱବିଦ୍ୟାଳୟର ଡକ୍ଟର ବି.ଜି. ଜ୍ୟୋତି । ଏହି ଦୁଇଜଣ ମୌଖିକ ପରୀକ୍ଷକ ଅଟନ୍ତି । ମୁଁ ସେମାନଙ୍କ ସାଙ୍ଗରେ କଥାବାର୍ତ୍ତା କରି ମଇ ମାସ ଶେଷ ସପ୍ତାହରେ ଦିନ ଠିକ୍ କରିଦେଲି । ସେହିଦିନ ଶ୍ରୀ ଆକାଶ ସାହୁଙ୍କର ମୌଖିକ ପରୀକ୍ଷା ହେଲା । ପରୀକ୍ଷା ପରେ ମୁଁ ଜଣାଇ ଦେଲି,ଶ୍ରୀ ଆକାଶ ସାହୁ ପିଏଚ୍.ଡି ପାଇବାକୁ ଯୋଗ୍ୟ ବିବେଚିତ ହୋଇଛନ୍ତି । ଡକ୍ଟର ଆକାଶ ସାହୁଙ୍କର ଯେଉଁ ବାହ୍ୟ ପରୀକ୍ଷକ ଆସିଥିଲେ ସେମାନଙ୍କୁ ମୁଁ ରାତ୍ରି ଭୋଜନରେ ଆପ୍ୟାୟିତ କରିବା ପାଇଁ ନିମନ୍ତ୍ରଣ କରିଥିଲି । ସେମାନେ ରରାତ୍ର ଭୋଜନ କରିଥିଲେ ଓ ମୋର ସ୍ତ୍ରୀଙ୍କୁ ଭଲ ରାନ୍ଧି ଥିବାରୁ ଧନ୍ୟବାଦ ଦେଇଥିଲେ ।

## ଆଇ.ଏ.ପି.ଟି ପ୍ରାକ୍ଟିକାଲ ପରୀକ୍ଷାର ମୁଖ୍ୟ ପରୀକ୍ଷକ

ଏହା ଭିତରେ ଡକ୍ଟର ଡି.ପି.ଖଣ୍ଡେଲୱାଲାଙ୍କ ଠାରୁ ଗୋଟିଏ ଚିଠି ପାଇଥିଲି, ଯେ ଆପଣ ଦେଇଥିବା ପରୀକ୍ଷା ପ୍ରଣାଳୀରେ ଆଇ.ଏ.ପି.ଟି.ର ପ୍ରାକ୍ଟିକାଲ୍ ପରୀକ୍ଷା ୪ ଠାରୁ ୬ ଜୁନ୍ ମଧ୍ୟରେ ଭୋପାଳ ଠାରେ ଅନୁଷ୍ଠିତ ହେବ । ଆପଣ ମୁଖ୍ୟ ପରୀକ୍ଷକ ଭାବରେ କାର୍ଯ୍ୟ ସମ୍ପାଦନ କରିବା ପାଇଁ ଆସିବେ । ଏହା ମୋର ଅନୁରୋଧ ଅଟେ । ଡକ୍ଟର ଡି.ପି.ଖଣ୍ଡେଲୱାଲା ସେତେବେଳେ ଆଇ.ଏ.ପି.ଟି.ର ସଭାପତି ଥିଲେ । ସେ ମୋତେ ଲେଖିଥିଲେ ,ଯେଉଁମାନେ ଓଡିଶାରୁ ପରୀକ୍ଷକ ହୋଇ ଯିବା ପାଇଁ ବିନା ପାରିଶ୍ରମିକରେ ରାଜି ହୁଅନ୍ତି, ସେମାନଙ୍କ ନାମ

ମୋତେ ଲେଖି ଜଣାଅ । ମୁଁ ସେମାନଙ୍କୁ ଅନୁରୋଧ କରି ଚିଠି ଲେଖିବି । ମୁଁ ଦୁଇ ତିନି ଜଣଙ୍କ ନାମ ଲେଖି ଜଣାଇ ଥିଲି । ତା ମଧ୍ୟରୁ ମୋ ଝିଅ ପ୍ରଭାତୀ ମିଶ୍ର ଜଣେ ଥିଲେ । ତେଣୁ ଏକ ତାରିଖ ରାତିରେ ଆମେ ଦୁଇ ଜଣ ଉତ୍କଳ ଏକ୍ସପ୍ରେସ୍‌ରେ ଯାଇ ବିନାଠାରେ ଗାଡି ବଦଳାଇ ଭୋପାଳ ଠାରେ ପ୍ରାୟ ଦିନ ବାରଟା ବେଳେ ପହଞ୍ଚିଲୁ ଏବଂ ଭୋପାଳ ଷ୍ଟେସନରୁ ଅଟୋରିକ୍ସା କରି ରିଜିଓନାଲ କଲେଜ ଅଫ୍ ଏଜୁକେସନ୍, ଭୋପାଳରେ ପହଁଞ୍ଚିଲୁ । ସେଠାରେ ତାଙ୍କ ଅତିଥି ଭବନରେ ଆମର ରହିବା ଓ ଖାଇବା ପାଇଁ ବ୍ୟବସ୍ଥା ହୋଇଥିଲା । ଏହି ପରୀକ୍ଷାରେ ୬୦ ଜଣ ପରୀକ୍ଷକ ନିଯୁକ୍ତ ହୋଇଥିଲେ । ପରୀକ୍ଷା କିପରି ପରିଚାଳନା କରାଯିବ ତାହା ଡକ୍ଟର ଡି.ପି. ଖଣ୍ଡେଲୱାଲା, ଭି. ଶ୍ରୀନିବାସ ଓ ମୁଁ ବସି ଠିକଣା କରିଦେଲୁ ।

ଏହି ପାର୍ଟ ସି. ପରୀକ୍ଷା ପାଇଁ ୧୦୦ ଜଣ ପିଲାଙ୍କୁ ବିଭିନ୍ନ ପ୍ରଦେଶରୁ ନିମନ୍ତ୍ରଣ କରା ଯାଇଥିଲା । ସେମାନଙ୍କ ଗାଡି ଖର୍ଚ୍ଚ ଏବଂ ରହିବା ଖର୍ଚ୍ଚ ଆଇ.ଏ.ପି.ଟି. ତରଫରୁ ଦିଆଯିବାର ବ୍ୟବସ୍ଥା ହୋଇଥିଲା । ସମୁଦାୟ ଭାରତ ବର୍ଷରେ ଯେଉଁମାନେ ଆଇ.ଏ.ପି.ଟି ପରୀକ୍ଷା ଦେଇଥିଲେ ସେମାନଙ୍କ ମଧ୍ୟରୁ ସର୍ବୋଚ୍ଚ ନମ୍ବର ରଖିଥିବା ୧୦୦ ଜଣ ପିଲାଙ୍କୁ ପରୀକ୍ଷା ଦେବା ପାଇଁ ନିମନ୍ତ୍ରଣ କରାଯାଇ ଥିଲା । ଏମାନଙ୍କ ମଧ୍ୟରୁ ସବୁ ପରୀକ୍ଷାରେ ସର୍ବୋଚ୍ଚ ନମ୍ବର ରଖିଥିବା ୨୫ ଜଣ ପିଲାଙ୍କୁ ରାଷ୍ଟ୍ରପତି ଗୋଟିଏ ଲେଖାଏଁ ସ୍ୱର୍ଣ୍ଣ ପଦକ ଗୋଟିଏ ନିର୍ଦ୍ଦିଷ୍ଟ ଦିନରେ ଦେବେ । ଏହି ପରୀକ୍ଷା ଦୁଇଦିନ ଭିତରେ ସାରିବାକୁ ପଡିଥିଲା । ପ୍ରାୟ ପ୍ରତି ଏକ୍ସପେରିମେଣ୍ଟ ବା ଦୁଇଟି ଏକ୍ସପେରିମେଣ୍ଟ ପାଖରେ ଜଣେ ଲେଖାଏଁ ପରୀକ୍ଷକ ନିଯୁକ୍ତ ହୋଇଥିଲେ । ଦ୍ୱିତୀୟ ଦିନ ରାତିରେ ପରୀକ୍ଷା ଖାତା ଦେଖିସାରିଲା ପରେ ଆମକୁ ବଡ ଆଶ୍ଚର୍ଯ୍ୟ ଲାଗିଲା ଯେ ପ୍ରାୟ ଦୁଇ ଜଣଙ୍କୁ ଛାଡିଦେଲେ ସମସ୍ତ ପିଲା ପ୍ରାକ୍‌ଟିକାଲ୍ ପରୀକ୍ଷାରେ ୪୦ ରୁ କମ୍ ନମ୍ବର ରଖି ଫେଲ ହୋଇଛନ୍ତି । ଡକ୍ଟର ଖଣ୍ଡେଲୱାଲା, ଡକ୍ଟର ଶ୍ରୀନିବାସ (ସାଧାରଣ ସଂପାଦକ ) ଏବଂ ମୁଁ ଆଲୋଚନା କଲୁ ଯେ ଏହା କିପରି ହେଲା ? ଆମେ ସେହି ପିଲାଙ୍କ ଥିଓରି ନମ୍ବର ଦେଖିଲୁ । ସମସ୍ତେ ପ୍ରାୟ ୮୦ ନମ୍ବର ରଖିଛନ୍ତି । ନିୟମ ଅନୁସାରେ ଯେଉଁମାନେ ପ୍ରାକ୍ଟିକାଲ୍‌ରେ ଫେଲ ହୋଇ ଯାଇଛନ୍ତି, ସେମାନେ ପାସ୍ କରିପାରିବା କଥା ନୁହେଁ । ତେଣୁ ଆମେ ବିଚାର କଲୁ ପ୍ରାକ୍ଟିକାଲରେ କିପରି ଅଧିକ ନମ୍ବର ଦିଆଯାଇ ପାରିବ । ସେହି ଅନୁସାରେ ସମସ୍ତ ଖାତା ଆଉ ଥରେ ପରୀକ୍ଷା କରି ମାର୍କ ସବୁ ବଢାଇ ଦିଆଗଲା । ଏଥିରୁ ଆମେ ଜାଣିଲୁ ଭାରତର ଛାତ୍ରଙ୍କର ପ୍ରାକ୍ଟିକାଲ କରିବାର ଜ୍ଞାନ ବହୁତ ନିମ୍ନ ସ୍ତରର । ଆସନ୍ତା ପରୀକ୍ଷା ପାଇଁ ପରୀକ୍ଷା ପ୍ରଣାଳୀ ବିଷୟରେ ଆଇ.ଏ.ପି.ଟି ବୁଲେଟିନ୍‌ରେ ଜଣାଇ ଦେଲେ । ତାପରେ କେଉଁ ୨୫ ଜଣ ଭାରତର ରାଷ୍ଟ୍ରପତିଙ୍କ ଠାରୁ ସ୍ୱର୍ଣ୍ଣ ପଦକ ପାଇପାରିବେ ତାହା ନିର୍ଦ୍ଧାରଣ କରି ଦେଲେ । ପରୀକ୍ଷା ସରିବା ପରଦିନ ମୁଁ ଏବଂ ମୋ ଝିଅର ଟିକେଟ ବିନାଠାରୁ ଭୁବନେଶ୍ୱର ପର୍ଯ୍ୟନ୍ତ ସଂରକ୍ଷଣ ହୋଇଥିଲା । ତେଣୁ ଉପର ବେଳା ଗୋଟିଏ ଟ୍ରେନ୍‌ରେ ଆମେ ବିନା ପର୍ଯ୍ୟନ୍ତ ଗଲୁ । ବିନାରେ ସଂଧ୍ୟା ସାତଟା ବେଳେ ପହଁଞ୍ଚିଲୁ ଏବଂ ଉତ୍କଳ ଏକ୍ସପ୍ରେସ୍ ଆସିବାକୁ ଅପେକ୍ଷା କରି ରହିଲୁ । ଉତ୍କଳ ଏକ୍ସପ୍ରେସ୍ ଆସିବା ପରେ ଆମେ ଆମ ସଂରକ୍ଷିତ

ସ୍ଥାନରେ ଅତ୍ୟନ୍ତ ଭିଡ ଯୋଗୁଁ ବସି ପାରିଲୁ ନାହିଁ । ଯେ କୌଣସି ଗୋଟିଏ ଡବାରେ ଚଢି ଆମେ କଣ୍ଡକ୍ଟରଙ୍କୁ ଜଣାଇ ଦେଲୁ । ସେ କହିଲେ,ବାଟରେ ସ୍ଲିପର ଖାଲି ହେଲେ ମୁଁ ଆପଣଙ୍କୁ ଖବର ଦେବି । ଆପଣ ଆସି ଆପଣଙ୍କ ସଂରକ୍ଷିତ ସ୍ଥାନରେ ବସିବେ । ଏହିପରି ଭାବରେ ଆମେ ସାଗର ଷ୍ଟେସନ ପର୍ଯ୍ୟନ୍ତ ଗଲୁ । ସାଗର ଷ୍ଟେସନ୍‌ରେ କଣ୍ଡକ୍ଟର ଆମକୁ ଜଣାଇଲା,ଯେ ଆପଣ ଯାଇ ସଂରକ୍ଷିତ ସ୍ଥାନରେ ବସନ୍ତୁ । ଆମେ ସଂରକ୍ଷିତ ସ୍ଥାନରେ ଯାଇ ବସିଲା ପରେ ଶାନ୍ତିରେ ଟିକିଏ ନିଶ୍ୱାସ ମାରିଲୁ । ସେହି ଦିନ ପାଞ୍ଚଟା ବେଳେ ମୋ ଝିଅ ରାଉରକେଲା ଠାରେ ଓହ୍ଲାଇ ଗଲା ଏବଂ ମୁଁ ତାପର ଦିନ ସକାଳେ ଭୁବନେଶ୍ୱର ଠାରେ ଓହ୍ଲାଇ ଘରକୁ ଆସିଲି ।

ଏହାପରେ ଡକ୍ଟର ଖଣ୍ଡେଲୱାଲାଙ୍କ ଠାରୁ ଗୋଟିଏ ଚିଠି ପାଇଲି । ସେଥିରେ ଲେଖାଥିଲା ଆଇ.ଏ.ପି.ଟି.ର କାର୍ଯ୍ୟ ପରିଚାଳନା ସମିତି ଆପଣଙ୍କୁ ଏନ୍.ଏସ୍.ଇ.ପି. (International Question paper setting contest) ପରୀକ୍ଷାର ପ୍ରଶ୍ନପତ୍ର ତିଆରି ପ୍ରତିଯୋଗିତାର ପରୀକ୍ଷକ ଭାବେ ୧୯୯୨ ମସିହା ପାଇଁ ଅନ୍ୟମାନଙ୍କ ସହିତ ନିଯୁକ୍ତି ଦେଇଛନ୍ତି । ଆପଣଙ୍କ ପାଖକୁ ବିଭିନ୍ନ ଅଧ୍ୟାପକମାନଙ୍କ ଦ୍ୱାରା ତିଆରି ପ୍ରଶ୍ନପତ୍ର ଗୁଡିକ ପଠାଇ ଦିଆଯିବ । ସେଗୁଡିକ ଆପଣ ପଢି ମତାମତ ଏକ କାଗଜରେ ଲେଖି ଡକ୍ଟର ଆର.ଏନ୍. କପୁରଙ୍କ ପାଖକୁ ପଠାଇ ଦବେ । ସେହି ପ୍ରଶ୍ନ ପତ୍ର ଗୁଡିକରେ କିଛି ଲେଖିବେ ନାହିଁ । ସେ ଚିଠି ପାଇବାର କିଛି ଦିନ ପରେ ମୁଁ ପ୍ରଶ୍ନପତ୍ର ଗୁଡିକ ପାଇଲି । ସେଗୁଡିକ ଦେଖି ମୋର ମତାମତ ଦେଇ ଡକ୍ଟର ଆର.ଏନ୍.କପୁରଙ୍କ ପାଖକୁ ପଠାଇ ଦେଲି ।

## ଆଲୋଚନା ଚକ୍ର ସାଇନ୍‌ସ ଆଣ୍ଡ ଟେକ୍‌ନୋଲୋଜି, ବମ୍ବେ ବିଶ୍ୱବିଦ୍ୟାଳୟ

ଏହାର ତିନି ଚାରି ମାସ ଆଗରୁ ଚିଠି ପାଇଥିଲି,ଯେ ବମ୍ବେ ବିଶ୍ୱବିଦ୍ୟାଳୟରେ ଗୋଟିଏ ଆଲୋଚନା ଚକ୍ର ସାଇନ୍‌ସ ଆଣ୍ଡ ଟେକ୍‌ନୋଲୋଜି ଉପରେ ନଭେମ୍ବର ୩ ରୁ ୭ ତାରିଖ ମଧ୍ୟରେ ହେବ । ସେଥିପାଇଁ ମୁଁ ଗୋଟିଏ ପ୍ରବନ୍ଧ ପଠାଇଥିଲି । ପ୍ରବନ୍ଧଟି ଉପଯୁକ୍ତ ବିବେଚିତ ହୋଇଥିଲା ଏବଂ ମୋର ଯିବା ଆସିବା ଖର୍ଚ୍ଚ ମଞ୍ଜୁର ହୋଇଛି ବୋଲି ଚିଠି ଆସିଥିଲା । ତେଣୁ ମୁଁ ଆଲୋଚନା ଚକ୍ରରେ ଯୋଗ ଦେବାପାଇଁ କୋଣାର୍କ ଏକ୍ସପ୍ରେସ୍‌ର ସ୍ଲିପରରେ ଟିକଟ ସଂରକ୍ଷଣ କରିଦେଲି ଏବଂ ବମ୍ବେରେ ରହୁଥିବା ମୋ ବଡ ପୁଅ ପାଖକୁ ଚିଠି ଲେଖିଦେଲି । ବଡ ପୁଅ ୱାସିରେ ରହୁଥିବା ଜଣେ ସାଙ୍ଗ ଡକ୍ଟର ବିଜୟ ମିଶ୍ରଙ୍କ ଘରେ ମୋ ରହିବାର ବନ୍ଦୋବସ୍ତ କରିଥିଲା । ମୁଁ ଦୁଇ ତାରିଖ ଦିନ ବାରଟାରୁ ଗୋଟାଏ ଭିତରେ ଭିକ୍ଟୋରିଆ ଷ୍ଟେସନରେ ପହଁଞ୍ଚିଲି । ଷ୍ଟେସନରେ ଡକ୍ଟର ବିଜୟ ମିଶ୍ର ମୋତେ ଅପେକ୍ଷା କରି ରହିଥିଲେ । ତାଙ୍କ ସାଙ୍ଗରେ ମୁଁ ତାଙ୍କ ଘରକୁ ଗଲି । ସେଠାରେ ରହିବାର ମୋର ସବୁ ସୁବିଧା ହୋଇଗଲା । ଡକ୍ଟର ବିଜୟ ମିଶ୍ର ବି.ଏ.ଆର.ସିରେ ବୈଜ୍ଞାନିକ ହିସାବରେ କାମ କରନ୍ତି । ତାଙ୍କ ଘରେ ରହିବାରୁ ମୋର ଗୋଟିଏ ବିଶେଷ ସୁବିଧା ହେଲା । ବମ୍ବେ ବିଶ୍ୱବିଦ୍ୟାଳୟରେ ହେଉଥିବା ଆଲୋଚନା ଚକ୍ରର ସ୍ଥାନୀୟ ସମ୍ପାଦକ ଡକ୍ଟର କୁଲକର୍ଣ୍ଣୀ ନାମକ ଜଣେ ଫିଜିକ୍‌ସ ଅଧ୍ୟାପକ ଥାଆନ୍ତି । ସେ

ମହାଶୟ ଡକ୍ଟର ବିଜୟ ମିଶ୍ରଙ୍କ ଘର ପାଖରେ ନିଜ ଘର କରି ୱାସିରେ ରହୁଥାଆନ୍ତି । ଡକ୍ଟର କୁଲକର୍ଣ୍ଣୀଙ୍କୁ ମୁଁ ପ୍ରାୟ ୧୦/୧୨ ବର୍ଷ ହେଲା ଚିହ୍ନି ଥାଏ । ତାଙ୍କ ସଙ୍ଗେ ଦେଖା ହେଲାପରେ ସେ କହିଲେ,ସକାଳ ଆଠଟା ବେଳେ ମୋ ଘରକୁ ଚାଲି ଆସିବେ । ମୁଁ ଆପଣଙ୍କୁ ଅନ୍ୟମାନଙ୍କ ସହିତ ବମ୍ବେ ବିଶ୍ୱବିଦ୍ୟାଳୟରେ ପହଁଞ୍ଚାଇ ଦେବି ଏବଂ ଆଲୋଚନା ଚକ୍ର ସରିଲା ପରେ ମୁଁ ପୁଣି ଆଣି ଆପଣଙ୍କୁ ଘରେ ଛାଡିଦେବି । ସିମ୍ପୋଜିଅମ୍ ସରିଲା ପରେ ଆଠ ତାରିଖ ଦିନ ଖରାବେଳେ କୋଣାର୍କ ଏକ୍ସପ୍ରେସ୍‌ରେ ବସି ୧୦ ତାରିଖ ଦିନ ଭୁବନେଶ୍ୱରରେ ସକାଳୁ ପହଞ୍ଚିଲି ।

## ଶ୍ରୀ ରାମଚନ୍ଦ୍ର ଇନିଷ୍ଟିଚ୍ୟୁଟ୍ ଅଫ ସାଇନ୍ସ ଏବଂ ଟେକ୍‌ନୋଲୋଜିର ଅଧ୍ୟକ୍ଷ ଭାବରେ ମୋର ଯୋଗଦାନ

ଭୁବନେଶ୍ୱରରେ ପହଁଞ୍ଚିବାର କେତେ ଦିନ ପରେ ଦିନେ ସକାଳ ଆଠଟା ନଅଟା ବେଳେ ଡକ୍ଟର ବେଣୁଧର ରାଉତ୍ (ନିରାକାର ପୁରର ଓଡିଆ ଅଧ୍ୟାପକ) ଓ ଡକ୍ଟର ଶରତ ଚାଟାର୍ଜୀ (ଖୋର୍ଦ୍ଧା କଲେଜର ଇତିହାସ ଅଧ୍ୟାପକ) ମୋ ସାଙ୍ଗେ ଦେଖା କଲେ । ଡକ୍ଟର ବେଣୁଧର ରାଉତ୍‌ଙ୍କୁ ମୁଁ ବହୁତ ଆଗରୁ ଚିହ୍ନି ଥାଏ । ତାଙ୍କ ସାଙ୍ଗରେ ଡକ୍ଟର ରାମଚନ୍ଦ୍ର ସାମନ୍ତରାୟ ନାମକ ଜଣେ ବ୍ୟକ୍ତି ଆସିଥିଲେ । ସେମାନେ ସମସ୍ତେ ମୋତେ ଅନୁରୋଧ କଲେ ଗଣିଆରେ ଥିବା "ଶ୍ରୀ ରାମଚନ୍ଦ୍ର ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସାଇନ୍ସ ଆଣ୍ଡ ଟେକ୍‌ନୋଲୋଜି" ର ଅଧ୍ୟକ୍ଷ ହିସାବରେ ଯୋଗ ଦେବାପାଇଁ । ମୁଁ ବିଶେଷ ରାଜି ନ ଥିଲି । କାରଣ ମୋର ଇଉ.ଜି.ସି ପ୍ରୋଜେକ୍ଟ "ଷ୍ଟଡିଜ୍ ଅନ୍ ଡିଉଟୋରିୟମ୍ ପ୍ଲାଜମା" ଉତ୍କଳ ବିଶ୍ୱବିଦ୍ୟାଳୟରେ ଚାଲିଥାଏ । ଡକ୍ଟର ସାମନ୍ତରାୟ ମୋତେ ଲୋଭ ଦେଖାଇଲେ, "ମୁଁ ଗୋଟିଏ ପ୍ଲାଜମା ରିସର୍ଚ୍ଚ ଲାବୋରାଟୋରୀ ପାଇଁ ପାଞ୍ଚ ଲକ୍ଷ ଟଙ୍କା ଦେବି ।" ମୁଁ ଏଥିରେ ରାଜି ହୋଇଗଲି । ତେଣୁ ସେ ମୋତେ କହିଲେ, ମାସକୁ ପାଞ୍ଚ ହଜାର ଟଙ୍କା ମୁଁ ଆପଣଙ୍କୁ ଦରମା ଦେବି । ଗଣିଆ ଏଠାରୁ ପ୍ରାୟ ୭୦/୮୦ କିଲୋମିଟର ଦୂର । ମୁଁ ତାଙ୍କୁ ମୋ ରହିବା ବିଷୟରେ ପଚାରିଲି । ସେ କହିଲେ, ବର୍ତ୍ତମାନ ରହିବା ସୁବିଧା ହେବନି । ତେଣୁ ସବୁଦିନ ମୋ ଗାଡିରେ ସକାଳ ସାତଟାରେ ନେଇଯିବି ଏବଂ ରାତି ଆଠଟା ବେଳେ ଆପଣଙ୍କୁ ଘରେ ଛାଡିଦେବି । ମୁଁ ସେଥିରେ ରାଜି ହୋଇଗଲି । ସେହି ଅନୁସାରେ ମୋତେ ଆସନ୍ତା ଦିନ ସକାଳେ ପ୍ରସ୍ତୁତ ହୋଇ ରହିବାକୁ ପଡିବ । ଶ୍ରୀମତୀ କହିଲେ,ଖାଇବା ଜିନିଷ ଗରମ ରଖିବା ପାତ୍ରରେ ସକାଳୁ ରାନ୍ଧିକରି ଦେଇଦେବି । ତମେ ବାହାର ଖାଦ୍ୟ ନଖାଇ ଏହି ଖାଦ୍ୟ ଖାଇବ । ଏହା ଠିକ୍ ହେଲା ପରେ ତା ପର ଦିନ ସକାଳୁ ଗାଡି ନେଇକରି ଆସିଲେ । ମୁଁ ଗାଡିରେ ଗଲି ଏବଂ ସାଇନ୍‌ସ ଆଣ୍ଡ ଟେକ୍‌ନୋଲୋଜି ଇନ୍‌ଷ୍ଟିଚ୍ୟୁଟ୍‌ରେ ପହଞ୍ଚିଲି । ସାଇନ୍‌ସ ଆଣ୍ଡ ଟେକ୍‌ନୋଲୋଜି ଇନ୍‌ଷ୍ଟିଉଟ୍‌ରେ ପହଞ୍ଚିଲି । ସାଇନ୍‌ସ ଆଣ୍ଡ ଟେକ୍‌ନୋଲୋଜି ଘରର ଅବସ୍ଥା ଦେଖି ମୋ ମନ ଖରାପ ହୋଇଗଲା । ସେ ଘର ଗୁଡିକ ସ୍କୁଲର ଚାରୋଟି ବଖରା ଇନ୍‌ଷ୍ଟିଚ୍ୟୁଟ୍‌କୁ ଅଳ୍ପ କେତେ ଦିନ ପାଇଁ ଦେଇଥିଲେ । ୩/୪ ଦିନ ପରେ ପ୍ରତିଦିନ ୨୦୦ କିଲୋମିଟର ଯିବା ଆସିବା କରିବାରୁ ମୋ ଦେହ ଦୁର୍ବଳ

ଲାଗିଲା । ତେଣୁ ମୁଁ ଡକ୍ଟର ସାମନ୍ତରାୟଙ୍କୁ ଦିନେ ଛାଡି ଦିନେ ଯିବାକୁ କହିଲି । ସେ ମଧ୍ୟ ରାଜି ହୋଇଗଲେ । ତେଣୁ ଏହିପରି ଭାବରେ ସେପ୍ଟେମ୍ବର ୨୦ ତାରିଖ ପର୍ଯ୍ୟନ୍ତ ଚାଲିଥାଏ । ୨୦ ତାରିଖ ଦିନ କୌଣସି ଅସୁବିଧା ହେବାରୁ ମୁଁ ସେଦିନ ପି.ଡବ୍ଲ୍ୟୁ.ଡି ଅତିଥି ଭବନରେ ରାତିରେ ରହିଲି । ସକାଳୁ ଉଠି କିଛି ଦୂର ଯାଇ ଚା ଏବଂ ଜଳଖିଆ ଖାଇ ଫେରିବା ପରେ ମୁଁ ଜାଣିବାକୁ ପାଇଲି ପୂର୍ବଦିନ ରାତିରେ କିଛି ଗୋଟାଏ ଅପ୍ରୀତିକର ପରିସ୍ଥିତି ସୃଷ୍ଟି ହୋଇଛି । ତାର କିଛି ସମୟ ପରେ କେତେ ଜଣ ଗାଁ ଲୋକ ମୋ ସାଙ୍ଗରେ ଡାକ ବଙ୍ଗଳାରେ ଦେଖା କଲେ ଏବଂ କହିଲେ ଡକ୍ଟର ସାମନ୍ତରାୟଙ୍କ ଭାଇ ଜଣେ ପିଲାକୁ ବାଡେଇଛନ୍ତି । ଡକ୍ଟର ସାମନ୍ତରାୟଙ୍କ ଭାଇକୁ ମୁଁ ଚିହ୍ନି ନଥିଲି । ମୁଁ ଗାଁ ଲୋକମାନଙ୍କୁ ବୁଝାଇ ଦେଲି, ମୋର ସେଥିରେ କିଛି କରିବାର ନାହିଁ । କାରଣ ଯିଏ ବାଡେଇଛନ୍ତି ସିଏ କଲେଜ ସହିତ ସଂପୃକ୍ତ ନୁହଁନ୍ତି କିମ୍ବା ଯିଏ ମାଡ ଖାଇଛନ୍ତି, ସିଏ ମଧ୍ୟ କଲେଜ ସହିତ ସଂପୃକ୍ତ ନୁହଁନ୍ତି । ଗ୍ରାମବାସୀ ମାନେ କହିଲେ ସେ ହୋଇଛନ୍ତି ଡକ୍ଟର ସାମନ୍ତରାୟଙ୍କ ଭାଇ । ଡକ୍ଟର ସାମନ୍ତରାୟଙ୍କ ଭାଇ ବାଡେଇଲେ । ପୋଲିସ୍ କଣ ଡକ୍ଟର ସାମନ୍ତରାୟଙ୍କୁ ଗିରଫ କରି ପାରିବ ? ଲୋକମାନେ ବୁଝିଗଲେ ଏବଂ ଚାଲିଗଲେ । ଏହି ସମୟରେ କଥାଟା କଣ ହୋଇଛି ମୁଁ ଜାଣି ଗଲି । ତାହାର ସତ୍ୟତା ଜାଣି ପାରିଲି ନାହିଁ । ତେଣୁ ସେ ବିଷୟରେ ମୁଁ ଏଠାରେ କିଛି ଲେଖୁ ନାହିଁ । ମୋ ଦୂର ଦୃଷ୍ଟିରୁ ମୁଁ ଜାଣି ପାରିଲି, କଲେଜରେ ଆଜି ଗୋଟାଏ ବଡ ଧରଣର ଗୋଳମାଳ ହେବ । ତେଣୁ ମୁଁ କଲେଜକୁ ଅନିର୍ଦ୍ଦିଷ୍ଟ କାଳ ପାଇଁ ବନ୍ଦ ରହିଲା ବୋଲି ଘୋଷଣା କରିଦେଲି ଏବଂ ମୋ ଘୋଷଣାଟା ସରକାରୀ ଅଫିସରଙ୍କ ପାଖକୁ ପଠାଇ ଦେଲି । ଦଶଟା ବେଳେ ଗୋଟାଏ ବସ୍‌ରେ ବସି ଦଶପଲ୍ଲା ଚାଲିଗଲି । ଦଶପଲ୍ଲାରେ ଆଉ ଗୋଟାଏ ବସ୍‌ରେ ବସି ଭୁବନେଶ୍ୱର ଚାଲି ଆସିଲି । ସେଠାର ଅବସ୍ଥା ଧିରେ ଧିରେ ଶାନ୍ତ ପଡିଗଲା ଏବଂ ବଡ ଦିନ ଛୁଟି ପାଇଁ କଲେଜ ବନ୍ଦ ହୋଇଗଲା ।

ଏହି ସମୟରେ କଲେଜର ସେକ୍ରେଟାରୀ ଯିଏ କି ରାମଚନ୍ଦ୍ର ସାନ୍ତରାୟଙ୍କ ଭାଇ ସେ ଆସି ମୋ ସାଙ୍ଗରେ ଦେଖାକଲେ । ମୁଁ ତାଙ୍କୁ କହିଲି, କଲେଜଟି ଉଠାଇ ଆଣି ଖୋର୍ଦ୍ଧାରେ କେଉଁଠାରେ କରାଯାଉ । ତେଣୁ ସେକେଟାରୀ ଖୋର୍ଦ୍ଧାରେ ଅଧ୍ୟାପକମାନଙ୍କୁ ଉପସ୍ଥିତ ରହିବା ପାଇଁ ନିମନ୍ତ୍ରଣ କଲେ । କଲେଜ ଖୋର୍ଦ୍ଧାକୁ ଘୁଞ୍ଚାଇବା ପାଇଁ କୌଣସି ପ୍ରକାରେ ଆଲୋଚନା ହେଲାନାହିଁ କି କୌଣସି ସିଦ୍ଧାନ୍ତରେ ପହଞ୍ଚି ପାରିଲୁ ନାହିଁ । ତେଣୁ ମୁଁ ସେକେଟାରୀଙ୍କୁ କହିଲି, ଯଦି କଲେଜ ଖୋର୍ଦ୍ଧାରେ ନହୁଏ ତାହେଲେ ମୁଁ ଆଉ କାର୍ଯ୍ୟରେ ଯୋଗ ଦେବି ନାହିଁ । ସେକ୍ରେଟାରୀ ଆଉ ମୋତେ ବାଧ୍ୟ କରି ନାହାଁନ୍ତି । ତାର କେତେ ଦିନ ପରେ ଡକ୍ଟର ସାମନ୍ତରାୟ ଆମେରିକାରୁ ମୋ ପାଖକୁ ଫୋନ୍‌ରେ କହିଲେ, ଆପଣ କାର୍ଯ୍ୟରେ ଯୋଗ ଦିଅନ୍ତୁ ମୁଁ ସବୁ ସୁବିଧା କରିଦେବି । ମୁଁ ତାଙ୍କୁ ଉତ୍ତରରେ କହିଲି, ମୋର ଅନନ୍ତପୁର ଯିବାର ଅଛି । ୮/୧୦ ଦିନ ପରେ ଫେରିବି । ତାପରେ ମୁଁ ଯୋଗଦେବା କଥା ଜଣାଇବି । ମୁଁ ମନେ ମନେ ଠିକ୍ କରିଥିଲି ଯଦି ଗଣିଆଠାରେ କଲେଜ ଠିକ୍ ଚାଲେ ତାହେଲେ ପୁଣି ଯୋଗଦେବି ।

ଗଣିଆରେ ଅଧ୍ୟକ୍ଷ ଥିବା ବେଳେ ଆଇ.ଏ.ପି.ଟି.ର ସଭାପତି ଡକ୍ଟର ଖଣ୍ଡେଲୱାଲ୍‌ଙ୍କ ଠାରୁ ଗୋଟିଏ ଚିଠି ପାଇଲି । ସେଥିରେ ଲେଖାଥିଲା ଆପଣ ଆଇ.ଏ.ପି.ଟି.ର ଉପସଭାପତି ଭାବରେ ସଭ୍ୟମାନଙ୍କ ଦ୍ୱାରା ନିର୍ବାଚିତ ହୋଇଛନ୍ତି ।

## ଆଇ.ଏ.ପି.ଟି.ର କର୍ମଶାଳାରେ ଯୋଗଦାନ, ଅନନ୍ତପୁର

ତେଣୁ ଆପଣ ସେକ୍ରେଟାରୀଙ୍କ ଠାରୁ କାର୍ଯ୍ୟ ପରିଚାଳନା ସଭାର ଦିନ ଏବଂ ସ୍ଥାନ ବିଷୟରେ ଖବର ପାଇ ପାରିବେ ଏବଂ ମୁଁ ଅନୁରୋଧ କରୁଛି ଆଇ.ଏ.ପି.ଟି.ର ଗୋଟିଏ ୱାର୍କସପ୍ ଅନନ୍ତପୁରରେ ହେଉଛି ଆପଣ ସେଥିରେ ରିସୋର୍ସ (Resource) ବ୍ୟକ୍ତି ଭାବରେ ଯୋଗ ଦିଅନ୍ତୁ । ମୁଁ ତାଙ୍କୁ ଯୋଗ ଦେବି ବୋଲି ଜଣାଇ ଦେଲି । କିନ୍ତୁ ଅନନ୍ତପୁର କେଉଁଠାରେ ଅବସ୍ଥିତ ସେଠାକୁ କିପରି ଯାଇହେବ ମୁଁ ଜାଣି ନ ଥିଲି । ବୁଝାବୁଝି କରି ଜାଣିଲି ସେଠାକୁ ଯିବାକୁ ଦୁଇଟି ରାସ୍ତା ଅଛି । ଗୋଟିଏ ରାସ୍ତାରେ ସିକନ୍ଦରାବାଦ ପର୍ଯ୍ୟନ୍ତ ଯାଇ ଗାଡି ପରିବର୍ତ୍ତନ କରି ଅନନ୍ତପୁର ପାଖରେ ଗୋଟିଏ ଷ୍ଟେସନ୍‌ରେ ଓହ୍ଲାଇବ । ସେଠାରୁ ଅନନ୍ତପୁର ଅଟୋରିକ୍ସାରେ ଯାଇହେବ । ଆଉ ଗୋଟିଏ ବାଟ ହେଲା ବାଙ୍ଗାଲୋର ଯାଇ ବାଙ୍ଗାଲୋରରୁ ବସ୍‌ରେ ବସି ଚାରି ପାଞ୍ଚ ଘଣ୍ଟା ପରେ ଅନନ୍ତପୁରରେ ପହଞ୍ଚ୍ୁହେବ । ମୁଁ ବାଙ୍ଗାଲୋର ବାଟେ ଯିବାକୁ ସ୍ଥିର କଲି । ନିର୍ଦ୍ଦିଷ୍ଟ ତାରିଖ ଦିନ ହାଓଡା ମାଡ୍ରାସ ବାଙ୍ଗାଲୋର ବାଟେ ଗଲି । ବାଙ୍ଗାଲୋରରେ ସକାଳ ପାଞ୍ଚଟା ବେଳେ ପହଁଞ୍ଚିଲି । ବସ୍ ଷ୍ଟାଣ୍ଡକୁ ଯାଇ ଅନନ୍ତପୁରରେ ଦିନ ବାରଟା ବେଳେ ପହଞ୍ଚିଲି । ସେଠାରୁ ରିକ୍ସା କରି ଅନନ୍ତପୁରରେ ଥିବା କଲେଜକୁ ଗଲି । ମୁଁ ସେହିଦିନ ଅନନ୍ତପୁରରେ ପହଞ୍ଚିବି ବୋଲି ଡକ୍ଟର ଖଣ୍ଡେଲୱାଲ ଫିଜିକ୍ସ ପ୍ରଫେସରଙ୍କ ପାଖକୁ ଜଣାଇ ଦେଇଥିଲେ । ମୁଁ ପହଞ୍ଚି ଅତିଥି ଭବନରେ ରହିଲି ଏବଂ କହିଲି,ମୋ ପାଇଁ ଗୋଟିଏ ଫେରିବା ଟିକେଟ ସଂରକ୍ଷିତ କରିଦିଅ । ସେ ସିକନ୍ଦରାବାଦ ଦେଇ ଇଷ୍ଟକୋଷ୍ଟ ଏକ୍ସପ୍ରେସ୍‌ରେ ଟିକେଟ୍ କରିଦେଲେ । ଅନନ୍ତପୁରରେ ମୋତେ ନୂଆ ନୂଆ ପରୀକ୍ଷା କରିବା ବିଷୟରେ ଗୋଟିଏ ଭାଷଣ ଦେବାକୁ ପଡିଲା । ୱାର୍କସପ୍ ସରିବା ଶେଷ ଦିନ ମୋତେ ଷ୍ଟେସନ୍‌ରେ ଗାଡିରେ ବସାଇ ଦେଲେ । ମୁଁ ସକାଳୁ ସିକନ୍ଦରାବାଦରେ ପହଞ୍ଚିଲି । ଇଷ୍ଟକୋଷ୍ଟ ଏକ୍ସପ୍ରେସରେ ଆସିବା ପାଇଁ ମୋର ସଂରକ୍ଷିତ ସ୍ଥାନ ମିଳି ନ ଥିଲା । କିନ୍ତୁ କଣ୍ଡକ୍ଟରଙ୍କୁ ଦେଖାକରି ଶୋଇବା ଯାଗା ସଂରକ୍ଷଣ କରିଦେଲି । ତା ପର ଦିନ ସକାଳେ ଆସି ଭୁବନେଶ୍ୱରରେ ପହଞ୍ଚିଲି ।

ପହଞ୍ଚିବାର ଅଳ୍ପ କେତେଦିନ ପରେ ଶ୍ରୀ ରାମଚନ୍ଦ୍ର ସାଇନ୍ସ ଟେକ୍‌ନୋଲୋଜିର ସେକ୍ରେଟାରୀ ଏବଂ ଡକ୍ଟର ଶରତ ଚାଟାର୍ଜୀ ମୋତେ ଅନୁରୋଧ କଲେ କାର୍ଯ୍ୟରେ ଯୋଗ ଦେବାପାଇଁ । ତେଣୁ ମୁଁ କାର୍ଯ୍ୟରେ ଯୋଗ ଦେଲି ଏବଂ ସେଠାରେ ଗୋଟାଏ ଭଡା ଘର ଯୋଗାଡ କରି ସେ ଘରେ ୪/୫ ଦିନ ରହି ଶନିବାର ଦିନ ଭୁବନେଶ୍ୱର ଆସେ ଓ ପୁଣି ସୋମବାର ଦିନ ଯାଏ । ଏହିପରି ଭାବରେ ଗୋଟିଏ ମାସ କଟିଗଲା । ମୋର ସେଠାରେ ଅନୁଭୂତି ହେଲା ସେକ୍ରେଟାରୀ ଯାହା କୁହନ୍ତି ତାହା କାମରେ କରନ୍ତି ନାହିଁ । ଉଦାହରଣ ସ୍ୱରୂପ ପିଲାମାନେ କହିଲେ ଲାଇବ୍ରେରୀରେ ବହିନାହିଁ । ସେକ୍ରେଟାରୀ ପିଲାଙ୍କୁ ଉତ୍ତର ଦେଲେ ଅଧ୍ୟକ୍ଷ

ବହି ତାଲିକା ଦେଇଦେଲେ ମୁଁ ବହି କିଣିଦେବି । ତାପରେ ପିଲାମାନେ ଦାବିକଲେ ଗୋଟିଏ ପରିଶ୍ରାଗାର ନିର୍ମାଣ କରିବା ପାଇଁ । ସେକ୍ରେଟାରୀ ମୋ ଆଗରେ ପିଲାଙ୍କୁ କହିଲେ, ଅଧ୍ୟକ୍ଷ ଗୋଟିଏ ଏଷ୍ଟିମେଟ୍ ଦେଇଦେଲେ ମୁଁ କରାଇ ଦେବି । ନହେଲେ ମୁଁ ଅଧ୍ୟକ୍ଷଙ୍କୁ ଟଙ୍କା ଦେଇଦେବି ସେ କରାଇ ଦେବେ । ୧୫/୨୦ ଦିନ ପରେ ବହି କିଣା ହେଲା ନାହିଁ କି ପରିଶ୍ରାଗାର ତିଆରି କରାଗଲା ନାହିଁ । ତେଣୁ ପିଲାମାନେ ମୋ ଆଗରେ କହିଲେ, ମୁଁ ସେକ୍ରେଟାରୀଙ୍କୁ କହିଲି,ବହି ଆଣି ବିଲ୍ ଦେଇ ଦେଉଛି ଆପଣ ଟଙ୍କା ଦେଇଦେବେ । ସେ ମଧ୍ୟ ମୋତେ ନାହିଁ କଲେ ଏବଂ କହିଲେ ମୁଁ ଆଣିବି । ଆଉ ଗୋଟିଏ ଘଟଣା ହେଲା କଲେଜରେ ଦୁଇଟା ଜିପ୍ ଥାଏ । ତାହା ମୁଁ ଜାଣି ନଥିଲି । ମାସର ଶେଷରେ ଗାଡ଼ିର ଡିଜେଲ୍ ଖର୍ଚ୍ଚ ବାବଦକୁ ୯୦୦ ଟଙ୍କାର ଗୋଟିଏ ଡିଜେଲ୍ ଖର୍ଚ୍ଚର ହିସାବ ମୋତେ ଦେଲେ ଏବଂ କଲେଜ ଟଙ୍କାରୁ ଏ ଟଙ୍କାଟା ଦେଇଦେବାକୁ ମୋତେ କହିଲେ । ମୁଁ ସେକ୍ରେଟାରୀଙ୍କୁ ଲଗ୍‌ବୁକ୍ ମାଗିଲି, ଲଗ୍‌ବୁକ୍ ତ ନ ଥିଲା । ତେଣୁ ସେ ଦେଇ ପାରିଲେ ନାହିଁ । ମୁଁ ଆଉ ବିଲ୍ ପାସ୍ କଲି ନାହିଁ । ତାର ୩/୪ ଦିନ ପରେ ମୋତେ ଅନୁରୋଧ କଲେ ଏଥର ବିଲଟା ପାସ୍ କରିଦିଅନ୍ତୁ । ଆର ଥରକୁ ସବୁ ଠିକ୍ ହୋଇଯିବ । ଆଉ ମାସେ ପରେ ମଧ୍ୟ ସେଇଆ ହେଲା । ମୁଁ ତାପରେ ସେକ୍ରେଟାରୀଙ୍କୁ କହିଲି, ଗାଡ଼ିଟା ଆପଣଙ୍କ ଜିମାରେ ରଖି ଦିଅନ୍ତୁ । ଆପଣ ବିଲ୍ ପାସ୍ କରିଦେବେ । ମୁଁ ସେ ବିଲ୍‌ରେ ଦସ୍ତଖତ କରିବି ନାହିଁ । ମୁଁ ଏହି ବିଷୟରେ ଫୋନ୍‌ରେ ଡକ୍ଟର ସାମନ୍ତରାୟଙ୍କ ସହିତ କଥାବାର୍ତ୍ତା ହେଲି । ସେ ମଧ୍ୟ ମୋ କଥାରେ ଏକମତ ହେଲେ । କିନ୍ତୁ କୌଣସି କାର୍ଯ୍ୟାନୁଷ୍ଠାନ କଲେ ନାହିଁ । ସରସ୍ୱତୀ ପୂଜା ଦିନ ସେକ୍ରେଟାରୀ ମୋତେ ମନା କରିଥିଲେ, କଲେଜରେ ପୂଜା ହେବନାହିଁ । ମୁଁ ତାଙ୍କ କଥାରେ ଏକମତ ହେଲି ନାହିଁ । ମୁଁ ତାଙ୍କ କଥା ନମାନି ପିଲାଙ୍କୁ ପୂଜା କରିବା ପାଇଁ ଅନୁମତି ଦେଇଦେଲି । ଏହି ଘଟଣାରେ ମୋର ସନ୍ଦେହ ହେଲା । ମୁଁ ଅନୁସନ୍ଧାନ କରି ଜାଣିଲି,କଲେଜ ଚଳିବା ପାଇଁ ଟଙ୍କା ଆମେରିକାରୁ ଡଲାର ହିସାବରେ ଆସୁଛି । ମୋର ସନ୍ଦେହ ହେଲା କୌଣସି ମନ୍ଦ ଉଦ୍ଦେଶ୍ୟ ରଖି ଏପରି ଟଙ୍କା ଆସୁନାହିଁ ତ ? ହଠାତ୍ ଅପ୍ରେଲ ମାସ ପ୍ରଥମ ସପ୍ତାହରେ କଲେଜ ଆକାଉଣ୍ଟରୁ କିଛି ଟଙ୍କା ଉଠାଇବା ପାଇଁ ଚେକ୍ ଦେଲି । ସେ ଚେକ୍‌ଟା ନିଜେ ମ୍ୟାନେଜର ଧରି ମୋ ପାଖକୁ ଆସିଲେ ଏବଂ କହିଲେ,ଆପଣ ଦିନକୁ ୨୫୦ ଟଙ୍କାରୁ ବେଶୀ ଉଠାଇ ପାରିବେ ନାହିଁ ବୋଲି ସେକ୍ରେଟାରୀ ବ୍ୟାଙ୍କକୁ ଜଣାଇଛନ୍ତି । ସେହି ମ୍ୟାନେଜରଙ୍କୁ ହସି କରି କହିଲି,ଖଲ୍ଲିକୋର୍ଟ କଲେଜର ଅଧ୍ୟକ୍ଷ ଥିଲାବେଳେ ଦିନକୁ ଦୁଇ ଲକ୍ଷ ପର୍ଯ୍ୟନ୍ତ ଉଠାଉ ଥିଲି । ତାପରେ ମୁଁ କହିଲି,ଆପଣ ଯାହା କହିଲେ ଲେଖିକରି ଦିଅନ୍ତୁ । ତାପରେ ମୁଁ ଯାହା କରିବାର କରିବି । ସେ ମଧ୍ୟ ଲେଖିକରି ଦେଲେ ନାହିଁ । କିନ୍ତୁ ସେକ୍ରେଟାରୀଙ୍କୁ ପଚାରି ଟଙ୍କାଟା ମୋତେ ଦେଇଦେଲେ । ମୁଁ ସେହିଦିନ ଇଚ୍ଛା କଲି ଅଧ୍ୟକ୍ଷ ପଦଟି ଛାଡ଼ିଦେବି । ମୁଁ ଘରକୁ ଆସିଲା ପରେ ଯାହା ମନେ ପଡୁଛି ଏପ୍ରିଲ୍ ୧୩ ତାରିଖ ଦିନ ସେକ୍ରେଟାରୀଙ୍କ ପାଖକୁ ଲେଖିଦେଲି, ଆସନ୍ତା ୧୩ ତାରିଖ ମଧ୍ୟରେ ଆଉ ଜଣେ ଅଧ୍ୟକ୍ଷ ନିଯୁକ୍ତ କରନ୍ତୁ । ସେହି ମାସଟା ମୁଁ ଅଧ୍ୟକ୍ଷ ହିସାବରେ କାମ ଚଳାଉଛି । କିନ୍ତୁ ମୁଁ ଦରମା ନେବା ପାଇଁ ମନା କରିଦେଲି ।

ଏହା ଭିତରେ ଡିପାର୍ଟମେଣ୍ଟ ଅଫ୍ ସାଇନ୍ସ ଆଣ୍ଡ ଟେକ୍ନୋଲୋଜିର ଡକ୍ଟର ପ୍ରବୀର ଆସ୍ଥାନା (ସିନିୟର ସାଇନ୍‌ଟିଫିକ୍ ଅଫିସର)ଙ୍କ ଠାରୁ ଗୋଟିଏ ଚିଠି ପାଇଲି । ସେଥିରେ ଲେଖାଥିଲା ଆପଣଙ୍କ ପରିଯୋଜନା ୧୯୯୦ରୁ ସରି ଯାଇଛି । ୧୯୯୧ରେ ଏକ୍ସପେରିମେଣ୍ଟ ଅଫ୍ ପ୍ଲାଜମା ଫିଜିକ୍ସ ନାମକ ଗୋଟିଏ ବହି ଛପାଇବା ନିମନ୍ତେ ଆପଣଙ୍କୁ ୨୨ ହଜାର ଟଙ୍କା ଅନୁଦାନ ଦିଆଯାଇ ଥିଲା । ଆପଣ ନିର୍ଦ୍ଦିଷ୍ଟ ତାରିଖରେ ଆସି ପରିଯୋଜନାର ଅନୁଦାନ କାର୍ଯ୍ୟ ପରିଚାଳନା ସମିତିରେ (Committee) ଉପସ୍ଥିତ ହେବେ ଏବଂ କଣ ସବୁ କାମ କରିଛନ୍ତି ତାହା ସଭ୍ୟମାନଙ୍କୁ ବୁଝାଇ ଦେବେ । ନିର୍ଦ୍ଦିଷ୍ଟ ତାରିଖଟି ପରେ ଜଣାଇବି ।

## ଡିପାର୍ଟମେଣ୍ଟ ଅଫ୍ ସାଇନ୍ସ ଆଣ୍ଡ ଟେକ୍ନୋଲୋଜିର ସମୀକ୍ଷା ବୈଠକରେ ଯୋଗଦାନ

୧୯୯୩ ମସିହାର ପ୍ରଥମ ଭାଗରେ "ଡିପାର୍ଟମେଣ୍ଟ ଅଫ୍ ସାଇନ୍ସ ଆଣ୍ଡ ଟେକ୍ନୋଲୋଜି" ମୋତେ ସମୀକ୍ଷା ବୈଠକରେ ଯୋଗ ଦେବା ପାଇଁ ଡାକିଥିଲେ । ସେହି ବୈଠକଟି ଇନ୍ଦୋର ଠାରେ 'ସେଣ୍ଟର ଅଫ୍ ଆଡଭାନ୍ସ ଟେକ୍ନୋଲୋଜି' (ସି.ଏ.ଟି) ଠାରେ ହେବ ବୋଲି ଜଣାଇ ଦିଆଯାଇ ଥାଏ । ଡି.ଏସ୍.ଟି.ର ଏହି ସମୀକ୍ଷା ବୈଠକରେ ଯେଉଁମାନଙ୍କୁ କୌଣସି ପରିଯୋଜନା ଉପରେ ଅନୁଦାନ ଦିଆଯାଇ ଥାଏ, ସେହିମାନଙ୍କୁ ଡକାଯାଇ ସେମାନେ ପରିଯୋଜନା ଉପରେ କଣ ସବୁ କାମ କରିଛନ୍ତି ତାହାର ସବୁ ପୁଙ୍ଖାନୁପୁଙ୍ଖ ଆଲୋଚନା କରାଯାଏ । ମୋର ପରିଯୋଜନାଟି ୧୯୯୦ରେ ସରି ଯାଇଥିଲା ଏବଂ ୧୯୯୧ରେ ଏକ୍ସପେରିମେଣ୍ଟ ଅନ୍ ପ୍ଲାଜମା ଫିଜିକ୍ସ ନାମକ ଗୋଟିଏ ପୁସ୍ତକ ଲେଖିବା ପାଇଁ ୨୨ ହଜାର ଟଙ୍କା ଅନୁଦାନ ଦିଆଯାଇ ଥିଲା । ଏଥିପାଇଁ ୧୯୯୩ ରେ ସମୀକ୍ଷା ବୈଠକରେ ସେ ବହିରେ ଲେଖାଥିବା କେତେକ ବିଷୟରେ ସମୀକ୍ଷା କରିବା ପାଇଁ ମୋତେ ଡକା ହୋଇଥିଲା । ନିର୍ଦ୍ଦିଷ୍ଟ ଦିନଟି ମୋର ମନେ ନାହିଁ । ମୁଁ ନିର୍ଦ୍ଦିଷ୍ଟ ଦିନର ପୂର୍ବଦିନ ଖରାବେଳେ ଇନ୍ଦୋର ଷ୍ଟେସନ୍‌ରେ ପହଞ୍ଚିଲି । ସେଠାରେ ଆଉ କେତେଜଣ ଅଧ୍ୟାପକ ଭାରତର ବିଭିନ୍ନ ସ୍ଥାନରୁ ଆସିଥିଲେ । ସେଠାରେ ସମୀକ୍ଷା ବୈଠକ ଦୁଇ ଦିନ ଚାଲିଲା । ମୋତେ କେତେକ ପ୍ରଶ୍ନ ମୋ କାମ ଉପରେ ପଚାରି ଥିଲେ । ମୁଁ ଯଥାସାଧ୍ୟ ଉତ୍ତର ଦେଲି । ଦ୍ୱିତୀୟ ଦିନ ସମୀକ୍ଷା ବୈଠକ ସରିଲା ପରେ ଯୋଗ ଦେଇଥିବା ବୈଜ୍ଞାନିକ ଓ ସମୀକ୍ଷକ ମାନଙ୍କ ପାଇଁ ଡି.ଏସ୍.ଟି ତରଫରୁ ଗୋଟିଏ ରାତ୍ରି ଭୋଜନର ବ୍ୟବସ୍ଥା କରାଯାଇ ଥିଲା । ସେଥିରେ ଜଣେ ସମୀକ୍ଷକ ଡକ୍ଟର ଏଚ୍.ସି.ପନ୍ତ ମୋତେ ଅନୁରୋଧ କଲେ ଆସନ୍ତୁ ଟିକେ ଡ୍ରିଙ୍କ୍ କରିବା, ଡ୍ରିଙ୍କର ବନ୍ଦୋବସ୍ତ ହୋଇଛି । ସେ ଆଗରୁ ମୋର ଖୁବ୍ ପରିଚିତ । କାରଣ ସେ ଡକ୍ଟର ପ୍ରତିଭା ମିଶ୍ରଙ୍କ ପି.ଏଚ୍.ଡି ମୌଖିକ ପରୀକ୍ଷାକୁ ଭୁବନେଶ୍ୱର ଆସିଥିଲେ ଏବଂ ଆମ ଘରେ ଦିନେ ରାତ୍ରି ଭୋଜନ କରିଥିଲେ । ମୁଁ ମନାକଲି, ମୁଁ କେବେ ପିଇନାହିଁ । କିନ୍ତୁ ମୁଁ ଆପଣଙ୍କ ସଙ୍ଗେ ଯୋଗ ଦେଇ ପାରିବି । ସେ ହସିଲେ କହିଲେ, ଆପଣ ଏମିତି ପୁରୁଣା କାଳିଆ ଲୋକ ଭଳି ହେଉଛନ୍ତି । ତାପରେ ପ୍ରଶ୍ନ କଲେ ଆପଣ ଚିକେନ୍ ଖାଇବେ ତ ? ମୁଁ ହଁ କଲି, ତାପରେ ଆମେ ସମସ୍ତେ ଖାଇବା କୋଠରୀର ପାଖ କୋଠରୀକୁ

ଗଲୁ । ସମସ୍ତେ ଡ୍ରିଙ୍କ୍ କଲେ । ମୋତେ କମଳା ରସ ପିଇବାକୁ ଦିଆଗଲା ଓ ପରେ ରାତ୍ର ଭୋଜନର ବ୍ୟବସ୍ଥା କରାଯାଇ ଥିଲା ।

ମୁଁ ଆଗରୁ ଜାଣିଥିଲି ଇନ୍ଦୋର ଠାରୁ ଆସି ବିନାଠାରେ ଉତ୍କଳ ଏକ୍ସପ୍ରେସ ଧରିବା ବଡ କଷ୍ଟକର ବ୍ୟାପାର । ତେଣୁ ମୁଁ ଠିକ୍ କଲି ବମ୍ବେ ବାଟେ ଯିବି ଏବଂ ଗୋଟିଏ ସ୍ଲିପର ଟିକେଟ କରିଦେବା ଲାଗି ଡକ୍ଟର ପନ୍ଥଙ୍କୁ କହିଲି । ସେ କହିଲେ, ଆଉ ୨/୩ ଜଣ ଅଧ୍ୟାପକ ଇନ୍ଦୋର ଠାରୁ ବମ୍ବେ ଯାଉଛନ୍ତି । ମୁଁ ସେମାନଙ୍କ ସହିତ ଗୋଟିଏ ଟିକେଟ କରିଦେବି । ସେଦିନ ରାତିରେ ଆମେ ସାଙ୍ଗ ହୋଇ ଇନ୍ଦୋର ଠାରୁ ବମ୍ବେ ଅଭିମୁଖେ ଯାତ୍ରା କଲୁ । ଯେଉଁମାନେ ମୋ ସାଙ୍ଗରେ ଯାଉଥିଲେ ସେମାନେ ସମସ୍ତେ ଏହି ସମୀକ୍ଷା ବୈଠକକୁ ଆସିଥିଲେ । କିଛି ବାଟ ଗଲାପରେ ପୁନା ବିଶ୍ୱବିଦ୍ୟାଳୟର ଜଣେ ଅଧ୍ୟାପିକା ମୋତେ କହିଲେ, ମୁଁ ପ୍ଲାଜମା ଏକ୍ସପେରିମେଣ୍ଟ ଉପରେ ଗୋଟିଏ ବହି ଦେଖିଛି । ସେ ବହିଟା ଖୁବ୍ ଭଲ ହୋଇଛି । ସେ ବହିଟିକୁ ଡି.ଏସ୍.ଟି ଛପାଇଛି । ସେ ବହିଟା ଆପଣଙ୍କର ବହୁତ ଦରକାରରେ ଆସିବ । କାରଣ ଆପଣ ପ୍ଲାଜମା ଫିଜିକ୍ସରେ ଗବେଷଣା କରୁଛନ୍ତି । ସେ ବହିରୁ ଖଣ୍ଡେ ମୁଁ ଖୋଜୁଛି, କିନ୍ତୁ ପାଉନାହିଁ । ତାଙ୍କଠାରୁ ଏକଥା ଶୁଣିଲା ପରେ ମୁଁ ଜାଣିଲି ଯେ ମୁଁ ଲେଖିଥିବା ବହି ବିଷୟରେ ସେ ମୋତେ କହୁଛନ୍ତି । ମୁଁ କହିଲି ଗୋଟିଏ ବହି ମୁଁ ଲେଖିଛି ଏବଂ ତାକୁ ଡି.ଏସ୍.ଟି ଛପାଇଛନ୍ତି । ସେ କହିଲେ ଆପଣଙ୍କ ପାଖରେ ସେ ବହି ଅଛି କି ମୋତେ ଖଣ୍ଡିଏ ଦେବେ ? ମୁଁ କହିଲି ହଁ । ତାର କିଛି ସମୟ ପରେ ସେ ବହିଟି ମୁଁ ସୁଟ୍‌କେଶ ଭିତରୁ କାଢି ତାଙ୍କୁ ଦେଖାଇଲି ଏବଂ ପଚାରିଲି ଆପଣ ଏହି ବହି କଥା କହୁଥିଲେ ତ ? ସେ ହଁ କହିଲେ । ମୁଁ ତାଙ୍କୁ ବହିଟି ଦେଲି ଏବଂ କହିଲି ଆପଣ ବିଶ୍ୱବିଦ୍ୟାଳୟ ଫେରିଗଲେ ମୋ ପାଖକୁ ଗୋଟିଏ ଚିଠିଦେବେ । ଯେ ମୁଁ ବହିଟି ପାଇଲି । ବହିଟି ଆପଣ ପାଇଲେ ବୋଲି ମୋର ଖଣ୍ଡେ ରସିଦ୍ ଦରକାର । ସେ ରସିଦ୍‌ଟା ମୁଁ ଡି.ଏସ୍.ଟିକୁ ପଠାଇବି । ତାପରେ ଆମେ ଅନ୍ୟ ବିଷୟ କଥାବାର୍ତ୍ତା ହୋଇ ଶୋଇଲୁ । ଗାଡି ବମ୍ବେରେ ପହଞ୍ଚିଲା ପରେ କୁର୍ଲାଠାରେ ରହିବାର କଥା । କିନ୍ତୁ ଗାଡିଟି ତାପୂର୍ବ ଷ୍ଟେସନରେ ରହିଲା । ମୁଁ ବୁଝିଲି ଗାଡି ଆଉ କୁର୍ଲା ଯିବ ନାହିଁ । ଗାଡିରୁ ଓହ୍ଲାଇ ପଡିବା ପରେ ଆମେ ଶୁଣିଲୁ କୁର୍ଲାଠାରେ କିଛି ଗଣ୍ଡଗୋଳ ହୋଇଛି । ତେଣୁ ଷ୍ଟେସନକୁ ଗାଡି ଯିବ ନାହିଁ । ତେଣୁ ମୁଁ ଟିକିଏ ବ୍ୟସ୍ତ ହୋଇପଡିଲି । କାରଣ ମୋ ପୁଅ ମୋତେ ନେବା ଲାଗି କୁର୍ଲାଷ୍ଟେସନ୍ ଆସିଥିବ । ପୁନା ବିଶ୍ୱବିଦ୍ୟାଳୟର ଆଉ ଯେଉଁ ତିନି ଚାରି ଜଣ ଥିଲେ ବମ୍ବେରୁ ପୁନା ବସ୍‌ରେ ଯିବେ ବୋଲି ଠିକଣା କଲେ । ବମ୍ବେରେ ବସ୍ ଷ୍ଟାଣ୍ଡକୁ ଯିବାବେଳେ ବାବୁ ସେତେବେଳେ ଯେଉଁଠାରେ ରହୁଥିଲା ସେହି ଘର ପାଖ ଦେଇ ସେମାନେ ଯିବେ । ତେଣୁ ମୁଁ କହିଲି, ବସ୍ ଷ୍ଟାଣ୍ଡ ପୂର୍ବରୁ ମୋତେ ଗୋଟିଏ ସ୍ଥାନରେ ଓହ୍ଲାଇ ଦେବେ । ତେଣୁ ଆମେ ସବୁ ଗୋଟିଏ ଟ୍ୟାକ୍ସି ଭଡା କରି ଗଲୁ । ମୁଁ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ଓହ୍ଲାଇ ଗଲି । ମୁଁ ବାବୁ ଘର କେଉଁଠାରେ ଅଛି ତାହା ଆଗରୁ ଦେଖିଥିଲି । ତେଣୁ ତା ଘରକୁ ଚାଲିଗଲି । ସେତେବେଳେ ବାବୁ ଘରେ ଥିଲା । ମୁଁ ତାକୁ ପଚାରିଲି, ତୁ କାହିଁକି ଷ୍ଟେସନ୍ ଗଲୁନାହିଁ ? ସେ କହିଲା କୁର୍ଲାଠାରେ କର୍ଫ୍ୟୁଜାରି ହୋଇଛି,

ତେଣୁ ମୁଁ ଫେରି ଆସିଲି । ସେ ମୋତେ ପଚାରିଲା, ତୁମେ କେମିତି ଆସିଲ । ମୁଁ ତାକୁ ସବୁ କଥା କହିଲି । ମୁଁ ତାକୁ କହିଲି, ମୋ ପାଇଁ ଗୋଟିଏ ଟିକେଟ୍ ଗୀତାଞ୍ଜଳୀ ଏକ୍ସପ୍ରେସ୍‌ରେ ରାଉରକେଲା ପର୍ଯ୍ୟନ୍ତ ସଂରକ୍ଷଣ କରିଦେ । ସେ ଟିକେଟ୍ କାଟିବା ପାଇଁ ଚାଲିଗଲା ଓ ମୁଁ ତା କୋଠରୀରେ ବିଶ୍ରାମ କଲି । ୨/୩ ଘଣ୍ଟା ପରେ ସେ ଫେରି ଆସିଲା । କହିଲା ତୁମ ଟିକେଟ୍ ଗୀତାଞ୍ଜଳୀରେ ହୋଇଯାଇଛି । ଗାଡ଼ି ବମ୍ବେରୁ ଭୋର ପାଞ୍ଚଟା ବେଳେ ଛାଡ଼ିବ । ତେଣୁ ଆମକୁ ଏଠାରୁ ଭୋର ୪ଟା ବେଳେ ଯିବାକୁ ପଡ଼ିବ । ତାପର ଦିନ ଭୋର ଚାରିଟା ବେଳେ ବାହାରିଲୁ । ଠିକ୍ ସମୟରେ ପହଁଞ୍ଚିଲୁ । କିନ୍ତୁ ବୁଝିଲୁ କୌଣସି କାରଣରୁ ଗାଡ଼ି ଛାଡ଼ିବାରେ ୧୨ ଘଣ୍ଟା ବିଳମ୍ବ ହୋଇଯାଇଛି । ତେଣୁ ଆମକୁ ଉପର ବେଳା ୪ଟା ବେଳେ ଆସି ଷ୍ଟେସନ୍‌ରେ ପହଁଞ୍ଚିବାକୁ ପଡ଼ିବ । ଆମେ ୪ଟା ବେଳେ ଷ୍ଟେସନ୍ ଆସିଲୁ ଏବଂ ମୁଁ ଗାଡ଼ିରେ ବସିଲି । ମୁଁ କହିଲି, ମାମି ଘରକୁ ଫୋନ୍ କରିଦେବୁ ଯେ ମୁଁ ରାଉରକେଲାରେ ସକାଳେ ପହଁଞ୍ଚିବି । ଟ୍ରେନ୍‌ରେ ବସାଇ ଦେଇ ବାବୁ ଚାଲିଗଲା । ମୁଁ ରାଉରକେଲାରେ ଓହ୍ଲାଇ ମାମି ଘରେ ଦିନେ ଦୁଇଦିନ ରହି ଭୁବନେଶ୍ୱର ଆସିଲି ।

ସେତିକି ବେଳେ ମୋର ବଡ ପୁଅ ରଞ୍ଜନ ମିଶ୍ର (ବାବୁ) ସିନେମା ଫଟୋଗ୍ରାଫର ହୋଇ ଅପୂର୍ବ ବୀରଙ୍କର ସହକାରୀ ଭାବରେ କାମ କରୁଥିଲା । ସେହି ସମୟରେ ଥରେ ଅପୂର୍ବ ବୀର ଓଡ଼ିଶାରେ ଆଦି ମିମାଂସା ନାମରେ ଗୋଟିଏ ଓଡ଼ିଆ ସିନେମା ସୁଟିଂ କରିବା ପାଇଁ ଆସିଥିଲେ । ସେହି ସିନେମାରେ ଶ୍ରୀ ମୋହନ ଗୋଖ୍‌ଲେ ଓ ନୀନା ଗୁପ୍ତା କଳାକାର ହିସାବରେ ଅଭିନୟ କରିବା ପାଇଁ ବମ୍ବେରୁ ଆସିଥିଲେ । ଓଡ଼ିଶାରୁ ଶ୍ରୀ ଲଲାଟେନ୍ଦୁ ରଥ ଓ ଶ୍ରୀମତୀ ବିଜୟିନୀ ମିଶ୍ର ମୁଖ୍ୟ ଭୂମିକାରେ ଅଂଶ ଗ୍ରହଣ କରିଥିଲେ । ଶିଶୁ କଳାକାର ହିସାବରେ ତାରାଶଙ୍କର ମିଶ୍ର ସେହି ସିନେମାରେ ଭାଗ ନେଇଥିଲେ । ତାରାଶଙ୍କର ମିଶ୍ର ହେଉଛନ୍ତି ସେଲଫ୍ୟୋକ୍ସ ଅଫିସର ଶ୍ରୀ ସଚ୍ଚି ମିଶ୍ରଙ୍କ ପୁଅ । ସେଥିରେ ମଧ୍ୟ ଓଡ଼ିଶାର ପରିଚିତ କଳାକାର ଶ୍ରୀମତୀ ଗ୍ଲୋରିଆ ମହାନ୍ତି ବୃଦ୍ଧା ଭୂମିକାରେ ଅଭିନୟ କରିଥିଲେ । ଆଦି ମୀମାଂସାର ବିଷୟ ବସ୍ତୁ ଶ୍ରୀ ମହାପାତ୍ର 'ନିଳମଣି' ସାହୁଙ୍କର ଗୋଟିଏ ଲେଖାରୁ ନିଆଯାଇ ଥିଲା । ସେତେବେଳେ ବୁବୁ ଓ ତାର ସହପାଠୀମାନେ ସିନେମା ପ୍ରସ୍ତୁତିରେ ଭାଗ ନେଇଥିଲେ । ସେମାନେ ସେତେବେଳେ ଆମ ତଳ ଘରେ ଗୋଟିଏ ମେସ୍ କରି ରହୁଥିଲେ । ସୁଟିଂ ଚାଲିଥିଲା ବେଳେ ବୁବୁ ଏବଂ ତାର ସାଙ୍ଗମାନେ ସକାଳୁ ଭିଙ୍ଗାରପୁର ଯାଇ ସିନେମା ପ୍ରସ୍ତୁତିରେ ସାହାଯ୍ୟ କରୁଥିଲେ । ଶ୍ରୀ ମୋହନ ଗୋଖେଲ୍ ଏବଂ ନୀନା ଗୁପ୍ତା ହୋଟେଲ୍ ନଟରାଜରେ ରହୁଥିଲେ । ସେମାନେ ଥରେ ଦୁଇଥର ନିମନ୍ତ୍ରିତ ହୋଇ ଆମ ଘରକୁ ରାତ୍ରି ଭୋଜନ ପାଇଁ ଆସିଥିଲେ । ନୀନା ଗୁପ୍ତା ଆମ ଘରୁ ବାହାରି ହୋଟେଲକୁ ଗଲାବେଳେ ମୁହଁରେ ଓଢ଼ଣା ପକାଇ ଯାଉଥିଲେ ଯେପରି ତାଙ୍କୁ କେହି ଚିହ୍ନି ନ ପାରିବେ । ଆଦି ମୀମାଂସା ଆନ୍ତର୍ଜାତିକ ଫିଲ୍ମ ଫେଷ୍ଟିଭାଲରେ ପ୍ରଦର୍ଶିତ ହେବା ପାଇଁ ଉତ୍କୃଷ୍ଟ ବିବେଚିତ ହୋଇଥିଲା । ସେଥିରେ ତାରାଶଙ୍କର ମିଶ୍ର ସର୍ବଶ୍ରେଷ୍ଠ

ଶିଶୁ କଳାକାର ହିସାବରେ ଆନ୍ତର୍ଜାତିକ ସ୍ତରରେ ସମ୍ମାନିତ ହୋଇଥିଲେ । ସେତେବେଳେ ପ୍ଲାଜମନ୍ ମିଶ୍ର ମୋର ସାନ ପୁଅ ଇଂଜିନିୟରିଂ ପଢୁଥିଲା । ମୁଁ ଗୌହାଟୀ ଯିବା ବେଳକୁ ଓଡିଶା ଇଂଜିନିୟରିଂ କଲେଜରୁ ଇଣ୍ଡଷ୍ଟ୍ରିଆଲ ପ୍ରଡକ୍ସନରେ ଏ' ଗ୍ରେଡ୍‌ରେ ପାସ୍ କରି ବାଲେଶ୍ୱର ନିକଟରେ ବାଲଗୋପାଲ ପୁରରେ ଥିବା ଇସ୍ପାତ ଆଲଏକ୍ କମ୍ପାନୀରେ ଆସିଷ୍ଟାଣ୍ଟ ଇଂଜିନିୟର ଭାବରେ କାର୍ଯ୍ୟ କରୁଥିଲା ।

## ଆଇ.ଏ.ପି.ଟି ପ୍ରାକ୍ଟିକାଲର ମୁଖ୍ୟ ପରୀକ୍ଷକ, ଭୁବନେଶ୍ୱର

ଇନ୍ଦୋରରୁ ଆସି ଭୁବନେଶ୍ୱରରେ ପହଁଞ୍ଚିବାର କେତେ ଦିନ ପରେ ମୁଁ ଡକ୍ଟର ଡି.ପି.ଖଣ୍ଡେଲୱାଲାଙ୍କ ଠାରୁ ଚିଠି ପାଇଲି, ଯେ "ଆପଣ ଆଇ.ଏ.ପି.ଟି.ର ଉପ ସଭାପତି (Vice President) ଭାବେ ୧.୧.୯୩ ଠାରୁ ୩୧.୧୨.୯୪ ପର୍ଯ୍ୟନ୍ତ ନିର୍ବାଚିତ ହୋଇଛନ୍ତି । ଆପଣ ବୋଧେ ଏହି ଖବରଟି ଆଗରୁ ନିର୍ବାଚନ ଅଫିସରଙ୍କ ନିକଟରୁ ପାଇଥିବେ । ସେହି ଚିଠିରେ ଲେଖାଥିଲା, ଆପଣ ଆଇ.ଏ.ପି.ଟି.ର ନ୍ୟାସନାଲ୍ ଷ୍ଟାଣ୍ଡାର୍ଡ ପରୀକ୍ଷାର ଫିଜିକ୍ସ ପାର୍ଟ 'ସି'ର ମୁଖ୍ୟ ପରୀକ୍ଷକ ଭାବରେ ମନୋନୀତ ହୋଇଛନ୍ତି । ଏହି ପରୀକ୍ଷାଟି ମଇ ୨୮ ଏବଂ ୨୯ ତାରିଖରେ ଭୁବନେଶ୍ୱରର ରିଜିଓନାଲ କଲେଜ ଅଫ୍ ଏଜୁକେସନ୍ ଠାରେ ଅନୁଷ୍ଠିତ ହେବ । ତେଣୁ ଆପଣଙ୍କୁ ଅନୁରୋଧ କରାଯାଉଛି ମଇ ୨୪ ତାରିଖ ଦିନ ନ୍ୟାସ୍‌ନାଲ କାଉନ୍‌ସିଲ୍ ଅଫ୍ ଏଜୁକେସନାଲ୍ ରିସର୍ଚ୍ଚ ଏବଂ ଟ୍ରେନିଂ ସେଣ୍ଟର ନୂଆ ଦିଲ୍ଲୀରେ ଉପସ୍ଥିତ ହୋଇ ମୁଖ୍ୟ ପରୀକ୍ଷକ ମାନଙ୍କ କାର୍ଯ୍ୟ ପରିଚାଳନା ସଭାରେ ଯୋଗ ଦିଅନ୍ତୁ । ଏ ବର୍ଷ ପାର୍ଟ 'ସି' ପରୀକ୍ଷା ଭାରତର ଚାରିଗୋଟି ସ୍ଥାନରେ ହେଉଅଛି । ତେଣୁ ଚାରିଜଣ ମୁଖ୍ୟ ପରୀକ୍ଷକ ଅଛନ୍ତି । ସେମାନଙ୍କ ସହିତ ଆଲୋଚନା କରି ପରୀକ୍ଷା କିପରି ଭାବରେ କରିବାକୁ ହେବ ତାହା ନିର୍ଦ୍ଧାରଣ କରାଯିବ । ଏଥିପାଇଁ ଏନ୍.ସି.ଆର.ଟି ଆପଣଙ୍କର ରହିବା ଓ ଖାଇବାର ବ୍ୟବସ୍ଥା କରିବେ ଏବଂ ଆପଣଙ୍କର ଯାତାୟାତ ଖର୍ଚ୍ଚ ମଧ୍ୟ ବହନ କରିବେ ।"

ମୁଁ ଖଣ୍ଡେଲୱାଲଙ୍କ ଚିଠି ପାଇ ୨୨ ତାରିଖ ଦିନ ନୀଳାଚଳ ଏକ୍ସପ୍ରେସ୍‌ରେ ଦ୍ୱିତୀୟ ଶ୍ରେଣୀ ଶୀତତାପ ନିୟନ୍ତ୍ରିତ କୋଠରୀରେ ଯିବା ଆସିବା ପାଇଁ ସ୍ଥାନ ସଂରକ୍ଷଣ କରିଦେଲି । ୨୨ ତାରିଖ ଦିନ ନୀଳାଚଳ ଏକ୍ସପ୍ରେସ୍‌ରେ ଦିଲ୍ଲୀ ଅଭିମୁଖେ ଯାତ୍ରା କଲି । ନିଳାଚଳ ଏକ୍ସପ୍ରେସ୍ ଦିଲ୍ଲୀରେ ବେଳେ ବେଳେ ରାତି ୧୦ଟାରେ ପହଞ୍ଚେ । ତେଣୁ ମୋ ସାଙ୍କ ମାମୁଁ ପୁଅ ଭାଇ ସିଦ୍ଧାର୍ଥ ରଥଙ୍କ ପାଖକୁ ଚିଠି ଲେଖିଥିଲି, ମୁଁ ରାତିରେ ପହଞ୍ଚି ଏନ.ସି.ଆର.ଟି ଯିବାକୁ ଅସୁବିଧା ପଡିପାରେ । ତେଣୁ ତୁମେ ଦିଲ୍ଲୀ ଷ୍ଟେସନରେ ନୀଳାଚଳ ପହଞ୍ଚିବା ସମୟକୁ ଉପସ୍ଥିତ ରହି ମୋତେ ସାହାଯ୍ୟ କର । ଚିଠିରେ ଟ୍ରେନ୍‌ର ବଗୀ ନମ୍ବର ଏବଂ ବର୍ଥ ନମ୍ବର ଲେଖିଥିଲି । ଗାଡି ଦିଲ୍ଲୀରେ ଗାଡି ପହଞ୍ଚିବା ପରେ ସେ ମୋତେ ଦେଖାକଲେ ଏବଂ ରାତିରେ ଏନ୍.ସି.ଆର.ଟି ଅଫିସ୍‌ରେ ଛାଡିଦେଲେ । ସେହି କାର୍ଯ୍ୟ ପରିଚାଳନା ସଭାକୁ ଭୁବନେଶ୍ୱର ରିଜିଓନାଲ୍ କଲେଜ ଅଫ୍ ଏଜୁକେସନର ଫିଜିକ୍ସ ହେଡ ଅଫ୍ ଦି ଡିପାର୍ଟମେଣ୍ଟ, ଡକ୍ଟର ଚନ୍ଦ୍ରଶେଖର ମଧ୍ୟ ଆମନ୍ତ୍ରିତ ହୋଇଥିଲେ । ମୁଁ ଏବଂ ସେ ମହାଶୟ ଗୋଟିଏ କୋଠରୀରେ ରହିଲୁ । ତା ପର ଦିନ ମିଟିଙ୍ଗ

ହେଲା । ମୁଁ ଯେଉଁ ଫେରନ୍ତା ଟିକେଟ କରିଥିଲି ତାହା ଅପେକ୍ଷା ତାଲିକାରେ (Wetting list) ଥିଲା । କିନ୍ତୁ ମୁଁ ଏହା ଦେଖି ନ ଥିଲି । ଦିଲ୍ଲୀରେ ତାହା ଜାଣିପାରି ସିଦ୍ଧାର୍ଥ ରଥଙ୍କୁ କହିଲି । ତୁମେ ଟିକିଏ ଷ୍ଟେସନ୍‌ରୁ ଟିକେଟଟି ସଂରକ୍ଷଣ କରାଇ ଆଣ । ସେ ମୋତେ ଦିଲ୍ଲୀ ଷ୍ଟେସନ୍‌ରୁ ଫୋନ୍ କଲେ ତୁମକୁ ସଂରକ୍ଷଣ ମିଳିବ ନାହିଁ । ତେଣୁ ମୁଁ କଣ କରିବି ? ମୁଁ ତାଙ୍କୁ ଅନୁରୋଧ କଲି, ତୁମେ ଉଡାଜାହାଜ ଟିକେଟ କରି ଉଡାଜାହାଜ ସମୟକୁ ଟିକେ ଆସି ମୋତେ ବିମାନ ବନ୍ଦରରେ ଛାଡିଦେବ ଏବଂ ସଂରକ୍ଷଣ ହୋଇଗଲେ ତୁମେ ଚାଲି ଆସିବ । ସେହି ଅନୁସାରେ ଆମେ ଦୁଇଜଣ ଦିଲ୍ଲୀ ବିମାନ ବନ୍ଦରକୁ ଗଲୁ । ବିମାନ ବନ୍ଦରରେ ପହଞ୍ଚି ଆମେ ଜାଣିଲୁ ଯେ ସଂରକ୍ଷଣ ହୋଇଗଲା । ତେଣୁ ତାଙ୍କୁ ଫେରି ଯିବାଲାଗି କହିଲି, ଏବଂ କହିଲି, ତୁମେ ଭୁବନେଶ୍ୱରର ଆମ ଘରକୁ ଫୋନ୍‌ରେ କହିଦେବ ଆଜି ୫ ଟା ବେଳେ ମୁଁ ପହଁଞ୍ଚିବି ଏବଂ କହିଲି, ଅପେକ୍ଷା ତାଲିକାରେ ଥିବା ଟିକେଟ୍‌ଟି ଫେରାଇ ଦେବ ଓ ଫେରାଇ ଦେବା ସାର୍ଟିଫିକେଟ୍‌ଟି ମୋ ପାଖକୁ ପଠାଇ ଦେବ । ଯାହାକୁ ଦେଖାଇଲେ ଭୁବନେଶ୍ୱରରେ ଟଙ୍କା ମିଳିବ । କିନ୍ତୁ ସେ ଟଙ୍କା ମୁଁ ଆଜିଯାଏ ପାଇନାହିଁ କି ପାଇବାର ଆଶା ମଧ୍ୟ ରଖିନାହିଁ । ଠିକ୍ ସମୟରେ ମୁଁ ଆସି ଭୁବନେଶ୍ୱରରେ ପହଞ୍ଚିଲି । ୨୮ ତାରିଖ ଦିନ ପରୀକ୍ଷା ପାଇଁ ଯୋଗାଡ କରିବାକୁ ୨୭ ତାରିଖ ଦିନ ରିଜିଓନାଲ୍ କଲେଜ ଫିଜିକ୍ସ ଡିପାର୍ଟମେଣ୍ଟକୁ ଗଲି । ପରୀକ୍ଷା ଉପକରଣ ସବୁ ଡକ୍ଟର ଚନ୍ଦ୍ରଶେଖର ସଜାଡି ରଖିଥିଲେ । ମୁଁ ତାଙ୍କୁ ସାହାଯ୍ୟ କଲି । ତାପର ଦିନ ପରୀକ୍ଷା ହେଲା । ଦୁଇ ଦିନରେ ପରୀକ୍ଷା ସରିଗଲା । ପରୀକ୍ଷକମାନେ ବସି ପରୀକ୍ଷା ନମ୍ବର ଦେଇଦେଲେ । ପରୀକ୍ଷା ନମ୍ବର ଏକାଠି କରି ମୁଁ ଡକ୍ଟର ଖଣ୍ଡେଲୱାଲାଙ୍କ ନିକଟକୁ ପଠାଇ ଦେଲି । ଏଥର ପରୀକ୍ଷାରେ ଗତ ବର୍ଷର ପରୀକ୍ଷା ଅନୁପାତରେ ପରୀକ୍ଷାର୍ଥୀ ମାନେ ଭଲ କରିଥିଲେ । କାରଣ ସେମାନେ ଜାଣି ଯାଇଥିଲେ ଯେ ଆଇ.ଏ.ପି.ଟି ପରୀକ୍ଷା କିପରି ହୁଏ ।

ମୁଁ ଭୁବନେଶ୍ୱର ଫେରି ଏନ୍.ସି.ଆର.ଟି.କୁ ଅନୁରୋଧ କଲି, ଆପଣ ଦୟାକରି ଉଡାଜାହାଜ ଟିକେଟ୍ ଓ ଟ୍ରେନ୍ ଟିକେଟ୍‌ର ବ୍ୟବଧାନର ମୂଲ୍ୟ ମୋତେ ଦିଅନ୍ତୁ । ସେଥିପାଇଁ ମୁଁ ଉଡାଜାହାଜ ଟିକେଟର ଜେରକ୍ସ କରି ତାଙ୍କ ପାଖକୁ ପଠାଇ ଥିଲି । କିନ୍ତୁ ସେ ଦେଲେ ନାହିଁ । ଯେଉଁ ଟ୍ରେନ୍ ଟିକେଟ୍ ଫେରସ୍ତ କରିଥିଲି ତାର ପରିମାଣ ଫେରସ୍ତ ପାଇବାକୁ ଦରଖାସ୍ତ କରିଥିଲି, ସେ ମଧ୍ୟ ଫେରସ୍ତ ଦେଲେ ନାହିଁ । ଚିଠି ଲେଖି ଲେଖି କିଛି ଉତ୍ତର ଆସିଲା ନାହିଁ । ମୁଁ ଭାଗ୍ୟକୁ ଆଦରି ରହିଲି ।

ଗୌହାଟୀ ଯିବା ପୂର୍ବରୁ ମୁଁ ଭୁବନେଶ୍ୱର ଠାରେ ଥିବା ବେଳେ 'ସାହା ସେଣ୍ଟେନାରୀ ସିମ୍ପୋଜିୟମ୍ ଅନ୍ ପ୍ଲାଜମା ଫିଜିକ୍ସ ଏବଂ ଟେକ୍ନୋଲୋଜିର' ସ୍ଥାନୀୟ ସେକ୍ରେଟାରୀ ଡକ୍ଟର ଆଇ.ଏମ୍. ଏଲ୍. ଦାସଙ୍କ ଠାରୁ ଗୋଟିଏ ଚିଠି ପାଇଥିଲି । ସେଥିରେ ସେ ଅନୁରୋଧ କରିଥିଲେ, "ଆପଣ ଆଲୋଚନା ଚକ୍ରର ଉପଦେଷ୍ଟା ମଣ୍ଡଳୀ (Academic Advisory Committee)ର ସଭ୍ୟଭାବେ ମନୋନୀତ ହୋଇଛନ୍ତି । ଅଧଘଣ୍ଟାର ଗୋଟିଏ ବକ୍ତୃତା ଦେବା ପାଇଁ ମୁଁ ଅନୁରୋଧ କରୁଛି । ବକ୍ତୃତାର ସାରମର୍ମ ଗୋଟିଏ ପୃଷ୍ଠାରେ ଲେଖି ପଠାଇବାକୁ

ଅନୁରୋଧ ।" ମୁଁ ତାଙ୍କ ପ୍ରସ୍ତାବରେ ରାଜି ହୋଇ ତାଙ୍କ ପାଖକୁ ଚିଠି ଲେଖିଥିଲି । ସେ ଆଲୋଚନା ଚକ୍ରଟି ଅକ୍ଟୋବର ୧୧ରୁ ୧୪ ତାରିଖ ମଧ୍ୟରେ ଏଲ୍ଲାବାଦ ବିଶ୍ୱବିଦ୍ୟାଳୟର ପଦାର୍ଥ ବିଜ୍ଞାନ ବିଭାଗରେ ଅନୁଷ୍ଠିତ ହେବ । ମୁଁ ବକ୍ତୃତାଟିର ଗୋଟିଏ ଲେଖା ଦୁଇ ସପ୍ତାହ ଭିତରେ ପଠାଇ ଦେବି ବୋଲି ଲେଖି ଚିଠି ଦେଇଦେଲି ।

କେଉଁଦିନ ଠିକ୍ ମୋର ମନେ ନାହିଁ । ଗୌହାଟିରୁ ଗୋଟିଏ ଫୋନ୍ ଖବର ଡକ୍ଟର ଏସ୍.ବୁଜରବରୁଆଙ୍କ ଠାରୁ ପାଇଲି । ତାହାର ସାରମର୍ମ ହେଉଛି, ସେଣ୍ଟର ଅଫ୍ ପ୍ଲାଜମା ଫିଜିକ୍ସ ଆପଣଙ୍କୁ ପରିଦର୍ଶକ ବୈଜ୍ଞାନିକ ହିସାବରେ ନିଯୁକ୍ତି ଦେବାକୁ ଇଚ୍ଛା କରୁଛି । ଆପଣ କଣ କଣ ସୁବିଧା ଚାହୁଁଛନ୍ତି ଲେଖି ଜଣାଇବାକୁ ଅନୁରୋଧ । ମୁଁ ତାର ଉତ୍ତର ସଙ୍ଗେ ସଙ୍ଗେ ଦେଇଦେଲି । ଏହା ଭିତରେ ମାସେ ଚାଲିଗଲା । ପୁଣି ଦିନେ ଡକ୍ଟର ଏସ୍. ବୁଜରବରୁଆ ମୋତେ ଫୋନ୍‌ରେ ପଚାରିଲେ ଆପଣ ଯେଉଁ ସୁବିଧା ସୁଯୋଗ ଚାହୁଁଥିଲେ ସେ ସବୁ ସୁବିଧା ଦେବା ପାଇଁ ସି.ପି.ପି. ରାଜି ଅଛି । ଆପଣ କେଉଁ ଦିନ କାର୍ଯ୍ୟରେ ଯୋଗ ଦେବେ ମୋତେ କୁହନ୍ତୁ ? ମୁଁ କହିଲି,ମୁଁ ନିଶ୍ଚୟ ଯୋଗ ଦେବି । ଆପଣ ମୋ ନିଯୁକ୍ତି ପତ୍ରଟି ପଠାଇ ଦିଅନ୍ତୁ । ନିଯୁକ୍ତି ପତ୍ରଟି ପାଇଲା ପରେ ମୁଁ ଆପଣଙ୍କୁ ଯୋଗ ଦେବାର ତାରିଖ ଜଣାଇ ଦେବି । ତାର ଦିନକ ପରେ ମୁଁ ନିଯୁକ୍ତି ପତ୍ର ପାଇଲି ଏବଂ ବାଙ୍ଗାଲୋର ଗୌହାଟୀ ଟ୍ରେନ୍‌ରେ ସ୍ଥାନ ସଂରକ୍ଷଣ କରିଦେଲି । କେଉଁ ଦିନ ପହଁଞ୍ଚିବି ତାହା ଜଣାଇ ଦେଲି । ସେହି ଦିନ ସକାଳେ ଷ୍ଟେସନରୁ ବୁଝିଲି ବାଙ୍ଗାଲୋର ଗୌହାଟୀ ଟ୍ରେନ୍‌ଟି ବାତିଲ୍ ହୋଇ ଯାଇଛି । ତେଣୁ ଟିକେଟ୍ ଫେରାଇ ଦେଇ ସମୁଦାୟ ଟଙ୍କା ଫେରାଇ ଆଣିଲି । ମୋର ସ୍ତ୍ରୀ ଓ ମୋ ବଡ ପୁଅ ପରାମର୍ଶ ଦେଲେ ଉଡାଜାହାଜରେ ଗୌହାଟୀ ଯାଅ ଏବଂ ଯେଉଁ ଦିନ ପହଞ୍ଚିବାର କଥା ସେହିଦିନ କାର୍ଯ୍ୟରେ ଯୋଗ ଦିଅ । ସାଙ୍ଗେ ସାଙ୍ଗେ ମୋ ବଡ ପୁଅ ଯାଇ ଭୁବନେଶ୍ୱରରୁ ଗୌହାଟୀ ପର୍ଯ୍ୟନ୍ତ ଉଡାଜାହାଜରେ ଟିକେଟ୍ କରି ଆଣିଲା । ଟିକେଟ୍ ହୋଇଗଲା ପରେ ମୁଁ ସାଙ୍ଗେ ସାଙ୍ଗେ ଫୋନ୍‌ରେ ଜଣାଇ ଦେଲି,ଯେ ବାଙ୍ଗାଲୋର ଗୌହାଟୀ ଟ୍ରେନ୍ ବାତିଲ୍ ହୋଇଯାଇଛି । ତେଣୁ ମୁଁ ଉଡାଜାହାଜରେ ଯାଇ ଛଅ ତାରିଖ ଦିନ ବାରଟାବେଳେ ଗୌହାଟୀରେ ପହଞ୍ଚିବି । ତେଣୁ ମୁଁ ଆପଣଙ୍କୁ ଅନୁରୋଧ କରୁଛି ବିମାନ ବନ୍ଦରକୁ କାହାକୁ ପଠାଇ ଥିବେ ମୋତେ ନେବାପାଇଁ । ଛଅ ତାରିଖ ଦିନ ସକାଳ ଆଠଟା ବେଳେ ମୋ ସ୍ତ୍ରୀ ଏବଂ ମୋ ବଡ ପୁଅ ମୋତେ ଭୁବନେଶ୍ୱର ବିମାନ ବନ୍ଦରରେ ଛାଡି ଦେଇ ଆସିଲେ । ମୁଁ ପ୍ରାୟ ସାଢେ ନଅଟା ବେଳେ ଦମ୍ ଦମ୍ ବିମାନ ବନ୍ଦରରେ ପହଞ୍ଚିଲି । ସେଠାରେ ଘଣ୍ଟାଏ ଅପେକ୍ଷା କଲାପରେ ଗୌହାଟୀ ଉଡାଜାହାଜରେ ବସି ପ୍ରାୟ ଦୁଇଟା ବେଳେ ଗୌହାଟୀରେ ପହଞ୍ଚିଲି । ଗୌହାଟୀ ବିମାନ ବନ୍ଦରରେ ଡକ୍ଟର ଗୋସ୍ୱାମୀ ଏବଂ ଶ୍ରୀ ବିପୁଲ୍ କୁମାର ସାଇକିଆ ମୋତେ ନେବା ପାଇଁ ଅପେକ୍ଷା କରି ରହିଥିଲେ । ଡକ୍ଟର ଗୋସ୍ୱାମୀ ମୁଁ ଯେଉଁ ଉଇଣ୍ଟର ସ୍କୁଲ୍ କଟକରେ ଆୟୋଜନ କରିଥିଲି ସେଥିରେ ଯୋଗ ଦେଇଥିଲେ । ତେଣୁ ମୁଁ ତାଙ୍କୁ ଆଗରୁ ଚିହ୍ନି ଥିଲି । ମୁଁ ଯାଇ ସେଣ୍ଟର ଅଫ୍ ପ୍ଲାଜମା ଫିଜିକ୍ସ (ସି.ପି.ପି.) ରେ ପ୍ରାୟ

ତିନିଟା ବେଳେ ପହଞ୍ଚିଲି । ସି.ପି.ପି. ଉପରେ ଗୋଟିଏ କୋଠରୀ ଥିଲା । ସେହି କୋଠରୀରେ ମୁଁ ରହିଲି ଏବଂ ଛଅ ତାରିଖ ଦିନ ମଧ୍ୟାହ୍ନରେ କାର୍ଯ୍ୟରେ ଯୋଗ ଦେଲି ।

## ପରିଦର୍ଶକ ବୈଜ୍ଞାନିକ, ସେଣ୍ଟର ପ୍ଲାଜମା ଫିଜିକ୍ସ

ମୁଁ ଗୌହାଟୀରେ ପହଞ୍ଚିବା ପରେ ଅଧଘଣ୍ଟା ପାଇଁ ଗୋଟିଏ ବକ୍ତୃତାର ବିଷୟ ବସ୍ତୁ ଲେଖି ଡକ୍ଟର ଆଇ.ଏମ୍.ଏଲ୍. ଦାସଙ୍କ ପାଖକୁ ପଠାଇ ଦେଲି । ତାହାର କେତେଦିନ ପରେ ଜଣେ ଓଡିଆ ଲୋକ ସକାଳୁ ଆସି ମୁଁ ରହିବା ଜାଗାରେ ପହଞ୍ଚିଲେ । ମୁଁ ତାଙ୍କୁ ଜାଣି ପାରିଲି ନାହିଁ । ସେ କହିଲେ,ମୁଁ ଓଡିଶାର ଲୋକ । ଆସାମରେ ବହୁତ ଦିନ ହେଲା ରହିଲିଣି । ଆପଣ ଏଠାରେ ଅଛନ୍ତି ବୋଲି ମୁଁ ଆପଣଙ୍କୁ ଦେଖା କରିବାକୁ ଆସିଲି । ତାଙ୍କ ନାମ ମୋର ମନେନାହିଁ । ସେ ମୋ ଘର ପାଖରେ ଥିବା ଶ୍ରୀ କେ.ସି ମହାପାତ୍ର ନାମକ ଜଣେ ନାବାର୍ଡ ଅଫିସରଙ୍କ ଘରକୁ ନେଇଗଲେ । ତାଙ୍କ ସଙ୍ଗେ ଚିହ୍ନା ପରିଚୟ କରାଇଦେଲେ । ମୁଁ ଏକୁଟିଆ ଥାଏ । ତେଣୁ ଯେତେବେଳେ ଖରାପ ଲାଗେ ତାଙ୍କ ଘରକୁ ବୁଲିବାକୁ ଚାଲିଯାଏ । ମୁଁ ଗଲେ ତାଙ୍କ ସ୍ତ୍ରୀ ମୋତେ ଚା ଜଳଖିଆ ଦିଅନ୍ତି । ସେ ଓଡିଆ ଭଦ୍ରଲୋକ ଆଉ କେତେ ଜଣ ଓଡିଆ ଲୋକଙ୍କ ଠିକଣା ଏବଂ ଫୋନ୍ ନମ୍ବର ଦେଲେ । ତା ମଧ୍ୟରୁ ଆସାମ ରିଜର୍ଭ ମିଲିଟାରୀ ଫୋର୍ସର ମୁଖ୍ୟ ଡାକ୍ତରଙ୍କ ସାଙ୍ଗେ ଚିହ୍ନା ପରିଚୟ କରାଇଦେଲେ । ତାଙ୍କ ନାମ ମୋର ଆଉ ମନେ ନାହିଁ ।

ତାର କେତେ ଦିନ ପରେ ମୁଁ ଯେଉଁ ପ୍ରାଧ୍ୟାପକଙ୍କୁ ବହିଖଣ୍ଡେ ଦେଇଥିଲି, ସେ ପୁନା ବିଶ୍ୱବିଦ୍ୟାଳୟରୁ ବହି ଖଣ୍ଡେ ପାଇଲେ ବୋଲି ମୋ ପାଖକୁ ଭୁବନେଶ୍ୱର ଠିକଣାରେ ଚିଠି ଲେଖିଥିଲେ । ସେତେବେଳକୁ ମୁଁ ଗୌହାଟୀରେ ଥିଲି । ଚିଠିଟି ମୋର ଶ୍ରୀମତୀ ଗୌହାଟୀ ପଠାଇ ଦେଇଥିଲେ । ସେହି ଚିଠିରେ ଲେଖିଥିଲେ,ସେ ଫିଜିକ୍ସ ଏଜୁକେସନ୍‌ର ଯୁଗ୍ମ ସମ୍ପାଦକ ଅଛନ୍ତି ଏବଂ ମୋତେ ଅନୁରୋଧ କରିଥିଲେ ଏକ୍ସପେରିମେଣ୍ଟ ଗୁଡିକ ଗୋଟିଏ ଲେଖାଏଁ ପ୍ରବନ୍ଧ ଆକାରରେ ଲେଖି ପଠାଇଲେ, ସେ ପ୍ରବନ୍ଧ ଗୁଡିକ ଫିଜିକ୍ସ ଏଜୁକେସନ୍‌ରେ ଛପାଇବାର ବ୍ୟବସ୍ଥା କରିବେ । ତାଙ୍କର ନାମଟି ମୋର ଏବେ ମନେ ନାହିଁ । ଗୌହାଟିରୁ ପ୍ରଥମ ପ୍ରବନ୍ଧଟି ଲେଖି ପଠାଇ ଥିଲି । ତାହା ଫିଜିକ୍ସ ଏଜୁକେସନର ୧୯୯୪ ମସିହା ଅକ୍ଟୋବର-ଡିସେମ୍ବର ଖଣ୍ଡରେ ପ୍ରକାଶିତ ହୋଇଥିଲା ।

ଶ୍ରୀଯୁକ୍ତ ଉମେଶ ବର୍ମନ ଜଣେ ଆ.ପି.ଏସ୍. ଅଫିସର୍ ଅଟନ୍ତି । ସି.ପି.ପି.ର ଡାଇରେକ୍ଟର ଡକ୍ଟର ଏସ୍. ବୁଜରବରୁଓ୍ୱା ତାଙ୍କ ସହିତ ମୋର ଚିହ୍ନା ପରିଚୟ କରାଇ ଦେଇଥିଲେ । ଉମେଶ ବର୍ମନ୍‌ଙ୍କର ଖୁବ୍ ଇଚ୍ଛା ଥିଲା ସେ ରିସର୍ଚ୍ଚ କରି ଗୋଟିଏ ପି.ଏଚ୍‌ଡି ପାଇବେ । ସେଥିପାଇଁ ମୋ ତତ୍ତ୍ୱାବଧାନରେ ଗବେଷଣା କରିବା ପାଇଁ ଆଗ୍ରହାନ୍ୱିତ ହୋଇଥିଲେ ।

ଗୌହାଟୀ କାର୍ଯ୍ୟରେ ଯୋଗ ଦେବା ପରେ ମୁଁ ସେଣ୍ଟର ଅଫ୍ ପ୍ଲାଜମା ଫିଜିକ୍ସର ପରୀକ୍ଷାଗାର ନିର୍ମାଣ କରି ଉପକରଣ ସବୁ କିଣିବା ପାଇଁ ବରାଦ କରିଥିଲି । ଜିନିଷ ପତ୍ର ଆସିବା ପରେ ଦୁଇଟି ଉଚ୍ଚ ବିଭବ ବିଶିଷ୍ଟ ପାୱାର ସପ୍ଲାଇ ନିର୍ମାଣ କରିଥିଲି । ମୁଁ ସେଠାରେ

ଯୋଗଦେବା ପୂର୍ବରୁ ସି.ପି.ପି.ର ଡାଇରେକ୍ଟର ହିନ୍ଦ ହାଇ ଭ୍ୟାକୁମ୍‌କୁ ଗୋଟିଏ ଷ୍ଟେନ୍‌ଲେସ୍‌ଷ୍ଟିଲ୍ ର ପ୍ଲାଜମା ଚାମର ପାଇଁ ବରାଦ ଦେଇଥିଲେ । ତାର କେତେଦିନ ପରେ ଷ୍ଟେନ୍‌ଲେସ୍ ଷ୍ଟିଲ୍‌ର ଗୋଟିଏ ବଡ ପ୍ଲାଜମା ଚାମର "ହିନ୍ଦ ହାଇ ଭ୍ୟାକୁମ୍" ତିଆରି କରି ସି.ପି.ପି.କୁ ପଠାଇଲେ । ସେହିଥିରେ ପରୀକ୍ଷା ନିରୀକ୍ଷା ଆରମ୍ଭ କରିଦେଲି । ଏହା ଭିତରେ ଦୁଇମାସ ଖଣ୍ଡେ ବିତିଗଲା ପରେ ମୁଁ ଶ୍ରୀମତୀଙ୍କୁ ଗୌହାଟୀ ଆସିବାକୁ କହିଲି । ସେ କିପରି ଗୌହାଟୀ ଉଡାଜାହାଜରେ ଯାଇ ପହଁଚିବେ ତାଙ୍କୁ ତାହା ବୁଝାଇ ଦେଲି ଏବଂ କେଉଁଦିନ କେତେଟା ବେଳେ ଆସି ଗୌହାଟୀ ବିମାନ ବନ୍ଦରରେ ପହଁଚିବେ, ମୋତେ ଜଣାଇଲେ ମୁଁ ବିମାନ ବନ୍ଦର ଠାରେ ତୁମକୁ ଆଣିବା ପାଇଁ ଯାଇଥିବି । ତେଣୁ ତୁମର କିଛି ଅସୁବିଧା ହେବନାହିଁ । ସେ ଫୋନ୍‌ରେ କହିଥିବା ଦିନ ଏବଂ ସମୟ ଅନୁସାରେ ମୁଁ ଉମେଶ୍ ବର୍ମନଙ୍କ କାରରେ ଗୌହାଟୀ ବିମାନ ବନ୍ଦରକୁ ଯାଇଥିଲି ଏବଂ ସେ ମହାଶୟ ଆମକୁ ସି.ପି.ପି.ରେ ଛାଡିଦେଲେ । ଶ୍ରୀମତୀଙ୍କର ଗୌହାଟୀ ରହିବା କାଳରେ ସେ ମହାଶୟ ଆମକୁ ଗୌହାଟୀର ବିଭିନ୍ନ ସ୍ଥାନ ସବୁ ବୁଲାଇ ଦେଖାଇ ଥିଲେ । ସବୁଠାରୁ ଉଲ୍ଲେଖନୀୟ ସ୍ଥାନ ଗୌହାଟୀର କାମାକ୍ଷା ମନ୍ଦିର ଯାଇଥିଲୁ । ମୋ ସାନ ଝିଅର ବାହାଘର ଠିକ୍ ହେଉ ନ ଥିଲା ବୋଲି ଠାକୁରାଣୀଙ୍କ ପାଖରେ ମାନସିକ କରିଥିଲେ । ତାର ବାହାଘର ଠିକ୍ କରାଇ ଦେବା ପାଇଁ । ବିଭାଘର ହୋଇଯିବା ପରେ ମୁଁ ପୁଣି ଥରେ ଆସି ଦର୍ଶନ କରି ଭୋଗରାଗ କରିବି । ମୋତେ ଦିଆ ଯାଇଥିବା କୋଠରୀରେ ଶ୍ରୀମତୀ ପ୍ରାୟ ୧୫ ଦିନ ରହିଲେ । ସେଠାରେ ରହୁଥିବା ଓଡିଶାର ବାସିନ୍ଦା ମାନେ ମିଶି ଗଣେଷ ପୂଜା ବହୁ ଜାକଜମକରେ ପାଳନ କରନ୍ତି । ମୋ ସ୍ତ୍ରୀ ଗୌହାଟୀରେ ଥିବାବେଳେ ଗଣେଷ ପୂଜା ପଡିଥିଲା । ସେହି ବର୍ଷ ଗଣେଶ ପୂଜାଟି ଜଣେ ବ୍ୟବସାୟୀଙ୍କ ଘରେ ଆୟୋଜନ କରା ଯାଇଥିଲା । ସେମାନେ ମୋତେ ଓ ମୋ ସ୍ତ୍ରୀଙ୍କୁ ଯୋଗ ଦେବାକୁ ଅନୁରୋଧ କରିଥିଲେ ଏବଂ ଆମ ଦୁଇ ଜଣଙ୍କୁ ଗାଡିରେ ନେଇଯିବାକୁ ବନ୍ଦୋବସ୍ତ କରିଥିଲେ । ଗଣେଷ ପୂଜା ଦିନ ଆମେ ଦୁହେଁ ସେ ଭଦ୍ରଲୋକଙ୍କ ଘରେ ଯାଇ ସମସ୍ତେ ଯେଉଁଠାରେ ବସିଥିଲେ ସେହିଠାରେ ବସିଲୁ । ସେଠାରେ ଜଣେ ସ୍ତ୍ରୀ ଲୋକ ବସିଥିଲେ । ମୁଁ ତାଙ୍କୁ ଆଗରୁ କେଉଁଠାରେ ଦେଖିଲା ଭଳିଆ ଲାଗୁଥିଲା । କିନ୍ତୁ ମୁଁ ତାଙ୍କୁ ଚିହ୍ନି ପାରି ନ ଥିଲି । ମୋ ସ୍ତ୍ରୀ ସେଠାକୁ ଆସିବାରୁ ହଠାତ୍ ସେ ଝିଅଟିକୁ ଚିହ୍ନିଦେଲେ ଏବଂ ପଚାରିଲେ ତୁ ବେବି ଟ ? ସେ କହିଲେ ଚିନୁ ନାନୀ ତୁମେ ଏଠି କୁଆଡେ ? ସେ ଦୁହେଁ ତାଙ୍କର ଚିହ୍ନା ପରିଚୟ ହୋଇଗଲେ । ସେ ଝିଅଟି ହେଉଛି ମୋ ସ୍ତ୍ରୀର ମାଉସୀ ଝିଅ ଭଉଣୀ । ବେବିର ସ୍ୱାମୀ ଆସାମ ରିଜର୍ଭ ଫୋର୍ସ ଡାକ୍ତରଖାନାର ଜଣେ ଡାକ୍ତର । ବେବି ହେଉଛି ମୋ ସନ୍ଧୁ ନବକିଶୋର ଦାଶଙ୍କ ଝିଅ । ଶ୍ରୀ ନବକିଶୋର ଦାଶ ମଧ୍ୟ ଭୁବନେଶ୍ୱରରେ ଘର କରି ରହୁଛନ୍ତି । ସେ ଆମ ଘରକୁ ସମୟେ ସମୟେ ଆସନ୍ତି । ଗଣେଷ ପୂଜା ପରେ ସଂଧ୍ୟା ବେଳକୁ ଆମେ ଅଟୋରିକ୍ସାରେ ସି.ପି.ପି.କୁ ଚାଲି ଆସିଲୁ । ମୋର ସ୍ତ୍ରୀ ସେଠାରେ କେତେଦିନ ରହିଲା ପରେ ଭୁବନେଶ୍ୱର ଆସିବାକୁ ଇଚ୍ଛାକଲେ । ମୁଁ ତାଙ୍କୁ ବହୁତ ଅନୁରୋଧ କଲି ଆଉ କିଛି ଦିନ ରହିବାକୁ । ସେ ଜମା ରାଜି ହେଲେନି । ମୁଁ ବାଧ୍ୟ ହୋଇ ତାଙ୍କ ପାଇଁ ଗୌହାଟୀରୁ ଭୁବନେଶ୍ୱର

ଶୀତତାପ ନିୟନ୍ତ୍ରଣ ବର୍ଥ ସଂରକ୍ଷଣ କରିଦେଲି । ଫେରିବା ଦିନ ସେହି ଉମେଶ ବର୍ମନଙ୍କ ଗାଡିରେ ମୁଁ ତାଙ୍କୁ ଆଣି ଗୌହାଟୀ ଷ୍ଟେସନ୍‌ରେ ରାତି ଦଶଟା ବେଳେ ଗାଡିରେ ବସାଇ ଦେଲି । ସେ ଏକା ଏକା ଭୁବନେଶ୍ୱର ଚାଲି ଆସିଲେ । ସେ ମୋତେ ଫୋନ୍ କରି ଜଣାଇ ଦେଲେ,ଯେ ମୁଁ ସୁବିଧାରେ ପହଞ୍ଚିଲି ।

## ସାହା ଶତ ବାର୍ଷିକୀ ଆଲୋଚନା ଚକ୍ର, ଏଲ୍ହାବାଦ ବିଶ୍ୱବିଦ୍ୟାଳୟ

ଅକ୍ଟୋବର ପ୍ରଥମ ସପ୍ତାହରେ ସିମ୍ପୋଜିୟମ୍‌ର କାର୍ଯ୍ୟକ୍ରମ ସମ୍ବନ୍ଧରେ ଗୋଟିଏ ଚିଠି ପାଇଥିଲି. ଚିଠି ପାଇବା ପରେ ମୁଁ ସି.ପି.ପି.ର ଡିରେକ୍ଟରଙ୍କ ଠାରୁ ଅନୁମତି ନେଇ ସାହା ସେଣ୍ଟେନାରୀ ସିମ୍ପୋଜିୟମ୍‌ରେ ଯୋଗ ଦେବା ପାଇଁ ଅନୁମତି ନେଲି । ତା ସହିତ ମୁଁ ଅନୁମତି ନେଲି,ଯେ ମୁଁ ଏଲ୍ହାବାଦ୍‌ରୁ ଭୁବନେଶ୍ୱର ଆସି ଭୁବନେଶ୍ୱର ଠାରୁ ଗୌହାଟୀ ଯିବି । ତାଙ୍କ କାର୍ଯ୍ୟକ୍ରମ ଅନୁସାରେ ୧୦ ତାରିଖ ଦିନ ଖରାବେଳେ ଏଲ୍ହାବାଦ ରେଲୱେ ଷ୍ଟେସନ୍‌ରେ ଯାଇ ପହଞ୍ଚିଲି । ସ୍ୱେଚ୍ଛାସେବକ ମାନଙ୍କ ସହିତ ଯାଇ ଏଲ୍ହାବାଦ ବିଶ୍ୱବିଦ୍ୟାଳୟର ଅତିଥି ଭବନରେ ରହିଲି । ମୁଁ ଆଗରୁ ଡକ୍ଟର ଆଇ.ଏମ୍. ଏଲ୍. ଦାସଙ୍କ ଜଣାଇଥିଲି ଯେ ମୋ ପାଇଁ ସିମ୍ପୋଜିୟମ୍ ସରିଲା ପରେ ଗୋଟିଏ ଦ୍ୱିତୀୟ ଶ୍ରେଣୀ ଶୀତତାପ ନିୟନ୍ତ୍ରିତ ଡବାରେ ଗୋଟିଏ ସ୍ଥାନ ସଂରକ୍ଷଣ ଏଲ୍ହାବାଦ ଠାରୁ ଭୁବନେଶ୍ୱର ପର୍ଯ୍ୟନ୍ତ କରିଦେବା ପାଇଁ । ସେ ମୋ ପାଇଁ ସଂରକ୍ଷଣ କରିଦେଇ ଥିଲେ । ମୁଁ ୧୪ ତାରିଖ ଦିନ ରାତିରେ ଏଲ୍ହାବାଦ ଷ୍ଟେସନ୍‌ରେ ବସି ତା ପରଦିନ ପ୍ରାୟ ୩ଟା ବେଳେ ଭୁବନେଶ୍ୱରରେ ପହଞ୍ଚିଲି ।

ଭୁବନେଶ୍ୱରରେ ପହଞ୍ଚି ଜାଣିବାକୁ ପାଇଲି,ମୋ ସାନ ଝିଅ ଦୁଇ ମାସ ଖଣ୍ଡେ ଛୁଟି ନେଇ ଆସି ଭୁବନେଶ୍ୱରରେ ଅଛି । ୧୫ ଦିନ ଖଣ୍ଡେ ରହିଲା ପରେ ମୁଁ ଗୌହାଟୀ ଯିବା ପାଇଁ ଯୋଗାଡ କଲି । ସେହି ସମୟରେ ମୋର ଶ୍ରୀମତୀ କହିଲେ,ଏଥର ତମେ ଗୌହାଟୀ ଗଲା ବେଳେ ସାନ ଝିଅକୁ ସାଙ୍ଗରେ ନେଇ ଯିବ । ମୁଁ ରାଜି ହୋଇଗଲି ଏବଂ ଦୁଇଗୋଟି ସ୍ଲିପର ଟିକେଟ ସଂରକ୍ଷଣ କରିଦେଲି । ନିର୍ଦ୍ଦିଷ୍ଟ ଦିନ ସକାଳେ ଭୁବନେଶ୍ୱର ଷ୍ଟେସନ୍‌ରେ ପହଞ୍ଚିଲା ବେଳକୁ ଷ୍ଟେସନ୍‌ରୁ ଶୁଣିଲି ନିର୍ଦ୍ଦିଷ୍ଟ ଟ୍ରେନ୍‌ଟି ୭୨ ଘଣ୍ଟା ବିଳମ୍ବରେ ଆସିବ । ତେଣୁ ଆମେ ଫେରି ଆସିଲୁ । ତାର ଦିନକ ପରେ ଡକ୍ଟର ବ୍ରଜରବରୁଆ ଆମ ଘରକୁ ଫୋନ୍ କଲେ ଯେ ଆପଣ କାହିଁକି ଆସିଲେ ନାହିଁ ? ମୁଁ ଉତ୍ତର ଦେଲି, ମୋ ଆସିବା ଗାଡିଟି ୭୨ ଘଣ୍ଟା ବିଳମ୍ବ ଅଛି । ତେଣୁ ମୁଁ ସେଠାରେ ୭୨ ଘଣ୍ଟା ବିଳମ୍ବରେ ପହଞ୍ଚିବି ।

## ମୁଁ ଏବଂ ସାନଝିଅର ଗୌହାଟୀ ଯାତ୍ରା

ଆମେ ଗୌହାଟୀରେ ୧୦ଟା ବେଳେ ପହଁଞ୍ଚିଲୁ । ବର୍ମନ୍ ମଧ୍ୟ ଗାଡି ନେଇ କରି ଷ୍ଟେସନ୍‌କୁ ଆସିଥିଲେ । ଆମେ ସି.ପି.ପି.ରେ ପହଁଞ୍ଚିଲା ପରେ ମୋ କୋଠରୀରେ ଆଉ ଗୋଟିଏ ଖଟ ପକାଇ ମୋର ଝିଅ ରହିବା ପାଇଁ ବ୍ୟବସ୍ଥା କରିଦେଲେ । ପ୍ରାୟ ଦୁଇ ମାସ ଖଣ୍ଡେ ରହିବା ଭିତରେ ବର୍ମନ୍ ଆମ ଦୁହିଁଙ୍କୁ ଥରେ ରାତ୍ର ଭୋଜନ ପାଇଁ ନିମନ୍ତ୍ରଣ କରିଥିଲେ ଏବଂ ଗୌହାଟୀର ଭିନ୍ନ ଭିନ୍ନ ସ୍ଥାନ ଦେଖାଇଥିଲେ । ଏହି ସମୟରେ ମୋର ଶ୍ରୀମତୀଙ୍କ ଠାରୁ ଫୋନ୍

ଖବର ପାଇଲି,ଯେ ମୋର ଝିଅର ବଲାଙ୍ଗିରରୁ ପୁରୀ ବଦଳି ହୋଇ ଯାଇଛି । ମୁଁ ତାଙ୍କୁ କହିଲି ଯେ କାହାକୁ ପଠାଇ ଝିଅକୁ ନେଇଯାଅ । ସେ ପୁରୀ ଯାଇ ଚାକିରୀରେ ଯୋଗ ଦେବ । ମୋ ପୁଅ ଦିନକ ପାଇଁ ବମ୍ବେରୁ ଭୁବନେଶ୍ୱର ଆସିଥିଲା । ଶ୍ରୀମତୀ ପୁଅକୁ ଗୌହାଟୀ ପଠାଇ ସାନ ଝିଅକୁ ଭୁବନେଶ୍ୱର ନେଇ ଆସିଲେ । ତାର ଦୁଇ ଦିନପରେ ଶ୍ରୀମତୀ ଝିଅ ସାଙ୍ଗରେ ବଲାଙ୍ଗିର ଗଲେ । ଝିଅ ବଲାଙ୍ଗିରରୁ ଅବ୍ୟାହତି ନେଇ ଆସିଲା ଏବଂ ପୁରୀରେ ଯୋଗ ଦେଲା ।

ଗୌହାଟୀରେ ଥିଲାବେଳେ ମୁଁ ଥରେ ସିଲଂ ବୁଲି ଯାଇଥିଲି । ସିଲଂ ବିଶ୍ୱବିଦ୍ୟାଳୟରେ ଦୁଇ ତିନି ଜଣ ଓଡିଆ ଅଧ୍ୟାପକ ଥିବାର ଜାଣି ତାଙ୍କ ସାଙ୍ଗରେ ଦେଖାକଲି । ସଂଧ୍ୟା ସୁଦ୍ଧା ସି.ପି.ପି. ଫେରି ଆସିଲି । ଆସାମରେ ବିହୁ ପର୍ବ ବହୁ ଆଡମ୍ବରରେ ପାଳନ କରାଯାଏ । ଏହି ପର୍ବକୁ ପ୍ରାୟ ସପ୍ତାହ ଖଣ୍ଡେ ଆସାମର ଶିକ୍ଷା ଅନୁଷ୍ଠାନ ବନ୍ଦ ହୋଇଯାଏ । ବିହୁ ପୂର୍ବରୁ ନିର୍ଦ୍ଦେଶକଙ୍କ ଠାରୁ ଅନୁମତି ନେଇ ଭୁବନେଶ୍ୱର ଆସିଲି । ସେଥର ଆସିଲା ବେଳେ ମୁଁ ଉଡାଜାହାଜରେ ଆସିଲି । ମୁଁ ଆସିଲା ବେଳେ ଡକ୍ଟର ବୁଜରବରୁଆଙ୍କୁ ପରିବାର ସହିତ ପୁରୀ, ଭୁବନେଶ୍ୱର ଓ କୋଣାର୍କ ବୁଲିବା ପାଇଁ ନିମନ୍ତ୍ରଣ କରି ଆସିଥିଲି । ସେ ରାଜି ହେଲେ ଏବଂ କହିଲେ,ଦିନ ଠିକ୍ ହେଲେ ଆପଣଙ୍କୁ ଫୋନ୍‌ରେ ଜଣାଇବି । କେତେ ଦିନ ପରେ ମୁଁ ଫୋନ୍ ଖବର ପାଇଲି,ଯେ ସେ ଓ ତାଙ୍କ ପିଲାମାନେ ଏବଂ ତାଙ୍କର ଜଣେ ବୃଦ୍ଧ କାକା ପୁରୀ ଆସି ଜଗନ୍ନାଥ ଦର୍ଶନ କରିବେ । ଫେରିବା ପାଇଁ ସେ ଭୁବନେଶ୍ୱର ଠାରୁ ଗୌହାଟୀ ପର୍ଯ୍ୟନ୍ତ ସମସ୍ତଙ୍କ ପାଇଁ ଶୋଇବା ସ୍ଥାନ ସଂରକ୍ଷଣ କରିଦେବା ପାଇଁ ମୋତେ ଅନୁରୋଧ କରିଥିଲେ । ତାଙ୍କ କକାଙ୍କୁ ମୁଁ ଆଗରୁ ଚିହ୍ନିଥିଲି ।

## ଡକ୍ଟର ବୁଜରବରୁଆ, ତାଙ୍କ ସ୍ତ୍ରୀ, ଝିଅ ଏବଂ ପୁଅମାନଙ୍କର ଭୁବନେଶ୍ୱର ଆଗମନ

ତାଙ୍କ କକାଙ୍କ ପୁଅ ପ୍ଲାଜମା ଫିଜିକ୍ସ ପ୍ରୟୋଗ ଶାଳାରେ ସହକାରୀ ଭାବରେ କାମ କରୁଥିଲେ । ଅପ୍ରେଲ୍ ୧୦ ତାରିଖ ଦିନ ଡକ୍ଟର ବୁଜରବରୁଆ ଏବଂ ଅନ୍ୟ ସମସ୍ତେ ଭୁନେଶ୍ୱରରେ ପହଞ୍ଚିଲେ । ମୁଁ ସେମାନଙ୍କ ପାଇଁ ଅନ୍ୟ ସ୍ଥାନରେ ରହିବାର ବ୍ୟବସ୍ଥା କରିଥିଲି । କିନ୍ତୁ ସେ ମନାକଲେ ଏବଂ କହିଲେ,ଆମେ ସମସ୍ତେ ତୁମ ଘରେ ରହିବୁ । ସେମାନେ ଆମ ଘରେ ରହିବା ସମୟରେ ଆମେ ସେମାନଙ୍କୁ ପୁରୀ, ରାମଚଣ୍ଡି, କୋଣାର୍କ ଓ ନିମାପଡା ବୁଲାଇ ନେବାର ବ୍ୟବସ୍ଥା କରିଥିଲୁ । ଆମେ ସକାଳୁ ଗୋଟିଏ ଟ୍ୟାକ୍ସି ଭଡା କରି ଆଗ ପୁରୀ ଗଲୁ, ପୁରୀରେ ଜଗନ୍ନାଥଙ୍କୁ ଦେଖିସାରି କୋଣାର୍କ ପର୍ଯ୍ୟନ୍ତ ଯାଉଥିବା ମେରାଇନ୍ ଡ୍ରାଇଭ୍‌ରେ ରାମଚଣ୍ଡି ଠାକୁରାଣୀଙ୍କୁ ଦେଖିବାକୁ ଗଲୁ । ଚନ୍ଦ୍ରଭାଗାରେ ଦୁଇ ତିନି ଘଣ୍ଟା ବସି ତାପରେ କୋଣାର୍କର କାରୁକାର୍ଯ୍ୟ ଦେଖି ସେମାନେ ବଡ ଆଶ୍ଚର୍ଯ୍ୟ ହୋଇଗଲେ । ସେଠାରେ ଟିକିଏ ବୁଲାବୁଲି କରି ଆମେ ତାପରେ ନିମାପଡା ଆସିଲୁ । ନିମାପଡାରେ ମୁଁ ପିଲାବେଳେ ଯେଉଁ ଘରେ ରହୁଥିଲିଏବଂ ଯେଉଁ ଔଷଧ ଦୋକାନ ଆମର ଥିଲା ତାକୁ ସେମାନଙ୍କୁ ଦେଖାଇଲୁ । ଛେନା ଝିଲ୍ଲୀ ତାଙ୍କୁ ଖାଇବାକୁ ଦେଲୁ । ସେମାନେ ବହୁତ ଭଲ ହୋଇଛି ବୋଲି କହିଲେ ।

ବୁଜରବରୁଆ ପଚାରିଲେ, ଏହି ମିଠା ଗୌହାଟୀ ପର୍ଯ୍ୟନ୍ତ ନେଇହେବ ? ମୁଁ ତାଙ୍କୁ ନାହିଁ କଲି । ଆଉ କିଛି କିଣି ଫେରି ଆସିଲୁ । କିଛି ଦିନ ରହିଲା ପରେ ସେମାନେ ଚାଲିଗଲେ । ତାର କେତେ ଦିନ ପରେ ମୁଁ ମଧ୍ୟ ଗୌହାଟୀ ଚାଲିଗଲି ।

## ଡକ୍ଟର ଆକାଶ ସାହୁଙ୍କ ମୋ ସହିତ ଗୌହାଟୀ ଗମନ

ମୁଁ ଗୌହାଟୀରେ ଥିଲା ବେଳେ ମୋ ପି.ଏଚ୍‌ଡ଼ି ଛାତ୍ର ଡକ୍ଟର ଆକାଶ ସାହୁ ମୋତେ ବାରମ୍ବାର ଫୋନ୍ କଲେ ତାଙ୍କ ପାଇଁ ସି.ପି.ପି.ରେ ଗୋଟିଏ ରିସର୍ଚ୍ଚ ଆସିଷ୍ଟାଣ୍ଟ ଚାକିରୀ ବୁଝିଦେବା ପାଇଁ । ମୁଁ ତାଙ୍କୁ ଫୋନ୍‌ରେ କହିଲି, ଡକ୍ଟର ବୁଜରବରୁଆଙ୍କ ଠାରୁ ବୁଝିକରି ମାସେ ଦୁଇମାସ ଭିତରେ କହିବି । ଗୌହାଟୀରେ ରହିବାର ପ୍ରଥମ ବର୍ଷ ଶେଷ ବେଳକୁ ସେ ମୋ କଥାରେ ରାଜି ହେଲେ ଏବଂ ଖରା ଛୁଟି ଭିତରେ ଡକ୍ଟର ସାହୁଙ୍କ ପାଖକୁ ଗୋଟିଏ ନିଯୁକ୍ତି ପତ୍ର ପଠାଇ ଦେଲେ । ଖରା ଛୁଟିରେ ଭୁବନେଶ୍ୱର ଆସିଲା ବେଳେ ମୁଁ ତାଙ୍କୁ କହିଲି, ମୋ ସାଙ୍ଗରେ ଆସ ସାଙ୍ଗ ହୋଇଯିବା । ଆମେ ଟ୍ରେନ୍‌ରେ କଲିକତା ପର୍ଯ୍ୟନ୍ତ ଗଲୁ ଏବଂ କଲିକତା ଠାରୁ ଉଡାଜାହାଜରେ ଗୌହାଟୀ ଗଲୁ । ସେଠାରେ ପହଞ୍ଚିଲା ପରେ ମୋର କୋଠରୀ ପାଖରେ ଗୋଟିଏ ଛୋଟ କୋଠରୀ ଥିଲା, ସେ ସେଠାରେ ରହିଲେ ।

ଗୌହାଟୀରେ ଡକ୍ଟର ବୁଜରବରୁଆଙ୍କ ଅନୁରୋଧ କ୍ରମେ ଗୋଟିଏ ପରିଯୋଜନା "ଅଲଟ୍ରା ଫାଇନ୍ ପାଉଡର"(Ultra fine powder) ତିଆରି କରିବା ପାଇଁ ନର୍ଥ ଇଷ୍ଟର୍ଣ୍ଣ କାଉନ୍‌ସିଲ୍‌କୁ ଦେଇଥିଲୁ । ସେ ପରିଯୋଜନାଟିର ପରିମାଣ ହେଉଛି ୭୦ ଲକ୍ଷ ଟଙ୍କା । କିନ୍ତୁ ନର୍ଥ ଇଷ୍ଟର୍ଣ୍ଣ କାଉନ୍‌ସିଲ୍ ସି.ପି.ପି.ରେ ଅଲଟ୍ରା ଫାଇନ୍ ପାଉଡର ତିଆରି କରିବା ପାଇଁ କୌଣସି ବିଶେଷଜ୍ଞ ନଥିବାରୁ ପରିଯୋଜନାଟିକୁ ଅନୁଦାନ ଦେଲେନାହିଁ । ତେଣୁ ବାଧ୍ୟ ହୋଇ ଡକ୍ଟର ବୁଜରବରୁଆ ଅନ୍ୟ ଗୋଟିଏ ପରିଯୋଜନା ବି.ଆର.ଏନ୍.ଏସ୍ (Board of research in nuclear science)ରେ ଦେବା ପାଇଁ ମୋତେ କହିଥିଲେ । ପରିଯୋଜନାଟି ହେଉଛି ଡେନସ୍ ପ୍ଲାଜମା ଫୋକସ୍ (Dense plasma focus) । ତେଣୁ କେତେ ଦିନ ପରେ ପରିଯୋଜନାଟି ଦାଖଲ କରିଦେଲି । ପଠାଇବାର ଦୁଇ ମାସ ପରେ ବି.ଆର.ଏନ୍.ଏସ୍ ପରିଯୋଜନାଟି ଉପଯୁକ୍ତ ହୋଇଛି ଏବଂ ଅନୁଦାନ ପାଇବା ପାଇଁ ଉପଯୁକ୍ତ ବୋଲି ମତ ଦେଲେ । ପରିଯୋଜନାଟିରେ ମୁଁ ପ୍ରଧାନ ଗବେଷକ ଥିବାରୁ ଏବଂ ଗୌହାଟୀକୁ ଏକ ବର୍ଷ ପାଇଁ ଯାଇଥିବାରୁ ପରିଯୋଜନାଟିକୁ ଅନୁଦାନ ମିଳିଲା ନାହିଁ । ତେଣୁ ପରିଯୋଜନାଟି ଆଉ ଥରେ ଦିଆଗଲା । କିନ୍ତୁ ପରିଯୋଜନାଟିର ପ୍ରଧାନ ଗବେଷକ ରହିଲେ ସି.ପି.ପି.ର ଡିରେକ୍ଟର ଏବଂ ସହ ପ୍ରଧାନ ଇନ୍‌ଭେଷ୍ଟିଗେଟର ମୁଁ ରହିଲି । ପରିଯୋଜନାଟି ପୁଣି ଥରେ ଦେଇ ମୁଁ ଭୁବନେଶ୍ୱର ଆସିଲି । ଭୁବନେଶ୍ୱରରେ ରହିବାର ୮/୧୦ ଦିନ ପରେ ମୁଁ ରାଉରକେଲା ମୋ ଝିଅ ଘରକୁ କେତେ ଦିନ ପାଇଁ ବୁଲି ଯାଇଥିଲି ।

## ପରିଯୋଜନାଟିକୁ ଅନୁଦାନ ମିଳିବ

ରାଉରକେଲାରେ ଥିବା ସମୟରେ ବୃଜଗବଗୁଓ୍ୱାଙ୍କ ଠାରୁ ଫୋନ୍‌ରେ ଖବର ପାଇଲି, ଯେ ପରିଯୋଜନାଟି ପାଇଁ ଅନୁଦାନ ମିଳିବ ବୋଲି ବି.ଆର.ଏନ୍.ଏସ୍ ମୋତେ ଜଣାଇଛନ୍ତି । କିନ୍ତୁ କେତେ ଟଙ୍କା ଦିଆହେବ ତାହା ଠିକ୍ ହୋଇନାହିଁ । ତେଣୁ ଆପଣ କେଉଁ ସବୁ ଉପକରଣ କିଣିବେ । ତାର ବିସ୍ତୃତ ବିବରଣୀ ଦେଲେ ଟଙ୍କା ଅନୁଦାନ ମିଳିବ । ଏହି ଖବର ସହିତ ବୃଜଗବଗୁଓ୍ୱା କହିଲେ, ଆପଣ ଶୀଘ୍ର ଗୌହାଟୀ ଆସନ୍ତୁ । ତେଣୁ ମୁଁ ତା ପରଦିନ ରାଉରକେଲାରୁ ଭୁବନେଶ୍ୱର ଚାଲି ଆସିଲି । ଆଉ ଦିନକ ପରେ ଉଡାଜାହାଜରେ ଗୌହାଟୀ ଯାଇ ସି.ପି.ପି.ରେ ପହଞ୍ଚିଲି । ପହଞ୍ଚିଲା ପରେ ପରିଯୋଜନା ପାଇଁ କେଉଁ କେଉଁ ଉପକରଣ ଦରକାର ହେବ ତାହାର ଗୋଟିଏ ତାଲିକା କରି ଏବଂ ତାହାର ଆନୁମାନିକ ଦାମ୍ ପକାଇ ଅନ୍ୟାନ୍ୟ ସବୁ ଖର୍ଚ୍ଚର ହିସାବ କରି ପରିଯୋଜନା ଖର୍ଚ୍ଚ ପାଇଁ ୧୬ ଲକ୍ଷ ଟଙ୍କା ଆବଶ୍ୟକ ହେବ ବୋଲି ଜଣାଇଲୁ । ଉପକରଣ ତାଲିକାଟି ବି.ଆର.ଏନ୍.ଏସ୍.କୁ ପଠାଇ ଦେଲୁ । ଏତେ ବେଳକୁ ପୂଜାଛୁଟି ସମୟ ହୋଇ ଯାଇଥାଏ । ତେଣୁ ମୁଁ ଭୁବନେଶ୍ୱର ଆସିବା ପାଇଁ ଗୌହାଟୀରୁ କଲିକତା ପର୍ଯ୍ୟନ୍ତ ଗୋଟିଏ ଉଡାଜହାଜ ଟିକେଟ ଓ କଲିକତା ଠାରୁ ଭୁବନେଶ୍ୱର ପର୍ଯ୍ୟନ୍ତ ଗୋଟିଏ ଟ୍ରେନ୍ ଟିକେଟ ସଂରକ୍ଷଣ କରିଦେଲି । ନିର୍ଦ୍ଦିଷ୍ଟ ଦିନ ସକାଳୁ ବସ୍‌ରେ ବସି ଗୌହାଟୀ ବିମାନ ବନ୍ଦରକୁ ଗଲି । ବିମାନ ବନ୍ଦରରେ ପହଞ୍ଚିଲା ପରେ ଉଡାଜାହାଜ ଛାଡିବା ଦୁଇ ଘଣ୍ଟା ଡେରି ଅଛି ବୋଲି ଜାଣିଲି । ତେଣୁ ଦୁଇ ଘଣ୍ଟା ବିମାନ ବନ୍ଦରରେ ଅପେକ୍ଷା କରି ତାପରେ ଦମ୍ ଦମ୍ ଆସିଲି ଏବଂ ଦମ୍ ଦମ୍ ବିମାନ ବନ୍ଦରରେ ଓହ୍ଲାଇ ଗୋଟିଏ ବସ୍‌ରେ ହାଓ୍ୱଡା ଷ୍ଟେସନ ଆସିଲି । କିନ୍ତୁ ବସ୍‌ଟି ହାଓ୍ୱଡା ଷ୍ଟେସନ୍‌ର ଆରପଟେ ହୁଗୁଳି ନଦୀ କୂଳରେ ସବୁ ଯାତ୍ରୀଙ୍କୁ ଓହ୍ଲାଇ ଦେଲା ଏବଂ କହିଲା, ବସ୍ ହାଓ୍ୱଡା ଷ୍ଟେସନ୍‌କୁ ଯାଇ ପାରିବ ନାହିଁ । କାରଣ ରାସ୍ତା ବହୁତ ଭିଡ ଅଛି । ତେଣୁ ଆପଣ ମାନେ ଏହିଠାରୁ ଓହ୍ଲାଇ ବୋଟ୍‌ରେ ଚାଲି ଯାଆନ୍ତୁ । ତା'ହେଲେ ଆପଣ ଗାଡି ପାଇଯିବେ । ବାଧ୍ୟ ହୋଇ ସେଠାରୁ ଓହ୍ଲାଇ ବୋଟରେ ଟିକେଟ୍ କରିବା ପାଇଁ ଗୋଟିଏ ଧାଡିରେ ଛିଡା ହେଲି । କିଛି ସମୟ ପରେ ଟିକେଟ୍ ଖଣ୍ଡିଏ ପାଇଲି । ଟିକେଟ୍‌ଟି ନେଇ ଯାଇ ବୋଟରେ ବସିଲି । ଅଧ ଘଣ୍ଟା ଭିତରେ ହୁଗୁଳି ନଦୀ କୂଳରେ ଥିବା ହାଓ୍ୱଡା ଷ୍ଟେସନ୍‌ରେ ବୋଟଟି ମୋତେ ପହଞ୍ଚାଇ ଦେଲା । ପ୍ଲାଟଫର୍ମରେ କିଛି ସମୟ ଅପେକ୍ଷା କରି ପୁରୀ ଏକ୍ସପ୍ରେସରେ ଯାଇ ବସିଲି । ତାପର ଦିନ ସକାଳେ ମୁଁ ଭୁବନେଶ୍ୱରରେ ଆସି ପହଞ୍ଚିଲି ।

ଭୁବନେଶ୍ୱରରେ ୮/୧୦ ଦିନ ରହିବା ପରେ ପୁଣି ଡକ୍ଟର ବୃଜଗବଗୁଓ୍ୱାଙ୍କ ଫୋନ୍ ଖବର ପାଇଲି,ଯେ ଡେନ୍‌ସ ପ୍ଲାଜମା ଫୋକସ୍‌ର ପରିଯୋଜନାଟି ଅନୁଦାନ ପାଇବାକୁ ଯୋଗ୍ୟ ବିବେଚିତ ହୋଇଛି । ସେ ପରିଯୋଜନାଟି ପାଇଁ ବି.ଆର.ଏନ୍.ଏସ୍. ପ୍ରାୟ ୧୧ ଲକ୍ଷ ଟଙ୍କା ଅନୁଦାନ ଏବଂ ସି.ପି.ପି. ପ୍ରାୟ ୪ ଲକ୍ଷ ଟଙ୍କା ପରିଯୋଜନା ପାଇଁ ଖର୍ଚ୍ଚ କରିବ । ପରିଯୋଜନାଟି ମିଳିବାର ଠିକ୍ ହୋଇଗଲା ପରେ ଆମକୁ ୩ ବର୍ଷ ମଧ୍ୟରେ କାମ ସାରିବାକୁ ପଡିବ । ବି.ଆର.ଏନ୍.ଏସ୍. ପୁଣି ଲେଖିଲା । ମୁଖ୍ୟ ଗବେଷକ କିମ୍ବା ଉପମୁଖ୍ୟ ଗବେଷକ

ବି.ଏ.ଆର.ସି.ର ବୈଜ୍ଞାନିକ ଡକ୍ଟର ରାଉତଙ୍କ ସାଙ୍ଗରେ ଆଲୋଚନ କରି କିପରି ପରିଯୋଜନାଟି ନିର୍ଦ୍ଦିଷ୍ଟ ସମୟରେ ସରିବ ତାହାର ଠିକଣା କର ଏବଂ କିଏ ଆସିବ, କେବେ ଆସିବ ତାହା ଶୀଘ୍ର ଲେଖିକରି ଜଣାଅ । ଏହି ଚିଠିର ଉତ୍ତରରେ ଡକ୍ଟର ବୁଜରବରୁଆ ବି.ଏ.ଆର.ସି.କୁ ଜଣାଇଦେଲେ ଡକ୍ଟର ପତିତପାବନ ମିଶ୍ର, ଉପମୁଖ୍ୟ ଗବେଷକ ବି.ଏ.ଆର.ସି. ଯିବେ । କିନ୍ତୁ କେଉଁ ଦିନ ଯିବେ ତାହା ଡକ୍ଟର ମିଶ୍ର ଲେଖି ଜଣାଇବେ ।

ଏହି ପରିଯୋଜନାର ଅନୁଦାନ ମିଳିବ ବୋଲି ଠିକ୍ ହୋଇଗଲା ପରେ ସି.ପି.ପି.ରେ କାମ କରୁଥିବା ଦୁଇ ଜଣ ଗବେଷକ ମୋ କାମ ସମ୍ବନ୍ଧରେ ଡକ୍ଟର ବୁଜରବରୁଆଙ୍କୁ କେତେ ଗୁଡିଏ କଥା କହିଲେ । ଡକ୍ଟର ବୁଜରବରୁଆ ତାଙ୍କ କଥାଗୁଡିକ ଠିକ୍ ନା ଭୁଲ୍ ଜାଣିବା ପାଇଁ ମୋତେ ସିଧା ନ ପଚାରି ବୁଲେଇ ବଙ୍କେଇ ପଚାରିଲେ । ତାଙ୍କ ମନରେ ସନ୍ଦେହ ଜାତ ହେବାର ମୂଳ କାରଣ ହେଉଛି, ମୁଁ ଯେଉଁ ପ୍ଲାଜମା ସୃଷ୍ଟି କରୁଛି ତାହା ପ୍ରକୃତରେ ପ୍ଲାଜମା ନୁହେଁ । ସେଥିପାଇଁ ମୋ ସହିତ ଆଉ ଜଣେ ଗବେଷକ ଡକ୍ଟର ବିପୁଲ୍ ସାଇକିଆଙ୍କୁ ମୋ କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ନିର୍ଦ୍ଦେଶ ଦେଲେ । ୧୫/୨୦ ଦିନ ପରେ ଏହି କାମ ଉପରେ ଗୋଟିଏ ସେମିନାରରେ ଡକ୍ଟର ବିପୁଲ୍ ସାଇକିଆ ଗୋଟିଏ ବକ୍ତୃତା ଦେଲେ । ଯେଉଁଥିରୁ ପ୍ରମାଣିତ ହୋଇଗଲା,ଯେ ମୁଁ ଯେଉଁ ପ୍ରକାରର ପ୍ଲାଜମା ସୃଷ୍ଟି କରୁଛି ତାହା ହେଉଛି ପ୍ରକୃତ ପ୍ଲାଜମା ।

## ଡକ୍ଟର ନିରଞ୍ଜନ ତ୍ରିପାଠୀଙ୍କ ସଙ୍ଗେ ସି.ପି.ପି.ରେ ସାକ୍ଷାତ

ଗୌହାଟୀରେ ଥିବାବେଳେ ଦିନେ ସକାଳ ୭ଟା ବେଳେ କେହି ଜଣେ ଦୁଆର ମୁହଁରେ ଡାକିଲା । ଦୁଆର ଖୋଲିବାରୁ ମୁଁ ଦେଖିଲି,ଡକ୍ଟର ନିରଞ୍ଜନ ତ୍ରିପାଠୀ ଏବଂ ଆଉ ଜଣେ ଆସିଛନ୍ତି । ମୁଁ ସେମାନଙ୍କୁ ଡାକି ବସାଇଲି । ଡକ୍ଟର ତ୍ରିପାଠୀ କହିଲେ, ମୋର ବନ୍ଧୁ ଡାକ୍ତରଙ୍କ ପାଖକୁ ଆସିଥିଲି । ତାଙ୍କ ଠାରୁ ଶୁଣିଲି,ଜଣେ ଓଡିଆ କିଏ ବର୍ଷେ ହେଲା ଆସି ସି.ପି.ପି.ରେ କାମ କରୁଛନ୍ତି । ମୁଁ ତାଙ୍କୁ ଜାଣିଛି ଏବଂ ତାଙ୍କ ଘର କେଉଁଠି ମଧ୍ୟ ଦେଖିଛି । କିନ୍ତୁ ନାମ କହି ପାରିବି ନାହିଁ । ଡକ୍ଟର ତ୍ରିପାଠୀ ମୋ ସହିତ ମିଶିବାକୁ ଆଗ୍ରହ ପ୍ରକାଶ କରିବାରୁ ତାଙ୍କ ବନ୍ଧୁ ଜଣଙ୍କ ତାଙ୍କୁ ମୋ ପାଖକୁ ନେଇକରି ଆସିଲେ । ତାଙ୍କ ବନ୍ଧୁଙ୍କୁ ମୁଁ ପ୍ରାତଃ ଭ୍ରମଣ କଲାବେଳେ, ତାଙ୍କୁ ମୋ ଘରଟା କେଉଁଠି ଦେଖାଇ ଦେଇଥିଲି । ଏସବୁ କଥାବାର୍ତ୍ତା ହେଲାପରେ ଡକ୍ଟର ତ୍ରିପାଠୀ କହିଲେ,ମୁଁ ଓଡିଶା ଚାଲିଯିବି । ଡକ୍ଟର ତ୍ରିପାଠୀ ଆଇ.ଏସ୍‌ସି ପଢିଲା ସମୟରେ ମୋ ଛାତ୍ର ଥିଲେ । ଗୌହାଟୀରେ ୧୯୯୪ ଡିସେମ୍ବର ମାସରେ 'ପ୍ଲାଜମା ସାଇନ୍ସ ଆଣ୍ଡ ଟେକ୍‌ନୋଲୋଜି'ର ଗୋଟିଏ ସିମ୍ପୋଜିୟମ୍ ହେବାର ଥିଲା । ତେଣୁ ସେହି ସିମ୍ପୋଜିୟମ୍ ପାଇଁ ମୋତେ କେତେ ଗୁଡିଏ ଦାୟିତ୍ୱ ଦିଆଗଲା । ସେହି ସିମ୍ପୋଜିୟମ୍‌ଟି ଆଉ ଗୋଟିଏ ଇନ୍‌ଷ୍ଟିଟ୍ୟୁସନ୍ ଆନୁକୂଲ୍ୟରେ ଗୌହାଟୀ ଠାରେ ହେଉଥିଲା । ମୁଁ ସେହି ସିମ୍ପୋଜିୟମ୍ ପରେ ଭୁବନେଶ୍ୱର ଦେଇ ବି.ଏ.ଆର.ସି. ଯିବା ପାଇଁ ଡକ୍ଟର ବୁଜରବରୁଆ ଏବଂ ମୁଁ ଠିକ୍ କଲୁ । ମୋତେ ବୁଜରବରୁଆ କହିଲେ, "ଆପଣ ଭୁବନେଶ୍ୱରରେ ରିଜିଓନାଲ ରିସର୍ଚ୍ଚ ଲାବୋରାଟୋରିକୁ ଯାଇ କିପରି ପ୍ଲାଜମା ଫୋକସ୍ ମେସିନ୍‌ଟି ତିଆରି କରାଯାଇ ପାରିବ, ସେହି

ବିଷୟରେ ଶ୍ରୀ ବି.ସି ମହାନ୍ତିଙ୍କ ସାଙ୍ଗେ ଆଲୋଚନା କରିବେ । ତାପରେ ବି.ଏ.ଆର.ସି.ଯାଇ ଡକ୍ଟର ରାଉତଙ୍କ ସାଙ୍ଗରେ ଆଲୋଚନା କରି ଗୌହାଟୀ ଫେରିବେ । ସିମ୍ପୋଜିୟମ୍ ପରେ ମୁଁ ଭୁବନେଶ୍ୱର ଯିବା ପାଇଁ ବାହାରିଲି । କିନ୍ତୁ ସେ କହିଲେ,ଡିସେମ୍ବର ୨୪ ତାରିଖ ପରେ ଯିବେ । କାରଣ ୨୪ ତାରିଖରେ ସି.ପି.ପି.ର ସମସ୍ତ ଗବେଷକମାନଙ୍କର ଗୋଟିଏ ବଣ ଭୋଜି ହେବାର ଠିକ୍ ହୋଇଛି । ତାଙ୍କ କହିବା ଅନୁସାରେ ୨୮ ତାରିଖରେ ଭୁବନେଶ୍ୱର ଆସିବା ପାଇଁ ଉଡାଜାହାଜ ଟିକେଟ ଗୌହାଟୀ ଠାରୁ ଭୁବନେଶ୍ୱର ପର୍ଯ୍ୟନ୍ତ ସଂରକ୍ଷଣ କରିଦେଲି । ୨୮ ତାରିଖ ଦିନ ସକାଳେ ଗୌହାଟୀ ବିମାନ ବନ୍ଦରରେ ଉଡାଜାହାଜ ଛାଡିବା ସମୟ ଦୁଇଘଣ୍ଟା ଡେରି ହୋଇଗଲା ।

## ଭୁବନେଶ୍ୱର ବିମାନ ବନ୍ଦରରେ ୫ ଟା ବେଳେ ଓହ୍ଲାଇଲି

ମୁଁ ଭୁବନେଶ୍ୱର ବିମାନ ବନ୍ଦରରେ ୫ ଟା ବେଳେ ଓହ୍ଲାଇଲି । ବିମାନ ବନ୍ଦରରେ ମୋର ଶ୍ରୀମତୀ ଆମ ଗାଡି ନଇ ମୋତେ ଅପେକ୍ଷା କରିଥିଲେ । ମୁଁ ପହଞ୍ଚିବା ପରେ ମୋତେ କହିଲେ, ମୋର ସାନ ଭିଣୋଇଙ୍କର ୨୫ ତାରିଖରେ ଭୁବନେଶ୍ୱର ଠାରେ ଥିବା ତାଙ୍କ ବାସ ଭବନରେ ଦେହାନ୍ତ ହୋଇଯାଇଛି । ତାପରେ ସେ ମୋତେ କହିଲେ, ତମେ ଦଶାହ ପୂର୍ବରୁ ଆସିବ ବୋଲି ଜାଣିଥିଲି । ତେଣୁ ମୁଁ ତୁମକୁ ଖବର ଦେଇ ନ ଥିଲି । ତେଣୁ ଆମେ ବିମାନ ବନ୍ଦରରୁ ତୁମ ସାନ ନାନୀଙ୍କ ଘରକୁ ଯାଇ ତାପରେ ଆମ ଘରକୁ ଫେରିବା । ତାଙ୍କର ସେଦିନ ଚତୁର୍ଥୀ ଶୀତଳ ଥିବାରୁ ସେମାନେ ବାଧ୍ୟ କରି ଦୁଇଘଣ୍ଟା ରଖାଇ ଦେଲେ । ମୁଁ ଆସି ଘରେ ପହଞ୍ଚିଲା ବେଳକୁ ରାତି ୯ଟା ହୋଇଥିଲା । ଭୁବନେଶ୍ୱରରେ ସାତ ଦିନ ରହିଲା ପରେ ମୁଁ ଶ୍ରୀ ବି.ସି ମହାନ୍ତିଙ୍କ ସହିତ ଯାଇ ଦେଖା କଲି । ତାଙ୍କ ସାଙ୍ଗରେ ଆଲୋଚନା କଲି । ମୋତେ ପ୍ରାୟ ଏଥିପାଇଁ ୮/୧୦ ଦିନ ସମୟ ଲାଗିଲା । ମୁଁ ଫେବୃଆରୀ ୧୦ ତାରିଖରେ ବି.ଏ.ଆର.ସି. ଯିବି ବୋଲି ଡକ୍ଟର ରାଉତ୍‌ଙ୍କୁ ଲେଖି ଜଣାଇ ଦେଲି ଏବଂ ମୋ ପୁଅ ରଞ୍ଜନ ମିଶ୍ରଙ୍କୁ ଦାଦର ଷ୍ଟେସନ୍‌କୁ କୋଣାର୍କ ଏକ୍ସପ୍ରେସ ପହଞ୍ଚିଲା ସମୟକୁ ଆସିବାକୁ ଲେଖିଦେଲି ।

ସେହି ୧୦ ତାରିଖ ଦିନ ସଂଧ୍ୟାବେଳେ କୌଣସି କାରଣରୁ ମୋ ମନଟା କାହିଁକି ବିଶେଷ ଖରାପ ହୋଇଗଲା । ଯେହେତୁ ଟିକେଟ୍ ସଂରକ୍ଷଣ ହୋଇଯାଇ ଥିଲା ତେଣୁ ମୁଁ ଷ୍ଟେସନ୍‌କୁ ବାହାରି ଗଲି ଏବଂ ଗାଡିରେ ବସି ବମ୍ବେ ଅଭିମୁଖେ ଯାତ୍ରାକଲି । ମୋ ପାଖ ସିଟ୍‌ରେ ମଧ୍ୟ ଜଣେ ଭଦ୍ର ଲୋକ ବମ୍ବେ ଯାଉଥିଲେ । ତାଙ୍କ ସଙ୍ଗେ କଥାବାର୍ତ୍ତା ହୋଇ ସମୟ କଟିଗଲା ।

## ପୁନାରେ ପହଞ୍ଚିଲା ପରେ ଜାଣିଲି ମୋତେ ପକ୍ଷାଘାତ ହୋଇଯାଇଛି

ପୁନାରେ ପହଞ୍ଚିଲା ପରେ ଜାଣିଲି, ମୋତେ ପକ୍ଷାଘାତ ହୋଇଯାଇଛି । ଭୋରରୁ ଗାଡି ପୁନାରେ ପହଞ୍ଚିଲା ପରେ ମୁଁ ଗାଡିର ଝରକା ବାଟେ ଚା ଖାଇବା ପାଇଁ ଚା ବିକିବା ଲୋକଙ୍କୁ ପାଖକୁ ଡାକିଲି, କିନ୍ତୁ ମୁଁ କିଛି କହି ପାରିଲି ନାହିଁ । ମୋ ପାଖ ଭଦ୍ର ଲୋକଙ୍କୁ ମଧ୍ୟ କିଛି କହି

ପାରିଲି ନାହିଁ ଏବଂ ମୁଁ ଯାହା କହିଲି,ସେ ବୁଝି ପାରିଲେ ନାହିଁ । ମୁଁ ଭାବିଲି,ତାଙ୍କୁ ଲେଖିକରି ଜଣାଇ ଦେବି । କିନ୍ତୁ ମୁଁ କିଛି ଲେଖି ପାରିଲି ନାହିଁ । ଏହିପରି ଭାବରେ କିଛି ବାଟ ଗଲାପରେ ବାମ ହାତରେ ତାଙ୍କୁ ଜଣାଇ ଦେଲି,ଯେ ମୁଁ କଥା କହିପାରୁ ନାହିଁ କି ମୋର ଡାହାଣ ହାତ ଠିକ୍ ଭାବରେ କାମ କରୁନାହିଁ । କିନ୍ତୁ ସେ ଯାହା କହୁଥିଲେ ତାହା ମୁଁ ଠିକ୍ ଭାବରେ ବୁଝି ପାରୁଥିଲି । ସେ କହିଲେ,ତୁମ ପାଟିଟା ଟିକିଏ ବଙ୍କା ହୋଇଯାଇଛି । ମୋର ଡାହାଣ ପଟଟି କିପରି ଅଚଳ ହେଲାପରି ଲାଗୁଛି । ସେ କହିଲେ,ମୁଁ ଆପଣଙ୍କୁ ମୋ ଘରକୁ ଟ୍ୟାକ୍ସିରେ ନେଇଯିବି । ସେଠାରୁ ଆପଣ ଆପଣଙ୍କ ପୁଅ ପାଖକୁ ଫୋନ୍ କରିଦେବେ । ସେ ଆସି ଆପଣଙ୍କୁ ଏଠାରୁ ନେଇ ଯିବେ । ମୁଁ ଏଥିରେ ରାଜି ହେଲି ନାହିଁ । ମୁଁ ତାଙ୍କୁ ଠାରି କରି କହିଲି-ଆପଣ ମୋତେ ଦାଦର ପ୍ଲାଟଫର୍ମରେ ଓହ୍ଲାଇ ଦିଅନ୍ତୁ । ମୁଁ ସେଠାରେ ଅପେକ୍ଷା କରିବି ଏବଂ ମୋ ପୁଅର ଫୋନ୍ ନମ୍ବରକୁ ଫୋନ୍ କରିଦିଅନ୍ତୁ । ସେ ମହାଶୟ ଗାଡି ଦାଦର ଷ୍ଟେସନ୍‌ରେ ପହଞ୍ଚିବା ପରେ ମୋତେ ଗାଡିରୁ ଓହ୍ଲାଇ ଦେଲେ ଏବଂ ପ୍ଲାଟଫର୍ମରେ ଥିବା ଚୌକିରେ ବସାଇ ଦେଲେ । ତାର ପାଞ୍ଚ ମିନିଟ୍ ପରେ ମୋର ପୁଅ ମୋତେ ଖୋଜି ଖୋଜି ଆସିଲା । ମୋତେ ଦେଖି କଣ ସବୁ ପଚାରିଲା । ମୁଁ କିଛି କହି ପାରିଲି ନାହିଁ । ତାପରେ ଟ୍ୟାକ୍ସି କରି ବି.ଏ.ଆର.ସି.ରେ ରହୁଥିବା ଜଣେ ସାଙ୍ଗଙ୍କ ଘରକୁ ନେଇଗଲା ।

## ବି.ଏ.ଆର.ସି ଡାକ୍ତରଖାନାରେ ମୋର ଚିକିତ୍ସା

ସେ ଦୁହେଁ ଆଲୋଚନା କରି ମୋତେ ବି.ଏ.ଆର.ସି. ହସପିଟାଲରେ ଦେଖାଇବା ପାଇଁ ନେଇଗଲେ । ସେମାନେ ମୋତେ ହସପିଟାଲ୍‌ରେ ରହିବା ପାଇଁ ସୁବିଧା କରିଦେଲେ ଏବଂ ସଙ୍ଗେ ସଙ୍ଗେ ମୋର ସବୁ ଟେଷ୍ଟ କରିଦେଲେ । ମୋ ପୁଅ ତାଙ୍କୁ ପଚାରିବାରୁ ସେ କିଛି କହିଲେ ନାହିଁ । ଖାଲି ଏତିକି କହିଲେ,ତୁମେ ଅପେକ୍ଷା କର । ତାର ସାଙ୍ଗ ଏବଂ ସେ ମୋତେ ପାଳି କରି ଜଗି ରହୁଥିଲେ । ମୋର ଜଣାଶୁଣା ଲୋକ କେତେଜଣ ବି.ଏ.ଆର.ସି ଡାକ୍ତରଖାନାକୁ ଆସି ମୋତେ ଦେଖି ଯାଉଥିଲେ । ୨୪ ଘଣ୍ଟା ପରେ ମୋର ପାଟି ଟିକିଏ ଫିଟିଗଲା । ଡାକ୍ତରମାନେ କହିଲେ ମୁଁ ଟିକିଏ ଭଲ ଆଡକୁ ଆସୁଛି ଏବଂ ୭୨ ଘଣ୍ଟା ପରେ ଆମେ ଜଣାଇ ଦେବୁ ଡାକ୍ତରଖାନାରେ ରହିବେ କି ତାଙ୍କୁ ଛାଡି ଦିଆଯିବ । ୭୨ ଘଣ୍ଟା ପରେ ମୋ ପୁଅକୁ କହିଲେ, ତୁମେ କାଲି ସକାଳୁ ଯଦି ନେବାକୁ ଇଚ୍ଛା କରୁଛ ତେବେ ଆମେ ଆଜି ରାତିରେ ଛାଡିଦେବୁ । ତୁମେ ଯାଇ ଆଜି ଭୁବନେଶ୍ୱରକୁ ଉଡାଜାହାଜ ଟିକେଟ୍ କରିଆଣ । ଟିକେଟ୍ ଆଣିଲେ ଆମେ ଛାଡିଦେବୁ । ମୋ ପୁଅ ଯାଇ ଟିକେଟ କରି ଆଣିଲା । ତେଣୁ ପୂର୍ବ ଦିନ ରାତିରେ ମୋତେ ଡାକ୍ତରଖାନାରୁ ଛାଡିଦେଲେ । ମୁଁ ଯାଇ ପୁଅର ଜଣେ ସାଙ୍ଗ ଘରେ ରହିଲି ଏବଂ ଡକ୍ଟର ରାଉତଙ୍କୁ ଡକାଇ ଆଣିବାକୁ କହିଲି । ଡକ୍ଟର ରାଉତ୍ ଆସିଲା ପରେ ମୁଁ ତାଙ୍କ ସଙ୍ଗେ କଥାବାର୍ତ୍ତା ହୋଇ ବି.ଆର.ଏନ୍.ଏସ୍.କୁ ମୋ ବିଷୟ ଜଣାଇ ଦେବାକୁ କହିଲି ।

ଭୋର ଚାରିଟା ବେଳେ ଏକ ଟ୍ୟାକ୍ସିରେ ପୁଅ ଏବଂ ତାର ସାଙ୍ଗ ବିମାନ ବନ୍ଦରକୁ ନେଲେ ତା'ପର ଦିନ ଭୋର ଚାରିଟା ବେଳେ ଗୋଟିଏ ଟ୍ୟାକ୍ସି କରି ମୁଁ, ପୁଅ ଏବଂ ତାର ସାଙ୍ଗ

ବମ୍ବେ ବିମାନ ବନ୍ଦରକୁ ଗଲୁ । ବିମାନ ବନ୍ଦରରେ ଓହ୍ଲାଇ ଆମେ କିଛି ସମୟ ଅପେକ୍ଷା କଲୁ । ଏହା ଭିତରେ ପୁଅ ବିମାନ ବନ୍ଦର ଅଧିକାରୀଙ୍କୁ ମୁଁ ପୀଡିତ ବୋଲି ଜଣାଇ ଦେଲା । ତାର କିଛି ସମୟ ପରେ ଜଣେ ଲୋକ ଚକ ଲଗା ଚୌକି ଧରି ଆମ ପାଖରେ ଆସି ପହଞ୍ଚିଲା । ମୋତେ ସେହି ଚକଲଗା ଚୌକିରେ ସିକ୍ୟୁରିଟି ଚେକ୍ ପାଇଁ ଯିବାକୁ ପଡିଲା । ସିକ୍ୟୁରିଟି ଚେକ୍ ପରେ ସେହି ଚୌକିରେ ମୋତେ ଉଡାଜାହାଜ ପର୍ଯ୍ୟନ୍ତ ଯାଇ ଉଡାଜାହାଜର ଆଗ ସିଟ୍‌ରେ ବସିବାକୁ ପଡିଲା । ମୁଁ ଏବଂ ମୋ ପୁଅ ପାଖାପାଖି ସିଟ୍‌ରେ ବସିଲୁ । ଉଡାଜାହାଜ ଛାଡିବାର ଦୁଇଘଣ୍ଟା ପରେ ଆମେ ଦମ୍ ଦମ୍ ବିମାନ ଘାଟୀରେ ପହଞ୍ଚିଲୁ । ଉଡାଜାହଜରୁ ଓହ୍ଲାଇବା ପରେ ସେହିପରି ଚକଲଗା ଚୌକି ସାହାଯ୍ୟରେ ମୋତେ ବିମାନ ବନ୍ଦର ଭିତରକୁ ଆସିବାକୁ ପଡିଲା । ବିମାନ ବନ୍ଦରରେ ପ୍ରାୟ ଦୁଇ ଘଣ୍ଟା ଅପେକ୍ଷା କରିବା ପରେ ଭୁବନେଶ୍ୱର ଆସିବାର ସମୟ ହେବାରୁ ସେହି ଚୌକିରେ ବସି ଉଡାଜାହାଜ ପର୍ଯ୍ୟନ୍ତ ଆସି ପୁଣି ଉଡାଜାହାଜରେ ବସିଲି । ପ୍ରାୟ ୪୫ ମିନିଟ୍ ପରେ ଭୁବନେଶ୍ୱରରେ ଓହ୍ଲାଇଲି । ଭୁବନେଶ୍ୱରରେ ଉଡାଜାହାଜ ପାଖରୁ ବିମାନ ବନ୍ଦର ଭିତରକୁ ମୁଁ ଆସ୍ତେ ଆସ୍ତେ ପୁଅର ସାହାଯ୍ୟ ନେଇ ଚାଲି ଚାଲି ଆସିଲି । ସେତେବେଳେ ବିମାନ ବନ୍ଦର ପାଖରେ ଆମ ଗାଡିନେଇ ମୋ ଶ୍ରୀମତୀ ଏବଂ ସାନ ପୁଅ ଆମକୁ ଅପେକ୍ଷା କରି ରହିଥିଲେ । ଘରେ ଆସି ପହଞ୍ଚିବା ବେଳକୁ ମୋ ସ୍ତ୍ରୀଙ୍କର ମାମୁଁ ଡକ୍ଟର ଭାସ୍କର ରଥ ଆଗରୁ ଆସି ଆମ ଘରେ ଅପେକ୍ଷା କରିଥିଲେ ।

## ଡକ୍ଟର ଭାସ୍କର ରଥଙ୍କ ଚିକିତ୍ସାରେ ରହିଲି

ଡକ୍ଟର ଭାସ୍କର ରଥ ଓଡିଶା ସରକାରଙ୍କ ଅଧିନରେ ଡାକ୍ତର ହିସାବରେ ଚାକିରୀ କରି ଶେଷରେ ସ୍ୱାସ୍ଥ୍ୟ ନିର୍ଦ୍ଦେଶକ ଭାବରେ ଅବସର ଗ୍ରହଣ କରିଥିଲେ । ସେ ଭୁବନେଶ୍ୱର ସହିଦ୍ ନଗରରେ ଘର କରି ରହୁଥିଲେ । ମୁଁ ତାଙ୍କ ଚିକିତ୍ସାରେ ରହିଲି । ସେ ଆଶ୍ୱାସନା ଦେଇ ମୋର ଶ୍ରୀମତୀଙ୍କୁ କହୁଥିବାର ମୁଁ ଶୁଣିଛି ଯେ ମୋ ଦେହ ଭଲ ହୋଇଯିବ । କିନ୍ତୁ ଡେରି ହେବ । ମୋ ବହୁମୂତ୍ର ରୋଗ ପାଇଁ ମୋ ଖାଇବାର ଗୋଟିଏ ତାଲିକା କରିଦେଲେ ଏବଂ ମୁଁ ପୂର୍ବରୁ ଖାଉଥିବା ବିଟାନେଜ୍ ଖାଇବାକୁ କହିଲେ ଏବଂ ବେଶୀ ମାନସିକ ଓ ଶାରୀରିକ ପରିଶ୍ରମ କରିବାକୁ ମନାକଲେ । ଯେତେବେଳେ ଟିକିଏ ଖରାପ ଅନୁଭବ କରିବ ସେତେବେଳେ ଶେଯରେ ଶୋଇପଡିବ । ସେ କହିଲେ, ରକ୍ତ ଶର୍କରା ରକ୍ତରେ ବେଶୀ ପରିମାଣରେ ରହିବାରୁ ରକ୍ତ ପ୍ରବାହ ସୂକ୍ଷ୍ମ ନଳୀ ଗୁଡିକର ବ୍ୟାସ ଛୋଟ ହୋଇଗଲା । ସେଥିପାଇଁ ଏହି ପ୍ରକାର ପାରାଲିସିସ୍ ହେଲା । ଏହିପରି ଭାବରେ ଦୁଇ ବର୍ଷ ପର୍ଯ୍ୟନ୍ତ ପ୍ରାୟ ଶଯ୍ୟାଶାୟୀ ରହିଲି । କେବଳ ସଂଧ୍ୟାବେଳେ କିଛି ସମୟ ପାଇଁ ପୋର୍ଟିକୋରେ ବସୁଥିଲି ।

ମୋର ଦେହ ଖରାପ ହେବାରୁ ମୁଁ ଆଉ ଫିଜିକ୍ସ ଏଜୁକେସନକୁ ପ୍ରବନ୍ଧ ପଠାଇ ପାରି ନ ଥିଲି । ମୋ ଦେହ ଟିକିଏ ଭଲ ହେବାରୁ ଗୋଟିଏ ପରେ ଗୋଟିଏ ଏହିପରି ୬ ଗୋଟି ପ୍ରବନ୍ଧ ପଠାଇ ଥିଲି । ସେହି ପ୍ରବନ୍ଧ ଗୁଡିକ ଫିଜିକ୍ସ ଏଜୁକେସନରେ ଛପା ହୋଇଥିଲା । ଏହି ସମୟରେ ଥରେ ସି.ପି.ପି.ର ଡାଇରେକ୍ଟର ଗୋଟିଏ କାର କିଣିବା ପାଇଁ କଟକ ଆସିଥିଲେ । ସେ ମୋତେ

ଦେଖିବା ପାଇଁ ମୋ ଘରକୁ ଭୁବନେଶ୍ୱର ଆସିଥିଲେ । ସେ ମୋତେ ପଚାରିଲେ, ଆପଣ ବର୍ତ୍ତମାନ କଣ କାମ କରୁଛନ୍ତି ? ମୁଁ ଉତ୍ତର ଦେଲି ମୁଁ ଚାକିରୀରୁ ଅବସର ନେବା ପରେ ଗୋଟିଏ ପ୍ରାକ୍‌ଟିକାଲ୍ ବହି ଅନର୍ସ ଓ ପାଶ୍ ପିଲାଙ୍କ ପାଇଁ ଲେଖିବାକୁ ଆରମ୍ଭ କରିଛି । ପ୍ରାୟ ୧୦୦ ପୃଷ୍ଠା ଖଣ୍ଡେ ଲେଖି ଦେଇଥିଲି କିନ୍ତୁ ତାପରେ ଗୌହାଟୀ ଚାଲିଯିବାରୁ ଲେଖା ବନ୍ଦ ହୋଇ ଯାଇଥିଲା । ଏବେ ଏଇ କେତେ ଦିନ ହେଲା ପୁଣି ଲେଖିବାକୁ ଆରମ୍ଭ କରିଛି । ଲେଖିବାକୁ ବଡ କଷ୍ଟ ହେଉଛି କାରଣ ମୁଁ ହାତରେ ଲେଖିପାରୁ ନାହିଁ । ଏଇ କେତେ ଦିନ ହେଲା ଏକ୍ସପେରିମେଣ୍ଟ ଗୁଡିକ ଟାଇପ୍ କରି ଦେବାକୁ ଚେଷ୍ଟା କରୁଛି । ସେ ମୋତେ କହିଲେ, କଣସବୁ ଏବେ ଲେଖିଛ ଆଣିଲ । ମୁଁ ତାଙ୍କ କହିବାର ମର୍ମ କିଛି ବୁଝି ପାରିଲି ନାହିଁ । ମୁଁ ତାଙ୍କୁ ଟାଇପ୍ ଲେଖା ଗୁଡିକ ଆଣି ଦେଖାଇଲି । ସେ ଖୁସି ହୋଇ କହିଲେ, ଆଉ କେତେଦିନ ପରେ ମୁଁ ଅନୁମାନ କରୁଛି ଏବଂ ଭଗବାନ୍‌ଙ୍କୁ ପ୍ରାର୍ଥନା କରୁଛି ଯେପରି ଆପଣ ପୁଣି ଥରେ ଆସି ସି.ପି.ପି.ରେ ଯୋଗ ଦେବେ । ଆମ ଘରେ କେତେ ସମୟ ରହି ସେ କିଣିଥିବା ଗାଡିରେ କଟକରୁ ଗୌହାଟୀ ପର୍ଯ୍ୟନ୍ତ ଚାଲିଗଲେ । ଚାର ବର୍ଷେ ଖଣ୍ଡେ ପରେ ମୋତେ ପୁଣି ଗୌହାଟୀ ଯିବାପାଇଁ ଅନୁରୋଧ କରିଥିଲେ । କିନ୍ତୁ ମୋର ସ୍ତ୍ରୀ ମନା କରିବାରୁ ମୁଁ ତାଙ୍କୁ ମନା କରିଦେଲି ।

ସେତେବେଳେ ବଡ ପୁଅ ବମ୍ବେରେ ଏକୁଟିଆ ରହୁଥିବା ଯୋଗୁଁ ତାର ଖାଇବା ପିଇବାରେ ବହୁତ ଅସୁବିଧା ହେଉଥିଲା । ତେଣୁ ମୋର ସ୍ତ୍ରୀ ଶୀଘ୍ର ତାକୁ ବାହା କରିଦେବା ପାଇଁ ଆଗ୍ରହ ପ୍ରକାଶ କଲା ଏବଂ ଭିନ୍ନ ଭିନ୍ନ ପ୍ରସ୍ତାବ ଆସୁଥିବା ଝିଅମାନଙ୍କୁ ଦେଖିବାକୁ ଯାଉଥିଲେ । ଶେଷରେ ସେ ପ୍ରବାସିନୀ ପାଙ୍ଗଯୋଶୀଙ୍କୁ ତାଙ୍କ ଭଉଣୀ ଘରେ ଯାଇ ଦେଖିଥିଲି । ମୁଁ ମଧ୍ୟ ତାଙ୍କ ସାଙ୍ଗରେ ଯାଇଥିଲି । ପ୍ରବାସିନୀ ପାଙ୍ଗଯୋଶୀ ଶ୍ରୀ ଶରତ୍‌ଚନ୍ଦ୍ର ପାଙ୍ଗଯୋଶୀଙ୍କ ଦ୍ୱିତୀୟ କନ୍ୟା । ତାଙ୍କର ପ୍ରଥମା କନ୍ୟା ପୁଷ୍ପ ପାଙ୍ଗଯୋଶୀ ରାଉରକେଲା ଇଂଜିନିଅରିଂ କଲେଜରୁ ଏମ୍.ଏସ୍‌ସି ପାଶ୍ କରି ଥିଲେ ଏବଂ ରେଭେନ୍‌ସା କଲେଜ ଫିଜିକ୍ସରେ ଏମ୍.ଫିଲ୍. କରୁଥିଲେ । ତାଙ୍କ ବାପା ଶରତ ଚନ୍ଦ୍ର ପାଙ୍ଗଯୋଶୀ ରାଉରକେଲା ଲୁହା କାରଖାନାରେ ଚାକିରୀ କରୁଥିଲେ ।

## ଭୁବନେଶ୍ୱରରେ ବଡ ପୁଅର ବିଭାଘର

ମୋ ସ୍ତ୍ରୀ ଏବଂ ମୁଁ ରାଜି ହେବାରୁ ସେଠାରେ ବିଭାଘର କରିଦେବା ପାଇଁ ଠିକ୍ କରି ଦେଲୁ ଏବଂ ତାଙ୍କୁ କହିଲୁ, ଆମର ନିର୍ବନ୍ଧ ହେବ ନାହିଁ । ବାହାଘର ଆପଣମାନେ ଆସି ଭୁବନେଶ୍ୱରରେ କରିବେ । କାରଣ ମୁଁ ପୀଡିତ ଥିବାରୁ ରାଉରକେଲା ବସ୍‌ରେ ଯାଇ ପାରିବି ନାହିଁ । ସେ ରାଜି ହେଲେ ଏବଂ ବିଭାଘର ୧୯୯୬ ମସିହା ଜାନୁଆରୀ ୨୫ ତାରିଖ ଦିନ ହେବ ବୋଲି ଠିକ୍ ହୋଇଗଲା । ମଙ୍ଗଳକୃତ୍ୟ ଦିନ ରାତିରେ ମୋ ଶାଶୁ ଜଣେ ଶାଳୀ ଘରକୁ ଆସିଥିବାର ଜାଣି ତାଙ୍କୁ ଆଣିବାକୁ ମୋର ବଡ ଝିଅକୁ ଗାଡି ଦେଇ ପଠାଇ ଥିଲି । କିନ୍ତୁ ସେ ଆସିଲେ ନାହିଁ । ଦୁଃଖର କଥା ଯେ ସେଦିନ ମୋ ସ୍ତ୍ରୀଙ୍କ ଘରର ବନ୍ଧୁମାନେ କେହି ମୋ ପୁଅର ବାହା ଘରକୁ ଆସିଲେ ନାହିଁ । ସେଥିପାଇଁ ମୋ ସ୍ତ୍ରୀର ମନ ଭାରି ଦୁଃଖ ହୋଇଥିଲା । କେବଳ ମଙ୍ଗଳକୃତ୍ୟ ଦିନ ତାଙ୍କର ସାନ ଭାଇ ଶ୍ରୀ କିଶୋର ଚନ୍ଦ୍ର ମିଶ୍ର ଉପସ୍ଥିତ ଥିଲେ । ସେଦିନ

ରାତିରେ ମୋର ଅଧିକାଂଶ ବନ୍ଧୁବାନ୍ଧବଙ୍କୁ ନିମନ୍ତ୍ରଣ କରାଯାଇ ଥିଲା । ବିଭାଘର ଦିନ ପ୍ରାୟ ୬୦/୭୦ ଜଣ ବରଯାତ୍ରୀ ଯାଇଥିଲେ । ମୁଁ ବରକର୍ତ୍ତା ହିସାବରେ ବିଭାଘର କରିଥିଲି । କିନ୍ତୁ ମୋ ପାଖେ ଡକ୍ଟର ଭାସ୍କର ରଥ ଜଗିକରି ରହିଥିଲେ । କାଳେ ମୋ ଦେହ କିଛି ଖରାପ ହୋଇଯିବ । ବିଭାଘର ସରିଲା ପରେ ମୁଁ ୪/୫ଟା ବେଳକୁ ଘରକୁ ଚାଲି ଆସିଲି ଏବଂ ରାତି ୧୨ଟା ବେଳକୁ ବଡ ପୁଅ ବୋହୂକୁ ନେଇ ଆସିଲା । ଚତୁର୍ଥୀ ଦିନ ଭୋଜିଟି ଆମ ଘର (୧୪୦, ବାପୁଜୀ ନଗର) ଆଗରେ ଥିବା ଖାଲି ପଡିଆରେ ସାମିୟାନା ବନ୍ଧାଯାଇ କରାଗଲା । ଖାଇବା ବ୍ୟବସ୍ଥା 'ଖଟା ମିଠା' ଉପରେ ନ୍ୟସ୍ତ ହୋଇଥିଲା । ସେ ସୂଚାରୁ ରୂପେ ସବୁ ବନ୍ଦୋବସ୍ତ କରିଥିଲା ।

ଏହା ଭିତରେ ମୋ ସ୍ତ୍ରୀର ଗୋଟିଏ ଭାଇର ବିଭାଘର ଠିକ୍ ହୋଇଯାଇ ଥିଲା । କିନ୍ତୁ ଆମକୁ ମୋର ଶ୍ୱଶୁର ଘର କୌଣସି କାରଣରୁ ନିମନ୍ତ୍ରଣ କରି ନ ଥିଲେ ଏବଂ କହୁଥିଲେ,ତାର (ମୋ ସ୍ତ୍ରୀ) ବଡ ଗର୍ବ ହୋଇଗଲାଣି । ତେଣୁ ଆମେ ତାକୁ ଡାକି ନାହୁଁ । ସେତେବେଳକୁ ମୋ ଦେହ କେତେକାଂଶରେ ଭଲ ହୋଇଯାଇ ଥାଏ । ଦେହ ଟିକିଏ ଭଲ ହୋଇ ଆସିବା ପରେ ମୁଁ ବି.ଏସ୍‌ସିର ପ୍ରାକ୍ଟିକାଲ୍ ବହିଟି ଶୀଘ୍ର ଶୀଘ୍ର ଲେଖିବାକୁ ଚେଷ୍ଟା କଲି ।

ମୋର ସାନ ଝିଅ କୁନି ୧୯୯୧ ମସିହାରେ ପିଏଚ୍.ଡି ଡିଗ୍ରି ବନାରସ୍ ବିଶ୍ୱବିଦ୍ୟାଳୟରୁ ପାଇ ବଲାଙ୍ଗିର୍ ଠାରେ ଚାକିରି କରୁଥିଲା । ୧୯୯୭ ମସିହା ଜାନୁଆରୀ ମାସରେ ମୋ ସାନ ଝିଅର ନିର୍ବନ୍ଧ ଜୟଶଙ୍କର ରଥଙ୍କ ସାଙ୍ଗେ ହୋଇଗଲା । ଶ୍ରୀ ଜୟଶଙ୍କର ରଥ ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ରଥଙ୍କ ତୃତୀୟ ପୁତ୍ର । ତାଙ୍କ ଗ୍ରାମ ବୀରହରେକୃଷ୍ଣପୁର । ମୁଁ ପୁରୀରେ ଚାକିରୀ କରୁଥିବା ବେଳେ ଶ୍ରୀ ସଚ୍ଚିଦାନନ୍ଦ ରଥ ପୁରୀ ମ୍ୟୁନିସିପାଲ୍‌ଟିରେ କାମ କରୁଥିଲେ । ତାଙ୍କର ବିଭାଘର ୧୯୯୭ ମସିହା ଡିସେମ୍ବର ୪ ତାରିଖ ଦିନ ନୂଆପଲ୍ଲୀରେ ଥିବା କଲ୍ୟାଣ ମଣ୍ଡପରେ ହେବ ବୋଲି ନିର୍ଦ୍ଧାରିତ ହୋଇଥିଲା ।

୧୯୯୭ ମସିହା ଫେବୃଆରୀ ମାସ ଶେଷ ସପ୍ତାହରେ ଡକ୍ଟର ନିରଞ୍ଜନ ବାରିକ୍, ଉତ୍କଳ ବିଶ୍ୱବିଦ୍ୟାଳୟର ଫିଜିକ୍ସ ପ୍ରଫେସର,ମୋତେ ଫୋନ୍‌ରେ କହିଲେ, ମାର୍ଚ୍ଚ ମାସର ପହିଲା ଦିନ 'ଓଡିଶା ଫିଜିକାଲ ସୋସାଇଟି'ର ବାର୍ଷିକ ଅଧିବେଶନ ରେଭେନ୍‌ସା କଲେଜରେ ଅନୁଷ୍ଠିତ ହେଉଛି । ଆପଣ ଦୟାକରି ସେଥିରେ ଯୋଗ ଦିଅନ୍ତୁ । ମୁଁ ଜଣାଇଲି ମୁଁ ତ ବସ୍‌ରେ ଯାଇ ପାରିବି ନାହିଁ । ତେଣୁ ୯ଟା ବେଳେ ଟ୍ରେନ୍‌ରେ କଟକ ଯିବି । ଦୟାକରି କୌଣସି ଅଧ୍ୟାପକ କିମ୍ବା କୌଣସି ଲୋକଙ୍କୁ କଟକ ରେଲୱେ ଷ୍ଟେସନ୍‌କୁ ପଠାଇଲେ ସେ ମୋତେ କଲେଜକୁ ନେଇଯିବେ । ସେ ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ ଆମେ ଆପଣଙ୍କୁ ଆଣିବା ପାଇଁ ଗାଡି ପଠାଇବୁ । ଆପଣ ସବୁ କାମ ସାରି ୯ଟା ବେଳେ ଆମ ଗାଡି ପାଇଁ ଅପେକ୍ଷା କରିଥିବେ । ମୁଁ ୧୯୯୦ ରୁ ୧୯୯୭ ଭିତରେ କୌଣସି ଫିଜିକାଲ ସୋସାଇଟିର ବାର୍ଷିକ ଅଧିବେଶନରେ ଯୋଗ ଦେଇପାରି ନ ଥିଲି । ତାପରେ ପଚରା ପଚରି କରି ଜାଣିଲି ଓଡିଶା ଫିଜିକାଲ୍

ସୋସାଇଟିରେ ମୋତେ ସମ୍ବର୍ଦ୍ଧନା ଦିଆଯିବ । ମୋର ସ୍ତ୍ରୀ ଏହି ଖବର ଶୁଣି ମୋ ସହିତ ଯିବା ପାଇଁ ଇଚ୍ଛା ପ୍ରକାଶ କଲେ । ତେଣୁ ମାର୍ଚ୍ଚ ପହିଲା ତାରିଖ ଦିନ ସକାଳୁ ସେମାନେ ପଠାଇ ଥିବା କାରରେ ଆମେ ଦୁହେଁ ବସି କଟକ ଗଲୁ ଓ ସମ୍ବର୍ଦ୍ଧନା ଉତ୍ସବରେ ଯୋଗ ଦେଲୁ । ମୋତେ ସେଠାରେ ଅଭିନନ୍ଦନ ଦିଆଗଲା । ଅଭିନନ୍ଦନ ପତ୍ରଟି ଇଂରାଜୀରେ ଲେଖା ହୋଇଥିଲା । ତାର ଓଡିଆ ଅନୁବାଦ ହେଲା:

## ଓଡିଶା ଫିଜିକାଲ୍ ସୋସାଇଟି ପକ୍ଷରୁ

## ଡକ୍ଟର ପତିତପାବନ ମିଶ୍ରଙ୍କୁ ଅଭିନନ୍ଦନ

ଡକ୍ଟର ପତିତପାବନ ମିଶ୍ର ୧୯୩୨ ମସିହା ଜୁଲାଇ ମାସରେ ପୁରୀ ଜିଲ୍ଲାର ନିମାପଡା ଠାରେ ଜନ୍ମ ଗ୍ରହଣ କରିଥିଲେ । ମାତ୍ର ସେ ପୁରୀ ଜିଲ୍ଲା ରାୟଚକ୍ରଧରପୁର ଗ୍ରାମର ଅଧିବାସୀ ଥିଲେ । ସେ ନିମାପଡା ହାଇସ୍କୁଲ୍‌ରୁ ତାଙ୍କର ପ୍ରାରମ୍ଭିକ ଶିକ୍ଷା ଶେଷ କରି ପୁରୀର ସାମନ୍ତ ଚନ୍ଦ୍ର ଶେଖର କଲେଜରେ ଅଧ୍ୟୟନ କରିଛନ୍ତି । ତାପରେ ସେ ତାଙ୍କର ସ୍ନାତକ ଓ ସ୍ନାତକୋତ୍ତର ଶିକ୍ଷା ରେଭେନ୍‌ସା କଲେଜରୁ ଗ୍ରହଣ କରି ୧୯୫୬ ମସିହାରେ ଶିକ୍ଷା ବିଭାଗରେ ଚାକିରୀ କରିଥିଲେ । ସେ ପ୍ରଥମେ ଅଧ୍ୟାପକ, ତାପରେ ପ୍ରାଧ୍ୟାପକ, ପ୍ରଫେସର ଓ ଶେଷରେ ଖଲ୍ଲିକୋଟ କଲେଜରେ ଅଧ୍ୟକ୍ଷ ହୋଇ ଅବସର ଗ୍ରହଣ କରିଥିଲେ ।

ଡକ୍ଟର ମିଶ୍ର ସର୍ବଦା ଜଣେ ଏକନିଷ୍ଠ ଗବେଷକ ତଥା ଜଣେ ଉତ୍ତମ ଶିକ୍ଷକ ଥିଲେ । ସେ ୧୯୭୦ ମସିହାରେ ତାଙ୍କର ପିଏଚ୍.ଡି ଡିଗ୍ରୀ ପାଇଥିଲେ । ତାଙ୍କର ପିଏଚ୍.ଡିର ବିଷୟ ବସ୍ତୁ ଥିଲା "ତାତ୍ତ୍ୱିକ ପ୍ଲାଜମା ତରଙ୍ଗର ସଂଚାରଣ" । କିନ୍ତୁ ତାଙ୍କର ପ୍ରାୟୋଗିକ ପ୍ଲାଜମା ଫିଜିକ୍ସରେ ଅଧିକ ଆଗ୍ରହ ଥିଲା । ବାସ୍ତବରେ ଡକ୍ଟର ମିଶ୍ର ସ୍ୱଭାବତଃ ଓ ପ୍ରକୃତିଗତ ଜଣେ ମୌଳିକ ବ୍ୟବହାରିକ ତଥ୍ୟାନୁସନ୍ଧିତ୍ସୁ । ଘରେ ହେଉ କିମ୍ବା ଗବେଷଣାଗାରରେ ହେଉ ସେ ସର୍ବଦା ନୂତନ ତଥ୍ୟ ଗବେଷଣାର ଅନ୍ୱେଷଣ କରୁ ଥାଆନ୍ତି । ରାଜ୍ୟର ପରୀକ୍ଷାମୂଳକ ଗବେଷଣା କ୍ଷେତ୍ରରେ ତାଙ୍କର ଅନେକ ଅବଦାନ ରହିଛି ଓ ତାଙ୍କ ତତ୍ତ୍ୱାବଧାନରେ ଚାରିଜଣ ଛାତ୍ର ସଫଳତାର ସହିତ ଡ଼କ୍ଟରେଟ୍ ଡିଗ୍ରୀ ହାସଲ କରି ପାରିଛନ୍ତି । ତାଙ୍କର କମ୍ ଖର୍ଚ୍ଚରେ ପ୍ଲାଜମା ଫିଜିକ୍ସ ପରୀକ୍ଷା ପାଇଁ ଅଗ୍ରଣୀ କାର୍ଯ୍ୟ ତାଙ୍କୁ ଦେଶରେ ଜଣେ ସୁଦକ୍ଷ ଗବେଷକ ଭାବରେ ପ୍ରତିଷ୍ଠିତ କରିପାରିଛି । ଯାହାପାଇଁ ସେ କମ୍ ଖର୍ଚ୍ଚରେ ପ୍ଲାଜମା ଫିଜିକ୍ସ ପରୀକ୍ଷା ନିମନ୍ତେ ଦେଶର ବିଭିନ୍ନ ବିଶ୍ୱବିଦ୍ୟାଳୟ ସହିତ ଜଣେ ଗବେଷକ ଓ ଜଣେ ପରିଦର୍ଶକ ବୈଜ୍ଞାନିକ ହିସାବରେ ବିଜ୍ଞାନାଗାର ମାନଙ୍କର ଉନ୍ନତି ପାଇଁ କର୍ମରତ ଥିଲେ । ମୌଳିକ ଗବେଷଣା ବ୍ୟତିତ ସେ କେତେ ଗୁଡିଏ ପାଠ୍ୟ ପୁସ୍ତକ ଇଂରାଜୀ ଓ ଓଡିଆ ଉଭୟ ଭାଷାରେ ଲେଖିଛନ୍ତି । ତନ୍ମଧ୍ୟରୁ ସଂପ୍ରତି "ଏକ୍ସପେରିମେଣ୍ଟସ୍ ଅନ୍ ପ୍ଲାଜମା ଫିଜିକ୍ସ" ଭାରତ ସରକାରଙ୍କ "ଡିପାର୍ଟମେଣ୍ଟ ଅଫ୍ ସାଇନ୍ସ ଆଣ୍ଡ ଟେକ୍‌ନୋଲୋଜି" ଦ୍ୱାରା ପ୍ରକାଶିତ ହୋଇଛି । ଏହି ପୁସ୍ତକଟିରେ ବ୍ୟବହାରିକ ତଥ୍ୟାନୁସନ୍ଧିତ୍ସୁମାନଙ୍କ ପାଇଁ ନୂତନ ତଥ୍ୟ ଉଦ୍ଭାବନ କରିବା ନିମନ୍ତେ

ଅନେକ ପ୍ରଣାଳୀ ଲିପିବଦ୍ଧ ହୋଇଛି ଏବଂ ଏହା ପ୍ଲାଜମା ଗବେଷଣା ପାଇଁ ବହୁଳ ଭାବରେ ଅନୁମୋଦିତ ହୋଇଛି ।

ସାର, ଆପଣ ପ୍ରାରମ୍ଭରୁ ଏହି ସୋସାଇଟି ସହିତ ସଂପୃକ୍ତ ଅଛନ୍ତି । ଓଡିଶା ଫିଜିକାଲ୍ ସୋସାଇଟିର ସଂପାଦକ ଦାୟିତ୍ୱ କିଛିକାଳ ପର୍ଯ୍ୟନ୍ତ ଗ୍ରହଣ କରିଥିଲେ । ଆପଣ ଜୀବନ କାଳରେ ଫିଜିକ୍ସ ଶିକ୍ଷା ପାଇଁ ଅବଦାନକୁ ମନେ ପକାଇ ଆମର ସମ୍ମାନ ଓ କୃତଜ୍ଞତାର ପ୍ରତୀକ ଭାବରେ ଆନ୍ତରିକ ଅଭିନନ୍ଦନ ଜଣାଉଛୁ ।

ରେଭେନ୍ସା କଲେଜ,କଟକ — 'ଓଡିଶା ଫିଜିକାଲ ସୋସାଇଟି'ର ସଭ୍ୟବୃନ୍ଦ

୧,ମାର୍ଚ୍ଚ ୧୯୯୭

## FELICITATION OF ORISSA PHYSICAL SOCIETY

**ORISSA PHYSICAL SOCIETY**
FELICITATION
TO
Dr. Patitapabana Misra

Dr. Patitapaban Misra was born in July 1932 in Raichkradharapur, a village in the district of Puri. He had his early education from Nimapara High School and S.C.S. college Puri. He did his graduate and post-graduate studies from Ravenshaw college and there after joined the Orissa Education Service in 1956. Dr.Misra served in various capacities as a lecturer, as a reader, as a professor and retired in 1990 as Prlincipal of Khalikote college, a premier post-graduate Institution of the state.

Dr.Misra has always been a very quiet and dedicated research worker apart from being a sincere teacher. He earned his Ph.D. degree in 1970 for his theoretical work in wave propagation in plasma. Since then his field of interest has been experimental Plasma Physics. In fact Dr. Misra, by instinct and temperament, is a genuine experimentalist, always fidding around in various innovative ways to perform any experiment either in the laboratory or even at home. He has contributed significantly to the growth of experimental research in the state and has successfully guided four students in their doctoral work. His pioneering work on low-cost experiments in plasma physics has established him as an expert in the country for which he has been associated with different Universities as a resource person and as a visiting scientist to set up plasma physics laboratories with

low-cost experiment. Apart from original research, Dr. Misra has written several text books in English as well as in Oriya, the latest amongst which is "Experiments on Plasma Physics" published by Department of Science and Technology. Govt of India. This book provides many innovative techniques for experimentalists and has been widely accepted as a source book for plasma experiments.

Sir, you have been associated with this society from its inception and have shouldered the responsibility as the secretary, OPS for a considerable period. In recollecting your lifelong contributions to physics education, we offer our sincere felicitations to you as a token of our respect and gratitude.

Revenshaw College,
Cuttack
1st March, 1997. Members of Orissa Physical Society

--------o--------

## ଭୁବନେଶ୍ୱରରେ ସାନ ଝିଅର ବିଭାଘର

ମୋ ସାନ ଝିଅର ବିଭାଘର ନିମିତ୍ତ ମୋ ସ୍ତ୍ରୀ ଆଉ ତାଙ୍କ ବାପଘରକୁ ନିମନ୍ତ୍ରଣ କରିବା ପାଇଁ ରାଜି ହେଉ ନ ଥିଲେ । ମୁଁ ତାଙ୍କୁ ବହୁତ ବୁଝାଇ ରାଜି କରାଇ ଦେଲି । ସେ କହିଲେ ତୁମେ ଯଦି ମୋ ସହିତ ଯିବ ତାହେଲେ ମୁଁ ଯିବି । ତା କଥା ଅନୁସାରେ ଆମେ ବିବାହ ପୂର୍ବରୁ ଜଗନ୍ନାଥଙ୍କୁ ନିମନ୍ତ୍ରଣ କରିବା ପରେ ତାଙ୍କ ଘରକୁ ଯାଇ ନିମନ୍ତ୍ରଣ କରିଥିଲୁ ଏବଂ ଝିଅର ବାହାଘର ଡିସେମ୍ବର.୪ ତାରିଖରେ ସୁଚାରୁ ରୂପେ ହୋଇଗଲା । ତାର ଚତୁର୍ଥୀ ଭୋଜି ସେହି କଲ୍ୟାଣ ମଣ୍ଡପରେ ଅନୁଷ୍ଠିତ ହୋଇଥିଲା । ବିଭାଘରରେ କିଛି ଅଘଟଣ ଘଟି ନ ଥିଲା । ମୋ ସାନ ଝିଅର ବାହାଘରରେ ଶ୍ୱଶୁର ଘରର ବନ୍ଧୁମାନେ ଯୋଗ ଦେଇଥିଲେ ।

ଆମର ଗୋଟିଏ ପ୍ରଥା ଅଛି, କୌଣସି ସ୍ତ୍ରୀ ଲୋକ ଗର୍ଭବତୀ ଥିବା ସମୟରେ ସପ୍ତମ ମାସରେ ଚିତୋଉଖିଆ ନାମରେ ଗୋଟିଏ ପର୍ବ ପାଳନ କରାଯାଏ । ସେଥିରେ ବନ୍ଧୁବାନ୍ଧବ-ମାନଙ୍କୁ ଖାଇବା ପାଇଁ ନିମନ୍ତ୍ରଣ କରାଯାଏ । ସେହି ପ୍ରଥା ଅନୁସାରେ ମୋ ବଡ ବୋହୂର ଚିତୋଉଖିଆ ଅନୁଷ୍ଠିତ ହୋଇଥିଲା । ସେଥିପାଇଁ ବନ୍ଧୁବାନ୍ଧବ ମାନଙ୍କୁ ନିମନ୍ତ୍ରଣ କରାଯାଇ ଥିଲା । ୧୯୯୭ ମସିହା ମାର୍ଚ୍ଚ ୧୨ ତାରିଖରେ ମୋ ବଡ ପୁଅର ଗୋଟିଏ ପୁତ୍ର ସନ୍ତାନ ଜାତ ହୋଇଥିଲା । ବୋହୂର ଡେଲିଭରି ଜଗନ୍ନାଥ ସେବାସଦନରେ ହୋଇଥିଲା ଏବଂ ନାତିର ଏକୋଇଶିଆ ଦିନ ସବୁ ବନ୍ଧୁବାନ୍ଧବ ମାନଙ୍କୁ ଡକା ହୋଇଥିଲା । ପୁଅର ନାମ ଦିଆଯାଇ ଥିଲା 'ଅନ୍ୱେଷ' ଏବଂ ଡାକ ନାମ ସୋନୁ ।

ଏହା ଭିତରେ ମୋ ବଡ ପୁଅ ରଞ୍ଜନ ମିଶ୍ର ଦୂରଦର୍ଶନର 'ସୁରଭି' ନାମକ ଗୋଟିଏ ସାଂସ୍କୃତିକ ପତ୍ରିକା କାର୍ଯ୍ୟକ୍ରମର ପ୍ରସ୍ତୁତିରେ ଯୋଗ ଦେଇଥିଲା ଏବଂ ବିଭିନ୍ନ ସ୍ଥାନରେ

'ସୁରଭି 'ତରଫରୁ ଅନୁଷ୍ଠିତ କାର୍ଯ୍ୟକ୍ରମରେ ଫଟୋ ଉଠାଇବା ଦାୟିତ୍ୱରେ ଥିଲା । ଥରେ ଓଡିଶାରେ 'ସୁରଭି' କାର୍ଯ୍ୟକ୍ରମର ସୁଟିଂ ହେବାର ବ୍ୟବସ୍ଥା ଥିଲା । ସେତେବେଳେ ସିନେକ୍ରିଟିକ୍ ଆସୋସିଏସନ୍‌ର କର୍ମକର୍ତ୍ତାମାନେ ତାଙ୍କର ବାର୍ଷିକ ଉତ୍ସବ ପାଇଁ ସିଦ୍ଧାର୍ଥ କାକ୍ ଏବଂ ରେଣୁକା ସାହାଣୀଙ୍କୁ ନିମନ୍ତ୍ରଣ କରିଥିଲେ । ସେହି ଉତ୍ସବରେ ମୋର ବଡ ବୋହୂ ଘୋଷିକା ଭାବରେ କାମ କରିଥିଲେ । ତା ଭିତରେ ସିଦ୍ଧାର୍ଥ କାକ୍ ଓ ରେଣୁକା ସାହାଣୀଙ୍କୁ ଆମ ଘରେ ରାତ୍ର ଭୋଜନ ପାଇଁ ନିମନ୍ତ୍ରଣ କରାଯାଇ ଥିଲା । ମୋର ଶ୍ରୀମତୀ ଆମ ଓଡିଆ ଘରର ବିଭିନ୍ନ ଖାଦ୍ୟ ପ୍ରସ୍ତୁତ କରି ସେମାନଙ୍କୁ ଖାଇବାକୁ ଦେଇଥିଲେ । ଖାଇସାରି ସେମାନେ ଆମର ଖାଦ୍ୟ ପ୍ରଣାଳୀକୁ ତୃପ୍ତି ଦାୟକ ବୋଲି ମତ ପ୍ରକାଶ କରିଥିଲେ ।

ବି.ଏସ୍‌ସି ପ୍ରାକ୍ଟିକାଲ ବହି ଲେଖା ୧୯୯୮ ମସିହା ଜାନୁଆରୀ ୧୫ ତାରିଖରେ ସରିଗଲା । ତା ପୂର୍ବରୁ ମୁଁ ସାଉଥ୍ ଏସିୟାନ୍ ପବ୍ଲିସର୍‌ଙ୍କ ସଙ୍ଗେ ଚିଠି ଦିଆନିଆ କରି ଜାଣିଥିଲି ଯେ ସେମାନେ ମୋ ବହିକୁ ଛପାଇବେ । ତେଣୁ ୧୯୯୮ ମସିହା ଜାନୁଆରୀ ମାସରେ ଯେତେବେଳେ ବହି ଲେଖା ସରିଗଲା ତାର ପାଣ୍ଡୁଲିପିଟି ପଠାଇ ଦେଲି । ତାପରେ ମୁଁ କେତେ ଦିନ ବିଶ୍ରାମ ନେଲି । ସେଥିରେ ମୋ ସ୍ତ୍ରୀ ମୋତେ ସବୁବେଳେ କହୁଥାଆନ୍ତି, ତମେ ଆଉ ଗୋଟିଏ ବହି ଲେଖ । କଣ ଲେଖିବି ବୋଲି ଭାବୁଥାଏ । ଦିନେ ସେ ମୋତେ କହିଲେ, ତମେ ପୋଷ୍ଟ ଗ୍ରାଜୁଏଟ୍ ଶ୍ରେଣୀ ପାଇଁ ଗୋଟିଏ ପ୍ରାକ୍ଟିକାଲ ବହି ଲେଖ । ମୁଁ ସେତେବେଳେ କଳ୍ପନା ସୁଦ୍ଧା କରି ପାରି ନ ଥିଲି, ପୋଷ୍ଟ ଗ୍ରାଜୁଏଟ୍ ପ୍ରାକ୍‌ଟିକାଲ ବହି ଲେଖିବାକୁ । ତେଣୁ ମୁଁ ତାଙ୍କ କଥାକୁ ବେଶୀ ଗୁରୁତ୍ୱ ଦେଲି ନାହିଁ । ୧୯୯୮ ମସିହା ଫେବୃଆରୀ ମାସରେ ଗୋଟିଏ ଅନ୍ୟ ବହି ଲେଖା ବାବଦକୁ କିଛି ଟଙ୍କା ମୁଁ ପାଇଥିଲି । ସେ ଟଙ୍କାକୁ ମୋ ସ୍ତ୍ରୀ ହାତରେ ଦେଇଥିଲି । ସେ ଖୁସି ହୋଇ ରାଉରକେଲା ବୁଲିବାକୁ ଗଲା । ତାର କେତେ ଦିନ ପରେ ମୋ ନାତିର ଜନ୍ମ ଦିନ ପଡିଲା । ଜନ୍ମ ଦିନକୁ ପୁଅ ବୋହୂ ଏଠାକୁ ଆସି ପାରିଲେ ନାହିଁ । ସେହି ଜନ୍ମ ଦିନ ସମୟକୁ ମୋ ସ୍ତ୍ରୀ ଗୋଟିଏ ଗୀତ ଲେଖି ତା ପାଖକୁ ନୂଆ ଜାମା ସହିତ ମଧ୍ୟ ପଠାଇ ଥିଲା । ସେହି ଗୀତଟି ହେଲା :

ମୋ ଘର ପ୍ରଦୀପ ତୁହି	ମୋ କୁଳ ନନ୍ଦନ
ମୋ ଆଖିର ଜ୍ୟୋତି ତୁହି	ମୋ ହୃଦ ଚନ୍ଦନ ।
କାଳିଆର ପାଦେ ମୁହିଁ	କରିଅଛି ଅଳି
ମୋ ଧନର ମଥା ପରେ	ଦିଅନ୍ତୁ ସେ ଆଶୀଷ ଢାଳି ।
ଚଲାପଥେ ଫୁଟୁ ତୋର	ସଦା ଶତଦଳ
ଫୁଲର ମହକରେ	କରିବୁ ମନକୁ ତୁ ଶୀତଳ ।
ଏ କୁଳର ସୁନାମକୁ ସୁରଭିତ କରି	ଗୌରବରେ ଭରିଦେବୁ ଘରକୁ ଆମରି ।
ହାତୀଥିଲେ ବନସ୍ତରେ ସେ ତ ରାଜାଙ୍କର	ଯେତେ ଦୂରେ ଥିଲେ ଧନ ତୁହି ତ ଆମର
ଠାକୁରାଣୀ ପାଦେ ମୁହିଁ କରୁଛି ମିନତି	ଘୋଡାଇ ରଖିବେ ଚତେ ପଣତକୁ ପାତି
ବାପା, ମାଆ ଆମେ ଦୁହେଁ ଦେଉଛୁ ଆଶୀଷ	ସୁସ୍ଥ ହୋଇ ସଦା ତୁହ ହୁଅ ଶତାୟୁଷ ।

## ଭାଇର ରଥଙ୍କ ଦେହାନ୍ତ

ଏହା ଭିତରେ ମୋ ସ୍ତ୍ରୀଙ୍କ ମାମୁଁ ଭାସ୍କର ରଥଙ୍କ ଦେହ କେତେ ଦିନ ହେଲା ଅସୁସ୍ଥ ହୋଇଥିଲା । ସେଥିପାଇଁ ମୋର ସ୍ତ୍ରୀ ତାଙ୍କ ଘରକୁ ବହୁତ ସମୟରେ ଯିବା ଆସିବା କରୁ ଥାଆନ୍ତି । ତାଙ୍କ ଦେହ କ୍ରମେ କ୍ରମେ ବହୁତ ଖରାପ ହେଉଥାଏ । ସେଥିପାଇଁ ତାଙ୍କୁ ଭଲ ଚିକିତ୍ସା ପାଇଁ ଦିଲ୍ଲୀ ନେଇଗଲେ । କେତେ ଦିନ ପରେ ପୁଣି ଦିଲ୍ଲୀରୁ ଫେରି ଆସିଲେ । କିନ୍ତୁ ତାଙ୍କ ଦେହର ପରିବର୍ତ୍ତନ କିଛି ହୋଇ ନ ଥାଏ । ହଠାତ୍ ମଇ ମାସ ୧୬ ତାରିଖ ରାତିରେ ତାଙ୍କ ଝିଅ ଫୋନ୍ କରି କହିଲେ, ଯେ ନନାଙ୍କର କାଳ ହୋଇଗଲା । ତେଣୁ ସଙ୍ଗେ ସଙ୍ଗେ ମୋ ଶ୍ରୀମତୀ ତାଙ୍କ ଘରକୁ ଗଲେ । ତାଙ୍କ ମୃତ ଶରୀର ସତ୍କାର ପାଇଁ ପୁରୀ ଚାଲି ଯିବାରୁ ମୋ  ସ୍ତ୍ରୀ ଘରକୁ ଫେରି ଆସିଲେ । ତାଙ୍କ ପୁଅ ଜଣେ ଆଇ.ଏଫ.ଏସ୍. ଅଫିସର । ସିଏ ସେତେବେଳେ କଲମ୍ବିଆରେ ଆମ୍ବାସଡର ଥାଆନ୍ତି । ତାଙ୍କ ଦେହ ଖରାପ ଖବର ପାଇ ସେ ନିଜେ ଭୁବନେଶ୍ୱର ଆସିଥିଲେ । କିନ୍ତୁ ତାଙ୍କର ପିଲାମାନେ ସେଠାରେ ଥିଲେ । ଭାସ୍କର ରଥଙ୍କ ମୃତ୍ୟୁ ବେଳକୁ ପୁଅ ପାଖରେ ଥିଲେ ଏବଂ ସେ ମଧ୍ୟ ତାଙ୍କ ଦଶାହ କ୍ରିୟା କରିଥିଲେ । ତାଙ୍କ ଘରେ ମୋ ସ୍ତ୍ରୀ କୁ ଅଭଡା ବରାଦ ଦେବାର ଦାୟିତ୍ୱ ଦେଇଥିଲେ । ସେଥିପାଇଁ ସେ ଚତୁର୍ଥୀ, ସପ୍ତମୀ, ଦଶାହ ଓ ଏକାଦଶାହ ଦିନ ଅଭଡା ବରାଦ ଦେଇଥିଲେ । କିନ୍ତୁ ଏକାଦଶାହ ଦିନ ରାତିରେ ବା ୨୭ ତାରିଖ ଦିନ ଆଉ ଅଭଡା ଆଣିବା ପାଇଁ ମୋ ସ୍ତ୍ରୀ  ଦେଉଳକୁ ଯାଇ ପାରିଲେ ନାହିଁ । ତେଣୁ ଅନ୍ୟ ଜଣେ କେହି ତାଙ୍କ ଠାରୁ ଲେଖା ନେଇ ଅଭଡା ଆଣିଥିଲେ । ସେହି ୨୭ ତାରିଖ ଦିନ ସ୍ତ୍ରୀଙ୍କ କାନରେ ବହୁତ ବିନ୍ଧା ଛିଟିକା ହେଲା । ରାତିରେ ଥରକୁ ଥର ବାନ୍ତି ହେଲା । ବାନ୍ତି କୌଣସି ପ୍ରକାରେ ବନ୍ଦ ହେଲା ନାହିଁ । ୨୮ ତାରିଖ ଦିନ ସକାଳେ ହଠାତ୍ ବାନ୍ତି ବନ୍ଦ ହୋଇ ଗଲା । କିନ୍ତୁ ସେ ସମୟ ସମୟରେ ଅଚେତ୍ ହୋଇ ଯାଉଥିଲେ । ଆମର ଜଣାଶୁଣା ଜଣେ ମିଲିଟାରୀ ଡାକ୍ତରଙ୍କୁ ଆଣି ଦେଖାଇଲୁ । ସେ କହିଲେ, ରୋଗୀର ଅବସ୍ଥା ଭଲ ନାହିଁ । ତମେ ଶୀଘ୍ର ତାଙ୍କୁ ଡାକ୍ତରଖାନାକୁ ନେଇଯାଅ । କଣ ହୋଇଛି ପଚାରିବାରୁ ସେ କହିଲେ ବୋଧେ କାନରେ ଘା ହୋଇଥିଲା । ସେଥିରୁ ପୂଜ ରକ୍ତ କିଛି ମସ୍ତିଷ୍କକୁ ଚାଲିଯାଇ କାର୍ଯ୍ୟକାରୀତା ବାଧାପ୍ରାପ୍ତ ହୋଇଛି । ସାଙ୍ଗେ ସାଙ୍ଗେ ଦିନ ୩ଟା ବେଳେ ୬ ନମ୍ବରରେ ଥିବା ଡାକ୍ତରଖାନାରେ ତାଙ୍କୁ ଆଡମିଶନ୍ କରି ଦିଆଗଲା । ୩/୪ ଘଣ୍ଟା ପରେ କ୍ୟାପିଟାଲ ଡାକ୍ତରଖାନାରୁ କଟକ ବଡ ଡାକ୍ତର ଖାନାକୁ ନେଇ ଯିବା ପାଇଁ କହିଲେ ।

ଡାକ୍ତରଙ୍କ କହିବା ଅନୁଯାୟୀ, ରାତି ୧୧ଟା ବେଳକୁ ତାଙ୍କର କଟକ ବଡ ଡାକ୍ତରଖାନାରେ ଆଡମିସନ୍ ହୋଇଗଲା । ସାଙ୍ଗରେ ମୋର ସାନ ପୁଅ ପ୍ରଜମନ ମିଶ୍ର ଏବଂ ସାନ ଝିଅ ପ୍ରଣତି ମିଶ୍ର ଯାଇଥିଲେ । ଏହା ଭିତରେ ସାନ ପୁଅ, ବଡ ଝିଅ ଏବଂ ବଡ ପୁଅ ପାଖକୁ ଫୋନ୍‌ରେ ଜଣାଇ ଦେଇଥିଲେ ଯେ ବୋଉଙ୍କ ଦେହ ଖରାପ ଅଛି । ତେଣୁ ତାଙ୍କୁ ଭୁବନେଶ୍ୱର ଡାକ୍ତରଖାନାରେ  ଦିନ ୪ଟା ବେଳେ ଆଡମିସନ୍ କରାଯାଇଛି । ପୁଣି ରାତି ୮ଟା

ବେଳେ ଜଣାଇଲେ ଯେ ତାଙ୍କୁ କଟକ ବଡ ଡାକ୍ତରଖାନାକୁ ସ୍ଥାନାନ୍ତରିତ କରାଯାଇଛି । ତେଣୁ ଅବସ୍ଥା ବିଶେଷ ଖରାପ ଭାବି ବଡ ଝିଅ ଏବଂ ଜ୍ୱାଇଁ ରାତା ରାତି ନିଜ କାରରେ ଆସି କଟକରେ ସକାଳୁ ପହଁଞ୍ଚିଲେ । ସେତେବେଳକୁ ମୁଁ ଡାକ୍ତରଖାନାକୁ ଯିବାପାଇଁ ସାନ ପୁଅ ଏବଂ ସାନ ଝିଅ ମନା କଲେ, କାରଣ ତମ ପାଖକୁ ଖବର ଆସିବ । ତମ ଦେହ ଭଲ ନାହିଁ ତେଣୁ ତୁମେ, ଘରେ ରୁହ ।

## ମୋର ସ୍ୱାମୀଙ୍କର ଦେହାନ୍ତ

୨୯ ତାରିଖ ଦିନ ୧୧ଟା ବେଳେ ହଠାତ୍ ଆମ ପଡିଶା ଘରେ ରହୁଥିବା ଶ୍ରୀ ରାଧାବଲ୍ଲଭ ସିଂ ଏବଂ ତାଙ୍କ ସ୍ତ୍ରୀ ଆମ ଘରକୁ ଆସିଲେ । ଆମ ଘରେ ରହୁଥିବା ସନ୍ତୋଷକୁ ନିର୍ଦ୍ଦେଶ ଦେଲେ, ବାବୁଙ୍କୁ ଶୀଘ୍ର ଖାଇବାକୁ ଦିଅ । ସେ ମୋତେ ଖାଇବାକୁ ଦେଲା, କିନ୍ତୁ ମୁଁ ଖାଇ ପାରିଲି ନାହିଁ । କେବଳ ବିଧି ରକ୍ଷା କରି ଯାହା ସାମାନ୍ୟ ଖାଇଲି । ସେତେବେଳକୁ ମୋ ମନକୁ ପାପ ଛୁଇଁଲା, ବୋଧେ ମୋ ସ୍ୱାମୀଙ୍କର କିଛି ଅଘଟଣ ଘଟିଲା । ଶ୍ରୀ ରାଧାବଲ୍ଲଭ ସିଂ ମୋତେ କିଛି କହୁ ନ ଥାଆନ୍ତି । କେବଳ ଏତିକି କହୁଥାଆନ୍ତି ତୁମ ସ୍ୱାମୀଙ୍କ ଦେହ ବହୁତ ଖରାପ । ତାର ଦୁଇ ଘଣ୍ଟା ପରେ ମୋ ବଡ ଝିଅ ଓ ଜ୍ୱାଇଁ ଭୁବନେଶ୍ୱର ଆସିଲେ ଓ ସେଥିରୁ ମୁଁ ଜାଣିଗଲି ବୋଧେ ମୋ ସ୍ୱାମୀଙ୍କର କାଳ ହୋଇଗଲା । ତାପରେ ଭୁବନେଶ୍ୱରରେ ରହୁଥିବା ଆମ ସମ୍ପର୍କୀୟ ଲୋକମାନେ ଆମ ଘରେ ଆସି ପହଁଞ୍ଚିଲେ । ତାର କିଛି ସମୟ ପରେ ସ୍ୱାମୀଙ୍କର ମୃତ ଶରୀରକୁ ତଳ ଘରର ଗୋଲ କୋଠରୀରେ ଆଣି ରଖିଲେ । ଶେଷରେ ତାଙ୍କ ଶେଷ ଦର୍ଶନ ପାଇଁ ମୋତେ ତଳକୁ ନେଇଗଲେ । ମୁଁ ତାଙ୍କ ଶରୀରକୁ କିଛି ସମୟ ପାଇଁ ଟିକେ ଗେଲ କରି ଉପରକୁ ପଳାଇ ଆସିଲି । ସେହି ଘରେ ଆମ ସମସ୍ତ ସମ୍ପର୍କୀୟ ଲୋକମାନେ ଜମା ହୋଇ ଥାଆନ୍ତି । କିଛି ସମୟ ପରେ ଗୋଟିଏ ଶବାଧାର ବୃହ୍ମା ଗାଡି ଆମ ଦୁଆର ମୂହଁରେ ପହଁଞ୍ଚିଲା । ତାପରେ ମୋ ସ୍ୱାମୀଙ୍କ ମୃତ ଶରୀରକୁ ଶବାଧାର ଗାଡି ଭିତରେ କୋକେଇ ସହ ରଖାଗଲା । ଶବାଧାର ଚାରି ପାଖରେ କାଚ ଦିଆଯାଇ ଥାଏ । ଯେପରି ଶବଟିର ମୁହଁକୁ ଲୋକ ଦେଖିପାରିବେ । ସେତେବେଳ ପର୍ଯ୍ୟନ୍ତ ମୋ ବଡ ପୁଅ ବମ୍ବେରୁ ଅସି ପହଁଞ୍ଚି ପାରି ନ ଥାଏ । ତେଣୁ ସାନ ପୁଅ ମୁଖାଗ୍ନି ଦେବା ପାଇଁ ବ୍ୟବସ୍ଥା ହେଲା । ପ୍ରାୟ ଆଉ ସମସ୍ତେ ଉପସ୍ଥିତ ଥିଲେ । ଶବାଧାର ଆଗରେ ଲିଆ କଉଡି ବିଞ୍ଚି ମୁଁ କିଛି ବାଟ ଚାଲିଥାଏ । ଶବାଧାରଟି ମୋ ପଛେ ପଛେ ଚାଲିଥାଏ । ଅଳ୍ପ କିଛି ବାଟ ଗଲାପରେ ମୋତେ ଶବାଧାର ସାଙ୍ଗରେ ପୁରୀ ସ୍ୱର୍ଗଦ୍ୱାରକୁ ଯିବା ପାଇଁ ମନାକଲେ । ଶବାଧାର ସାଙ୍ଗରେ ବୁବୁ ଓ ତାର କେତେଜଣ ସାଙ୍ଗ ଯିବା ପାଇଁ ଠିକ୍ ହେଲା ଏବଂ ରାଧାବଲ୍ଲଭ ସିଂ ତାଙ୍କ ଗାଡିରେ ସେମାନଙ୍କୁ ନେଇ ପୁରୀ ସ୍ୱର୍ଗଦ୍ୱାର ନିକଟକୁ ଯିବାକୁ ବାହାରିଲେ । ଏହା ଭିତରେ ମୋ ସ୍ୱାମୀଙ୍କର ସାନ ଭାଇ ଶ୍ରୀ କିଶୋର ଚନ୍ଦ୍ର ମିଶ୍ରଙ୍କ ପାଖକୁ ଫୋନ୍‌ରେ ଜଣାଇ ଦିଆଗଲା । ଆମେ ଶବ ନେଇ ପୁରୀରେ ଦେଢଘଣ୍ଟା ଭିତରେ ପହଁଞ୍ଚୁଛୁ । ତମେ ସବୁ ସେଠାରେ ବ୍ୟବସ୍ଥା କରିଥିବ । ସ୍ୱର୍ଗଦ୍ୱାର ନିକଟରେ ପହଁଞ୍ଚିଲା ବେଳକୁ ପୁଅର ମାମୁଁ ସବୁ ବ୍ୟବସ୍ଥା କରିଦେଇ ଥିଲେ । ସାନ

ପୁଅ ମୁଖାଗ୍ନି ଦେଲା । ଶବଦାହ ସରିଲା ପରେ ଏଠାରୁ ଯେଉଁମାନେ ଯାଇଥିଲେ ପ୍ରାୟ ରାତି ୧୨ଟା ବେଳେ ଆସି ଏଠାରେ ପହଁଞ୍ଚିଲେ । ତାପର ଦିନ ସକାଳ ୧୦ଟା ବେଳେ ମୋର ବଡ ପୁଅ ବୋହୂ ଓ ନାତି ଆସି ପହଁଞ୍ଚିଲେ । ବଡ ପୁଅଠାରୁ ଜାଣିବାକୁ ପାଇଲି, ସେମାନେ ବମ୍ବେ ବିମାନ ବନ୍ଦରରେ ସକାଳୁ ସଂଧ୍ୟା ପର୍ଯ୍ୟନ୍ତ ବସି ରହିଥିଲେ । ସଂଧ୍ୟାବେଳେ ସେମାନେ ଉଡାଜାହାଜ ଟିକେଟ ପାଇ ରାତି ଆଠଟା ବେଳକୁ ଆସି ଦମ୍‌ଦମ୍ ବିମାନ ବନ୍ଦରରେ ପହଁଞ୍ଚିଲେ । ସେଦିନ ରାତିରେ ଟ୍ରେନ୍‌ରେ ବସି ସକାଳୁ ପହଁଞ୍ଚିଲେ । ପହଁଞ୍ଚିଲା ପରେ ବଡ ପୁଅ ଚଉଠିରୁ କ୍ରିୟା ଧରିଲା । ଦଶାହ ଦିନ ଭୁବନେଶ୍ୱରର ସବୁ ବନ୍ଧୁବାନ୍ଧବ ଏବଂ କେତେଜଣ ମୋର ସହକର୍ମୀଙ୍କୁ ନିମନ୍ତ୍ରଣ ଦିଆଯାଇ ଥିଲା । ସେଦିନ ମୋର ବଡ ପୁଅ ଓ ସାନ ପୁଅ ମିଶି ବୋଉଙ୍କ ହାତଲେଖା କବିତା ଗୁଡିକ 'ବୋଉଙ୍କ କଲମରୁ' ବୋଲି ଜେରକ୍ସ କରି ଏକ ପୁସ୍ତକ ପ୍ରକାଶ କରାଇ ଥିଲେ । ସେ କବିତା ଗୁଡିକ ତାର ମାମୁଁ, ମୁଁ ଏବଂ ଅନ୍ୟ ପିଲାମାନଙ୍କ ଉଦ୍ଦେଶ୍ୟରେ ଲେଖାଯାଇଥିଲା । ତାଙ୍କର ସେହି ପୁସ୍ତକଟି ନିମନ୍ତ୍ରିତ ଅତିଥିମାନଙ୍କୁ ଉପହାର ସ୍ୱରୂପ ପ୍ରଦାନ କରା ଯାଇଥିଲା । ବୋଉଙ୍କ କଲମରୁ ଲେଖା ଗୀତ ଏବଂ ଅନ୍ୟ କେତେଗୁଡିଏ ଗୀତ ଲେଖିବାକୁ ଉଚିତ୍ ମନେକରୁଛି ।

### ସ୍ତ୍ରୀଙ୍କର ଲେଖା କେତେକ କବିତା

#### ସ୍ୱାମୀଙ୍କ ଉଦ୍ଦେଶ୍ୟରେ

ତୁମ ପାଇଁ ମୋର ଯେତେକ କଳ୍ପନା
ସବୁତ ପାଇଛି ରୂପ । (୧)
ମୋ ମନର ଯେତେ ସୁନେଲି କଳ୍ପନା
ସବୁ ହୋଇଛି ତ ସତ । (୨)
ତୁମ ଦୁଃଖେ ଦୁଃଖୀ, ତୁମ ସୁଖେ ସୁଖୀ
କାଟିଛି ମୁଁ ରାତି ଦିନ । (୩)
ତୁମ ଚଲାପଥେ ବିଛାଇଛି ଫୁଲ
ଖୁସିରଖି ତୁମ ମନ । (୪)
ଶାଢୀ ଗହଣାର ପିନ୍ଧିବା ସଉକି
ମୋ ମନେ ଜାଗଇ ନାହିଁ । (୫)
ଛୋଟ ଘରଟିରେ ଦିନେ ତ ଅଶାନ୍ତି
ଆସିବାକୁ ମୁଁ ଦେଇ ନାହିଁ । (୬)
ଜୀବନ ଜୁଆର ଭଟ୍ଟା ପଡିବାର
ବେଳ ତ ଆସିଲା ପାଖେଇ । (୭)
ମଥାରେ ସିନ୍ଦୁର ହାତେ ପାଣି କାଚ
ସତେ କି ଯିବି ମୁଁ ନେଇ । (୮)
ବଡ ଦାଣ୍ଡେ ସତେ ଯିବ ମୋର ଶବ
ନୀଳଚକ୍ର ଦେଖି ଦେଖି । (୯)
ପତିତପାବନ ବାନା ଦର୍ଶନ କରିଣ
ଆତ୍ମା ପାଇବ ମୁକ୍ତି । (୧୦)

#### ନାତି ଉଦ୍ଦେଶ୍ୟରେ

ମୋ ଘର ପ୍ରଦୀପ ତୁହି
ମୋ କୁଳ ନନ୍ଦନ
ମୋ ଆଖିର ଜ୍ୟୋତି ତୁହି
ମୋ ହୃଦ ଚନ୍ଦନ । (୧)
କାଳିଆର ପଦେ ମୁହିଁ
କରିଅଛି ଅଳି
ମୋ ଧନର ମଥାପରେ
ଆଶୀଷ ଦିଅନ୍ତୁ ସେ ଢାଳି । (୨)

## ଅବସର ଜୀବନ

ଚଲାପଥେ ଫୁଟୁ ତୋର
ସଦା ଶତ ଦଳ
ଫୁଲବାସ ମହକରେ କରିବୁ
ମନକୁ ତୁ ଶୀତଳ । (୩)

ଏ କୂଳର ସୁନାମକୁ
ସୁରଭିତ କରି
ଗୌରବରେ ଭରିଦେବୁ
ଘରକୁ ଆମରି । (୪)

ହାତୀ ଥିଲେ ବନସ୍ତରେ
ସେ ତ ରାଜାଙ୍କର
ଯେତେ ଦୂରେ ଥିଲେ ଧନ
ତୁହି ତ ଆମର । (୫)

ଠାକୁରାଣୀ ପଦେ ମୁହିଁ
କରିଛି ବିନତି
ଘୋଡାଇ ରଖିବେ ତୋତେ
ପଣତକୁ ପାତି । (୬)

ବାପା ,ମାଆ ଆମେ ଦୁହେଁ
ଦେଉଛୁ ଆଶୀଷ । (୭)

ସୁସ୍ଥ ହୋଇ ସଦାରହ
ହୁଅ ଶତାୟୁଷ । (୮)

## ପୁଅ, ଝିଅଙ୍କୁ ଛାଡି କାଶ୍ମୀର ଯାଇଥିବା ସମୟରେ

ଏଇ ବନ ଏଇ ଗିରି ଦିଅନା ମୋତେ ସୁଖ
ଆଖିଆଗେ ନାଚି ଯାଏ ମୋ ଧନ ବୁବୁର ମୁଖ
କାହା ପାଶେ ବୁବୁ ମୋ କରୁଥିବ ଅଳି,
ମାମି କୁନି ଅବାଟାରେ ଦେଉଥିବେ ଗାଳି( ୧ )

ବାବୁ ମୋର ଖାଇକରି ଯାଉଥିବଟି କି ସ୍କୁଲ
ନା ଉପାସରେ ଯାଉଥିବ ଲାଗେ ଜଲବଲ
କୁନିମୋର ଶୋଉଥିବ
କେତେ ଡରିମରି( ୨ )

ଭାବୁଥିବ ବୋଉ କେବେ ଆସିବ ମୋ ଫେରି
ମାମିନା ତା ଲୁଗା କାଟି ପିନ୍ଧୁଥିବ ନିତି
ଇସ୍ତ୍ରୀ, ମଣ୍ଡ ଦେଇ କେତେ, ହେଉଥିବ ଧନ୍ଦି
କୁନି ମୋର ଚଳାଉଥିବ ଭଲରେ ମୋ ଘର(୩)

ବାବୁ, ବୁବୁ ଭଲେ ଥାଆନ୍ତୁ ଶଙ୍ଖାଳି ମୋହର
ଜଗନ୍ନାଥଙ୍କ ଚରଣେ କରୁଛି ଜଣାଣ
ଭଲ ଥାଆନ୍ତୁ ମୋ ପିଲାଏ
ମାଗୁଛି ଶରଣ ( ୪ )

## ନିଜ ଉଦ୍ଦେଶ୍ୟରେ

ଦିନ ପରେ ଦିନ ମାସ ପରେ ମାସ
କେତେ ଯେ ବରଷ ଗଲାଣି ବିତି
ଦୁଃଖ ସୁଖ ଭରା ହସ କାନ୍ଦ ମିଶା
ବିଦାୟ ନେଲାଣି ଅତୀତ ହସି ( ୧ )

ମନେପଡେ ଆଜି ଜେଜେ ବାପାଙ୍କର
ସେ କଥା ପଦକ ଅମୂଲ୍ୟ ଧନ
ପଥର ପରି ମା ନିଜକୁ କରିଲେ
ଜିଣିବୁ ସବୁରି ମନ ( ୨ )

ପତ୍ର ପରି ହେଲେ ଉଡିଯିବୁ
ନ ପାରିବୁ କରି ଘର
ସବୁ ସହିବାକୁ ମଥା ପାତିଥିବୁ
ଯେମିତି ଦୃଢ଼ ପଥର(୩)

ସେହି କଥା ପଦ ଶୁଭିଯାଏ କାନେ
କେବେ ଭି ଭୁଲିବି ନାହିଁ
ହସି ହସାଇଛି ମୋ ଛୋଟ ଘରକୁ
ବଞ୍ଚିଥିବା ଯାଏ ମୁହିଁ(୪)

ବାପାହେ ଧନ ରତ୍ନ ସିନା ଦେଇ ନାହଁ ମୋତେ
ଦେଇଛ ସ୍ନେହ ଆଶୀଷ
ସେ ଆଶୀଷ ଲଭି ହୋଇଛି ମୁଁ ସୁଖୀ
ନାହିଁ ମୋ ମନରେ ଦୁଃଖ(୫)

## ମାମୁଁଙ୍କ ମୃତ୍ୟୁ ଉଦ୍ଦେଶ୍ୟରେ

ମାମୁଁ ଚାଲିଗଲେ ଭାବି ଦେଲା କ୍ଷଣି
ଦେହ ମୋ ଯାଉଛି ଥରି
କାହା ପାଖେ ଆଉ ଗୁହାରି କରିବି
କିଏ ବୁଝିବ ଦୁଃଖ ମୋହରି(୧)
ଦେହ ଖରାପରେ ଧନ୍ୱନ୍ତରୀ ପରି
ପାଖେ ହେଉଥିଲେ ଠିଆ
ମନ ଦୁଃଖ ହେଲେ ବୁଝାଇ କହନ୍ତି
ଧୈର୍ଯ୍ୟଧରି ସହିଯାଅ(୨)

ଜଗା କାଳିଆକୁ କେତେ ମୁଁ ଡାକିଲି
ତୁମକୁ ନ ନେବା ପାଇଁ
କିଛି ବୁଝିଲେନି କିଛି ଶୁଣିଲେନି
ତୁମକୁ ନେଲେ କୋଳେଇ(୩)
ସରଗ ପୁରରୁ ତୁମରି ଆଶୀଷ
ଝରିପଡୁ ମଥାପରେ
ସେ ଆଶୀଷ ଲଭି ସଦା ହେବି ସୁଖୀ
ଦୁଃଖ ଯିବ ମୋର ଦୂରେ(୪)

**ତାଙ୍କର ମୋ ସହିତ ରହିବାର ପ୍ରାୟ ଛଅମାସ ଭିତରେ କୌଣସି କାରଣରୁ ମୋର ତାଙ୍କର ଟିକିଏ ମନାନ୍ତର ହୋଇଥିଲା । ସେ ତାଙ୍କର ବାପଘରକୁ ଚାଲି ଯାଇଥିଲେ । ତିନି ଚାରି ମାସ ପର୍ଯ୍ୟନ୍ତ ମୁଁ ତାଙ୍କ ପାଖକୁ ଚିଠି ଲେଖି ନ'ଥିଲି । ସେ ମନ ବ୍ୟକ୍ତକରି ନିମ୍ନରେ ଦିଆଯାଇଥିବା କବିତାଟି ସେ ଲେଖିଥିଲେ ।**

ପତିତପାବନ ବାନାମୋ ବେଳକୁ ହେଲା ମନା
କି ଦୋଷ କରି ପ୍ରଭୁ ମୁହିଁ ତୁମରି
ଅନାଥର ନାଥ ବୋଲି ପଦତଳେ ଆଶ୍ରାକଲି
ନ ଦେଲ ହେ ଆଶ୍ରା ପ୍ରଭୁ ପଦେ ତୁମରି
ମୁହିଁ ପରା ଅବଳା ନାରି(୧)
ଆଶ୍ରା ନଦେଲ ହେ ପ୍ରଭୁ ଯିବି ମୁଁ ସରି
ତୁମ ପରା ପ୍ରଭୁ ଥାଉ କେତେସରି ହେବି ଆଉ
ଆଉ କିସ ଦୁଃଖ ଅଛି ମୋ କପାଳେ(୨)

ଏକେ ତ ଲୋକଙ୍କ ନିନ୍ଦା
ତା ସହିତ କେତେ ଧନ୍ଦା
ନୟନୁ ନୀର ମୋର ନ'ସୁଖେ ତିଳେ
ଏହା ପରା ତୁମ ବିଚାର
ଦୁଃଖନୀ କପାଳେ ପ୍ରଭୁ ସବୁ ଅସାର (୩)
କରିଅଛି ଅବା ଦୋଷ ଆହେ ପ୍ରଭୁ ପୀତବାସ
କ୍ଷମାନିଧି ପରା ତୁମେ ହେ ଜଗଦୀଶ
କାହିଁକି ଦେଉଛ ଦୁଃଖ କଳା
ଶ୍ରୀ ପଙ୍କଜ ମୁଖ(୪)

ମୋର ଡାକ ଶୁଣିବାରେ
ଦିଅ ହେ ଆଶୀଷ

ସେ ଆଶୀଷେ ଘୁଞ୍ଚିବ ଦୁଃଖ
ପତିତପାବନ ବାନା ରଖି ତା ତେଜ(୫)

**ଆମେ ପୁରୀରେ ଥିବା ସମୟରେ ରାମ ନବମୀ ଉତ୍ସବରେ ଶ୍ରୀମତୀଙ୍କୁ ଅନୁରୋଧ କରାଯାଇଥିଲା ଗୋଟିଏ କବିତା ଲେଖିଦେବା ପାଇଁ ।**

ଜାଗରେ ଶିଶୁ କିଶୋର
ଜାଗରେ ସର୍ବେ ନାରୀ ନର
ରାମନାମ ଗାଅ ଆଜି ଦେଇ ମନ ଧ୍ୟାନରେ
ଆଜି ଏ ନବମୀ ତିଥି
ମନେ ଭରି ଦିଏ ଭକ୍ତି(୧)

ନର ରୂପେ ଜନ୍ମିଥିଲେ
ଆଜି ନାରାୟଣ ରେ
ଜୟ ଜୟ ରାମ ଚନ୍ଦ୍ର ଦଶରଥ ନନ୍ଦନ
କୌଶଲ୍ୟା ପ୍ରାଣଧନ
ଜାନକୀର ଜୀବନ(୨)

ଆନନ୍ଦେ ସରବେ ଗାଅ
ଜୟ ସୀତା ରାମ ରେ
ଯେ ନାମେ ଶ୍ରବଣେ
ଧନ୍ୟ ହୁଏ ରେ ଜୀବନ

ମନ ଦେଇ ପଢ ସର୍ବେ
ଆଜି ରାମାୟଣରେ
ଯେ ନାମେ ଶ୍ରବଣେ
ଧନ୍ୟ ହୁଏ ରେ ଜୀବନ

ମୁକତି ପଥ ଦେଖାଏ
ଏକା ରାମ ନାମ ରେ (୩)

ମୁକତି ପଥ ଦେଖାଏ
ଏକା ରାମ ନାମ ରେ (୪)

ରାମ ନାମ ଜପି ତୁହି
ହୁଅରେ ଯଶସ୍ବୀ
ସେ ନାମ ଜପି ଦସ୍ୟୁ
ପାଲଟେ ମହର୍ଷି
ପାପୀଙ୍କୁ ତପୀ କରାଏ
ଏକା ରାମ ନାମରେ (୫)

ଏ ଭବ ସାଗରୁ ଯେବେ
ହୋଇବ ରେ ପାରି
ଅବିରତ ପାନ କର
ରାମ ସୁଧା ବାରି
ଅମୃତ ଭରିଛିରେ
ସେ ରାମ ନାମରେ (୬)

ଥରେ ବିଜ୍ଞାନ ପ୍ରଚାର ସମିତି, କଟକର ବାର୍ଷିକ ଉତ୍ସବରେ ଶକ୍ତି ସମସ୍ୟା ଉପରେ ଗୋଟିଏ ସିମ୍ପୋଜିଅମ୍ ହେଉଥିଲା । ସେହି ଉଦ୍ଦେଶ୍ୟରେ ଶ୍ରୀମତୀ ଗୋଟିଏ କବିତା ଲେଖିଥିଲେ । ସେ କବିତା ମୁଁ ସେଠାରେ ପଢିଥିଲି । ସେଇଟି ହେଲା :

ସମସ୍ୟା ଆମର ଆଜି
ସରିଯିବ ଆମ ଶକ୍ତିର ଭଣ୍ଡାର
ଚିନ୍ତାରେ ଯାଇଛୁ ହଜି
ଉପାୟ ଆଣିବାରେ ଖୋଜି (୧)

ଚାଲିବନି ଆଉ ଆମ ରେଳ ଗାଡି
କଳ କାରାଖାନା ଯିବ ତାଲାପଡି
ଅଭାବ ପଡିବ ଜାଳେଣି ପାଇଁକି
ବିନା ପେଟ୍ରୋଲରେ ଗାଡି ଚାଲିବକି (୨)

ବୈଜ୍ଞାନିକମାନେ କରି ଗବେଷଣା
ଯୋଗାଇ ଦେବେ ସୌର ରଶ୍ମି ଶକ୍ତି (୩)

ଆମେ ବିଜ୍ଞାନି ନୂତନ ସନ୍ଧାନେ
ସମାଧାନ ଆଣୁ ଖୋଜି (୪)

ସଂଯୋଜନ କରି ଭାରି ଉଦ୍‌ଯାନ
କାହିଁ କେତେ ଶକ୍ତି ମିଳିବଟି ଜାଣ
ରହିବ ନାହିଁରେ ଶକ୍ତିର ସମସ୍ୟା
ଉପାୟ ପାଇଛୁ ଖୋଜି (୫)

କେତେ ରିଆକ୍ଟର ବସୁଛି ମୋ ଦେଶେ
ଆଦିତ୍ୟ ନାମ ଘୋଷଣା କରେ ସେ
ଗବେଷଣା ପଥେ ଯିବୁ ରେ ଆଗେଇ
ଶକ୍ତି ସମସ୍ୟାକୁ ଦୂର କରିଦେଇ (୬)

୧୯୯୧ ମସିହାରେ କର ସେବକମାନେ ଅଯୋଧ୍ୟାରେ ରାମ ମନ୍ଦିର ନିର୍ମାଣ କରୁଥିବା ବେଳେ ଅତ୍ୟାଚାରିତ ହେଉଥିଲେ । ସେତେବେଳେ ଶ୍ରୀମତୀ ମର୍ମାହତ ହୋଇ ଏହି କବିତାଟି ଲେଖିଥିଲେ :

ଜାଲିଆନାବାଗ ହତ୍ୟାକାଣ୍ଡ
କଥା ଶୁଣିଥିଲୁ ସିନା କାନେ
ଏବେ ତ ଦେଖିଲୁ ଅଯୋଧ୍ୟାରେ ଯାହା
ଘଟିଗଲା ଏବେ ଦିନେ(୧)

କାହିଁ କେତେ ଦେଲେ ପ୍ରାଣ
ହିସାବରେ ପଡିଗଲା ହାହାକାର
ମଣିଷ ରକ୍ତରେ ବହିଗଲା
ନଦୀ ଜନ୍ମଭୂମି ରାମଙ୍କର (୨)

ଧର୍ମ ନିରପେକ୍ଷ କି ନୀତି
ହୋଇଛି ଜଳେ ନିଆଁ ଅହରହ
ଆମରି ଦେଶରେ ରାମଙ୍କ ମନ୍ଦିର
ହୋଇବନି କିଆଁ କହ (୩)

ବିଭିନ୍ନ ଭାଷାର ବିଭିନ୍ନ ଧର୍ମର
ସଭିଏଁ ରହିଲେ ଏଠି
ଏକଟାକୁ ଭୁଲି ହିଂସ୍ରତା ଆଣିଲେ
ମାରଚି ଆମକୁ ଲାଠି (୪)

ଭାରତ ମାତାର ସନ୍ତାନ ହୋଇ
ଗାଇବେନି ମାତା ନାମ
ଆମରି ଦେଶରେ ଜନମ ଲଭିଣ
ବଇରି ହୋଇବେ ଆମ (୫)

ଗୋଟିଏ ଦେଶରେ ଗୋଟିଏ ନିୟମ
ହୁଅନ୍ତା ସଭିଙ୍କ ପାଇଁ
ଆମପାଇଁ କିଆଁ ଅଲଗା ନିୟମ
ଭିନ୍ନ କିଆଁ ତାଙ୍କ ପାଇଁ (୬)

ଶାସନ ହୋଇଲା ତାଙ୍କରି ମତରେ
ଆମ ମତ ଗଲା କାହିଁ
ଶାସକ ରହିଲେ ତାଙ୍କରି ବୋଲରେ
ଆମେ ଗଲୁ ଦୂର ହୋଇ (୭)

କେମିତି ସହିବୁ ଏ ଅନ୍ୟାୟ ନୀତି
ଚାଲିବ ଏ କେତେ ଦିନ
ଏ ଧରା ବକ୍ଷରେ ଫେରି ଆସିବେ କି
କୌଶଲ୍ୟା ନନ୍ଦନ ରାମ (୮)

**ତଳେ ଦିଆଯାଇଥିବା କବିତାଟି ତାଙ୍କ ଦେହାନ୍ତର ଅଳ୍ପଦିନ ପୂର୍ବରୁ ଲେଖିଥିଲେ । ଏହି ଗୀତଟିକୁ ପୁଅ ପ୍ରାଜ୍ଞମନ ମିଶ୍ର କେଉଁଠୁ ପାଇ ଶ୍ରୀରାମ ରସାମୃତ କ୍ୟାସେଟରେ ସ୍ୱର ସଂଯୋଜନା କରି ପ୍ରକାଶ କରିଥିଲା :**

ଚାଲି ଚାଲି ପଥ ଅବିଶ୍ରାନ୍ତ
ଆଜି ମୁହିଁ କ୍ଳାନ୍ତ
ଆଖି ମୋ କୋଟର ଗତ
ଚାଲିବାକୁ ନାହିଁ ମୋ ଶକତି (୧)

ହେ ସୀତା ରାମ କର ମୋତେ
ଏ ଜଞ୍ଜାଳୁ ମୁକ୍ତି
ଜୀବନଟା କରିଛି ସଂଗ୍ରାମ
ଅନ୍ୟ ପାଇଁ କରିଛି ମୁଁ ସର୍ବ (୨)

ମୋ ଶେଯ ପାଖେ ଯଦି
ନ ଦେଖିବି ପ୍ରିୟଜନ ମୁଖ
ଛଅ ଖଣ୍ଡ କାଠେ ମୋତେ
ପୋଡି ଦେବେକି (୩)

ନାଲି ଧଡି ଧଳା ଶାଢୀ
ଦେହେଥିବ ଜଡି
ପାଦରେ ଅଳତା ଆଉ
ହାତେ ପାଣିକାଚ ପିନ୍ଧି (୪)

ସତେ ଯିବି ମୁଁ ଶ୍ରୀକ୍ଷେତ୍ର ଦାଣ୍ଡେ
ସଧବା ତେଙ୍ଗୁରା ବଜାଇ ଆଗେ ଆଗେ
ଚାଲିଥିବେ ଲିଆ କଉଡିକୁ ବିଞ୍ଚି
ପୁଅମାନେ ଯାଉଥିବେ (୫)

ମୋତେ କାନ୍ଧପରେ ଧରି ନାତିମାନେ
ଦୀପ ଦେଖାଇବେ ସରଗକୁ ପଥ
ଅତି ପ୍ରିୟ ଝିଅ,ଜ୍ୱାଇଁ, ବୋହୂ ମୋର
ଚାହିଁ ରହିଥିବେ ଅଶ୍ରୁ ସଜଳ ନୟନେ (୬)

ଦୁନିଆଁରେ ସବୁ ମିଛ ମାୟା ତେଜି ଯାଉଛି
ମୁଁ ଚାଲି ଦୂରେ ବହୁ ଦୂରେ
ଦୁନିଆଁର ସବୁ ମିଛ ଶେଷେ
ସେହି ଏକା ସତ୍ୟ (୭)

ଧନ୍ୟରେ ନିୟମ ବଡପୁଅ
ଦେବ ମୁଖେ ନିଆଁ
ଦେଖିବ କି ପାରିବ ସେ
କରୁଣ ଦୃଶ୍ୟ ଆଜି ଏ ଦୁନିଆ (୮)

ରାମ ନାମ ସତ୍ୟ
ରାମ ନାମ ସତ୍ୟ
ରାମ ନାମ ସତ୍ୟ
ରାମ ନାମ ସତ୍ୟ (୧୦)

**ତଳେ ଦିଆଯାଇଥିବା କବିତାଟି ସେ ବୋଧେ ମରିବାର ଠିକ୍ ପୂର୍ବରୁ ଲେଖିଥିଲେ ।**
**କବିତାଟି ବୁକୁ ପ୍ରସ୍ତୁତ କରିଥିବା କ୍ୟାସେଟ୍‌ରେ ଅନ୍ତର୍ଭୁକ୍ତ ହୋଇଛି :**

ଝାଉଁଳି ଯାଆନା ଗଙ୍ଗ ଶିଉଳି
ବାଜି ନାହିଁ ଟାଣ ଖରା
ଲାଜକୁଳି ଲତା ଲୋଟି ପଡିନାହିଁ
ଛୁଇଁନାହିଁ କେହି ପରା (୧)

ନବ ବଧୂ ଆଗୋ ପଣତ ଉହାଡୁ
ଆଖି ଛଳ ଛଳ କରନା
ତୋ ଶୁଖିଲା ମୁଖ ଦିଏ ବଡ ଦୁଃଖ
ନ ହୁଅ ଆଉ ବିମନା (୨)

ଓଠେ ଫୁଟି ଉଠୁ ବଧୂଲି ହସ ଗୋ
ନୟନରୁ ମାଦକତା
ଆମ ଚଲାପଥେ ଅରମା ଆଡେଇ
କୁସୁମିତ କର ପଥ (୩)

ଆସୁ ଯେତେ ଝଡ ସହିଯିବା ସବୁ
ପଥର କରିଣ ଛାତି
ସାଥେ ଥିବୁ ସଦା ଯିବୁ ନାହିଁ ଚାଲି
ଆସିଲେ ଯେତେ ବିପଦ (୪)

**ଏହି କବିତାଟି ମରିବାର କିଛି ଦିନ ପୂର୍ବରୁ ଲେଖିଥିଲେ :**

ଡାକି ଡାକି ଯେବେ ମୋ ଡାକ ନ ଶୁଣ
ପଥର ହୋଇଲ ଆହେ ଭଗବାନ
କାନ୍ଦି କାନ୍ଦି ବିତେ ମୋର ରାତି ଦିନ
କି କାରଣେ ପ୍ରଭୁ ଦେଇଛ ଜନମ (୧)

ନାହିଁ ତ ମୋର ବିଳାସ ବ୍ୟସନ
କରେ ନାହିଁ ମୁହିଁ ଧନର କାମନା
ତଥାପି ହେ ପ୍ରଭୁ ରହିଲ ମଉନ
ଆଶୀଷ ଦେବାକୁ ବଳୁନି କି ମନ (୨)

ସଂସାର ସାଗର ମିଛ ମାୟା ମୋହ
ଆଣେନି ଜୀବନେ କେବେ ହେଁ ବିଜୟ
ତବ ପଦ ତଳେ ଥାଉ ମୋର ମନ
ଏତିକି ଚାହୁଁଛି ହେ ଚକା ନୟନ (୩)

ଯଦି ଅଜାଣତେ କରେ କେବେ ଦୋଷ
କ୍ଷମା ନିଧି ତୁମେ ନ ବହିବ ରୋଷ
ପତିତପାବନ ମାନ ତୁମେ ରଖ
ଏହି ମୋର ନିବେଦନ (୪)

**ସ୍ତ୍ରୀ ମରିଯିବାର ଦୁଃଖରେ ଏହି କବିତାଟି ଲେଖିଥିଲି :**

ତୁମେ ଗଲ ଚାଲି ମୋତେ କରି ଏକା
ଭାବିଲ ନାହିଁ ରହିବି କେମିତି ଏକା
ଶୁଣିବିନି ଆଉ ତୁମର କବିତା
କାହା ଆଗେ କହିବି ମନର ବ୍ୟଥା (୧)

ପାଇବିନି ଆଉ ତୁମର ପରଶ
କଟିବ ସମୟ କିପରି ସରସେ
ଶୁଣିବି ନି ତୁମ ମନର ବେଦନା
କାହାକୁ କହିବି ମନର ଯନ୍ତ୍ରଣା (୨)

ଅନ୍ୟ ସୁଖ ପାଇଁ ଦୁଃଖ ଆଦରିଲ
ତୁମ ଦୁଃଖ ବେଳେ ଗଲେ ସବୁ ଭୁଲି
ମନେ ରଖି ଦୁଃଖ ଚାଲିଗଲ ଦୂରେ
ତୁମେ ଦୁଃଖେ କିଛି ନ ପାରିଲି କରି (୩)

ଜୀବନର ଅଧାବାଟେ ଛାଡି
ଚାଲିଗଲ ମୋତେ ଏକାକରି
ଆଶା ରଖି ମନେ ଚାଲିଗଲ ଦୂରେ
କରିବି ପୂରଣ ପ୍ରଭୁଙ୍କ କୃପାରେ (୪)

## ମୋର ଅସୁସ୍ଥତା

ଶ୍ରୀମତୀ ମୃତ୍ୟୁର ତିନି ମାସ ଆଗରୁ ସଞ୍ଜୟ ନାମକ ଗୋଟିଏ ପିଲାକୁ ଆମ ଘରେ ରଖିଥିଲେ । ସେ ତାକୁ ରନ୍ଧା ଶିଖାଇ ଦେଇଥିଲେ । ସେ ମଧ୍ୟ ଭଲ ରନ୍ଧାରନ୍ଧି କରୁଥଲା । ତେଣୁ ଖାଇବା ପିଇବାରେ ମୋର ଏବଂ ମୋ ପୁଅର କିଛି ଅସୁବିଧା ହେଉ ନ ଥିଲା । ଶ୍ରୀମତୀଙ୍କ ମୃତ୍ୟୁର ୧୧ ଦିନ ପୂର୍ବରୁ ତାଙ୍କ ମାମୁଁ ଡକ୍ଟର ଭାସ୍କର ରଥଙ୍କର କାଳ ହୋଇଯାଇ ଥିଲା । ଶ୍ରୀମତୀ ମରିବା ପରେ କିଏ ମୋତେ ଚିକିତ୍ସା କରିବ ତାହା ଠିକ୍ କରି ପାରିଲି ନାହିଁ । ଏହି ସମୟରେ ମୋର ସାନ ଝିଅ ମୋତେ କହିଲା, ମୋ ଶ୍ୱଶୁର ଡାକ୍ତର ବିଜୟ ମିଶ୍ରଙ୍କ ପାଖରେ ଚିକିତ୍ସିତ ହେଉଛନ୍ତି । ତୁମେ ତାଙ୍କୁ ଦେଖାକରି ତାଙ୍କରି ପାଖରେ ଚିକିତ୍ସିତ ହୁଅ । ତେଣୁ ବଡ ପୁଅ ସାଥିରେ ସାନ ଜ୍ୱାଇଁଙ୍କୁ ନେଇ ତାଙ୍କ ପାଖରେ ଚିକିତ୍ସିତ ହେବାକୁ ଗଲି । ସେ ମୋତେ ଅନ୍ୟ ଔଷଧ ସହିତ ବହୁମୂତ୍ର ରୋଗ ପାଇଁ 'ହ୍ୟୁମ୍ୟାନ୍ ମିକ୍ସଷ୍ଟାର୍ଡ' ଇଂଜେକ୍ସନ୍ ସକାଳେ ୧୨ ଇଉନିଟ୍ ଏବଂ ରାତିରେ ୮ ଇଉନିଟ୍ ନେବାକୁ କହିଲେ । ୧୫ ଦିନ ପରେ ଆଉଥରେ ରକ୍ତ ଶର୍କରା ମାପି ମୋତେ ଦେଖା କରିବାକୁ କହିଲେ । ଏହିପରି ଭାବରେ ମୁଁ ଆଉ ଯେତେଥର ଯାଇଛି, ସବୁଥର ଦୁଇ କିମ୍ବା ତିନି ଇଉନିଟ୍ ବଢାଇ ଦେବା ପାଇଁ ଉପଦେଶ ଦେଉଥିଲେ । ତାସହିତ ମୋର ଯେଉଁ ପାରାଲିସିସ୍ ହୋଇଥିଲା, ତା ପାଇଁ ମସ୍ତିଷ୍କ ସ୍କାନିଂ କରିବା ପାଇଁ ପରାମର୍ଶ ଦେଇଥିଲେ । ବଡ ପୁଅ ସାଙ୍ଗରେ କଳିଙ୍ଗ ହସପିଟାଲ୍‌କୁ ଯାଇ ମୁଣ୍ଡର ସ୍କାନିଂ କରିଥିଲି । ସ୍କାନିଂର ରିପୋର୍ଟ କିଛି ଖରାପ ଆସି ନ ଥିଲା । ଏହିପରି ଭାବରେ ତାଙ୍କ ଚିକିତ୍ସାରେ ରହିଲି ।

ସ୍ତ୍ରୀ ମରିବାର ମାସେ ଦୁଇ ମାସ ପରେ ସେ ମୋତେ ଯେଉଁ ବହି ଲେଖିବା ପାଇଁ କହିଥିଲେ, ସେ ବଞ୍ଚିଥିବା ବେଳେ ମୁଁ ତାକୁ ଜମା ଗୁରୁତ୍ୱ ଦେଇ ନ ଥିଲି । କିନ୍ତୁ ସେ ମରିବା ପରେ ମୁଁ ସେ ବିଷୟରେ ଚିନ୍ତାକଲି ଏବଂ ୯୯ ଜୁନ୍ ମାସ ଠାରୁ ଲେଖିବାକୁ ଆରମ୍ଭ କଲି । କେତୋଟି ପରୀକ୍ଷା ଡିସେମ୍ବର ଭିତରେ ଲେଖିଲି । ଏହି ଡିସେମ୍ବର ମାସରେ ହଠାତ୍ ବ୍ରଜବନ୍ଧୁଙ୍କ ଠାରୁ ଗୋଟିଏ ଫୋନ୍ ଖବର ପାଇଲି । ସେ କହିଲେ, ତମେ ଯଦି ସି.ପି.ପି.ରେ ଗବେଷଣା କାମ କରିବାକୁ ଇଛା କର ତେବେ ତୁମେ ଆସିପାର । ସେଥିପାଇଁ ସି.ପି.ପି. ତୁମକୁ ମାସିକ ୮୦୦୦ ଟଙ୍କା ଦେବ ଏବଂ ଯିବା ଆସିବା ଖର୍ଚ୍ଚ ତୁମ ହାତରୁ କରିବ । ତାଙ୍କ ଫୋନ୍ ଖବର ପାଇ କେତେ ଜଣ କହିଲେ ଯିବାପାଇଁ, କିନ୍ତୁ ବଡ ଝିଅ ମନାକଲା । ଶେଷରେ ଯେଉଁ ଡାକ୍ତରଙ୍କ ପାଖରେ ଚିକିତ୍ସିତ ହେଉଥିଲି ତାଙ୍କୁ ପଚାରିବାରୁ ସେ କହିଲେ ଯାଇପାର କିନ୍ତୁ ଖାଇବା ପିଇବା କଂଗାକରି ଚଳିବ । ଶେଷରେ ମୁଁ ନ ଯିବା ପାଇଁ ଠିକ୍ କଲି । ତେଣୁ ମୁଁ ଫୋନ୍‌ରେ ତାଙ୍କୁ ମନା କରିଦେଲି ।

୧୯୯୯ ମସିହା ଜାନୁଆରୀ ୧୯ ତାରିଖରୁ ବଡ ପୁଅ ଏବଂ ବୋହୂ ବମ୍ବେ ଚାଲିଗଲେ । ତା ପରେ ପରେ ସଞ୍ଜୟ ନାମକ ଯେଉଁ ପିଲାଟି ଥିଲା ସେ ମଧ୍ୟ ଚାଲିଗଲା । ତାର ଚାଲିଯିବାର କାରଣ ହେଉଛି, ସେ ଆମ କଥାରେ ସବୁବେଳେ ଜବାବ ଦେଲା । କ୍ରମେ ମୁଁ ତା ଉପରେ ବିରକ୍ତ ହୋଇ ପଡିଲି । ସେ ଦିନେ କହିଲା, ମୁଁ ଗାଁକୁ ଯାଉଛି ୭/୮ ଦିନ ପରେ

ଆସିବି । ମୁଁ କହିଲି, ତୁ ରହ ପଣା ସଂକ୍ରାନ୍ତି ବେଳକୁ ଯିବୁ । ବର୍ତ୍ତମାନ ଯଦି ଯିବୁ ତେବେ ଆଉ ଜମା ଆସିବୁ ନାହିଁ । ସେ କହିଲା,ମୁଁ ନିଶ୍ଚୟ ଆସିବି । କିନ୍ତୁ ତାର ସବୁ ଜିନିଷ ତା ବ୍ୟାଗ୍‌ରେ ପୁରାଇ ଘରକୁ ବାହାରିଲା । କିନ୍ତୁ ଗଲାବେଳେ ମୁଁ କହିଲି,ତୁତ ଆସିବୁ ସବୁ ଜିନିଷ ପତ୍ର କାହିଁକି ନେଉଛୁ । ତାକୁ ଦେଇଥିବା ଆମର କେତେ ଗୁଡିଏ ଜିନିଷ ନେଉଥିଲା । ମୁଁ ତାକୁ କହିଲି ସେଗୁଡ଼ିକ ରଖିଦେଇ ଯାଆ । ଯଦି ଆସିବୁ ତାହେଲେ ବ୍ୟବହାର କରିବୁ । ସେ ଘରୁ ୮/୧୦ ଦିନ ପରେ ଆସିଲା । କିନ୍ତୁ ଅନ୍ୟ ସ୍ଥାନରେ ରହି ଆମ ଘରକୁ ଖବର ପଠାଇଲା ଯଦି ବେଶୀ ଦରମା ଦେବେ ରହିବି । ମୁଁ କହିଲି,ଏବେ ମୁଁ ବେଶୀ ଦରମା ଦେଇ ପାରିବି ନାହିଁ । ବର୍ଷେ ପୂରିଲେ ବେଶୀ ଦରମା ଦେବି । ତୁ ଯଦି ବେଶୀ ଦରମା ପାଉଛୁ ତାହାହେଲେ ସେଠାରେ ରହ । ତାପରେ ଆମର ଆଉ ଗୋଟିଏ ଲୋକ ରଖିବାର ବ୍ୟବସ୍ଥା ହୋଇଗଲା । ସେ ଲୋକ ଆମ ଖାଇବା ପିଇବା ପାଇଁ ସକାଳୁ ଆସି ୩ ଓଳିକ ପାଇଁ ସକାଳ ୮ଟା ଭିତରେ ରାନ୍ଧିଦେଇ ଚାଲିଯାଏ ଏବଂ ଆମେ ତାହାକୁ ଗରମ କରି ଖାଉ ।

## ମୋର ଦେହରେ ରକ୍ତ ସର୍କରା ବୃଦ୍ଧିର ଅନୁଭୂତି

ଏହିପରି ଭାବରେ କେତେ ଦିନ ଗଲାପରେ ମୋ ଦେହରେ ଛୁଞ୍ଚି ଫୋଡିଲା ପରି ଲାଗିଲା । ଡକ୍ଟର ପି.କେ.ଜେନା ନାମକ ଜଣେ ଡାକ୍ତରଙ୍କ ସହିତ ଅଲୋଚନା କରିଥିଲି । ସେ କହିଲେ, କେତେକ ବହୁମୂତ୍ର ରୋଗୀଙ୍କର ଏହି ଲକ୍ଷଣ ଦେଖାଯାଏ । ତାକୁ 'ଡାଇବେଟିକ୍ ନିଉରୋପ୍ୟାଥି' କୁହାଯାଏ । ତାହା ଆଉ ଭଲ ହେବନାହିଁ । କିନ୍ତୁ ସେଥିପାଇଁ ଭୟ କରିବାର କିଛି କାରଣ ନାହିଁ । ଯେଉଁ କଷ୍ଟ ହେଉଛି ସେହିପରି ହେଉଥିବ । ଭିଟାମିନ୍ 'ବି' ଖାଇଲେ ମାସେ ପରେ କମିଯିବ । ତାପରେ ଦିନେ ଡକ୍ଟର ପି.କେ ସ୍ବାଇଁ ନାମକ ଜଣେ ଡାକ୍ତରଙ୍କ ପାଖକୁ ମୋ ରୋଗ ବିଷୟରେ ଆଲୋଚନା କରିବା ପାଇଁ ସାନ ଜ୍ବାଇଁଙ୍କ ସହ ଯାଇଥିଲି । ସେ ମଧ୍ୟ ସେହିକଥା କହିଲେ । ତାପରେ ବ୍ୟସ୍ତ ହୋଇ ବଡ ଝିଅ ପାଖକୁ ଫୋନ୍ କରି ସବୁକଥା ତାକୁ କହିଲି । କୌଣସି କାମ କରିବାକୁ ଭଲ ଲାଗିଲା ନାହିଁ ଏବଂ ମୁଁ କ୍ରମେ କ୍ରମେ ଦୁର୍ବଳ ହୋଇଗଲି । ବ୍ୟସ୍ତ ହୋଇ ମାର୍ଚ୍ଚ ମାସରେ ଝିଅ ପାଖକୁ ରାଉରକେଲା ଗଲି । ରାଉରକେଲାର ଡକ୍ଟର ଦାସଙ୍କ ସହିତ ଝିଅର ଭଲ ପରିଚୟ ଥାଏ । ଡକ୍ଟର ଦାସ ରାଉରକେଲା ଷ୍ଟିଲ୍ ପ୍ଲାଣ୍ଟ ହସପିଟାଲ୍‌ର ଜଣେ ଡାକ୍ତର ଓ ଘରୋଇ ଚିକିତ୍ସା କରନ୍ତି ନାହିଁ । ସେ ସବୁବେଳେ ଚିକିତ୍ସା ବିଜ୍ଞାନ ଉପରେ ଗବେଷଣା କରୁ ଥାଆନ୍ତି । ତାଙ୍କ ସଙ୍ଗେ ଆଲୋଚନା କଲି । ଅନ୍ୟ ଡାକ୍ତରମାନେ ଯାହା କହୁଥିଲେ ସେ ମଧ୍ୟ ସେଇୟା କହିଲେ ।

## ଶ୍ରୀଯୁକ୍ତ ସୁରେନ୍ଦ୍ର ନାଥ ଦ୍ବିବେଦୀଙ୍କ ସହିତ ସାକ୍ଷାତ

ଝିଅ ସାଙ୍ଗରେ ମୁଁ ଶ୍ରୀଯୁକ୍ତ ସୁରେନ୍ଦ୍ରନାଥ ଦ୍ବିବେଦୀଙ୍କ ସହିତ ଦେଖାକରି କଥାବାର୍ତ୍ତା କଲି । ସେ କହିଲେ,ମୋର ମଧ୍ୟ ସେହି ରୋଗ ହୋଇଛି । ଛୁଞ୍ଚି ଫୋଡି ହେଲାପରି ଅନୁଭବ କେବେ ଛାଡିବ ନାହିଁ । ବେଳେ ବେଳେ ବାହାରିବ । କିନ୍ତୁ ହୋମିଓପ୍ୟାଥିକ୍ ଔଷଧ ଖାଇଲେ କଷ୍ଟ ବହୁତ ପରିମାଣରେ କମିଯିବ । ତୁମେ ଜଣେ ହୋମିଓପ୍ୟାଥିକ ଡାକ୍ତରଙ୍କ ସହିତ

ପରାମର୍ଶ କର । ଶ୍ରୀଯୁକ୍ତ ସୁରେନ୍ଦ୍ର ନାଥ ଦ୍ୱିବେଦୀ ହେଉଛନ୍ତି ଜଣେ ସ୍ୱାଧୀନତା ସଂଗ୍ରାମୀ । ଇଂରେଜ ଶାସନ ବେଳେ ସେ ବହୁବାର ଜେଲ୍ ଯାଇଥିଲେ । ଭାରତ ସ୍ୱାଧୀନ ହେଲାପରେ କେତେ ବର୍ଷ ପାଇଁ ଉତ୍ତର ପୂର୍ବାଞ୍ଚଳର ଗୋଟିଏ ରାଜ୍ୟରେ ରାଜ୍ୟପାଳ ଭାବରେ ଅବସ୍ଥାପିତ ହୋଇଥିଲେ । ସେଠାରୁ ରାଜ୍ୟପାଳ ପଦବୀରୁ ଅବ୍ୟାହତି ନେଇ ସେ ରାଉରକେଲା ଠାରେ ଅବସ୍ଥାନ କରୁଥିଲେ । ରାଉରକେଲାରେ ଆଉଜଣେ ଡାକ୍ତରଙ୍କୁ ଦେଖାଇବା ପରେ ସେ ସନ୍ଦେହ କଲେ ଏସିଡିଟି ହେଉଛି ବୋଲି । ସେଥିପାଇଁ ସେ ଗୋଟିଏ ଔଷଧ ଦେଲେ । ଔଷଧ ଖାଇଲା ପରେ ଝାଡା ପରିଷ୍କାର ହୁଏ । କେଉଁ ଦିନ ଛୁଞ୍ଚି ଫୋଡିଲା ପରି କଷ୍ଟ ହୁଏ ଏବଂ କେଉଁଦିନ କଷ୍ଟ ହୁଏ ନାହିଁ । ରାଉରକେଲାରେ ୧୫ ଦିନ ରହିଲା ପରେ ଆମର ଏହି ଘରକୁ ପାଣି ଆସିବା ବନ୍ଦ ହୋଇଗଲା । ତେଣୁ ବୁବୁ ଅସୁବିଧାରେ ପଡିଲା । ଏହି ସମୟରେ ଜଣେ ଇଂଜିନିୟର ବୁବୁର ବିବାହ ପାଇଁ ମୋ ସାଙ୍ଗେ ରାଉରକେଲା ଫୋନ୍‌ରେ କଥାବାର୍ତ୍ତା କଲେ । ସେ ପ୍ରସ୍ତାବଟି ମୋତେ ଭଲ ଲାଗିଲା । ଭଲ ଲାଗିବାରୁ ମୁଁ ଭୁବନେଶ୍ୱର କଥାବାର୍ତ୍ତା କରିବା ପାଇଁ ଆସିଲି । ଏହା ଭିତରେ ୩/୪ଟି ପ୍ରସ୍ତାବ ମଧ୍ୟ ଆସିଥାଏ । ତା ଭିତରୁ ଯୋଡିଏ ପ୍ରସ୍ତାବକୁ ମନୋନୀତ କରି ତାଙ୍କ ପାଖକୁ ଖବର ଦେଇଦେଲି । ତା ଭିତରୁ ଗୋଟିଏ ପ୍ରସ୍ତାବରେ ମୋର ଭାବି ସମୁଦି ଆମ ଘରକୁ ଆସି ମୋ ସାଙ୍ଗରେ ଦେଖାକଲେ ଏବଂ କଥାବାର୍ତ୍ତା କଲେ । ମୁଁ ତାଙ୍କୁ କହିଲି,ମୋର ଶେଷ ଜବାବଟା ଜୁନ୍ ୧୭ ତାରିଖ ପରେ ଅର୍ଥାତ ମୋ ଶ୍ରୀମତୀଙ୍କ ବର୍ଷିକିଆ ଶ୍ରାଦ୍ଧ ପରେ ଦେବି ।

ଏହାପରେ ମୁଁ ୧୯୯୧ରୁ ୧୯୯୪ ପର୍ଯ୍ୟନ୍ତ ଯେଉଁ ଗବେଷଣା ପାଇଁ ଇଉ.ଜି.ସି.ରୁ ଅନୁଦାନ ପାଇଥିଲି ତାର କେତେ ଟଙ୍କା ବାକି ରହିଯାଇଥିଲା । ଭଗବାନଙ୍କ କୃପାରୁ ଶ୍ରୀ ବିଭୁପ୍ରସାଦ ମିଶ୍ର ନାମକ ଆମ ଗ୍ରାମର ଜଣେ ବ୍ୟକ୍ତି ଉତ୍କଳ ବିଶ୍ୱବିଦ୍ୟାଳୟର ରେଜିଷ୍ଟ୍ରାର ଭାବେ ବଦଳି ହୋଇଆସିଲେ । ସେ ମୋତେ ଭାଇନା ବୋଲି ଡାକନ୍ତି । ତାଙ୍କ ସଙ୍ଗେ ଦେଖା କରିବାରୁ ସେ ସବୁ କାଗଜ ପତ୍ର ଠିକ୍ କରିଦେଲେ । ମୋର ଯେଉଁ ଟଙ୍କା ବାକି ଥିଲା ତାହା ସବୁ ମିଳିଗଲା । ଯେତେ ସବୁ ଟଙ୍କା ଧାର ଥିଲା ତାକୁ ସବୁ ସୁଝିଦେଲି ।

### ବୋଉଙ୍କର କେତେଗୁଡିଏ ଗୀତକୁ ନେଇ ଏକ କ୍ୟାସେଟ ପ୍ରସ୍ତୁତି

ସ୍ୱାଙ୍କର ବର୍ଷିକିଆ ଶ୍ରାଦ୍ଧକୁ ଦୁଇ ପୁଅ ମିଶି ବୋଉଙ୍କର କେତେ ଗୁଡିଏ ଗୀତକୁ ନେଇ 'ଶାନ୍ତି ମାର୍ଗ' ନାମରେ ଗୋଟିଏ କ୍ୟାସେଟ୍ କରିଥିଲେ । ତାଙ୍କ ଶ୍ରାଦ୍ଧ ଦିନ ବାପୁଜୀ ନଗର ଦୁର୍ଗା ମନ୍ଦିରରେ କ୍ୟାସେଟଟିକୁ ଉନ୍ମୋଚନ କରାଗଲା । ତାଙ୍କ ଶ୍ରାଦ୍ଧକୁ ଭୁବନେଶ୍ୱରରେ ଥିବା ମୋର ସମସ୍ତ ବନ୍ଧୁ ବାନ୍ଧବ ଏବଂ ମୋର ସହକର୍ମୀମାନେ ଯୋଗ ଦେଇଥିଲେ । ପ୍ରଥମ ଶ୍ରାଦ୍ଧ ବାର୍ଷିକୀ ସରିବାର ଦୁଇ ଦିନ ପରେ ଶ୍ରୀ ଗୋପବନ୍ଧୁ ମହାପାତ୍ରଙ୍କୁ ମୋ ପୁଅର ତାଙ୍କ ଝିଅ ସହିତ ବିବାହ ପ୍ରସ୍ତାବରେ ମୁଁ ରାଜିଅଛି ବୋଲି ଜଣାଇ ଦେଲି ଏବଂ କହିଲି ,ଏହି ବିବାହ ଆସନ୍ତା ଏକ ମାସ ଭିତରେ ଯଦି କରି ନ ପାରିବେ, ତାହେଲେ ଆପଣ ମୋ ପାଖକୁ ଆଉ ଆସିବା ଦରକାର ନାହିଁ । କାରଣ ଏକ ମାସ ପରେ ଆଉ ପାଞ୍ଚ କିମ୍ବା ଛଅ ମାସ ପାଇଁ ବିଭାଘର ତିଥି ନାହିଁ । ସେ ମହାଶୟ

ଆଉ ୨/୩ ଦିନ ପରେ ଆସି ମୋ ସହିତ ଦେଖା କଲେ ଏବଂ କହିଲେ ଜୁଲାଇ ୧୧ ତାରିଖ ଦିନ ମୁଁ ବିଭାଘର କରିବା ପାଇଁ ରାଜି ଅଛି ।

## ସାନପୁଅର ବିଭାଘର ସମ୍ପନ୍ନ

ତେଣୁ ସେହିଠାରେ ବିଭାଘର ହେବ ବୋଲି ଠିକ୍ ହୋଇଗଲା । ମୁଁ ୨/୩ ଦିନ ପରେ ମହାପାତ୍ର ବାବୁଙ୍କୁ ଫୋନ୍‌ରେ କହିଲି,ମୁଁ ତ ଝିଅକୁ ଦେଖିନାହିଁ ଟିକିଏ ଦେଖିବା ପାଇଁ ବ୍ୟବସ୍ଥା କରନ୍ତୁ । ରାମ ମନ୍ଦିରରେ ଦେଖିବା ପାଇଁ ବ୍ୟବସ୍ଥା ହେଲା । ସେତେବେଳେ ମୋ ଦେହ ବହୁତ ଖରାପ ଥିବାରୁ ମୋତେ ପୁଅ ଝିଅମାନେ ଗାଡିରୁ ଧରି ଧରି ରାମ ମନ୍ଦିରକୁ ନେଲେ । ସେଠାରେ ଭୋଗ ହେଲା ଆମେ ସମସ୍ତେ ଖାଇଲୁ । ତାପରେ ମୁଁ ଝିଅ ଆଙ୍ଗୁଠିରେ ଗୋଟିଏ ସୁନାମୁଦି ପିନ୍ଧାଇ ଦେଲି । ୧୧ ତାରିଖରେ ସ୍ୱସ୍ତି ହୋଟେଲ୍‌ରେ ଆମର ପ୍ରୀତି ଭୋଜନର ଆୟୋଜନ କରାଯାଇ ଥିଲା । ତାହା ମଧ୍ୟ ସୁରୁଖୁରୁରେ ହୋଇଗଲା । ତାପରେ ଆମର ଖାଇବା ପିଇବା ସବୁ ସୁବିଧା ହୋଇଗଲା । ବିଭାଘର ପରେ ମୁଁ ଭୁବନେଶ୍ୱରର ଜଣେ ଏଲୋପ୍ୟାଥିକ୍ ଡାକ୍ତରଙ୍କ ପାଖକୁ ଗଲି । ସେ ମହାଶୟ ଏଲୋପ୍ୟାଥିକ୍ ସହିତ ହୋମିଓପ୍ୟାଥିକ୍ ଔଷଧ ମଧ୍ୟ ଦିଅନ୍ତି । ତାଙ୍କ ପାଖକୁ ଥରେ ପରାମର୍ଶ କରିବାକୁ ଯାଇଥିଲି । ସେ ଦୁଇଟି ଔଷଧ ୧,୨ କରି ଲେଖିଦେଲେ । ତାକୁ ଭିନ୍ନ ଭିନ୍ନ ସମୟରେ ଖାଇବାକୁ କହିଲେ । ତାଙ୍କର ବ୍ୟବସ୍ଥା ପତ୍ର କିଛି ନାହିଁ । ତେଣୁ ମୋତେ ତାଙ୍କ ଚିକିତ୍ସା ପସନ୍ଦ ହେଲାନାହିଁ ।

## ହୋମିଓପ୍ୟାଥିକ୍ ଡାକ୍ତର ଶ୍ରୀ ଅକ୍ଷୟ କୁମାର ମିଶ୍ରଙ୍କ ସହିତ ପରାମର୍ଶ

ମୁଁ ଅଗଷ୍ଟ ୯ ତାରିଖ ୧୯୯୯ ମସିହା ମୋ ଘର ପାଖରେ ଜଣେ ହୋମିଓପ୍ୟାଥିକ୍ ଡାକ୍ତରଙ୍କୁ ଦେଖାଇବାକୁ ଗଲି । ସେ ମୋ କଥା ସବୁ ଶୁଣିଲେ । ମୋତେ ଦୁଇଟି ଔଷଧ ଦେଲେ । ଏହି ଔଷଧ ୧୫ ଦିନ ଖାଇଲା ପରେ ମୁଁ ଯେଉଁ ଇନ୍‌ସୁଲିନ୍ (ହ୍ୟୁମାନ୍ ମିକ୍ସଷ୍ଟାର୍ଡ) ଦିନକୁ ୨୫ ଇଉନିଟ୍ କରି ଇଂନ୍‌ଜେକ୍ସନ୍ ନେଉଥିଲି, ତାର ପରିମାଣ ଆସ୍ତେ ଆସ୍ତେ କମିବାକୁ ଲାଗିଲା । ଏହା ଭିତରେ ୪୦ ଦିନ ତାଙ୍କ ଚିକିତ୍ସାରେ ରହିବା ପରେ ଆଉ ଇଂନ୍‌ଜେକ୍ସନ୍ ନେବା ଦରକାର ପଡିଲା ନାହିଁ । ସେମି ଉଗ୍ଲୁକୋନ୍ ଗୋଟିଏ ଲେଖାଏଁ ଦୁଇଓଳି ଖାଉଥିଲି । ସେ ମହାଶୟ ଔଷଧ ବଦଳାଇ ବଦଳାଇ ଚାଲି ଥାଆନ୍ତି । ମୁଁ ତାଙ୍କ ଚିକିତ୍ସାରେ ୨ ହଜାରେ ମସିହା ଜାନୁଆରୀ ମାସ ପର୍ଯ୍ୟନ୍ତ ରହିଲି । ମୋ ଦେହ ଆସ୍ତେ ଆସ୍ତେ ସୁସ୍ଥ ଲାଗିଲା । ମୁଁ ବୁଲାବୁଲି କରି ପାରିଲି । ପ୍ରାତଃ ଭ୍ରମଣରେ ମଧ୍ୟ ଗଲି । ମାର୍ଚ୍ଚ ଶେଷ ସପ୍ତାହରେ ବଡପୁଅ ଅନୁରୋଧରେ ମୁଁ ମୁମ୍ବାଇ ଉଡାଜାହାଜରେ ଗଲି । ୧୫ ଦିନ ତା ଘରେ ରହିବା ପରେ ମୋତେ ସେଠାରେ ଆଉ ରହିବାକୁ ଭଲ ଲାଗିଲା ନାହିଁ । ସେହିଠାରେ ଥିଲାବେଳେ ମୋର ମନେ ପଡିଲା ଯେ ସ୍ୱାମୀ କହିଥିଲେ ଏମ୍.ଏସ୍‌ସିର ଗୋଟିଏ ପ୍ରାକ୍ଟିକାଲ ବହି ଲେଖିବା ପାଇଁ । ସେହି ମୁମ୍ବାଇରେ ଥିବା ବେଳେ ମୁଁ ସିଦ୍ଧାନ୍ତ କଲି ଭୁବନେଶ୍ୱର ଗଲାପରେ ଏମ୍.ଏସ୍‌ସିର ପ୍ରାକ୍ଟିକାଲ ବହିଟିର ଲେଖା ବିଧିବଦ୍ଧ ଭାବରେ ଆରମ୍ଭ କରିବି । ଅପ୍ରେଲ୍ ୧୫ ତାରିଖରେ ମୁଁ ଉଡାଜାହାଜରେ ଏକୁଟିଆ ବମ୍ବେରୁ ଭୁବନେଶ୍ୱର ଚାଲି ଆସିଲି । ତାପରେ ମୁଁ ଏମ୍.ଏସ୍‌ସି ପ୍ରାକ୍ଟିକାଲ୍ ବହିଟି ଲେଖିବା

ଆରମ୍ଭ କଲି । କେତେଦିନ ପରେ ପ୍ରାୟ ୩୦ଟି ପରୀକ୍ଷା ଲେଖିବାକୁ ସମର୍ଥ ହେଲି । ସେତେବେଳେ ମୋର ଲକ୍ଷ ଥିଲା ଆଉ ୭୦ଟି ପରୀକ୍ଷା ଲେଖିବା ପାଇଁ । ମୁଁ ଅନୁମାନ କରୁଥିଲି ଆଉ ୨/୩ ବର୍ଷରେ ଲେଖା ସରିଯିବ ।

## ସ୍ୱାମୀଙ୍କ ପରାମର୍ଶରେ ସ୍ନାତକୋତ୍ତର ବହି ଏବଂ ନୃସିଂହ ବାବୁଙ୍କ ପରାମର୍ଶରେ ଆତ୍ମଜୀବନୀ ଲେଖିବାକୁ ଆରମ୍ଭ କଲି :

ଏହା ଭିତରେ ଶ୍ରୀ ନୃସିଂହଚରଣ ସାହୁ ନାମକ ଜଣେ ବ୍ୟକ୍ତି ଆମ ଘରକୁ ଆସିଥିଲେ । ସେ ଆଗରୁ ପ୍ରଜାତନ୍ତ୍ରରେ ବାହାରୁ ଥିବା ମୀନାବଜାର ସମ୍ପାଦନା କରୁଥିଲେ । ତେଣୁ ସେ "ଜହ୍ନରୀ ଭାଇ" ନାମରେ ପରିଚିତ । ଆମ ପିଲାମାନଙ୍କୁ ସ୍ନେହ କରନ୍ତି । ଦିନେ କଥାବାର୍ତ୍ତା ହେଉ ହେଉ କୌଣସି କାରଣରୁ ମୋର ପିଲାଦିନ କଥା ତାଙ୍କୁ କହୁଥିଲି । କିପରି ମୁଁ ଏବଂ ମୋ ବୋଉ ବଡ କଷ୍ଟରେ ଚଳୁଥିଲୁ ସେହି କଥା କହିଲି । ସ୍ୱାମୀ ମରିଯିବା ପରେ ବହୁତ ବ୍ୟସ୍ତ ଲାଗୁଥିବା କଥା କହିଲି । ସେ ସାନ୍ତ୍ୱନା ଦେଇ  ମୋତେ କହିଲେ, ଆପଣଙ୍କର ଗୋଟିଏ ଆତ୍ମଜୀବନୀ ଲେଖନ୍ତୁ । ମନରୁ ଅବସାଦ କମିଯିବ । ମୁଁ କହିଲି ହାତରେ ତ ମୁଁ ଲେଖିପାରିବି ନାହିଁ । କିପରି ଲେଖିବି ? ସେ କହିଲେ ଆପଣ ଜଣେ କଲେଜ ଛାତ୍ର ବା ଛାତ୍ରୀଙ୍କୁ ଜୀବନୀଟି କହିଦେବେ, ସେ ଲେଖିବେ । ସବୁଦିନ କିଛି କିଛି ଲେଖିଲେ ଲେଖାଟି କେତେଦିନ ପରେ ସଂପୂର୍ଣ୍ଣ ହୋଇଯିବ । ଏହି ସଂକ୍ରାନ୍ତରେ ସେ ସର୍ବେଶ୍ୱର ବାବୁଙ୍କ ଆତ୍ମ ଜୀବନୀ କଥା କହିଲେ ।

ସେହି ସମୟରେ ମୋ ସାନ ପୁଅ ପାଖରେ ଦୁଇ ଜଣ ଝିଅ କାମ କରୁଥାଆନ୍ତି । ମୋ ସାନ ପୁଅ ମୋତେ ଜଣାଇଲା, ଚିନ୍ମୟୀ କାନୁନ୍‌ଗୋ ବୋଲି ଜଣେ କାମ କରୁଛନ୍ତି । ତାଙ୍କୁ କୁହ ସେ ଲେଖିଦେବେ । ତାପର ଦିନ ଠାରୁ ଲେଖା ଆରମ୍ଭ କଲି । ୮/୧୦ ଫାଳ ଲେଖା ଲେଖି ବନ୍ଦ କରିଦେଲି । ନୃସିଂହ ବାବୁ ଆସିଲା ପରେ ତାଙ୍କୁ ଦେଖାଇ ତାଙ୍କ ମତ ନେଇ ପୁଣି ଲେଖିଲି । ସେ କେତେ ଦିନ ପରେ ପୁଣି ଆମ ଘରକୁ ଆସିଲେ । ତାଙ୍କୁ ଲେଖାଟି ଦେଖାଇଲି । ସେ ଉତ୍ସାହ ଦେଇ କହିଲେ, ବହୁତ ଭଲ ହେଉଛି ଲେଖିଯାଆନ୍ତୁ । ମୁଁ ମଝିରେ ମଝିରେ ଆସି ଦେଖି ଯାଉଥିବି । ସେହି ଦିନ ଠାରୁ ଆଜି ପର୍ଯ୍ୟନ୍ତ ଲେଖା ଚାଲିଛି ।

୧୯୮୮ ରୁ ୨୦୦୦ ମଧ୍ୟରେ ପ୍ରଭାତୀର ଦୁଇଟି ଝିଅ ହୋଇଥିଲେ । ସେମାନଙ୍କ ନାମ ଯଥାକ୍ରମେ ସ୍ୱାତୀ ଓ ସ୍ମୃତି । ବଡ ଝିଅ ସ୍ୱାତୀ କିଶୋର ବୈଜ୍ଞାନିକ ହିସାବରେ ଭାରତରୁ ପ୍ରଥମ ସ୍ଥାନ ଅଧିକାର କରି ଆମେରିକା ଡେଟ୍ରୟଡ ଠାରେ ଆନ୍ତର୍ଜାତିକ ବିଜ୍ଞାନ ମେଳାରେ ୨୦୦୦ ମସିହା ମଇ ମାସରେ ଯୋଗ ଦେଇଥିଲା । ଭାରତରେ ପ୍ରଥମ ହୋଇଥିବାରୁ ସେ ଗୋଟିଏ କମ୍ପ୍ୟୁଟର ଉପହାର ସ୍ୱରୂପ ପାଇଥିଲା । ତାପର ବର୍ଷ ଦିଲ୍ଲୀ ପବ୍ଲିକ୍ ସ୍କୁଲ (ରାଉରକେଲା) ରେ ଦଶମ ଶ୍ରେଣୀ ପରୀକ୍ଷା ଦେଇଥିଲା । ସାନ ଝିଅ ସ୍ମୃତି ମିଶ୍ର ସେତେବେଳେ ଷଷ୍ଠ ଷ୍ଟାଣ୍ଡାଡରେ ଦିଲ୍ଲୀ ପବ୍ଲିକ୍ ସ୍କୁଲରେ ପଢୁଥିଲା ।

୨୦୦୦ ମସିହା ଅକ୍ଟୋବର ମାସରେ ସାଉଥ୍ ଏସିଆନ୍ ପତ୍ରିକାରେ ମୋ ପାଖକୁ ଲେଖିକରି ପଠାଇଲା, ଆପଣଙ୍କ ବହିଟି ଛପା ହୋଇଗଲା । ଅକ୍ଟୋବର ମାସ ସୁଦ୍ଧା ମୁଁ ଆପଣଙ୍କ

ପାଖକୁ ପଠାଇ ଦେବି । ତାଙ୍କ କହିବା ଅନୁସାରେ ନଭେମ୍ବର ପ୍ରଥମ ସପ୍ତାହରେ ୫ ଖଣ୍ଡ ବହି ଡାକ ପାର୍ଶଲରେ ପଠାଇଲେ । ବହି ଗୁଡିକ ପାଇକରି ବହୁତ ଖୁସି ଲାଗିଲା । କାରଣ ବହିଟି ଲେଖିବା ଲାଗି ୧୯୭୪ରୁ ଚିନ୍ତା କରିଥିଲି । ଅବସର ନେବା ପରେ ଲେଖିବା ଆରମ୍ଭ କରି ପ୍ରାୟ ୧୦୦ ପୃଷ୍ଠା ଲେଖିଥିଲି ଏବଂ ପରେ ଗୌହାଟୀ ଚାଲି ଯିବାରୁ ଲେଖା ବନ୍ଦ ହୋଇଗଲା । ତାପରେ ପାରାଲିସିସ୍ ହୋଇଗଲା । ଦେହ ଟିକିଏ ଭଲ ହେବାରୁ ପୁଣି ଲେଖା ଆରମ୍ଭ କଲି । ତାହା ୧୯୯୮ ମସିହା ଜାନୁଆରୀ ମାସରେ ଶେଷ ହୋଇଗଲା ଏବଂ ମୁଁ ମଧ୍ୟ ତାହାକୁ ପବ୍ଲିଶର୍ ପାଖକୁ ପଠାଇ ଦେଲି । ପବ୍ଲିଶର୍ ଲେଖିଥିଲା ବର୍ଷକ ମଧ୍ୟରେ ଛପାଇଦେବି । କିନ୍ତୁ ଛପାଇବାକୁ ଅଢେଇ ବର୍ଷ ଲାଗିଗଲା । ଛପାହେବା ପୂର୍ବରୁ ଓ ମୋ ଶ୍ରୀମତୀଙ୍କ ମୃତ୍ୟୁ ପରେ ମୁଁ ପବ୍ଲିଶରଙ୍କୁ ଲେଖିଥିଲି ମୋ ଶ୍ରୀମତୀଙ୍କ ନାମରେ ଉତ୍ସର୍ଗ କରିଦେବା ପାଇଁ । ତେଣୁ ମୁଁ ପ୍ରଥମେ ବହିଟି ଉତ୍ସର୍ଗୀକୃତ ହୋଇଛି କି ନାହିଁ ତାହା ଦେଖିଲି । ଦେଖିଲି ଯେ ବହିଟି ଉତ୍ସର୍ଗୀକୃତ ହୋଇଛି ।

## ପ୍ଲାଜମା ୨୦୦୦, ସାହା ଇନ୍‌ଷ୍ଟିଚ୍ୟୁଟ୍, କଲିକତା

ଏହା ପୂର୍ବରୁ ଦୁଇ ତିନି ମାସ ତଳେ ଚିଠି ପାଇଲି, କଲିକତା ସାହା ଇନ୍‌ଷ୍ଟିଚ୍ୟୁଟ୍‌ରେ ପ୍ଲାଜମା ୨୦୦୦ ସିମ୍ପୋଜିଅମ୍ ଡିସେମ୍ବର ୪ ରୁ ୮ ମଧ୍ୟରେ ହେଉଛି । ଏହାର ପ୍ରାୟ ୧ ବର୍ଷ ଆଗରୁ ଶ୍ରୀ ଇଉ.ସି ପଟ୍ଟନାୟକ ନାମକ ଜଣେ ପ୍ଲାଜମା ଫିଜିକ୍ସର ଛାତ୍ର ମୋ ତତ୍ତ୍ୱାବଧାନରେ ଇଉ.ଜି.ସିର ବରିଷ୍ଠ ପରିଯୋଜନା ଆସିସ୍‌ଷ୍ଟାଣ୍ଟ ଭାବରେ କାମ କରୁଥିଲେ । ମୁଁ ତାଙ୍କର ପିଏଚ୍.ଡି ପାଇଁ ଗୋଟିଏ ପରିଯୋଜନା କାମ ଦେଇଥିଲି । ତାପରେ ମୁଁ ଗୌହାଟୀ ଚାଲି ଯିବାରୁ କାମଟି ବନ୍ଦ ହୋଇ ଯାଇଥିଲା । ମୁଁ ଗୌହାଟୀରୁ ଫେରିଲି । ମୋ ଦେହ ଟିକିଏ ଭଲ ହେଲାପରେ ସେ ମୋତେ ଅନୁରୋଧ କଲେ ପୁରୁଣା କାମଟି ପୁଣି ଆରମ୍ଭ କରିବାକୁ । ମୁଁ ତାଙ୍କୁ କହିଲି ସେ କାମ ପାଇଁ ଦରକାର ହେଉଥିବା ଉପକରଣ ଗୁଡିକ ରେଭେନ୍ସା କଲେଜରେ ଅଛି । ତେଣୁ ତୁମେ ଅଭିମନ୍ୟୁ ବାବୁଙ୍କ ସଙ୍ଗେ କଥାବାର୍ତ୍ତା କର । ତାପରେ ଦିନେ ଅଭିମନ୍ୟୁ ବାବୁ ଆମ ଘରକୁ ଆସିଲେ ଏବଂ ମୋତେ କହିଲେ,ଆପଣ ସେହି ପରିଯୋଜନାଟିର ସହ ତତ୍ତ୍ୱାବଧାରକ ଭାବେ ରହନ୍ତୁ । ମୁଁ ରାଜି ହେଲି । ତାପରେ କାମ କଲେ । ମୋର ହୃଦ୍‌ବୋଧ ହେଲା ଇଉ.ସି ପଟ୍ଟନାୟକର କାମଟି ବହୁତ ଭଲ ହୋଇଛି । ତେଣୁ କହିଲି, ତାକୁ ଛପା ହେବା ପାଇଁ ଜାପାନ୍ ଫିଜିକାଲ୍ ସୋସାଇଟିକୁ ପଠାଇ ଦିଅ ।

ଅନ୍ୟ ଗୋଟିଏ କାମ ପ୍ଲାଜମା ୨୦୦୦ କୁ ମୁଁ, ଅଭିମନ୍ୟୁ ବାବୁ ଏବଂ ପଟ୍ଟନାୟକ ବାବୁ ତିନି ଜଣଙ୍କ ନାମରେ ଗୋଟିଏ ପ୍ରବନ୍ଧ ଲେଖି ପଠାଇ ଦେଲୁ । ମୋର ମନ ହେଲା କଲିକତା ଯିବା ପାଇଁ । କାରଣ ସାହା ଇନ୍‌ଷ୍ଟିଚ୍ୟୁଟ୍ ସଙ୍ଗେ ମୁଁ ପରିଚିତ । ସେଠାରେ ମୁଁ ତାତ୍ତ୍ୱିକ ଗବେଷଣା କେତେକାଂଶରେ କରିଥିଲି । ତେଣୁ ମୁଁ ଅଭିମନ୍ୟୁ ବାବୁଙ୍କୁ ଅନୁରୋଧ କଲି ସେ କଲିକତା ଯିବା ପାଇଁ । ସେ ରାଜି ହେଲେ । ଚାରି ତାରିଖ ଦିନ ପୁରୀ ଏକ୍ସପ୍ରେସରେ ସାଙ୍ଗ ହୋଇ କଲିକତା ଗଲୁ । ସେଠାରେ ସାହା ଇନ୍‌ଷ୍ଟିଚ୍ୟୁଟ୍‌ର ଅତିଥି ଭବନର ଗୋଟିଏ କୋଠରୀରେ

ମୁଁ ରହିଲି ଏବଂ ଅଭିମନ୍ୟୁ ବାବୁ ଆଉ ଗୋଟିଏ ସ୍ଥାନରେ ରହିଲେ । ୬ ତାରିଖ ଦିନ କଲିକତାରେ ମୋ ରକ୍ତରେ ଶର୍କରା ପରିମାଣ ବଢିଯିବାରୁ ଦେହ ଟିକିଏ ଖରାପ ହୋଇଗଲା । ସେଠାରେ ଇନ୍‌ଷ୍ଟିଚ୍ୟୁଟ୍‌ର ଜଣେ ଡାକ୍ତରଙ୍କ ସଙ୍ଗେ ପରାମର୍ଶ କଲି । ସେ କହିଲେ ରକ୍ତଚାପ ଟିକିଏ ବଢିଯାଇଛି । ସେ ମୋତେ ୬ ଟି ବଟିକା ଖାଇବାକୁ ଦେଲେ । ୮ ତାରିଖ ଦିନ ସକାଳେ ଭଲ ଲାଗିଲା । ସିମ୍ପୋଜିଅମ୍ ସରିଲା ପରେ ସେଦିନ ସଂଧ୍ୟାବେଳେ ଆମେ ହାଓଡା ଷ୍ଟେସନ୍‌କୁ ଚାଲି ଆସିଲୁ ଓ ପୁରୀ ଏକ୍ସପ୍ରେସରେ ବସି ଭୁବନେଶ୍ୱର ଆସିଲୁ ।

କଲିକତା ଯିବା ପୂର୍ବରୁ ସାଉଥ୍ ଏସିଆନ୍ ପବ୍ଲିଶର ମୋ ପାଖକୁ ଲେଖିଥିଲେ ଓଡିଶାରେ କୌଣସି ବହି ବିତରକ ପଇସା ଦେଇ ବହି ରଖୁ ନାହାନ୍ତି । ମୋ ବହିଟିକୁ ପ୍ରଚାର କରିବା ପାଇଁ ମୁଁ ଲେଖିଲି, ମୋ ପାଖକୁ ୧୦୦ ଖଣ୍ଡ ବହି ପଠାଇ ଦିଅ । ମୁଁ ଚାରିମାସ ପରେ ପଇସା ପଠାଇ ଦେବି । ମୁଁ କଲିକତାରୁ ଫେରିଲା ବେଳକୁ ସେ ପଠାଇ ଦେଇଥିଲେ । ମୁଁ ସେହି ଡିସେମ୍ବର ମାସରେ ପ୍ରାୟ ୨୦/୩୦ ଖଣ୍ଡ ବହି ବିଭିନ୍ନ କଲେଜରେ ବିକ୍ରି କରି ଦେଇଥିଲି ।

ମୁଁ ଅବସର ନେଇ ଭୁବନେଶ୍ୱର ଆସି ରହିବା ପରେ ଭାବିଥିଲି ଆମ ଘରେ ବିଜ୍ଞାନ ପ୍ରଚାର ସମିତିର ଗୋଟିଏ ଅଧିବେଶନ ଡାକିବା ପାଇଁ । କିନ୍ତୁ ମୁଁ ଶ୍ରୀରାମଚନ୍ଦ୍ର ସାଇନ୍ସ ଆଣ୍ଡ ଟେକ୍‌ନୋଲୋଜିର ଅଧ୍ୟକ୍ଷ ଏବଂ ଗୌହାଟୀ ଠାରେ ଅବସ୍ଥିତ ସି.ପି.ପି ରେ ଭିଜିଟିଙ୍ଗ ବୈଜ୍ଞାନିକ ଭାବେ ଯୋଗ ଦେବାରୁ ଆଉ ବିଜ୍ଞାନ ପ୍ରଚାର ସମିତିର ଗୋଟିଏ ଅଧିବେଶନ ଡାକି ପାରି ନ ଥିଲି । ୧୯୯୫ ମସିହାରେ ଟ୍ରେନ୍‌ରେ ବମ୍ବେ ଯିବା ସମୟରେ ମୁଁ ପକ୍ଷାଘାତ ରୋଗରେ ପୀଡିତ ହେବାରୁ ଭୁବନେଶ୍ୱର ଆସି ୩ ବର୍ଷ ପର୍ଯ୍ୟନ୍ତ ଯିବା ଆସିବା କରି ପାରି ନ ଥିଲି । ତାପରେ ମୋ ଶ୍ରୀମତୀଙ୍କ କାଳ ହୋଇଯିବାରୁ ଆଉ ଡାକିବାକୁ ସୁବିଧା ପାଇ ନ ଥିଲି । ୨୦୦୧ ମସିହାରେ ମୁଁ ଡକ୍ଟର ପ୍ରତିଭା ରାଣୀ ମିଶ୍ରଙ୍କ ଝିଅ ବାହାଘରରେ ଯୋଗ ଦେବାପାଇଁ କଟକ ଯାଇଥିଲି । ଫେରିଲା ବେଳେ ମୁଁ ଦେଖିଲି ଡଃ ଗୋକୁଳାନନ୍ଦ ବାବୁଙ୍କ ଘରେ ବିଜ୍ଞାନ ପ୍ରଚାର ସମିତିର ଅଧିବେଶନ ଚାଲିଥିଲା । ମୁଁ ସେଥିରେ ଯୋଗ ଦେଲି ଏବଂ ଆମ ଘରେ ଗୋଟିଏ ଅଧିବେଶନ ଡାକିବା ପାଇଁ ନିମନ୍ତ୍ରଣ ଦେଲି । ସମସ୍ତେ ରାଜି ହୋଇଗଲେ । ମୁଁ ଜାନୁଆରୀ ମାସର ୨୮ ତାରିଖରେ ଅଧିବେଶନର ଆୟୋଜନ କରିବାକୁ ଚିଠି ପାଇଲି । ମୁଁ ସେହିଦିନ ଅଧିବେଶନର ଆୟୋଜନ କଲି । ଜାନୁଆରୀ ୨୮ ତାରିଖ ଦିନ କଟକ ବିଜ୍ଞାନ ପ୍ରଚାର ସମିତିର ସଭ୍ୟମାନେ ଗୋଟିଏ ଗାଡି କରି ୩ ଟା ବେଳକୁ ଆସି ଆମ ଘରେ ପହଞ୍ଚିଲେ । ସେମାନଙ୍କ ମଧ୍ୟରୁ କେତେ ଜଣଙ୍କର ନାମ ହେଲା : ଡକ୍ଟର ଗୋକୁଳାନନ୍ଦ ମହାପାତ୍ର, ଡକ୍ଟର କୁଳମଣୀ ସାମଲ, ଡକ୍ଟର ବସନ୍ତ କୁମାର ବେହେରା, ଡକ୍ଟର ଅମୂଲ୍ୟ କୃଷ୍ଣ ମିଶ୍ର, ଡକ୍ଟର ଗଙ୍ଗାଧର ସାହୁ ଇତ୍ୟାଦି । ପ୍ରାୟ ୪ଟା ବେଳେ ଅଧିବେଶନ ଆରମ୍ଭ ହେଲା । ମୁଁ ପ୍ରଥମେ ଗୋଟିଏ ପ୍ରବନ୍ଧ ପଢିଲି । ପ୍ରବନ୍ଧର ନାମ ହେଲା "ମୋର ମଧୁମେହ ରୋଗର ୩୦ ବର୍ଷର ଅଭିଜ୍ଞତା" । ପ୍ରବନ୍ଧରେ ମୁଁ ସଂକ୍ଷେପରେ କେଉଁ ପ୍ରକାର ଔଷଧ ଖାଉଥିଲି ଏବଂ ଇନ୍‌ସୁଲିନ୍ ଇଞ୍ଜେକ୍‌ସନ୍ ନେଉଥିଲି ତାହା ବର୍ଣ୍ଣନା କଲି ଏବଂ ଶେଷରେ କିପରି ଗୋଟିଏ ହୋମିଓପ୍ୟାଥିକ୍ ଔଷଧ ଖାଇ ପ୍ରାୟ ଆରୋଗ୍ୟ ଲାଭ

କରିଥିଲି, ତାର ସବିଶେଷ ବିବରଣୀ ପ୍ରଦାନ କରିଥିଲି । ପ୍ରବନ୍ଧଟି ଉପାଦେୟ ହୋଇଛି ବୋଲି ସଭ୍ୟମାନେ ମତ ଦେଇଥିଲେ । ତାପରେ ଅନ୍ୟମାନେ ଗୋଟିଏ ପ୍ରବନ୍ଧ ପଢିଲେ । ଶେଷରେ ସାମାନ୍ୟ ଜଳଯୋଗ ପରେ ଭୁବନେଶ୍ୱରରେ, କଟକ ବିଜ୍ଞାନ ପ୍ରଚାର ସମିତିର ଗୋଟିଏ ଶାଖା ଅନୁଷ୍ଠାନ ଗଢାଯିବାର ଠିକ୍ କରାଗଲା ଓ ଅଧିବେଶନ ଶେଷ ହେଲା । ସେତିକି ବେଳେ ଡକ୍ଟର ସୂର୍ଯ୍ୟମଣୀ ବେହେରା ନିଜ ଆଡୁ ପ୍ରସ୍ତାବ ଦେଲେ, "ମୁଁ ଭୁବନେଶ୍ୱର ଶାଖା ସମିତିର ସମ୍ପାଦକ ଭାବରେ କାର୍ଯ୍ୟ କରିବା ପାଇଁ ରାଜି ଅଛି ।"

## ନିମାପଡା କଲେଜ ବିଜ୍ଞାନ ସଂସଦର ବାର୍ଷିକ ଉତ୍ସବରେ ପ୍ରଧାନ ଅତିଥି

ଫେବୃଆରୀ ମାସର ପ୍ରଥମ ସପ୍ତାହରେ ଶ୍ରୀ ସୁରେଶଚନ୍ଦ୍ର ରଥ ନାମକ ଜଣେ କେମିଷ୍ଟ୍ରି ପ୍ରାଧ୍ୟାପକ ସକାଳେ ଆମ ଘରକୁ ଆସି ମୋତେ କହିଲେ ନିମାପଡା କଲେଜର ଅଧ୍ୟକ୍ଷ ଆପଣଙ୍କୁ ତାଙ୍କ କଲେଜର ବିଜ୍ଞାନ ସଂସଦର ବାର୍ଷିକ୍ ଉତ୍ସବରେ ପ୍ରଧାନ ଅତିଥି ଭାବରେ ଆସନ୍ତା ୯ ତାରିଖରେ ଯୋଗ ଦେବାକୁ ଅନୁରୋଧ କରିଛନ୍ତି । ମୁଁ ନିମାପଡା ନାମ ଶୁଣି ସଙ୍ଗେ ସଙ୍ଗେ ରାଜି ହୋଇଗଲି । ତାପରେ ସେ କହିଲେ,ମୁଁ ୯ ତାରିଖ ଦିନ ସକାଳ ୯ଟା ସମୟରେ ଗାଡି ନେଇ ପହଞ୍ଚିବି । ଆପଣ ଅପେକ୍ଷା କରିଥିବେ । ଅଧ୍ୟାପକ ସୁରେଶ ବାବୁଙ୍କୁ ଆଗରୁ ଜାଣିଥିଲି । ସେ ବାପୁଜୀ ନଗରରେ ନିଜ ଘରେ ରହନ୍ତି । ୯ ତାରିଖ ଦିନ ସକାଳେ ଠିକ୍ ସମୟରେ ସେ ଆମ ଘରେ ଗାଡି ନେଇ ପହଞ୍ଚିଗଲେ । ତାଙ୍କ ସହିତ କୃଷି ମହାବିଦ୍ୟାଳୟର ଜଣେ ପ୍ରଫେସର ଆସିଥିଲେ । ଆମେ ନିମାପଡାରେ ଠିକ୍ ୧୧ଟା ବେଳେ ପହଞ୍ଚିଲୁ । ସେଠାରେ କିଛି ସମୟ ଅପେକ୍ଷା କଲାପରେ ସଭାକାର୍ଯ୍ୟ ଆରମ୍ଭ ହେଲା । ଅଧ୍ୟକ୍ଷ ଅତିଥିମାନଙ୍କର ପରିଚୟ ଦେଇସାରିବା ପରେ ପ୍ରଧାନ ବକ୍ତାଙ୍କୁ ତାଙ୍କ ଭାଷଣ ଦେବା ପାଇଁ ଅନୁରୋଧ କଲେ । ସେ କହିସାରିବା ପରେ ମୋତେ କହିବା ପାଇଁ ଅନୁରୋଧ କଲେ । ମୁଁ ମୋର ପିଲାଦିନର କିଛି ଅନୁଭୂତି କହି ସାରିବା ପରେ ପଦାର୍ଥର ଚତୁର୍ଥ ଅବସ୍ଥା ଉପରେ କିଛି କହିଲି । ପ୍ରଥମେ ପଦାର୍ଥର ଚତୁର୍ଥ ଅବସ୍ଥା କିଏ ଉଦ୍ଭାବନ କରିଥିଲେ ଏବଂ କିପରି ଉଦ୍ଭାବନ କଲେ ତାହା ବର୍ଣ୍ଣନା କଲି । ପ୍ଲାଜମା କିପରି ପୃଥିବୀର ଶକ୍ତି ସଙ୍କଟକୁ ସମାଧାନ କରିଦେଇ ପାରିବ ସେ ବିଷୟରେ କିଛି କହିଲି । ତାପରେ ଅଧ୍ୟକ୍ଷ ଧନ୍ୟବାଦ ଦେବାକୁ ଶ୍ରୀ ସୁରେଶ ରଥଙ୍କୁ ଅନୁରୋଧ କଲେ । ସେ ଧନ୍ୟବାଦ ଦେଇ ସାରିଲା ପରେ ସଭା ଶେଷ ହେଲା । ନିମାପଡା କଲେଜ ଅଧ୍ୟକ୍ଷଙ୍କୁ ଦେଖି ମୁଁ ଚିହ୍ନି ପାରିଲି । ସେ ମଧ୍ୟ ମୋତେ ଦେଖି ଚିହ୍ନି ପାରିଲେ । ତାଙ୍କ ନାମ ହେଲା ଶ୍ରୀ ନିରାକାର ପାଣିଗ୍ରାହୀ । ମୁଁ ୧୯୬୨ ମସିହା ଠାରୁ ୧୯୬୪ ପର୍ଯ୍ୟନ୍ତ ଘର ତିଆରି କରିବା ପାଇଁ ଭୁବନେଶ୍ୱରରେ ରହି ସବୁଦିନ ବସ୍‌ରେ କଟକ ଯାଉଥିଲି । ସେତେବେଳେ ସେ ମଧ୍ୟ ସବୁଦିନ ସେହି ବସ୍‌ରେ କଟକ ଯାଉଥିଲେ । ସେ ସେତେବେଳେ ରେଭେନ୍ସା କଲେଜରେ ଏମ୍.ଫିଲ୍ କରୁଥିଲେ ।

ନିମାପଡା କଲେଜରେ ଆମର ମଧ୍ୟାହ୍ନ ଭୋଜନର ଆୟୋଜନ ହୋଇଥିଲା । କଲେଜର ଅଧ୍ୟାପକମାନେ ଓ ଆମେ ଦୁଇ ଅତିଥି ଖାଇ ସାରିବା ପରେ, ଆମେ ସଙ୍ଗେ ସଙ୍ଗେ ପତିତପାବନ ଔଷଧାଳୟ ପାଖକୁ ଆସିଲୁ । ସେଠାରେ ମୁଁ ଶ୍ରୀ ଦାମୋଦର ଦାସଙ୍କ ସାଙ୍ଗ ସଙ୍ଗେ ଦେଖାକରି ଟିକିଏ କଥାବାର୍ତ୍ତା ହେଲି । ସେହି ଛକରେ ଥିବା ଆର୍ତ୍ତ ସାହୁ ଦୋକାନରୁ ଛେନା ଝିଲ୍ଲି କିଣିବା ପାଇଁ ଗଲି । କିନ୍ତୁ କିଣିବା ପରେ ପଇସା ସୁରେଶ ବାବୁ ଦେଇଦେଲେ । ତାପରେ ପତିତପାବନ ଦେଉଳକୁ ଯାଇ ପତିତପାବନଙ୍କୁ ମୁଣ୍ଡିଆ ମାରି ଆସିଲୁ । ତାପରେ ମୋ ମନ ହେଲା ନିମାପଡା ହାଇସ୍କୁଲ୍ ଓ ନନାଙ୍କ ନାମରେ ଅର୍ଦ୍ଧ ନିର୍ମିତ ହୋଇଥିବା 'ଅଜୀବ ସ୍ମୃତି ପାଠାଗାର'ର ଆଉ ଅଧିକ କିଛି ଗନ୍ଥା ହୋଇଛି କି ନାହିଁ ଦେଖିବାକୁ । ଦେଖିଲି ଆଗରୁ ଗନ୍ଥା ହୋଇଥିବା ଘରର କିଛି ଅଂଶ ଭାଙ୍ଗିରୁଜି ଯାଇଛି । ପଚାରି ଜାଣିଲି, ୧୯୯୯ ମସିହାର ବାତ୍ୟାରେ ଭାଙ୍ଗି ଯାଇଛି । ତାପରେ ମନ ଦୁଃଖରେ ଆସି ମୁଁ କାରରେ ବସିଲି । ତାପରେ ଆମେ ଭୁବନେଶ୍ୱର ଅଭିମୁଖେ ଯାତ୍ରା କଲୁ । ପ୍ରାୟ ୫ଟା ବେଳେ ଆମେ ଭୁବନେଶ୍ୱରରେ ପହଞ୍ଚିଲୁ ।

## ଏକବିଂଶ ଶତାବ୍ଦୀର ପଦାର୍ଥ ବିଜ୍ଞାନ ଶୀର୍ଷକ ଆଲୋଚନା ଚକ୍ର

କେତେ ଦିନ ପରେ କ୍ରାଏଷ୍ଟ କଲେଜର ଜଣେ ପଦାର୍ଥ ବିଜ୍ଞାନର ଅଧ୍ୟାପକ ଓ ଜଣେ ଡେମୋନୋଷ୍ଟ୍ରେଟର ଆମ ଘରକୁ ଆସିଲେ । ମୋତେ କହିଲେ, ଆମ କଲେଜର 'ଏକବିଂଶ ଶତାବ୍ଦୀର ପଦାର୍ଥ ବିଜ୍ଞାନ' ଶୀର୍ଷକ ଗୋଟିଏ ସେମିନାର ଫେବୃଆରୀ ୨୫ ଓ ୨୬ ତାରିଖରେ ଅନୁଷ୍ଠିତ ହେବ । ଆପଣ ସେଥିରେ ଯୋଗ ଦେବା ପାଇଁ ଅଧ୍ୟକ୍ଷ ଆପଣଙ୍କୁ ଅନୁରୋଧ କରିଛନ୍ତି । ଆପଣ ଏକବିଂଶ ଶତାବ୍ଦୀର ପଦାର୍ଥ ବିଜ୍ଞାନର ଶିକ୍ଷାଦାନ ଉପରେ ଗୋଟିଏ ପ୍ରବନ୍ଧ ଲେଖିକରି ଦେବେ । ସେ ପ୍ରବନ୍ଧଟି ଆମ ସୋଭେନିୟରରେ ପ୍ରକାଶିତ ହେବ । ଆପଣ ୨୫ ତାରିଖରେ ଯିବା ପାଇଁ ଗୋଟିଏ ଗାଡିର ବନ୍ଦୋବସ୍ତ ହେବ । ସେହି ଗାଡିରେ ଆପଣ ଯିବେ ଓ ଫେରି ଆସିବେ ।

୨୫ ତାରିଖ ଦିନ ସକାଳୁ ପ୍ରାୟ ୮ଟା ବେଳେ ପଦାର୍ଥ ବିଜ୍ଞାନର ପ୍ରଫେସର୍ ଶ୍ରୀ ନିରଞ୍ଜନ ବାରିକଙ୍କ ଘରେ ଟିକିଏ ସମୟ ଅପେକ୍ଷା କଲାପରେ ଆମେ ଦୁହେଁଯାକ କ୍ରାଏଷ୍ଟ କଲେଜ ଗଲୁ । ପ୍ରାୟ ୯ଟା ବେଳେ ସେଠାରେ ପହଞ୍ଚିଲୁ । ସେତେବେଳକୁ ନିମନ୍ତ୍ରିତ ଅତିଥିମାନେ ଓ କେତେଜଣ ପଦାର୍ଥ ବିଜ୍ଞାନର ପ୍ରଫେସର ପହଞ୍ଚି ଯାଇଥିଲେ । ସେମାନଙ୍କ ମଧ୍ୟରୁ କେତେ ଜଣଙ୍କର ନାମ ହେଲା : ସେତେବେଳର ଉଚ୍ଚ ଶିକ୍ଷାମନ୍ତ୍ରୀ ଶ୍ରୀ ପ୍ରଶାନ୍ତ କୁମାର ନନ୍ଦ, ନଗର ଉନ୍ନୟନ ମନ୍ତ୍ରୀ ଶ୍ରୀ ସମୀର ଦେ, କଲେଜର ଅଧ୍ୟକ୍ଷ, ଗଭର୍ଣ୍ଣିବଡିର ସଭାପତି, ଉଚ୍ଚଶିକ୍ଷା ବିଭାଗର ନିର୍ଦ୍ଦେଶକ ଉପସ୍ଥିତ ଥିଲେ । ଅବସର ପ୍ରାପ୍ତ ପ୍ରଫେସର ଡକ୍ଟର ନୀଳମଣି ସାମଲ ଓ ଡକ୍ଟର ଅମୂଲ୍ୟ ମିଶ୍ର ପ୍ରଭୃତି ଉପସ୍ଥିତ ଥିଲେ । ସାମାନ୍ୟ ଜଳଯୋଗ ପରେ ସଭାକାର୍ଯ୍ୟ ଆରମ୍ଭ ହେଲା । ଉଚ୍ଚଶିକ୍ଷା ମନ୍ତ୍ରୀ ଉଦ୍‌ଘାଟନ କଲେ । ଘଣ୍ଟାଏ ଭିତରେ ଉଦ୍‌ଘାଟନ ଉତ୍ସବ ସରିଗଲା । ତାର କିଛି ସମୟ ପରେ ସେମିନାର ଆରମ୍ଭ ହେଲା । ମୁଁ ଦେଇଥିବା ପ୍ରବନ୍ଧ ବିଷୟରେ କହିଲି ଏବଂ ଆଲୋଚନା କଲି । ଅନ୍ୟ ପ୍ରଫେସରମାନେ ତାଙ୍କର ବକ୍ତବ୍ୟ ଓ

ମତାମତ ଦେଇ ସାରିବା ପରେ ସେମିନାରର ପ୍ରଥମ ଭାଗ ସରିଗଲା । ତାପରେ ମଧ୍ୟାହ୍ନ ଭୋଜନ ପାଇଁ ଗଲୁ ।

ତାର କିଛି ସମୟ ପରେ ଦ୍ୱିତୀୟ ଭାଗର ଆଲୋଚନା ଆରମ୍ଭ ହେଲା । ଏହାର ବିଷୟ ବସ୍ତୁ ଥିଲା ଏକବିଂଶ ଶତାବ୍ଦୀରେ ପ୍ରାୟୋଗିକ ପଦାର୍ଥ ବିଜ୍ଞାନ । ଏହା ଉପରେ ମୁଁ ଓ ଅନ୍ୟମାନେ ସେମାନଙ୍କ ମତ ଦେଲାପରେ ସେମିନାର ଶେଷହେଲା । ମୋ ଲେଖାଟିର ସାରମର୍ମ ହେଲା : ଆମ ଉଚ୍ଚଶିକ୍ଷା ଭାରତ ଓ ଓଡ଼ିଶା ସରକାର ଦୁହିଁଙ୍କର ମିଳିତ ଦାୟିତ୍ୱରେ ଥିବାରୁ ଶିକ୍ଷାର ମାନ ଦିନକୁ ଦିନ କମି ଯାଉଛି ।

ଭାରତ ସାଧୀନ ହେବା ପରଠାରୁ ଗଲା ପଚାଶ ବର୍ଷ ଭିତରେ କୌଣସି ରାଜନୈତିକ ଦଳ ଶିକ୍ଷା ବିଷୟରେ କୌଣସି ନୀତି ନିର୍ଦ୍ଧାରଣ କରି ନାହାନ୍ତି । କେବଳ ଭାରତ ସରକାର କେତେ ଗୁଡ଼ିଏ ଶିକ୍ଷା ଆୟୋଗ ଗଢ଼ି ଶିକ୍ଷାର ଉନ୍ନତି ପାଇଁ ସୁଚିନ୍ତିତ ମନ୍ତବ୍ୟ ଦେବାକୁ ଆୟୋଗମାନଙ୍କୁ ନିବେଦନ କରିଥିଲେ । ସେ ମନ୍ତବ୍ୟ ଗୁଡ଼ିକ ଉପରେ କିଛି ସଂପୂର୍ଣ୍ଣ ରୂପେ କାର୍ଯ୍ୟାନୁଷ୍ଠାନ ହେଲାନାହିଁ । କେବଳ ତାହା ଫାଇଲ୍‌ରେ ରହିଗଲା । କେବଳ ନିମ୍ନଲିଖିତ କାର୍ଯ୍ୟାନୁଷ୍ଠାନ ହେଲା :

୧. ପୂର୍ବରୁ ଚାଲିଥିବା ଇଣ୍ଟର ମିଡିଏଟ୍ ପାଠ୍ୟକ୍ରମକୁ ପରିବର୍ତ୍ତନ କରି ପ୍ରି- ଇଉନିଭରସିଟି ଏବଂ ଫାଷ୍ଟ ଇୟର କ୍ଲାସ କରାଗଲା ।

୨. ପ୍ରି-ଇଉନିଭରସିଟି ଏବଂ ଫାଷ୍ଟ ଇୟର ପାଠ୍ୟକ୍ରମକୁ ପୁଣି ଇଣ୍ଟର ମିଡିଏଟ୍ ପାଠ୍ୟକ୍ରମରେ ପରିବର୍ତ୍ତନ କରାଗଲା ।

୩. ହାୟର ସେକେଣ୍ଡାରୀ କ୍ଲାସ୍ ସୃଷ୍ଟି କରାଗଲା । ଏଥିରେ ସ୍କୁଲ୍‌ରୁ ଏକ ପାଠ୍ୟକ୍ରମକୁ କଲେଜରେ ପ୍ରଥମ ବାର୍ଷିକ ପାଠ୍ୟକ୍ରମରେ ଯୋଡାଗଲା । ତାହାକୁ + ୨ ପାଠ୍ୟକ୍ରମ ବୋଲି କୁହାଗଲା । ପୁଣି ଡିଗ୍ରୀ ଇଣ୍ଟରମିଡିଏଟର ପାଠ୍ୟକ୍ରମରୁ ଏକବର୍ଷ ପାଠ୍ୟକ୍ରମକୁ କଟାଯାଇ ଦୁଇ ବର୍ଷ ଡିଗ୍ରୀ ପାଠ୍ୟକ୍ରମରେ ମିଶାଯାଇ ତିନି ବର୍ଷର ଡିଗ୍ରୀ ପାଠ୍ୟକ୍ରମ ସୃଷ୍ଟି କରାଗଲା । ତାହାକୁ +୩ ପାଠ୍ୟକ୍ରମ କୁହାଗଲା ।

୪. ଓଡ଼ିଶାରେ ଆଭ୍ୟନ୍ତରୀଣ ପରୀକ୍ଷା ପଦ୍ଧତିର ବ୍ୟବସ୍ଥା କରାଗଲା । ପୁଣି କେତେ ବର୍ଷ ପରେ ଆଭ୍ୟନ୍ତରୀଣ ପରୀକ୍ଷାରେ ଅତ୍ୟଧିକ ନମ୍ବର ଦେବାରୁ ଦୋଷୀ ଶିକ୍ଷକମାନଙ୍କୁ ଦଣ୍ଡ ଦିଆଯିବାର ବ୍ୟବସ୍ଥା କରାଗଲା ନାହିଁ ।

୫. ପୋଷ୍ଟ-ଗ୍ରାଜୁଏଟ୍ ଏବଂ ଅନର୍ସ ପରୀକ୍ଷାରେ ଦୁଇଜଣ ପରୀକ୍ଷକ ପ୍ରଣାଳୀ ପ୍ରଚଳନ କରାଗଲା । ସେହି ପ୍ରଣାଳୀକୁ ପୁଣି ବନ୍ଦ କରି ଦିଆଗଲା । କାରଣ ଦୁଇ ଜଣ ପରୀକ୍ଷକଙ୍କ ନମ୍ବର ଭିତରେ ବହୁତ ତାରତମ୍ୟ ହେଲା । ଉଦାହରଣ ସ୍ୱରୂପ ଅନର୍ସ ପରୀକ୍ଷାରେ ଥରେ ମୁଁ ଗୋଟିଏ ପିଲାକୁ ଶୂନ ଦେଇଥିବା ବେଳେ ବାହ୍ୟ ପରୀକ୍ଷକ ୪୮ ଦେଇଥିଲେ । କିନ୍ତୁ ପରୀକ୍ଷଣ ବୋର୍ଡ ଶୂନକୁ କାଏମ୍ ରଖିଥିଲେ । କିନ୍ତୁ ବାହ୍ୟ ପରୀକ୍ଷକଙ୍କ ଉପରେ ଦଣ୍ଡ ବିଧାନ ହେଲାକି ନାହିଁ ମୁଁ ଜାଣିନାହିଁ । ଯଦି ଜଣେ ପରୀକ୍ଷକ ପଚାଶ ରଖିବା ଛାତ୍ରକୁ ଶୂନ ଦିଏ ତାହାହେଲେ ପିଲାର

ଜୀବନ ନଷ୍ଟ ହୋଇଯିବ । ସେହିପରି ପରୀକ୍ଷାରେ କମ୍ ନମ୍ବର ରଖିଥିବା ଛାତ୍ରକୁ ବେଶୀ ନମ୍ବର ଦେଇ ଉଚ୍ଚସ୍ଥାନ ଅଧିକାର କରିବାର ପରୀକ୍ଷକମାନେ ସୁବିଧା ଦେଉଛନ୍ତି ।

୬. ପୋଷ୍ଟ ଗ୍ରାଜୁଏଟ୍ ପାଠ୍ୟକ୍ରମରେ ସେମିଷ୍ଟର ପ୍ରଣାଳୀ ପ୍ରବର୍ତ୍ତନ କରାଗଲା । କିନ୍ତୁ ପିଲାମାନେ ପରୀକ୍ଷା ଦିନ ଘୁଞ୍ଚାଇବା ପାଇଁ ଆନ୍ଦୋଳନ କରିବାରୁ ଫଳ ଠିକ୍ ସମୟରେ ବାହାରି ପାରିଲା ନାହିଁ । ତେଣୁ ସେମିଷ୍ଟର ପ୍ରଣାଳୀକୁ ଉଠାଇ ଦିଆଗଲା ।

୭. ଏବେ ଅଳ୍ପ କେତେ ବର୍ଷ ହେଲା ଓଡିଶାରେ ସବୁ ବଡ ବଡ କଲେଜ ଗୁଡିକୁ ସ୍ୱୟଂଶାସିତ କଲେଜ କରାଯାଉଛି । ସେହି ସବୁ କଲେଜରେ ପ୍ରାୟ ବଦଳି ହେବା କଥା ନୁହେଁ । କିନ୍ତୁ ସ୍ୱୟଂଶାସିତ କଲେଜରେ ପ୍ରତି ବର୍ଷ ବଦଳି ହେଉଛି । କୌଣସି ନିର୍ଦ୍ଦିଷ୍ଟ ପାଠ୍ୟକ୍ରମ ପଢାଇବା ପାଇଁ ଜଣେ ଅଧ୍ୟାପକ ଥିବା ବେଳେ ମଧ୍ୟ ତାଙ୍କର ବଦଳି ହୋଇ ଯାଉଛି । ଅଧ୍ୟକ୍ଷ ମହୋଦୟ ସରକାରଙ୍କୁ ଲେଖାଲେଖି କଲାପରେ ହିଁ ତାଙ୍କ ବଦଳି ହୋଇଯାଉଛି କିମ୍ବା ଅନ୍ୟ ଜଣେ ଅଧ୍ୟାପକଙ୍କୁ ସେହି ବିଷୟ ପଢାଇବା ପାଇଁ ତାଙ୍କ ଜାଗାରେ ବଦଳି ହେଉଛି । କିନ୍ତୁ ବେଳେ ବେଳେ ସେ ବିଷୟ ପଢାଇବା ପାଇଁ ନୂତନ ଅଧ୍ୟାପକଙ୍କର ଜମା ଅଭିଜ୍ଞତା ନାହିଁ ।

୮. ମୁଁ ଥରେ ଗୋଟିଏ ନୂଆ ହୋଇଥିବା ସ୍ୱୟଂଶାସିତ କଲେଜକୁ ପରୀକ୍ଷା କରିବାକୁ ଯାଇଥିଲି । ସେ କଲେଜର ମୁଖ୍ୟ ଅଧ୍ୟାପକଙ୍କ ଠାରୁ ବୁଝିଲି ତାଙ୍କର ପରୀକ୍ଷାଗାର ଉପକରଣ ପାଇଁ ଇଉ.ଜି.ସି.ରୁ ଅନୁଦାନ ଆସିଯାଇଛି । ଉପକରଣ ସବୁ କିଣିବାକୁ ବରାଦ ଦିଆଯାଇଛି କିନ୍ତୁ ଆସିନାହିଁ । ପୁଣି ଶୁଣିଲି ଇଉ.ଜି.ସି. ବହୁତ ଟଙ୍କା ଦେଇଛି । ତେଣୁ ଉପକରଣ କିଣିବା ପାଇଁ କିଛି ଅସୁବିଧା ହେବନାହିଁ । ଅଥଚ ଗୋଟିଏ ପୁରୁଣା ସ୍ୱୟଂଶାସିତ କଲେଜରୁ ଶୁଣିବାକୁ ପାଇଲି ତାଙ୍କ ପାଇଁ ଜମା ଅନୁଦାନ ଆସୁନାହିଁ । ମୁଁ ଅନୁସନ୍ଧାନରୁ ଜାଣିବାକୁ ପାଇଲି ଯେ ଇଉ.ଜି.ସି ଯେଉଁ ଅନୁଦାନ ଉପକରଣ ପାଇଁ ଦେଇଥିଲା ତାହା ଠିକ୍ ଭାବରେ ଖର୍ଚ୍ଚ ହୋଇନାହିଁ କିମ୍ବା ଖର୍ଚ୍ଚର ହିସାବ ଦିଆଯାଇ ନାହିଁ କିମ୍ବା ସେ ଟଙ୍କା ଅନ୍ୟ କେଉଁଆଡେ ଖର୍ଚ୍ଚ ହୋଇ ଯାଇଛି । ତେଣୁ ଇଉ.ଜି.ସି ଆଉ ଅନୁଦାନ ଦେଉନାହିଁ । ତେଣୁ ଏଥିପାଇଁ ଦାୟୀ କିଏ ? ସେ ବିଷୟରେ ଗୁରୁତର ଭାବରେ ଚିନ୍ତା କରାଯାଉ ନାହିଁ ।

୯. ବିଭିନ୍ନ ପାଠ୍ୟକ୍ରମରେ (ଇଣ୍ଟର ମିଡିଏଟ୍, ଡିଗ୍ରୀ, ପୋଷ୍ଟ-ଗ୍ରାଜୁଏଟ୍) ଯେଉଁସବୁ ପ୍ରାୟୋଗିକ ପରୀକ୍ଷା ଅନ୍ତର୍ଭୁକ୍ତ ହୋଇଥିଲା, ସେଇସବୁ ପରୀକ୍ଷା ଗଲା ୫୦ ବର୍ଷ ଭିତରେ ପ୍ରାୟ ପରିବର୍ତ୍ତନ ହୋଇନାହିଁ । ୫୦ ବର୍ଷ ପୂର୍ବରୁ ଛାତ୍ରମାନେ ସବୁଗୁଡିକ ପରୀକ୍ଷା କ୍ଲାସ୍‌ରେ ଠିକ୍ ଭାବରେ କରୁଥିଲେ । ବର୍ତ୍ତମାନ ପାଠ୍ୟକ୍ରମରେ ଯଦିଓ କିଛି ପରିବର୍ତ୍ତନ ହୋଇନାହିଁ ଯାହାବି କରୁଛନ୍ତି ତାର ହିସାବ ପତ୍ର ମଧ୍ୟ କରୁନାହାଁନ୍ତି । ଯାହା ଠିକ୍ ଉତ୍ତର ହେବାକଥା ତାହାକୁ ଖାତାରେ ଲେଖି ଦେଉଛନ୍ତି । ଏହିଭଳି ଭାବରେ ପ୍ରାୟୋଗିକ ପରୀକ୍ଷା ସବୁ କରି ଶତକଡା ୮୦ ନମ୍ବର ରଖିବା ପାଇଁ ଆଶା କରୁଛନ୍ତି । କେତେକ ପରୀକ୍ଷକ ସେହିଭଳି ନମ୍ବର ଦେଉଛନ୍ତି ମଧ୍ୟ । ପରୀକ୍ଷାର ଉତ୍ତର ଅନ୍ୟ ଜାଗାରୁ ଉତାରି ଦେଉଛନ୍ତି ଏବଂ ପରୀକ୍ଷକମାନେ ନ ଜାଣିଲା ପରି ରହି

ଯାଉଛନ୍ତି । ମୋ ମତରେ ନିମ୍ନଲିଖିତ ବିଷୟ ଗୁଡ଼ିକ ପ୍ରତି ଧ୍ୟାନ ଦେଲେ ଶିକ୍ଷାର ମାନ କ୍ରମେ କ୍ରମେ ଉନ୍ନତ ହୋଇଯିବ ।

୧. ପ୍ରତି କଲେଜରେ ନାମ ଲେଖିବା ସମୟରେ ପିଲାର ଦକ୍ଷତା ଅନୁସାରେ ନାମ ଲେଖାଇବା ପାଇଁ ଅନୁମତି ଦିଆଯିବ ।

୨. କୌଣସି କ୍ଲାସ୍‌ରେ ଶତକଡା ପଞ୍ଚସ୍ତରି ପିରିୟଡ ଉପସ୍ଥିତ ରହିବାକୁ ଯେଉଁ ନିୟମ ଅଛି ତାହାକୁ ଉଠାଇ ଦେବା ଉଚିତ୍ । କାରଣ ପିଲାମାନେ ଶତକଡା ପଞ୍ଚସ୍ତରି ପିରିଅଡ ଉପସ୍ଥିତ ନ ରହିଲେ ମଧ୍ୟ ପରୀକ୍ଷା ଦେଇ ପାରୁଛନ୍ତି ।

୩. ଆମ ଦେଶର ନିୟମ ଅନୁସାରେ ଜଣେ ଛାତ୍ର ଡିଗ୍ରୀ ପାଶ୍ କଲାପରେ ଯେକୌଣସି ଚାକିରୀ ପାଇଁ ଯୋଗ୍ୟ ବିବେଚିତ ହୁଏ । ତେଣୁ ସବୁ ଛାତ୍ରଙ୍କର ପୋଷ୍ଟ-ଗ୍ରାଜୁଏଟ୍ ପଢିବା ଉଚିତ୍ ନୁହେଁ । ଏହାଦ୍ୱାରା ଦେଶର ବହୁତ ଅନାବଶ୍ୟକ ଖର୍ଚ୍ଚ ହେଉଛି । ଯେଉଁମାନେ ପୋଷ୍ଟ-ଗ୍ରାଜୁଏଟ୍ ପଢିବେ ସେହିମାନେ କେବଳ ଅଧ୍ୟାପନା କିମ୍ବା ଗବେଷଣା ପ୍ରଭୃତି ଚାକିରୀରେ ନିଯୁକ୍ତି ପାଇବେ । ତେଣୁ ପୋଷ୍ଟ-ଗ୍ରାଜୁଏଟ୍ କ୍ଲାସ୍‌ରେ ଆଡମିଶନ୍ ପାଇଁ ସ୍ଥାନ ସଂଖ୍ୟା କମାଇ ଦିଆଯିବା ଉଚିତ୍ ଏବଂ ଉପଯୁକ୍ତ ମେଧାବୀ ଛାତ୍ରଙ୍କୁ ସର୍ବଭାରତୀୟ ସ୍ତରରେ ଯେ କୌଣସି ବିଷୟରେ ପରୀକ୍ଷା କରି ପୋଷ୍ଟ-ଗ୍ରାଜୁଏଟ୍ କ୍ଲାସ୍‌ରେ ଆଡମିଶନ୍ ନେବା ପାଇଁ ଅନୁମତି ଦିଆଯିବ । ପ୍ରତ୍ୟେକ ଛାତ୍ରଙ୍କୁ ଭାରତର ଯେ କୌଣସି ସ୍ଥାନରେ ପଢିବା ପାଇଁ ଉପଯୁକ୍ତ ବୃତ୍ତି ଦିଆଯିବ । ସେମାନଙ୍କୁ ଆଉ ଅନ୍ୟ କେଉଁ ଚାକିରୀରେ ନିଯୁକ୍ତି ଦିଆଯିବ ନାହିଁ । ଯଦି ସେମାନେ ଅନ୍ୟ ଚାକିରୀରେ ଯୋଗ ଦେବାକୁ ଇଚ୍ଛା କରନ୍ତି କିମ୍ବା ବିଦେଶରେ ଚାକିରୀ କରିବାକୁ ଇଚ୍ଛା କରନ୍ତି ତାହାହେଲେ ସମସ୍ତ ବୃତ୍ତି ଟଙ୍କା ଫେରାଇ ଦେବେ। ଏହି ପ୍ରଥାକୁ ଅନୁସରଣ କଲେ ଶିକ୍ଷାର ମାନ ଆପେ ଆପେ ବଢ଼ିଯିବ ଏବଂ ସରକାରଙ୍କର ଅନାବଶ୍ୟକ ଖର୍ଚ୍ଚ କମିଯିବ ।

ଉପରୋକ୍ତ ପ୍ରଣାଳୀ ଅନୁସରଣ କଲେ ଭାରତ ସରକାରଙ୍କର ଦୁଇବର୍ଷ ପରେ ଭାରତରେ ନିର୍ଦ୍ଦିଷ୍ଟ ବିଷୟରେ କେତେ ଜଣ ଅଧ୍ୟାପକ ଓ ଗବେଷକ ଦରକାର, ସେହି ଅନୁସାରେ ପଢିବା ପାଇଁ ବିଭିନ୍ନ ଜାଗାରେ ସ୍ଥାନ ସଂଖ୍ୟା ସ୍ଥିର କରିବେ । ପ୍ରତ୍ୟେକ ଛାତ୍ରଙ୍କୁ ବୃତ୍ତି ଦେବା ପାଇଁ ବନ୍ଦୋବସ୍ତ କରିବେ ।

## ମୋ ଘରର ଉପର ମହଲା ସଂପ୍ରସାରଣ

୨୦୦୧ ମସିହା ଫେବୃଆରୀ ମାସର ଶେଷ ସପ୍ତାହରେ ମୁଁ ସରକାରଙ୍କ ଠାରୁ ୧୯୯୬ ମସିହାର ବର୍ଦ୍ଧିତ ପେନ୍‌ସନ୍ ପ୍ରାୟ ଏକ ଲକ୍ଷ ଟଙ୍କା ପାଇଲି । ସେହି ଟଙ୍କାରେ ମାର୍ଚ୍ଚ ମାସରୁ ଉପର ମହଲାରେ ଦୁଇଟି କୋଠରୀ ତିଆରି କରିବା ପାଇଁ କାମ ଆରମ୍ଭ କରିଦେଲି । କୋଠରୀ ଦୁଇଟି ପ୍ରାୟ ଜୁନ୍ ମାସରେ ଶେଷ ହୋଇଗଲା । ମୋର ସ୍ତ୍ରୀଙ୍କର ତୃତୀୟ ବାର୍ଷିକ ଶ୍ରାଦ୍ଧ ମଇ ୨୬ ତାରିଖରେ ଆମ ନୂଆ ଘର ଛାତ ଉପରେ ଅନୁଷ୍ଠିତ ହୋଇଥିଲା । ତାଙ୍କର ଶ୍ରାଦ୍ଧକୁ ମୋର ସାନ ପୁଅ ଦୁଇଟି କ୍ୟାସେଟ୍ "ଶ୍ରୀ ଭବସାଗର" ଓ "ବାଇଆ ନାଚୁଛିରେ ବାଇଶି ପାହାଚେ", ଶ୍ରୀ ସାତକଡି ହୋତାଙ୍କ ଦ୍ୱାରା ଉନ୍ମୋଚିତ ହୋଇଥିଲା । ମୁଁ ଶ୍ରୀ ସାତକଡି

ହୋତାଙ୍କୁ ଭଲ ଭାବରେ ଜାଣିଥିଲି । ପୁରୀ କଲେଜର ପାଥେରପୁରୀ ଛାତ୍ରାବାସରେ ରହୁଥିବା ବେଳେ ସେ ମଧ୍ୟ ସେଠାରେ ରହୁଥିଲେ । ମୁଁ ତାଙ୍କୁ ଉନ୍ମୋଚନ କରିବା ପାଇଁ ନିମନ୍ତ୍ରଣ କରିବା ସମୟରେ ସେ ମୋତେ ଚିହ୍ନି ପାରିଲେ ନାହିଁ । ମୁଁ ଚିହ୍ନା ଦେବାକୁ ଯାଇ ସେ ପଢ଼ିବା ସମୟରେ ଲେଖିଥିବା ଗୋଟିଏ ଗୀତର କିଛି ଅଂଶ ବୋଲି ଦେଲି, ତେଣୁ ସେ ଭଲକରି ଚିହ୍ନି ପାରିଲେ । ଏହି ଅବସରରେ ମୋର ବନ୍ଧୁ ବାନ୍ଧବମାନେ ନିମନ୍ତ୍ରିତ ହୋଇଥିଲେ ଓ ସମସ୍ତେ ରାତ୍ରୁ ଭୋଜନରେ ଆପ୍ୟାୟିତ ହୋଇଥିଲେ । ଏହି କାର୍ଯ୍ୟକ୍ରମରେ ଶ୍ରୀ ନୃସିଂହଚରଣ ସାହୁ ମଧ୍ୟ ବିଶେଷ ସହଯୋଗ କରିଥିଲେ । ସେ ମୋ ସ୍ତ୍ରୀଙ୍କୁ ମାଉସୀ ଡାକୁଥିଲେ ଏବଂ ତାଙ୍କ ସ୍ତ୍ରୀଙ୍କୁ ମଧ୍ୟ ମୋ ସ୍ତ୍ରୀ ବହୁତ ଭଲ ପାଉଥିଲେ ।

## ପ୍ଲାଜମା ୨୦୦୧ର ବାର୍ଷିକ ଉତ୍ସବ, ଗୌହାଟୀ

ଡିସେମ୍ବର ୧୪ ତାରିଖରେ "ସେଣ୍ଟର ଅଫ ପ୍ଲାଜମା ଫିଜିକ୍ସ" ଗୌହାଟୀର ନିର୍ଦ୍ଦେଶକ ମୋତେ ଫୋନ୍ ଦ୍ୱାରା ଜଣାଇଲେ, ପ୍ଲାଜମା ୨୦୦୧ର ବାର୍ଷିକ ଉତ୍ସବ ଆମ ସି.ପି.ପି. ସେଣ୍ଟର ଆନୁକୂଲ୍ୟରେ ହେଉଛି । ଆପଣଙ୍କୁ ସେଠାରେ ଯୋଗ ଦେବାପାଇଁ ଅନୁରୋଧ କରୁଛି । ଆପଣଙ୍କୁ ଯିବା ଆସିବା ଉଡାଜାହାଜ ଭଡା ଦିଆଯିବ । ତେଣୁ ମୁଁ ଭୁବନେଶ୍ୱରରୁ ଦମ୍‌ଦମ୍ ଦେଇ ଗୌହାଟୀ ପର୍ଯ୍ୟନ୍ତ ଗୋଟିଏ ଉଡାଜାହାଜ ଟିକେଟ୍ ୧୫ ତାରିଖରେ ଯିବା ପାଇଁ କିଣିଲି । କିନ୍ତୁ ଟିକେଟ୍ କିଣିବାକୁ ଗଲାବେଳେ ମୋର ଗୌହାଟୀ ପର୍ଯ୍ୟନ୍ତ ଟିକେଟ୍ ସଂରକ୍ଷଣ ହୋଇଗଲା ଓ ଗୌହାଟୀ ଠାରୁ ଦମ୍‌ଦମ୍ ପର୍ଯ୍ୟନ୍ତ ଫେରିବା ପାଇଁ ସଂରକ୍ଷଣ ହୋଇଗଲା । କିନ୍ତୁ ଦମ୍‌ଦମ୍ ଠାରୁ ଭୁବନେଶ୍ୱର ପର୍ଯ୍ୟନ୍ତ ଫେରିବା ପାଇଁ ଟିକେଟ୍ ସଂରକ୍ଷଣ ହୋଇପାରିବ ନାହିଁ ବୋଲି ଟିକେଟ୍ ବିକ୍ରେତା ମନାକଲେ । କହିଲେ,୫ ଦିନ ଭିତରେ ସଂରକ୍ଷଣ ହୋଇଯିବ ବୋଲି ମୋର ଆଶା ।

୧୬ ତାରିଖ ଦିନ ସକାଳ ସାତଟା ବେଳେ ବାହାରି ଦିନ ଗୋଟାଏ ବେଳେ ଗୌହାଟୀ ବିମାନ ବନ୍ଦର ଠାରେ ପହଞ୍ଚିଲି । ମୋତେ ନେବା ପାଇଁ ସି.ପି.ପି.ରୁ ଗୋଟିଏ ଗାଡି ଆସିଥିଲା । ସେହିଦିନ ପ୍ରାୟ ୪ଟା ବେଳକୁ ବୁଜରବରୁଆଙ୍କ ଘରେ ପହଞ୍ଚିଲି । ମୋର ରହିବାର ବ୍ୟବସ୍ଥା ତାଙ୍କ ଘରେ କରିଥିଲେ । ସେ ଏବଂ ତାଙ୍କ ସ୍ତ୍ରୀଙ୍କ ଅନୁରୋଧ କ୍ରମେ ତାଙ୍କ ଘରେ ସେମିନାର ସରିବା ପର୍ଯ୍ୟନ୍ତ ରହିଲି ।

ସେମିନାର ପୂର୍ବରୁ ବୁଜରବରୁଆ ମୋତେ କହିଥିଲେ, ଆପଣ ସୋଭେନିୟରଟି ଉଦ୍‌ଘାଟନ କରିବେ । ଆରମ୍ଭ ଦିନ ଉଦ୍‌ଘାଟନ ଉତ୍ସବ ସମୟରେ ଘୋଷଣାକାରୀ ଅନ୍ୟମାନଙ୍କ ସହିତ ମୋତେ ସଭାମଞ୍ଚ ଉପରକୁ ଯିବାପାଇଁ ଅନୁରୋଧ କଲେ । ଅନ୍ୟ ଯେଉଁମାନେ ସେଠାରେ ବସିଥିଲେ ସେମାନେ ହେଲେ ମାନ୍ୟବର ରାଜ୍ୟପାଳ, ନିର୍ଦ୍ଦେଶକ ଡକ୍ଟର ବୁଜରବରୁଆ, ପ୍ଲାଜ୍‌ମା ସାଇନ୍‌ସ ସୋସାଇଟିର ସଭାପତି ଡକ୍ଟର ଏଚ.ସି.ପନ୍ଥ, ସମ୍ପାଦକ ଡକ୍ଟର ଅନୀଲ୍ ପାଲ, ସ୍ଥାନୀୟ ସମ୍ପାଦକ ଡକ୍ଟର ଗୋସ୍ୱାମୀ ଏବଂ ମୁଁ । ପ୍ରଥମେ ଡକ୍ଟର ବରୁଆ ଅତିଥିମାନଙ୍କର ପରିଚୟ ପ୍ରଦାନ କଲାପରେ ମୋ ବିଷୟରେ କହିଲେ "ଡକ୍ଟର ମିଶ୍ର ପ୍ଲାଜମା



ଡକ୍ଟର ମିଶ୍ରଙ୍କ ଜ୍ୟେଷ୍ଠ ପୁତ୍ର ରଞ୍ଜନ ମିଶ୍ର କ୍ୟାମେରାରେ 'ପୁଣି ହସିବ ମୋ ସୁନା ସଂସାର' ଚଳଚ୍ଚିତ୍ରର ଫଟୋ ନେଉଛନ୍ତି (୨୦୦୮)



ଡକ୍ଟର ମିଶ୍ରଙ୍କ ବଡ ବୋହୂ ପ୍ରଭାସିନୀ (୧୯୯୬)



ଡକ୍ଟର ମିଶ୍ରଙ୍କ କନିଷ୍ଠ ପୁତ୍ର ପ୍ଲାଜମନ ମିଶ୍ର, ବି.ଇ.
ସିନେମା ସଂଗୀତର ନିର୍ଦ୍ଦେଶକ



ଡକ୍ଟର ମିଶ୍ରଙ୍କ ସାନ ବୋହୁ ପୁଷ୍ପିତା ଓଡ଼ିଶାର ମୁଖ୍ୟ ସଚିବ
ଶ୍ରୀ ରମାକାନ୍ତବାବୁଙ୍କ ଠାରୁ ବେଷ୍ଟ କ୍ୟାଡ଼େଟ୍ ରୁପେ ପୁରସ୍କାର ଗ୍ରହଣ କରୁଛନ୍ତି ।



ଜେଜେମାଙ୍କର ଗେହ୍ଲା କୁଳଚନ୍ଦ୍ରମା ସୋନୁ । (୧୯୯୭)



ଡକ୍ଟର ମିଶ୍ରଙ୍କର ଜ୍ୟେଷ୍ଠା ନାତୁଣୀ କୁମାରୀ ସ୍ୱାତୀ ମିଶ୍ର ଆମେରିକା ଡେଟ୍ରୟଡ ଠାରେ ସାଙ୍ଗମାନଙ୍କ ସହିତ ଉପସ୍ଥିତ ।





ଦିଲ୍ଲୀର ଇଣ୍ଡିଆ ହାବିଟାଟ୍ ସେଣ୍ଟର ଠାରେ ଜାତିସଂଘର (କୌତୁକ) ପ୍ରତିନିଧିଭାବେ ସ୍ମିତିର ଅଂଶ ଗ୍ରହଣ ।

ଫିଜିକ୍ସ ଗବେଷଣାଗାରକୁ ପ୍ରଥମେ ଆରମ୍ଭ କରିଥିଲେ ଏବଂ ଡେନ୍ସ ପ୍ଲାଜମା ଫୋକସ୍ ମେସିନ୍ ନାମକ ଗୋଟିଏ ପରିଯୋଜନା ତାଙ୍କ ଚେଷ୍ଟାରେ ସି.ପି.ପିକୁ ବି.ଆର.ଏନ୍.ଏସ୍. ତରଫରୁ ଅନୁଦାନ ମିଳିଥିଲା । ସେ ଆରମ୍ଭ କରିଥିବା ପରୀକ୍ଷାଗାରଟିର ବର୍ତ୍ତମାନ ବହୁତ ଉନ୍ନତି ହୋଇଛି ।" ତାପରେ ମାନ୍ୟବର ରାଜ୍ୟପାଳ ପ୍ଲାଜମା ୨୦୦୧ର ଉଦ୍‌ଘାଟନ କରିଥିଲେ । ମୋତେ ସଭାପତି "ସୋଭେନିୟର"ଟିକୁ ଉଦ୍‌ଘାଟନ କରିବାକୁ ଅନୁରୋଧ କରିଥିଲେ । ମୁଁ ଉଦ୍‌ଘାଟନ କରିବା ପରେ ସ୍ଥାନୀୟ ସମ୍ପାଦକ ସମସ୍ତଙ୍କୁ ଧନ୍ୟବାଦ ଦେବାପରେ ସଭାକାର୍ଯ୍ୟ ଶେଷ ହେଲା । ୧୮ର ତାରିଖ ଦିନ ସଂଧ୍ୟାବେଳେ ସି.ପି.ପି. ତରଫରୁ ସାଂସ୍କୃତିକ କାର୍ଯ୍ୟକ୍ରମର ଆୟୋଜନ ହୋଇଥିଲା । ସେହି କାର୍ଯ୍ୟକ୍ରମଟି ବେଶ୍ ଉପଭୋଗ୍ୟ ହୋଇଥିଲା ।

ଡକ୍ଟର ଉମେଶ ବର୍ମନ୍ ମୋତେ ୧୯ ତାରିଖ ଦିନ ସଂଧ୍ୟାବେଳେ ତାଙ୍କ ଘରକୁ ନିମନ୍ତ୍ରଣ କରିଥିଲେ ଓ ଚା ପାନରେ ଆପ୍ୟାୟିତ କରିଥିଲେ । ମୁଁ ଯେତେବେଳେ ପ୍ରଥମେ ଗୌହାଟୀ ଯାଇଥିଲି ସେ ମୋ ତତ୍ତ୍ୱାବଧାନରେ ଗବେଷଣା କରିବାକୁ ଅନୁରୋଧ କରିଥିଲେ । ତାଙ୍କ ଅନୁରୋଧ ରକ୍ଷା କରିଥିଲି । ସେ ମଧ୍ୟ ସେହିଦିନ ଠାରୁ କାମ ଆରମ୍ଭ କରିଥିଲେ । ମୋ ଦେହ ଖରାପ ହେବା ଯୋଗୁଁ ଆଉ ଗୌହାଟୀ ଯାଇ ପାରିଲି ନାହିଁ । କିନ୍ତୁ ସେ ଯାହା ମୋତେ ପଚାରୁଥିଲେ, ମୁଁ ତାହାର ଉତ୍ତର ଚିଠିରେ ସଙ୍ଗେ ସଙ୍ଗେ ଦେଉଥିଲି । ସେ ତାଙ୍କର ଗବେଷଣା ଶେଷକରି ଗୌହାଟୀ ବିଶ୍ୱବିଦ୍ୟାଳୟରୁ ୨୦୦୧ ଅଗଷ୍ଟ ମାସରେ ପିଏଚ୍.ଡି ପାଇଥିଲେ । ତାଙ୍କର ବିଶେଷତ୍ୱ ହେଉଛି, ସେ ହେଉଛନ୍ତି ଆସାମ ସରକାରଙ୍କର କମ୍ୟୁନିକେସନ ବ୍ରାଞ୍ଚର ସୁପରିଟେଣ୍ଡେଣ୍ଟ ଅଫ୍ ପୋଲିସ୍ ।

ମୁଁ ୨୦ ତାରିଖ ଦିନ ଭୁବନେଶ୍ୱର ଫେରିବା ପାଇଁ ଉଡାଜାହାଜରେ ଟିକେଟ୍ କରିଥିଲି । କିନ୍ତୁ ଦମ୍‌ଦମ୍ ଠାରୁ ଭୁବନେଶ୍ୱର ପର୍ଯ୍ୟନ୍ତ ସଂରକ୍ଷଣ ହୋଇନଥିଲା । ସେଦିନ ମୁଁ ଭାବିଥିଲି ସଂରକ୍ଷଣ ବୋଧେ ହୋଇଯାଇଥିବ । ସେଦିନ ସକାଳେ ଗୌହାଟୀରୁ ବାହାରି ପ୍ରାୟ ୨ଟା ବେଳେ ଦମ୍‌ଦମ୍ ବିମାନ ବନ୍ଦରରେ ପହଞ୍ଚିଲି । ଦମ୍‌ଦମ୍ ବିମାନ ବନ୍ଦରରେ ପହଞ୍ଚି ଉଡାଜାହାଜରେ ବସିବା ପାଇଁ ଯିବାବେଳେ, ମୋତେ ଉଡାଜାହାଜରେ ବସିବା ପାଇଁ ଅନୁମତି ଦିଆଗଲା ନାହିଁ । ତେଣୁ ବିମାନ ବନ୍ଦର କର୍ମଚାରୀଙ୍କୁ କହିଲି, ତାହାହେଲେ ମୋତେ ଟିକେଟ୍ ଟଙ୍କା ଫେରାଇ ଦିଅନ୍ତୁ । ମୁଁ ଟଙ୍କା ଫେରାଇ ଦେବାକୁ କହିବାରୁ ସେ କର୍ମଚାରୀ ମୋତେ କହିଲେ ।।ଉଜଣେ ଯାତ୍ରୀ ଏ ପର୍ଯ୍ୟନ୍ତ ବିମାନ ବନ୍ଦରରେ ପହଞ୍ଚି ନାହାନ୍ତି । ଯାତ୍ରୀ ଜଣକ କେତେବେଳେ ପହଞ୍ଚିବେ କିଛି ଜଣାଇ ନାହାନ୍ତି । ତେଣୁ ମୁଁ ବାଧ୍ୟହୋଇ ଭାସ୍କର ରଥଙ୍କ ଝିଅ ଲିଲିମାକୁ ଫୋନ୍‌କଲି ଯେ ମୋର ଦମ୍‌ଦମ୍ ଠାରୁ ଭୁବନେଶ୍ୱର ପର୍ଯ୍ୟନ୍ତ ଉଡାଜାହାଜର ଟିକେଟ ସଂରକ୍ଷଣ ହେଉନାହିଁ । ତେଣୁ ତୁମକୁ କହୁଛି ତୁମେ ଦମ୍‌ଦମ୍ ବିମାନ ବନ୍ଦରକୁ ଆସି ତୁମ ଘରକୁ ମୋତେ ନେଇଯାଅ । କାରଣ ତୁମ ଘର କିମ୍ବା ଘରର ଠିକଣା ମୋତେ ଜଣାନାହିଁ । ତାର କିଛି ସମୟ ପରେ ସେ ଦମ୍‌ଦମ୍ ବିମାନ ବନ୍ଦରକୁ ଆସିଥିଲେ । ଠିକ୍ ସେହି ସମୟରେ ଜଣେ ଦମ୍‌ଦମ୍ ବିମାନ ବନ୍ଦର କର୍ମଚାରୀ ମୋତେ ଆସି ଡାକିନେଲେ, ଏବଂ କହିଲେ

ଆପଣଙ୍କର ଦମ୍‌ଦମ୍ ଠାରୁ ଭୁବନେଶ୍ୱର ପର୍ଯ୍ୟନ୍ତ ସଂରକ୍ଷଣ ହୋଇଗଲା । ଆପଣ ଶୀଘ୍ର ମୋ ସଙ୍ଗରେ ଆସି ବିମାନରେ ବସନ୍ତୁ । ସେଠାରେ ମୋର ସିକ୍ୟୁରିଟି ଚେକ୍ ମଧ୍ୟ ହୋଇନଥିଲା । ତାପରେ ମୁଁ ଲିଲିମାକୁ ହାତଠାରି କହିଲି, ତୁମେ ଚାଲିଯାଅ । କାରଣ ମୋର ସଂରକ୍ଷଣ ହୋଇଗଲା । ସେତେବେଳେ ଲିଲିମାର ସ୍ୱାମୀ ପ୍ରଫୁଲ୍ଲ ବାବୁ କଲିକତା ଠାରେ ଭାରତୀୟ ଷ୍ଟେଟ ବ୍ୟାଙ୍କରେ ଚାକିରି କରୁଥିଲେ । ସଂଧ୍ୟାବେଳକୁ ଭୁବନେଶ୍ୱର ବିମାନ ବନ୍ଦରରେ ପହଞ୍ଚିଲି । ବିମାନ ବନ୍ଦରକୁ ସାନପୁଅ ମୋତେ ଆଣିବାକୁ ଯାଇଥିଲା ।

ନଭେମ୍ବର ମାସରେ ବିଜ୍ଞାନ ପ୍ରଚାର ସମିତିର ପ୍ରଥମ ଅଧିବେଶନ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଫିଜିକ୍ସର ଡିରେକ୍ଟର ଡକ୍ଟର ତ୍ରିଲୋଚନ ପ୍ରଧାନଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ସେହି ଅଧିବେଶନରେ ଆନୁଷ୍ଠାନିକ ଭାବେ ଡକ୍ଟର ସୂର୍ଯ୍ୟମଣୀ ବେହେରା ଓ ଶ୍ରୀ ନିଖିଳ ପଟ୍ଟନାୟକ ସମିତିର ସମ୍ପାଦକ ଏବଂ ଡକ୍ଟର ଚିତ୍ତରଞ୍ଜନ ମିଶ୍ର ବାର୍ତ୍ତା ସମ୍ପାଦକ ଓ ମୁଁ ସମିତିର କୋଷାଧ୍ୟକ୍ଷ ଓ ଉପଦେଷ୍ଟା ରହିବାପାଇଁ ସ୍ଥିର କରାଗଲା । ଦ୍ୱିତୀୟ ଅଧିବେଶନ ସେହି ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଫିଜିକ୍ସରେ ହୋଇଥିଲା । ତାହା ମଧ୍ୟ ଡିରେକ୍ଟରଙ୍କ ସଭାପତିତ୍ୱରେ ହୋଇଥିଲା । ସେଥିରେ ଠିକ୍ କରାଗଲା ଯେ ପ୍ରତି ମାସର ତୃତୀୟ ସପ୍ତାହରେ ପଡୁଥିବା ରବିବାରରେ ଅଧିବେଶନ ଦିନ ୩ଟା ବେଳେ ହେବ । ସମିତିର ତୃତୀୟ ଅଧିବେଶନ ପ୍ରାଣୀ ବିଜ୍ଞାନ ବିଭାଗରେ ଡକ୍ଟର ଗୋକୁଳାନନ୍ଦ ମହାପାତ୍ରଙ୍କ ସଭାପତିତ୍ୱରେ ହୋଇଥିଲା । ସେହି ଅଧିବେଶନରେ ମୁଁ 'ଭାରତରେ ବ୍ୟବହାରିକ ପ୍ଲାଜମା ପଦାର୍ଥ ବିଜ୍ଞାନର କ୍ରମ ବିକାଶ' ଶୀର୍ଷକ ଗୋଟିଏ ପ୍ରବନ୍ଧ ପଢିଥିଲି ।

## ରେଭେନ୍ସା କଲେଜର ସ୍ନାତକୋତ୍ତର ବିଭାଗର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ

୨୦୦୨ ମସିହା ଜାନୁଆରୀ ମାସର ତୃତୀୟ ସପ୍ତାହରେ ଡକ୍ଟର ଏସ୍.କେ ଚକ୍ରବର୍ତ୍ତୀ, ଡକ୍ଟର ଗୌରାଙ୍ଗ ଚରଣ ମହାନ୍ତି ଓ ଶ୍ରୀମତୀ ରିତା ପାଇକ୍‌ରାୟ ପ୍ରଭୃତି ରେଭେନ୍‌ସା କଲେଜର ଅଧ୍ୟାପକମାନେ ଆମ ଘରକୁ ଆସି କହିଲେ ଫିଜିକ୍ସ ପୋଷ୍ଟ-ଗ୍ରାଜୁଏଟ୍ ବିଭାଗର ୫୦ ବର୍ଷ ପୂରିବା ଅବସରରେ ଆମ ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ଜାନୁଆରୀ ୨୫ ତାରିଖରେ ପାଳିତ ହେଉଛି । ସେଥିପାଇଁ ଆପଣଙ୍କର ୫୦ ବର୍ଷର ଅନୁଭୂତି ବର୍ଣ୍ଣନା କରି ଗୋଟିଏ ପ୍ରବନ୍ଧ ଲେଖି ପଠାଇବେ । ତାହା ଗୋଟିଏ ପୁସ୍ତକରେ ପ୍ରକାଶିତ ହେବ । ଏହା ବ୍ୟତୀତ ଆପଣଙ୍କର ଗୋଟିଏ ବାୟୋଡାଟା ପଠାଇବେ, ଏହା ସୋଭେନିୟରରେ ପ୍ରକାଶିତ ହେବ । ଆପଣ ୨୫ ତାରିଖ ଦିନ ୯ଟା ସମୟ ସୁଦ୍ଧା ଫିଜିକ୍ସ ଡିପାର୍ଟମେଣ୍ଟରେ ପହଞ୍ଚିବେ । ସେଠାରେ ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା ହୋଇଛି । ୨୫ ତାରିଖ ଦିନ ଗାଡିର ସୁବିଧା ନ ହେବାରୁ ମୁଁ ପ୍ରତିଭା ରାଣୀ ମିଶ୍ରଙ୍କୁ କହିଲି । ସେ ସଙ୍ଗେ ସଙ୍ଗେ ତାଙ୍କର ଗୋଟିଏ ଗାଡି ପଠାଇ ଦେଲେ । ମୁଁ ଏବଂ ମୋ ସାନ ବୋହୂ ଗାଡିରେ କଟକ ଗଲୁ । ମୁଁ ତାଙ୍କୁ ତାର ଭଉଣୀ ଘରେ ଛାଡିଦେଇ ପ୍ରତିଭା ଘରକୁ ଗଲି । ସେଠାରୁ ଆମେ ଦୁହେଁ ଡିପାର୍ଟମେଣ୍ଟରେ ପହଞ୍ଚିଲୁ । ସୁବର୍ଣ୍ଣ ଜୟନ୍ତୀ ଉତ୍ସବରେ ଯୋଗ ଦେବାକୁ

ଇଣ୍ଟରନ୍ୟାସନାଲ ଫିଜିକ୍ସ ବୈଜ୍ଞାନିକ ଡକ୍ଟର ଯୋଗେଶ ପତି ଆସିଥିଲେ । ସେଠାରେ ସବୁ ପୁରୁଣା ବନ୍ଧୁମାନଙ୍କ ସାଙ୍ଗରେ ଦେଖାହେଲା । ଡିପାର୍ଟମେଣ୍ଟର ମୁଖ୍ୟ ଅଧ୍ୟାପକ ଭଦ୍ର ବ୍ୟକ୍ତିମାନଙ୍କର ତଥା ଅବସର ପ୍ରାପ୍ତ ପ୍ରଫେସରମାନଙ୍କର ପରିଚୟ ପ୍ରଦାନ କଲେ । ବିଶେଷ କାର୍ଯ୍ୟକ୍ରମରେ ଡକ୍ଟର ହରିହର ମିଶ୍ରଙ୍କୁ ତାଙ୍କ ଅବଦାନ ପାଇଁ ସମ୍ବର୍ଦ୍ଧନା ଓ ଗୋଟିଏ ମାନପତ୍ର ଦିଆଗଲା । ମୁଖ୍ୟ ବକ୍ତା ଓ ସଭାପତିଙ୍କ ଭାଷଣ ପରେ ସଭାକାର୍ଯ୍ୟ ଶେଷ ହେଲା । ତା'ପରେ ଆମେ ସବୁ ମଧ୍ୟାହ୍ନ ଭୋଜନ ପାଇଁ ଗଲୁ । ୩ଟା ବେଳେ ଅନ୍ୟାନ୍ୟ ଆଲୋଚନା ପରେ ସଭାକାର୍ଯ୍ୟ ସରିଲା । ମୁଁ ପୁଣି ପ୍ରତିଭା ଗାଡିରେ ବୋହୂଙ୍କୁ ନେଇ ଭୁବନେଶ୍ୱର ଫେରି ଆସିଲି ।

ମୁଁ ରେଭେନ୍‌ସା କଲେଜରେ ବୁଝିଲି ଯେ ଓଡିଶା ଫିଜିକାଲ୍ ସୋସାଇଟିରେ ବାର୍ଷିକ୍ ଅଧିବେଶନ୍ କେଉଁଝର କଲେଜରେ ନ ହୋଇ ପ୍ରାଣନାଥ କଲେଜ, ଖୋର୍ଦ୍ଧା ଠାରେ ଫେବୃଆରୀ ୯ ଓ୧୦ ତାରିଖରେ ହେବ । ତେଣୁ ମୁଁ ଯୋଗ ଦେବା ପାଇଁ ଠିକ୍ କଲି ଏବଂ ବୁଝିଲି ଯେ ଭୁବନେଶ୍ୱର ବାଣୀବିହାର ଠାରୁ ଗୋଟିଏ ବସ୍ ସକାଳ ୯ଟାରେ ଦୁଇ ଦିନ ଯାକ ଖୋର୍ଦ୍ଧା ଯିବ ଓ ଫେରିବ । ମୁଁ ସେହି ବସ୍‌ରେ ଗଲି ଓ ଫେରିଲି । ମୋର ବାର୍ଷିକ ଅଧିବେଶନରେ କିଛି କାମ ନଥିଲା ।

ମାର୍ଚ୍ଚ ଦ୍ୱିତୀୟ ସପ୍ତାହରେ ମୋର ବଡ ଝିଅ ତାର ଘର ବଦଳାଇ ଗୋଟିଏ ନୂଆ ଘରକୁ ଗଲା । ମୋତେ ରାଉରକେଲା ଯାଇ ଘର ଦେଖିବା ପାଇଁ କହିଲା । ତେଣୁ ମୁଁ ୧୮ ତାରିଖରେ ରାଉରକେଲା ଗଲି । ଝିଅ ଜ୍ୱାଇଁ ମୋତେ ନେବାକୁ ଷ୍ଟେସନ୍ ଆସିଥିଲେ । ମୁଁ ସେଠାରେ କମ୍ପ୍ୟୁଟରରେ ମଲଟିପୁଲ୍ ଚଏସ୍‌ର କେତେ ଗୁଡିଏ ପ୍ରଶ୍ନ ଲେଖିଲି । ସବୁ ପ୍ରଶ୍ନର ଉତ୍ତର ତିଆରି କରିବା ପାଇଁ ଝିଅକୁ କହିଲି । ଏହା ଭିତରେ ବୁବୁ ଓ ପୁଷ୍ପିତା ମୁମ୍ବାଇ ଚାଲିଯିବାରୁ ମୁଁ ଅପ୍ରେଲ ୧୪ ତାରିଖରେ ବାହାରି ୧୫ ତାରିଖ ସକାଳେ ଭୁବନେଶ୍ୱର ଷ୍ଟେସନ୍‌ରେ ପହଞ୍ଚିଲି । ମୋର ସାନ ଝିଅ ଓ ଜ୍ୱାଇଁ ମୋତେ ଆଣିବା ପାଇଁ ଷ୍ଟେସନ୍ ଯାଇଥିଲେ । ତାପର ଦିନ ବୁବୁ ଓ ପୁଷ୍ପିତା ମୁମ୍ବାଇରୁ ଆସୁଥିବାରୁ ମୁଁ ଷ୍ଟେସନ୍ ଯାଇଥିଲି । ଆମେ ସମସ୍ତେ ଗୋଟିଏ ଟ୍ୟାକ୍ସି ଭଡା କରି ଘରକୁ ଆସିଲୁ ।

ମୁଁ କେତେ ଦିନ ଆଗରୁ ଭାବିଥିଲି ଅଶୋକାଷ୍ଟମୀ ଦିନ ବୋହୂମାନଙ୍କୁ ମୋର ଗାଁକୁ ଦେଖାଇବାକୁ ନେବି । ଏଇ ବର୍ଷ ସେହି ସୁବିଧାଟି ଜୁଟିଲା । ମୁଁ ପ୍ରାୟ ୨୦ ବର୍ଷ ହେଲା ଗାଆଁକୁ ଯାଇ ନ ଥିଲି । କାରଣ ଡିପାର୍ଟମେଣ୍ଟ ଅଫ୍ ସାଇନ୍‌ସରୁ ଅନୁଦାନ ପାଇବା ପରେ ମୁଁ ଏତେ କାର୍ଯ୍ୟବ୍ୟସ୍ତ ରହିଥିଲି ଯେ ମୋର ଯିବାକୁ ବେଳ ହେଉ ନ ଥିଲା । ସେତେବେଳେ ମୋର ଶ୍ରୀମତୀ ଗ୍ରାମକୁ ମଝିରେ ମଝିରେ ଯାଉଥିଲେ ଏବଂ ଗ୍ରାମ କଥା ବୁଝାବୁଝି କରୁଥିଲେ । ତେଣୁ ମୋର ଗ୍ରାମର ଲୋକମାନଙ୍କ ସହ ସମ୍ପର୍କ ପ୍ରାୟ ତୁଟି ଯାଇଥିଲା । ଅଶୋକାଷ୍ଟମୀ ଦିନ ଯିବା ପାଇଁ ଆମ ଗ୍ରାମର ଶ୍ରୀ ଅନନ୍ତରାମ ମିଶ୍ରଙ୍କୁ ପଚାରିଲି, ଆପଣ ଅଶୋକାଷ୍ଟମୀ ଦିନ ଗ୍ରାମକୁ ଯିବେ କି ? ସେ କହିଲେ ମୁଁ ଯାଇପାରେ, କିଛି ଠିକ୍ ନାହିଁ । ମୁଁ ତାଙ୍କୁ କହିଲି ଆପଣ ଆମ ସାଙ୍ଗରେ ଯାଇପାରିବେ କି ? କାରଣ ମୁଁ ତ ୨୦ ବର୍ଷ ହେଲା ଯାଇନାହିଁ । ତେଣୁ ମୋତେ

କେହି ଚିହ୍ନି ପାରିବେ ନାହିଁ । ସେ ରାଜି ହେଲେ । ଶ୍ରୀ ଅନନ୍ତ ରାମ ମିଶ୍ର ମୋର ସମସାମୟିକ । ମୁଁ ଯେତେବେଳେ ପୁରୀରେ ଆଇ.ଏସସି ପଢୁଥିଲି ସେ ସେତେବେଳେ ଆଇ.ଏସ୍‌ସିରେ ମୋର ଉପର କ୍ଲାସ୍‌ରେ ଥିଲେ । ସେ ତା'ପରେ ବି.ଏ ପଢିଲେ ଏବଂ ପରେ ଏମ୍.ଏ ପଢିଲେ । ଏମ୍.ଏ ପାଶ୍ କଲାପରେ ଓ.ଏ.ଏସ୍. ଦେଇ ଡେପୁଟୀ ମାଜିଷ୍ଟ୍ରେଟ୍ ହୋଇଥିଲେ । ଏବେ ଅବସର ନେଇ ଭୁବନେଶ୍ୱରରେ ଆଇ.ଆର.ସି ଭିଲେଜରେ ନିଜ ଘର କରି ରହୁଛନ୍ତି ।

ଅପ୍ରେଲ ୨୦ ତାରିଖ ଦିନ ଗୋଟିଏ ଟ୍ୟାକ୍ସି ଭଡାକରି ଆମ ଗ୍ରାମ ରାୟଚକ୍ରଧରପୁରକୁ ଯିବାକୁ ବାହାରିଲୁ । ଟ୍ୟାକ୍ସି ଆସିବାରୁ ବୁବୁ ଟ୍ୟାକ୍ସି ନେଇ ଶ୍ରୀ ଅନନ୍ତରାମ ବାବୁଙ୍କ ଘରକୁ ତାଙ୍କୁ ଆଣିବାକୁ ଗଲା । ତାଙ୍କୁ ଆମ ଘରକୁ ନେଇ ଆସିଲା ପରେ ମୁଁ, ବୁବୁ, ବଡ ବୋହୂ ଏବଂ ସାନ ବୋହୂ ଟ୍ୟାକ୍ସିରେ ଗ୍ରାମକୁ ଗଲୁ । ପ୍ରାୟ ୩ଟା ବେଳେ ପହଞ୍ଚିଲୁ । ପହଞ୍ଚିଲା ପରେ ଶ୍ରୀ ପ୍ରସନ୍ନ କୁମାର ମିଶ୍ର ଆମ ଦୁଆରେ ବସିଥିଲେ । ପ୍ରସନ୍ନ କୁମାର ହେଉଛନ୍ତି ମୋ ଦଦେଇଙ୍କ ପୁଅ ବ୍ରଜବନ୍ଧୁ ମିଶ୍ରଙ୍କ ପୁଅ । ଶ୍ରୀ ବ୍ରଜବନ୍ଧୁ ମିଶ୍ର ପ୍ରାୟ ୨୦ ବର୍ଷ ତଳେ ମୃତ୍ୟୁ ବରଣ କରିଥିଲେ । ମୋର ଭାଉଜଙ୍କର (ବ୍ରଜବନ୍ଧୁ ମିଶ୍ରଙ୍କ ସ୍ତ୍ରୀ) ମୁଁ ଗୌହାଟୀରେ ଥିବାବେଳେ କାଳହୋଇ ଯାଇଥିଲା । ତେଣୁ ମୁଁ ତାଙ୍କ ଦଶାହରେ ଯୋଗ ଦେଇ ପାରି ନ ଥିଲି । ସେହି ସମୟରେ ମୋ ଶ୍ରୀମତୀ କୌଣସି କାରଣରୁ ଦଶାହ କ୍ରିୟାକୁ ଯାଇପାରି ନ ଥିଲେ । ତେଣୁ ସେମାନେ ବୋଧେ ଆମ ଉପରେ ଅସନ୍ତୁଷ୍ଟ ହୋଇଥିଲେ । ମୁଁ ପୁରୀରେ ପ୍ରାଧ୍ୟାପକ ଥିବା ସମୟରେ ପ୍ରସନ୍ନ ପୁରୀରେ ବି.ଏସ୍‌ସି ପଢୁଥିଲା । ମୁଁ ତାଙ୍କୁ ମୋ ପରିବାର ସହିତ ପରିଚୟ କରାଇ ଦେଲି । ଆମେ ଗ୍ରାମର ହାଇସ୍କୁଲ୍ ଏବଂ ଭାର୍ଗବୀ ନଦୀ କୂଳ ପ୍ରଭୃତି ସ୍ଥାନ ବୁଲି ଦେଖିବାକୁ ଗଲୁ । ଫେରି ଆସିଲା ବେଳକୁ ପ୍ରାୟ ସଂଧ୍ୟା ହୋଇ ଯାଇଥିଲା । ସେତେବେଳକୁ ମୋ ଭାଇନାଙ୍କର ବଡ ଝିଅ (ବୁର୍ଣ୍ଣୀ) ଏବଂ ବଡ ପୁଅ ଶ୍ରୀ ଗଦାଧର ମିଶ୍ର ଅଶୋକାଷ୍ଟମୀ ସକାଶେ ଆମ ଘରେ ପହଞ୍ଚିଲେ । ସେମାନେ ଆମମାନଙ୍କୁ ଦେଖି ବହୁତ ଖୁସି ହେଲେ । କିଛି ସମୟ ପରେ ମୋ ବୟସର ସମୀପସ୍ଥ ଜଣେ ଲୋକ ଆମଘରେ ପହଞ୍ଚିଲେ । ତାଙ୍କର ଭଲ ନାମ ମୁଁ ଜାଣିନାହିଁ । ତାଙ୍କୁ ପିଲାଦିନେ ଆମେ ନୋଳିଆ ବୋଲି ଡାକୁଥିଲୁ । ସେ ମୋତେ ଦେଖି ବହୁତ ଖୁସି ହେଲେ । ଏହି ସମୟରେ ଆମ ଗ୍ରାମର ଠାକୁର (ନୀଳକଣ୍ଠ) ଆସି ଆମ ଦାଣ୍ଡର କିଛି ଦୂରରେ ବସିଲେ । ଆମେ ସବୁ ନୀଳକଣ୍ଠଙ୍କୁ ଦେଖିବାକୁ ଗଲୁ । ସେଦିନ ଗ୍ରାମ ଦାଣ୍ଡରେ ବହୁତ ଲୋକ ଉପସ୍ଥିତ ଥିଲେ । କେତେକ ଦୋକାନ ବଜାର ମଧ୍ୟ ବସିଥିଲା । ତାପରେ ଡିଅଁଙ୍କ ପାଇଁ ପ୍ରତ୍ୟେକଙ୍କ ଘରୁ ଭୋଗ ଆସୁଥାଏ । ଭୋଗରାଗ ସବୁ ପୂଜା ହୋଇ ଆସିଲା ପରେ ବନ୍ଧୁ ବାନ୍ଧବମାନେ ଏହି ଭୋଗ ଖାଉଥିଲେ । ଭୋଗ ସରିଲା ପରେ ଡିଅଁଙ୍କ ଆଗରେ ବିଭିନ୍ନ ପ୍ରକାର ବାଣ ଫୁଟାଯାଏ । ଆଗେ ମୋ ପିଲାଦିନେ ନନା ଥିଲାବେଳେ ବାଣ ତିଆରି କରି ଆଣୁଥିଲୁ । (ତାହା ପୂର୍ବରୁ ଲେଖା ହୋଇଛି) । କିନ୍ତୁ ଏବେ ଲୋକମାନେ ସବୁ ବାଣ କିଣିଆଣି ଡିଅଁଙ୍କ ଆଗରେ ଫୁଟାଉଛନ୍ତି । ବାଣ ଫୁଟାଫୁଟି ୧୧/୧୨ଟା ବେଳେ ଆରମ୍ଭ ହୋଇ ପାହାନ୍ତିଆ ବେଳେ ସରେ । କିନ୍ତୁ ଆମେ ସବୁ ବାଣ ଫୁଟିବା ଦେଖିବା ପାଇଁ ଅପେକ୍ଷା କଲୁନାହିଁ । ପ୍ରାୟ ରାତି

୧୧ଟା ବେଳେ ଫେରି ଆସିଲୁ । ତାପର ଦିନ ରାମନବମୀ ପଡିଥାଏ । ରାମ ନବମୀ ଦିନ ସାନ ପୁଅ ବୋହୂ ମୋର ଜନ୍ମଦିନ ପାଳନ କଲେ ।

## ଇଉ.ସି. ପଟ୍ଟନାୟକଙ୍କର ପି.ଏଚ୍‌ଡି.ର ମୌଖିକ ପରୀକ୍ଷା

ତାର ସାତ କିମ୍ବା ଆଠ ଦିନ ପରେ ଶ୍ରୀ ଅଭିମନ୍ୟୁ ବାବୁ ଫୋନ୍ କରି କହିଲେ, ଶ୍ରୀ ପଟ୍ଟନାୟକ ବାବୁଙ୍କର ପିଏଚ୍.ଡି ଥିସିସର ଭଲ ମନ୍ତବ୍ୟ ଆସିଯାଇଛି ଏବଂ ବିଶ୍ୱବିଦ୍ୟାଳୟ ଡକ୍ଟର ପଦ୍ମନାଭ ଦାସଗୁପ୍ତଙ୍କୁ ମୌଖିକ ପରୀକ୍ଷକ ଭାବେ ନିଯୁକ୍ତି ଦେଇଛନ୍ତି । ଆପଣଙ୍କର ସେ ତ ଜଣାଶୁଣା, ଆପଣ ଫୋନ୍‌ରେ କଥାବାର୍ତ୍ତା କରି ମୌଖିକ ପରୀକ୍ଷାର ଦିନ ଠିକ୍ କରିଦିଅନ୍ତୁ । ମୁଁ ସେଥିରେ ରାଜି ହେଲି ଏବଂ ତାଙ୍କ ଠାରୁ ଫୋନ୍ ନମ୍ବରଟି ରଖିଲି । ତାପର ଦିନ ସକାଳେ ଡକ୍ଟର ଦାସଗୁପ୍ତଙ୍କ ସାଙ୍ଗରେ ଫୋନ୍‌ରେ କଥା ହେଲି । ସେ କହିଲେ, ଟ୍ରେନ୍ ଟିକେଟ୍ ସଂରକ୍ଷଣ କରିସାରି ମୁଁ ଆପଣଙ୍କୁ ଦିନଟି ଜଣାଇ ଦେବି । ସେ ଦୁଇଦିନ ପରେ ଜଣାଇଲେ, ମୌଖିକ ପରୀକ୍ଷା ମଇ ମାସ ୧୬ ତାରିଖରେ କରାଇବା ପାଇଁ ବନ୍ଦୋବସ୍ତ କରନ୍ତୁ । ମୁଁ ତାଙ୍କ ଫୋନ୍ ପାଇଲା ପରେ ଶ୍ରୀ ଅଭିମନ୍ୟୁ ବାବୁ ଓ ପରୀକ୍ଷା ନିୟନ୍ତ୍ରକଙ୍କୁ ଜଣାଇ ଦେଲି । ନିୟନ୍ତ୍ରକ ୧୬ ତାରିଖରେ ମୌଖିକ ପରୀକ୍ଷାର ଦିନ ଠିକ୍ କରି ସମସ୍ତଙ୍କୁ ଜଣାଇ ଦେଲେ । ୧୬ ତାରିଖ ଦିନ ପଟ୍ଟନାୟକ ଗୋଟିଏ ଗାଡି ଭଡାକରି ମୋତେ, ଶ୍ରୀ ଅଭିମନ୍ୟୁ ବାବୁଙ୍କୁ ଓ ଶ୍ରୀ ପଦ୍ମନାଭ ବାବୁଙ୍କୁ ନେଇ ଉତ୍କଳ ବିଶ୍ୱବିଦ୍ୟାଳୟର ଫିଜିକ୍ସ ଡିପାର୍ଟମେଣ୍ଟରେ ପହଞ୍ଚାଇ ଦେଲେ । ମୌଖିକ ପରୀକ୍ଷାରେ ସେ ସନ୍ତୋଷ ଜନକ ଭାବେ ଉତ୍ତର ଦେଲେ । ପରୀକ୍ଷକ ମଣ୍ଡଳୀ ସେ ପିଏଚ୍.ଡି ଡିଗ୍ରୀ ପାଇବା ପାଇଁ ଉପଯୁକ୍ତ ବୋଲି ମନ୍ତବ୍ୟ ଦେଇ ପରୀକ୍ଷା ନିୟନ୍ତ୍ରକଙ୍କ ପାଖକୁ ଲେଖି ପଠାଇ ଦେଲେ । ସେଦିନ ଚିରାଚରିତ ପ୍ରଥା ଅନୁସାରେ ଶ୍ରୀ ପଟ୍ଟନାୟକ ସମସ୍ତଙ୍କୁ ମଧ୍ୟାହ୍ନ ଭୋଜନରେ ଆପ୍ୟାୟିତ କରିଥିଲେ । ୧୬ ତାରିଖ ଦିନ ସଂଧ୍ୟାବେଳେ ମୁଁ ଗୋଟିଏ ଚା ପାନର ବ୍ୟବସ୍ଥା ଘରେ କରି ପଦ୍ମନାଭ ବାବୁ, ଅଭିମନ୍ୟୁବାବୁ, ବିଶ୍ୱବିଦ୍ୟାଳୟର କେତେଜଣ ପ୍ରଫେସରମାନଙ୍କୁ ନିମନ୍ତ୍ରଣ କରିଥିଲି । ପଦ୍ମନାଭ ବାବୁଙ୍କ ସହିତ ତାଙ୍କ ଶ୍ରୀମତୀ ଆମ ଘରକୁ ଆସିଥିଲେ । ବାଣୀବିହାରର ପ୍ରଫେସରମାନଙ୍କ ମଧ୍ୟରୁ ଡକ୍ଟର ନିରଞ୍ଜନ ବାରିକ୍, ଡକ୍ଟର ଲମ୍ବୋଦର ପ୍ରସାଦ ସିଂ ଏବଂ ଶ୍ରୀ ନୃସିଂହ ଚରଣ ସାହୁ ମଧ୍ୟ ଉପସ୍ଥିତ ଥିଲେ । ଆମ ଛାତ ଉପରେ ସେମାନଙ୍କ ବସିବାର ବନ୍ଦୋବସ୍ତ କରିଥିଲୁ । ଶ୍ରୀ ପଦ୍ମନାଭ ବାବୁଙ୍କ ସ୍ତ୍ରୀ କହିଲେ ଆପଣଙ୍କ ଶ୍ରୀମତୀଙ୍କ କଥା ମୁଁ ପଦ୍ମନାଭ ବାବୁଙ୍କ ଠାରୁ ବହୁତ ଶୁଣିଛି । କିନ୍ତୁ କେବେ ଦେଖିନାହିଁ । ତାଙ୍କ ଫଟୋ ଦୟାକରି ଦେଖାନ୍ତୁ । ମୁଁ କହିଲି, ଗଲାବେଳେ ବୁବୁ ଅଫିସ୍ କୋଠରୀରେ ଅଛି ଦେଖିଯିବେ । ତାଙ୍କ ସହିତ ଶ୍ରୀ ଇଉ.ସି ପଟ୍ଟନାୟକ ମଧ୍ୟ ଆସିଥିଲେ ଏବଂ ସେମାନଙ୍କ ବ୍ୟତୀତ ମୋ ସାନ ଝିଅ ଏବଂ ଜ୍ୱାଇଁ ମଧ୍ୟ ଆସିଥିଲେ । କିଛି ସମୟ କଥାବାର୍ତ୍ତା ପରେ ସାନବୋହୂ ପୁଷ୍ପିତା ଓ ବଡବୋହୂ ପ୍ରଭାସିନୀ ସମସ୍ତଙ୍କୁ ଜଳ ଯୋଗରେ ଆପ୍ୟାୟିତ କରିଥିଲେ । ଗଲାବେଳେ ସେମାନେ ମୋ ଶ୍ରୀମତୀଙ୍କ ଫଟୋଟି ଦେଖିକରି ଗଲେ । ସେମାନଙ୍କୁ ଶ୍ରୀ ଇଉ.ସି ପଟ୍ଟନାୟକ ଗୋଟିଏ ଗାଡିରେ ଘର ପାଖରେ ଛାଡିଦେଇ ଆସିଲେ ।

୨୦୦୨ ମସିହା ମଇ ୬ ତାରିଖରେ ବୁବୁ କ୍ୟାସେଟ୍ କରିବା ପାଇଁ ମୁମ୍ବାଇ ଯାଇଥିଲା । ସାଙ୍ଗରେ ମୋ ବାପାଙ୍କ ଗୀତ କେତେ ଗୁଡିଏ ହିନ୍ଦି ଅନୁବାଦ କରି କ୍ୟାସେଟ୍‌ଟିରେ ରେକର୍ଡ କରି ନେଲା । ସେଠାରେ ସେ ବିଭିନ୍ନ ସଙ୍ଗୀତ କମ୍ପାନୀ ସହିତ ଦେଖାକରି କଥାବାର୍ତ୍ତା କରିଥିଲା । ଶେଷରେ ଟି-ସିରିଜ୍ ତାଙ୍କର ସେହି କ୍ୟାସେଟ୍‌ଟିକୁ ମୁକ୍ତିଲାଭ କରିବା ପାଇଁ ରାଜି ହୋଇଥିଲେ ଏବଂ ଜୁନ ୨୩ ତାରିଖରେ ଟି-ସିରିଜ୍ ସାଙ୍ଗେ ଚୁକ୍ତିପତ୍ର ସ୍ୱାକ୍ଷର କରିଥିଲା । ଜୁନ୍ ମାସରେ ମୋର ବାପାଙ୍କର ଚତୁର୍ଥ ବାର୍ଷିକ ଶ୍ରାଦ୍ଧ ପଡିଥିଲା । ପୂର୍ବ ବର୍ଷ ଭଳି ଭୁବନେଶ୍ୱରରେ ଥିବା ସବୁ ବନ୍ଧୁ ବାନ୍ଧବମାନଙ୍କୁ ନିମନ୍ତ୍ରଣ କରାଯାଇ ଥିଲା ଏବଂ ସମସ୍ତେ ଯୋଗ ଦେଇଥିଲେ ।

୨୦୦୨ ମସିହା ଜୁଲାଇ ପ୍ରଥମ ସପ୍ତାହରେ ଡକ୍ଟର ପ୍ରତିଭା ମିଶ୍ର ମୋତେ ଫୋନ୍‌ରେ ଜଣାଇଲେ ତାଙ୍କର ପିଏଚ୍.ଡି ଛାତ୍ରୀ ଶ୍ରୀମତୀ ମିରା ଉଦ୍‌ଗାତାଙ୍କର ପିଏଚ୍.ଡି ଥିସିସିକୁ ବାହ୍ୟ ପରୀକ୍ଷକମାନେ ପିଏଚ୍.ଡି ପାଇବା ପାଇଁ ଉପଯୁକ୍ତ ବୋଲି ମନ୍ତବ୍ୟ ଦେଇଛନ୍ତି । ତେଣୁ ଉତ୍କଳ ବିଶ୍ୱବିଦ୍ୟାଳୟର ପରୀକ୍ଷା ନିୟନ୍ତ୍ରକ ମୋତେ ଜଣାଇଛନ୍ତି ଯେ ବାହ୍ୟ ପରୀକ୍ଷକ ଡକ୍ଟର ବରାଇଙ୍କ ସାଙ୍ଗେ ଫୋନ୍‌ରେ କଥାବାର୍ତ୍ତା କରି ମୌଖିକ ପରୀକ୍ଷାର ଦିନ ଧାର୍ଯ୍ୟ କରିବା ପାଇଁ । ସେ ମୋତେ ପଚାରିଲେ, ମୁଁ ଜୁଲାଇ ୧୨ ତାରିଖକୁ ଦିନ ଧାର୍ଯ୍ୟ କରୁଛି । ଆପଣ ସେଦିନ ନିଶ୍ଚୟ ମୌଖିକ ପରୀକ୍ଷାରେ ଯୋଗ ଦେବେ । ମୁଁ ଦୁଇ ଦିନ ଭିତରେ ଶ୍ରୀମତୀ ମିରା ଉଦ୍‌ଗାତାଙ୍କର ଥେସିସି ଆପଣଙ୍କୁ ଦେଇ ଆସିବି । ସେ ଦୁଇ ଦିନ ପରେ ଆସି ଥେସିସିଟି ଦେଇଗଲେ ଏବଂ ମୋତେ ତାଙ୍କ ମୌଖିକ ପରୀକ୍ଷା ଦିନ ଆସି ଗାଡିରେ ନେଇଯିବେ ଓ ଛାଡିଦେଇ ଯିବେ ବୋଲି କହିଲେ । ମୌଖିକ ପରୀକ୍ଷା ଦିନ ଡକ୍ଟର ପ୍ରତିଭା ମିଶ୍ର ମୋତେ ଗାଡିରେ ନେଇଗଲେ ଏବଂ ବୁବୁକୁ ଏବଂ ମୋର ବୋହୁକୁ ହୋଟେଲ ମେଘଦୂତରେ ଖାଇବା ପାଇଁ ନିମନ୍ତ୍ରଣ କରି ଯାଇଥିଲେ । ମୌଖିକ ପରୀକ୍ଷା ସରିଲା ପରେ ଡକ୍ଟର ବରାଇ, ଡକ୍ଟର ନିରଞ୍ଜନ ବାରିକ୍ ଏବଂ ଡକ୍ଟର ଲମ୍ବୋଦର ପ୍ରସାଦ ସିଂ, ଡକ୍ଟର ନରେଶ ମିଶ୍ର, ଡକ୍ଟର ଧ୍ରୁବାନନ୍ଦ ବେହେରା ଓ ମୋତେ ମେଘଦୂତ ହୋଟେଲକୁ ମଧ୍ୟାହ୍ନ ଭୋଜନ ପାଇଁ ତାଙ୍କ ଗାଡିରେ ନେଇଥିଲେ । ଆମେ ପହଞ୍ଚିବାର କିଛି ସମୟ ପରେ ବୁବୁ ଓ ପୁଷ୍ମିତା ମେଘଦୂତ ହୋଟେଲ୍‌ରେ ପହଞ୍ଚିଲେ । ଖାଇ ସାରିଲା ପରେ ଆଣି ଘରେ ଛାଡିଦେଇ ଯାଇଥିଲେ ।

ସେପ୍‌ଟେମ୍ବର ମାସରେ ରୀତା ପାଇକ୍‌ରାୟ ମୋତେ ଫୋନ୍ କରି କହିଲେ, ଆପଣ ପ୍ଲାଜମା ଫିଜିକ୍ସ ପ୍ରାକ୍ଟିକାଲ୍‌ର ବାହ୍ୟ ପରୀକ୍ଷକ ଭାବେ ନିଯୁକ୍ତ ହୋଇଛନ୍ତି । ଆପଣ ୧୬ ତାରିଖ ଦିନ ୧୦ଟା ପୂର୍ବରୁ ପହଞ୍ଚିବେ ଏବଂ ୫ଟା ବେଳେ ଚାଲିଯିବେ । ମୁଁ ଏବଂ ପୁଷ୍ମିତା ଗୋଟିଏ ଗାଡିକରି ଗଲୁ । ମୁଁ ଫିଜିକ୍ସ ଡିପାର୍ଟମେଣ୍ଟରେ ପରୀକ୍ଷା କରିବାକୁ ଗଲି ଏବଂ ସେ ତାଙ୍କ ଭଉଣୀ ଘରକୁ ଗଲେ । ପରୀକ୍ଷା ସରିବା ପରେ ମୁଁ ତାଙ୍କ ଘରକୁ ଫୋନ୍ କରିଦେଲି । ପୁଷ୍ମିତା ଗାଡିନେଇ ପୁଣି ଫିଜିକ୍ସ ଡିପାର୍ଟମେଣ୍ଟକୁ ଆସିଲା ଏବଂ ତାପରେ ଆମେ ଭୁବନେଶ୍ୱର ଚାଲି ଆସିଲୁ । ସେପ୍‌ଟେମ୍ବର ୧୫ ତାରିଖରେ ବିଜ୍ଞାନ ପ୍ରଚାର ସମିତିର ଯେଉଁ ଅଧିବେଶନ

ହୋଇଥିଲା ସେଥିରେ ଗୋଟିଏ ପ୍ରବନ୍ଧ ପାଠକରିଥିଲି । ସେ ପ୍ରବନ୍ଧଟିର ନାମ ହେଉଛି "ଘରୋଇ ବୈଦ୍ୟୁତିକ ଉପକରଣର ଉପଯୁକ୍ତ ବ୍ୟବହାର" ।

## ବି.ଜେ.ବି ଇଂରାଜୀ ମିଡିୟମ ସ୍କୁଲ୍‌ର ବିଜ୍ଞାନ ମେଳାରେ ମୁଖ୍ୟ ଅତିଥି

ନଭେମ୍ବର ମାସ ୩ କିମ୍ବା ୪ ତାରିଖ ଦିନ ବି.ଜେ.ବି ଇଂଲିଶ୍ ମିଡିୟମ୍ ସ୍କୁଲର ଦୁଇଜଣ ଶିକ୍ଷକ ସକାଳେ ଆମ ଘରେ ପହଞ୍ଚିଲେ । ସେମାନେ କହିଲେ,ଆମ ସ୍କୁଲ୍‌ର ବିଜ୍ଞାନ ମେଳା ନଭେମ୍ବର ସାତ ତାରିଖରେ ଆରମ୍ଭ ହେଉଛି । ଆମ ସ୍କୁଲ୍‌ର ଅଧ୍ୟକ୍ଷ ଆପଣଙ୍କୁ ମୁଖ୍ୟ ଅତିଥି ରୂପେ ଯୋଗ ଦେବା ପାଇଁ ଇଚ୍ଛା କରୁଛନ୍ତି । ଆପଣ ରାଜି ହେଲେ ଆପଣଙ୍କ ପାଖକୁ ନିମନ୍ତ୍ରଣ ପତ୍ର ନେଇଆସିବୁ । ମୁଁ ରାଜି ହେଲି ଏବଂ ତାପର ଦିନ ନିମନ୍ତ୍ରଣ ପତ୍ରଟି ମୋତେ ଦେଇଗଲେ ଏବଂ କହିଲେ,ଆପଣ 'ପ୍ଲାଜମା' ଉପରେ କିଛି କହିବେ । ଆମେ ୭ ତାରିଖ ଦିନ ୧୦ଟା ବେଳେ ଗାଡି ନେଇକରି ଆସି ପହଞ୍ଚିବୁ । ଆପଣ ପ୍ରସ୍ତୁତ ହୋଇଥିବେ । ସାତ ତାରିଖ ଦିନ ୧୦ଟା ବେଳେ ସେମାନେ ଗାଡି ନେଇକରି ଆସି ଆମ ଘରେ ପହଞ୍ଚିଲେ ଏବଂ ସେଥିରେ ମୁଁ ସ୍କୁଲ୍‌କୁ ଗଲି । ପ୍ରଥମେ ମୁଁ ବିଜ୍ଞାନ ମେଳା ଘର ଭିତରେ ପଶିବା ପୂର୍ବରୁ ମୋତେ ନାଲି ଫିତା କାଟି ବିଜ୍ଞାନ ମେଳାକୁ ଉଦ୍‌ଘାଟନ କରିବାକୁ କହିଲେ । ତାପରେ ବିଜ୍ଞାନ ମେଳା କୋଠରୀରେ ଥିବା ମଞ୍ଚ ଉପରକୁ ଗଲି । ସେ ମଞ୍ଚରେ ସ୍କୁଲ୍‌ର ପୂର୍ବତନ ଅଧ୍ୟକ୍ଷ, ବର୍ତ୍ତମାନର ଅଧ୍ୟକ୍ଷ ଓ ଡକ୍ଟର ଗଙ୍ଗାଧର ସାହୁ ଏବଂ ଆଉ ଜଣେ କର୍ମକର୍ତ୍ତା ଉପସ୍ଥିତ ଥିଲେ । ସଭା ଆରମ୍ଭ ପରେ ସଭାପତି ମୋତେ ମୋର ବକ୍ତବ୍ୟ ଦେବାକୁ ଅନୁରୋଧ କଲେ । ମୋ ବକ୍ତବ୍ୟର ସାରାଂଶ ହେଲା: ପ୍ଲାଜମା କଣ? ଏହାକୁ କେବେ ଏବଂ କିଏ ଉଦ୍‌ଭାବନ କରିଥିଲେ? ପ୍ଲାଜମା କି ପ୍ରକାର ଲୋକହିତକର କାର୍ଯ୍ୟରେ ଲାଗେ ? ତାହା ବୁଝାଇ କହିଲି । ସଭାକାର୍ଯ୍ୟ ଶେଷ ହେବା ପରେ ସ୍କୁଲ୍‌ର ଅଧ୍ୟକ୍ଷ ମୋତେ ପିଲାମାନେ କରିଥିବା ପରୀକ୍ଷା ଗୁଡିକ ଦେଖାଇବାକୁ ନେଇଗଲେ । ପରୀକ୍ଷା ଗୁଡିକ ଦେଖି ସାରିଲା ପରେ ମୋତେ ଲାଗିଲା ପରୀକ୍ଷା ଗୁଡିକ ଗତାନୁଗତିକ ଭାବେ କରାଯାଇଛି । କିଛି ସେଭଳି ନୂଆ ଦେଖିଲା ଭଳି ନ ଥିଲା । ସାମାନ୍ୟ ଜଳଯୋଗ ପରେ ସେମାନେ ମୋତେ ଆଣି ଘରେ ଛାଡି ଦେଇ ଗଲେ ।

ଅକ୍ଟୋବର ୨୭ ତାରିଖରେ ବିଜ୍ଞାନ ପ୍ରଚାର ସମିତିର ପ୍ରଥମ ବାର୍ଷିକ ଅଧିବେଶନ ଉତ୍କଳ ବିଶ୍ୱବିଦ୍ୟାଳୟର ପଦାର୍ଥ ବିଜ୍ଞାନ ବିଭାଗ, ବାଣୀବିହାର ଠାରେ ହେବାର ବନ୍ଦୋବସ୍ତ ହୋଇଥିଲା । ସେଥିରେ ମୁଖ୍ୟ ଅତିଥି ରୂପେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର ପାଣ୍ଡବ ନାୟକ, ସମ୍ମାନିତ ଅତିଥି ରୂପେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଭାବି କୁଳପତି ପ୍ରଫେସର ସୂର୍ଯ୍ୟ ନାରାୟଣ ବେହେରା ଓ ସଂସ୍କୃତ ବିଶ୍ୱବିଦ୍ୟାଳୟ, ପୁରୀର ପୂର୍ବତନ କୁଳପତି ଏବଂ ଭୁବନେଶ୍ୱର ବିଜ୍ଞାନ ପ୍ରଚାର ସମିତିର ଆଜୀବନ ସଭ୍ୟ ପ୍ରଫେସର ଚନ୍ଦ୍ରଶେଖର ଷଡଙ୍ଗୀ ସଭାପତି ରୂପେ ନିମନ୍ତ୍ରିତ ହୋଇଥିଲେ । ସେଦିନ ସକାଳୁ ମୁଁ ଓ ଡକ୍ଟର ସୂର୍ଯ୍ୟମଣୀ ବେହେରା ପ୍ରାୟ ସାଢେ ଆଠଟା ସମୟରେ ପଦାର୍ଥ ବିଜ୍ଞାନ ବିଭାଗରେ ଉପସ୍ଥିତ ହୋଇଥିଲୁ । ଦିନ ୯ଟା

ବେଳେ ବିଜ୍ଞାନ ପ୍ରଚାର ସମିତିର ସଦସ୍ୟ , ସଦସ୍ୟା ବୃନ୍ଦ ଓ ବିଜ୍ଞାନ ପ୍ରେମୀ ବନ୍ଧୁ ଗଣଙ୍କର ପଞ୍ଜିକରଣ ହୋଇଥିଲା । ଦିନ ୧୦ଟା ବେଳେ ସଭାପତି ସ୍ୱାଗତ ଭାଷଣ ଦେଇ ସଭା କାର୍ଯ୍ୟ ଆରମ୍ଭ କଲେ ଏବଂ ମୁଖ୍ୟ ଅତିଥିଙ୍କୁ ପ୍ରଦୀପ ପ୍ରଜ୍ୱଳନ ପାଇଁ ଆମନ୍ତ୍ରଣ କଲେ । ପ୍ରାୟ ୧୦ଟା ବେଳେ ବାଣୀ ବିହାରର ପ୍ରଫେସର ନିରଞ୍ଜନ ବାରିକ୍ ସ୍ୱାଗତ ଭାଷଣ ପ୍ରଦାନ କଲେ ଏବଂ ଅତିଥି ମାନଙ୍କର ପରିଚୟ ପ୍ରଦାନ କରିଥିଲେ । ସଂପାଦକ ଡକ୍ଟର ସୂର୍ଯ୍ୟମଣୀ ବେହେରା ଏକବର୍ଷ ପୂର୍ବର ବିବରଣୀ ଉପସ୍ଥାପନ କରିଥିଲେ । ପ୍ରଫେସର ସୂର୍ଯ୍ୟ ନାରାୟଣ ବେହେରା ସ୍ମରଣୀକାକୁ ଉନ୍ମୋଚନ କରିଥିଲେ । ପ୍ରାୟ ୧୦.୩୦ରେ ବିଜ୍ଞାନର ଆଭିମୁଖ୍ୟ ପ୍ରସଙ୍ଗ ଉପରେ ପ୍ରବନ୍ଧ ପାଠ କରାଯାଇ ଥିଲା । ପ୍ରଥମେ ଡକ୍ଟର ଚିତ୍ତରଞ୍ଜନ ମିଶ୍ର ଦେଶର ପ୍ରଗତି ପାଇଁ ସାମ୍ପ୍ରତିକ ବିଜ୍ଞାନ ଶିକ୍ଷା ଓ ବୈଜ୍ଞାନିକ ଗବେଷଣାର ଆଭିମୁଖ୍ୟ ଉପରେ ପ୍ରବନ୍ଧ ପାଠ କରିଥିଲେ । ଦ୍ୱିତୀୟ ବକ୍ତା ହିସାବରେ ମୁଁ 'ବିଜ୍ଞାନ ଶିକ୍ଷାର ଉନ୍ନତି' ପାଇଁ କେତେକ ପ୍ରସ୍ତାବ ଉପରେ ପ୍ରବନ୍ଧ ପାଠ କରିଥିଲି । ମୋ ପ୍ରବନ୍ଧର ସାରମର୍ମ ହେଲା ଭାରତ ସ୍ୱାଧିନ ହେବା ପରଠାରୁ କେବେ ହେଲେ ସରକାର ବିଜ୍ଞାନ ଶିକ୍ଷାର ମାନ ଉନ୍ନତି ପାଇଁ ସେପରି କିଛି ଉଚିତ୍ ପଦକ୍ଷେପ ଗ୍ରହଣ କରି ନାହାନ୍ତି ।

**ପ୍ରାୟୋଗିକ ବିଜ୍ଞାନ ଶିକ୍ଷା:** ବିଜ୍ଞାନ ଶିକ୍ଷାର ପ୍ରାୟୋଗିକ ଜ୍ଞାନ ଗୋଟିଏ ବିଶେଷ ଅଙ୍ଗ । ପ୍ରାୟୋଗିକ ଜ୍ଞାନ କୌଶଳ ଦେଶର ଉନ୍ନତି ପାଇଁ ନିତାନ୍ତ ପ୍ରୟୋଜନ । ପ୍ରାୟୋଗିକ ପରୀକ୍ଷାର ମାନ ସ୍ୱାଧିନତା ପରଠାରୁ ଧିରେ ଧିରେ ହ୍ରାସ ପାଉଛି । ତାର କାରଣ ହେଲା, କୌଣସି ପ୍ରତିଯୋଗିତା ମୂଳକ ପରୀକ୍ଷା କିମ୍ବା ସାକ୍ଷାତକାର ସମୟରେ ପ୍ରାୟୋଗିକ ଜ୍ଞାନ ସମ୍ବନ୍ଧିୟ କୌଣସି ପ୍ରଶ୍ନ ପଚରା ଯାଏନାହିଁ । ଏପରି କି ଅଧ୍ୟାପକ ନିଯୁକ୍ତି ସମୟରେ ମଧ୍ୟ ସେମାନଙ୍କ ପ୍ରାୟୋଗିକ ଜ୍ଞାନ ଉପରେ ରାଜ୍ୟ ଲୋକସଭା ଆୟୋଗ ମଧ୍ୟ କୌଣସି ପରୀକ୍ଷା ନିରୀକ୍ଷା କରନ୍ତି ନାହିଁ ।

ଭାରତ ଓ ରାଜ୍ୟ ସରକାରଙ୍କୁ ପ୍ରତ୍ୟେକ ପ୍ରତିଯୋଗିତା ମୂଳକ ପରୀକ୍ଷାର (ଆଇ.ଏ.ଏସ୍. , ଓ.ଏ.ଏସ୍ ଏବଂ ବ୍ୟାଙ୍କ ପରୀକ୍ଷା) ପ୍ରଶ୍ନ ପତ୍ରରେ ନିର୍ଦ୍ଦିଷ୍ଟ ପରିମାଣର ପ୍ରାୟୋଗିକ ପ୍ରଶ୍ନ ରଖିବାକୁ ଅନୁରୋଧ କରାଯିବ ।

ଏସବୁ ପ୍ରସ୍ତାବକୁ ଅନୁସରଣ କଲେ ଦେଶରେ ଅନେକ ଛାତ୍ର ଅଛନ୍ତି, ଯେଉଁମାନେ କି ଅଧ୍ୟାପକ କିମ୍ବା ଗବେଷକ ହେବାକୁ ଇଚ୍ଛା କରନ୍ତି, ସେମାନେ ଉପକୃତ ହେବେ ଏବଂ ଦେଶର ମଧ୍ୟ ଉପକାର ହେବ । ସରକାର ମଧ୍ୟ ବହୁତ ଅପବ୍ୟୟରୁ ରକ୍ଷା ପାଇବେ । ସ୍ନାତକ ଛାତ୍ରମାନେ ଅନୁପ୍ରାଣିତ ହୋଇ ସ୍ନାତକ ଶ୍ରେଣୀରେ ଅଧ୍ୟୟନ ବେଳେ ଭଲ ଭାବରେ ପଢ଼ାପଢ଼ି କରିବେ । ଏହା ଫଳରେ ବିଜ୍ଞାନ ଶିକ୍ଷାର ମାନ ଉନ୍ନତି ହେବ ।

ତୃତୀୟ ବକ୍ତା ଡକ୍ଟର ଗୋପାଳ ଚନ୍ଦ୍ର ଦାଶ ସ୍ୱାସ୍ଥ୍ୟ ଏବଂ ପରିମଳ ସୁରକ୍ଷା ପାଇଁ ବିଜ୍ଞାନର ଆଭିମୁଖ୍ୟ ସମ୍ବନ୍ଧରେ ପ୍ରବନ୍ଧ ପାଠ କରିଥିଲେ । ଚତୁର୍ଥ ବକ୍ତା ଇଂଜିନିୟର ପ୍ରିୟବ୍ରତ ଦାଶ 'ସଂସ୍କାର ଓ ଅନ୍ଧବିଶ୍ୱାସ ଦୂରୀକରଣ ପାଇଁ ବିଜ୍ଞାନର ଭୂମିକା' ଉପରେ ତାଙ୍କର ବକ୍ତବ୍ୟ

ପ୍ରଦାନ କରିଥିଲେ । ପଞ୍ଚମ ବକ୍ତା ହିସାବରେ ଡକ୍ଟର ଶିବ ପ୍ରସାଦ ଅଧିକାରୀ 'ବାୟୋଟେକ୍‌ନୋଲୋଜି ଶିକ୍ଷା ଓ ଓଡିଶା' ଉପରେ ତାଙ୍କର ବକ୍ତବ୍ୟ ପ୍ରଦାନ କରିଥିଲେ । ଶେଷ ବକ୍ତା ହିସାବରେ ଡକ୍ଟର ସୂର୍ଯ୍ୟମଣୀ ବେହେରା ବୈଜ୍ଞାନିକ ଦୃଷ୍ଟି କୋଣରୁ 'ଜନ ସଂଖ୍ୟା ଓ ବିକାଶ ଶିକ୍ଷାର' ଆବଶ୍ୟକତା ଉପରେ ଆଲୋଚନା କରିଥିଲେ । ମୁଖ୍ୟ ଅତିଥି ପ୍ରଫେସର ପାଣ୍ଡବ ନାୟକ ତାଙ୍କର ଭାଷଣ ଦେଇଥିଲେ । ତାପରେ ସମ୍ମାନିତ ଅତିଥି ପ୍ରଫେସର ସୂର୍ଯ୍ୟ ନାରାୟଣ ବେହେରା ଅଭିଭାଷଣ ଦେଇଥିଲେ ।

ପରବର୍ତ୍ତୀ କାର୍ଯ୍ୟକ୍ରମ ଥିଲା : ଜନପ୍ରିୟ ବିଜ୍ଞାନ ଲେଖକ ସମ୍ମାନ ଓ ବୟସ୍କ ବୈଜ୍ଞାନିକମାନଙ୍କୁ ସମ୍ବର୍ଦ୍ଧନା । ୨୫ ବର୍ଷରୁ କମ୍ ବୟଷ୍କ ଜନପ୍ରିୟ ବିଜ୍ଞାନ ଲେଖକଙ୍କ ମଧ୍ୟରେ କୁମାରୀ ଅମାୟିକା ତ୍ରିପାଠୀଙ୍କୁ ସମ୍ମାନ ପ୍ରଦାନ କରାଯାଇ ଥିଲା । ଡାକ୍ତର ଗୋପାଳ ଚନ୍ଦ୍ର ଦାଶଙ୍କୁ ୨୫ ବର୍ଷରୁ ଉର୍ଦ୍ଧ୍ୱ ଜନପ୍ରିୟ ବିଜ୍ଞାନ ଲେଖକ ହିସାବରେ ସମ୍ମାନ ପ୍ରଦାନ କରାଯାଇ ଥିଲା । ନିମ୍ନଲିଖିତ ବୟସ୍କ ବୈଜ୍ଞାନିକମାନଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇ ଥିଲା । ପ୍ରତ୍ୟେକଙ୍କୁ ଗୋଟିଏ ମାନପତ୍ର ଓ ଗୋଟିଏ ସାଲ ପ୍ରଦାନ କରାଯାଇ ଥିଲା । :

୧.ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର ।
୨.ପ୍ରଫେସର ବସନ୍ତ କୁମାର ବେହୁରା ।
୩.ପ୍ରଫେସର ପତିତପାବନ ମିଶ୍ର ।
୪.ଇଞ୍ଜିନିୟର. ପ୍ରିୟବ୍ରତ ଦାଶ ।

ଶେଷରେ ସଭାପତି ପ୍ରଫେସର ଶ୍ରୀ ଚନ୍ଦ୍ରଶେଖର ଷଡଙ୍ଗୀ ଅଭିଭାଷଣ ଦେଇଥିଲେ । ଡକ୍ଟର ନରେଶ ଚନ୍ଦ୍ର ମିଶ୍ର ଧନ୍ୟବାଦ ଅର୍ପଣ କରିଥିଲେ । ତାପରେ ସଭା ଶେଷ ହୋଇଥିଲା ।

## ପ୍ରଫେସର ପତିତପାବନ ମିଶ୍ରଙ୍କୁ ବିଜ୍ଞାନ ପ୍ରଚାର ସମିତି, ଭୁବନେଶ୍ୱରର ଅଭିନନ୍ଦନ

ମୋତେ ଯେଉଁ ମାନପତ୍ର ଦିଆଯାଇ ଥିଲା ସେଥିରେ ନିମ୍ନମତେ ଲେଖାଯାଇ ଥିଲା ।:

**ବିଜ୍ଞାନ ପ୍ରଚାର ସମିତି, ଭୁବନେଶ୍ୱର ଶାଖା**

ପ୍ରଥମ ବାର୍ଷିକ ଅଧିବେଶନ

ତା ୨୭.୧୦.୦୨

**ଅଭିନନ୍ଦନ**

**ଡକ୍ଟର ପତିତପାବନ ମିଶ୍ର**

ହେ ଲବ୍ଧ ପ୍ରତିଷ୍ଠ ଶିକ୍ଷାବିତ୍, ସ୍ୱନାମଧନ୍ୟ ଗବେଷକ ଓ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ପ୍ଲାଜମା ପଦାର୍ଥ ବିଜ୍ଞାନି ପ୍ରଫେସର ମିଶ୍ର ମହୋଦୟ......... ସମୀପେଷୁ ।

ଆପଣ ୧୯୩୨ ମସିହା ଜୁଲାଇ ମାସ ଏକ ତାରିଖ ଦିନ ଏ ଧରାଧାମରେ ଅବତୀର୍ଣ୍ଣ ହୋଇଥିଲେ । ବାଲ୍ୟକାଳରୁ ଆପଣଙ୍କ ପ୍ରଚଣ୍ଡ ମେଧାଶକ୍ତି ତା ରୁପ ଗାରିମାକୁ ଚତୁର୍ଦ୍ଦିଗରେ ପ୍ରକଟିତ କରିଥିଲା । ୧୯୫୫ ମସିହାରେ ଆପଣ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପଦାର୍ଥବିଜ୍ଞାନରେ

ସ୍ନାତକୋତ୍ତର ଡିଗ୍ରୀ ଲାଭ କଲେ । ତାପରେ ଆରମ୍ଭ ହେଲା ଆପଣଙ୍କ ଘଟଣା ବହୁଳ ଅବିସ୍ମରଣୀୟ କର୍ମମୟ ଜୀବନ । "କର୍ମ ହିଁ ଉପାସନା" ତାହା ଆପଣଙ୍କ ଜୀବନର ପଲ୍ଲବିତ ଉପବନର ମହକରୁ ପ୍ରକଟିତ ହୋଇଥିଲା । ଅଧ୍ୟାପନା ଓ ଗବେଷଣା ଆପଣଙ୍କ ବୃତ୍ତି ଓ ପ୍ରବୃତ୍ତିକୁ ଚରିତାର୍ଥ କଲା ଓ ଆପଣ ୧୯୭୦ ମସିହାରେ ଯଶସ୍ୱୀ ଗବେଷକ ପଦ୍ମଭୂଷଣ ଡଃ. ତ୍ରିଲୋଚନ ପ୍ରଧାନଙ୍କ ତତ୍ତ୍ୱାବଧାନରେ ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି ଡିଗ୍ରୀ ଲାଭ କଲେ । ରେଭେନ୍ସା କଲେଜ ଓ ସାମନ୍ତ ଚନ୍ଦ୍ରଶେଖର କଲେଜରେ ଉଲ୍ଲେଖନୀୟ ଭାବେ ଅଧ୍ୟାପକ ଓ ପ୍ରାଧ୍ୟାପକ ଜୀବନ ଅତିବାହିତ କଲାପରେ ୧୯୮୨ ମସିହାରୁ ୧୯୮୮ ମସିହା ପର୍ଯ୍ୟନ୍ତ ଆପଣ ରେଭେନ୍ସା କଲେଜର ପଦାର୍ଥବିଜ୍ଞାନ ବିଭାଗର ପ୍ରଫେସର ପଦବୀ ବିମଣ୍ଡିତ କରିଥିଲେ । ୧୯୮୮ ମସିହାରୁ ୧୯୯୦ ମସିହା ପର୍ଯ୍ୟନ୍ତ ଆପଣ ଖଲ୍ଲିକୋଟ କଲେଜର ଅଧ୍ୟକ୍ଷ ଭାବେ ଅତ୍ୟନ୍ତ ଦକ୍ଷତାର ସହିତ ନିଜର ଗୁରୁ ଦାୟିତ୍ୱ ସମ୍ପାଦିତ କରିଥିଲେ । ବିଶ୍ୱବିଦ୍ୟାଳୟ ମଞ୍ଜୁରି କମିଶନ୍, ଭାରତ ସରକାରଙ୍କ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ବିଭାଗ ତଥା ନ୍ୟୁକ୍ଲିୟର ସାଇନ୍‌ସ ରିସର୍ଚ୍ଚ ବୋର୍ଡର ଆର୍ଥିକ ଅନୁଦାନ ଲାଭ କରି ଆପଣ ପ୍ଲାଜମା ଗବେଷଣା ପ୍ରକଳ୍ପରେ ଉଚ୍ଚତର ଗବେଷଣା କରିଥିଲେ । ଆପଣ ପ୍ଲାଜମା ସାଇନ୍‌ସ ଉପରେ ଶୀତକାଳୀନ ବିଦ୍ୟାଳୟ ଓ ନାନାଦି କର୍ମଶାଳାମାନ ଦକ୍ଷତାର ସହିତ ଆୟୋଜନ କରିଥିଲେ । ଆପଣଙ୍କର ଦିଗ୍‌ଦର୍ଶନ ଓ ତତ୍ତ୍ୱାବଧାନରେ ୬ ଜଣ ଛାତ୍ର ଛାତ୍ରୀ ପ୍ଲାଜମା ବିଜ୍ଞାନ ଉପରେ ଗବେଷଣା କରି ପିଏଚ୍.ଡି ଡିଗ୍ରୀ ଲାଭ କରିଛନ୍ତି । ଆପଣ ବହୁ ସେମିନାର, ସିମ୍ପୋଜିଅମ୍ ଓ ଗ୍ରୀଷ୍ମ ବିଦ୍ୟାଳୟ ମାନଙ୍କରେ ଯୋଗ ଦେଇ ବହୁ ଅଭିଜ୍ଞତାର ସ୍ମାରକ ବହନ କରିଛନ୍ତି । ବହୁ ବିଶ୍ୱବିଦ୍ୟାଳୟକୁ ଆପଣ ପରିଦର୍ଶକ ଅଧ୍ୟାପକ ଭାବେ ନିମନ୍ତ୍ରିତ ହୋଇ ପ୍ଲାଜମା ବିଜ୍ଞାନ ଉପରେ ସାରଗର୍ଭକ ଅଭିଭାଷଣମାନ ପ୍ରଦାନ କରିଛନ୍ତି । ପ୍ଲାଜମା ବିଜ୍ଞାନ କ୍ଷେତ୍ରରେ ଆପଣଙ୍କର ଅନବଦ୍ୟ ଅବଦାନ ଆପଣଙ୍କୁ ଜଣେ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ସ୍ୱନାମଧନ୍ୟ ଅଧ୍ୟାପକର ମର୍ଯ୍ୟାଦା ପ୍ରଦାନ କରିଛି । ଆପଣ ଦେଶ ବିଦେଶର ବିଭିନ୍ନ ବୈଜ୍ଞାନିକ ଜରନାଲ ମାନଙ୍କରେ ୨୦ଟି ଗବେଷଣାତ୍ମକ ପ୍ରବନ୍ଧ ପ୍ରକାଶ କରି ପ୍ଲାଜମା ବିଜ୍ଞାନ କ୍ଷେତ୍ରରେ ମୌଳିକ ଗବେଷଣାର ପଥ ଉନ୍ମୋଚନ କରି ପାରିଥିଲେ । ଆପଣ ଆଠ ଖଣ୍ଡ ବିଜ୍ଞାନ ଭିତ୍ତିକ ପୁସ୍ତକ ରଚୟିତା । ଆପଣ ବହୁ ଜ୍ଞାନାଶ୍ରୟୀ ଅନୁଷ୍ଠାନର ମାନ୍ୟବର ସଭ୍ୟହୋଇ ସେ ସବୁ ଅନୁଷ୍ଠାନର ମାନ ମର୍ଯ୍ୟାଦାର ଉତ୍ତରୋତ୍ତର ଅଭିବୃଦ୍ଧିରେ ଯଥେଷ୍ଟ ସହାୟକ ହୋଇଛନ୍ତି ।

ହେ ମହାନୁଭବ ।

ବିଜ୍ଞାନ ପ୍ରଚାର ସମିତିର ଭୁବନେଶ୍ୱର ଶାଖା ତାର ପ୍ରଥମ ବାର୍ଷିକ ଉତ୍ସବରେ ଆପଣଙ୍କ ପରି ମହାନ ପ୍ଲାଜମା ବିଜ୍ଞାନୀଙ୍କୁ ସମ୍ବର୍ଦ୍ଧିତ କରି ନିଜକୁ ଗୌରବାନ୍ୱିତ ମନେ କରୁଛି । ଆପଣ ଦୀର୍ଘଜୀବୀ ହୋଇ ବିଜ୍ଞାନର ସେବାରେ ନିଜକୁ ଉତ୍ସର୍ଗମୟ କରନ୍ତୁ । ପତିତପାବନଙ୍କ ପାଖରେ ଆମର ଏତିକି କାମନା, ଏତିକି ବାସନା ।

| | | |
|---|---|---|
| ଚନ୍ଦ୍ରଶେଖର ଷଡଙ୍ଗୀ | ପାଣ୍ଡବ ନାୟକ | ସୂର୍ଯ୍ୟନାରାୟଣ ବେହେରା |
| ସଭାପତି | ମୁଖ୍ୟ ଅତିଥି | ସମ୍ମାନିତ ଅତିଥି |

୨୦୦୨ ମସିହା ନଭେମ୍ବର ୨୪ ତାରିଖରେ ଓଡିଶା ଫିଜିକାଲ୍ ସୋସାଇଟ୍‌ର ସମ୍ପାଦକ ଡକ୍ଟର ଲମ୍ବୋଦର ପ୍ରସାଦ ସିଂ ମୋତେ ଜଣାଇଥିଲେ, ଯେ ଉତ୍କଳ ବିଶ୍ୱବିଦ୍ୟାଳୟର ଫିଜିକ୍ସ ଡିପାର୍ଟମେଣ୍ଟରେ ଗୋଟିଏ କାର୍ଯ୍ୟକାରୀ ସଭାର ଆୟୋଜନ ହେଉଛି । ଆପଣ କାର୍ଯ୍ୟକାରୀ ସମିତିର ସଭ୍ୟ ନ ଥିଲେ ମଧ୍ୟ ଆପଣ ପାଠ୍ୟକ୍ରମରେ ଯେଉଁସବୁ ପରୀକ୍ଷା ରଖାଯିବ ତାହା ନିର୍ଦ୍ଧାରଣ କରାଯିବା ପାଇଁ ଯୋଗଦେଇ ଆମକୁ ସାହାଯ୍ୟ କରିବେ । ସଭା ସକାଳ ୯ଟା ବେଳେ ଆରମ୍ଭ ହେବ । ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା ଅଛି ।

୨୪ ତାରିଖ ଦିନ ୯ଟା ବେଳେ ସଭାକାର୍ଯ୍ୟ ଆରମ୍ଭ ହେଲା । ପ୍ରାୟ ୨ଟା ବେଳେ ସଭାକାର୍ଯ୍ୟ ସରିଗଲା । ୩ଟା ସମୟକୁ ମଧ୍ୟାହ୍ନ ଭୋଜନ ସରିଗଲା ଏବଂ ତାପରେ ମୁଁ ଘରକୁ ଚାଲି ଆସିଲି । ନଭେମ୍ବର ୧୬ ତାରିଖ ଦିନ ବିଜ୍ଞାନ ପ୍ରଚାର ସମିତିର ଗୋଟିଏ ଅଧିବେଶନ ହୋଇଥିଲା ।

## ଉତ୍ତରାୟଣୀ ବିଦ୍ୟାପୀଠରେ ବିଜ୍ଞାନ ମେଳାରେ ମୁଖ୍ୟ ବକ୍ତା ଭାବରେ ଯୋଗଦାନ

ସେହି ଦିନ ସାତ ଶଙ୍ଖ, ଉତ୍ତରାୟଣୀ ବିଦ୍ୟାପୀଠର ପ୍ରଧାନଶିକ୍ଷକ ମୋତେ ୨୬ ତାରିଖରେ ତାଙ୍କ ସ୍କୁଲ୍‌ରେ ହେଉଥିବା ବିଜ୍ଞାନ ମେଳାରେ ମୁଖ୍ୟ ବକ୍ତା ହିସାବରେ ଯୋଗ ଦେବା ପାଇଁ ନିମନ୍ତ୍ରଣ କରିଥିଲେ । ସେହି ସମୟରେ ବିଜ୍ଞାନ ପ୍ରଚାର ସମିତିର ସମ୍ପାଦକ ଡକ୍ଟର ସୂର୍ଯ୍ୟମଣୀ ବେହେରାଙ୍କୁ ମଧ୍ୟ ସମ୍ମାନାସ୍ପଦ ବକ୍ତା ଭାବରେ ନିମନ୍ତ୍ରିତ କରିଥିଲେ । ସେଠାରେ ସ୍ଥିର ହେଲା ଯେ ମୁଁ ସୂର୍ଯ୍ୟମଣୀ ବାବୁଙ୍କ ଗାଡିରେ ସାତଶଙ୍ଖ ଯିବି । ୨୬ ତାରିଖ ପ୍ରାୟ ଦିନ ୨ଟା ବେଳେ ସେ ଆମ ଘରକୁ ଆସିଲେ ଏବଂ ମୁଁ ତାଙ୍କ ସାଙ୍ଗରେ ସାତଶଙ୍ଖ ଗଲି । ଆମେ ସାତଶଙ୍ଖରେ ପହଞ୍ଚି ଉତ୍ତରାୟଣୀ ବିଦ୍ୟାପୀଠରେ ଆୟୋଜିତ ବିଜ୍ଞାନ ମେଳାରେ ଦର୍ଶାଯାଇଥିବା ପରୀକ୍ଷାଗୁଡିକୁ ଦେଖିଲୁ । ସେ ପରୀକ୍ଷାଗୁଡିକ ପିଲାମାନେ ଏବଂ ତାଙ୍କ ସହଯୋଗୀ ଶିକ୍ଷକମାନେ ଭଲଭାବରେ ଆୟୋଜନ କରିଥିଲେ । କେତେ ଗୁଡିଏ ନୂଆ ନୂଆ ପରୀକ୍ଷା ମଧ୍ୟ କରି ଦେଖାଇ ଥିଲେ । ଆମକୁ ପରୀକ୍ଷା ଗୁଡିକ ଦେଖିବା ପାଇଁ ପ୍ରାୟ ଏକ ଘଣ୍ଟାରୁ ଦେଢ ଘଣ୍ଟା ସମୟ ଲାଗିଗଲା । ସେଗୁଡିକ ଦେଖି ସାରିଲା ପରେ ସ୍କୁଲ୍ ତରଫରୁ ସାମାନ୍ୟ ଜଳଯୋଗର ବ୍ୟବସ୍ଥା ହୋଇଥିଲା । ସେତେବେଳକୁ ପିପିଲି ବିଧାୟକ ଏବଂ ଓଡିଶା ବିଧାନ ସଭାର ମୁଖ୍ୟ ସଚେତକ ଶ୍ରୀଯୁକ୍ତ ପ୍ରଦୀପ ମହାରଥୀ ପହଞ୍ଚି ଯାଇଥିଲେ । ସେ ପିଲାମାନଙ୍କର ପରୀକ୍ଷାଗୁଡିକ ବୁଲି ଦେଖିଥିଲେ । ସେ ଦେଖି ସାରିଲା ପରେ ସଭାକାର୍ଯ୍ୟ ଆରମ୍ଭ ହେଲା । ଉତ୍ତରାୟଣୀ ସ୍କୁଲ୍‌ର ପ୍ରଧାନଶିକ୍ଷକ ଅତିଥିମାନଙ୍କର ପରିଚୟ ପ୍ରଦାନ କରିସାରିଲା ପରେ ଶ୍ରୀଯୁକ୍ତ ପ୍ରଦୀପ ମହାରଥୀଙ୍କୁ ସଭାପତି ଆସନ ଗ୍ରହଣ କରିବାକୁ ଅନୁରୋଧ କଲେ । ସେ ତାଙ୍କ ଭାଷଣରେ ବୁଢା ଅଜାଙ୍କ ସମୟର ଚଳଣୀ ଓ ସେତେବେଳର ପାରିପାର୍ଶ୍ୱିକ ଅବସ୍ଥା ସହ ବର୍ତ୍ତମାନର ତୁଳନାକରି ବହୁତ ଗୁଡିଏ ଉପାଦେୟ ତଥ୍ୟ ଉପସ୍ଥାପନ କରିଥିଲେ । ସେ ପ୍ରାୟ

ଏକ ଘଣ୍ଟା ଭାଷଣ ଦେବା ପରେ ମୋତେ କହିବାକୁ ଅନୁରୋଧ କଲେ । ମୁଁ ପ୍ରାୟ ୩୦ ମିନିଟ୍ ପର୍ଯ୍ୟନ୍ତ ବକ୍ତୃତା ଦେଲି । ମୋ ବକ୍ତବ୍ୟର ସାରମର୍ମ ହେଲା, ଗବେଷଣା କରିବା କିଛି ବଡ କଥା ନୁହେଁ । ପ୍ରତ୍ୟେକ ଲୋକ ତାର ଜାଣତରେ ବା ଅଜାଣତରେ କିଛି ନା କିଛି ଗବେଷଣା କରୁଥାଏ । ତେଣୁ ଯେକୌଣସି ଲୋକ ଗବେଷଣା କରିପାରିବ ଏବଂ ନୂଆ ନୂଆ ତଥ୍ୟ ପ୍ରକାଶ କରିପାରିବ ବୋଲି କହିଲି । ଉଦାହରଣ ସ୍ୱରୂପ ମୁଁ ସାର ଆଇଜାକ୍ ନିଉଟନ୍, ମାଇକେଲ୍ ଫାରାଡେ, ଆଲବର୍ଟ ଆଇନ୍‌ଷ୍ଟାଇନ୍ ଓ ମହା ମହୋପାଧ୍ୟାୟ ସାମନ୍ତ ଚନ୍ଦ୍ରଶେଖର ପ୍ରଭୃତି ବ୍ୟକ୍ତିମାନେ କିପରି ଗବେଷଣା କରି ନୂଆ ନୂଆ ତଥ୍ୟ ବିଜ୍ଞାନ ଜଗତକୁ ଦେଇଥିଲେ ସେ କଥା ପିଲାଙ୍କୁ ବୁଝାଇଲି । ତୁମେ ମଧ୍ୟ ଚେଷ୍ଟା କଲେ ଗବେଷଣା କରି ନୂଆ ନୂଆ ତଥ୍ୟ ପ୍ରକାଶ କରି ପାରିବ ବୋଲି କହିଲି । ତାପରେ ମୁଁ ପିଲାମାନଙ୍କୁ ଆସନ୍ତା ବର୍ଷ ବିଜ୍ଞାନ ମେଳାକୁ ୨/୩ଟି ନୂଆ ପରୀକ୍ଷା କରି ଦେଖାଇବାକୁ କହିଲି ଏବଂ ସ୍କୁଲ୍‌ର ବିଜ୍ଞାନ ଶିକ୍ଷକମାନଙ୍କୁ ପୁରୁଣା ପରୀକ୍ଷା ସବୁ ବିଜ୍ଞାନ ମେଳାରେ ପିଲାମାନଙ୍କୁ ଦେଖାଇବା ପାଇଁ ବାରଣ କଲି । ମୁଁ କହି ସାରିଲା ପରେ ଡକ୍ଟର ସୂର୍ଯ୍ୟମଣୀ ବେହେରାଙ୍କୁ ତାଙ୍କର ବକ୍ତବ୍ୟ ପ୍ରଦାନ କରିବା ଲାଗି ସଭାପତି ଅନୁରୋଧ କଲେ । ତାଙ୍କ କଥାର ସାରମର୍ମ ଥିଲା, ବିଜ୍ଞାନ ମେଳା କିପରି ଆରମ୍ଭ ହେଲା ? ବିଭିନ୍ନ ଦେଶମାନଙ୍କରେ ଏହା କିପରି ହୁଏ ? ଇତ୍ୟାଦି ବିଷୟ ସଭା ଶେଷରେ ଯେଉଁ ପିଲାମାନଙ୍କର ପରୀକ୍ଷା ଉଚ୍ଚ କୋଟୀର ହୋଇଥିଲା, ସେମାନଙ୍କ ନାମ ଜଣେ ଶିକ୍ଷକ ପଢି ଶୁଣାଇ ଥିଲେ । ସେମାନଙ୍କୁ କୁହାଗଲା ପରେ ତୁମର ପ୍ରମାଣ ପତ୍ର ଏବଂ ପୁରସ୍କାର ନେଇଯିବ । ସଭା ଶେଷ ହେଲାପରେ ଆମେ ଭୁବନେଶ୍ୱର ଫେରି ଆସିଲୁ । ପ୍ରାୟ ରାତି ୮ଟା ବେଳେ ଭୁବନେଶ୍ୱରରେ ପହଁଞ୍ଚିଲୁ ।

୨୦୦୨ ମସିହା ଶେଷ ଆଡକୁ ବୁବୁ ମୋତେ ଜଣାଇଲା, ତମର ଆମେରିକାରୁ ଗୋଟିଏ ଫୋନ୍ ଆସିଛି । ମୁଁ ସାଙ୍ଗେ ସାଙ୍ଗେ ଫୋନ୍ ଧରିଲି । ଫୋନ୍‌ରେ କହୁଥିବା ଲୋକର ସ୍ୱର ବାରି ପାରିଲି ନାହିଁ । କିଏ କହୁଛନ୍ତି ପଚାରିବାରୁ ଉତ୍ତର ଆସିଲା ମୁଁ ସର୍ବେଶ୍ୱର କହୁଛି । ଫୋନ୍‌ଟି ପାଇ ମୋତେ ବହୁତ ଖୁସି ଲାଗିଲା । କାରଣ ସେ ହେଉଛନ୍ତି ୫୫ ବର୍ଷ ତଳର ସାମନ୍ତ ଚନ୍ଦ୍ରଶେଖର କଲେଜର ମୋର ସହପାଠୀ ଏବଂ ପାଥରପୁରୀ ଛାତ୍ରାବାସର ୧୦ ନମ୍ବର କୋଠରୀର ସହ ବାସିନ୍ଦା । ତାପରେ ସେ କହିଲେ, ମୁଁ ବଡ ଦୁଃଖିତ ଯେ ତମର ସହଧର୍ମିଣୀଙ୍କର ଇତି ମଧ୍ୟରେ ଅକାଳ ବିୟୋଗ ହୋଇଯାଇଛି । ମୁଁ ପଚାରିଲି ତୁମେ କିପରି ଜାଣିଲ ? ସେ କହିଲେ, ଅଧ୍ୟାପକ ଶ୍ରୀ ନିକୁଞ୍ଜ ବିହାରି ମିଶ୍ର ଆମେରିକା ଆସିଥିଲେ ଏବଂ ସେ ଆମ ଘରେ ଦୁଇଦିନ ପାଇଁ ଅତିଥି ହୋଇଥିଲେ । ତାଙ୍କ ଠାରୁ ମୁଁ ଏ ଦୁଃସମ୍ବାଦ ପାଇଲି । ଅଳ୍ପ କଥାବାର୍ତ୍ତା ପରେ ସେ ଫୋନ୍‌ଟି ତାଙ୍କର ଶ୍ରୀମତୀ ତାରା ଆଚାର୍ଯ୍ୟଙ୍କୁ ଦେଲେ । ତାଙ୍କ ସାଙ୍ଗରେ କିଛି ଦୁଃଖ ସୁଖ ହୋଇ ତାଙ୍କଠାରୁ ତାଙ୍କର ଫୋନ୍ ନମ୍ବର ଏବଂ ଇମେଲ ଠିକଣା ବୁଝି ଲେଖି ରଖିଲି । ମୁଁ ତାପରେ ତାଙ୍କ ପାଖକୁ ଇମେଲରେ ଚିଠି ଦେଲି । କିନ୍ତୁ ସେ ଚିଠି ଗଲାନାହିଁ । ତେଣୁ ସେ ଦେଇଥିବା ଫୋନ୍ ନମ୍ବରକୁ ଦିନେ ସକାଳୁ ଫୋନ୍ କରିଥିଲି । ଜଣେ କେହି ଫୋନ୍

ଉଠାଇଲେ ଏବଂ କହିଲେ ଧନ୍ୟବାଦ । ତାପରେ କିଛି ସମୟ ଗଲା କିଛି ଉତ୍ତର ଆସିଲା ନାହିଁ । ତାପରେ ଆଉଥରେ ମଧ୍ୟ ଫୋନ୍ କଲି ପୂର୍ବପରି ଉତ୍ତର ଆସିଲା । ତେଣୁ ଫେରି ଆସିଲି । କେତେ ଦିନ ପରେ ତାଙ୍କ ପୁତୁରା ଶ୍ରୀ ପଦ୍ମନାଭ ଆଚାର୍ଯ୍ୟଙ୍କ ଠାରୁ ତାଙ୍କ ଘରର ଠିକଣା ଓ ଫୋନ୍ ନମ୍ବର ସଂଗ୍ରହ କଲି । ତାଙ୍କ ଠିକଣା ଜାଣିଲା ପରେ ବୁବୁର ଆମେରିକାରେ ରହୁଥିବା ଜଣେ ବନ୍ଧୁ ଭୁବନେଶ୍ୱର ଆସିଥିଲେ । ସେ ଫେରିଗଲା ବେଳେ ବୁବୁ କରିଥିବା ଦୁଇଟି କ୍ୟାସେଟ୍ ଓ ସର୍ବେଶ୍ୱରଙ୍କର ଠିକଣା ଦେଇ, ତାହା ପଠାଇ ଦେବାକୁ ତାଙ୍କୁ କହିଲି । ପରେ ମୁଁ ସର୍ବେଶ୍ୱରଙ୍କ ପାଖକୁ ମୋ ଘରର ଭଲ ମନ୍ଦ ଲେଖି ଗୋଟିଏ ଚିଠି ପଠାଇ ଥିଲି । କିନ୍ତୁ ତାଙ୍କ ଠାରୁ ଉତ୍ତର ପାଇ ନଥିଲି ।

୨୦୦୨ ମସିହା ଶେଷ ଆଡକୁ "ଆଡଭାନ୍ସ ଫିଜିକ୍ସ ଲାବୋରାଟୋରୀ ମାନୁଆଲ" କୁ ପ୍ରକାଶ କରିବା ପାଇଁ ସାଉଥ୍ ଏସିଆନ୍ ପ୍ରକାଶକର ନିର୍ଦ୍ଦେଶକଙ୍କୁ ଅନୁରୋଧ କରି ଚିଠି ଲେଖିଲି । ସେ ଚିଠିରେ ଲେଖିଥିଲି ଇଲେକ୍‌ଟ୍ରୋନିକ୍ସ ଓ ସଲିଡଷ୍ଟେଟ ଫିଜିକ୍ସ ପରେ ଲେଖି ପଠାଇବି । ସେ ଉତ୍ତରରେ ଲେଖିଲେ ତମର "ଫିଜିକ୍ସ ଲାବୋରାଟୋରୀ ମାନୁଆଲ" ବହିରେ ଇଲେକ୍‌ଟ୍ରୋନିକ୍ସ ସମ୍ବନ୍ଧୀୟ ପରୀକ୍ଷା ପ୍ରାୟ ନାହିଁ । ଦିଲ୍ଲୀ ବିଶ୍ୱବିଦ୍ୟାଳୟର କେତେ ଜଣ ଅଧ୍ୟାପକ ଇଲେକ୍‌ଟ୍ରୋନିକ୍ସ ପରୀକ୍ଷା ନାହିଁ ବୋଲି ମୋତେ କହିଲେ । ମୁଁ ତାଙ୍କୁ ଉତ୍ତର ଦେଇଛି, ପରବର୍ତ୍ତୀ ପୁସ୍ତକରେ ଏହାକୁ ଅନ୍ତର୍ଭୁକ୍ତ କରାଯିବ । ତାପରେ ବହିରେ ଇଲେକ୍‌ଟ୍ରୋନିକ୍ସ ଏବଂ ସଲିଡଷ୍ଟେଟ ଫିଜିକ୍ସର କେତେ ଗୁଡିଏ ପରୀକ୍ଷା ଶୀଘ୍ର ପଠାଇବାକୁ ଡକ୍ଟର କେ.ସି ମହାନ୍ତିଙ୍କୁ ଅନୁରୋଧ କଲି । ସେ ମୋତେ ଜଣାଇଲେ, ମୁଁ ଜାନୁଆରୀ ୩୧ ତାରିଖରେ ଅବସର ଗ୍ରହଣ କରୁଛି । ତେଣୁ ଫେବୃଆରୀ ଶେଷ ସୁଦ୍ଧା କେତେ ଗୁଡିଏ ପରୀକ୍ଷା ଲେଖି ପଠାଇବି । ତେଣୁ ମୁଁ ଅପେକ୍ଷା କରି ରହିଲି ।

## ଇ.ଟି.ଭି.ପକ୍ଷରୁ ଅବୁଝା ପ୍ରଶ୍ନ କାର୍ଯ୍ୟକ୍ରମରେ ମୋର ଯୋଗଦାନ

ଡିସେମ୍ବର ମାସରେ ଇ.ଟି.ଭିର ଅବୁଝା ପ୍ରଶ୍ନ ନାମକ କାର୍ଯ୍ୟକ୍ରମରେ କର୍ମକର୍ତ୍ତା ମୋତେ ପିଲା ପଚାରୁଥିବା ପ୍ରଶ୍ନର ଉତ୍ତର ଦେବାକୁ ଅନୁରୋଧ କରିଥିଲେ । ମୁଁ ସେଥିପାଇଁ କଳିଙ୍ଗ ଷ୍ଟୁଡିଓକୁ ଯାଇ କାର୍ଯ୍ୟକ୍ରମର ସୁଟିଂରେ ଭାଗ ନେଇଥିଲି । ସେହି କାର୍ଯ୍ୟକ୍ରମରେ ମୁଁ ପ୍ଲାଜମା କିପରି ଓ କେବେ ଉଦ୍ଭାବନ ହେଲା ? ଏବଂ ପ୍ଲାଜମା କେମିତି ସୃଷ୍ଟି ହୁଏ ? ପ୍ଲାଜମାର ଉପାଦେୟତା କଣ? ଇତ୍ୟାଦି ବିଷୟରେ କହିଥିଲି । ଏହି କାର୍ଯ୍ୟକ୍ରମଟି ଅବୁଝା ପ୍ରଶ୍ନ କାର୍ଯ୍ୟକ୍ରମରେ ଇ.ଟି.ଭି ତରଫରୁ ଡିସେମ୍ବର ୧୦ ତାରିଖରେ ପ୍ରସାରିତ ହୋଇଥିଲା । ଡିସେମ୍ବର ୧୭ ତାରିଖରେ ବିଜ୍ଞାନ ପ୍ରଚାର ସମିତିର ଗୋଟିଏ ଅଧିବେଶନ ବାଣୀବିହାର ଠାରେ ହୋଇଥିଲା ।

ସ୍ତ୍ରୀ ମରିବାର ବର୍ଷକ ପରେ ମୋର ଆର୍ଥିକ ଅବସ୍ଥା ଭଲ ନ ଥିଲା । ତେଣୁ ମୋର ଜଣେ ନିକଟ ସମ୍ପର୍କୀୟ ବନ୍ଧୁ ଅଯାଚିତ ଭାବରେ ମୋତେ ଟଙ୍କା ସାହାଯ୍ୟ ଦେବାକୁ କହିଲେ । କାରଣ ମୋ ସ୍ତ୍ରୀ ତାଙ୍କୁ ବହୁତ ସାହାଯ୍ୟ କରିଥିଲେ । ସେ ମୋତେ ୨୦ ହଜାର ଟଙ୍କା ଦେଇଥିଲେ । ଟଙ୍କା ଦେଲାପରେ ମୁଁ ତାଙ୍କୁ କହିଲି, ୪/୫ ମାସ ଭିତରେ ମୁଁ ସବୁତକ ଟଙ୍କା ଫେରାଇ ଦେବି । ସେ କହିଲେ, ଅଧା ଟଙ୍କା ଫେରାଇ ଦେବେ ଓ ବାକି ଅଧା ଟଙ୍କା ଫେରାଇବେ ନାହିଁ । ତେଣୁ ନିର୍ଦ୍ଦିଷ୍ଟ ସମୟ ଭିତରେ ଅଧା ଟଙ୍କା ଫେରାଇ ଦେଲି କିନ୍ତୁ ବାକି ଅଧା ଟଙ୍କା ସେ କହିବା ମୁତାବକ ଫେରାଇ ନ ଥିଲି । ୨୦୦୨ ମସିହା ଡିସେମ୍ବର ମାସ ଶେଷ ସପ୍ତାହରେ ସେ ମୋତେ କହିଲେ, ମୋର ଦେହ ବହୁତ ଖରାପ । ଅନ୍ତନଳୀରେ କଣା ହୋଇଯାଇଛି । ଦୁଇ ତିନି ଦିନରେ ମୁଁ ହାଇଦ୍ରାବାଦ ଯିବି । ତୁମେ ମୋ ଠାରୁ ଯେଉଁ ଟଙ୍କା ନେଇଥିଲ ତାର ଅଧା ଫେରାଇ ଦେଇଛ । ଆଉ ଅଧା ଟଙ୍କା ଦୁଇ ଦିନ ଭିତରେ ଦେବ ଏବଂ କହିଲେ, ଆଉ କିଛି ଯଦି ଦେଇ ପାରିବ ଦେବ । ମୁଁ କହିଲି, ମୁଁ ଆଉ ଅଧିକ ଦେଇ ପାରିବି ନାହିଁ । ତାଙ୍କର ଏହି ଫୋନ୍ ଖବର ଶୁଣି ମୋ ମନ ଏତେ ଖରାପ ହେଲା ଯେ ମୋର ରକ୍ତ ଶର୍କରା ଏବଂ ରକ୍ତଚାପ ବଢିଗଲା । କାରଣ ଫେରାଇ ନ ଥିବା ଟଙ୍କାଟି ସେ ମୋତେ ମାଗିଲେ, ମୋତେ ବହୁତ କଷ୍ଟ ହେଲା । କାରଣ ମୁଁ ପିଲା ଦିନରୁ କାହାଠାରୁ କିଛି ଟଙ୍କା ଧାର ନେଇ ରଖି ନ ଥିଲି । ଯଦିଓ ମୋର ପିତା ବାଲ୍ୟକାଳରୁ ମୃତ୍ୟୁବରଣ କରିଥିଲେ । ମୋର ସେତେବେଳେ ବହୁତ ଅଭାବ ଥିଲା । ମୋର କେବେ ଟଙ୍କା ଫେରାଇ ନ ଦେବାର ଉଦ୍ଦେଶ୍ୟ ନ ଥିଲା । ସେ ମନା କରିଥିବାରୁ ମୁଁ ଫେରାଇ ନ ଥିଲି । ଫୋନ୍ ଖବର ପାଇଲା ପରେ ନିର୍ଦ୍ଦିଷ୍ଟ ଦିନ ସେ କିମ୍ବା ପଠାଇଥିବା ଲୋକ ଆସିଲେ ତାଙ୍କୁ ଦେବି ବୋଲି ମୁଁ ଟଙ୍କା ଯୋଗାଡ କରି ରଖିଥିଲି । ତାର ୩/୪ ଦିନ ପରେ ଜଣେ ଲୋକ ତାଙ୍କର ନାମ କହି ଟଙ୍କା ନେବାକୁ ଆସିଥିଲେ । ତେଣୁ ମୁଁ ତାଙ୍କୁ ସଙ୍ଗେ ସଙ୍ଗେ ଫୋନ୍ କଲି । କିନ୍ତୁ ତାଙ୍କୁ ପାଇଲି ନାହିଁ । ତେଣୁ ଯେଉଁ ଲୋକ ଟଙ୍କା ମାଗିବାକୁ ଆସିଥିଲେ, ତାଙ୍କୁ କହିଲି ଆସନ୍ତା ବୁଧବାର ଦିନ ଆସିବ ଏବଂ ଟଙ୍କା ନେଇଯିବ । ତାପରେ ବନ୍ଧୁଙ୍କ ପାଖକୁ ଫୋନ୍ କଲି ଯେ ଆସନ୍ତା ବୁଧବାର ଦିନ ତାଙ୍କୁ ଟଙ୍କା ଦେଇଦେବି । କିନ୍ତୁ ବୁଧବାର ଦିନ ସେ ଲୋକ ଆସିଲେ ନାହିଁ । ତେଣୁ ମୁଁ ତାଙ୍କୁ ଫୋନ୍‌ରେ କହିଲି, ମୁଁ ଟଙ୍କାଟା ଚେକ୍‌ରେ ପଠାଇ ଦେଉଛି । ସେ ରାଜି ହେଲେ । ମୁଁ ଚେକ୍‌ରେ ଟଙ୍କା ପଠାଇଦେଲି ।

୨୦୦୩ ମସିହା ଜାନୁଆରୀ ମାସ ୧୯ ତାରିଖରେ ବିଜ୍ଞାନ ପ୍ରଚାର ସମିତିର ଗୋଟିଏ ଅଧିବେଶନ ହୋଇଥିଲା । ସେ ଅଧିବେଶନରେ ମୁଁ ଯେଉଁ ପ୍ରବନ୍ଧ ପାଠ କରିଥିଲି, ତାର ବିଷୟବସ୍ତୁ ଥିଲା: "ବିଦ୍ୟୁତ୍ ଶକ୍ତିର ଉତ୍ପତ୍ତି ଏବଂ ତାର ସଂଚାଳନ" । ତାପରେ ଜାନୁଆରୀ ୨୫ ତାରିଖରେ ସ୍ୱାମୀ ସତ୍ୟ ପ୍ରକାଶ ବିଜ୍ଞାନ ସମାରୋହରେ ଭାଗ ନେଇଥିଲି । ଏହି ସମ୍ମାନଟି ଭୁବନେଶ୍ୱର ଆର୍ଯ୍ୟସମାଜ ପକ୍ଷରୁ ଡକ୍ଟର ଲକ୍ଷ୍ମୀନାରାୟଣ ମହାପାତ୍ରଙ୍କୁ ପ୍ରଦତ୍ତ ହୋଇଥିଲା । ସ୍ୱାମୀ ସତ୍ୟପ୍ରକାଶ ଜଣେ ପ୍ରବୀଣ ରସାୟନ୍‌ବିତ୍, ହିନ୍ଦି ଲୋକପ୍ରିୟ ବିଜ୍ଞାନ ସାହିତ୍ୟର ଅନ୍ୟତମ

ସ୍ରଷ୍ଟା ଚାରି ବେଦର ଇଂରାଜୀ ଭାଷ୍ୟକର୍ତ୍ତା ତଥା ଆର୍ଯ୍ୟ ସମାଜର ତପୋନିଷ୍ଠ ସନ୍ୟାସୀ ଥିଲେ । ସ୍ୱାମୀ ସତ୍ୟପ୍ରକାଶଙ୍କର ପବିତ୍ର ସ୍ମୃତିରେ ଏହି ପୁରସ୍କାରଟି ପ୍ରଦାନ କରାଯାଇ ଥିଲା ।

ଏହି ସମୟରେ ବିଶେଷ ଲେଖାଲେଖି ନ ଥିବାରୁ ଆଉ ଗୋଟିଏ ଓଡ଼ିଆ ବହି "ଏମିତି କାହିଁକି ଓ କିପରି ହୁଏ" ଲେଖିବା ପାଇଁ ଆରମ୍ଭ କଲି । ଦୈନନ୍ଦିନ ଜୀବନରେ ଘଟୁଥିବା ଘଟଣା କାହିଁକି ଘଟୁଛି, ସେହି ବିଷୟରେ ଉକ୍ତ ପୁସ୍ତକରେ ବିଜ୍ଞାନ ସମ୍ବନ୍ଧୀୟ ଆଲୋଚନା କରାଯାଇଛି ଏବଂ ଆଲୋଚନାକୁ ଭଲ ଭାବରେ ବୁଝିବା ପାଇଁ କେତେ ଗୁଡ଼ିଏ ପରୀକ୍ଷା କରିବା ପାଇଁ ବିଜ୍ଞାନ ନ ପଢ଼ିଥିବା ଲୋକଙ୍କ ନିମନ୍ତେ କୁହାଯାଇଛି । ଫେବୃଆରୀ ଦ୍ୱିତୀୟ ସପ୍ତାହରେ ଡକ୍ଟର ଜ୍ଞାନ ଶର୍ମା ଆମ ସମସ୍ତଙ୍କୁ ପଞ୍ଚମୁଖୀ ହନୁମାନ ମନ୍ଦିର, କଟକରେ ଖାଇବାକୁ ନିମନ୍ତ୍ରଣ କରିଥିଲେ । ଆମେ ସମସ୍ତେ ଗୋଟିଏ ଟ୍ୟାକ୍ସି କରି ପଞ୍ଚମୁଖୀ ମନ୍ଦିରକୁ ଖାଇବାକୁ ଯାଇଥିଲୁ । ଖାଇସାରି ମୁଁ ରେଭେନ୍ସା କଲେଜର ଫିଜିକ୍ସ ଡିପାର୍ଟମେଣ୍ଟକୁ ଗଲି । ଫିଜିକ୍ସ ଡିପାର୍ଟମେଣ୍ଟର ଇଲେକ୍‌ଟ୍ରୋନିକ୍ସ ଲାବୋରାଟୋରୀରୁ ୮ ଜଣ ପିଲାଙ୍କର ପୁରୁଣା ଇଲେକ୍‌ଟ୍ରୋନିକ୍ସ ପ୍ରାକ୍ଟିକାଲ୍ ଖାତା ସଂଗ୍ରହ କଲି । କାରଣ ସେଗୁଡ଼ିକ ମୋର ପ୍ରାକ୍ଟିକାଲ ବହି ଲେଖିବାରେ ଦରକାର ହେବ । ତାପରେ ଆମେ ଡକ୍ଟର ଶ୍ରୀମତୀ ପ୍ରତିଭା ରାଣୀ ମିଶ୍ରଙ୍କ ଘରକୁ କଥାବାର୍ତ୍ତା କରିବା ପାଇଁ ଗଲୁ । ସେହି ଅବସରରେ ବୁବୁ ଏବଂ ପୁଷ୍ମିତା ତାଙ୍କ ଶଶୁଙ୍କ ଘରକୁ ବୁଲିବାକୁ ଗଲେ । ସେ ଦୁହେଁ ଫେରିଲା ପରେ ଆମେ ଭୁବନେଶ୍ୱର ଫେରି ଆସିଲୁ ।

୨୦୦୩ ମସିହାର ଫେବୃଆରୀ ୧୬ ତାରିଖରେ ଗୋଟିଏ ବିଜ୍ଞାନ ପ୍ରଚାର ସମିତିର ଅଧିବେଶନ ବାଣୀବିହାରର ପଦାର୍ଥବିଜ୍ଞାନ ବିଭାଗରେ ଅନୁଷ୍ଠିତ ହୋଇଥିଲା । ସେହି ଅଧିବେଶନରେ ଠିକ୍ କରାଗଲା ଯେ ଫେବୃଆରୀ ୨୮ ତାରିଖରେ ବିଜ୍ଞାନ ଦିବସ ଭୁବନେଶ୍ୱର ପୁସ୍ତକ ମେଳା ପ୍ରାଙ୍ଗଣରେ ଅନୁଷ୍ଠିତ ହେବ । ସେଥିରେ ଡକ୍ଟର ସଦାନନ୍ଦ ତରାସିଆ ସଭାପତି ଆସନ ଗ୍ରହଣ କରିଥିଲେ । ଡକ୍ଟର ଶିବ ପ୍ରସାଦ ମିଶ୍ର, ଡକ୍ଟର ଚିତ୍ତରଞ୍ଜନ ମିଶ୍ର ଓ ଅନ୍ୟମାନେ ସଭାକାର୍ଯ୍ୟରେ ଯୋଗ ଦେଇଥିଲେ । ଏହି ଫେବୃଆରୀ ଶେଷ ସପ୍ତାହରେ ସର୍ବେଶ୍ୱରର ଧର୍ମପତ୍ନୀ ଭୁବନେଶ୍ୱର ଆସିଥିଲେ । ସେ ଆମ ଘରକୁ ଫୋନ୍ କରି କହିଲେ, ମୁଁ ଥିବା ସମୟ ଭିତରେ କେଉଁ ଦିନ ତୁମ ଘରକୁ ଯିବି । କିନ୍ତୁ ଯିବାବେଳେ ଆଗରୁ ଫୋନ କରି ଯିବି । ଯେଉଁ ଦିନ ତାଙ୍କର ଆମେରିକା ଫେରିବା କଥା, ସେହିଦିନ ସକାଳେ ଫୋନ୍ କରି କହିଲେ, ମୁଁ ବଡ଼ ଦୁଃଖିତ ସମୟ ଅଭାବରୁ ଆପଣଙ୍କ ଘରକୁ ଯାଇପାରୁ ନାହିଁ । ସେହି ଫେବୃଆରୀ ମାସରେ ମୋର ରକ୍ତ ଶର୍କରାର ପରିମାଣ ବଢ଼ିଗଲା । ତେଣୁ ରକ୍ତ ଶର୍କରା ପରୀକ୍ଷା କରି ଡକ୍ଟର ବିନୟ ମହାନ୍ତିଙ୍କ ସହିତ ପରାମର୍ଶ କଲି । ସେ କହିଲେ, ତୁମର ରକ୍ତ ଶର୍କରା କମାଇବା ପାଇଁ ଯେଉଁ ଇଗ୍ଲୁକନ୍ ଖାଉଛ ତାହା ୬୦ ବର୍ଷରୁ ବେଶୀ ହେଲେ ଖାଇବା ଉଚିତ୍ ନୁହେଁ । ତେଣୁ ସେ ଗ୍ଲାଇନେକ୍ ଖାଇବା ପାଇଁ ପରାମର୍ଶ ଦେଲେ । ଗ୍ଲାଇନେକ୍ ଖାଇବାର ପ୍ରାୟ ୧୫ ଦିନ ପରେ ରକ୍ତ ଶର୍କରାର ପରିମାଣ କମ୍ ହୋଇଗଲା । କମ୍ ହେଲାପରେ ହୋମିଓପ୍ୟାଥିକ୍ ଡାକ୍ତର ଅକ୍ଷୟ କୁମାର ମିଶ୍ରଙ୍କ

ସହିତ ପରାମର୍ଶ କଲି । ସେ ଗୋଟିଏ ଔଷଧ ଦେଲେ ଏବଂ ପନ୍ଦର ଦିନରେ ଥରେ ସେହି ଔଷଧରୁ ପାନେ ପାନେ ଖାଇବାକୁ କହିଲେ ।

ମାର୍ଚ୍ଚ ମାସର ଶେଷ ସପ୍ତାହରେ କୁନ୍‌ମାମାର ପରୀକ୍ଷା ସରିଯିବାରୁ ମାମି କହିଲା, ତମେ ସବୁ ୬/୭ ଦିନ ପାଇଁ ରାଉରକେଲା ବୁଲିଆସ । ସେଥିପାଇଁ ଆମେ ସମସ୍ତେ ରାଉରକେଲା ଯାଇଥିଲୁ । ଫେରିଲା ଦିନ ଗୋଟିଏ ଅଘଟଣ ଘଟିଲା । ଆମେ ତପସ୍ୱିନୀ ଏକ୍ସପ୍ରେସରେ ଆସିବା ପାଇଁ ଟିକେଟ୍ ସଂରକ୍ଷଣ କରିଥିଲୁ । ସେହି ଟ୍ରେନ୍‌ଟି ରାଉରକେଲାରୁ ସାଢେ ଆଠଟା ବେଳେ ଛାଡିବା କଥା । କିନ୍ତୁ ରାତି ୨ଟା ବେଳେ ଛାଡିଲା । ତେଣୁ ଗାଡିଟି ଆସି ପ୍ରାୟ ଦିନ ଗୋଟାଏ ବେଳେ ଭୁବନେଶ୍ୱରରେ ପହଞ୍ଚିଲା । ସେହିଦିନ ୩ଟା ବେଳେ ବିଜ୍ଞାନ ପ୍ରଚାର ସମିତିର ଗୋଟିଏ ଅଧିବେଶନ ହୋଇଥିଲା । ସେହି ଅଧିବେଶନରେ ଯୋଗଦେବା ପାଇଁ ମୁଁ ଡକ୍ଟର ସୂର୍ଯ୍ୟମଣୀ ବେହେରାଙ୍କ ଗାଡିରେ ଯାଇଥିଲି । ବିଜ୍ଞାନ ପ୍ରଚାର ସମିତିରୁ ଫେରି ଦେଖିଲି ଯେ, ଶ୍ରୀ ଜ୍ୟୋତିଷ ବାବୁ ପାଞ୍ଚଟି ପରୀକ୍ଷା ଲେଖି ପଠାଇଛନ୍ତି । ଅପ୍ରେଲ ମାସ ପ୍ରଥମ ସପ୍ତାହରେ ସେହି ପରୀକ୍ଷା ଗୁଡିକ ପଢି ଠିକ୍ ଠାକ୍ କରି ପାଣ୍ଡୁଲିପିରେ ଲେଖିଦେଲି ।

୨୦୦୩ ମସିହାର ଅପ୍ରେଲ ୧୧ ତାରିଖରେ ତିଥି ଅନୁସାରେ ମୋର ଜନ୍ମଦିନ ପଡିଥିଲା । ୧୦ ତାରିଖ ଦିନ ରାତି ୧୨ଟା ପରେ ପୁଅ ଓ ବୋହୂ ମୋତେ ଡାକି ଉଠାଇଲେ ଏବଂ କହିଲେ ଆଜି ତମ ଜନ୍ମଦିନ ତେଣୁ ତମେ କେକ୍ କାଟ । ମୁଁ କେକ୍ କାଟିଲା ପରେ ସମସ୍ତେ କେକ୍ ଖାଇଲୁ । ମୁଁ କେକ୍ କାଟିବାକୁ ପସନ୍ଦ କରେ ନାହିଁ । କାରଣ ତାହା ଆମ ସଂସ୍କୃତିରେ ନାହିଁ । କିନ୍ତୁ ପୁଅ ବୋହୂଙ୍କର ଆନନ୍ଦ ଓ ଆଗ୍ରହ ଯୋଗୁଁ କେକ୍ କାଟିବାକୁ ରାଜି ହୋଇଥିଲି । ମୁଁ ଶୋଇବାକୁ ଗଲି । ନିଦ ହେଲାନାହିଁ । ସେତେବେଳେ ମୋର ଜନ୍ମଦିନ ପିଲାଦିନେ କିପରି ବୋଉ ପାଳନ କରୁଥିଲା ଏବଂ ମୋର ସ୍ତ୍ରୀ କିପରି ପାଳନ କରୁଥିଲେ ଇତ୍ୟାଦି କଥା ମୋର ମନେ ପଡିଲା । ଏହି ସମୟରେ ତାର ପୂର୍ବ ଦିନ ମୋର ସାମନ୍ତ ଚନ୍ଦ୍ରଶେଖର କଲେଜର ସହକର୍ମୀ ଅଧ୍ୟାପକ ଶ୍ରୀ ଚନ୍ଦ୍ରଶେଖର ରଥଙ୍କର ଦୂରଦର୍ଶନ ସାକ୍ଷାତକାର ଘଟଣାଟି ମୋର ମନେ ପଡିଗଲା । ସେ କହୁଥିଲେ ରାତ୍ରିକ ଗଳ୍ପ ଲେଖିବ ବୋଲି ମନସ୍ଥ କରି ଗଳ୍ପ ଲେଖିବାକୁ ବସେ ନାହିଁ । କେତେବେଳେ ମନକୁ ଗୋଟିଏ ଚରିତ୍ରର ବିଷୟ ବସ୍ତୁ ଉପରେ ଗୋଟିଏ ଧାରଣା ଆସିଯାଏ । ସେହି ଧାରଣାକୁ କାଗଜ କଲମରେ ଲେଖି ବସିଲା ବେଳେ ତାହା ଗୋଟିଏ ଗଳ୍ପରେ ପରିଣତ ହୋଇଯାଏ । ତାଙ୍କର ଉକ୍ତ ଧାରଣାକୁ ଭାବିଲା ସମୟରେ ମୋ ଠାରୁ ବୟସ୍କ ଲୋକର ବର୍ତ୍ତମାନର ପାରିପାର୍ଶ୍ୱିକ ଅବସ୍ଥା ସମ୍ବନ୍ଧରେ ମନକୁ ଆସିଲା । ସେମାନେ କିପରି ହଇରାଣ ହେଉଛନ୍ତି, ସେହି କଥା ମନରେ ଆସିଲା । ତେଣୁ ମୁଁ ଠିକ୍ କଲି ସେହିପରି ଗୋଟିଏ ଗଳ୍ପ ଲେଖିବାକୁ ଚେଷ୍ଟା କରିବି ।

ଏହି ଗଳ୍ପଟି ଲେଖିବା ପାଇଁ ଚିନ୍ତା କରିବା ଆଗରୁ କେବେ ଗଳ୍ପ ଲେଖି ନଥିଲି । ତେଣୁ ମୁଁ କିପରି ଗଳ୍ପ ଲେଖିବି ? ମନେ ପଡିଲା ଷାଠିଏ ବର୍ଷ ତଳେ ସତ୍ୟବାଦୀ ସ୍କୁଲ୍‌ରେ ନବମ ଶ୍ରେଣୀରେ ପଢିଲା ସମୟରେ ଗୋଟିଏ ବିଜ୍ଞାପନ ବାହାରି ଥିଲା ଯେ ସ୍କୁଲ୍‌ର ଛାତ୍ର ମାନଙ୍କୁ ଗଳ୍ପ

ଲେଖିକରି ଦେବା ପାଇଁ । କିନ୍ତୁ ସେତେବେଳେ କୌଣସି ବିଷୟ ବସ୍ତୁ ଠିକ୍ କରି ନପାରି ଚିନ୍ତା ଭାଇନାଙ୍କ ନିମାପଡା ହାଇସ୍କୁଲ୍ ପତ୍ରିକାରେ ଲେଖିଥିବା ଗଳ୍ପ "ଅମାଲୁ ନା ଗୁମାଲୁ"ର ବିଷୟ ବସ୍ତୁ କଥା ମନେ ପଡିଲା । ସେଥିରେ ସେ ଯାହା ଲେଖିଥିଲେ ସେହି ବିଷୟ ବସ୍ତୁକୁ ନେଇ ଗୋଟିଏ ଗଳ୍ପ ଲେଖି ସ୍କୁଲ୍‌ରେ ଦାଖଲ କରିଦେଲି । ସେହି ଗଳ୍ପଟି ମଧ୍ୟ ସତ୍ୟବାଦୀ ସ୍କୁଲ୍ ପତ୍ରିକାରେ ସ୍ଥାନ ପାଇଥିଲା । ତାପରେ ମୁଁ ବହୁତ ଅନୁତାପ କରିଛି । ଏପରି କରିବା ମୋ ଦ୍ୱାରା ଠିକ୍ ହୋଇ ନାହିଁ । ଏହା ନକଲ କଲା ଭଳି ହୋଇଗଲା । ସେ ବିଷୟ ମୁଁ ଆଉ କେବେ ଭାବିନାହିଁ । ଆଜି ଏହି ଗଳ୍ପ ଲେଖିବା କଥା ମନରେ ଆସିବାରୁ ସେ କଥାଟି ଟିକିଏ ଅବତାରଣା କରିଦେଲି । ୧୧ ତାରିଖ ଦିନ ସକାଳେ ଲେଖିବା ଆରମ୍ଭ କଲି ଏବଂ ୧୨ ତାରିଖ ଦୁଇ ଦିନ ମଧ୍ୟରେ ମୋ ମନକୁ ଯାହା ଆସିଲା, ସେହି ବିଷୟରେ ଗୋଟିଏ ଗଳ୍ପ ଲେଖି ଶେଷ କରିଦେଲି । ଗଳ୍ପଟିର ନାମ ଦେଇଥିଲି "ଏମିତି ଲୋକ ଏବେ ବି ଅଛନ୍ତି" । ଏହି ଗଳ୍ପଟିକୁ କୌଣସି ପତ୍ର ପତ୍ରିକାରେ ଛପାଇବା ପାଇଁ ଉପଯୁକ୍ତ ହେବ କି ନାହିଁ ମୁଁ ତାହା ଜାଣେ ନାହିଁ । ଏହି ପରିଣତ ବୟସରେ ପ୍ରଥମ କରି କୌଣସି ପତ୍ର ପତ୍ରିକାର ସଂପାଦକଙ୍କ ପାଖକୁ ପଠାଇବାକୁ ମନ ହେଉନାହିଁ । ତେଣୁ ଗଳ୍ପଟିକୁ ମୋର ଆତ୍ମଜୀବନୀରେ ଲେଖିବାକୁ ସ୍ଥିର କଲି । ତାହା ଯେକୌଣସି ଲୋକ ପଢିପାରିବେ ।

## ଏମିତି ଲୋକ, ଏବେ ବି ଅଛନ୍ତି

ଯଜ୍ଞଦତ୍ତ ବାବୁ ପୁରୀ ସମୁଦ୍ର କୂଳରେ ବସି ଭାରାକ୍ରାନ୍ତ ମନରେ ବିଗତ ଦିନର ଘଟଣା ସବୁର ସ୍ମୃତି ଚାରଣ କରୁ କରୁ ତାଙ୍କ ଆଖିରୁ ଲୁହ ଗଡି ଆସୁଥିଲା । ଏହି ସମୟରେ କାହାଠାରୁ ନିଜ ନାମ ଡାକ ଶୁଣି ଚମକି ପଡିଲେ । ସେ ଭଦ୍ରଲୋକ ଜଣକ କିଛି ଅପେକ୍ଷା ନ କରି କହି ଚାଲିଲେ, ସାର ନମସ୍କାର । ମୁଁ ଆପଣଙ୍କର ଉପକାର ଭୁଲି ପାରିବି ନାହିଁ । ଆପଣଙ୍କ ଯୋଗୁଁ ମୁଁ ଆଜି ମଣିଷ ପରି ଜଣେ ମଣିଷ ହୋଇଛି । ଆପଣଙ୍କର କଣ ହୋଇଛି କି ? ଏହିପରି କେତେ ପ୍ରଶ୍ନ ପଚାରି ଗଲେ । ଶେଷରେ ଯଜ୍ଞଦତ୍ତ ବାବୁ ତାଙ୍କୁ ନମ୍ରତାର ସହିତ କହିଲେ, ମୋର ଆଖିକୁ ଭଲ ଦେଖାଯାଉ ନାହିଁ, ତେଣୁ ମୁଁ ଆପଣଙ୍କୁ ଜାଣି ପାରିଲି ନାହିଁ । ଚିହ୍ନି ପାରୁନାହିଁ । ଦୟାକରି ଆପଣଙ୍କର ପରିଚୟ ଦେଲେ ମୁଁ ଅତ୍ୟନ୍ତ ଖୁସି ହେବି । ମୁଁ ଚିହ୍ନି ପାରିଲି ନାହିଁ ବୋଲି କିଛି ଭାବିବେ ନାହିଁ ।

ଆଗନ୍ତୁକ କହିବାକୁ ଲାଗିଲେ ଆଜକୁ ପ୍ରାୟ ତିରିଶ ବର୍ଷ ତଳେ ମୁଁ ଖାଇବାକୁ ନ ପାଇ ଏଣେ ତେଣେ ବିଭିନ୍ନ ସହରକୁ ଯାଇ ଖାଇବାକୁ ମାଗୁଥିଲି । ଦିନେ ଦିନେ ମଧ୍ୟ କିଛି ଖାଇବାକୁ ମିଳେ ନାହିଁ । ସେ ଦିନ ପାଣି ମୁନ୍ଦେ ପିଇଦେଇ ଶୋଇପଡେ । ଦିନେ ଟାଟା ନଗର ଠାରେ ଆପଣଙ୍କ ଘରକୁ ଯାଇ ଗଣ୍ଡେ ଖାଇବାକୁ ମାଗିଲି ଆପଣଙ୍କ ସହଧର୍ମିଣୀ ମୋତେ ଗଣ୍ଡେ ପେଟପୁରା ଖାଇବାକୁ ଦେଲେ । ରାତିରେ ତାଙ୍କଠାରୁ ଅନୁମତି ନେଇ ଆପଣଙ୍କ ଦାଣ୍ଡ ବାରଣ୍ଡାରେ ଶୋଇପଡିଲି । ସକାଳ ହେବାରୁ ଆପଣଙ୍କ ସଙ୍ଗେ ଦେଖା ହେଲା । ମୁଁ ଯିବାକୁ ବାହାରିବାରୁ ଆପଣ ପଚାରିଲେ, ତମ ଘର କେଉଁଠାରେ ? ଆଉ କିଏ ସବୁ ଅଛନ୍ତି ? ମୋର

ସମସ୍ତେ ଥିଲେ ବାପା, ମାଆ ଆଉ ଗୋଟିଏ ଛୋଟ ଭାଇ । ସେତେବେଳେ ମୁଁ ଭଦ୍ରକରେ ମାଇନର କ୍ଲାସ୍‌ରେ ନାମ ଲେଖାଇ ଥିଲି । ସେହିବର୍ଷ ବ୍ରାହ୍ମଣୀ ନଈରେ ଭୟଙ୍କର ବଢ଼ି ଆସିଲା, ଘର ଦ୍ୱାର ସବୁ ଭାଙ୍ଗିଗଲା । ବଢ଼ି ଛାଡ଼ିଲା ପରେ ଗ୍ରାମକୁ ଗଲି, କିନ୍ତୁ ଘରର ସରା ଦେଖିବାକୁ ପାଇଲି ନାହିଁ । ବାପା, ମଆ ଓ ସାନ ଭାଇକୁ ମଧ୍ୟ ପାଇଲି ନାହିଁ । ଯାହାକୁ ପଚାରିଲି କେହି କିଛି କହି ପାରିଲେ ନାହିଁ । ଜଣେ ଦୁଇ ଜଣ କହିଲେ, ଘର ଛାତ ଉପରେ ପାଣି ଚାଲୁଥିଲା, ସେମାନେ ବୋଧେ ଭାସିଯାଇ କେଉଁଠାରେ ରହିଯାଇ ଥିବେ । ପରେ ମିଳିଯିବେ । ସେହିଦିନ ଠାରୁ ପାଗଳ ପ୍ରାୟ ହୋଇ ସେମାନଙ୍କୁ ଖୋଜୁଛି । ଟାଟା ନଗର ଆସିଥିଲି କାଳେ ଏଠାରେ ଆସି ରହିଥିବେ । କାରଣ ଟାଟା ନଗରରେ ଆମ ଗ୍ରାମର କେତେ ଜଣ ଅଛନ୍ତି । କିନ୍ତୁ କାହାକୁ ପାଇଲି ନାହିଁ, ଏବେ ଆଶା ଛାଡ଼ି ଦେଲିଣି । ହଠାତ୍ ଆପଣ ପଚାରିଲେ ଆମ ଘରେ ରହିବ ? ଘର କାମ କରିବ, କାମ ନ ଥିବା ସମୟରେ ପଢ଼ା ପଢ଼ି କରିବ, ଆମ ଘରେ ଖାଇବ ଏହା ବ୍ୟତିତ ମୁଁ ଆଉ ତୁମକୁ ଅଧିକା କିଛି ଦେଇ ପାରିବି ନାହିଁ । ଆପଣଙ୍କ ଘରେ ଏହିପରି ୫/୬ ବର୍ଷ ରହିଲା ପରେ ଆପଣ ଟାଟା କମ୍ପାନୀରେ ଟ୍ରେନିଂ ନେବା ପାଇଁ ବ୍ୟବସ୍ଥା କରିଦେଲେ । ଆପଣ କେବେ ଅବସର ନେଲେ ମୁଁ ଜାଣି ପାରିଲି ନାହିଁ । ଆପଣଙ୍କ ଗ୍ରାମ ଓ ଠିକଣା ମଧ୍ୟ ଜାଣି ପାରି ନ ଥିଲି । ଭଗବାନ୍‌ଙ୍କର ବରାଦ ଥିଲା ଏବେ ଦେଖା ହୋଇଗଲା । ଆପଣ ଏବେ ନିଶ୍ଚୟ ଚିହ୍ନି ପାରିଥିବେ । ଯଜ୍ଞଦତ୍ତ ବାବୁ ସଙ୍ଗେ ସଙ୍ଗେ କହିଲେ, ତୁ ସଦାଚି ? ଓହୋ ମୋର ଭୁଲ୍ ହୋଇଗଲା, ଆପଣ ସଦାନନ୍ଦ ବାବୁଟି ? ସଦାନନ୍ଦ କହିଲେ, ଆପଣ ମୋତେ ପୁଅ ଭଳିଆ କରି ମଣିଷ କରିଛନ୍ତି, ମୋତେ ତୁ କହିଲେ ବୋଲି କଣ ଭୁଲ୍ ହୋଇଗଲା ? ସେ କଥା ଛାଡନ୍ତୁ, ମାଆ କିପରି ଅଛନ୍ତି ? ପୁଅ ତ ଚାକିରୀ କରିବେଣି । ତାଙ୍କର ବିବାହ ହେଲାଣି ନା ନାହିଁ ? କେଉଁଠି ଅଛନ୍ତି ? ସଦାନନ୍ଦ ଏତେ ଗୁଡିଏ ପ୍ରଶ୍ନ ପଚାରି ସାରିଲା ପରେ ଜାଣି ପାରିଲେ ଯଜ୍ଞଦତ୍ତ ବାବୁଙ୍କ ଆଖି ଛଳ ଛଳ ହୋଇ ଯାଇଛି । ତାଙ୍କର କିଛି ଅଘଟଣ ହୋଇଛି କି ? ତାଙ୍କ ପୋଷାକ ପତ୍ରରୁ ତାଙ୍କୁ ଦେଖିଲା ବେଳୁ ସେ ଅନୁମାନ କରୁଥିଲେ ।

କିଛି ସମୟ ପରେ ଯଜ୍ଞଦତ୍ତ ବାବୁ କହିଲେ, ମୋର ସୁଖର କଥା କିଛି ନାହିଁ । ତେବେ ଦୁଃଖର କଥା କହିଦେଲେ ଦୁଃଖ ଲାଘବ ହେବ ଭାବି କହୁଛି ଶୁଣ । ମୁଁ ପ୍ରାୟ ୫ ବର୍ଷ ହେଲା କମ୍ପାନୀରୁ ଅବ୍ୟାହତି ନେଲି । କମ୍ପାନୀରେ ଘର ପାଇଥିଲି. ମୁଁ ଭବିଷ୍ୟତ କଥା କିଛି ଚିନ୍ତା କରି ନ ଥିଲି । ଅବସର ନେବା ସମୟରେ ପ୍ରାୟ ୩ ଲକ୍ଷ ଟଙ୍କା ଅବସର କାଳୀନ ଭତ୍ତା ପାଇଥିଲି । ପୁରୀରେ ଘର କରି ସାରିଲା ପରେ ଆଉ ବିଶେଷ କିଛି ଟଙ୍କା ବଳି ନ ଥିଲା । ମୁଁ ଶ୍ରୀମତୀଙ୍କୁ କହିଲି ମୋର ଭୁଲ୍ ହୋଇଗଲା । ଗୋଟିଏ ଛୋଟ ଘର ତିଆରି କରିଥିଲେ କିଛି ଟଙ୍କା ବଳି ଯାଇ ଥାଆନ୍ତା । ଶ୍ରୀମତୀ କହିଲେ ବଡ ପୁଅ ବାଙ୍ଗାଲୋର ଠାରେ ଇଂଜିନିୟର ହୋଇ ଯୋଗ ଦେଲାଣି । କିଛି ଦିନ ପରେ ସେ ଟଙ୍କା ପଠାଇବ ନାହିଁ ? ସାନ ପୁଅ ତ ଏଠି ଅଛି । ସେ ତ ପାଠ ଦି ଅକ୍ଷର ପଢ଼ିଛି ସେ କିଛି କରିବ ନାହିଁ ? ତୁମେ କଣ କିଛି କରି ପାରିବ ନାହିଁ । ଏମିତି ଆମେ ସବୁ ଚଳି ଯିବା ନାହିଁ ଯେ ଏତେ କଣ ଭାବୁଛ ? ବର୍ଷ ଦୁଇଟା ଏମିତି ଚଳିଗଲା । ପୁଅ ଥରେ

ଛୁଟି ନେଇ ବାଙ୍ଗାଲୋରରୁ ପୁରୀ ଆସିଥିଲା । ସେ କହିଲା, ମୁଁ ମାଆଙ୍କୁ ମୋ ସାଙ୍ଗରେ ବାଙ୍ଗାଲୋର ନେଇ ଯାଉଛି, ତୁମେ ସାନ ଭାଇ ପାଖରେ ଥାଅ । ମୁଁ କହିଲି, ତତେ ଅସୁବିଧା ହେବ । ମା ତ ବୁଢ଼ୀ ହେଲେଣି, ଦେହ କେତେବେଳେ ଯଦି ଖରାପ ହେବ ତୁ ହଇରାଣ ହେବୁ । ମୋର ତାଙ୍କୁ ଛାଡିକରି ରହିବାକୁ ଜମା ଇଚ୍ଛା ନ ଥିଲା । କିନ୍ତୁ ଭାବିଥିଲି ଶ୍ରୀମତୀ ଜମା ରାଜି ହେବେ ନାହିଁ । ସେ କିନ୍ତୁ ଯିବାକୁ ରାଜି ହୋଇଗଲେ । ସେ ସେହିଦିନ ଠାରୁ ମୋ ସାଙ୍ଗରେ ଆଉ କଥାବାର୍ତ୍ତା ହେଲେନାହିଁ । ମୁଁ ଅନୁମାନ କଲି, ସେ ମୋ ଉପରେ ରାଗିକରି ବୋଧେ ଯିବାକୁ ରାଜି ହୋଇଗଲେ । ସେଠାରୁ ପୁଅ ଚିଠି ଦେଲାନାହିଁ କି ସେ ବି ଚିଠି ଦେଲେ ନାହିଁ । ଏହିପରି ପ୍ରାୟ ବର୍ଷେ କଟିଗଲା । ଦିନେ ଗୋଟିଏ ଚିଠି ପୁଅଠାରୁ ପାଇଲି, ଯେ ମାଆଙ୍କ ଦେହ ଭଲନାହିଁ, ତୁମେ ଆସି ନେଇଯାଅ । ମୋତେ ଛୁଟି ମିଳୁନାହିଁ । ତୁମେ ନ ଆସି ପାରିଲେ ସାନ ଭାଇକୁ ପଠାଇ ନେଇଯାଅ । ସାନ ପୁଅ ମଧ୍ୟ ମନାକଲା, କହିଲା, ମୁଁ ବାଙ୍ଗାଲୋର ଜମା ଯାଇନାହିଁ । ମୋତେ ଯିବାକୁ ଡର ମାଡୁଛି । ତୁମେ ଯାଉନାହଁ, ତୁମେ ତ ସବୁ ଆଡେ ଯାଇଛ । ମୁଁ ପଚାରିଲି ତୁ ଟଙ୍କା ଆଣିଦେବୁ? ସେ କହିଲା, ମୋ ପାଖେ ତ ଖାଇବାକୁ ପଇସା ନାହିଁ ମୁଁ କେଉଁଠୁ ପଇସା ଦେବି ? ତେଣୁ ମୁଁ ପଇସା ଯୋଗାଡ କରୁ କରୁ ୩/୪ ଦିନ ଡେରି ହୋଇଗଲା । ମୁଁ ତାର ପାଇଲି ଯେ ତାଙ୍କର କାଳ ହୋଇଯାଇଛି ଏବଂ ତାଙ୍କର ଶବ ସତ୍କାର ବଡପୁଅ ସେହିଠାରେ କରିଦେଇଛି । ଯେଉଁ ଟଙ୍କା ଯୋଗାଡ କରିଥିଲି, ସେହି ଟଙ୍କାରେ ସାନ ପୁଅକୁ କହି ଶୁଧ ଘରଟା କରିଦେଲି । ଶୁଧ ଘର ସରିଲା ପରେ ତାଙ୍କ ହାତ ଲେଖାର, ଗୋଟିଏ ମୁଦା ଚିଠି ଡାକରେ ପାଇଲି । ମୁଁ ଚିଠି ପୁଅକୁ ନ ଦେଖାଇ ରଖିଦେଲି । ମୋ ଚଷମାଟି ପଡି ଭାଙ୍ଗି ଯାଇଥିଲା । ପୁଅକୁ କହି କହି ଆଣି ଦେଇ ନ ଥିଲା । ତେଣୁ ଠିକ୍ କରିଥିଲି ଆଉ ପୁଅକୁ ଚଷମା ପାଇଁ କହିବି ନାହିଁ । କାହାକୁ କିଛି କହିଲି ନାହିଁ । ଚିଠିଟି ପଢିବା ପାଇଁ ମନ ବ୍ୟାକୁଳ ହେଲା । ବଜାରକୁ ଯାଇ ୫ ଟଙ୍କାରେ ଜବକାଚ ଗୋଟିଏ କିଣି ଚିଠି ପଢିଦେଲି । ଚିଠିଟି ସେହିପରି ମୁଁ ମଲା ପର୍ଯ୍ୟନ୍ତ ପାଖରେ ରଖି ମରିବି । କାରଣ ତାହା ହେଉଛି ତାଙ୍କର ଶେଷ ଲେଖା ।

ସଦାନନ୍ଦ କହିଲେ, ମୁଁ ତ ଆପଣଙ୍କର ପୁଅ ପରି ମୋତେ ଚିଠିଟି ଟିକିଏ ଦେଖାନ୍ତୁ । ତମେ ମୋତେ ବାପା ବୋଲି ମାନୁଛ । ତେଣୁ ଚିଠିଟି ନିଅ ପଢ, କିନ୍ତୁ କାହାକୁ କିଛି କହିବ ନାହିଁ । ସଦାନନ୍ଦ ବାବୁ ଚିଠିଟି ଏକା ନିଶ୍ୱାସରେ ପଢିଗଲେ । ସେଥିରେ ଲେଖାଥିଲା କି :

ପ୍ରିୟତମ,

ତମ ଦେହ କିପରି ଅଛି ? ମୋ ଦେହ ଭଲ ନାହିଁ । ଶେଯରେ ୧୫ ଦିନ ହେଲା ପ୍ରାୟ ଶୋଇ ରହିଛି । ପୁଅକୁ କହିଲି, ଯେ ମୋତେ ପୁରୀରେ ଛାଡି ଦେଇଆ । ସେ ଛାଡି ଦେଲାନି କି କିଛି କହିଲା ନାହିଁ । ମୁଁ ଏଠାରେ ବୋଧେ ପଡି ପଡି ଚାଲିଯିବି । ଏତିକି ଦୁଃଖ ଯେ ମଲା ବେଳେ ତୁମକୁ ଟିକିଏ ଦେଖି ଶାନ୍ତିରେ ମରି ପାରିବିନି । ଆଉ ଗୋଟିଏ ଦୁଃଖ ହେଉଛି ତୁମେ କେମିତି ପୁଅକୁ କହିଲ, ମାଆ ରାଜିହେଲେ ନେଇଯିବୁ । ତୁମେ କଣ ମୋତେ ଛାଡି କରି

ସୁଖରେ ରହିପାରିବ ? ଲୋକ ଜଣ କହିବେ, ତୁମେ ଏମିତି ଟିକିଏ ଭାବିଲ ନାହିଁ ? ଆଉ କିଛି ଲେଖି ପାରିବି ନାହିଁ । ବୋହୂ ଆସିଲାଣି ।

ସଦାନନ୍ଦ ଚିଠିଟି ପଢୁଥିବା ବେଳେ ତାଙ୍କ ଆଖିରୁ ଲୁହ ଦୁଇଧାର ବୋହି ଆସିଲା । ପରେ ଲୁହ ପୋଛି କହିଲେ, ଆପଣଙ୍କ ଠିକଣା ଦିଅନ୍ତୁ । ଯକ୍ଷଦେଵ ବାବୁ କହିଲେ, ଆମ ଘରଆଡେ ଟିକିଏ ବୁଲି ଆସିବା ଚାଲନ୍ତୁ । ସଦାନନ୍ଦ କହିଲେ, ମୋର ଆଉ ଯିବାକୁ ଇଛାନାହିଁ । ତାପରେ ସଦାନନ୍ଦ ଠିକଣାଟି ନେଇ ଚାଲିଗଲେ ।

× × × × ×

ପ୍ରାୟ ମାସେ ଖଣ୍ଡେ ପରେ ଯକ୍ଷଦେଵ ବାବୁ ଟାଟା କମ୍ପାନୀର ହିସାବ ସମୀକ୍ଷକଙ୍କ ଠାରୁ ଗୋଟିଏ ଚିଠି ପାଇଲେ । ସେ ଲେଖିଥିଲେ, ଆପଣଙ୍କୁ କମ୍ପାନୀ ତରଫରୁ କରା ଯାଇଥିବା ଜୀବନ ବୀମା ପଲିସ୍ ଉପରେ ୬୦ ହଜାର ଟଙ୍କା କମ୍ପାନୀକୁ ମିଳିଛି । କିନ୍ତୁ ପଲିସ୍‌ର ସର୍ତ୍ତ ଅନୁସାରେ ଆପଣଙ୍କୁ ତାର ସୁଧ ବାବଦକୁ ୫୦୦ ଟଙ୍କା କରି ଆପଣ ବଞ୍ଚି ଥିବା ପର୍ଯ୍ୟନ୍ତ ମିଳିବ । ସମୁଦାୟ ଟଙ୍କା ଆପଣ ଯାହାକୁ ଦେବା ପାଇଁ ମନୋନୀତ କରିବେ ଜଣାଇଲେ, ପରେ ତାଙ୍କୁ ମିଳିବ । ଆପଣ ବଞ୍ଚିଥିବା ଭିତରେ କାହାକୁ ମନୋନୀତ କରି ଲେଖିକରି ଦେଲେ, ତାହା କାର୍ଯ୍ୟକାରୀ ହେବ । ଯଦି ନ ଦେବେ ସେ ଟଙ୍କା କମ୍ପାନୀର ହୋଇଯିବ । ଆପଣଙ୍କ ଠାରୁ ଚିଠି ପାଇଲା ପରେ ଆପଣଙ୍କ ପାଖକୁ ବ୍ୟାଙ୍କ ଡ୍ରାଫ୍ଟଦ୍ୱାରା ଟଙ୍କା ପଠାଯିବ ।

ଆପଣଙ୍କ, ହିସାବ ସମୀକ୍ଷକ ।

ଯକ୍ଷଦେଵ ବାବୁ ଚିଠି ଅନୁସାରେ ଯାହା କରିବା କଥା ତାହା କରି ପଠାଇ ଦେଲେ । ତାର ମାସକ ପରେ ୫୦୦ ଟଙ୍କାର ଗୋଟିଏ ଡ୍ରାଫ୍ଟ ପାଇଲେ । ସେ ପ୍ରତି ମାସର ପ୍ରଥମ ସପ୍ତାହରେ ଗୋଟିଏ ଡ୍ରାଫ୍ଟ ପାଇ ଚାଲିଲେ । ତାଙ୍କର ଚେହେରା ବଦଳି ଗଲା । ତାଙ୍କ ପୁଅ ଗୋଟିଏ ଭଲ ଫ୍ରେମବାଲା ଚଷମା ଆଣିଦେଲା । ବଡ ପୁଅ ଏ ଖବର ଶୁଣି ବାପାଙ୍କୁ ଅନୁରୋଧ କଲା ବାଙ୍ଗାଲୋର ଆସିବା ପାଇଁ । ଯକ୍ଷଦେଵ ବାବୁ ମନେ ମନେ ଭାବିଲେ, ଏସବୁ ପରିବର୍ତ୍ତନ କେବଳ ୬୦ ହଜାର ଟଙ୍କା ପାଇବା ପାଇଁ ନୁହେଁ ତ ? ତାଙ୍କ ମୃତ୍ୟୁପରେ ଦୁଇ ପୁଅଯାକ ଟାଟା ନଗର ଅଲଗା ଅଲଗା ଯାଇ ବୁଝିଲେ, ଯେ କମ୍ପାନୀରୁ ଏପରି କିଛି ଚିଠି ଯାଇ ନାହିଁ କି କମ୍ପାନୀରୁ ପ୍ରତି ମାସରେ ୫୦୦ ଟଙ୍କା ପଠାଯାଉ ନାହିଁ । ଦୁଇ ଭାଇଯାକ ମନ ଦୁଃଖରେ ଫେରିଲେ । କିନ୍ତୁ ଜଣେ ଏସବୁର ଖବର ରଖୁଥିଲେ ଓ ଆନନ୍ଦ ପାଉଥିଲେ ।

--------------ସମାପ୍ତ--------------

ପୁଣି ମନ ହେଲା ଗୋଟିଏ ଦେଶାତ୍ମବୋଧକ କବିତା ଲେଖିବା ପାଇଁ । ସେ କବିତାଟି ଲେଖିବା ପାଇଁ ମୋତେ ପ୍ରାୟ ୨୦ ଦିନ ଖଣ୍ଡେ ଲାଗିଗଲା । କିନ୍ତୁ ଛନ୍ଦର ଯତିପାତ ହେଲାନାହିଁ । ତାହା ଲେଖିବାକୁ ବହୁତ ସମୟ ଲାଗିଲା । ସେ କବିତାଟି ମଧ୍ୟ ପାଠକମାନଙ୍କ ପଢିବା ପାଇଁ ମୋ ଆତ୍ମ ଜୀବନୀରେ ଲେଖିଛି । ମୁଁ ଏଠାରେ ପାଠକଙ୍କୁ ଜଣାଇ ଦେବାକୁ ଚାହେଁ ମୁଁ କେବେ

କବିତା ଲେଖିବାକୁ ଚେଷ୍ଟା ମଧ୍ୟ କରି ନଥିଲି । ଯଦି ଭୁଲ୍ ଥିବ ତେବେ ପାଠକମାନେ ଦୋଷ ତ୍ରୁଟି ଧରିବେ ନାହିଁ ।

## ଦେଶାତ୍ମବୋଧକ କବିତା

ଉତ୍କଳ ଗୌରବ ଆଜି        ସ୍ମୃତିରୁ ଯାଉଛି ହଜି
ଆଣିବାରେ ସବୁ ଆମେ ଖୋଜି
ଆମ ଉତ୍କଳର ମାଟି        ଖଣିଜ ସମ୍ପଦେ ଭରା
ପୃଥିବୀ ପ୍ରସିଦ୍ଧ ଚାରୁ ଚିତ୍ରକଳା ।

କଳିଙ୍ଗର ବୀର ଦୟାନଦୀ ତୀରେ        କରିଥିଲେ ରଣ ଧଉଳି ପାର୍ଶ୍ୱରେ ।
ଶହିଦ ହୋଇଲେ ଲକ୍ଷ ଲକ୍ଷ ବୀର        ରକ୍ତରେ ରଞ୍ଜିତ ଦୟାନଦୀ ନୀର ।
ହୋଇଲା ବିଦିତ ଧର୍ମାଶୋକ ନାମେ        ଅପସରି ଗଲା ଚଣ୍ଡାଶୋକ ନାମ ।(୧)
ମହାମେଘ ବାହନ ବଂଶର ରାଜା        ଖାରବେଳ ହେଲେ ମଗଧର ରଜା ।
ରଖିଥିଲେ ଓଡିଆ ଜାତିର ମାନ        ପ୍ରତିଷ୍ଠା କଲେ ଆତ୍ମବିଶ୍ୱାସ ଆମ ।
ବୀର ଖାରବେଳ ବିସ୍ତାରିଲେ ରାଜ୍ୟ        ନାମ ଦେଲେ ତାର କଳିଙ୍ଗ ସାମ୍ରାଜ୍ୟ ।
ଖଣ୍ଡଗିରି ପାହାଡେ ହାତୀ ଗୁମ୍ଫାର        ବର୍ଣ୍ଣିତ ହୋଇଛି ପ୍ରତିଷ୍ଠା ତାଙ୍କର ।(୨)
ପାଇ ସ୍ୱପ୍ନାଦେଶ ରାଜା ଇନ୍ଦ୍ରଦ୍ୟୁମ୍ନ        ବାଙ୍କି ମୁହାଣୁ ଆଣିଲେ ଦାରୁବ୍ରହ୍ମ ।
ନୀଳ ମାଧବ ମୂର୍ତ୍ତି ନିର୍ମାଣ କଲେ        କାରିଗର ହସ୍ତେ ରୁଦ୍ଧ କୋଠରୀରେ ।
କେତେ ଦିନ ପରେ ନ ଶୁଭିଲା ଶବ୍ଦ        ଖୋଲିଲେ ଦୁଆର ଭାଙ୍ଗିଣ କବାଟ ।
ହୋଇଛି ଅସଂପୂର୍ଣ୍ଣ ମୂର୍ତ୍ତି ଦେଖିଲେ        ସ୍ୱର୍ଗବାଣୀ ମନ୍ଦିର ଭିତରେ ଶୁଣିଲେ ।
ଅସଂପୂର୍ଣ୍ଣ ମୂର୍ତ୍ତି ସ୍ଥାପନା କରିଲେ        ଜଗତର ନାଥ ନାମ ତାର ଦେଲେ ।
ରାଣୀ ଗୁଣ୍ଡିଚା ଅନୁରୋଧ କରିଲେ        ଯାତରା ଗୁଣ୍ଡିଚା ଆୟୋଜନ କଲେ ।
ତାହା ବର୍ତ୍ତମାନ ଜଗନ୍ନାଥଙ୍କର        ବିଶ୍ୱ ବିଦିତ ଗୁଣ୍ଡିଚା ଯାତ୍ରା ନାମେ ।(୩)
ନରସିଂହ ଦେବ ନିର୍ମାଣ କରିଲେ        ସୂର୍ଯ୍ୟ ମନ୍ଦିର ଚନ୍ଦ୍ରଭାଗା ତୀରେ ।
ବାରଶ ବଢେଇ ବାରବର୍ଷ ଲାଗି        ମନ୍ଦିର ସଂପୂର୍ଣ୍ଣ ନ ପାରିଲେ କରି ।
ରାଜା ମୁଣ୍ଡକାଟ ଘୋଷଣା କରିଲେ        ହେବ କାରିଗରଙ୍କର କାଲି ପ୍ରଭାତେ ।
ରଖିବାକୁ ଜାତି ଭାଇଙ୍କ ଟେକ        ବାର ବରଷର ପୁତ୍ର ଧର୍ମପଦ ।
ପ୍ରାତଃକାଳେ ଚଢି ମନ୍ଦିର ଶିଖର        କରିଲା ସଂପୂର୍ଣ୍ଣ କୋଣାର୍କ ମନ୍ଦିର ।
ଆତ୍ମବଳି ଦେଲା ମହୋଦଧି ତୀରେ        ଅମର ହୋଇଲା ସାରା ଜଗତରେ ।(୪)
କପିଳ ରାଉତରାୟ ନିଯୁକ୍ତ ହେଲେ        ଭାନୁଦେବଙ୍କର ସୈନିକ ଭାବେ ।
ଦକ୍ଷତା ବଳରେ ହେଲେ ସେନାପତି        ନଥିବାରୁ ରାଜାଙ୍କ ସନ୍ତାନ ସନ୍ତତି ।
ଓଡିଶା ଶାସନ କଲେ ଅଧିକାର        ପ୍ରତିଷ୍ଠା କଲେ ସୂର୍ଯ୍ୟ ବଂଶର ।
ନାମିତ ହୋଇଲେ କପିଳେନ୍ଦ୍ର ଦେବ        ବିସ୍ତାର କରିଲେ ଉତ୍କଳ ସାମ୍ରାଜ୍ୟ ।

ଗଙ୍ଗା ରୁ କାବେରୀ ଅଧିକାର କଲେ
ଗୌଡେଶ୍ୱର ନାମେ ବିଦିତ ହେଲେ ।
ପାଳୁଥିଲେ ବୋଲି ଦୁଇ ଲକ୍ଷ ହସ୍ତୀ
ଗଜପତି ନାମେ ପାଇଲେ ଖ୍ୟାତି ।
କରିବାରୁ ଜୟ ଦୁର୍ଗ ନଅ ଗୋଟି
ଭୂଷିତ ହେଲେ ଉପାଧି ନବକୋଟି ।
ଅବଶେଷେ କପିଳ ରାଉତ୍‌ରାୟ
ଗଜପତି ଗୌଡେଶ୍ୱର ନବକୋଟି ।
କର୍ଣ୍ଣାଟ କଳବର୍ଗେଶ୍ୱର ନାମେ
କପିଳେନ୍ଦ୍ର ଦେବ ହେଲେ ପରିଚିତ ।(୫)
ଲକ୍ଷେ ରାଜାଙ୍କର ମଉଡ ମଣି
ମହାମନ୍ତ୍ରୀଙ୍କୁ ପ୍ରକାଶ କଲେ ପୁଣି ।
ମନସ୍ଥ କରିଛି ମୁହିଁ କରିବାକୁ
ପାଟ ରାଣୀ କେମା ପଦ୍ମାବତୀଙ୍କୁ ।
ତ୍ୱରିତେ ମହାମନ୍ତ୍ରୀ ପ୍ରେରଣ କଲେ
ସମ୍ବାଦ କାଞ୍ଚି ରାଜାଙ୍କର ପାଶେ ।
ରାଜା ଦେବିନାହିଁ କହିଲେ କାଞ୍ଚିର
ଚଣ୍ଡାଳର ହସ୍ତେ କନ୍ୟାକୁ ମୋହର ।
ଶୁଣି ଏ ସମ୍ବାଦ ରାଜା ଆଦେଶିଲେ
କାଞ୍ଚି ଅଭିଯାନ ଆୟୋଜନ କଲେ ।
ନ ହୋଇ ସଫଳ କାଞ୍ଚି ଅଭିଯାନେ
ବାହୁଡିଲେ ରାଜା ଶ୍ରୀକ୍ଷେତ୍ର ଧାମେ ।
ଜଗନ୍ନାଥ ପାଶେ ଅଧିଆ ପଡିଲେ
ଶୁଣି ସ୍ୱପ୍ନବାଣୀ ପୁଣି ବାହାରିଲେ ।
କାଞ୍ଚି ଅଭିଯାନେ ଭେଟିଲେ ବାଟରେ
ଅବଳା ଏକ ମାଣିକ ନାମ ତାର ।
କହିଲା ଅବଳା ବସି ଦୁଇ ଭାଇ
ଧଳା କଳା ଘୋଡାରେ ପିଇଲେ ଦହି ।
ଆସୁଛନ୍ତି ରାଜା ପଛରେ କହିଲେ
ଦେବେ କଉଡି ସିଏ ମୁଦି ଦେଖିଲେ ।
ମହାରାଜା ହେଲେ ଆନନ୍ଦେ ବିଭୋର
କହିଲେ ମାଣିକ ଏହା ଭାଗ୍ୟ ତୋର ।
ତପସ୍ୟା କରିଣ ଯୁଗ ଯୁଗ ଧରି
ଯାହାର ଦର୍ଶନ ନ ପାଆନ୍ତି କେହି ।
ତାହାକୁ ଦେଲୁ ତୁ ଖାଇବାକୁ ଦହି
ଏ ସଂସାରେ ଏକା ଭାଗ୍ୟବତୀ ତୁହି ।
ଜଗତର ନାଥ ସାଥେ ରହିଛନ୍ତି
ଜାଣିପାରି ରାଜା ଆନନ୍ଦେ ଚାଲନ୍ତି ।
ମହାରାଜା କାଞ୍ଚି ପରାଜିତ କରି
ପଦ୍ମାବତୀଙ୍କୁ ମନ୍ତ୍ରୀଙ୍କ ହସ୍ତେ ଦେଇ ।
ଚଣ୍ଡାଳର ହସ୍ତରେ ଦାନ କରିବ
ତେବେ ମୋ ମନ ବ୍ୟଥା ପୂରିବ ।
ରାଜା ଜଣାଇଲେ ପୁରୀ ଧାମେ ଫେରି
ଜଗନ୍ନାଥଙ୍କୁ ଭକ୍ତିପୂର୍ଣ୍ଣ ଗୁହାରି ।
ପରବର୍ତ୍ତୀ ଛେରା ପହଁରା କାଳରେ
ପଦ୍ମାବତୀଙ୍କୁ ନେଇ ମନ୍ତ୍ରୀ ପ୍ରବେଶିଲେ ।
ମହାରାଜା କରୁଅଛି ସମର୍ପଣ
ଚଣ୍ଡାଳର ହସ୍ତେ କରନ୍ତୁ ଗ୍ରହଣ ।
ରାଜା ଆନନ୍ଦେ କହିଲେ ପରାଜିତ
ରାଜ୍ୟର ଦୁହିତା ନୁହେଁ ପରାଜିତ ।(୬)
ପିଣ୍ଡିକି ବାହୁ ବଳେନ୍ଦ୍ର ଓଡିଶାର
ବିରୁଦ୍ଧେ ଗଲେ ଇଂରେଜ ଶାସନର ।
ଦଣ୍ଡିତ ହେଲେ ଫାଶୀ ଦଣ୍ଡରେ
ନ ମରିବି ମୁହିଁ ଶେଷ ଇଚ୍ଛା ମୋରେ ।
କୁକୁର ପରି ଚଢି ଫାଶୀ ଖୁଣ୍ଟରେ
ମରିବି ପଛେ ଯୁଦ୍ଧକରି ଶତ୍ରୁ ହାତେ ।
ନ ବୁଝିଲେ କେହି କଥାର ମହତ୍ତ୍ୱ
ଫାଶୀ ବେଳେ ଇଂରେଜ ଉପରେ ଡେଇଁ
ନ ମରି ଶତ୍ରୁର ଫାଶୀ ଖୁଣ୍ଟରେ
ଶହୀଦ୍ ହୋଇଲେ ଗୁଳି ଚୋଟରେ(୭)
ଖଣ୍ଡପଡା ବାସୀ ଆମ ଜାତିଭାଇ
ଚାର ବର୍ଷରେ ଜ୍ଞାନ ଅଗାଧ ପାଇ

ପାଣ୍ଡିତ୍ୟ ଫଳିତ ଜ୍ୟୋତିଷ ଶାସ୍ତ୍ରର ଦେଲେ ଆଗନ୍ତୁକଙ୍କୁ ସଠିକ ଉତ୍ତର ।
କୋଡିଏ ବର୍ଷ ପରେ ଛାଡି ଫଳିତ ସାମନ୍ତ ପଢିଲେ ଜ୍ୟୋତିଷ ଗଣିତ ।
ବାଉଁଶ କାଠିରେ ଚଉଦ ବରଷ କାଳ ମାପିଣ ସମସ୍ତ ଆକାଶ ।
କରିଲେ ପ୍ରସ୍ତୁତ ଏକ ପାଣ୍ଡୁଲିପି ଦେଲେ ସିଦ୍ଧାନ୍ତ ଦର୍ପଣ ନାମ ଲେଖି ।
ରହିଗଲା ସତେଇଶ ବର୍ଷ କାଳ ଜାଣି ନ ପାରିଲେ କୃତିତ୍ୱ ତାଙ୍କର ।
ପଠାଣି ସାମନ୍ତ ଆସି ରହିଥିଲେ ଯୋଗେଶ ରାୟଙ୍କ ଘରପାଖେ ଥରେ ।
ଲକ୍ଷ୍ୟକଲେ ଜଣେ ଅଧ୍ୟାପକ, ରାୟ ଗତିବିଧି ଗ୍ରହ ନକ୍ଷତ୍ର ମାନଙ୍କର
କରୁଛି ଲକ୍ଷ୍ୟ ପ୍ରତିଦିନ ରାତ୍ରରେ ଭେଟିବା ପାଇଁ ତାହାଙ୍କୁ ଡକାଇଲେ ।
କରି ଆଲୋଚନା ଜାଣିଲେ ତାଙ୍କର ଅଗାଧ ପାଣ୍ଡିତ୍ୟ ଜ୍ୟୋତିଷ ଶାସ୍ତ୍ରର ।
ପଚାରିଲେ ଜ୍ୟୋତିଷ ଶାସ୍ତ୍ରରେ ଅଛି ସବିଶେଷ ଜ୍ଞାନ, ପାଇଛନ୍ତି କିଛି ।
ବିନୟ ସହିତ କଲେ ସମର୍ପଣ ପଠାଣି ସାମନ୍ତ ସିଦ୍ଧାନ୍ତ ଦର୍ପଣ ।
ପଢି ପାଣ୍ଡୁଲିପି ତନ୍ନ ତନ୍ନ କରି ପ୍ରତିଷ୍ଠିତ କଲେ ତାହାଙ୍କୁ ବିଶ୍ୱରେ ।
ମହା ମହୋପାଧ୍ୟାୟ ଉପାଧି ପାଇ ପ୍ରତିଷ୍ଠିତ ପଠାଣି ସାମନ୍ତ ବୋଲି । (୮)
ପ୍ରଜାମେଳି ବେଳେ ଢେଙ୍କାନାଳରେ ବ୍ରାହ୍ମଣୀର ଘାଟେ ନୀଳକଣ୍ଠ ପୁରେ ।
ପୋଲିସ୍‌କୁ ପାରି ନ ଦେବାକୁ କରି ବାଳୁତ ସନ୍ତାନ ବାର ବରଷର
ରଖିଥିଲା ନାଆ ନଈର ସେପାରି ପୋଲିସ୍ ଫଉଜ ଆସିଗଲେ ମାଡି ।
କହିଲେ ନାଆ ଶୀଘ୍ର ଆଣ ଏପାରି କହିଲା ନେବି ନାହିଁ ପିଲା ନାଉରୀ
ନାହିଁ ଆଦେଶ ପ୍ରଜାମଣ୍ଡଳର ଗୁଡୁମ୍ ଫୁଟିଲା ଶବ୍ଦ ବନ୍ଧୁକର
ପଡିଗଲା ଟଳି ନାଉରି ପିଲାଟି ଫିଟିଲା ନାହିଁ ଆଉ ତାହାର ପାଟି ।
ସୁନା ଅକ୍ଷରରେ ଲେଖା ହୋଇଗଲା ବାଜିରାଉତ୍ ନାମଟି ତାର ହେଲା ।(୯)
ଅଠର ଶହର ସତସ୍ତରୀ ସାଲେ ଶିଶୁପୁତ୍ର ଏକ ଜନମ ନେଇଥିଲେ ।
ସତ୍ୟବାଦୀ ଥାନା ସୁଆଣ୍ଡୋ ଗ୍ରାମର ଗୋପବନ୍ଧୁ ଦାସ ନାମଟି ତାହାର ।
ନାମ ଥିଲା ତାଙ୍କ ମାତା, ପିତାଙ୍କର ସ୍ୱର୍ଣ୍ଣମୟୀ ଦେବୀ,ଦାସ ଦୈତାରୀ ।
ସ୍କୁଲ୍‌ରେ ଗୋପବନ୍ଧୁ ପଢିଲା ବେଳକୁ କରିଥିଲେ ବିବାହ ମୋଟି ଦେବୀଙ୍କୁ ।
ପରୀକ୍ଷା ପ୍ରବେଶିକା ଦେଇଥିଲେ ପୁରୀ ହାଇସ୍କୁଲରୁ ଉତ୍ତୀର୍ଣ୍ଣ ହେଲେ
ରେଭେନ୍ସା କଲେଜ ପଢିବାକୁ ଗଲେ ସେଠାରୁ ବି.ଏ କରି ପାଶ୍ ଫେରିଲେ ।
କଲିକତାରେ ଆଇନ୍ ପାଠ ପଢିଲେ ଆଇନ୍ ପାଠ ପାଶ୍ କରିବା ବେଳେ ।
ଏକ ସମୟରେ ପାଇଲେ ଖବର ହୋଇଛି କାଳ ସହଧର୍ମିଣୀଙ୍କର ।
ପ୍ରଧାନ ଶିକ୍ଷକ ଭାବେ ଯୋଗଦେଲେ ନୀଳଗିରିର ସ୍କୁଲ୍‌ରେ ପଢାଇଲେ ।
ଛାଡିଲେ ପ୍ରଧାନ ଶିକ୍ଷକ ପଦବୀ ଯାଇ କଟକରେ କଲେ ଓକିଲାତି ।
ଓଡିଶାରେ ହେବାରୁ ପ୍ରବଳ ବଢି ବାଣ୍ଟିଲେ ରିଲିଫ୍ ଗ୍ରାମେ ଗ୍ରାମେ ବୁଲି ।

ପୁରୀଠାରେ ପୁଣି ଓକିଲାତି କଲେ ।
ହେଲା ପରିଣତ କେତେଦିନ ପରେ ।
ଦେଶପ୍ରେମ ବହ୍ନିରେ ଜାଗି ଉଠିଲେ
ନିର୍ବାଚିତ ହେଲେ ସଭାପତି ଭାବେ
୧୯୧୯ ସାଲ ଅକ୍ଟୋବର ମାସରେ
ଉତ୍କଳ କଂଗ୍ରେସର ନିର୍ବାଚିତ ହେଲେ
ବନ୍ଦୀ ହେଲେ ହଜାରିବାଗ୍ ଜେଲରେ
ବିଭୂଷିତ ହେଲେ ଉତ୍କଳମଣି ପଦରେ
ସତ୍ୟବାଦୀ ପ୍ରେସ୍ ପ୍ରତିଷ୍ଠିତ କଲେ

ସତ୍ୟବାଦୀ ସ୍କୁଲ ଉଦ୍‌ଘାଟନ କଲେ ।
ସତ୍ୟବାଦୀ ବନ ବିଦ୍ୟାଳୟ ନାମେ ।
ସ୍ୱାଧୀନତା ଆନ୍ଦୋଳନରେ ମିଶିଲେ ।
ଉତ୍କଳ ସମ୍ମିଳନୀର କଟକରେ ।
ସାପ୍ତାହିକ 'ସମାଜ' ପ୍ରକାଶ କଲେ ।
ପ୍ରଥମ ପ୍ରାଦେଶିକ ସଭାପତି ଭାବେ ।
କବିତା 'ବନ୍ଦୀର ଆତ୍ମକଥା' ଲେଖିଲେ ।
ଉତ୍କଳ ରାଜନୈତିକ ସମ୍ମିଳନୀରେ
୨୮ ସାଲେ ସଂସାରୁ ବିଦାୟ ନେଲେ ।

----ସମାପ୍ତ------

୨୦୦୩ ଅପ୍ରେଲ୍ ୧୮ ତାରିଖରେ ବିଜ୍ଞାନ ପ୍ରଚାର ସମିତିରେ ମୁଁ ଗୋଟିଏ ପ୍ରବନ୍ଧ ପାଠ କରିଥିଲି । ପ୍ରବନ୍ଧଟିର ନାମ ହେଉଛି "ଭୁବନେଶ୍ୱରରେ ପାଣି ଅଭାବର ସମାଧାନ" । ଏହି ସମାଧାନର ବ୍ୟବସ୍ଥାଟି ମୁଁ ପ୍ରାୟ ୧୯୯୧ ମସିହାରେ ଆରମ୍ଭ କରିଥିଲି ଏବଂ ସେହି ବ୍ୟବସ୍ଥାଟି ଦୀର୍ଘ ସାତ ବର୍ଷ କାଳ ଆମଘରେ ଚାଲିଥିଲା । ଏତେ ବର୍ଷର ପୁରୁଣା କଥା ପ୍ରବନ୍ଧ ଆକାରରେ ଲେଖିବା ପାଇଁ ଡକ୍ଟର ଚିତ୍ତରଞ୍ଜନ ମିଶ୍ର ମୋତେ ପ୍ରବର୍ତ୍ତାଇ ଥିଲେ । ବିଷୟଟି ହେଲା ୧୭.୦୩.୦୩ ରେ ଡକ୍ଟର ଚିତ୍ତରଞ୍ଜନ ମିଶ୍ର ଆମ ଘରକୁ ଆସିଥିଲେ । ଆମ ଘର ତଳ ଦୁଆର ମୁହଁ, ଉପର ମହଲାରୁ ଖୋଲିବାର ଏବଂ ବାହାରକୁ ଯିବା ଲୋକ ବାହାରୁ ଭିତର ପଟୁ ବନ୍ଦ କରି ଚାଲି ଯିବାର ଯେଉଁ ବ୍ୟବସ୍ଥା ହୋଇଛି ତାହା ଗୋଟିଏ ସୁବିଧା ଜନକ ବ୍ୟବସ୍ଥା ବୋଲି କହିଲେ । ତାପରେ ପ୍ରବର୍ତ୍ତାଇଲେ ଏହି ପ୍ରଣାଳୀର ପ୍ରଯୁକ୍ତି ଉପରେ ଗୋଟିଏ ପ୍ରବନ୍ଧ ଲେଖି ଛପାଇବାକୁ । ଏହା ଦ୍ୱାରା ଭୁବନେଶ୍ୱରର ବାସିନ୍ଦାମାନଙ୍କର ବହୁତ ଉପକାର ହେବ । ମୁଁ କହିଲି, ଏହା କିନ୍ତୁ ସାର୍ବଜନୀନ ହୋଇପାରିବ ନାହିଁ । କାରଣ ଭିନ୍ନ ଭିନ୍ନ ଲୋକଙ୍କ ଘରେ ପ୍ରବେଶ ଦ୍ୱାରର ଅବସ୍ଥିତି ଭିନ୍ନ ଭିନ୍ନ ପ୍ରକାରର । ତାପରେ ମୁଁ ପାଣିର ଅଭାବ ବିଷୟରେ କିଛି ଆଲୋଚନା କଲି ଏବଂ ପାଣି ଅଭାବର ସମାଧାନ ପାଇଁ କିପରି ଗୋଟିଏ ସହଜ ଉପାୟର ବ୍ୟବସ୍ଥା ମୋ ଘରେ କରିଥିଲି, ସେକଥା କହିଲି । ତାଦ୍ୱାରା ପାଣି ଅଭାବର ସମାଧାନ ପ୍ରାୟ ହୋଇଗଲା । ତାଙ୍କୁ ସହଜ ଉପାୟର ବ୍ୟବସ୍ଥାଟି ଅତି ସୂକ୍ଷ୍ମରେ ବୁଝାଇ ଦେଲି । କହିଲି ସେ ଉପାୟଟି ସମସ୍ତ ମଧ୍ୟବିତ୍ତ ପରିବାର ଲୋକଙ୍କର କାମରେ ଆସିବ । ସେ ପ୍ରବର୍ତ୍ତାଇଲେ, ସେ ବିଷୟରେ ଗୋଟିଏ ପ୍ରବନ୍ଧ ଭଲ ଭାବରେ ଚିତ୍ର ମାଧ୍ୟମରେ ବର୍ଣ୍ଣନା କରି ପ୍ରକାଶ କରନ୍ତୁ, ଯେପରି ଏହା ଭୁବନେଶ୍ୱରର ପ୍ରତ୍ୟେକ ଅଧିବାସୀଙ୍କ ବ୍ୟବହାରରେ ଲାଗିପାରିବ । ମୁଁ ତାଙ୍କ ପ୍ରସ୍ତାବରେ ରାଜିହେଲି । ସମୁଦାୟ ପ୍ରବନ୍ଧଟି ମୁଁ ଏଠାରେ ପ୍ରକାଶ କରୁନାହିଁ ।

ଅପ୍ରେଲ ମାସ ଶେଷ ସପ୍ତାହରେ ମୋ ଶାଶୁଙ୍କର କାଳ ହୋଇ ଯିବାରୁ ତାଙ୍କ ଦଶାହ କ୍ରିୟାରେ ଯୋଗଦେବା ପାଇଁ ମୋ ପୁଅ ଓ ବୋହୂମାନେ ମଇ ମାସ ୩ ତାରିଖରେ ପୁରୀ ଯାଇଥିଲେ, କିନ୍ତୁ ମୁଁ ଯାଇ ନ ଥିଲି । ମଇ ୦୪ ତାରିଖରେ ରେଭେନ୍ସା କଲେଜର ପଦାର୍ଥ ବିଜ୍ଞାନ ବିଭାଗର ପୁରାତନ ଛାତ୍ର ସମ୍ମିଳନୀରେ ଯୋଗ ଦେବା ପାଇଁ ଡକ୍ଟର ନିରଞ୍ଜନ ବାରିକ୍ ଓ

ଡକ୍ଟର କୃତିବାସ ପଟ୍ଟନାୟକଙ୍କ ସାଙ୍ଗରେ ଦିନ ୯ଟା ବେଳେ କଟକ ଯାଇଥିଲି ଏବଂ ସଭାକାର୍ଯ୍ୟ ଶେଷ ହେବା ପରେ ଭୁବନେଶ୍ୱର ଫେରି ଆସିଲି । କେବଳ ସମ୍ମିଳନୀରେ ଯୋଗ ଦେବା ପାଇଁ ନୁହେଁ ବରଂ ବହୁତ୍ ପୁରୁଣା ବନ୍ଧୁମାନଙ୍କ ସହିତ ଦେଖା କରିବା ମୋର ଉଦ୍ଦେଶ୍ୟ ଥିଲା ।

ଜୁନ୍ ୦୪ ତାରିଖରେ ମୋର ସ୍ୱାଙ୍କର ୫ମ ବାର୍ଷିକ ଶ୍ରାଦ୍ଧ ପଡିଥିଲା । କିନ୍ତୁ ଏଥର ମୋ ବଡ ପୁଅ ରଞ୍ଜନ ବୋଉର ଶ୍ରାଦ୍ଧ ପାଇଁ ଉପସ୍ଥିତ ହୋଇ ପାରି ନଥିଲା । କାରଣ ସେ 'ଏଲ.ଓ.ସି' ସିନେମାର ସୁଟିଂ କରିବାକୁ ଲାଡାକ୍ ଓ ତାର ଅଳ୍ପ କେତେଦିନ ପରେ ଅନ୍ୟ ଏକ ସିନେମା ସୁଟିଂ ପାଇଁ ସୁଇଜରଲ୍ୟାଣ୍ଡ ଯାଇଥିଲା । ସାନପୁଅ ଶ୍ରାଦ୍ଧ କରିଥିଲା । ଶ୍ରାଦ୍ଧ ପାଇଁ ୟୁନିଟ୍-୧ରେ ଥିବା ଶ୍ରୀରାମ ମନ୍ଦିରରେ ଭୋଜନର ବ୍ୟବସ୍ଥା କରାଯାଇଥିଲା । ଶ୍ରାଦ୍ଧରେ ମୋ ସମ୍ପର୍କୀୟ ବନ୍ଧୁ ବାନ୍ଧବମାନେ ଓ ବିଜ୍ଞାନ ପ୍ରଚାର ସମିତିର କେତେ ଜଣ ସଭ୍ୟ ଯୋଗ ଦେଇଥିଲେ । ମଇ-ଜୁନ୍ ସଂଖ୍ୟାର ବିଜ୍ଞାନ ଦିଗନ୍ତରେ ମୋର ଗୋଟିଏ ପ୍ରଯୁକ୍ତି ବିଦ୍ୟା ସମ୍ବନ୍ଧୀୟ ପ୍ରବନ୍ଧ ପ୍ରକାଶିତ ହୋଇଥିଲା । ସେ ପ୍ରବନ୍ଧଟିର ନାମହେଲା 'ଗୃହ ଭିତରେ ଜଳ ସଂରକ୍ଷଣ ପାଇଁ ଅଭିନବ ପଦ୍ଧତି' ।

ସେହି ଜୁନ୍ ମାସରେ ଗୋଟିଏ ପ୍ରଶ୍ନ ପତ୍ର କରିବା ପାଇଁ ମୋତେ ଅନୁରୋଧ କରାଯାଇଥିଲା ଏବଂ ପ୍ରଶ୍ନପତ୍ରଟି ଠିକ୍ ଏକ ମାସ ମଧ୍ୟରେ ପ୍ରସ୍ତୁତ କରି ପଠାଇ ଦେବାକୁ କୁହାଯାଇଥିଲା । ଗଲା ବାର ବର୍ଷ ହେଲା କୌଣସି ପ୍ରଶ୍ନପତ୍ର ପ୍ରସ୍ତୁତ କରି ନଥିଲି । ମାସକ ଭିତରେ ପ୍ରଶ୍ନପତ୍ରଟି କରି ପଠାଇ ଦେଲି । ବାବୁ ସୁଇଜରଲ୍ୟାଣ୍ଡରୁ ମୁମ୍ବାଇ ଫେରି ଆସିଲା ପରେ ଜୁଲାଇ ମାସରେ ମୋତେ ଫୋନ୍‌ରେ ଜଣାଇଲା, ଯେ ପିଲାମାନଙ୍କୁ ସାଙ୍ଗରେ ନେଇ ଭୁବନେଶ୍ୱର ଯାଉଛି । ସେମାନଙ୍କୁ ସେଠାରେ ଛାଡିଦେବ ଏବଂ ପୁଅର କୌଣସି ସ୍କୁଲ୍‌ରେ ନାମ ଲେଖାଇ ଦେବ । ନିର୍ଦ୍ଦିଷ୍ଟ ଦିନରେ ସେମାନେ ଆସି ପହଞ୍ଚିଲେ । ତାର କେତେଦିନ ପରେ ନାତିର ନାମ ଗୁଟିକା ସ୍କୁଲ୍‌ରେ ଲେଖାଇ ଦେଲେ । ବାବୁ ଶ୍ରୀ ସାଧୁ ମେହେରଙ୍କ ନିର୍ଦ୍ଦେଶନାରେ ଗୋଟିଏ ସିନେମା ସୁଟିଂ କରିଥିଲା । ବାବୁର ଜନ୍ମଦିନ ଦ୍ୱିତୀୟା ଓଷା ଦିନ ପଡେ । ସେହିଦିନ ତାର ସୁଟିଂ ଦେଖିବାକୁ ଖୋର୍ଦ୍ଧା ଯାଇଥିଲୁ । ସାନପୁଅ ବୁବୁ ଆଶ୍ୱିନ ମାସରେ "ହେ ସାଇ" ନାମକ ଗୋଟିଏ ଭଜନ କ୍ୟାସେଟ୍ ପ୍ରସ୍ତୁତ କରି ଭୁବନେଶ୍ୱରର ସିରିଡି ମନ୍ଦିରରେ ବିଶିଷ୍ଟ ଗାୟିକା ଶ୍ରୀମତୀ ଇନ୍ଦ୍ରାଣୀ ମିଶ୍ରଙ୍କ ଦ୍ୱାରା ଉଦ୍‌ଘାଟନ କରାଇ ଥିଲା । ସେହି ଉଦ୍‌ଘାଟନ୍ ଉତ୍ସବକୁ ଆମେ ସମସ୍ତେ ସିରିଡି ମନ୍ଦିରକୁ ଯାଇଥିଲୁ । ସେଦିନ ମନ୍ଦିରର ଟ୍ରଷ୍ଟି ମୋତେ ସିରିଡି ବାବାଙ୍କ ଦେହରେ ଲାଗି ହୋଇଥିବା ଗୋଟିଏ ବସ୍ତ୍ର ଉପହାର ଦେଇଥିଲେ ।

## ସତ୍ୟବାଦୀ ବିଦ୍ୟାଳୟ ପରିଭ୍ରମଣ

ମୋର ବହୁତ ଦିନରୁ ସତ୍ୟବାଦୀ ସ୍କୁଲ, ବକୁଳ ବନ ବିଦ୍ୟାଳୟ, ବାଲି କପିଳେଶ୍ୱର, ନିମାପଡା ଉଚ୍ଚ ଇଂରାଜୀ ବିଦ୍ୟାଳୟ ଓ ନିମାପଡା ପ୍ରାଇମେରୀ ବିଦ୍ୟାଳୟ (ଯେଉଁଠାରେ ନନା ହେଡପଣ୍ଡିତ ଥିଲେ) ଯିବାକୁ ଇଚ୍ଛାଥିଲା । ତେଣୁ ଡିସେମ୍ବର ୧୫ ତାରିଖ ଦିନ ସକାଳୁ ଗୋଟିଏ

ଗାଡି ଭଡା କରି ମୋର ପୁଅ ବୋହୂମାନଙ୍କ ସାଙ୍ଗରେ ବାହାରିଲି । ପ୍ରାୟ ୧୦ଟା ବେଳେ ସତ୍ୟବାଦୀରେ ପହଞ୍ଚି ମାମୁଁ ଘର (ଯେଉଁଠାରେ ମୁଁ ମାମୁଁଘରେ ରହି ସତ୍ୟବାଦୀ ସ୍କୁଲରେ ପଢୁଥିଲି) ପାଖରେ ପହଞ୍ଚିଲୁ । କିନ୍ତୁ ସେ ସ୍ଥାନ ଏତେ ପରିବର୍ତ୍ତନ ହୋଇଯାଇଛି ଯେ ମାମୁଁଘର ଚିହ୍ନି ପାରିଲି ନାହିଁ । ତାପରେ ସ୍କୁଲ୍ ଦେଖିବାକୁ ଗଲୁ । ସ୍କୁଲ୍‌ର ପ୍ରାୟ କିଛି ପରିବର୍ତ୍ତନ ହୋଇନାହିଁ । ସ୍କୁଲର ଜଣେ ଶିକ୍ଷକଙ୍କ ସହିତ ଦେଖାହେଲା । ତାଙ୍କୁ ବନ ବିଦ୍ୟାଳୟ ଦେଖାଇବାକୁ କହିଲୁ । ସେ କହିଲେ ବନ ବିଦ୍ୟାଳୟ ଅନେକ ବର୍ଷ ହେବ ବନ୍ଦହୋଇ ଗଲାଣି । ତାପରେ ଆମେ ଗୋପବନ୍ଧୁ ଦାଶଙ୍କ ସମାଧି ଦେଖିବାକୁ ଗଲୁ । କିନ୍ତୁ ସମାଧି ପାଖକୁ ଯାଇ ପାରିଲୁ ନାହିଁ । ଗୋପବନ୍ଧୁଙ୍କ ସମାଧି ପାଖରେ ମୋର ନନାଙ୍କ ମର ଶରୀରରେ ଅଗ୍ନି ସଂଯୋଗ କରାଯାଇ ଥିଲା । ମୁଁ ସତ୍ୟବାଦୀରେ ପଢୁଥିବା ବେଳେ କେତେଥର ସମାଧି ପାଖରେ ବସି ନନାଙ୍କ କଥା ଭାବି କାନ୍ଦୁଥିଲି । ତାପରେ ଆମେ ସାକ୍ଷୀଗୋପାଳ ମନ୍ଦିର ଦେଖିବାକୁ ଗଲୁ । ଅନ୍ୟମାନେ ସମସ୍ତେ ସାକ୍ଷୀଗୋପାଳ ଦେଖିବାକୁ ଗଲେ, କିନ୍ତୁ ମୁଁ ଗାଡିରେ ବସି ରହିଲି । ଅନ୍ୟମାନେ ଦେଉଳରୁ ଫେରିଲା ପରେ ଆମେ ସମସ୍ତେ ପୁରୀ ଅଭିମୁଖେ ଯାତ୍ରାକଲୁ ।

ପୁରୀର ମାର୍କେଟ ପାଖରେ ପହଞ୍ଚିଲା ପରେ ପୋଲିସ୍ ଗାଡି ଆଉ ଆଗକୁ ଯିବାକୁ ଦେଲାନାହିଁ । ତେଣୁ ମୁଁ ଗାଡିରେ ବସି ରହିଲି । କାରଣ ମୁଁ ଏତେବାଟ ଚାଲି ଯାଇ ପାରିବି ନାହିଁ । ସମସ୍ତେ ଜଗନ୍ନାଥ ଦର୍ଶନ କରିବାକୁ ଗଲେ । ପ୍ରାୟ ଏକ ଘଣ୍ଟା ପରେ ଫେରି ଆସିଲେ । ଆମେ ସମୁଦ୍ର କୂଳ ରାସ୍ତାରେ ଯାଇ ବାଲିକପିଳେଶ୍ୱର ଠାରେ ପହଞ୍ଚିଲୁ । ମୁଁ ବାଲିକପିଳେଶ୍ୱର ଯିବାକୁ ମନସ୍ଥ କରିବାର କାରଣ ହେଲା ପିଲାବେଳେ ମୋର ଗୋଡ ଛୋଟା ହୋଇଯାଇ ଥିଲା । ତେଣୁ ନନା ମୋର ଛୋଟା ଗୋଡ ଭଲ କରିବା ପାଇଁ କେଉଁଠାରୁ ହୁକୁମ୍ ଆଣିଥିଲେ ଏବଂ ଭଲ ହେଲାପରେ ବାଲିକପିଳେଶ୍ୱର ଯାଇଥିଲେ । ଆମେ ନିମାପଡାଠାରୁ ଶଗଡରେ ବାଲିକପିଳେଶ୍ୱର ଯାଇଥିଲୁ । ଶଗଡରେ ଝାଉଁବଣ ଭିତରେ ବାଲିରେ ଗଲାବେଳେ ମୋତେ ଖୁବ୍ ଭଲ ଲାଗିଥିଲା । ସେହି ଅନୁଭୂତି ଆଉ ଥରେ ପାଇବା ପାଇଁ ମୋର ଭାରି ଇଚ୍ଛା ହୋଇଥିଲା । କିନ୍ତୁ ଏଥର ଗାଡିରେ ଯିବା ବେଳେ ସେ ଅନୁଭୂତି ପାଇ ନ ଥିଲି । ପିଲାଦିନର ଅନୁଭୂତି ଲେଖିଲା ବେଳେ ହୁକୁମ୍ ଦିଆ ହେଉଥିବା ଜାଗାଟିର ନାମ ମନେ ପଡି ନ ଥିଲା ।

## ବାଲିକପିଳେଶ୍ୱର ଓ ନିମାପଡା ଭ୍ରମଣ

ବାଲିକପିଳେଶ୍ୱର ପୂଜକଙ୍କଠାରୁ ବୁଝିଲି ଯେ ସେ ଜାଗାଟିର ନାମ "ପାଞ୍ଚମାଣିଆ" । ଏବେ ମଧ୍ୟ ହାଡଭଙ୍ଗା ରୋଗୀମାନେ ପାଞ୍ଚମାଣିଆରୁ ହୁକୁମ୍ ଆଣି ଭଲ ହେଉଛନ୍ତି । ବାଲିକପିଳେଶ୍ୱର ମହାଦେବଙ୍କୁ ଦର୍ଶନ କରିସାରି ଆମେ 'ରାମଚଣ୍ଡୀ ଠାକୁରାଣୀ'ଙ୍କ ମନ୍ଦିର ଦେଖିବାକୁ ଗଲୁ । ସେଠାରେ ରାମଚଣ୍ଡୀଙ୍କ ଉପରେ ଗୋଟିଏ ଢଗ ଅଛି । "ଭଲା ରାମଚଣ୍ଡୀ ଭଲାରେ, କଳାପାହାଡକୁ ଦୁଆରେ ବସାଇ, ଭଲା ପାଣି ପାଇଁ ଗଲାରେ" । ଏହି ଢଗର ମର୍ମ ହେଲା କଳାପାହାଡ ଯେତେବେଳେ ପୁରୀ ଆକ୍ରମଣ କରିଥିଲା ସେହି ସମୟରେ ରାମଚଣ୍ଡୀ

ଠାକୁରାଣୀ ଏକ ସ୍ତ୍ରୀ ଲୋକ ବେଶରେ ଜଗନ୍ନାଥଙ୍କ ବ୍ରହ୍ମକୁ ନେଇ କେଉଁଠାରେ ଲୁଚାଇ ଦେବାକୁ ଗଲେ, ଯେ ଆଉ ଫେରିଲେ ନାହିଁ । ରାମଚଣ୍ଡି ଦେଖିସାରି ଆମେ ନିମାପଡା ଗଲୁ ।

ନିମାପଡାରେ ପହଞ୍ଚିଲା ବେଳକୁ ପ୍ରାୟ ୨ଟା ବାଜିଥିଲା । ନିମାପଡା ଭିତରେ ପଶିଲା ବେଳେ ଆଗ ଗୋପିନାଥଙ୍କ ମନ୍ଦିର ପଡେ । ମନ୍ଦିର ପାଖରେ ମୋର ସ୍କୁଲ୍ ସହପାଠୀ ନୃସିଂହ ସାହୁଙ୍କ ଦୋକାନ ଥିଲା । ସେଠାରେ ଗାଡିରୁ ଓହ୍ଲାଇ ପଚାରିଲା ପରେ ତାଙ୍କ ଦୋକାନ ମିଳିଲା । ଦୋକାନରେ ତାଙ୍କ ପୁଅ ଥିଲେ । ସେ କହିଲେ, ବାପା ୫ଟା ବେଳେ ଅଧଘଣ୍ଟା ପାଇଁ ଦୋକାନକୁ ଆସନ୍ତି । ମୁଁ କହିଲି, ୫ଟା ବେଳେ ଫେରିବି, ଟିକିଏ ଡେରି ହୋଇପାରେ ଅପେକ୍ଷା କରିଥିବେ । ତାପରେ ଆମେ ବାସନ୍ତି ମେସ୍ ପାଖକୁ ଗଲୁ । ବାସନ୍ତି ମେସ୍ ଆଗରେ ଆଉ ଗୋଟିଏ ମେସ୍ ଥିଲା । ତାର ନାମ ଶାରଦା ମେସ୍ । ଦୁଇଟି ଯାକ ମେସ୍ ଦୋକାନରେ ପରିବର୍ତ୍ତିତ ହୋଇ ଯାଇଛି । ପତିତପାବନ ଦେବଙ୍କ ମନ୍ଦିର ଆଗରେ ପହଞ୍ଚିଲୁ । ମନ୍ଦିର ଆଗରେ ପତିତପାବନ ପାଟଣା ଅବସ୍ଥିତ । ତାର ଟିକିଏ ଆଗକୁ ଛେନା ଝିଲି ଦୋକାନ । ସେହି ଦୋକାନକୁ ଲାଗି ଯେଉଁ ଘରଟି ଅବସ୍ଥିତ ତାହା ଆଗରୁ ଆମ ଘର ଥିଲା । ସେହି ଘର ଆଗରେ ଗୋଟିଏ ବଡ ବାମ୍ପି ଅଛି । ବାମ୍ପିଟିକୁ ମୋର ହେତୁ ପାଇଲା ଦିନଠାରୁ ଦେଖି ଆସୁଛି । ମୋର ପିଲାବେଳେ ସେଇ ବାମ୍ପିଟିରୁ ଇଟା ପଥର ଖସି କୂଅ ଭିତରେ ପଡୁଥିଲା । ମୋର ମନେ ଅଛି ଥରେ ଡିଜେଲ୍ ପମ୍ପ ଅଣାଯାଇ ପାଣି କଢାଯାଇ ମରାମତି ହୋଇଥିଲା । ବାମ୍ପିର ପୂର୍ବ ପଟେ ଏବେ ଯେଉଁ ଘରେ ପତିତପାବନ ଔଷଧାଳୟ ଅଛି, ସେହି ଘରଟିରେ ନନା ଔଷଧ ଦୋକାନ କରିଥିଲେ । ତାର ନାମ ସେତେବେଳେ ମଧ୍ୟ ସେହି ନାମ ଥିଲା । ନନାଙ୍କ ମୃତ୍ୟୁ ପରେ ଶ୍ରୀ କୁଳମଣି ଦାସ ସେହି ଦୋକାନର ବିଜ୍ଞାପନ ଫଳକରେ "ପ୍ରତିଷ୍ଠାତା ପଣ୍ଡିତ ଅଜାବ ମିଶ୍ର" ବୋଲି ଲେଖି ଔଷଧ ଦୋକାନଟି ଚଳାଇ ଥିଲେ । କାରଣ ସେ ନନାଙ୍କ ଠାରୁ କବିରାଜି ଶିକ୍ଷା କରିଥିଲେ । ଏବେ ନିମାପଡା ଗଲାପରେ ଶୁଣିଲୁ ଶ୍ରୀ କୁଳମଣି ଦାଶଙ୍କ କାଳ ହୋଇଯାଇଛି ଏବଂ ଦୋକାନ ତାଙ୍କ ପୁଅ ଚଳାଉଛନ୍ତି । କିନ୍ତୁ ନାମ ଫଳକରୁ "ପ୍ରତିଷ୍ଠାତା ପଣ୍ଡିତ ଅଜୀବ ମିଶ୍ର" କଟି ଯାଇଛି । ତାପରେ ଆମେ ନିମାପଡା ଉଚ୍ଚ ଇଂରାଜୀ ବିଦ୍ୟାଳୟକୁ ଗଲୁ । ସେତେବେଳେ ପ୍ରଧାନଶିକ୍ଷକ ଭାବେ ଜଣେ ସ୍ତ୍ରୀ ଲୋକ କାମ କରୁଥିଲେ । ମୁଁ ଯେଉଁ କୋଠରୀରେ ରହୁଥିଲି ତାହା ଦେଖିବାକୁ ଆମେ ସବୁ ଗଲୁ । ସେ ଘରର ଭିଡିଓ ଫଟୋ ଓ ସ୍କୁଲ୍ ପ୍ରଧାନଶିକ୍ଷକ ଏବଂ ଅନ୍ୟ ଶିକ୍ଷକ ମାନଙ୍କର ଫଟୋ ବାବୁ ନେଲା । ସ୍କୁଲ୍‌ର ବିଶେଷ କିଛି ପରିବର୍ତ୍ତନ ହୋଇନାହିଁ । କେବଳ ରାସ୍ତାର ଅନ୍ୟପଟେ ଦୁଇ ମହଲା ଘର ତିଆରି ହୋଇଛି । ସେଠାରେ ବର୍ତ୍ତମାନ କ୍ଲାସ୍ ହେଉଛି । ନୂଆ ସ୍କୁଲ୍ ଘର ପାଖରେ ଶ୍ରୀ ବୃନ୍ଦାବନ ଆଚାର୍ଯ୍ୟଙ୍କ ଘର । ସେ ମହାଶୟ ମୁଁ ପଢିଲା ବେଳେ ସ୍କୁଲ୍ ଶିକ୍ଷକ ଥିଲେ । ତାଙ୍କର ୧୦ ବର୍ଷ ତଳେ କାଳ ହୋଇ ଯାଇଥିଲା । ତାଙ୍କ ସ୍ତ୍ରୀଙ୍କ ସଙ୍ଗେ ଦେଖାକଲି । ମୁଁ ପଢିଲା ବେଳେ ଶ୍ରୀ ବୃନ୍ଦାବନ ବାବୁ ବାସନ୍ତି ମେସ୍‌ରେ ରହୁଥିଲେ । ପ୍ରତି ଶନିବାର ଦିନ ଉପର ବେଳା ତାଙ୍କ ଘରକୁ ଯାଉଥିଲି । ରବିବାର ଦିନ ରହି ପୁଣି ସୋମବାର ଦିନ ସକାଳେ ନିମାପଡା ଆସୁଥିଲୁ । ତାଙ୍କ ସ୍ତ୍ରୀଙ୍କୁ ସବୁ କଥା କହିଲା ପରେ ସେ ଚିହ୍ନିଲେ । ସେ

ସମସ୍ତଙ୍କୁ ଜଳଖିଆ ଖାଇବାକୁ ଦେଲେ । ସେଠାରୁ ବିଦାୟ ନେଇ ଆମେ ପ୍ରାଇମେରୀ ସ୍କୁଲ୍ ଆଡେ ଗଲୁ । କିନ୍ତୁ ସ୍କୁଲ୍ କେଉଁଠାରେ ଅଛି ଜାଣି ପାରିଲୁ ନାହିଁ । ପଛକୁ ଫେରି ଜଣେ ମଧ୍ୟ ଇଂରାଜୀ ସ୍କୁଲ୍‌ର ଶିକ୍ଷକଙ୍କୁ ପଚାରିଲୁ । ଏଠାରେ ଏକ ପ୍ରାଇମେରୀ ସ୍କୁଲ୍ ଥିଲା । ତାହା କେଉଁଠାରେ ଅଛି ? ସେ କହିଲେ, ଏହି ସ୍କୁଲ୍‌ଟି ପ୍ରାଇମେରୀ ସ୍କୁଲ୍ । ତାହା ଏବେ ମଧ୍ୟ ଇଂରାଜୀ ସ୍କୁଲ୍‌ରେ ପରିବର୍ତ୍ତିତ ହୋଇ ଯାଇଛି । ମୁଁ ପଚାରିଲି, ଏଠାରେ ଅଜୀବ ସ୍ମୃତି ପାଠାଗାର ନାମରେ ଗୋଟିଏ ଘର ଅଧା ତିଆରି ହୋଇଥିଲା ତାହା କେଉଁଠାରେ ଅଛି ? ସେ ହାତ ବଢାଇଦେଲେ ଏବଂ କହିଲେ ୧୯୯୯ ବାତ୍ୟାରେ ସଂପୂର୍ଣ୍ଣ ଭାଙ୍ଗି ଯାଇଛି । ତାହା ପୁଣି ଥରେ ଏବେ ତିଆରି ହେଉଛି । ସେଠାରେ ଏକ ନାମ ଫଳକ ଲେଖା ଥିଲା । ସେଥିରେ ଲେଖା ଯାଇଛି "ନିମାପଡା ପ୍ରାଇମେରୀ ସଂଘ କାର୍ଯ୍ୟାଳୟ" ଉଦ୍‌ଘାଟକ (ମୋର ଉଦ୍‌ଘାଟକଙ୍କ ନାମ ମନେ ନାହିଁ ।) ୧୯୭୨ କି ୭୩ ମସିହାରେ ଶ୍ରୀ ବନମାଳି ପଟ୍ଟନାୟକ ପାଠାଗାରର ମୂଳଦୁଆ ପକାଇ ଥିଲେ । ଆମେ ସବୁ ଚାଲି ଆସିଲୁ । ବାଟରେ ଆସିଲା ବେଳେ ଶ୍ରୀ ନୃସିଂହ ସାହୁଙ୍କୁ ଦୋକାନରେ ବସିଥିବାର ଦେଖି ମୁଁ ଗାଡି ରଖିବାକୁ କହିଲି । ଗାଡିରୁ ଓହ୍ଲାଇ ତାଙ୍କ ସାଙ୍ଗରେ ଟିକିଏ କଥା ବାର୍ତ୍ତା ହୋଇ ଗାଡିରେ ବସି ଭୁବନେଶ୍ୱର ଚାଲି ଆସିଲୁ ।

ଏହା ଭିତରେ ମୋର ନାତୁଣୀ କୁନ୍‌ମାମାର ଏକ ଇଂଜିନିୟରିଂ କଲେଜରେ ବାଇଓଟେକ୍‌ନୋଲୋଜିରେ ନାମ ଲେଖା ହୋଇଯାଇଥିଲା । କିନ୍ତୁ ତା ପୂର୍ବରୁ ତାର ନାମ ଲେଖା ହୋଇ ପାରୁ ନଥିଲା । ତେଣୁ ସିରିଡି ବାବାଙ୍କ ପାଖରେ ମାନସିକ ହୋଇଥିଲା । କୁନ୍‌ମାମା ଚେନ୍ନାଇରୁ ଛୁଟିରେ ଆସିବା ପରେ ମୋର ଝିଅ ଏବଂ ଜ୍ୱାଇଁ ସିରିଡି ବାବାଙ୍କ ମନ୍ଦିରରେ ପୂଜା କରିବା ପାଇଁ ଭୁବନେଶ୍ୱର ଆସିଥିଲେ । ୨୦.୧୨.୦୩ ଦିନ ପୂଜା କରିବା ପାଇଁ ବ୍ୟବସ୍ଥା ହୋଇଥିଲା । ସେ ଦିନ ଆମେ ସମସ୍ତେ ସିରିଡି ମନ୍ଦିରକୁ ଯାଇଥିଲୁ । ପୂଜା ସରିଲା ପରେ ପ୍ରସାଦ ସେବନ କରି ଘରକୁ ଆସିଲୁ । ତାର ଦୁଇଦିନ ପରେ ସେମାନେ ରାଉରକେଲା ଚାଲିଗଲେ ।

୨୦୦୪ ମସିହାର ପ୍ରଥମ ଦିନ ବାବୁ ସୁଟିଂ କରିଥିବା ସିନେମା "ରହିଛି ରହିବି ତୋହରି ପାଇଁ" ଆମେ ସମସ୍ତେ ଦେଖିବାକୁ ଯାଇଥିଲୁ । ବାବୁ ସିନେମାଟି ନିଜେ ସୁଟିଂ କରିଥିବାରୁ ୧୨ ବର୍ଷ ପରେ ହଲରେ ଯାଇ ସିନେମା ଦେଖିଲି । ସେଦିନ ରାତିରେ ମୋର ପିଏଚ୍.ଡି ଛାତ୍ର ଡକ୍ଟର ଆକାଶ ସାହୁ ଓ ଡକ୍ଟର ଉଦୟ ଚନ୍ଦ୍ର ପଟ୍ଟନାୟକ ମୋତେ ଫୋନ୍ ଦ୍ୱାରା ଶୁଭେଚ୍ଛା ଜଣାଇ ଥିଲେ । ସେହିଦିନ ଶ୍ରୀ ଚିରରଞ୍ଜନ ବାବୁ ନୀଳକୋର ପ୍ରତିଷ୍ଠା ଦିବସ ସଭା ପାଇଁ ୬ ଓ ୭ ତାରିଖରେ ନିମନ୍ତ୍ରଣ କରିଥିଲେ । ମୁଁ ୬ ତାରିଖ ଦିନ ସଭାରେ ଯୋଗ ଦେଇଥିଲି । ସେଥିରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ପୂର୍ବତନ ଚେୟାରମ୍ୟାନ୍ ପ୍ରଫେସର ଯସପାଲ୍ ମୁଖ୍ୟବକ୍ତା ଭାବରେ ଯୋଗ ଦେଇଥିଲେ । ସେ ଛୋଟ ଛୋଟ ବିଜ୍ଞାନ ସମ୍ବନ୍ଧୀୟ ବିଷୟ "କାହିଁକି ଘଟେ" ସେହି ବିଷୟରେ ଆଲୋଚନା କରିଥିଲେ । ଉଦାହରଣ

ସ୍ୱରୂପ ଚାଳି ମାରିଲେ କାହିଁକି ଶବ୍ଦ ହୁଏ । ତିନି ତାରିଖ ଦିନ ମୁଁ ଖବର ପାଇଲି ମୋ ବଡ ଭାଣିଜି ଶାନ୍ତିର ସ୍ୱାମୀଙ୍କର କାଳ ହୋଇଗଲା । ତାଙ୍କ ଶେଷ ଦର୍ଶନ ପାଇଁ ବାବୁ ଓ ମୁଁ ଯାଇଥିଲୁ ।

ପ୍ରତିଭା ଠାରୁ ରଖିଥିବା ଦୁଇଟି ଉପକରଣ ସାହାଯ୍ୟରେ ମହମର ଗୁପ୍ତତାପର ପରିମାଣର ହିସାବ କରିବା ପାଇଁ ଏକ ଦିନ ଲାଗିଗଲା । ମୁଁ ଯେତିକି ଉତ୍ତର ମିଳିବାକୁ ଆଶା କରିଥିଲି ସେତିକି ମିଳିଲା । ୨୦୦୪ ମସିହା ଜାନୁଆରୀ ୧୦ ତାରିଖ ଦିନ ସକାଳୁ ଫୋନ୍ ଦ୍ୱାରା ଖବର ପାଇଲି, ଯେ ମୋର୍ ବଡ ନାନୀଙ୍କର ପୂର୍ବଦିନ ରାତିରେ କାଳ ହୋଇଯାଇଛି । ଆମେ ସମସ୍ତେ ତାଙ୍କର ଶେଷ ଦର୍ଶନ ପାଇଁ ଯାଇଥିଲୁ । ୧୨ ତାରିଖ ଦିନ ୯.୩୦ରେ ଓଡ଼ିଶା ଟେକ୍ସ ବୁକ୍ ବ୍ୟୁରୋର ଏକ ଅଧିବେଶନ ପାଇଁ ନିମନ୍ତ୍ରିତ ହୋଇ ଯାଇଥିଲି । ୧୮ ତାରିଖ ଦିନ ବଡନାନୀଙ୍କ ଚୂଠକୁ ଯାଇଥିଲି । ୨୦ ତାରିଖ ଦିନ ଦିଲ୍ଲୀରୁ ଗୋଟିଏ ପ୍ରଶ୍ନ ପତ୍ର ତିଆରି କରିବା ପାଇଁ ଚିଠି ଆସିଥିଲା । ଫେବୃଆରୀ ୭ ତାରିଖ ଦିନ ମୋର ଛାତ୍ର ଦେବାଶିଷ ଓ ଡକ୍ଟର ଏ.ପି.ଦାଶ ଆମ ଘରକୁ ଆସିଥିଲେ । ଦେବାଶିଷ ଜଣାଇଲେ, ଯେ ଓଡ଼ିଶା ଫିଜିକାଲ୍ ସୋସାଇଟ୍‌ର ବାର୍ଷିକ୍ ସମ୍ମିଳନୀ କ୍ରାଏଷ୍ଟ କଲେଜରେ ହେଉଛି । ୧୪ ତାରିଖରେ କ୍ରାଏଷ୍ଟ କଲେଜରେ ଓଡ଼ିଶା ଫିଜିକାଲ ସୋସାଇଟ୍‌ର ଅଧିବେଶନରେ ଯୋଗ ଦେବାକୁ ଯାଇଥିଲି । ୧୫ ତରିଖରେ ବିଜ୍ଞାନ ପ୍ରଚାର ସମିତିରେ ଠିକ୍ କରାଗଲା ୨୦୦୪ ଫେବୃଆରୀ ୨୮ ତାରିଖ ଦିନ କ୍ୟାପିଟାଲ ହାଇସ୍କୁଲ୍‌ରେ ବିଜ୍ଞାନ ଦିବସ ପାଳିତ ହେବ । ସେହି ବିଜ୍ଞାନ ଦିବସରେ ଯୋଗ ଦେବା ପାଇଁ ସ୍ଥିର କଲି । ସେଥିରେ ଅନ୍ୟ ବିଜ୍ଞାନ ପ୍ରଚାର ସମିତିର ସଭ୍ୟ ମାନଙ୍କ ସହିତ ମୋତେ ଯୋଗ ଦେଇ ବିଜ୍ଞାନ ସମ୍ବନ୍ଧୀୟ କିଛି ପ୍ରକଳ୍ପ ବିଷୟରେ ଆଲୋଚନା କରିବାକୁ ଠିକ୍ ହୋଇଥିଲା । ୨୮ ତାରିଖ ଦିନ କ୍ୟାପିଟାଲ ହାଇସ୍କୁଲ୍‌ରେ ବିଜ୍ଞାନ ପ୍ରଚାର ସମିତି ତରଫରୁ ଯୋଗ ଦେଇଥିଲି ଏବଂ ନିମ୍ନଲିଖିତ ବିଷୟରେ ଆଲୋଚନା କରିଥିଲି :

୧.ତରଳର ସାନ୍ଦ୍ରତା କିପରି ନିରୂପଣ କରିବ ?

୨.ପାରଦ ସହଜରେ କିପରି ପରିଷ୍କାର କରିବ ?

୩.ରେଫ୍ରିଜିରେଟରର ଦୁଆର ନ ଖୋଲି କିପରି ଥଣ୍ଡା ପାଣି ବାହାର କରିବ ?

୪.ଏକ ନୂଆ ପ୍ରକାର ମିଶ୍ର ଦୋଳକ ଉପରେ ଆଲୋଚନା କରିଥିଲି ।

ତାପର ଦିନ ରେଭେନ୍‌ସା କଲେଜର ଫିଜିକ୍ସ ଡିପାର୍ଟମେଣ୍ଟର ଆଲୁମ୍ନି ଆସୋସିଏସନ୍‌ର ବାର୍ଷିକ ଅଧିବେଶନରେ ଯୋଗ ଦେବା ପାଇଁ ରେଭେନ୍ସା କଲେଜର ଫିଜିକ୍ସ ଡିପାର୍ଟମେଣ୍ଟ ଯାଇଥିଲି । ମୋତେ ସେଥିରେ କିଛି କହିବା ପାଇଁ ଦିଆଯାଇ ଥିଲା । ସେଥିରେ ମଧ୍ୟ ପୂର୍ବ ବର୍ଣ୍ଣିତ ଚାରୋଟି ପ୍ରକଳ୍ପ ବିଷୟରେ ଆଲୋଚନା କରିଥିଲି । ଏହା ବ୍ୟତିତ ଆଉ ଏକ ପ୍ରକଳ୍ପ "ବଣିଆ ମାନେ କିପରି ଗ୍ରାହକ ମାନଙ୍କୁ ଠକନ୍ତି ?" ଏହା ଉପରେ ମଧ୍ୟ ଆଲୋଚନା କରିଥିଲି ।

ମାର୍ଚ୍ଚ ୨ତାରିଖରେ ଆଇ.ଏ.ପି.ଟି ଓଡ଼ିଶା ଶାଖାର ଗୋଟିଏ ଅଧିବେଶନ ଦିନ ୧୧ଟା ବେଳେ ରିଜିଓନାଲ କଲେଜ ଅଫ୍ ଏଜୁକେସନ୍‌ରେ ଅନୁଷ୍ଠିତ ହୋଇଥିଲା ।

ସେତେବେଳେ ଓଡିଶା ଶାଖାର ଉପସଭାପତି ଡକ୍ଟର ଏଲ. ଶତପଥୀ ଥିଲେ । ସେହି ଅଧିବେଶନରୁ ଫେରିଲା ବେଳକୁ ପ୍ରାୟ ୨ଟା ହୋଇଗଲା । ତେଣୁ ଗିତା ପାଇକ୍‌ରାୟ ଗାଡିରେ ମୋତେ ଆମ ଘରେ ଛାଡିଦେଇ ଗଲେ । ମାର୍ଚ୍ଚ ୩ ତାରିଖରେ ବ୍ରହ୍ମପୁରର ଜଣେ ଶିକ୍ଷକଙ୍କ ଠାରୁ ଗୋଟିଏ ଚିଠି ପାଇଲି । ସେ ଲେଖିଥିଲେ ମଇ ଓ ଜୁନ୍ ମାସର ବିଜ୍ଞାନ ଦିଗନ୍ତରେ ପ୍ରକାଶିତ ମୋର ପରିଯୋଜନାଟି ପଢି ତାହାକୁ ପରିବର୍ତ୍ତନ କରି ଆଉ ଗୋଟିଏ ପରିଯୋଜନା ପ୍ରସ୍ତୁତ କରି ମୋର ଝିଅ ସର୍ବଭାରତୀୟ ସ୍ତରରେ ପୁରସ୍କୃତ ହୋଇଛି । ମାର୍ଚ୍ଚ ୫ ତାରିଖ ଦିନ ରାତିରେ ଚିତ୍ତବାବୁ ଆମ ଘରକୁ ଆସିଥିଲେ । ମୁଁ ତାଙ୍କୁ କହିଲି, ବ୍ରହ୍ମପୁରର ଜଣେ ଛାତ୍ରୀ ସର୍ବଭାରତୀୟ ସ୍ତରରେ ପୁରସ୍କୃତ ହୋଇଛି । ତେଣୁ ଆମ ବିଜ୍ଞାନ ପ୍ରଚାର ସମିତିରେ ସମ୍ବର୍ଦ୍ଧନା ଦେବା ପାଇଁ ସେ ରାଜି ହେଲେ । କିନ୍ତୁ ସେ ସମ୍ବର୍ଦ୍ଧନା ହେଲା ନାହିଁ ।

ମାର୍ଚ୍ଚ ୧୨ ତାରିଖରେ ମୋ ନାତି ସୋନୁର ଜନ୍ମଦିନ ପାଳିତ ହୋଇଥିଲା । ତାର ସାଙ୍ଗ ସାଥିମାନେ ଓ ଅନ୍ୟ କେତେ ଜଣ ମଧ୍ୟ ନିମନ୍ତ୍ରିତ ହୋଇ ଆସିଥିଲେ । ମାର୍ଚ୍ଚ ୩୦ ତାରିଖରେ ମୋର ଜନ୍ମଦିନ ଉତ୍ସବ ପାଳନ କରାଯାଇ ଥିଲା । ସେଥି ନିମନ୍ତେ ପ୍ରାୟ ବିଜ୍ଞାନ ପ୍ରଚାର ସମିତିର ଅଧିକାଂଶ ସଭ୍ୟ ଯୋଗ ଦେଇଥିଲେ । ସେଦିନ ସାମାନ୍ୟ ଜଳପାନର ଆୟୋଜନ କରାଯାଇଥିଲା ।

ଅପ୍ରେଲ ୧୩ ତାରିଖରେ ବିଜ୍ଞାନ ପ୍ରଚାର ସମିତିର ସଭ୍ୟ ଡକ୍ଟର ଦାମୋଦର ଲେଙ୍କାଙ୍କ ଘରେ ବିଜ୍ଞାନ ପ୍ରଚାର ସମିତିର ଏକ ଅଧିବେଶନ ହୋଇଥିଲା । ସେ ଅଧିବେଶନରେ ମୁଁ ଯୋଗ ଦେଇଥିଲି । ଅପ୍ରେଲ ୨୧,୨୨ ଏବଂ ୨୬ ତାରିଖରେ ଡକ୍ଟର ଜ୍ୟୋତିଷ ବାବୁ ଇଲେକ୍‌ଟ୍ରୋନିକ୍ ପ୍ରାୟୋଗିକ ପରୀକ୍ଷା ସମ୍ବନ୍ଧରେ ମୋ ସଙ୍ଗେ ଆଲୋଚନା କରିବାକୁ ମୋ ପାଖକୁ ଆସିଥିଲେ ।

ଅପ୍ରେଲ୍ ୨୭ ତାରିଖରେ ଦିଲ୍ଲୀରୁ ଆଉ ଏକ ପ୍ରଶ୍ନପତ୍ର କରିବା ପାଇଁ ଚିଠି ପାଇଲି । ତେଣୁ ସେହିଦିନ ଠାରୁ ପ୍ରଶ୍ନପତ୍ର କରିବା ପାଇଁ ବ୍ୟସ୍ତ ରହିଲି । ପୋଖରାନ୍ ଦିବସ ପାଇଁ ଆଲମୁନିୟମ୍ କମ୍ପାନୀ ତରଫରୁ ଡକ୍ଟର ଚିତ୍ତରଞ୍ଜନ ମିଶ୍ର ମୋତେ ନିମନ୍ତ୍ରଣ କରିଥିଲେ । ଏଠାରେ ପୋଖରାନ୍ ଦିବସ ଉପରେ ପାଠକମାନଙ୍କୁ କିଛି ଧାରଣା ଦେବା ପାଇଁ ଉପଯୁକ୍ତ ମନେ କରୁଛି । ୧୯୯୮ ମଇ ମାସ ୧୧ ତାରିଖରେ ଭାରତ ପ୍ରଥମ କରି ପରମାଣୁ ବୋମା ପୋଖରାନ୍ ଠାରେ ଫୁଟାଇ ଥିଲା । ସେହି ବର୍ଷ ଠାରୁ ପ୍ରତି ବର୍ଷ ମଇ ୧୧ ତାରିଖ 'ପୋଖରାନ୍ ଦିବସ' ରୂପେ ପାଳିତ ହୋଇ ଆସୁଅଛି । ମଇ ୨୩ ତାରିଖରେ ମୋ ବାପାଙ୍କର ଶ୍ରାଦ୍ଧ ପଡିଥିଲା । ସେଦିନ ସିରିଡି ମନ୍ଦିରରେ ଖାଇବାର ବ୍ୟବସ୍ଥା ହୋଇଥିଲା ।

ମଇ ୨୬ ତାରିଖରେ ଉଦ୍‌ଭିଦ ବିଜ୍ଞାନ ପ୍ରଫେସର ଡକ୍ଟର ଗଦାଧର ମିଶ୍ରଙ୍କ ଠାରୁ ଗୋଟିଏ ଚିଠି ପାଇଲି । ସେ ଲେଖିଥିଲେ, ତୁମ ଜୀବନୀଟି ୨୦ କିମ୍ବା ୨୫ ପୃଷ୍ଠା ଭିତରେ ସଂକ୍ଷିପ୍ତ ଭାବରେ ଲେଖି ପଠାଇବ । ଗଦାଧର ବାବୁ ମୋ ଜୀବନୀ ସହ ଅନ୍ୟ କେତେକ ବିଶିଷ୍ଟ

ଲୋକଙ୍କର ଜୀବନୀ ମିଶାଇ ଏକ ପୁସ୍ତକରେ ପ୍ରକାଶନ କରିବେ । ସେହିଦିନ ଠାରୁ ସଂକ୍ଷିପ୍ତ ଜୀବନୀଟି ଆସ୍ତେ ଆସ୍ତେ ଲେଖିବାକୁ ଆରମ୍ଭ କଲି ।

ଜୁନ୍ ୭ ତାରିଖରେ ମୋର ଆଇ.ଏସ୍‌ସି ପଢୁଥିବା ବେଳର ସହପାଠୀ ଶ୍ରୀ ବ୍ରଜମୋହନ ସାହୁଙ୍କଠାରୁ ଗୋଟିଏ ଫୋନ୍ ଖବର ପାଇଲି । ସେ କହିଲେ, ତୁମ ଘରଟା କେଉଁଠି ମୋତେ ଟିକିଏ ତାର ଠିକଣା ଜଣାଇ ଦିଅ । ମୁଁ ମୋର ଘର ଠିକଣାଟି ଜଣାଇ ଦେଲି ଏବଂ ପଚାରିଲି ତମେ ମୋ ଫୋନ୍ ନମ୍ବର କେଉଁଠାରୁ ପାଇଲ । ସେ ମୋତେ କହିଲେ ଟେଲିଫୋନ୍ ଡାଇରେକ୍ଟ୍ରିରୁ ପାଇଲି ଏବଂ ମୁଁ କାଲି ତମ ଘରକୁ ଯାଇ ତମ ସଙ୍ଗେ ଦେଖା କରିବି । ସେଦିନ ମୋତେ ବହୁତ ଖୁସି ଲାଗିଲା । ପାଥେରପୁରୀ ଛାତ୍ରାବାସର ୧୦ ନମ୍ବର କୋଠରୀରେ ମୁଁ, ବ୍ରଜମୋହନ ଏବଂ ସର୍ବେଶ୍ୱର ଏକାଠି ରହୁଥିଲୁ । ତାପର ଦିନ ସେ ଆମ ଘରକୁ ଆସିଥିଲେ । ସେ ମୋ ସଙ୍ଗେ ପ୍ରାୟ ୩ ଘଣ୍ଟା ଧରି କଥା ବାର୍ତ୍ତା କରିଥିଲେ ।

ଜୁନ୍ ୧୦ ତାରିଖରେ ଓଡିଶା ବିଜ୍ଞାନ ଏକାଡେମୀ ତରଫରୁ ସାମନ୍ତ ଚନ୍ଦ୍ରଶେଖରଙ୍କର ଶତ ବାର୍ଷିକୀ ଉତ୍ସବ ପାଇଁ ଗୋଟିଏ ସଭା ହୋଇଥିଲା । ମୁଁ ସେଥିରେ ନିମନ୍ତ୍ରିତ ହୋଇଥିଲି । ସେଥିରେ ପ୍ରଫେସର ଏମ୍.ଜି.କେ ମେନନ୍ ମୁଖ୍ୟ ବକ୍ତା ହିସାବରେ ଯୋଗ ଦେଇଥିଲେ । ଏମ୍.ଜି.କେ ମେନନ୍ ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ ପଦାର୍ଥବିଜ୍ଞାନୀ । ଡକ୍ଟର ମେନନ ସାମନ୍ତ ଚନ୍ଦ୍ରଶେଖରଙ୍କ ଉପରେ ଏକ ସାର ଗର୍ଭକ ଭାଷଣ ଦେଇଥିଲେ । ଶ୍ରୀଯୁକ୍ତ ଭି.ପି.ସିଂହ ପ୍ରଧାନ ମନ୍ତ୍ରୀ ଥିବା ବେଳେ ସେ ମେନନ ମହାଶୟଙ୍କୁ ସହକାରୀ ମନ୍ତ୍ରୀ ହିସାବରେ ଗ୍ରହଣ କରିଥିଲେ ।

ଜୁନ୍ ୧୯ ତାରିଖରେ ସିରିଡି ମନ୍ଦିରର ଟ୍ରଷ୍ଟି ଶ୍ରୀ ବ୍ରଜେଶ ପଣ୍ଡାଙ୍କ ଘରେ ବ୍ରତଘର ହେଉଥିଲା । ତେଣୁ ସେ ଆମ ସମସ୍ତଙ୍କୁ ଡାକିଥିଲେ । ଆମେ ସମସ୍ତେ ସିରିଡି ମନ୍ଦିରକୁ ଯାଇଥିଲୁ । ଜୁନ୍ ୨୨ ତାରିଖରେ ଶ୍ରୀଯୁକ୍ତ ବିନୋଦ କାନୁନ୍‌ଗୋଙ୍କ ଚତୁର୍ଦ୍ଦଶ ବାର୍ଷିକ ଶ୍ରାଦ୍ଧ ଉତ୍ସବ ପାଇଁ ଗୋଟିଏ ସଭାର ଆୟୋଜନ ଇତ୍‌କୋ ହଲ୍ ଠାରେ ଅନୁଷ୍ଠିତ ହୋଇଥିଲା । ମୋତେ ସେଠାକୁ ଯିବା ପାଇଁ ନୃସିଂହ ବାବୁ ନିମନ୍ତ୍ରଣ କରିଥିଲେ । ସେହି ବିନୋଦ କାନୁନ୍‌ଗୋଙ୍କ ବିଷୟରେ କିଛି ଜଣାଇ ଦେବା ପାଇଁ ଇଚ୍ଛା କରୁଛି । ସେ ମହାଶୟ ଜଣେ ସ୍ୱାଧିନତା ସଂଗ୍ରାମୀ ହାଇସ୍କୁଲ୍‌ରେ ପଢିବା ସମୟରେ ସ୍ୱାଧିନତା ସଂଗ୍ରାମରେ ଯୋଗ ଦେଇଥିଲେ । ସେହି ଦିନ ଠାରୁ ତାଙ୍କ ପାଠ ପଢାରେ ଡୋରି ବନ୍ଧା ହୋଇଥିଲା । ଭାରତ ସ୍ୱାଧିନ ହେଲା ପରେ ସେ ଆଉ ରାଜନୀତିରେ ଯୋଗ ନ ଦେଇ ମନସ୍ଥ କରିଥିଲେ ଓଡିଆ ଭାଷାରେ ଏକ 'ଜ୍ଞାନ ମଣ୍ଡଳ' ପ୍ରକାଶ କରିବା ପାଇଁ । ସେହି ଅନୁସାରେ ଖବର କାଗଜ ଓ ଅନ୍ୟାନ୍ୟ ପତ୍ରପତ୍ରିକା ସବୁ ପଢାପଢି କରି ତାର ବିଶେଷ ଘଟଣା ଗୁଡିକ ୧୦ ହଜାର ଫାଇଲ୍‌ରେ ରଖିଥିଲେ । ମୁଁ ଅଧ୍ୟାପକ ହୋଇ କଟକ ବିଜ୍ଞାନ ପ୍ରଚାର ସମିତିରେ ସଭ୍ୟ ହେବା ପରେ ଶ୍ରୀଯୁକ୍ତ ବିନୋଦ କାନୁନ୍‌ଗୋଙ୍କୁ ଜାଣିଲି । ସେ କେତେ ଖଣ୍ଡ 'ଜ୍ଞାନ ମଣ୍ଡଳ' ପ୍ରକାଶ କରିଥିଲେ । ସେ ପ୍ରଥମେ ଖଣ୍ଡିଏ 'ଜ୍ଞାନ ମଣ୍ଡଳର' ଦାମ୍ ୧୦ ଟଙ୍କା ରଖିଥିଲେ । ମୁଁ ସେହି ଜ୍ଞାନ ମଣ୍ଡଳର କ୍ରେତା ହିସାବରେ ଅନ୍ତର୍ଭୁକ୍ତ ହୋଇଥିଲି । ଯେତେବେଳେ ଜ୍ଞାନ ମଣ୍ଡଳ ପ୍ରକାଶିତ ହୁଏ ସେ କଟକରେ ଆମ ଘରକୁ ପଠାଇ ଦିଅନ୍ତି ଓ ମୁଁ ଜ୍ଞାନ ମଣ୍ଡଳକୁ କିଣି ରଖେ । ଏହିଭଳି ଭାବରେ ୪୦ ଖଣ୍ଡ ଜ୍ଞାନ ମଣ୍ଡଳ କିଣି ମୁଁ ଘରେ ରଖିଛି । ୪୦ ଖଣ୍ଡ ପରେ ଆଉ ପ୍ରକାଶ କରାଗଲା ନାହିଁ । କାରଣ

ତାଙ୍କର କାଳ ହୋଇଗଲା । ସେହି ଜ୍ଞାନ ମଣ୍ଡଳର ଅଧିକାଂଶ ବିଷୟ ମୋ ସହଧର୍ମିଣୀ ପଢ଼ୁଥିଲେ । କିନ୍ତୁ ମୁଁ ବିଶେଷ ପଢ଼ିପାରି ନଥିଲି । ଏବେ ଯେତେବେଳେ ଯେଉଁ ବିଷୟ ଦରକାର ପଡେ ଜ୍ଞାନ ମଣ୍ଡଳ ପଢେ । ନୃସିଂହ ବାବୁ ବିନୋଦ ବାବୁଙ୍କ ପାଖରେ ଜ୍ଞାନମଣ୍ଡଳରେ ଲେଖାଲେଖି କରୁଥିଲେ । ଏବେ କିନ୍ତୁ ତାଙ୍କ ପାଖରେ ସମସ୍ତ ଖଣ୍ଡ ନ ଥିବାରୁ, ସେ ବେଳେ ବେଳେ ମୋ ପାଖରେ ଥିବା ଜ୍ଞାନମଣ୍ଡଳରୁ କେତେକ ଆବଶ୍ୟକୀୟ ତଥ୍ୟ ଜେରକ୍ସ କରି ନିଅନ୍ତି ।

ଅଗଷ୍ଟ ୧ ତାରିଖ ରାତିରେ ମୋ ଛାତିରେ ଭୟଙ୍କର କଷ୍ଟ ହେଲା ଏବଂ ନିଦ ହେଲା ନାହିଁ । ମୁଁ ସକାଳୁ ମୋ ସମ୍ବନ୍ଧି ଗୋପବନ୍ଧୁ ମହାପାତ୍ରଙ୍କୁ ଡାକି ତାଙ୍କର ଜଣେ ଚିହ୍ନା ଡାକ୍ତରଙ୍କୁ ଦେଖାଇଲି । ସେ ସନ୍ଦେହ କଲେ ମୋର ହୃଦରୋଗ ହୋଇଛି । ପୁଣି ସେହି ଦିନ ରାତିରେ ଡାକ୍ତର ଏସ୍. ଏନ୍ ମୂର୍ତ୍ତୀ ନାମକ ହୃଦରୋଗ ବିଶେଷଜ୍ଞଙ୍କୁ ସାନ ପୁଅ ଓ ବୋହୂଙ୍କ ସାଙ୍ଗରେ ଯାଇ ଦେଖାଇଲି । ତାପର ଦିନ ରକ୍ତରେ ଶର୍କରାର ପରିମାଣ ବଢ଼ିଗଲା । ସେହିଦିନ ଠାରୁ ତାଙ୍କ ଚିକିତ୍ସାରେ ରହିଲି । କିନ୍ତୁ ସେ କହିଲେ, ହୃଦରୋଗ ହୋଇନାହିଁ ବୋଲି ମୁଁ ସନ୍ଦେହ କରୁଛି । କେତେ ଦିନ ଔଷଧ ଖାଇବା ପରେ ମୋ ରକ୍ତ ଶର୍କରାର ପରିମାଣ କମିଗଲା । ଏହିପରି ଭାବରେ କେତେ ଦିନ ଗଲା ପରେ ମୁଁ ପୁଣି ପ୍ରାତଃ ଭ୍ରମଣ କରିବାକୁ ଗଲି ।

ସେପ୍ଟେମ୍ବର ୧ ତାରିଖରେ ରକ୍ତ ଶର୍କରାର ପରିମାଣ ପୁଣି ବଢ଼ିଯିବାରୁ ତାଙ୍କୁ ଦେଖାଇଲି । ସେ କହିଲେ, ତୁମେ କାଲି ପ୍ରତ୍ୟେକ ଦୁଇ ଘଣ୍ଟା ଛାଡି ଥରେ ଥରେ ରକ୍ତ ଶର୍କରାର ପରିମାଣ ମାପିକରି ମୋତେ ଦେଖାଇବ । ମାପିବାରୁ ଜଣାପଡିଲା, ରକ୍ତ ଶର୍କରାର ପରିମାଣ ଘଣ୍ଟାକୁ ଘଣ୍ଟା ପରିବର୍ତ୍ତନ ହେଉଛି । ତେଣୁ ସେ ମହାଶୟ ରକ୍ତ ଶର୍କରାର ପରିମାଣ ପରିବର୍ତ୍ତନ ନ ହେବା ପାଇଁ ଔଷଧ ଦେଲେ ଏବଂ ତାପରେ କହିଲେ ଯଦି ଏହି ଔଷଧରେ ଶର୍କରାର ପରିମାଣ ସ୍ଥିର ନ ରହେ, ତାହେଲେ ତମକୁ ଇନ୍‌ସୁଲିନ୍ ନେବାକୁ ପଡିବ । କିନ୍ତୁ ଭଗବାନଙ୍କ କୃପାରୁ ରକ୍ତ ଶର୍କରାର ପରିମାଣ ଏ ପର୍ଯ୍ୟନ୍ତ ଠିକ୍ ଚାଲିଛି । ଏପର୍ଯ୍ୟନ୍ତ ଇନ୍‌ସୁଲିନ୍ ନେବାକୁ ଡାକ୍ତର କହିନାହାନ୍ତି ।

ଏହା ଭିତରେ ମୁଁ ଏବଂ ଜ୍ୟୋତିଷ ବାବୁ ମିଶିକରି ଆଡଭାନ୍ସ ଫିଜିକ୍ସ ଲାବୋରାଟୋରୀ ମାନୁଆଲ (Advance Physics Laboratory Manual) ବହିର ସବୁ ଏକ୍ସପେରିମେଣ୍ଟର ନାମ ଲେଖି ସାଉଥ ଏସିଆନ ପବ୍ଲିଶରର ନିର୍ଦ୍ଦେଶକ ମିଷ୍ଟର ବିନୋଦ କୁମାରଙ୍କ ପାଖକୁ ପଠାଇ ଦେଇଥିଲୁ । ସେପ୍ଟେମ୍ବର ୦୪ ତାରିଖରେ ମୁଁ ବିନୋଦ କୁମାରଙ୍କ ଠାରୁ ଚିଠି ପାଇଲି ସେ ମହାଶୟ ବହିଟି ଛପାଇବା ପାଇଁ ରାଜି ଅଛନ୍ତି । ତାଙ୍କ ଚିଠି ପାଇ ଫୋନ୍‌ରେ ତାଙ୍କୁ ଜଣାଇଲି ଆପଣ ଏଗ୍ରିମେଣ୍ଟ (Agreement) ପଠାଇଲେ ମୁଁ ସମୁଦାୟ ପାଣ୍ଡୁଲିପିଟି ପଠାଇ ଦେବି । ସେ ମହାଶୟ ଫୋନ୍‌ରେ ଉତ୍ତର ଦେଲେ, ଆଜି ଏଗ୍ରିମେଣ୍ଟଟି ପଠାଇ ଦେଉଛି । ଦୁଇ ତିନି ଦିନ ପରେ ଆପଣ ପାଇଯିବେ । ତାଙ୍କ ଠାରୁ ଏହି ଫୋନ୍ ଖବର ପାଇବା ପରେ ଜ୍ୟୋତିଷ ବାବୁଙ୍କୁ ଫୋନ୍‌ରେ ଜଣାଇ ଦେଲି । ତାଙ୍କର ଏଗ୍ରିମେଣ୍ଟ ପାଇବା ପରେ ଜ୍ୟୋତିଷ ବାବୁ ଆମ ଘରକୁ ଆସି ପାଣ୍ଡୁଲିପିଟି ଠିକ୍ ଠାକ୍ କରିବାରେ ଲାଗିଗଲେ ଏବଂ ସେପ୍ଟେମ୍ବର ୧୪ ତାରିଖରେ ଜ୍ୟୋତିଷ ବାବୁ ଏବଂ ମୁଁ ଏଗ୍ରିମେଣ୍ଟଟି ସ୍ୱାକ୍ଷର କରି ମିଷ୍ଟର ବିନୋଦ କୁମାରଙ୍କ ପାଖକୁ ରେଜିଷ୍ଟ୍ରି ଡାକରେ ପଠାଇ ଦେଲୁ । ସେ ଚିଠିରେ ଲେଖିଥିଲୁ ପାଣ୍ଡୁଲିପିଟି ୧୫ ଦିନ ଭିତରେ ପଠାଇ ଦେବୁ । ତାର କେତେ ଦିନ ପରେ ପାଣ୍ଡୁଲିପିଟି ପଠାଇ ଦେଲୁ ।

୨୦୦୪ ସେପ୍ଟେମ୍ବର ୨୦ ତାରିଖ ଦିନ ୧୧ଟା ବେଳେ ବିଜ୍ଞାନ ଏକାଡେମୀର ସଭାପତି ଡକ୍ଟର ବାସୁଦେବ କରଙ୍କ ଠାରୁ ଖଣ୍ଡେ ଚିଠି ପାଇଲି । ସେ ଚିଠିଟି ଇଂରାଜୀରେ ଲେଖାଥିଲା ତାର ଓଡିଆ ଅନୁବାଦ ଏହିପରି ହେଲା:

ପ୍ରଫେସର୍ ବି.କର, ଏମ୍.ଡି
ସଭାପତି
ଡିଓ.ନମ୍ବର ୨୧/ଓ.ବି.ଏ

ଓଡ଼ିଶା ବିଜ୍ଞାନ ଏକାଡେମୀ
(ଓଡିଶା ସାଇନ୍ସ ଏକାଡେମୀ )
ଟାଇପ୍-୪ ଆର/୨୫,ଇଉନିଟ୍.୯ (ଫ୍ଲାଟ)
ଭୁବନେଶ୍ୱର -୭୫୧୦୨୨

ସମ୍ମାନାସ୍ପଦ ମହାଶୟ,

ଆପଣ ଜାଣିକରି ଖୁସି ହେବେ ଓଡିଶା ସରକାରଙ୍କର ସାଇନ୍ସ ଆଣ୍ଡ ଟେକ୍‌ନୋଲୋଜି ଡିପାର୍ଟମେଣ୍ଟର ସ୍ୱୀକୃତି ନେଇ ଓଡିଶା ବିଜ୍ଞାନ ଏକାଡେମୀ ଜଣାଉ ଅଛି ଯେ, ଆପଣଙ୍କର ଜୀବନ କାଳ ଭିତରେ ଫିଜିକାଲ ସାଇନ୍ସରେ ଅବଦାନ ପାଇଁ ଆପଣଙ୍କୁ ୨୦୦୨ ବର୍ଷ ପାଇଁ 'ବରିଷ୍ଠ ବୈଜ୍ଞାନିକ' ହିସାବରେ ଅଭିନନ୍ଦନ କରିବାକୁ ଠିକ୍ ହୋଇଛି । ଆପଣଙ୍କର ଉତ୍ସର୍ଗୀକୃତ ଅବଦାନ, ଭବିଷ୍ୟତ ବୈଜ୍ଞାନିକ-ମାନଙ୍କ ପାଇଁ ସ୍ମରଣୀୟ ହୋଇ ରହିବ ।

ବିଜ୍ଞାନ ଏକାଡେମୀର ବିଶେଷ ସୁବିଧା ପାଇଁ ୨୦.୧.୦୫ (ଗୁରୁବାର) ସନ୍ଧ୍ୟା ୬ଟାବେଳେ ଆପଣଙ୍କୁ ସମ୍ମାନିତ କରିବା ନିମନ୍ତେ ଅଭିନନ୍ଦନ ଉତ୍ସବଟି ଇଡ୍‌କଲ୍ ଅଡିଟୋରିଅମ୍ ଇଉନିଟ୍ –୨ ଭୁବନେଶ୍ୱରରେ ଅନୁଷ୍ଠିତ ହେବ ।

ଆମେ ଅନୁରୋଧ କରୁଛୁ ଆପଣ ଏହାକୁ ଗ୍ରହଣ କରି ଆମର ଏହି ଉତ୍ସବରେ ଠିକ୍ ସମୟରେ ଯୋଗଦାନ କରିବା ହେବେ । ଏହାପାଇଁ ଆପଣଙ୍କୁ ଯିବା ଆସିବା ଓ ରହିବା ଖର୍ଚ୍ଚ ଦିଆଯିବ ।

ସମ୍ମାନ ସହ ଆପଣଙ୍କର ବିଶ୍ୱସ୍ତ
ବାସୁଦେବ କର

ଇଂରାଜୀର ଲେଖାଟି ଏହି ପ୍ରକାରେ ଥିଲା:

Prof. B.Kar, M.D.
PRESIDENT
D.O. – No-21/OBA

ORISSABIGYAN ACADEMY
(ORISSA SCIENCE ACADEMY)
Type – 4r/25, Unit – IX (Flats)
Bubaneswar – 751022

Respected Sir,

You will be glad to know that the Orissa Bigyan Academy with the approval of the government of Orissa in Science and Technology Department has decided to felicitate you as a senior scientist for your lifelong contributions in the field of Physical Sciences for the year 2002.Your dedication & contribution for building generation of promissing scientists are considered exemplary.

It will be a unique privilege & honour for the Academy to felicitate you on 20.1.2005 (Thursday) at 6.00 P.M. in a function to be held at IDC Auditorium, IDCOL House, Unite –2, Bhubaneswar.

I humbly request you to kindly accept our request and be present in the ceremony along with your spouse on the scheduled date & time.

T.A. (to & form A/C 2 tier Train fare) & D.A. for your travel for attending the ceremony will be borne by the academy.

Prof. (Dr.) Patitapaban Misra,
140, Bapuji Nagar, Bhubaneswar.

Your sincerely
(Basudev Kar)

ସେପ୍ଟେମ୍ବର ୨୬ ତାରିଖରେ ଆମ ଘରେ ଗୋଟିଏ ବିଜ୍ଞାନ ପ୍ରଚାର ସମିତି ଅଧିବେଶନର ଆୟୋଜନ କରାଯାଇ ଥିଲା । ସେହି ଅଧିବେଶନରେ ମୁଁ କୋଷାଧ୍ୟକ୍ଷ ପଦବୀରୁ ଇସ୍ତଫା ଦେଇଦେଲି ଏବଂ ଡକ୍ଟର ସୂର୍ଯ୍ୟମଣୀ ବେହେରା ମଧ୍ୟ ସମ୍ପାଦକ ପଦରୁ ଇସ୍ତଫା ଦେଲେ । ତାଙ୍କ ବଦଳରେ ଡକ୍ଟର ଚିତ୍ତରଞ୍ଜନ ମିଶ୍ର ସମ୍ପାଦକ ଭାବେ ନିର୍ବାଚିତ ହେଲେ ଏବଂ ଡକ୍ଟର ଧ୍ରୁବାନନ୍ଦ ବେହେରା କୋଷାଧ୍ୟକ୍ଷ ଭାବରେ ନିର୍ବାଚିତ ହେଲେ । ଅକ୍ଟୋବର ୧ ତାରିଖରେ ଆଡଭାନ୍ସ ଫିଜିକ୍ସ ଲାବୋରାଟୋରୀ ମାନୁଆଲର ମୋ ପାଣ୍ଡୁଲିପିଟି ଶ୍ରୀଯୁକ୍ତ ବିନୋଦ କୁମାରଙ୍କ ପାଖକୁ ପଠାଇ ଦେଲି । ନଭେମ୍ବର ୬ ତାରିଖରେ ପ୍ରତିଭା ମିଶ୍ରଙ୍କ ସେମିନାରରେ ଯୋଗ ଦେବାକୁ ଯାଇଥିଲି । ସେମିନାର ପରେ ଡକ୍ଟର ଗଦାଧର ମିଶ୍ରଙ୍କ ଘରକୁ ଯାଇ ମୁଁ ମୋର ସଂକ୍ଷିପ୍ତ ଜୀବନୀଟି ଦେଇଥିଲି । ତାଙ୍କ ଘର ଠାରୁ ମୋର ଶିକ୍ଷକ ଡକ୍ଟର ହରିହର ମିଶ୍ରଙ୍କ ଘରକୁ ଯାଇଥିଲି । ତାଙ୍କ ସହିତ ଘଣ୍ଟେ ଖଣ୍ଡେ କଥା ହୋଇ ଫେରି ଆସିଲି । ମୋ ସାଙ୍ଗରେ ମୋର ସାନ ବୋହୂ ପୁଷ୍ପିତା ମଧ୍ୟ ଯାଇଥିଲା । ନଭେମ୍ବର ୧୩ ତାରିଖରେ ଆମ ଗ୍ରାମର ଶ୍ରୀ ଅନନ୍ତ ରାମ ମିଶ୍ର ଏବଂ ଆମ ଗ୍ରାମ ପାଖ ଶାରଙ୍ଗଯୋଡିର ମୋର ଜଣେ ପରିଚିତ ବନ୍ଧୁ ରାତିରେ ଆମ ଘରକୁ ଆସିଥିଲେ । କିଛି ସମୟ କଥାବାର୍ତ୍ତା ହୋଇ ଫେରିଗଲେ । ଡିସେମ୍ବର ୩ ତାରିଖରେ ମୁଁ, ବୁବୁ, ବଡ ଓ ସାନ ବୋହୂ ଏବଂ ମୋର ସାନ ଝିଅ କୁନି ଆମ ଗ୍ରାମ ରାୟଚକ୍ରଧର ପୁର ଓ ମୋର ମାମୁଁଘର ଗ୍ରାମ ବଳଭଦ୍ରପୁର ଦେଇ ପୁରୀ ଯାଇଥିଲୁ । ମୁଁ ମୋ ମାମୁଁ ଘରକୁ ଚାକିରୀ କରିବା ପରଠାରୁ କେବେ ଯାଇ ନଥିଲି ।

୨୦୦୫ ମସିହାର ଜାନୁଆରୀ ୧୨ ତାରିଖରେ ବିଜ୍ଞାନ ଏକାଡେମୀର ସମ୍ପାଦକଙ୍କ ଠାରୁ ଚିଠି ଆସିଥିଲା ଯେ ଅଭିନନ୍ଦନ ଉତ୍ସବ ୨୦ ତାରିଖରେ ଅନୁଷ୍ଠିତ ହେବ । ଏହିଚିଠି ସହିତ ମୋର ସମ୍ପର୍କୀୟମାନେ ଯୋଗ ଦେବା ପାଇଁ ୧୦ ଖଣ୍ଡ ନିମନ୍ତ୍ରଣ ପତ୍ର ପଠାଇ ଥିଲେ । ୨୦ ତାରିଖରେ ବିଜ୍ଞାନ ଏକାଡେମୀର ସମ୍ବର୍ଦ୍ଧନା ଉତ୍ସବ ଅନୁଷ୍ଠିତ ହୋଇଥିଲା । ସେହି ଉତ୍ସବରେ ବରିଷ୍ଠ ବୈଜ୍ଞାନିକ ହିସାବରେ ଡାକ୍ତର ବିଭୁତି ଭୂଷଣ ତ୍ରିପାଠୀ, ମୋର ଶିକ୍ଷକ ଡକ୍ଟର ଗୋକୁଳାନନ୍ଦ ମହାପାତ୍ର ଏବଂ ଡାକ୍ତର ନିମାଇଁ ଚରଣ ପଣ୍ଡା ମୋ ସହିତ ସମ୍ମାନୀତ ହୋଇଥିଲେ । ମୁଖ୍ୟମନ୍ତ୍ରୀ ଆସିବା ପରେ ସଭାକାର୍ଯ୍ୟ ଆରମ୍ଭ ହେଲା ଏବଂ ସମସ୍ତ ବରିଷ୍ଠ

ବୈଜ୍ଞାନିକ ମାନଙ୍କର ମାନପତ୍ର ପଢାଗଲା ପରେ ସେହି ମାନପତ୍ର ସହିତ ଗୋଟିଏ ସାଲ, ଜାଠରେ ନିର୍ମିତ ଓ ଲିଖିତ ଏକ ଫଳକ ପୁରସ୍କାର ଦେଇଥିଲେ । ଏଠାରେ ଦିଆଯାଇଥିବା ମୋର ମାନପତ୍ରଟି ଏହିଭଳି ଥିଲା:

**ବରିଷ୍ଠ ବୈଜ୍ଞାନିକ ସମ୍ବର୍ଦ୍ଧନା**

**୨୦୦୧**

**ଓଡିଶା ବିଜ୍ଞାନ ଏକାଡେମୀ, ଭୁବନେଶ୍ୱର**

**ପ୍ରଫେସର (ଡକ୍ଟର) ପତିତପାବନ ମିଶ୍ର**

ବରେଣ୍ୟ ମହାଶୟ,

ପୁରୀ ଜିଲ୍ଲାର ନିମାପଡାରେ ୧୯୩୨ ମସିହାରେ ଜନ୍ମ ଲାଭ କରି ଆପଣ ୧୯୫୫ ମସିହାରେ ପଦାର୍ଥ ବିଜ୍ଞାନରେ ଉତ୍କଳ ବିଶ୍ୱବିଦ୍ୟାଳୟର ରେଭେନ୍‌ସା କଲେଜରୁ ଏମ୍.ଏସ୍‌ସି. ଡିଗ୍ରୀ ଲାଭ କରନ୍ତି । ଭାରତର ଖ୍ୟାତନାମା ପ୍ଲାଜମା ବୈଜ୍ଞାନିକ ଡକ୍ଟର ତ୍ରିଲୋଚନ ପ୍ରଧାନଙ୍କ ତତ୍ତ୍ୱାବଧାନରେ ଗବେଷଣା କରି ଆପଣ ୧୯୭୦ ମସିହାରେ ପିଏଚ୍.ଡି. ଡିଗ୍ରୀ ପ୍ରାପ୍ତ ହୁଅନ୍ତି । ୧୯୫୬ ମସିହାରେ ଆପଣଙ୍କର ଅଧ୍ୟାପନା ଜୀବନ ଆରମ୍ଭ ହୁଏ – ରେଭେନ୍‌ସା କଲେଜରେ । ରେଭେନ୍‌ସା କଲେଜ ଓ ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟରେ ଆପଣଙ୍କ ଅଧ୍ୟାପକ ଜୀବନର ବହୁବର୍ଷ ବିତିଛି । ୧୯୮୨ ମସିହାରେ ରେଭେନ୍ସା କଲେଜରେ ଆପଣ ପଦାର୍ଥ ବିଜ୍ଞାନର ପ୍ରଫେସର ତଥା ବିଭାଗୀୟ ମୁଖ୍ୟ ପଦବୀକୁ ଉନ୍ନୀତ ହୁଅନ୍ତି ଏବଂ ସେଠାରୁ ୧୯୮୮ ମସିହାରେ ଅଧ୍ୟକ୍ଷ ଭାବରେ ଖଲ୍ଲିକୋଟ କଲେଜକୁ ସ୍ଥାନାନ୍ତରିତ ହୋଇ ୧୯୯୦ ମସିହାରେ ଅବସର ଗ୍ରହଣ କରନ୍ତି ।

ଭାରତୀୟ ପଦାର୍ଥ ବିଜ୍ଞାନର ପରୀକ୍ଷା ମୂଳକ ପ୍ଲାଜମା ବିଜ୍ଞାନରେ ଆପଣ ଜଣେ ଅଗ୍ରଗଣ୍ୟ ସଫଳ ବୈଜ୍ଞାନିକ । ଆପଣଙ୍କ ତତ୍ତ୍ୱାବଧାନରେ ପାଞ୍ଚ ଜଣ ଗବେଷକ ସେମାନଙ୍କ ପିଏଚ୍.ଡି. ଏବଂ ଚାରିଜଣ ଏମ୍.ଫିଲ. ଡିଗ୍ରୀ ହାସଲ କରିଛନ୍ତି । ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗରୁ ସ୍ୱଗବେଷଣାର ପ୍ରସାର ଏବଂ ବ୍ୟାପ୍ତି ପାଇଁ ଆପଣ ପ୍ରଭୂତ ପୁଞ୍ଜିର ଆୟୋଜନ କରିବାରେ ସଫଳ ହୋଇ ପାରିଛନ୍ତି ଏବଂ ରେଭେନ୍‌ସା ତଥା ଓଡିଶା ବାହାରେ ପ୍ଲାଜମା ଗବେଷଣାର ମୂଳଭିତ୍ତି ସ୍ଥାପନରେ ଅଗ୍ରଣୀ ଭୂମିକା ଗ୍ରହଣ କରିଛନ୍ତି । ଗୌହାଟୀ, ବିକ୍ରମ ଏବଂ ଆନ୍ଧ୍ର ବିଶ୍ୱବିଦ୍ୟାଳୟକୁ ନିମନ୍ତ୍ରିତ ହୋଇ ସେଠାରେ ପ୍ଲାଜମା ଗବେଷଣାଗାର ସଂପାଦନାରେ ଆପଣଙ୍କ ବଳିଷ୍ଠ ଉଦ୍ୟମ ପ୍ରଶଂସନୀୟ । ଏତଦ୍‌ବ୍ୟତୀତ ପ୍ଲାଜମା ପଦାର୍ଥ ବିଜ୍ଞାନର ବହୁବିଧ ସେମିନାରରେ ଆପଣଙ୍କ ଯୋଗ ଦାନ ତଥା ବକ୍ତୃତା ପ୍ରଦାନ ଓଡିଶା ପାଇଁ ଏକ ଗର୍ବ ଓ ଗୌରବ । Indian Journal Physics, Journal of Plasma physics, Great Britain, Physical Review, ସମେତ ବହୁ ଜାତୀୟ ଏବଂ ଆନ୍ତର୍ଜାତୀୟ ସ୍ତରର ଗବେଷଣା ପତ୍ରିକାରେ ଆପଣଙ୍କ ନିବନ୍ଧ ଗୁଡିକ ସ୍ଥାନୀତ ହୋଇ ପ୍ରଶଂସିତ ହୋଇଛି ।

It will be a unique privilege & honour for the Academy to felicitate you on 20.1.2005 (Thursday) at 6.00 P.M. in a function to be held at IDC Auditorium, IDCOL House, Unite –2, Bhubaneswar.

I humbly request you to kindly accept our request and be present in the ceremony along with your spouse on the scheduled date & time.

T.A. (to & form A/C 2 tier Train fare) & D.A. for your travel for attending the ceremony will be borne by the academy.

Prof. (Dr.) Patitapaban Misra, Your sincerely
140, Bapuji Nagar, Bhubaneswar. (Basudev Kar)

ସେପ୍‌ଟେମ୍ବର ୨୫ ତାରିଖରେ ଆମ ଘରେ ଗୋଟିଏ ବିଜ୍ଞାନ ପ୍ରଚାର ସମିତି ଅଧିବେଶନର ଆୟୋଜନ କରାଯାଇ ଥିଲା । ସେହି ଅଧିବେଶନରେ ମୁଁ କୋଷାଧ୍ୟକ୍ଷ ପଦବୀରୁ ଇସ୍ତଫା ଦେଇଦେଲି ଏବଂ ଡକ୍ଟର ସୂର୍ଯ୍ୟମଣୀ ବେହେରା ମଧ୍ୟ ସମ୍ପାଦକ ପଦରୁ ଇସ୍ତଫା ଦେଲେ । ତାଙ୍କ ବଦଳରେ ଡକ୍ଟର ଚିରରଞ୍ଜନ ମିଶ୍ର ସମ୍ପାଦକ ଭାବେ ନିର୍ବାଚିତ ହେଲେ ଏବଂ ଡକ୍ଟର ଧ୍ରୁବାନନ୍ଦ ବେହେରା କୋଷାଧ୍ୟକ୍ଷ ଭାବରେ ନିର୍ବାଚିତ ହେଲେ । ଅକ୍‌ଟୋବର ୧ ତାରିଖରେ ଆଡଭାନ୍ସ ଫିଜିକ୍ସ ଲାବୋରାଟୋରୀ ମାନୁଆଲର ମୋ ପାଣ୍ଡୁଲିପିଟି ଶ୍ରୀଯୁକ୍ତ ବିନୋଦ କୁମାରଙ୍କ ପାଖକୁ ପଠାଇ ଦେଲି । ନଭେମ୍ବର ୫ ତାରିଖରେ ପ୍ରତିଭା ମିଶ୍ରଙ୍କ ସେମିନାରରେ ଯୋଗ ଦେବାକୁ ଯାଇଥିଲି । ସେମିନାର ପରେ ଡକ୍ଟର ଗଦାଧର ମିଶ୍ରଙ୍କ ଘରକୁ ଯାଇ ମୁଁ ମୋର ସଂକ୍ଷିପ୍ତ ଜୀବନୀଟି ଦେଇଥିଲି । ତାଙ୍କ ଘର ଠାରୁ ମୋର ଶିକ୍ଷକ ଡକ୍ଟର ହରିହର ମିଶ୍ରଙ୍କ ଘରକୁ ଯାଇଥିଲି । ତାଙ୍କ ସହିତ ଘଣ୍ଟେ ଖଣ୍ଡେ କଥା ହୋଇ ଫେରି ଆସିଲି । ମୋ ସାଙ୍ଗରେ ମୋର ସାନ ବୋହୂ ପୁଷ୍ପିତା ମଧ୍ୟ ଯାଇଥିଲା । ନଭେମ୍ବର ୧୩ ତାରିଖରେ ଆମ ଗ୍ରାମର ଶ୍ରୀ ଅନନ୍ତ ରାମ ମିଶ୍ର ଏବଂ ଆମ ଗ୍ରାମ ପାଖ ଶାରଙ୍ଗଯୋଡିର ମୋର ଜଣେ ପରିଚିତ ବନ୍ଧୁ ରାତିରେ ଆମ ଘରକୁ ଆସିଥିଲେ । କିଛି ସମୟ କଥାବାର୍ତ୍ତା ହୋଇ ଫେରିଗଲେ । ଡିସେମ୍ବର ୩ ତାରିଖରେ ମୁଁ, ବୁବୁ, ବଡ ଓ ସାନ ବୋହୂ ଏବଂ ମୋର ସାନ ଝିଅ କୁନି ଆମ ଗ୍ରାମ ରାୟଚକ୍ରଧର ପୁର ଓ ମୋର ମାମୁଁଘର ଗ୍ରାମ ବଳଭଦ୍ରପୁର ଦେଇ ପୁରୀ ଯାଇଥିଲୁ । ମୁଁ ମୋ ମାମୁଁ ଘରକୁ ଚାକିରୀ କରିବା ପରଠାରୁ କେବେ ଯାଇ ନଥିଲି ।

୨୦୦୫ ମସିହାର ଜାନୁଆରୀ ୧୨ ତାରିଖରେ ବିଜ୍ଞାନ ଏକାଡେମୀର ସମ୍ପାଦକଙ୍କ ଠାରୁ ଚିଠି ଆସିଥିଲା ଯେ ଅଭିନନ୍ଦନ ଉତ୍ସବ ୨୦ ତାରିଖରେ ଅନୁଷ୍ଠିତ ହେବ । ଏହିଚିଠି ସହିତ ମୋର ସମ୍ପର୍କୀୟମାନେ ଯୋଗ ଦେବା ପାଇଁ ୧୦ ଖଣ୍ଡ ନିମନ୍ତ୍ରଣ ପତ୍ର ପଠାଇ ଥିଲେ । ୨୦ ତାରିଖରେ ବିଜ୍ଞାନ ଏକାଡେମୀର ସମ୍ବର୍ଦ୍ଧନା ଉତ୍ସବ ଅନୁଷ୍ଠିତ ହୋଇଥିଲା । ସେହି ଉତ୍ସବରେ ବରିଷ୍ଠ ବୈଜ୍ଞାନିକ ହିସାବରେ ଡାକ୍ତର ବିଭୁତି ଭୂଷଣ ତ୍ରିପାଠୀ, ମୋର ଶିକ୍ଷକ ଡକ୍ଟର ଗୋକୁଳାନନ୍ଦ ମହାପାତ୍ର ଏବଂ ଡାକ୍ତର ନିମାଇଁ ଚରଣ ପଣ୍ଡା ମୋ ସହିତ ସମ୍ମାନୀତ ହୋଇଥିଲେ । ମୁଖ୍ୟମନ୍ତ୍ରୀ ଆସିବା ପରେ ସଭାକାର୍ଯ୍ୟ ଆରମ୍ଭ ହେଲା ଏବଂ ସମସ୍ତ ବରିଷ୍ଠ

ବୈଜ୍ଞାନିକ ମାନଙ୍କର ମାନପତ୍ର ପଢାଗଲା ପରେ ସେହି ମାନପତ୍ର ସହିତ ଗୋଟିଏ ସାଲ, ଜାଠରେ ନିର୍ମିତ ଓ ଲିଖିତ ଏକ ଫଳକ ପୁରସ୍କାର ଦେଇଥିଲେ । ଏଠାରେ ଦିଆଯାଇଥିବା ମୋର ମାନପତ୍ରଟି ଏହିଭଳି ଥିଲା:

**ବରିଷ୍ଠ ବୈଜ୍ଞାନିକ ସମ୍ବର୍ଦ୍ଧନା**

**୨୦୦୧**

**ଓଡିଶା ବିଜ୍ଞାନ ଏକାଡେମୀ, ଭୁବନେଶ୍ୱର**

**ପ୍ରଫେସର (ଡକ୍ଟର) ପତିତପାବନ ମିଶ୍ର**

ବରେଣ୍ୟ ମହାଶୟ,

ପୁରୀ ଜିଲ୍ଲାର ନିମାପଡାରେ ୧୯୩୨ ମସିହାରେ ଜନ୍ମ ଲାଭ କରି ଆପଣ ୧୯୫୫ ମସିହାରେ ପଦାର୍ଥ ବିଜ୍ଞାନରେ ଉତ୍କଳ ବିଶ୍ୱବିଦ୍ୟାଳୟର ରେଭେନ୍‌ସା କଲେଜରୁ ଏମ୍.ଏସ୍‌ସି. ଡିଗ୍ରୀ ଲାଭ କରନ୍ତି । ଭାରତର ଖ୍ୟାତନାମା ପ୍ଲାଜମା ବୈଜ୍ଞାନିକ ଡକ୍ଟର ତ୍ରିଲୋଚନ ପ୍ରଧାନଙ୍କ ତତ୍ତ୍ୱାବଧାନରେ ଗବେଷଣା କରି ଆପଣ ୧୯୭୦ ମସିହାରେ ପିଏଚ୍.ଡି. ଡିଗ୍ରୀ ପ୍ରାପ୍ତ ହୁଅନ୍ତି । ୧୯୫୬ ମସିହାରେ ଆପଣଙ୍କର ଅଧ୍ୟାପନା ଜୀବନ ଆରମ୍ଭ ହୁଏ – ରେଭେନ୍‌ସା କଲେଜରେ । ରେଭେନ୍‌ସା କଲେଜ ଓ ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟରେ ଆପଣଙ୍କ ଅଧ୍ୟାପକ ଜୀବନର ବହୁବର୍ଷ ବିତିଛି । ୧୯୮୨ ମସିହାରେ ରେଭେନ୍ସା କଲେଜରେ ଆପଣ ପଦାର୍ଥ ବିଜ୍ଞାନର ପ୍ରଫେସର ତଥା ବିଭାଗୀୟ ମୁଖ୍ୟ ପଦବୀକୁ ଉନ୍ନୀତ ହୁଅନ୍ତି ଏବଂ ସେଠାରୁ ୧୯୮୮ ମସିହାରେ ଅଧ୍ୟକ୍ଷ ଭାବରେ ଖଲ୍ଲିକୋଟ' କଲେଜକୁ ସ୍ଥାନାନ୍ତରିତ ହୋଇ ୧୯୯୦ ମସିହାରେ ଅବସର ଗ୍ରହଣ କରନ୍ତି ।

ଭାରତୀୟ ପଦାର୍ଥ ବିଜ୍ଞାନର ପରୀକ୍ଷା ମୂଳକ ପ୍ଲାଜମା ବିଜ୍ଞାନରେ ଆପଣ ଜଣେ ଅଗ୍ରଗଣ୍ୟ ସଫଳ ବୈଜ୍ଞାନିକ । ଆପଣଙ୍କ ତତ୍ତ୍ୱାବଧାନରେ ପାଞ୍ଚ ଜଣ ଗବେଷକ ସେମାନଙ୍କ ପିଏଚ୍.ଡି. ଏବଂ ଚାରିଜଣ ଏମ୍.ଫିଲ. ଡିଗ୍ରୀ ହାସଲ କରିଛନ୍ତି । ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗରୁ ସ୍ୱଗବେଷଣାର ପ୍ରସାର ଏବଂ ବ୍ୟାପ୍ତି ପାଇଁ ଆପଣ ପ୍ରଭୂତ ପୁଞ୍ଜିର ଆୟୋଜନ କରିବାରେ ସଫଳ ହୋଇ ପାରିଛନ୍ତି ଏବଂ ରେଭେନ୍‌ସା ତଥା ଓଡିଶା ବାହାରେ ପ୍ଲାଜମା ଗବେଷଣାର ମୂଳଭିତ୍ତି ସ୍ଥାପନରେ ଅଗ୍ରଣୀ ଭୂମିକା ଗ୍ରହଣ କରିଛନ୍ତି । ଗୌହାଟୀ, ବିକ୍ରମ ଏବଂ ଆନ୍ଧ୍ର ବିଶ୍ୱବିଦ୍ୟାଳୟକୁ ନିମନ୍ତ୍ରିତ ହୋଇ ସେଠାରେ ପ୍ଲାଜମା ଗବେଷଣାଗାର ସଂପାଦନାରେ ଆପଣଙ୍କ ବଳିଷ୍ଠ ଉଦ୍ୟମ ପ୍ରଶଂସନୀୟ । ଏତଦ୍‌ବ୍ୟତୀତ ପ୍ଲାଜମା ପଦାର୍ଥ ବିଜ୍ଞାନର ବହୁବିଧ ସେମିନାରରେ ଆପଣଙ୍କ ଯୋଗ ଦାନ ତଥା ବକ୍ତୃତା ପ୍ରଦାନ ଓଡିଶା ପାଇଁ ଏକ ଗର୍ବ ଓ ଗୌରବ । Indian Journal Physics, Journal of Plasma physics, Great Britain, Physical Review, ସମେତ ବହୁ ଜାତୀୟ ଏବଂ ଆନ୍ତର୍ଜାତୀୟ ସ୍ତରର ଗବେଷଣା ପତ୍ରିକାରେ ଆପଣଙ୍କ ନିବନ୍ଧ ଗୁଡିକ ସ୍ଥାନୀତ ହୋଇ ପ୍ରଶଂସିତ ହୋଇଛି ।

ଏଚଦ୍ ବ୍ୟତିତ ଜଣେ ଜନପ୍ରିୟ ବିଜ୍ଞାନ ଲେଖକ ଭାବରେ ଆପଣଙ୍କ ଭୂମିକା ଉଲ୍ଲେଖନୀୟ । ବିଜ୍ଞାନ ପ୍ରଚାର ସମିତି, ଭୁବନେଶ୍ୱର ଶାଖାର ଆପଣ ଉପଦେଷ୍ଟା ଓ କୋଷାଧ୍ୟକ୍ଷ ।

ଆପଣଙ୍କର ବହୁଳ ଓ ବହୁମୁଖୀ ପ୍ରତିଭାର ସ୍ୱୀକୃତି ରୂପେ ଓଡିଶା ବିଜ୍ଞାନ ଏକାଡେମୀ ଆପଣଙ୍କୁ "୨୦୦୨ ମସିହାର ବରିଷ୍ଠ ବୈଜ୍ଞାନିକ ସମ୍ମାନ" ରେ ଅଭିଷିକ୍ତ କରିବା ଅବସରରେ ଆପଣଙ୍କ ସୁଖମୟ, ନିରାମୟ, ଏବଂ ଦୀର୍ଘ ଜୀବନ କାମନା କରୁଅଛି ।

ଓଡିଶା ବିଜ୍ଞାନ ଏକାଡେମୀ ଭୁବନେଶ୍ୱର

ଅନ୍ୟ ପୁରସ୍କାର ପାଇବା ପାଇଁ ଯୋଗ୍ୟ ବିବେଚିତ ସମ୍ମାନୀତ ଅତିଥିମାନଙ୍କୁ ଟଙ୍କା ଉପହାର ଆକାରରେ ଦିଆଯାଇ ଥିଲା । ଏହି ସମ୍ବର୍ଦ୍ଧନା ଉତ୍ସବରେ ବାବୁ, ବୁବୁ ମୋର ବଡ ବୋହୂ, ସାନ ବୋହୂ, ଚିନ୍ତା ଭାଇନା ଏବଂ ତାଙ୍କର ସହଧର୍ମିଣୀ ଉପସ୍ଥିତ ଥିଲେ । ଆଉ ଯେଉଁମାନଙ୍କୁ ମୁଁ ଡାକି ଥିଲି ସେମାନଙ୍କ ମଧ୍ୟରୁ ପ୍ରଫେସର ସର୍ବେଶ୍ୱର ଦାଶ, ଡକ୍ଟର ଅକ୍ଷୟ କୁମାର ମିଶ୍ର, ଡକ୍ଟର ଶ୍ରୀମତୀ ପ୍ରତିଭା ରାଣୀ ମିଶ୍ର ଓ ଡକ୍ଟର ଜ୍ୟୋତିଷ ବାବୁ ଯୋଗ ଦେଇଥିଲେ । ସାମାଦିକ ଭାବେ ନୃସିଂହ ବାବୁ ଯୋଗ ଦେଇଥିଲେ ଏବଂ ଏହି ସମ୍ବାଦ ପ୍ରଜାତନ୍ତ୍ରରେ ପ୍ରକାଶ କରାଇଥିଲେ । ସେହି ମାସ ୨୮ ତାରିଖରେ ରେଭେନ୍ସା କଲେଜର ଫିଜିକ୍ସ ଡିପାର୍ଟମେଣ୍ଟରେ ପ୍ଲାଜମା ଫିଜିକ୍ସ ଉପରେ ଭାଷଣ ଦେବା ପାଇଁ ମୁଁ ନିମନ୍ତ୍ରିତ ହୋଇ ଯାଇଥିଲି । ସେହିମାସ ୩୦ ତାରିଖରେ ମୋ ଭଣଜା ଶ୍ରୀ ଗିରିଜା ଶଙ୍କର ରଥଙ୍କ ପୁଅର ନିର୍ବନ୍ଧ ରାମ ମନ୍ଦିରରେ ହୋଇଥିଲା । ସେଠାକୁ ଆମେ ସମସ୍ତେ ଯାଇଥିଲୁ ।

ମୋର କେତେ ଦିନରୁ ଗୋଟିଏ ଆକାଂକ୍ଷା ଥିଲା, ମୁଁ ପ୍ରସ୍ତୁତ କରିଥିବା ପ୍ଲାଜମା ଫିଜିକ୍ସର ଉପକରଣ ଏବଂ ପରିଯୋଜନା ଗୁଡିକ ରେଭେନ୍ସା କଲେଜର ପିଲାମାନଙ୍କୁ ଦେଖାଇବା ପାଇଁ । କିନ୍ତୁ ତା ସମ୍ଭବ ହୋଇ ପାରୁ ନ ଥିଲା । କାରଣ ବିଭିନ୍ନ ସ୍ଥାନରେ ବକ୍ତୃତା ଦେବାପାଇଁ ମୁଁ ପ୍ରସ୍ତୁତ କରିଥିବା ସ୍ଲାଇଡ ଗୁଡିକ ଗୌହାଟୀ ଠାରେ ରହି ଯାଇଥିଲା । ବୁବୁ ମୋତେ ଦିନେ କହିଲା, ଭୁବନେଶ୍ୱରରେ ରଙ୍ଗୀନ୍ ଫଟୋଗୁଡିକ ଜେରକ୍ସ ହୋଇପାରୁଛି । ତେଣୁ ମୁଁ ତାକୁ ରଙ୍ଗୀନ ଫଟୋ ଗୁଡିକ ଦେଇ ସାତୋଟି ସ୍ୱଚ୍ଛ (Transparent) କାଗଜରେ ରଙ୍ଗୀନ ଜେରକ୍ସ କରି ଆଣି ଦେବାକୁ କହିଲି । ସେ ଦିନେ ରଙ୍ଗୀନ ଜେରକ୍ସ କରି ଆଣି ମୋତେ ଦେଇଥିଲା । ମୁଁ ତାପରେ ଜ୍ୟୋତିଷ ବାବୁଙ୍କୁ ଫୋନ୍‌ରେ କହିଲି,ଆପଣ ରେଭେନ୍ସା କଲେଜର ମୁଖ୍ୟ ଅଧ୍ୟାପକଙ୍କୁ କହି ପ୍ଲାଜମା ଉପକରଣ ଓ ପରିଯୋଜନା ଉପରେ ଭାଷଣ ଦେବା ପାଇଁ ବ୍ୟବସ୍ଥା କରିବାକୁ କହିଲି । ସେ ଦୁଇଦିନ ପରେ ମୋତେ ଫୋନ୍ କରି କହିଲେ,୨୮.୧ ରେ ଆପଣ ବକ୍ତୃତା ଦେବା ପାଇଁ ସ୍ଥିର ହୋଇଛି । ଆପଣ ସେହିଦିନ ଆସି ୩ଟା ପୂର୍ବରୁ ପହଞ୍ଚି ବକ୍ତୃତା ଦେବେ । ତେଣୁ ମୁଁ ୨୮ ତାରିଖ ଦିନ ଯାଇ ଭାଷଣ ଦେଇଥିଲି ।

ରମାଦେବୀ କଲେଜରେ ଫେବୃଆରୀ ୫ ତାରିଖରେ ଓଡିଶା ଫିଜିକାଲ ସୋସାଇଟିର ବାର୍ଷିକ ଉତ୍ସବ ଅନୁଷ୍ଠିତ ହୋଇଥିଲା । ସେହି ଉତ୍ସବରେ ମୋ ବଡ ଝିଅ ଯୋଗ ଦେଇଥିଲା । ସେହି ଉତ୍ସବ ମଝିରେ ଆମେ ଦୁଇଜଣ ଟେକ୍ସବୁକ୍ ବ୍ୟୁରୋ ଅଫିସକୁ ଯାଇ ମୋର "ଏମିତି କାହିଁକି ଓ କିପରି ହୁଏ ?" ବହି ବିଷୟରେ କଥା ବାର୍ତ୍ତା କରିଥିଲୁ । ବୁଝିଲି ବହି ଛପା ହେବାକୁ ଯାଇଛି । ମୋର ଭାଣିଜୀ ଜ୍ୟୋତିର ଝିଅ ବିଭାଘର ୬.୨.୫ ତାରିଖରେ ହୋଇଥିଲା । ସେଥିରେ ଯୋଗ ଦେବାକୁ ମୁଁ ଯାଇଥିଲି ।

ବିଜ୍ଞାନ ପ୍ରଚାର ସମିତି ଅଧିବେଶନ ୧୦.୨ ତାରିଖରେ ହୋଇଥିଲା । ସେହି ଅଧିବେଶନରେ ପ୍ଲାଜମାର ଧର୍ମ ବିଷୟରେ ଆଲୋଚନା କରିଥିଲି । ସେହି ମାସ ୨୪ ତାରିଖରେ ନୃସିଂହ ବାବୁ ଆସି ମୋତେ କହିଲେ,ଆପଣ ଜୀବନୀ ଚାରି ପୃଷ୍ଠାରେ ଲେଖିଦେବା ପାଇଁ ଏବଂ ୧୫ ଦିନ ପରେ ସେ ଆସି ମୋର ସଂକ୍ଷିପ୍ତ ଜୀବନୀଟି ନେଇଥିଲେ । ସେ 'ପ୍ରତିଭା ପରିକ୍ରମା' କ୍ରମରେ ଓଡିଶାର ୫୦୦୦ ବିଶିଷ୍ଟ ବ୍ୟକ୍ତିଙ୍କ ଜୀବନୀ ସଂକଳନ କରୁଛନ୍ତି । ସେଥିରେ ଏହାକୁ ଦେବେ ବୋଲି କହିଲେ । କିଛିଦିନ ପରେ 'ପ୍ରଜାତନ୍ତ୍ର'ରେ ବିଜ୍ଞାନ ବର୍ଣ୍ଣାଳୀରେ ଏହାର ସଂକ୍ଷିପ୍ତ ରୂପ ପ୍ରକାଶ କରିଥିଲେ ।

ଫେବୃଆରୀ ୨୯ ତାରିଖ ଦିନ ରେଭେନ୍ସା କଲେଜର ଆଲୁମିନି ଆସୋସିଏସନରେ ଯୋଗ ଦେବାକୁ ଯାଇଥିଲି । କେତେକ ପାଠ୍ୟ ପୁସ୍ତକରେ ନ ଥିବା କେତେଗୁଡିଏ ପରୀକ୍ଷା ଉପରେ ବର୍ଣ୍ଣନା କରିଥିଲି । ସେଗୁଡିକ ହେଲା -

(୧) ପାରଦ କିପରି ସହଜରେ ପରିଷ୍କାର କରିହେବ ?

(୨) ବଏଲଙ୍କ ଉପକରଣ କିପରି ତିଆରି କରିବ ?

(୩) ବରଫର ସାନ୍ଦ୍ରତା କିପରି ମାପିପାରିବ ?

(୪) ସ୍ୱର୍ଣ୍ଣକାର ମାନେ କିପରି ଗ୍ରାହକ ମାନଙ୍କୁ ଠକିଥାଆନ୍ତି ?

(୫) କିପରି ଏକ ନୂଆ ପ୍ରଣାଳୀରେ ପୃଥିବୀର ତ୍ୱରଣ ନିର୍ଣ୍ଣୟ କରିବ ?

ଇଉନିୟନ ପବ୍ଲିକ୍ ସର୍ଭିସ୍ କମିଶନ୍ ୨୦୦୫ ମାର୍ଚ୍ଚ ୧ ତାରିଖରେ ମୋର ଗୋଟିଏ ବାୟୋଡାଟା ମାଗିଥିଲେ ଏବଂ ଏକ ସଂକ୍ଷିପ୍ତ ବାୟୋଡାଟା ମୁଁ ନିର୍ଦ୍ଦିଷ୍ଟ ତାରିଖ ପୂର୍ବରୁ କମ୍ପ୍ୟୁଟର ଦ୍ୱାରା ଛପାଇ ପଠାଇ ଦେଇଥିଲି । ୨ ତାରିଖରେ I.A.P.T (Indian association of Physics Teachers) ଅଧ୍ୟାପକ ମାନଙ୍କର ଏକ ଆଲୋଚନା ସଭାକୁ ନିମନ୍ତ୍ରିତ ହୋଇଯାଇଥିଲି । ମାର୍ଚ୍ଚ ୩ ତାରିଖରେ ବ୍ରହ୍ମପୁରର ଏକ ଶିକ୍ଷକଙ୍କ ଝିଅ ସର୍ବ ଭାରତୀୟ ସ୍କୁଲ ପିଲାଙ୍କର ବିଜ୍ଞାନ ମେଳାରେ ପୁରସ୍କୃତ ହୋଇଥିଲା ବୋଲି ଶିକ୍ଷକ ଲେଖିଥିଲେ । ସେହି ଚିଠିରେ ଆହୁରି ଦୁଇଗୋଟି ପ୍ରକଳ୍ପ ବିଷୟରେ ଲେଖି ମୋର ମତାମତ ଲୋଡିଥିଲେ । ତାଙ୍କ ପ୍ରକଳ୍ପଟିରେ ତ୍ରୁଟି ଥିବାରୁ ସେ ପ୍ରକଳ୍ପଟି ଉପଯୁକ୍ତ ନୁହେଁ ବୋଲି ତାଙ୍କୁ ଜଣାଇ ଦେଇଥିଲି । ମାର୍ଚ୍ଚ ୫ ତାରିଖରେ ଡକ୍ଟର ଇଉ.ସି ପଟ୍ଟନାୟକ ଆମ ଘରକୁ ଆସିଥିଲେ । ସେ ମୋତେ କହିଥିଲେ, ମେ କିମ୍ବା ଜୁନ୍ ମାସରେ ଆପଣଙ୍କୁ ଦିଲ୍ଲୀ ଯିବାକୁ ପଡିପାରେ । ମୁଁ ତାଙ୍କୁ ଉତ୍ତର ଦେଇଥିଲି ମୁଁ

ଟ୍ରେନରେ ଯାଇପାରିବି ନାହିଁ । ମୋତେ ପ୍ଲାଇଟ୍‌ରେ ଯିବାକୁ ଉଦ୍ୟୋକ୍ତାମାନେ ଅନୁମତି ଦେଲେ ମୁଁ ଯାଇପାରିବି ।

ଶ୍ରୀ ଦାମୋଦର ଲେଙ୍କାଙ୍କ ଘରେ ୧୩.୪.୫ ତାରିଖରେ ବିଜ୍ଞାନ ପ୍ରଚାର ସମିତିର ଅଧିବେଶନ ହୋଇଥିଲା । ସେହି ଅଧିବେଶନକୁ ଗଲାବେଳେ ତାଙ୍କ ଘର ପାଖରେ ଝାମୁ ଯାତ୍ରା ଅନୁଷ୍ଠିତ ହେଉଥିଲା । ସେହିଦିନ ଅନ୍ୟ ସଭ୍ୟମାନଙ୍କ ସହିତ ଆଲୋଚନା କରି ଜାଣିଲି ଝାମୁ ଯାତ୍ରାରେ ଅଂଶ ଗ୍ରହଣ କରୁଥିବା ବ୍ୟକ୍ତିମାନଙ୍କର 'ଗୋଡ କାହିଁକି ପୋଡି ଯାଏ ନାହିଁ' । ସେହି ବିଷୟଟି "ଏମିତି କାହିଁକି ଓ କିପରି ହୁଏ" ପୁସ୍ତକରେ ଲେଖିବା ପାଇଁ ମୁଁ ଠିକ୍ କଲି ।

ମୋର ଜନ୍ମଦିନ ଅପ୍ରେଲ ମାସ ୧୮ ତାରିଖ ରାମ ନବମୀ ଦିନ ପାଳନ କରା ଯାଇଥିଲା । ସେଦିନ ସାମାନ୍ୟ ଜଳଯୋଗର ଆୟୋଜନ କରା ଯାଇଥିଲା । ବିମ୍ବାଧର ବାବୁ, କୃଷ୍ଣ ପଟ୍ଟନାୟକ, ଜୟଦେବ ମିଶ୍ର, ବ୍ରଜମୋହନ ସାହୁ, ନେତ୍ରାନନ୍ଦ ମିଶ୍ର ଓ ଅନନ୍ତ ରାମ ମିଶ୍ର ପ୍ରଭୃତି ଯୋଗ ଦେଇଥିଲେ ।

ମୋର ଭଣଜା ଗିରିଜା ଶଙ୍କର ରଥଙ୍କ ପୁଅର ବିଭାଘରରେ ମେ ମାସ ପହିଲା ତାରିଖରେ ଯୋଗ ଦେଇଥିଲି ଓ ରାତି ୧୦ଟା ବେଳେ ବସ୍‌ରେ ବସି ରାଉରକେଲା ଯାଇଥିଲି । ତାପର ଦିନ ସକାଳେ ରାଉରକେଲାରେ ପହଞ୍ଚିଲି ଓ ରାଉରକେଲା ଠାରେ ୧୦ ତାରିଖ ପର୍ଯ୍ୟନ୍ତ ରହିଲି । ୧୨ ତାରିଖ ଦିନ ଭୁବନେଶ୍ୱର ଅଭିମୁଖେ ଦ୍ୱିତୀୟ ଶ୍ରେଣୀ ଶୀତତାପ ନିୟନ୍ତ୍ରିତ ବଗିରେ ଆସିଲି ଓ ପରଦିନ ୧୩.୫ ସକାଳେ ବାବୁ ଓ ବୁବୁ ମୋତେ ଆଣିବାକୁ ଷ୍ଟେସନ ଯାଇଥିଲେ । ବିଜ୍ଞାନ ପ୍ରଚାର ସମିତିର ଅଧିବେଶନ ୧୫ ତାରିଖରେ ହୋଇଥିଲା । 'ପ୍ଲାଜମା ଉପକରଣ' ସମ୍ବନ୍ଧରେ ବିସ୍ତୃତ ଆଲୋଚନା କରିଥିଲି ।

ବାବାଜୀ ଆପଟ ବାବୁଙ୍କ ପୁଅ ବିଭାଘର ପାଇଁ ୨୧.୫ ତାରିଖରେ ମୁଁ ପୁରୀ ଯାଇଥିଲି । ସେହିଦିନ ରାତିରେ ଗାଡିରେ ଫେରି ଆସିଲି । ବାବାଜୀ ଆପଟ ପୁରୀର ଜଣେ ଓକିଲ । ମୁଁ ଯେତେବେଳେ ପୁରୀ କଲେଜରେ ଥିଲି ତାଙ୍କ ସଙ୍ଗେ ମୋର ପରିଚୟ ହୋଇଥିଲା । ତାଙ୍କ ଝିଅ ଏବଂ ମୋ ସାନ ଝିଅ ଏକା କ୍ଲାସ୍‌ରେ ପଢୁଥିଲେ । ତାଙ୍କର ଗୋଟିଏ ପୁଅ ମୋ ପୁଅ ବାବୁ ସାଙ୍ଗରେ ପଢୁଥିଲା । କିନ୍ତୁ ତାଙ୍କ ପୁଅର ଅକାଳ ମୃତ୍ୟୁ ହୋଇଯାଇଥିଲା । ମୁଁ କଟକ ରେଭେନ୍ସା କଲେଜକୁ ବଦଳି ହୋଇ ଆସିଲା ପରେ ମୋ ସାନ ଝିଅ ଏମ୍.ଏସ୍‌ସି ଭୂଗୋଳରେ ପଢୁଥିଲା ବେଳେ ତାଙ୍କ ଝିଅ ଆମ ଘରେ ରହି ସବୁଦିନ ଭୁବନେଶ୍ୱର ଯିବା ଆସିବା କରି ଉତ୍କଳ ବିଶ୍ୱବିଦ୍ୟାଳୟରେ ପଢୁଥିଲା ।

ମୋ ସ୍ୱାମୀଙ୍କର ଶ୍ରାଦ୍ଧ ୧୦ ତାରିଖ ଜୁନ୍ ମାସରେ ହୋଇଥିଲା । କିନ୍ତୁ ସେହି ବର୍ଷ ବାବୁ ଭୁବନେଶ୍ୱରରେ ନ ଥିଲା । ତେଣୁ ବାଧ୍ୟ ହୋଇ ସାନ ପୁଅ ବୁବୁ ଶ୍ରାଦ୍ଧ କରିବାର ବ୍ୟବସ୍ଥା ହୋଇଥିଲା । କିନ୍ତୁ ତାକୁ ଶ୍ରାଦ୍ଧ ପୂର୍ବରୁ ଜଣ୍ଡିସ୍ ହୋଇଯିବାରୁ ଶ୍ରାଦ୍ଧ ଠିକ୍ ଭାବରେ କରି ପାରିଲା ନାହିଁ ଏବଂ ଜଣେ ବ୍ରାହ୍ମଣଙ୍କୁ ଟାଙ୍କି ଛଣ୍ଟା ଦେଇଦେଇ ଥିଲୁ । ୨୫ ତାରିଖ ଜୁନ୍ ମାସରେ

'ପ୍ଲାଜମା ବିଜ୍ଞାନୀ' ଶିରୋନାମାରେ ଗୋଟିଏ ପ୍ରବନ୍ଧ ଲେଖି ଓ ତାହାକୁ ଛାପି ଜହ୍ନୁରୀ ଭାଇଙ୍କୁ ଦେଇଥିଲି । ସେହି ପ୍ରବନ୍ଧଟି ପ୍ରଜାତନ୍ତ୍ରର ସାପ୍ତାହିକ ପତ୍ରିକାରେ ପ୍ରକାଶିତ ହୋଇଥିଲା ।

ଯାଜପୁର ହାଇସ୍କୁଲର ଜଣେ ଶିକ୍ଷକ ଗୋଟିଏ ନୂଆ ପରିଯୋଜନା ବିଷୟରେ ମୋ ପାଖକୁ ୨୨ ତାରିଖ ନଭେମ୍ବର ମାସରେ ବୁଝିବାକୁ ଆସିଥିଲେ । ସେ ତାଙ୍କ ପରିଯୋଜନାଟି ତାଙ୍କ ସାଙ୍ଗରେ ଧରି ଆସିଥିଲେ । କିନ୍ତୁ ସେ ମୋ ଠାରୁ ବୁଝିବାକୁ ଚାହିଁଲେ କାହିଁକି ପରିଯୋଜନାଟି କାମ କରୁନାହିଁ । ମୁଁ ତାକୁ ପରୀକ୍ଷା ନିରୀକ୍ଷା କରି ଜାଣିଲି ତାଙ୍କର ଗୋଟିଏ ଉପକରଣ ଠିକ୍ ଭାବେ କାମ କରୁନାହିଁ । ରେଭେନ୍ସା କଲେଜର ପ୍ଲାଟିନମ୍ ଜୁବୁଲି ଉତ୍ସବରେ ୨୩ ତାରିଖରେ ଯୋଗ ଦେବାକୁ ଯାଇଥିଲି । ୨୬ ତାରିଖ ପୂର୍ବରୁ ଗୋଟିଏ ସ୍କାନର କିଣାଯାଇଥିଲା । କିନ୍ତୁ ସେ ସ୍କାନରଟି କାମ କଲାନାହିଁ । ସେଥିପାଇଁ ସେହିଟିକୁ ଫେରାଇ ଦେଇ ଆଉ ଗୋଟିଏ ସ୍କାନର କିଣି ଆଣିଲି ।

ଫେବୃୟାର ମାସ ଦୁଇ ତାରିଖରେ ମୋ ଭାଣିଜୀ ପେମି ଝିଅର ନିର୍ବନ୍ଧ ହୋଇଥିଲା ସେଥିପାଇଁ ଆମେ ଯାଇଥିଲୁ । ୧୯.୨ରେ ବିଜ୍ଞାନ ପ୍ରଚାର ସମିତିର ଅଧିବେଶନ ହୋଇଥିଲା । ସେହି ଅଧିବେଶନରେ ମୁଁ ତରଳ ପଦାର୍ଥ କେତେବେଳେ ଗୋଲକାକାର ଆକୃତି ନିଅନ୍ତି, ସେହି ବିଷୟରେ ବିସ୍ତୃତ ଆଲୋଚନା କରିଥିଲି ।

ରେଭେନ୍ସା କଲେଜ, ପଦାର୍ଥ ବିଜ୍ଞାନର ଅଧ୍ୟାପକ ଓ ଅଧ୍ୟାପିକାମାନେ ମୋତେ ସମ୍ମାନିତ କରିବାକୁ ମନସ୍ଥ କରି ନିମନ୍ତ୍ରଣ କରିବାକୁ ୨୩.୧୧ ତାରିଖରେ ଆମ ଘରକୁ ଆସିଥିଲେ । ୨୬ ତାରିଖରେ ରେଭେନ୍ସା କଲେଜ ଯାଇଥିଲି । ସେହିଦିନ ସମ୍ବର୍ଦ୍ଧନା ଉତ୍ସବରେ ମୋତେ ଅଭିନନ୍ଦନ ଦିଆଗଲା । ଅଭିନନ୍ଦନ ପତ୍ରଟି ଇଂରାଜୀରେ ଲେଖା ହୋଇଥିଲା । ତାର ଓଡିଆ ଅନୁବାଦ ହେଲା:

**ସ୍ନାତକୋତ୍ତର ସେମିନାର, ପଦାର୍ଥ ବିଜ୍ଞାନ ବିଭାଗ**

**ରେଭେନ୍ସା ବିଶ୍ୱବିଦ୍ୟାଳୟ**

**ପ୍ରଫେସର ପତିତପାବନ ମିଶ୍ର ମହୋଦୟଙ୍କୁ**

**ଅଭିନନ୍ଦନ ପତ୍ର**

ଶ୍ରଦ୍ଧେୟ ମହାଶୟ,

ଏହି ବିଭାଗର ଜଣେ ଛାତ୍ର ଥିଲେ ବୋଲି, ଏହି ସଂଘର ଅନେକ ଛାତ୍ର ଆପଣଙ୍କୁ ଦୀର୍ଘଦିନ ପାଇଁ ସ୍ମରଣ କରୁଥିବେ । ଏହି ଐତିହାସିକ ମହାବିଦ୍ୟାଳୟରେ ଆପଣ ଏହି ବିଭାଗରେ ବିଭିନ୍ନ ସମ୍ମାନଜନକ ପଦପଦବୀରେ ରହି ସର୍ବଶେଷରେ ବିଭାଗର ମୁଖ୍ୟ ପ୍ରଫେସର ହୋଇଥିଲେ । ଆପଣଙ୍କର ଏହି ଅନୁଷ୍ଠାନ ପାଇଁ ଉତ୍ସର୍ଗୀକୃତ ଅନୁରକ୍ତ ସେବା ପାଇଁ ସ୍ମରଣ କରୁଥିବ । ଆପଣଙ୍କର ପଥ ପ୍ରଦର୍ଶନ ଓ କର୍ତ୍ତବ୍ୟ ନିଷ୍ଠା ପାଇଁ "Plasma Physics" ଏକ ସ୍ୱତନ୍ତ୍ର ପାଠ୍ୟରୂପେ ପ୍ରବର୍ତ୍ତିତ ଓ ପ୍ରତିଷ୍ଠିତ ହୋଇଛି । ସୁଲଭ ମୂଲ୍ୟର ଉପକରଣ ଦ୍ୱାରା

ପ୍ଲାଜମା ବିଜ୍ଞାନ ପରୀକ୍ଷାର ପ୍ରଣାଳୀ ପ୍ରସ୍ତୁତ କରି ଭାରତ ସରକାରଙ୍କ "ବିଜ୍ଞାନ ଓ କାରିଗରି କୌଶଳ" ବିଭାଗ ଦ୍ୱାରା ଆପଣ ଉଚ୍ଚ ପ୍ରଶଂସିତ ।

ଆପଣ ଅନେକ ଅନେକ ମର୍ଯ୍ୟାଦା ସମ୍ପନ୍ନ ଶିକ୍ଷାନୁଷ୍ଠାନ ଓ ବିଶ୍ୱବିଦ୍ୟାଳୟକୁ ପରିଦର୍ଶକ ବୈଜ୍ଞାନିକ ହିସାବରେ ପରିଦର୍ଶନ କରି ଗୌରବାନ୍ୱିତ କରିଛନ୍ତି ।

ଆପଣଙ୍କୁ ଓଡିଶା ବିଜ୍ଞାନ ଏକାଡେମୀ ଜଣେ ଉଚ୍ଚ କୋଟିର ବୈଜ୍ଞାନିକ ଭାବେ ସମ୍ବର୍ଦ୍ଧିତ କରିଛି । ଏହା ବ୍ୟତିତ ଅନେକ ପୁରସ୍କାର ଦ୍ୱାରା ଆପଣ ଭୂଷିତ ହୋଇଛନ୍ତି ।

ସମ୍ମାନାସ୍ପଦ ମହାଶୟ । ଆପଣଙ୍କ ସହାନୁଭୂତି ପୂର୍ଣ୍ଣ ପଥପ୍ରଦର୍ଶନ, ଅନେକ ଛାତ୍ରଙ୍କୁ ଉଚ୍ଚ ଗବେଷଣା କ୍ଷେତ୍ରରେ ପ୍ରଶଂସାର୍ହ କରାଇଛି । ଜାତୀୟ ଓ ଆନ୍ତର୍ଜାତୀୟ ପତ୍ର ପତ୍ରିକାରେ ଏହାର ସାକ୍ଷ୍ୟ ପ୍ରମାଣ ସୁସ୍ପଷ୍ଟ । ବିଜ୍ଞାନକୁ ଲୋକପ୍ରିୟ କରାଇବା ଲକ୍ଷ୍ୟରଖି ଆପଣ ଅନେକ ଗୁଡିଏ ପୁସ୍ତକର ଗ୍ରନ୍ଥକର୍ତ୍ତା । ଓଡିଆ ଭାଷାରେ ମଧ୍ୟ ଆପଣ ଅନେକ ପୁସ୍ତକ ବିଜ୍ଞାନ ପୁସ୍ତକ ରଚନା କରିଛନ୍ତି ।

ଆପଣ ଏହି ଗୌରବର ବିଶେଷ ଅଧିକାରୀ ବୋଲି, ଆମ୍ଭେ ହୃଦବୋଧ କରି, ଆଜିର ବିଶେଷ ଘଟଣା କ୍ରମେ ଆପଣଙ୍କୁ ଅଭିନନ୍ଦିତ କରୁଅଛୁ ।

ତାରିଖ – ୨୭.୧୧.୨୦୦୬

ପଦାର୍ଥ ବିଜ୍ଞାନ ବିଭାଗର
ମୁଖ୍ୟ ଉପାଧ୍ୟାୟ
ରେଭେନ୍ସା ବିଶ୍ୱବିଦ୍ୟାଳୟ
କଟକ

**P.G. SEMINAR.DEPARTMENT OF PHYSICS.**

Ravenshaw University

Felicitation

to

Prof.Patitapaban Misra

Esteemed Sir,

An alumnus of this department you are remembered amongst many of your students for your association with this Department for a long time. You joind as faculty in this historic college and subsequently became the Professor and Head of the Department of Physics. Your long dedicated service for this instituion will be fondly remembered. Due to your intiation and able guidance, Plasma Physics was introduced as special paper at Post Graduate level. Several low cost experiments in Plasma Physics were set up by you which were highly appreciated by the Department of Science and Technology, Government of India.

You have graced several important institutions and universities as visiting professor and visiting scientist. You were honoured as Senior Scientist by Orissa Bigyan Academy along with many other awards.

Respected Sir, you have guided many students for their research work which have been highly acclaimed by various national and international journals. You have authored many books including books in Oriya for popularization of Science.

We feel honoured and priviledged to felicitate you on this occasion.

Date: 27.11.06 H.O.D., Physics
Ravenshaw University, Cuttack

ଡିସେମ୍ବର ମାସ ୪ ତାରିଖରେ ଅନନ୍ତ ରାମ ବାବୁ ସନ୍ଧ୍ୟାବେଳେ ଆମ ଘରକୁ ଆସିଥିଲେ । ଦୁଇଜଣ କଥାବାର୍ତ୍ତା ହେବା ପରେ ୬ଟା ସମୟରେ ସେ ଚାଲି ଯାଇଥିଲେ । ସେହି ମାସ ୧୭ ତାରିଖ ଦିନ କଟକ, ବିଜ୍ଞାନ ପ୍ରଚାର ସମିତିର ସମ୍ପାଦକ ଡଃ ସୁବାସିନୀ ଲେଙ୍କା ମୋତେ ଚିଠି ଦ୍ୱାରା ଜଣାଇଲେ,ଆପଣଙ୍କୁ ବିଜ୍ଞାନ ପ୍ରଚାର ସମିତି, କଟକର ୫୭ତମ ବାର୍ଷିକ ଉତ୍ସବରେ ସମ୍ବର୍ଦ୍ଧିତ କରିବା ପାଇଁ ସ୍ଥିର କରାଯାଇ ଅଛି । ତେଣୁ ଆପଣ ୩୧ ତାରିଖ ଦିନ ୧୦ଟା ବେଳେ ରେଭେନ୍ସା ବିଶ୍ୱବିଦ୍ୟାଳୟର ରସାୟନ ବିଭାଗର ଦ୍ୱିତୀୟ ନମ୍ବର ଦର୍ଶକ ମଞ୍ଚ (Gallery) ରେ ଉପସ୍ଥିତ ରହିବାକୁ ଅନୁରୋଧ । ଏହି ବାର୍ଷିକ ଉତ୍ସବରେ ଡକ୍ଟର ଯଦୁନାଥ ପ୍ରସାଦ ଦାସ, ମୁଖ୍ୟ ଅତିଥି, ଡକ୍ଟର ସୁଦର୍ଶନ ପଟ୍ଟନାୟକ ସଭାପତି ଏବଂ ପ୍ରାଣୀ ବିଭାଗର ପ୍ରାକ୍ତନ ପ୍ରଫେସର ଡକ୍ଟର ଅମୂଲ୍ୟ କୁମାର ପଣ୍ଡା ମୁଖ୍ୟ ବକ୍ତାଭାବେ ସଭାକାର୍ଯ୍ୟ ସମ୍ପନ୍ନ କରିବେ । ଉକ୍ତ ଦିନ ଡକ୍ଟର ଚିତ୍ତରଞ୍ଜନ ମିଶ୍ର, ଡକ୍ଟର ଭାସ୍କର ଦାସ ଆମ ଘରକୁ ଆସି ଗାଡିରେ ମୋତେ ଓ ପ୍ରାଣୀ ବିଜ୍ଞାନ ବିଭାଗର ପ୍ରଫେସରଙ୍କୁ ନେଇ କଟକରେ ଯଥା ସମୟରେ ପହଞ୍ଚିଲେ ।

ସଭାକାର୍ଯ୍ୟ ଆରମ୍ଭ ହେବା ପରେ ଡକ୍ଟର ଯଦୁନାଥ ପ୍ରସାଦ ଦାସ ଏବଂ ଡକ୍ଟର ପ୍ରଫେସର ଅମୂଲ୍ୟ କୁମାର ପଣ୍ଡା ଭାଷଣ ଦେଇଥିଲେ । ତାପରେ ମୋତେ ବିଜ୍ଞାନ ପ୍ରଚାର ସମିତି ତରଫରୁ ଏକ ମାନପତ୍ର, ଏକ ସାଲ୍ ଏବଂ ଗୋଟିଏ ଫୁଲ ତୋଡା ଦେଇଥିଲେ । ଏହି

ମାନପତ୍ରଟି ଡକ୍ଟର ନିତ୍ୟାନନ୍ଦ ସ୍ୱାଇଁ ପାଠ କରିଥିଲେ । ଏହାପରେ ସଭାପତି ମହୋଦୟ ମୋତେ କିଛି କହିବା ପାଇଁ ଅନୁରୋଧ କରିଥିଲେ ।

ମାନପତ୍ରଟି ଏହିପରି ଭାବରେ ଲେଖାଯାଇ ଥିଲା:

**ବିଜ୍ଞାନ ପ୍ରଚାର ସମିତି, କଟକ**

**୫୭ ତମ ବାର୍ଷିକୋତ୍ସବ,୨୦୦୬**

**ପ୍ରଫେସର ଡକ୍ଟର ପତିତପାବନ ମିଶ୍ର ମହୋଦୟ**

ମହାଶୟ,

ଅଧ୍ୟାପନା ଆପଣଙ୍କର ବୃତ୍ତି, କିନ୍ତୁ ଗବେଷଣା ଆପଣଙ୍କର ପ୍ରବୃତ୍ତି । ଜଣେ ନିଷ୍ଠାବାନ ଗବେଷକ ଓ ସଫଳ ଶିକ୍ଷାବିତ୍ ଭାବରେ ଆପଣ ସୁବିଦିତ । ପଦାର୍ଥବିଜ୍ଞାନ ଗବେଷଣା କ୍ଷେତ୍ରରେ ଆପଣଙ୍କର ସଫଳତା ଲାଭ କରିଛି ଆନ୍ତର୍ଜାତୀୟ ସ୍ୱୀକୃତି ।

ଜଣେ ଲୋକପ୍ରିୟ ବିଜ୍ଞାନ ଲେଖକ ହିସାବରେ ଆପଣ ଅର୍ଜନ କରିଛନ୍ତି ଅଶେଷ ପାଠକୀୟ ପ୍ରଶଂସା । ଆପଣଙ୍କ ଦ୍ୱାରା ପ୍ରଣୀତ ପ୍ରବନ୍ଧ ଗୁଚ୍ଛ ଓ ପୁସ୍ତକରାଜି ଖୁବ୍ ଜନପ୍ରିୟ । ବିଶେଷକରି ଅଭିକ୍ରିୟାତ୍ମକ ଉପସ୍ଥାପନାରେ ଆପଣଙ୍କ ଶୈଳୀ ସ୍ୱତନ୍ତ୍ର ।

ଆପଣ ବିଜ୍ଞାନ ପ୍ରଚାର ସମିତିର ଜଣେ ସକ୍ରିୟ ଅଜୀବନ ସଭ୍ୟ । ବହୁବର୍ଷ ଧରି ଆପଣ ରହି ଆସିଥିଲେ ସମିତିର କୋଷାଧ୍ୟକ୍ଷ । ଆପଣଙ୍କ ଚାରିତ୍ରିକ ସାରଲ୍ୟରେ ସମିତିର ସଭ୍ୟମାନେ ଖୁବ୍ ଅଭିଭୂତ ।

ବିଜ୍ଞାନ ପ୍ରଚାର ସମିତି ପ୍ରତି ଆପଣଙ୍କ ଅବଦାନର ସ୍ୱୀକୃତି ସ୍ୱରୂପ ସମିତି ତା'ର ଏହି ୫୭ତମ ବାର୍ଷିକୋତ୍ସବରେ ଆପଣଙ୍କୁ ସମ୍ବର୍ଦ୍ଧନା କରି ନିଜକୁ ଗୌରବାନ୍ୱିତ ମନେକରୁଛି ।

ଆପଣ ଦୀର୍ଘ ତଥା ସୁସ୍ଥ ଜୀବନ ଲାଭକରି ବିଜ୍ଞାନକୁ ଲୋକପ୍ରିୟ କରିବାରେ ବ୍ରତୀ ରହିଥାନ୍ତୁ, ଏହା ହିଁ ଆମ୍ଭମାନଙ୍କର ଐକାନ୍ତିକ କାମନା ।

ଆପଣଙ୍କର ଗୁଣମୁଗ୍ଧ

ବିଜ୍ଞାନ ପ୍ରଚାର ସମିତିର ସଭ୍ୟସଭ୍ୟାବୃନ୍ଦ

| | | |
|---|---|---|
| ଯଦୁନାଥ ଦାସ | ସୁଦର୍ଶନ ପଟ୍ଟନାୟକ | ସୁବାସିନୀ ଲେଙ୍କା |
| ମୁଖ୍ୟ ଅତିଥି | ସଭାପତି | ସଂପାଦକ |

## କଟକ ବିଜ୍ଞାନ ପ୍ରଚାର ସମିତିର ବାର୍ଷିକ ଅଧିବେଶନରେ ଓ ପ୍ରଫେସର ପତିତପାବନ ମିଶ୍ରଙ୍କୁ ଅଭିନନ୍ଦନ ୨୦୦୬ କଟକ

ସମ୍ବର୍ଦ୍ଧନାର ଉତ୍ତରରେ ମୋର ଭାଷଣ ଏହିପରି ଥିଲା :

**ମାନନୀୟ ସଭାପତି:** ଡାକ୍ତର ସୁଦର୍ଶନ ପଟ୍ଟନାୟକ,

**ମୁଖ୍ୟ ଅତିଥି :** ଡାକ୍ତର ଯଦୁନାଥ ପ୍ରସାଦ ଦାସ,

**ମୁଖ୍ୟ ବକ୍ତା :** ପ୍ରଫେସର ଅମୂଲ୍ୟ କୁମାର ପଣ୍ଡା ,

ବିଜ୍ଞାନ ପ୍ରଚାର ସମିତିର ସମ୍ପାଦକ ଓ ଯୁଗ୍ମ ସମ୍ପାଦକ ଏବଂ ବିଜ୍ଞାନ ପ୍ରଚାର ସମିତିର ସଭ୍ୟବୃନ୍ଦ । ଏହି ବାର୍ଷିକ ଅଧିବେଶନରେ ମୋତେ ସମ୍ବର୍ଦ୍ଧନା ଦେବାପାଇଁ ନିମନ୍ତ୍ରଣ କରିଥିବାରୁ ମୁଁ ଚିରୋପକୃତ । ଏହା ସମ୍ଭବ ହୋଇପାରିଛି, କେବଳ ମୋର ବୋଉ (ମାତା)ଙ୍କ ପାଇଁ । ମୋର ନନା (ପିତା) ନିମାପଡା ପ୍ରାଇମେରୀ ସ୍କୁଲରେ ପ୍ରଧାନ ଶିକ୍ଷକ ଭାବେ କାମ କରୁଥିବା ବେଳେ ତାଙ୍କର ମୃତ୍ୟୁ ହୋଇଥିଲା । ସେତେବେଳେ ମୋତେ ମାତ୍ର ୧୧ ବର୍ଷ ବୟସ । ମୋର ବୋଉ ପିଲାଦିନ ଠାରୁ ଏମ୍.ଏସ୍‌ସି ପାସ୍ କରିବା ପର୍ଯ୍ୟନ୍ତ ଅତ୍ୟନ୍ତ ଦୁଃଖ କଷ୍ଟ ସହି ଚଉଦ ବର୍ଷକାଳ ଗ୍ରାମରେ ରହି ନ ଖାଇ ନ ପିଇ ତାଙ୍କର ସମସ୍ତ ଗହଣା ପତ୍ର ଏବଂ ନିମାପଡାରେ ଥିବା ମୂଲ୍ୟବାନ ଘର ବିକ୍ରିକରି ମୋତେ ପଢାଇ ମଣିଷ କରିଥିବାରୁ ମୁଁ ତାଙ୍କ ପାଖରେ ଚିରଋଣୀ ।

ସୁପ୍ରସିଦ୍ଧ ବୈଜ୍ଞାନିକ ପଦ୍ମଭୂଷଣ ପ୍ରଫେସର ଡକ୍ଟର ତ୍ରିଲୋଚନ ପ୍ରଧାନ ମୋତେ 'ପ୍ଲାଜମା ଫିଜିକ୍ସ'ରେ ଗବେଷଣା କରିବା ପାଇଁ ପରାମର୍ଶ ଦେଇଥିଲେ । କିନ୍ତୁ ସେତେବେଳେ ପ୍ଲାଜମା ଫିଜିକ୍ସ ଉପରେ ମୋର ଜମା ଜ୍ଞାନ ନ ଥିଲା । ଯାହାହେଉ ମୁଁ ତାତ୍ତ୍ୱିକ ପ୍ଲାଜମା ଫିଜିକ୍ସରେ ପିଏଚ୍.ଡି ପାଇବା ପାଇଁ ସମର୍ଥ ହୋଇଥିଲି ଏବଂ ପରେ ଗ୍ରେଟ୍ ବିଟେନ୍‌ର ଜର୍ଣ୍ଣାଲ ଅଫ ପ୍ଲାଜମା ଫିଜିକ୍ସରେ ଆପେକ୍ଷିକ ତତ୍ତ୍ୱ ପର୍ଯ୍ୟବେସିତ ତରଙ୍ଗ ପ୍ରସାରଣ ଉପରେ ତିନୋଟି ଉପାଦେୟ ବୈଜ୍ଞାନିକ ପ୍ରବନ୍ଧ ପ୍ରକାଶିତ କରିଥିଲି । ସେଥିପାଇଁ ତାଙ୍କୁ ଅଶେଷ ଧନ୍ୟବାଦ ଦେଉଛି ।

ତାପରେ ପ୍ରୟୋଗାତ୍ମକ ପ୍ଲାଜମା ଫିଜିକ୍ସରେ ଅଳ୍ପ ଖର୍ଚ୍ଚରେ ପରୀକ୍ଷା କରିବା ପାଇଁ ଡିପାର୍ଟମେଣ୍ଟ ଅଫ ସାଇନ୍ସ ଆଣ୍ଡ ଟେକ୍‌ନୋଲୋଜି ମୋତେ ଅନୁଦାନ ଦେଇଥିଲେ । ଡି.ଏସ୍.ଟିର ନିୟମ ଅନୁସାରେ ମୁଁ କରିଥିବା ପରୀକ୍ଷା ଗୁଡିକର ଏକ ପାଣ୍ଡୁଲିପି ପଠାଇଥିଲି । ଡି.ଏସ୍.ଟି ପୁଣି ଅନୁଦାନ ଦେଇ ଏହି ପାଣ୍ଡୁଲିପିର ବିଷୟ ବସ୍ତୁକୁ ଶହେଟି ପୁସ୍ତକ ଆକାରରେ ଛପାଇ ଭାରତର ସବୁ ବୈଜ୍ଞାନିକ ମାନଙ୍କୁ ବାଣ୍ଟିଥିଲି ।

ମୋର ସହଧର୍ମିଣୀ ଚିନ୍ମୟୀ ମିଶ୍ର ଯେକି ମୋତେ ସବୁବେଳେ ଉତ୍ସାହିତ କରୁଥିଲେ । କଟକ ବିଜ୍ଞାନ ପ୍ରଚାର ସମିତିର ସଭ୍ୟ ଭାବରେ ଡାକିଥିବା ପୁସ୍ତକ 'ପରମାଣୁ ଶକ୍ତି' ଏବଂ ବିଭିନ୍ନ ପ୍ରବନ୍ଧ ଗୁଡିକ ଭଲ ହସ୍ତାକ୍ଷରରେ ଲେଖି ଦେଉଥିଲେ । ଡିପାର୍ଟମେଣ୍ଟର ପରୀକ୍ଷାଗାରରେ ସକାଳୁ

ରାତି ପର୍ଯ୍ୟନ୍ତ ରହିବା ପାଇଁ କେବେ ମନା କରି ନ ଥିଲେ । ତାଙ୍କ ମୃତ୍ୟୁ ପୂର୍ବରୁ ମୋର ଫିଜିକ୍ସ ଲାବୋରାଟୋରି ମାନୁଆଲ ବହିଟି ଛପାଇବା ପାଇଁ ପ୍ରକାଶକଙ୍କ ପାଖକୁ ପଠାଇ ଦେବାପରେ, ସେ ବାରମ୍ବାର ପ୍ରବର୍ତ୍ତାଇ ଥିଲେ ଯେ ସ୍ନାତକୋତ୍ତର ପିଲାଙ୍କ ପାଇଁ ଏକ ଉପଯୁକ୍ତ ପୁସ୍ତକ ଲେଖିବା ପାଇଁ, କିନ୍ତୁ ମୁଁ ତାଙ୍କ କଥାକୁ ଗୁରୁତ୍ୱ ଦେଇ ନ ଥିଲି । କାରଣ ସ୍ନାତକୋତ୍ତର ପିଲାଙ୍କ ପାଇଁ ଏକ ଉପଯୁକ୍ତ ପୁସ୍ତକ ଲେଖିବାକୁ ସମର୍ଥ ହୋଇପାରିବି କି ନାହିଁ ଭାବୁଥିଲି । କିନ୍ତୁ ତାଙ୍କର ମୃତ୍ୟୁ ପରେ ତାଙ୍କ ଶେଷ ଇଚ୍ଛା ପୂର୍ଣ୍ଣ କରିବା ଲାଗି ସ୍ନାତକୋତ୍ତର ପିଲାଙ୍କ ବହି ଲେଖିବା ପାଇଁ ଆରମ୍ଭ କଲି ଏବଂ ଡକ୍ଟର କେ.ସି ମହାନ୍ତିଙ୍କୁ ବହିର ଅନ୍ୟ କେତୋଟି ଅଧ୍ୟାୟ ଲେଖିବା ପାଇଁ ଅନୁରୋଧ କଲି । କିନ୍ତୁ ଏହି ଦୁଇଟି ବହି ଦେଖିବା ପାଇଁ ସହଧର୍ମିଣୀ ରହି ନ ଥିଲେ ।

ମୁଁ U.G.C, Dept pf Science and Tech. Govt. of India and Science and Tech. Dept Govt, Orissa and board of Research in nuclear Science Provided necessary finalcial grant for research and to Organize Seminar, Summer and Winter School in Physics Department, Ravenshaw College, Cuttack. ସେଥିନିମନ୍ତେ ସେମାନଙ୍କୁ କୃତଜ୍ଞତାର ସହିତ ଧନ୍ୟବାଦ ଦେଉଛି । ଶେଷରେ ମୋ ତତ୍ତ୍ୱାବଧାନରେ ଯେଉଁମାନେ ଗବେଷଣା କରୁଥିଲେ ସେମାନେ ମୁଁ ପ୍ରସ୍ତୁତ କରିଥିବା ଉପକରଣ ଓ ଏକ୍ସପେରାମେଣ୍ଟ ଗୁଡ଼ିକ ଠିକ୍ କାମ କରୁଛି କି ନାହିଁ ପରୀକ୍ଷା କରି ଦେଖୁଥିଲେ, ସେଥିପାଇଁ ମୁଁ ସେମାନଙ୍କୁ ଧନ୍ୟବାଦ ଦେଉଛି ।

ମୁଁ ପଦାର୍ଥ ବିଜ୍ଞାନ ବିଭାଗର ମିସ୍ତ୍ରୀ ଓ କେମିଷ୍ଟ୍ରି ବିଭାଗର ଗ୍ଲାସ୍ ବ୍ଲୋୟରମାନଙ୍କୁ ମୋର ପ୍ରସ୍ତୁତ କରାଯାଇଥିବା ଏହି ଉପକରଣ ଗୁଡ଼ିକୁ ମୋ କହିବା ଅନୁସାରେ ପ୍ରସ୍ତୁତ କରିଦେଇ ଥିବାରୁ ତାଙ୍କୁ ମଧ୍ୟ ଧନ୍ୟବାଦ ଦେଉଛି ।

ଶ୍ରୀ ନୃସିଂହ ଚରଣ ସାହୁ (ଜହ୍ନରୀ ଭାଇ) ମୋର ସହଧର୍ମିଣୀଙ୍କ ମୃତ୍ୟୁ ପରେ, ମୁଁ ଯେତେବେଳେ ଦୁଃଖରେ ମ୍ରିୟମାଣ ହୋଇପଡିଥିଲି, ଆମ ଘରକୁ ବାରମ୍ବାର ଆସି, ମୋତେ ପ୍ରବୋଧନା ଦେବା ସହ, ଓଡିଆରେ ପିଲାଙ୍କ ପାଇଁ ବିଜ୍ଞାନ ପୁସ୍ତକ ଲେଖିବା ପାଇଁ ପ୍ରବର୍ତ୍ତାଇ ଥିଲେ । ମୋର ପକ୍ଷାଘାତ ରୋଗ ଯୋଗୁଁ ହାତରେ ଲେଖିପାରୁ ନ ଥିଲି । ସେ କହିଲେ ପ୍ରଥମେ ଆତ୍ମ ଜୀବନୀଟି କୌଣସି ଛାତ୍ରକୁ ଡାକି ଲେଖାଇ ଦେଲେ ଆପଣଙ୍କର ଓଡିଆ ଭାଷାରେ ଦକ୍ଷତା ଆପେ ଆପେ ଆସିଯିବ । ତାପରେ ବିଜ୍ଞାନ ପୁସ୍ତକର ବିଷୟ ବସ୍ତୁ ଡାକି ପାରିବେ । ଆତ୍ମଜୀବନୀଟି କିଛି ବାଟ ଲେଖିବା ଦ୍ୱାରା ମୋର ଓଡିଆ ଭାଷା ଉପରେ ଦଖଲ ଆସିଛି ଓ ମୁଁ ଚାରିଖଣ୍ଡି ବହି "ଏମିତି କାହିଁକି ଓ କିପରି ହୁଏ ?" ରଚନା କରିଛି । ତାଙ୍କୁ ସେଥିପାଇଁ ଧନ୍ୟବାଦ

ଦେଉଛି । ପ୍ରଥମ, ତୃତୀୟ ଏବଂ ଚତୁର୍ଥ ବହି ତିନୋଟି କଟକର ବିଜ୍ଞାନ ପ୍ରଚାର ସମିତିର ପାଠାଗାରକୁ ପ୍ରଦାନ କରୁଛି ଓ ଦ୍ୱିତୀୟ ଖଣ୍ଡଟି ଛପାହେଲେ ପଠାଇ ଦେବି ।

ସର୍ବ ଶେଷରେ ମୋର ବରିଷ୍ଠ ସହକର୍ମୀ ଏବଂ ଅନ୍ୟମାନଙ୍କୁ ଧୈର୍ଯ୍ୟର ସହିତ ମୋ କଥା ଶୁଣୁଥିବାରୁ, ଧନ୍ୟବାଦ ଦେଉଛି ।

୨୦୦୭ ମସିହା ଜାନୁଆରୀ ୦୬ ତାରିଖ ଦିନ ନାଲକୋର ପ୍ରତିଷ୍ଠା ଦିବସ (Nalco foundation day) ନାଲକୋର ପ୍ରେକ୍ଷାଳୟ (Auditorium)ରେ ଅନୁଷ୍ଠିତ ହୋଇଥିଲା । ସେଥିପାଇଁ ଡକ୍ଟର ଚିତରଞ୍ଜନ ମିଶ୍ର ମୋତେ ସଭା କାର୍ଯ୍ୟରେ ଉପସ୍ଥିତ ହେବାକୁ ନିମନ୍ତ୍ରଣ କରିଥିଲେ । ସେହି ଅବସରରେ ଡକ୍ଟର ଜେ.ଜେ. ଇରାନୀ ଭାରତୀୟ ଉଦ୍ୟୋଗ (Industry)ର ଭବିଷ୍ୟତ ଉପରେ ଆଲୋକପାତ କରିଥିଲେ । ସେ ମହାଶୟଙ୍କର ବକ୍ତୃତାଟି ହୃଦୟସ୍ପର୍ଶୀ ହୋଇଥିଲା । ମୁଁ ଏବଂ ମୋର ବଡବୋହୂ ସେଥିରେ ଯୋଗ ଦେଇଥିଲୁ । ସେଥିରେ ସମସ୍ତ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ସାମାନ୍ୟ ଜଳଯୋଗରେ ଅପ୍ୟାୟିତ କରାଯାଇଥିଲା ।

ସେହିବର୍ଷ ଫେବୃୟାରୀ ୧୮ ତାରିଖରେ ରେଭେନ୍ସା କଲେଜର ଆଲୁମ୍ନି ସମ୍ମେଳନ (Association)କୁ ନିମନ୍ତ୍ରଣ ପାଇ ମୁଁ ଏବଂ ପଦ୍ମଭୂଷଣ ଡକ୍ଟର ତ୍ରିଲୋଚନ ପ୍ରଧାନ ସାଥିହୋଇ ଯାଇଥିଲୁ ।

ଦିନେ ଶ୍ରୀଯୁକ୍ତ ନୃସିଂହ ଚରଣ ସାହୁ (ଜହ୍ନରୀ ଭାଇ)ଙ୍କର ଭାବଗ୍ରାହୀ ବାବୁଙ୍କ ସାଙ୍ଗେ ଦେଖା ହୋଇଥିଲା । ତାଙ୍କ ବିଷୟରେ ପଚାରୁ ପଚାରୁ ସେ କହିଲେ, ଭାବଗ୍ରାହୀ ବାବୁ ଏବେ ଆସି ଭୁବନେଶ୍ୱରରେ ରହୁଛନ୍ତି । ମୁଁ କହିଲି,'ମୁଁ ତାଙ୍କ ଘରକୁ ଯାଇ ପାରିବି ନାହିଁ' । ତାଙ୍କୁ ଥରେ ଆମ ଘରକୁ ଆସିବାକୁ କୁହନ୍ତୁ । ସେ ଓଡିଆ କଳା ବିଭାଗରେ ସ୍ନାତକ ପାସ୍‌କରି ଆମେରିକା ଯାଇଥିଲେ । ସେହିଦିନ ଠାରୁ ମୋର ଆଉ ତାଙ୍କ ସାଙ୍ଗରେ ଦେଖା ହୋଇନ'ଥିଲା । ନୃସିଂହ ବାବୁ ତାଙ୍କୁ କହିବାରୁ ସେ ୨୭ ତାରିଖ ଦିନ ଆମ ଘରକୁ ଆସିଥିଲେ ଓ ମୋ ବୋହୂମାନଙ୍କ ସହିତ ତାଙ୍କର ପରିଚୟ କରାଇ ଦେଇଥିଲି । ସେ କଥା ପ୍ରସଙ୍ଗରେ କହିଲେ, ମୁଁ କେତେଗୁଡିଏ ଓଡିଆ ପୁସ୍ତକ ପ୍ରକାଶ କରିଅଛି । କିଛି ସମୟ କଥାବାର୍ତ୍ତା ହେଲାପରେ ଚାଲିଯାଇଥିଲେ ।

ସେହି ମସିହା ମାର୍ଚ୍ଚ ୨୫ ତାରିଖରେ ମୋର ଜନ୍ମଦିନ ଆମଘର ୧୪୦, ବାପୁଜୀ ନଗରରେ ପାଳିତ ହୋଇଥିଲା । ସେଥିପାଇଁ ବିଜ୍ଞାନ ପ୍ରଚାର ସମିତିର ସଭ୍ୟମାନେ ନିମନ୍ତ୍ରିତ ହୋଇଥିଲେ । ଏହା ବ୍ୟତୀତ ମୋର ଆଇ.ଏସ୍‌ସି ପଢିଲା ବେଳର କେତେକ ସାଙ୍ଗସାଥି ମଧ୍ୟ ନିମନ୍ତ୍ରିତ ହୋଇ ଆସିଥିଲେ । ବିଜ୍ଞାନ ପ୍ରଚାର ସମିତି ଭୁବନେଶ୍ୱରର ସମ୍ପାଦକ ଡକ୍ଟର ଚିତରଞ୍ଜନ ମିଶ୍ର, କୋଷାଧ୍ୟକ୍ଷ ପ୍ରଫୁଲ୍ଲ ମହାନ୍ତି ଏବଂ ଅଧିକାଂଶ ବିଜ୍ଞାନ ପ୍ରଚାର ସମିତିର ସଭ୍ୟ ଉପସ୍ଥିତ ଥିଲେ । ସେଥିରେ ପଦ୍ମଭୂଷଣ ଡକ୍ଟର ତ୍ରିଲୋଚନ ପ୍ରଧାନ ସଭାପତିତ୍ୱ କରିଥିଲେ । ଆଡଭାନସ୍‌ଡ ଫିଜିକ୍ସ ଲାବୋରାଟୋରୀ ମାନୁଆଲ୍‌କୁ(Advanced Physics Laboratory

Manual) ସଭାପତି ଉନ୍ମୋଚନ କରିଥିଲେ । ବେଣୁଧର ସେନାପତି ମୋ ସାଙ୍ଗରେ ସତ୍ୟବାଦୀ ହାଇସ୍କୁଲରେ ପଢିଲା ବେଳେ ପଢୁଥିଲେ ଏବଂ ଶିକ୍ଷକ ଇନ୍ଦୁଭୂଷଣ ମିଶ୍ରଙ୍କ ଦ୍ୱାରା ଅନୁବାଦିତ "ମରଚ୍ୟାଣ୍ଟ ଅଫ ଭେନିସ୍" ନାଟକର ଓଡିଆ ରୁପାନ୍ତର ବିଷୟରେ ଆମେ ଆଲୋଚନା କରିଥିଲୁ । ସେ ମୋ ଜନ୍ମଦିନରେ ସାତପଡା ବୁଲିଯାଇ ଥିବାରୁ ଆସିପାରି ନ'ଥିଲେ । ତାପର ଦିନ ଆସିଥିଲେ ।

ଅପ୍ରେଲ ୧୪ ତାରିଖରେ ଡକ୍ଟର ଦାମୋଦର ଲେଙ୍କାଙ୍କ ଘରକୁ ବିଜ୍ଞାନ ପ୍ରଚାର ସମିତିର ଏକ ଅଧିବେଶନରେ ଯୋଗଦେବାକୁ ଯାଇଥିଲି । ସେହି ଅଧିବେଶନରେ ଡକ୍ଟର ସଦାନନ୍ଦ ଚରାସିଆ ସଭାପତିତ୍ୱ କରିଥିଲେ । ମୁଁ "ନଟୁ କାହିଁକି ଘୁରୁଥିବା ବେଳେ ଲମ୍ବ ଭାବରେ ଠିଆ ହେଲାପରି ଘୁରୁଥାଏ, କିନ୍ତୁ ଘୁରିବା ବନ୍ଦ ହୋଇଗଲେ କାହିଁକି ପଡିଯାଏ ।" ସେହି ବିଷୟରେ ଆଲୋଚନା କରିଥିଲି । ଆଲୋଚନାରେ ମୁଁ ପ୍ରକାଶ କରିଥିଲି ବନ୍ଧୁକର ଗୁଳି ଘୁରି ଘୁରି ଯିବା ସମୟରେ ଠିକ୍ ଲକ୍ଷ୍ୟଭେଦ କରିପାରେ । ସେହି ସଭାକୁ ଉଦ୍ଭିଦ ବିଜ୍ଞାନର ପ୍ରଫେସର ଜଣେ ଗବେଷକଙ୍କୁ ସାଙ୍ଗରେ ଆଣିଥିଲେ । ସେ ବିଜ୍ଞାନ ପ୍ରଚାର ସମିତିର ସଭ୍ୟମାନଙ୍କୁ ତାଙ୍କର ପରିଚୟ ଦେଇଥିଲେ । ସେ ଶୈବାଳ ଉପରେ ଗବେଷଣା କରୁଥିଲେ । ଦାମୋଦର ଲେଙ୍କାଙ୍କ ଜ୍ୱାଇଁ ସମସ୍ତଙ୍କୁ ଜଳପାନ ଦେଇ ଆପ୍ୟାୟିତ କରିଥିଲେ । ତାପରେ ସଭାଭଙ୍ଗ ହେଲା ।

ଜୁନ୍ ୧୭ ତାରିଖରେ ବିଜ୍ଞାନ ପ୍ରଚାର ସମିତିର ଏକ ଅଲୋଚନା ସଭା ପ୍ରାଣୀ ବିଜ୍ଞାନ ବିଭାଗରେ ଅନୁଷ୍ଠିତ ହୋଇଥିଲା । ସେଥିରେ "ଟେବୁଲ୍ ପଙ୍ଖା କାହିଁକି ଟ୍ୟୁବ୍ ଲାଇଟ୍ ସମ୍ମୁଖରେ ଘୂରିବା ବେଳେ ସ୍ଥିରଥିବା ପରି ପଛକୁ ଓ ଆଗକୁ କାହିଁକି ଘୂରେ" ସେହି ବିଷୟରେ ବିଶେଷ ଆଲୋଚନା କରିଥିଲି । ଏହି ପ୍ରବନ୍ଧଟି ବିଜ୍ଞାନ ପ୍ରଚାର ସମିତି, କଟକ ତରଫରୁ ତାଙ୍କର "ବିଜ୍ଞାନାଲୋକ" ଦ୍ୱିମାସିକ ପତ୍ରିକାରେ ପ୍ରକାଶ ପାଇଥିଲା । ଜୁନ୍ ୧୮ ତାରିଖରେ ମୋ ସ୍ତ୍ରୀଙ୍କର ଶ୍ରାଦ୍ଧ ଦିବସ ପଡିଥିଲା । ମୋର ବନ୍ଧୁ ବାନ୍ଧବମାନେ ନିମନ୍ତ୍ରିତ ହୋଇଥିଲେ ।

୨୦୦୭ ମସିହା ଅଗଷ୍ଟ ମାସର ୨ ତାରିଖରେ ଯେତେବେଳେ ନିମାପଡା ଯାଇଥିଲି । ମୁଁ ଦୁଇବର୍ଷ ପୂର୍ବରୁ ଯେତେବେଳେ ଯାଇଥିଲି ଅଜୀବ ସ୍ମୃତି ପାଠାଗାର ଦେଖିବାକୁ ପାଇଥିଲି । କିନ୍ତୁ ଏଥର ଦେଖିଲି, ସେ ପାଠାଗାରଟିର ଖାଲି ସୀମାରେଖାଟି ଅଛି । କିନ୍ତୁ କାନୁ ଜିଛିନାହିଁ ଏବଂ ସ୍କୁଲ୍ ଘରଟି ଭଙ୍ଗା ହୋଇଯାଇଛି । ଆଗରୁ ଅଜୀବ ସ୍ମୃତି ପାଠାଗାରର ନାମ ଫଳକ ଦେହରେ ଓଡିଶା ପ୍ରାଇମେରୀ ସ୍କୁଲର ସଭାପତି ଶ୍ରୀ ଉଦୟନାଥ ଆଚାର୍ଯ୍ୟ ପ୍ରତିଷ୍ଠାତା ବୋଲି ଲେଖାହୋଇଥିବା ନାମ ଫଳକଟି ଉଠିଯାଇଛି । କେବଳ 'ଅଜୀବ ସ୍ମୃତି' ପାଠାଗାର ଲେଖାଟି ରହିଛି । ମୁଁ ଫେରିଆସି କେତେ ଦିନପରେ ଚିନ୍ତାକଲି, ମୋ ନନାଙ୍କର ସ୍ମୃତି ରଖିବା ପାଇଁ ନିମାପଡା ହାଇସ୍କୁଲର ପ୍ଲାଟିନମ୍ ଜୟନ୍ତୀ ଉତ୍ସବରେ ୧୦ ହଜାର ଟଙ୍କା ପୋଷ୍ଟ ଅଫିସ୍‌ରେ

ରଖିଦେବି । ଏହି ୧୦ ହଜାର ଟଙ୍କାରୁ ମିଳୁଥିବା ବାର୍ଷିକ ସୁଧରେ ପ୍ରତିବର୍ଷ ନିମାପଡା ସ୍କୁଲର ବିଜ୍ଞାନ ମେଳା ଅବସରରେ ଛାତ୍ର ଓ ଛାତ୍ରୀଙ୍କ ମଧ୍ୟରୁ ପରୀକ୍ଷାକରି ଦେଖାଇଥିବା ସବୁ ପିଲାଙ୍କ ମଧ୍ୟରୁ ଯାହାର ପ୍ରକଳ୍ପ ଉତ୍କୃଷ୍ଟ ହୋଇଥିବ ସେହି ଛାତ୍ର କିମ୍ବା ଛାତ୍ରୀଙ୍କୁ ପ୍ରତିବର୍ଷ ନୂତନ ଏକ ସିଲ୍ଡ ପ୍ରଦାନ କରାଯିବ ଏବଂ ଅବଶିଷ୍ଟ ବଳକା ଟଙ୍କା ତାଙ୍କୁ ଦିଆଯିବ । ଏହା ଠିକ୍ କରି ସ୍କୁଲର ପ୍ରଧାନ ଶିକ୍ଷକଙ୍କୁ ଜଣାଇ ଦେଲି ଏବଂ ଲେଖିଲି ପ୍ଲାଟିନମ୍ ଜୟନ୍ତୀ ଉତ୍ସବର ପୂର୍ବରୁ ଯାଇ ପୋଷ୍ଟ ଅଫିସ୍‌ରେ ୧୦ ହଜାର ଟଙ୍କା ଜମା କରିଦେବି ଏବଂ ପ୍ରଧାନ ଶିକ୍ଷକଙ୍କୁ ଦାୟିତ୍ୱ ଦେବି, ଜମା ହୋଇଥିବା ଟଙ୍କାରୁ ପ୍ରତି ବର୍ଷ ବାର୍ଷିକ ସୁଧ ଡାକଘରୁ ନେଇ ଗୋଟିଏ ସିଲ୍ଡ କିଣି ଅବଶିଷ୍ଟ ଟଙ୍କା ଉପଯୁକ୍ତ ଛାତ୍ର କିମ୍ବା ଛାତ୍ରୀଙ୍କୁ ପ୍ରଦାନ କରିବେ ।

ସେପ୍ଟେମ୍ବର ମାସ ୨ ତାରିଖରେ ପ୍ଲାଟିନମ୍ ଜୟନ୍ତୀ କିପରି ପାଳନ କରାଯିବ ଏହି ବିଷୟ, ଆଲୋଚନା କରିବାଲାଗି ନିମାପଡା ହାଇସ୍କୁଲର ପୁରାତନ ଛାତ୍ରମାନେ 'ହୋଟେଲ୍ କେଶରୀ'ରେ ଏକ ସଭାର ଆୟୋଜନ କରିଥିଲେ । ସେଥିରେ ଯୋଗ ଦେବାକୁ ମୋତେ ନିମନ୍ତ୍ରଣ କରିଥିଲେ । ମୁଁ ମଧ୍ୟ ସେଠାକୁ ଯାଇ ମୋର ସମ୍ମତି ଜଣାଇଥିଲି ଓ ମୁଁ ମଧ୍ୟ କିଛି ବକ୍ତବ୍ୟ ରଖିଥିଲି ।

ତାର ଦୁଇ ତିନି ଦିନ ପରେ ପୁରାତନ ଛାତ୍ରଙ୍କ ମଧ୍ୟରୁ ଉଦ୍ୟୋକ୍ତାମାନେ ଆମ ଘରକୁ ଆସି ଏକ କ୍ଷୁଦ୍ର ପ୍ରବନ୍ଧ "୭୦ ବର୍ଷ ତଳର ନିମାପଡା" ଉପରେ ମୋ ଠାରୁ ଏକ ଲେଖା ଏବଂ ପୁରାତନ ଛାତ୍ର ହିସାବରେ ସଭ୍ୟଚାନ୍ଦା ୫୦୦ ଟଙ୍କା ଗ୍ରହଣ କରିଥିଲେ ।

ଦିନେ ଖବର କାଗଜରୁ ପଢିଲି, ନିମାପଡା ସ୍କୁଲର ଜଣେ ପୁରାତନ ଛାତ୍ର ଡକ୍ଟର ମନମୋହନ ମହାନ୍ତି ଅନ୍ୟ କେତେଜଣ ପୁରାତନ ଛାତ୍ରଙ୍କୁ ଧରି ଏବଂ ନିଜେ ସଭାପତି ହୋଇ ପ୍ଲାଟିନମ୍ ଜୟନ୍ତୀ ଉତ୍ସବକୁ ନିଜ ତତ୍ତ୍ୱାବଧାନରେ କରିବାକୁ ଚାହିଁଲେ । ପ୍ଲାଟିନମ୍ ଜୟନ୍ତୀ ଉତ୍ସବର ଅନ୍ୟ ଉଦ୍‌ଯୋଗକାରୀ ମାନଙ୍କ ମଧ୍ୟରେ ମତାନ୍ତର ହେଲା । ପରେ ଜାଣିଲି ପ୍ଲାଟିନମ୍ ଜୟନ୍ତୀ ଉତ୍ସବଟି ଅନିର୍ଦ୍ଦିଷ୍ଟ କାଳପାଇଁ ବନ୍ଦ କରାଯାଇଛି ।

୨୦୦୭ ଜୁଲାଇ ମାସରେ ଭାରତୀୟ ପଦାର୍ଥ ବିଜ୍ଞାନର ଶିକ୍ଷକମାନଙ୍କର ସମ୍ମେଳନ (Indian Association of Physics Teacher) ବୁଲେଟିନ୍‌ରେ ପଢିଲି ହିମାଚଳ ପ୍ରଦେଶରେ ଅବସ୍ଥିତ ସିମଳା ବିଶ୍ୱବିଦ୍ୟାଳୟ ଠାରେ IAPTର ବାର୍ଷିକ ଅଧିବେଶନ ଅକ୍ଟୋବର ୨୭ ତାରିଖରେ ଅନୁଷ୍ଠିତ ହେବ । କାହିଁକି କେଜାଣି ମୋର ମନହେଲା, ସିମଳା ଯିବାପାଇଁ । କିନ୍ତୁ ତା'ପରେ ସିମଳା କଥା ଭୁଲିଗଲି । ଅକ୍ଟୋବର ମାସରେ ମୋ ବଡଝିଅ ମୋତେ ପଚାରିଲା ତୁମେ IAPT ଅଧିବେଶନ ପାଇଁ ସିମଳା ଯାଇପାରିବ କି ? ମୁଁ କିଛି ଉତ୍ତର ଦେଲିନାହିଁ । ଝିଅ କହିଲା "ମୁଁ ଏ ବର୍ଷ ପାଇଁ କାର୍ଯ୍ୟନିର୍ବାହୀ ସଭ୍ୟଭାବେ ମନୋନୀତ ହୋଇଛି । ମୋତେ କାର୍ଯ୍ୟନିର୍ବାହୀ ସଭ୍ୟ ଭାବରେ IAPT ବାର୍ଷିକ, ଅଧିବେଶନରେ ଯୋଗ

ଦେବାକୁ ନିମନ୍ତ୍ରଣ କରାଯାଇଛି ।" ମୁଁ ସେଠାକୁ ଯିବାକୁ ଠିକ୍ କରିଛି । ମୋତେ ପଚାରିଲା,ତୁମେ ଯାଇପାରିବ କି ? ମୁଁ ଯିବାକୁ ରାଜି ହୋଇଗଲି । ଆଉ ତିନି ଚାରି ଦିନପରେ ସେ ଫୋନ୍‌ରେ କହିଲା, ମୁଁ ମୋର ଏବଂ ତୁମର ଭୁବନେଶ୍ୱର ଠାରୁ ଦିଲ୍ଲୀ ପର୍ଯ୍ୟନ୍ତ ବିମାନ ଯାତ୍ରାର ଟିକେଟ୍ କରିଦେଇଛି ଏବଂ 'ମୁଁ ୨୩ ତାରିଖରେ ଭୁବନେଶ୍ୱରରେ ପହଞ୍ଚିବି । ୨୪ ତାରିଖ ଦିନ ବିମାନରେ ଯାତ୍ରା କରିବା ।'

## IAPT ର ବାର୍ଷିକ ଅଧିବେଶନରେ ଯୋଗଦେବା ପାଇଁ ସିମଳା ଯାତ୍ରା

ଅକ୍ଟୋବର ୨୪ ତାରିଖ ଦିନ ୯ଟା ବେଳେ ମୋ ଝିଅ ପ୍ରଭାତି ମିଶ୍ର ଏବଂ ମୁଁ ବିମାନ ବନ୍ଦରକୁ ଗଲୁ । ୧୦ଟା ବେଳେ ବିମାନ ଯାତ୍ରା ଆରମ୍ଭ ହେଲା ଏବଂ ପ୍ରାୟ ୧୨ଟା ବେଳେ ଦିଲ୍ଲୀ ବିମାନ ବନ୍ଦରରେ ପହଞ୍ଚିଲୁ । ବିମାନ ବନ୍ଦରକୁ ମାମିର ସାଙ୍ଗ ଲୁସିର ବର ଶ୍ରୀ ରଞ୍ଜନ ବାବୁ ଗାଡିନେଇ ଆସିଥିଲେ । ତାଙ୍କ ଘର ଦିଲ୍ଲୀ ବିମାନ ବନ୍ଦର ନିକଟରେ ଅବସ୍ଥିତ । ତାଙ୍କ ଘରେ ଖାଇବା ପିଇବା କରି କିଛି ସମୟ ବିଶ୍ରାମ ନେଇ ସଂଧ୍ୟା ବେଳକୁ ପାଖରେ ଥିବା ବଜାରକୁ ତାଙ୍କ ଗାଡିରେ ବୁଲିବାକୁ ଯାଇଥିଲୁ । ଦୁଇଘଣ୍ଟା ପରେ ଫେରି ଆସିଲୁ ।

ତାପର ଦିନ ସକାଳ ୮ଟା ବେଳେ ରଞ୍ଜନ ବାବୁ ଗୋଟିଏ ଟ୍ୟାକ୍ସି ତାଙ୍କ ଘରଠାରୁ ହିମାଚଳ ପ୍ରଦେଶର ବସ୍‌ଷ୍ଟାଣ୍ଡକୁ ଯିବା ପାଇଁ ଯୋଗାଡ କରିଥିଲେ । ଆମେ ସକାଳ ୮ଟା ବେଳେ ଟ୍ୟାକ୍ସିରେ ଯାଇ ପ୍ରାୟ ୧୧ଟା ବେଳେ ହିମାଚଳ ପ୍ରଦେଶର ବସ୍ ଷ୍ଟାଣ୍ଡରେ ପହଞ୍ଚିଲୁ । ବସର ଟିକେଟ ଆଗରୁ ରଞ୍ଜନ ବାବୁ କରି ଦେଇଥିଲେ । ଆମେ ଦୁହେଁ ଯାଇ ଆଗ ସିଟ୍‌ରେ ବସିଲୁ । ଆମ ସିଟ୍‌ର ପଛପଟେ ତିନିଜଣ ପୌଢା ସ୍ତ୍ରୀ ଲୋକ ସିମଳା ଯାତ୍ରା କରୁଥିଲେ । କଥାବାର୍ତ୍ତାରୁ ଜଣାପଡିଲା ସେମାନେ ମଧ୍ୟ ବାର୍ଷିକ ଅଧିବେଶନରେ ଯୋଗଦେବାକୁ ଯାଉଥିଲେ । ସେ ବସ୍‌ରେ ବସି ସଂଧ୍ୟାବେଳେ ଚଣ୍ଡିଗଡଠାରେ ପହଞ୍ଚିଲୁ । ଚଣ୍ଡିଗଡଠାରୁ ସିମଳା ଅଭିମୁଖେ ଯାତ୍ରାକଲୁ । ଅଳ୍ପ କିଛିବାଟ ଗଲାପରେ ବସ୍ ଥରକୁ ଥର ଏତେ ବାଙ୍କ ବୁଲିଲା ଯେ ବସ୍‌ରେ ବସିଥିବା ପ୍ରାୟ ସମସ୍ତ ଲୋକଙ୍କର ବାନ୍ତି ହେଲା । ବାନ୍ତି ବସ୍ ଭିତରେ ନ'ପଡିବା ପାଇଁ ବସ୍‌ର କ୍ଲିନର ସମସ୍ତଙ୍କ ହାତରେ ଏକ କାଗଜ ମୁଣି ଧରାଇ ଦେଲେ । ସମସ୍ତେ ସିମଳାରେ ପହଞ୍ଚିବା ପର୍ଯ୍ୟନ୍ତ ବାନ୍ତି କରି କରି ଯାଉଥାଆନ୍ତି । କିନ୍ତୁ ମୋର ଆଦୌ ବାନ୍ତି ହୋଇ ନ'ଥିଲା । ବସ୍‌ର କ୍ଲିନର ମୋତେ ମଧ୍ୟ ଏକ କାଗଜ ମୁଣି ଦେଇଥିଲା ।

ଆମେ ପ୍ରାୟ ରାତି ଆଠଟା ବେଳେ ସିମଳା ବସ୍‌ଷ୍ଟାଣ୍ଡରେ ପହଞ୍ଚିଲୁ । ବସ୍‌ଷ୍ଟାଣ୍ଡ ପାଖରେ ଏତେ ଭିଡ ଥାଏ ଯେ ଚାଲି ହେଉ ନ'ଥାଏ । ସବୁ ଟ୍ୟାକ୍ସି ମାଲିକମାନେ ଯାତ୍ରୀମାନଙ୍କୁ ଆମ ଟ୍ୟାକ୍ସିରେ ବସନ୍ତୁ ବୋଲି ଅନୁରୋଧ କରୁଥାଆନ୍ତି । ଶେଷରେ ଆମେ ଦୁଇଜଣ ଓ ଅନ୍ୟ ତିନିଜଣ ପ୍ରୌଢା ଗୋଟିଏ ଟ୍ୟାକ୍ସିରେ ବସି ଏକ ହୋଟେଲ୍‌ରେ ପହଞ୍ଚିଲୁ । ସେ ହୋଟେଲ୍‌ର ନାମ ହେଉଛି "ଗଙ୍ଗା ପ୍ୟାଲେସ୍" । ହୋଟେଲ୍‌ର କର୍ମଚାରୀ ଆମ ଦୁଇଜଣଙ୍କୁ ଗୋଟିଏ କୋଠରୀରେ

ରହିବାର ବ୍ୟବସ୍ଥା କରିଦେଲେ । ରାତିରେ ଶୋଇବା ପାଇଁ ଶେଯ ଓ ରେଜେଇର ମଧ୍ୟ ବ୍ୟବସ୍ଥା କରିଦେଲେ । ଆମ କୋଠରୀର ଆଗରେ ଆଉ ଗୋଟିଏ କୋଠରୀରେ ଆମ ସାଙ୍ଗରେ ଆସିଥିବା ସେହି ତିନିଜଣ ପ୍ରୌଢା ସ୍ତ୍ରୀଲୋକ ରହିଲେ । ଆମେ ରାତିରେ ଖାଇବାକୁ ନ'ଯାଇ ଗୋଟିଏ ଲୋକ ହାତରେ ଖାଇବା ମଗାଇ ଖାଇଲୁ । ସକାଳୁ ହୋଟେଲ୍‌ର କର୍ମଚାରୀ ଗାଧୋଇବାକୁ ଗରମ ପାଣି ଦେଇଗଲେ । ଆମେ ଗାଧୁଆ ପାଧୁଆସାରି ସେହି ହୋଟେଲ୍‌ରେ ଜଳଖିଆ ମଗାଇ ଖାଇଲୁ ।

କୌଣସି ପ୍ରକାରେ ମୋ ଝିଅ ଚାଲିକରି ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ଗଲା । କିନ୍ତୁ ମୁଁ ଯାଇପାରୁ ନ'ଥାଏ । ଛଅ ସାତ ହାତ ଯାଇ ମୁଁ ଟିକିଏ ଛିଡା ନ'ହେଲେ ଆଗକୁ ଯାଇପାରିଲି ନାହିଁ । ରାସ୍ତାଟି ସବୁଆଡେ ଉଠାଣି ଓ ଗଡାଣି ହୋଇଥାଏ । ମୋତେ ପ୍ରଥମ ଦିନ ଯିବା ପାଇଁ ବହୁତ କଷ୍ଟ ହେଲା । ସଭାକାର୍ଯ୍ୟ ସମାପ୍ତ ହେବାପରେ ବିଶ୍ୱବିଦ୍ୟାଳୟ ତରଫରୁ ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା କରାଯାଇଥିଲା । କିନ୍ତୁ ମଧ୍ୟାହ୍ନ ଭୋଜନର ସ୍ଥାନଟି ପ୍ରାୟ ତିରିଶ ଫୁଟତଳେ ଥିଲା । କେତେଜଣ ପ୍ରୌଢଲୋକ ଏବଂ ମୁଁ ତଳକୁ ନ'ଯାଇ ଆମ ଖାଦ୍ୟ ସେଠାକାର ସ୍ୱେଚ୍ଛା ସେବକମାନଙ୍କ ଦ୍ୱାରା ମଗାଇ ଖାଇଲୁ । କାର୍ଯ୍ୟନିର୍ବାହୀ ସଭା ସରିବା ପରେ ମୁଁ ଏବଂ ମୋ ଝିଅ ବହୁକଷ୍ଟରେ ରହିବା ସ୍ଥାନ ଗଙ୍ଗା ପ୍ୟାଲେସ୍‌କୁ ଆସିଲୁ । ଆମ ଦୁହିଁଙ୍କ ରାତି ଖାଇବା ପାଇଁ ବିଶ୍ୱବିଦ୍ୟାଳୟ ତରଫରୁ ମଧ୍ୟ ବ୍ୟବସ୍ଥା ହୋଇଥିଲା । କିନ୍ତୁ ଯାଇପାରିବୁ ନାହିଁ ଭାବି ବାହାରୁ ମଗାଇ କିଛି ଖାଇଲୁ । ୨୭ ଓ ୨୮ ତାରିଖ ଦିନ ଆମେ ସେହିପରି କଷ୍ଟେ ମଷ୍ଟେ ବିଶ୍ୱବିଦ୍ୟାଳୟର ସଭାସ୍ଥଳୀ ପର୍ଯ୍ୟନ୍ତ ଯାଉଥିଲୁ । ୨୯ ତାରିଖ ଦିନ ସକାଳୁ ବିଶ୍ୱବିଦ୍ୟାଳୟର ସଭାସ୍ଥଳୀକୁ ଯିବା ସମୟରେ ମୋ ଉପରେ, ନୂଆ ନୂଆ ପରୀକ୍ଷା କରି ଦେଖାଉ ଥିବା ଅଧ୍ୟାପକମାନଙ୍କର ପରିଯୋଜନାଗୁଡିକୁ ଦେଖି ତାଙ୍କ ପରିଯୋଜନା ଉପରେ ୧୦୦ ନମ୍ବରରୁ କିଏ କେତେ ନମ୍ବର ରଖିବେ, ମାର୍କ ଦେବା ପାଇଁ କୁହାଯାଇଥିଲା । ସେଥିପାଇଁ ମୋତେ ମିଶାଇ ପାଞ୍ଚ ଜଣ ଅଧ୍ୟାପକଙ୍କୁ ଏହି କାର୍ଯ୍ୟ ତୁଲାଇବା ପାଇଁ ଦାୟିତ୍ୱ ଦିଆଯାଇଥିଲା । ମୁଁ ଅଧ୍ୟାପକମାନଙ୍କର ପରିଯୋଜନାଗୁଡିକୁ ଦେଖି ନମ୍ବର ଦେଇଥିଲି । ଅନ୍ୟମାନଙ୍କର ନମ୍ବର ଟକ କେରଳ ବିଶ୍ୱବିଦ୍ୟାଳୟର ଡକ୍ଟର ଅନନ୍ତ କୃଷ୍ଣନଙ୍କୁ ଦେଇଥିଲି । ମୋତେ ପ୍ରାୟ ଏହି ନମ୍ବର ଦେବାକୁ ସମୁଦାୟ ଦିନଟିଏ ଲାଗିଯାଇଥିଲା । ସେଦିନ ମୋ ଝିଅ ଅନ୍ୟ କେତେଜଣଙ୍କ ସାଙ୍ଗରେ ମିଶି ବସ୍‌ରେ ସିମଲା ସହର ବୁଲିବାକୁ ଯାଇଥିଲା ଏବଂ କେତେକ ପୋଷାକପତ୍ର କିଣିକରି ଆଣିଥିଲା । ଆମେ ସେହିପରି ସେଦିନ ରାତିରେ ଖାଇବାକୁ ଯାଇନ'ଥିଲୁ । ଆମକୁ

ଆଶ୍ଚର୍ଯ୍ୟ ଲାଗିଲା ଯେ ସିମଳା ବିଶ୍ୱବିଦ୍ୟାଳୟର ଛାତ୍ରୀମାନେ କିପରି ଡଗ ଡଗ ହୋଇ ଚାଲି ଯାଉଥାଆନ୍ତି ।

ମୁଁ ସିମଳା ଯିବା ପୂର୍ବରୁ ମନେ ପଡିଲା, ୩୦ ବର୍ଷ ତଳେ ଏକ ଲୁଗା ଦୋକାନକୁ ଯାଇ ପିଲାଙ୍କ ପାଇଁ କିଛି ପୋଷାକ କିଣି ଆଣିଥିଲୁ । ସେତେବେଳେ ମୋ ସ୍ତ୍ରୀ ଗୋଟିଏ ଶାଢୀ ଆଣିବାକୁ ଲୁଗା ଦୋକାନକୁ ଯାଇଥିଲା । ଯେଉଁ ଶାଢୀଟି ପସନ୍ଦ ହେଲା, ତାହାକୁ କିଣି ଆଣିବା ପାଇଁ ପଇସା ନିଅଣ୍ଟ ପଡିଲା । ତେଣୁ ଶାଢୀଟି କିଣିଲୁ ନାହିଁ । ଲୁଗା ଦୋକାନର ମାଲିକ କହିଲା, ଆପଣ ଆମକୁ ଅଳ୍ପ କିଛି ଟଙ୍କା ଓ ଆପଣଙ୍କ ଠିକଣା ଦିଅନ୍ତୁ ଶାଢୀ ଖଣ୍ଡିକ ଆପଣଙ୍କ ଘରକୁ ଭି.ପି.ପି.ରେ ପଠାଇ ଦେବୁ, ଆପଣ ଶାଢୀଟି ରଖିନେବେ । ମୁଁ ପୂର୍ବରୁ ଲେଖିଛି, ଆମେ ଶାଢୀଟି ପାଇଥିଲୁ । ସିମଳାରେ ପହଞ୍ଚିଲା ପୂର୍ବରୁ ମୁଁ ଭାବିଥିଲି ସେହି ଶାଢୀ ଦୋକାନକୁ ଯିବାପାଇଁ । କିନ୍ତୁ ସିମଳାରେ ଦିନେ ରହିବା ପରେ ମୋର ହୃଦ୍‌ବୋଧ ହେଲା, ଦୋକାନ ପର୍ଯ୍ୟନ୍ତ ଯାଇ ପାରିବି ନାହିଁ । ତେଣୁ ମାମିକୁ କିଛି କହିଲି ନାହିଁ । ସେତେବେଳେ ଭାବିଲି, ମୋର ବୟସ ୩୦ ବର୍ଷ ଅଧିକ ହୋଇ ଗଲାଣି ଓ ମୋତେ ଥରେ ପକ୍ଷାଘାତ ହୋଇଥିଲା । ତେଣୁ ଆଉ ସେହି ଶାଢୀ ଦୋକାନକୁ ନ ଯିବାପାଇଁ ଠିକ କଲି ।

୨୯ ତାରିଖ ଦିନ ସକାଳୁ ମୁଁ ଏବଂ ମୋ ଝିଅ ଟ୍ୟାକ୍ସିକରି 'ଗଙ୍ଗା ପ୍ୟାଲେସ୍‌ରୁ' ବାହାରି ମୋର ଗସ୍ତଖର୍ଚ୍ଚ ଆଣିବା ପାଇଁ ବିଶ୍ୱବିଦ୍ୟାଳୟର ପଦାର୍ଥବିଜ୍ଞାନ ବିଭାଗକୁ ଯାଇଥିଲୁ । କାରଣ ମୋ ଝିଅ ବୁଝିଥିଲା ଯେ, ସକାଳ ବେଳା ସେମାନେ ମୋ ଗସ୍ତ ଖର୍ଚ୍ଚ ଦେଇଦେବେ । କିନ୍ତୁ ସେଠାରେ ପହଞ୍ଚିଲା ପରେ ଜାଣିଲୁ, ସେମାନେ ସେଦିନ ଦେଇପାରିବେ ନାହିଁ । ତେଣୁ ସେହି ଟ୍ୟାକ୍ସିରେ ବସି ସିମଳା ଷ୍ଟେସନକୁ ଆସିଲୁ । ଷ୍ଟେସନ୍‌ରେ ଓହ୍ଲାଇ ଟୟଟ୍ରେନ୍‌ରେ ଆମେ ବସିଲୁ । କିଛି ସମୟ ବସିଲାପରେ ଟ୍ରେନ୍‌ଟି ଛାଡିଲା । ଆସିଲା ବେଳେ ଦେଖିଲୁ ଟ୍ରେନ୍‌ଟି ମଧ୍ୟ ଅଙ୍କାବଙ୍କା ରାସ୍ତାରେ କମ୍ ବେଗରେ ଧିରେ ଧିରେ ଯାଉଥାଏ । ଟ୍ରେନ୍‌ରେ ବସିବା ବେଳେ ପ୍ରାକୃତିକ ଦୃଶ୍ୟ ବହୁତ ସୁନ୍ଦର । ପ୍ରାୟ ପାଞ୍ଚଟା ବେଳକୁ ଆମେ କାଲ୍‌କା ଷ୍ଟେସନ୍‌ରେ ପହଞ୍ଚିଲୁ ।

କାଲ୍‌କାରେ ଟୟଟ୍ରେନ୍‌ରୁ ଓହ୍ଲାଇ ଦିଲ୍ଲୀ ଯିବାକୁ ଛିଡା ହୋଇଥିବା ଶତାବ୍ଦୀ ଏକ୍ସପ୍ରେସ୍‌ର ଚେୟାରକାରରେ ଯାଇ ବସିଲୁ । ସେ ଟ୍ରେନ୍‌ରେ ଥରକୁ ଥର ସୁସ୍ୱାଦୁ ଖାଇବା ଦ୍ରବ୍ୟ ଆମମାନଙ୍କୁ ପରିବେଷଣ କରୁଥାଆନ୍ତି । ଟ୍ରେନ୍ ପ୍ରାୟ ରାତି ୯ଟା ବେଳକୁ ନିଉଦିଲ୍ଲୀ ଷ୍ଟେସନ୍‌ରେ ପହଞ୍ଚିଲା । ଆମେ ଆଗରୁ ଇଉ.ସି ପଟ୍ଟନାୟକଙ୍କ ପାଖକୁ ଜଣାଇ ଦେଇଥିଲୁ ଯେ ଆମେ ଉକ୍ତ ଟ୍ରେନ୍‌ରେ ଦିଲ୍ଲୀରେ ପହଞ୍ଚିବୁ । ଟ୍ରେନ୍ ପ୍ଲାଟଫର୍ମରେ ରହିବା ସମୟରେ ଡକ୍ଟର ଇଉ.ସି ପଟ୍ଟନାୟକଙ୍କୁ ଦେଖିଲୁ । (ଏଠାରେ ମନେ ପକାଇ ଦେବାକୁ ଚାହେଁ ଯେ ଡକ୍ଟର ଇଉ.ସି ପଟ୍ଟନାୟକ ମୋ

ତତ୍ତ୍ୱାବଧାନରେ ଗବେଷଣା କରି ପି.ଏଚ୍‌ଡି ପାଇଥିଲେ । ତାହାର ଅଳ୍ପଦିନ ପରେ ଇଉ.ପି.ଏସ୍.ସି 'Union Public Serves Commission' ସାକ୍ଷାତକାର ପରୀକ୍ଷାରେ ଉପଯୁକ୍ତ ବିବେଚିତ ହୋଇ ଇଉ.ପି.ଏସ୍.ସିରେ ଡେପୁଟି ସେକ୍ରେଟାରୀ ରୂପେ କାର୍ଯ୍ୟଭାର ଗ୍ରହଣ କରିଥିଲେ ।) ତାଙ୍କ ସାଙ୍ଗରେ ଆମେ ଦୁହେଁ ଗଲୁ । ପ୍ଲାଟଫର୍ମ ପାର ହେବାପରେ ଅଟୋରିକ୍ସାରେ ଯାଇ ତାଙ୍କ ଘରେ ରାତିରେ ରହିଲୁ । ତା'ପର ଦିନ ୧୦ଟାରେ ପଟ୍ଟନାୟକ ଗୋଟିଏ ଟ୍ୟାକ୍ସି ଡାକିଆଣିଲେ । ଆମେ ସେହି ଟ୍ୟାକ୍ସିରେ ବସି ପଟ୍ଟନାୟକ ସହିତ ପ୍ରଭାତିର ସାଙ୍ଗ ଲୁସିଙ୍କ ଘରେ ପହଞ୍ଚିଲୁ । ଡକ୍ଟର ପଟ୍ଟନାୟକ ଅଟୋ ଏବଂ ଟ୍ୟାକ୍ସି ଭଡା ଆମଠାରୁ ଗ୍ରହଣ କଲେ ନାହିଁ । ତାପରେ ପଟ୍ଟନାୟକ ସେଠାରୁ ଫେରି ଆସିଲେ । ସେହିଦିନଟି ଲୁସିଙ୍କ ଘରେ ରହି ସନ୍ଧ୍ୟାବେଳକୁ ଦିଲ୍ଲୀ ମାର୍କେଟକୁ କିଣାକିଣି କରିବାକୁ ଗଲୁ । ତା'ପର ଦିନ ସକାଳେ ଲୁସିଙ୍କ ଘର ଛାଡିବା ପୂର୍ବରୁ ରଞ୍ଜନ କିଣିଥିବା ଗୋଟିଏ ପ୍ୟାଣ୍ଟ ଓ ଗୋଟିଏ ସାର୍ଟ ମୋତେ ପିନ୍ଧାଇ ଘରୁ ଛାଡିଥିଲେ । ରଞ୍ଜନ ନିଜ ଗାଡିରେ ବସାଇ ଆମକୁ ଦିଲ୍ଲୀ ବିମାନ ବନ୍ଦରକୁ ଆଣିଥିଲେ । ସେ ବିମାନ ବନ୍ଦରରେ ଛାଡିଦେଇ ଚାଲିଗଲେ । ତା'ପରେ ପ୍ରଭାତି ଓ ମୁଁ ବିମାନରେ ଯାଇ ବସିଲୁ । କିଛି ଅସୁବିଧା ଥିବାରୁ ବିମାନ ଛାଡିବାକୁ ପ୍ରାୟ ଅଧଘଣ୍ଟା ଡେରି ହୋଇଥିଲା । ସେହି ବିମାନଟି 'ଡେକାନ୍ ଏୟାର ୱେଭ'ର । ତାଙ୍କର ନିୟମ ଅନୁସାରେ ଯାତ୍ରୀମାନଙ୍କୁ ଖାଦ୍ୟପେୟ ଦେବାର କିଛି ବ୍ୟବସ୍ଥା ନ'ଥାଏ । ବାଧ୍ୟହୋଇ ଆମେ କିଛି ସାମାନ୍ୟ ଖାଇବା ଜିନିଷ କିଣିଲୁ । ତାର ଦାମ୍ ପ୍ରାୟ ଦୁଇଗୁଣରୁ ବେଶୀ ଥିଲା ।

ଭୁବନେଶ୍ୱର ବିମାନ ବନ୍ଦର ପାଖରେ ବିମାନ ପହଞ୍ଚିଲା ସମୟରେ ବର୍ଷା ହେଉଥିବାରୁ ବିମାନଟି ପ୍ରାୟ ଏକଘଣ୍ଟା କାଳ ଆକାଶ ମାର୍ଗରେ ଘୁରିବୁଲିଲା । ବର୍ଷା ଛାଡିଯିବାରୁ ବିମାନଟି ବନ୍ଦରରେ ଅବତରଣ କଲା । ମୋ ପୁଅ ବୁବୁ ଗାଡିନେଇ ଯାଇଥିଲା । ଆମେ ଗାଡିରେ ବସି ଘରକୁ ଆସିଲୁ ।

ଏଠାରେ ଆଉ ଗୋଟିଏ କଥା ପାଠକମାନଙ୍କୁ ଜଣାଇ ଦେବାକୁ ଚାହେଁ ଯେ, ମୁଁ ୨୪ ବର୍ଷ ହେଲା IAPTର ସଭ୍ୟଥିଲି । ସବୁଥର IAPTର ଅଧିବେଶନ ସରିବାପରେ ଗସ୍ତଖର୍ଚ୍ଚ ସେମାନେ ସଙ୍ଗେ ସଙ୍ଗେ ଦେଇଦିଅନ୍ତି । କିନ୍ତୁ ଏହିବର୍ଷ ସେମାନେ ଫେରିବା ସମୟରେ ଗସ୍ତଖର୍ଚ୍ଚ ମଧ୍ୟ ଦେଲେନାହିଁ । ଡିସେମ୍ବର ପର୍ଯ୍ୟନ୍ତ ମଧ୍ୟ ଦେଇ ନ'ଥିଲେ । କିନ୍ତୁ ଜାନୁଆରୀ ମାସରେ ମୁଁ ଗସ୍ତଖର୍ଚ୍ଚ ପାଇଗଲି ।

ନଭେମ୍ବର ୧୮ ତାରିଖରେ ବିଜ୍ଞାନ ପ୍ରଚାର ସମିତିରେ ଯୋଗ ଦେଇଥିଲି ଏବଂ ଡିସେମ୍ବର ୧୬ ତାରିଖରେ ମଧ୍ୟ ବିଜ୍ଞାନ ପ୍ରଚାର ସମିତିରେ ଯୋଗ ଦେଇଥିଲି । କାନ୍ଥଘଣ୍ଟା

ସାହାଯ୍ୟରେ କିପରି ଦର୍ଶକ ଗଣନାଯନ୍ତ୍ର କରିପାରିବ ସେହି ବିଷୟରେ ଆଲୋଚନା କରିଥିଲି । ୨୦ ତାରିଖରେ କମ୍ପ୍ୟୁଟର ଖରାପ ହୋଇଗଲା । ୨୧ ତାରିଖରେ ଆଉ ଏକ ନୂତନ କମ୍ପ୍ୟୁଟର କିଣାଗଲା ଓ ଠିକ୍ କରାଗଲା । ଏହି କମ୍ପ୍ୟୁଟରରେ ମୋର ସହକର୍ମୀ କୁମାରୀ ଅନୁସୂୟା ଦାସ ଏହି ପୁସ୍ତକର ଡି.ଟି.ପି. କରିଛନ୍ତି । ଶ୍ରୀ ନୃସିଂହଚରଣ ସାହୁ ଏବଂ ଡକ୍ଟର ଲାବଣ୍ୟଚନ୍ଦ୍ର ସାହୁ ଏହାକୁ ପରିମାର୍ଜିତ କରିବାରେ ସାହାଯ୍ୟ କରିଥିବାରୁ ସମସ୍ତେ ମୋର ଧନ୍ୟବାଦର ପାତ୍ର ।

୨୩ ତାରିଖରେ କଟକ ବିଜ୍ଞାନ ପ୍ରଚାର ସମିତିର ବାର୍ଷିକ ଅଧିବେଶନରେ ଯୋଗ ଦେବା ପାଇଁ ଟିଭି ବାବୁଙ୍କ ଗାଡ଼ିରେ ଯାଇଥିଲି । ୨୪ ତାରିଖରେ କିଣା ଯାଇଥିବା କମ୍ପ୍ୟୁଟର ସହିତ ଅନ୍ୟାନ୍ୟ ଉପକରଣ ଖଞ୍ଜାଗଲା । ଫଳରେ ଲେଖାଲେଖି କରିବା ପାଇଁ ଟିକିଏ ଅନୁକୂଳ ପରିସ୍ଥିତ ସୃଷ୍ଟି ହେଲା । ଈଶ୍ୱରଙ୍କ ଇଚ୍ଛା, ମୋ ହାତରେ କରାଇବା ପାଇଁ ଆଉ କ'ଣ ବାକି ରହିଲା ।

-------o-------

# ବିଜ୍ଞାନ ପ୍ରଚାର ସମିତି, କଟକ

୫୭ତମ ବାର୍ଷିକୋତ୍ସବ, ୨୦୦୬

## ପ୍ରଫେସର ଡକ୍ଟର ପତିତପାବନ ମିଶ୍ର ମହୋଦୟ

ମହାଶୟ,

ଅଧ୍ୟାପନା ଆପଣଙ୍କର ବୃତ୍ତି, କିନ୍ତୁ ଗବେଷଣା ଆପଣଙ୍କର ପ୍ରବୃତ୍ତି । ଜଣେ ନିଷ୍ଠାବାନ୍ ଗବେଷକ ଓ ଦକ୍ଷ ଶିକ୍ଷକ ଭାବରେ ଆପଣ ସୁବିଦିତ । ପଦାର୍ଥବିଜ୍ଞାନ ଗବେଷଣା କ୍ଷେତ୍ରରେ ଆପଣଙ୍କର ସଫଳତା ଲାଭ କରିଛି ଅନ୍ତର୍ଜାତୀୟ ସ୍ୱୀକୃତି ।

ଜଣେ ଲୋକପ୍ରିୟ ବିଜ୍ଞାନ ଲେଖକ ହିସାବରେ ଆପଣ ଅର୍ଜନ କରିଛନ୍ତି ଅଶେଷ ପାଠକୀୟ ପ୍ରଶଂସା । ଆପଣଙ୍କ ଦ୍ୱାରା ପ୍ରଣୀତ ପ୍ରବନ୍ଧ ଗ୍ରନ୍ଥ ଓ ପୁସ୍ତକରାଜି ଖୁବ୍ ଜନପ୍ରିୟ । ବିଶେଷକରି ଅଭିକ୍ରିୟାତ୍ମକ ଉପସ୍ଥାପନାରେ ଆପଣଙ୍କ ଶୈଳୀ ସ୍ୱତନ୍ତ୍ର ।

ଆପଣ ବିଜ୍ଞାନ ପ୍ରଚାର ସମିତିର ଜଣେ ସକ୍ରିୟ ଆଜୀବନ ସଭ୍ୟ । ଦୀର୍ଘ ବର୍ଷ ଧରି ଆପଣ ଦେଇ ଆସିଥିଲେ ସମିତିର କାର୍ଯ୍ୟଧାରା । ଆପଣଙ୍କ ଚାରିତ୍ରିକ ମାଧୁର୍ଯ୍ୟରେ ସମିତିର ସଭ୍ୟମାନେ ଖୁବ ଅଭିଭୂତ ।

ବିଜ୍ଞାନ ପ୍ରଚାର ସମିତି ପ୍ରତି ଆପଣଙ୍କ ଅବଦାନର ସ୍ୱୀକୃତି ସ୍ୱରୂପ, ସମିତି ତା'ର ଏହି ୫୭ତମ ବାର୍ଷିକୋତ୍ସବରେ ଆପଣଙ୍କୁ ସମ୍ବର୍ଦ୍ଧନା ଜଣାଇ ନିଜକୁ ଗୌରବାନ୍ୱିତ ମନେକରୁଛି ।

ଆପଣ ଦୀର୍ଘ ଜୀବୀ ହୁଅନ୍ତୁ ଓ ଆହୁରି ବିଜ୍ଞାନର ଲୋକପ୍ରିୟକରଣରେ ବ୍ରତୀ ରହିଥାନ୍ତୁ, ଏହା ହିଁ ଆମମାନଙ୍କର ଐକାନ୍ତିକ କାମନା ।

ଆପଣଙ୍କର ଗୁଣମୁଗ୍ଧ
ବିଜ୍ଞାନ ପ୍ରଚାର ସମିତିର ସଭ୍ୟସଭ୍ୟାବୃନ୍ଦ

ମୁଖ୍ୟ ସଚିବ | ସଭାପତି | ସମ୍ପାଦକ

# R. G. SEMINAR.DEPARTMENT OF PHYSICS

## RAVENSHAW UNIVERSITY

### FELICITATION
### TO
### PROF. PATITA PABANA MISRA

*Esteemed Sir,*

*An alumnus of this department you are remembered amongst many of your students for the association with this department for a long time. You joined as faculty in this historic college and subsequently became the Professor and Head of the department of Physics. Your long dedicated service for this institution will be fondly remembered. Due to your initiation and able guidance, Plasma Physics was introduced as special paper at Post Graduate level. Several low cost experiments in Plasma Physics were set up by you which were highly appreciated by the Department of Science and Technology, Government of India.*

*You have graced several important institutions and universities as visiting professor and visiting scientist. You were honoured as Senior Scientist by Orissa Bigyan Academy along with many other awards.*

*Respected Sir, you have guided many students for their research work which have been highly acclaimed by various national and international journals. You have authored many books including books in Oriya for popularization of Science.*

*We feel honoured and privileged to felicitate you on this occasion.*

*Date:- 27/11/06*

27.11.06

*H.O.D., Physics*
*Ravenshaw University, Cuttack*



ପତିତପାବନ ମିଶ୍ରଙ୍କର ଜନ୍ମ ୧୯୩୧ ମସିହା ଶ୍ରୀରାମ ନବମୀ ତିଥିରେ ପୁରୀ ଜିଲ୍ଲାର ନିମାପଡ଼ାରେ । ନିମାପଡ଼ା ହାଇସ୍କୁଲ ପର୍ଯ୍ୟନ୍ତ ପାଠ ଶେଷ କରି ପୁରୀ ସାମନ୍ତ ଚନ୍ଦ୍ର ଶେଖର ମହାବିଦ୍ୟାଳୟରେ ଉଚ୍ଚ ଶିକ୍ଷା ଆରମ୍ଭ କଲେ । ଏହାପରେ ରେଭେନ୍ସା ମହାବିଦ୍ୟାଳୟରୁ ବି.ଏସ.ସି. ଓ ଏମ୍.ଏସ୍.ସି ପରୀକ୍ଷାରେ କୃତକାର୍ଯ୍ୟ ହୋଇ ୧୯୫୬ ମସିହାରେ ସେହି ରେଭେନ୍ସା ମହାବିଦ୍ୟାଳୟରୁ ଅଧ୍ୟାପକ ଜୀବନ ଆରମ୍ଭ କଲେ । ୧୯୭୦ ମସିହାରେ ପ୍ଲାଜ୍‌ମା ଫିଜିକ୍ସରେ ପି.ଏଚ.ଡି ଲାଭ କଲେ । ଏହାପରେ ଭାରତ ବର୍ଷର ବିଭିନ୍ନ ସ୍ଥାନରେ ପ୍ଲାଜ୍‌ମା ଗବେଷଣା କ୍ଷେତ୍ରରେ ଦିଗ୍‌ଦର୍ଶନ ପ୍ରଦାନ ତାଙ୍କ ଜୀବନର ପ୍ରଧାନ ଧ୍ୟେୟ ହୋଇ ଉଠିଲା ।

୧୯୯୦ ମସିହାରେ ଖଲିକୋଟ ସ୍ୱୟଂ ଶାସିତ ମହାବିଦ୍ୟାଳୟର ଅଧ୍ୟକ୍ଷ ପଦରେ ଅବସର ଗ୍ରହଣ କଲେ ମଧ୍ୟ ଅଧ୍ୟୟନ ଓ ଗବେଷଣାରୁ ସେ ନିବୃତ୍ତ ହୋଇ ନାହାନ୍ତି । ଅତୀତ ଜୀବନ୍‌ର ସାଧନା ନିମନ୍ତେ ସେ ଓଡ଼ିଆ ଓ ଇଂରାଜୀରେ ତାଙ୍କର ପାଖାପାଖି ୧୬ ଖଣ୍ଡ ପୁସ୍ତକ ରହିଛି ଏବଂ ଆତ୍ମଜୀବନୀ 'ମୋ ଜୀବନର ସ୍ମୃତି ଓ ଅନୁଭୂତି' ଏ ପର୍ଯ୍ୟନ୍ତ ତାଙ୍କର ଶେଷତମ ପୁସ୍ତକ ।

ବରିଷ୍ଠ ବୈଜ୍ଞାନିକ ଭାବେ ରାଜ୍ୟ ସରକାରଙ୍କ ଦ୍ୱାରା ସମ୍ମାନୀତ ଓ ଅନ୍ୟାନ୍ୟ ବହୁ ଶିକ୍ଷାନୁଷ୍ଠାନ ଦ୍ୱାରା ସଂବର୍ଦ୍ଧିତ ।